

# ବରିଷ୍ଠ ବିଧାୟକ ପ୍ରକରଣ ପୁସ୍ତକମାଳା



# ବିନାୟକ ଆଚାର୍ଯ୍ୟ

ଗବେଷଣା, ସୂଚନା, ଗ୍ରନ୍ଥାଗାର ଓ ତାଲିମ ବିଭାଗ,
ଓଡ଼ିଶା ବିଧାନ ସଭା ସଚିବାଳୟ, ଭୁବନେଶ୍ୱର



ORISSA LEGISLATIVE ASSEMBLY

# ବଶିଷ୍ଟ ବଧାୟକ ପ୍ରକରଣ ପୁସ୍ତକମାଳା

## ବିନାୟକ ଆଚାର୍ଯ୍ୟ

ଗବେଷଣା, ସୂଚନା, ଗ୍ରନ୍ଥାଗାର ଓ ତାଲମ ବଭାଗ,
ଓଡ଼ଶା ବଧାନ ସଭା ସଚିବାଳୟ
ଭୁବନେଶ୍ୱର
1996

# ପ୍ରାକ୍ କଥନ :

ରାଜନୀତି ବିଜ୍ଞାନରେ ରାଜନୈତିକ ବ୍ୟକ୍ତିତ୍ୱ ଅନୁଶୀଳନ ଏକ ନୂତନ ଦିଗନ୍ତ ସୃଷ୍ଟି କରିଅଛି । ଓଡ଼ିଶା ବିଧାନସଭାକୁ ବିଭିନ୍ନ ସମୟରେ ନିର୍ବାଚିତ ହୋଇଥିବା ବିଶିଷ୍ଟ ବ୍ୟକ୍ତିମାନଙ୍କ ବ୍ୟକ୍ତିତ୍ୱର ଅନୁଶୀଳନ ଓ ସେମାନଙ୍କ ସମ୍ପର୍କରେ ମୌଳିକ ଗବେଷଣାତ୍ମକ ପ୍ରବନ୍ଧ ରଚନା କରିବା ପାଇଁ 1995 ମସିହାରେ ସର୍ବପ୍ରଥମେ ନିଷ୍ପତ୍ତି ନିଆଯାଇଥିଲେହେଁ ମାନବ ସମ୍ବଳର ଅଭାବ ଯୋଗୁଁ ଏହି ପ୍ରକଳ୍ପକୁ ଅବ୍ୟାହତ କାର୍ଯ୍ୟକାରୀ କରାଯାଇ ପାରୁନାହିଁ । ତେଣୁ ବିଶେଷ ଆଶାବାଦୀ ନ ହୋଇ ବରିଷ୍ଠ ବିଧାୟକମାନଙ୍କ ମଧ୍ୟରୁ କେତେଜଣଙ୍କ ବକ୍ତବ୍ୟ ଗୁଡ଼ିକୁ ଏକତ୍ରିତ କରି ଲୋକଲୋଚନକୁ ଆଣିବା ପାଇଁ ସୀମିତ ପ୍ରୟାସ କରାଯାଇଅଛି ।

ମାନ୍ୟବର ବାଚସ୍ପତି ଶ୍ରୀଯୁକ୍ତ ଚିନ୍ତାମଣି ଦ୍ୟାନ ସାମନ୍ତରାୟ ସ୍ୱର୍ଗତ ବିଧାୟକ ଆତ୍ମୀୟଙ୍କ ସମ୍ମାନରେ ବିଧାନସଭା ଗବେଷଣା ବିଭାଗ ଦ୍ୱାରାରେ ଏକ ପ୍ରକରଣ ପୁସ୍ତକ ପ୍ରକାଶ କରିବା ପାଇଁ 1995 ମସିହା ସେପ୍ଟେମ୍ବର ମାସ 3 ତାରିଖ ଦିନ ପ୍ରସ୍ତାବ ଓ ପ୍ରୋତ୍ସାହନ ଦେଲେ । ପ୍ରସ୍ତାବଟିକୁ ସାକାର କରାଇବାପାଇଁ ରାଜନୀତି ବିଜ୍ଞାନ ଅଧ୍ୟାପିକା ଶ୍ରୀମତୀ ଭାରତୀ ମହାନ୍ତି ଅତ୍ୟନ୍ତ ଆଗ୍ରହର ସହିତ ସଙ୍କଳନର ଦାୟିତ୍ୱ ବହନ କଲେ । ଏଥିପାଇଁ ସେ ଧନ୍ୟବାଦାର୍ହ । ଏହି ପୁସ୍ତକଟିରେ ଓଡ଼ିଶା ବିଧାନସଭାରେ ସ୍ୱର୍ଗ ଆତ୍ମୀୟଙ୍କ ପ୍ରଦତ୍ତ କେତୋଟି ପ୍ରଧାନ ବକ୍ତବ୍ୟ ସନ୍ନିବେଶିତ ହୋଇଅଛି । ବାଚସ୍ପତି ଶ୍ରୀ ଚିନ୍ତାମଣି ଦ୍ୟାନ ସାମନ୍ତରାୟ, ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ପୂର୍ବତନ ବାଚସ୍ପତି ଶ୍ରୀ ବ୍ରଜମୋହନ ମହାନ୍ତି, ପୂର୍ବତନ ବାଚସ୍ପତି ଓ ପରିବେଶ ମନ୍ତ୍ରୀ ଶ୍ରୀ ପ୍ରସନ୍ନ କୁମାର ଦାଶ, ତରୁଣ ସମ୍ପାଦକ ଶ୍ରୀ ପୂର୍ଣ୍ଣଚନ୍ଦ୍ର ମିଶ୍ର, ପୂର୍ବତନ ମନ୍ତ୍ରୀ ଓ ବିଧାୟକ ଡଃ ମାନସ କୁମାର ପାଣିଗ୍ରାହୀ, ବରିଷ୍ଠ ସମାଜସେବୀ ଅଧ୍ୟାପକ ଶ୍ରୀ କିଶୋର ଚନ୍ଦ୍ର ତ୍ରିପାଠୀ, ମାତୃଭୂମିର ସମ୍ପାଦକ ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର, ଶ୍ରୀ ଜଗନ୍ନାଥ ସିଂହ ଦେଓ, ପୂର୍ବତନ ଉପନଗରପାଳ, ବ୍ରହ୍ମପୁର ଅନୁରୋଧ ରକ୍ଷାକରି ସେମାନଙ୍କ ସ୍ମୃତି, ଅନୁଭୂତି, ବ୍ୟକ୍ତିଗତ ସମ୍ପର୍କ ଓ ତତ୍କାଳୀନ ଘଟଣାବଳୀ ପର୍ଯ୍ୟବେକ୍ଷିତ ଅତ୍ୟନ୍ତ ଉପାଦେୟ ଓ ଶିକ୍ଷଣୀୟ ସନ୍ଦର୍ଭ/କବିତା ମାଧ୍ୟମରେ ପୁସ୍ତକଟିକୁ ଋଦ୍ଧିମନ୍ତ କରିଥିବାରୁ ସେମାନଙ୍କୁ ଆମର ଧନ୍ୟବାଦ ଓ ନମସ୍ୟ କୃତଜ୍ଞତା ଅର୍ପଣ କରୁଅଛୁ ।

ଗବେଷଣା, ସୂଚନା, ଗ୍ରନ୍ଥାଗାର ଓ ତାଲିମ ବିଭାଗ ଏଭଳି ଏକ ପଦକ୍ଷେପ ପ୍ରଥମଥର ପାଇଁ ନେଇଥିବାରୁ ପୁସ୍ତକଟିରେ ଅନିଚ୍ଛାକୃତ ଦୋଷତ୍ରୁଟି ରହିବା ସ୍ୱାଭାବିକ । ଭବିଷ୍ୟତର ପ୍ରକାଶନ ପାଇଁ ଆପଣଙ୍କ ସୁଚିନ୍ତିତ ପରାମର୍ଶ ଏକାନ୍ତ କାମ୍ୟ ।

ରଘୁନାଥ ମିଶ୍ର
ସଚିବ
ଓଡ଼ିଶା ବିଧାନ ସଭା

ସେପ୍ଟେମ୍ବର 1996



ଆବିର୍ଭାବ ୩୦-୮-୧୯୧୮ ତିରୋଭାବ : ୧୧-୧୨-୧୯୮୩

# ବିଷୟ ସୂଚୀ

# ଜୀବନ ଚରିତ

ଆଧୁନିକ ଓଡ଼ିଶା ଇତିହାସରେ ବିନାୟକ ଆଚାର୍ଯ୍ୟ ଏକ ଅବିସ୍ମରଣୀୟ ବ୍ୟକ୍ତି । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଭାଷାରେ "ଜଣେ ନିସ୍ୱାର୍ଥପର ସମାଜସେବୀ ତଥା ରାଜନୀତିଜ୍ଞ ଭାବରେ ବିନାୟକ ବାବୁଙ୍କ ଆଦର୍ଶ ଅନୁକରଣୀୟ ହୋଇ ରହିବ ।" ଓଡ଼ିଶାର ପୂର୍ବତନ ରାଜ୍ୟପାଳ ଡଃ ବି. ଏନ୍. ପାଣ୍ଡେ ବିନାୟକ ଆଚାର୍ଯ୍ୟଙ୍କର ପ୍ରଥମ ଶ୍ରାଦ୍ଧ ବାର୍ଷିକ ଉପଲକ୍ଷେ ଲେଖିଛନ୍ତି— "Late Acharya was well-known for his simplicity and sobriety and had endeared himself to one and all who affectionately called him Binayak Master. A teacher turned politician, he was the symbol of honesty and integrity. Though his tenure of Chief Ministership was brief, he brought into administration many measures of reforms to speed up the development of the State and to improve the standard of living of the people." ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ମତରେ "ସ୍ୱର୍ଗତ ଆଚାର୍ଯ୍ୟ ଜଣେ ସରଳ, ଅମାୟିକ, ଜନସେବୀ ଭାବରେ ସୁପରିଚିତ ଥିଲେ । ସମାଜବାଦୀ ଓ ବୈପ୍ଳବିକ ଚିନ୍ତାଧାରାକୁ ଜନସାଧାରଣଙ୍କ ନିକଟରେ ପହଞ୍ଚାଇବାକୁ ତାଙ୍କର ଅବ୍ୟାହତ ଉଦ୍ୟମ ପ୍ରଶଂସନୀୟ । ସେ ଜଣେ ନିଷ୍ଠାପର, ନୀତିବାନ, ଆଦର୍ଶବାଦୀ, ଶିକ୍ଷାପ୍ରେମୀ ଭାବେ ଦଳମତ ନିର୍ବିଶେଷରେ ସମସ୍ତଙ୍କର ପ୍ରିୟପାତ୍ର ହୋଇ ପାରିଥିଲେ । ସେହି ନୈତିକ ଆଦର୍ଶର ପ୍ରତିଷ୍ଠା ପାଇଁ ସେ ଜୀବନର ଶେଷ ଅଧ୍ୟାୟ ପର୍ଯ୍ୟନ୍ତ କାର୍ଯ୍ୟ କରି ଚାଲିଥିଲେ ।" ଡଃ ହରେକୃଷ୍ଣ ମହତାବ ବିନାୟକ ଆଚାର୍ଯ୍ୟଙ୍କ ସମ୍ବନ୍ଧରେ ଲେଖିଛନ୍ତି— "As a man he was famous for his rectitude and straight dealing." ବାଚସ୍ପତି ଶ୍ରୀ ଚିନ୍ତାମଣି ଦ୍ୟାନସାମନ୍ତଙ୍କ ମତରେ ମୂଲ୍ୟବୋଧ ଭିତ୍ତିକ ରାଜନୀତି କରିଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ବିନାୟକବାବୁ ଥିଲେ ଅଗ୍ରଗଣ୍ୟ । ଓଡ଼ିଶାର ଅଗଣିତ ଦୁଃଖି ଦରିଦ୍ର ଆଦିବାସୀ ଓ ପଛୁଆ ଲୋକଙ୍କ ପାଇଁ ସେ ଥିଲେ ସତତ ସମ୍ବେଦନଶୀଳ ।

ସ୍ୱାଧୀନତା ସଂଗ୍ରାମୀ, ଶିକ୍ଷକ, କୃଷି, ମୂଲିଆ, ସର୍ବହରାର ସାଥି, ବିଧାୟକ, ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ଓ ସାମ୍ୟବାଦ ଆନ୍ଦୋଳନର କର୍ଣ୍ଣଧାର । ବିନାୟକ ଆଚାର୍ଯ୍ୟ 1918 ମସିହା ଅଗଷ୍ଟ 30 ତାରିଖ ଦିନ ବ୍ରହ୍ମପୁର ସହରରେ ଜନ୍ମଗ୍ରହଣ କରିଥିଲେ । ବିନାୟକ ଆଚାର୍ଯ୍ୟଙ୍କର ପାରିବାରିକ ସୂତ୍ରରୁ ଜଣାଯାଏ ଯେ, ତାଙ୍କର ପୂର୍ବଜମାନେ ବର୍ତ୍ତମାନର ଅନ୍ଧ୍ର ପ୍ରଦେଶର

ବାସିନ୍ଦା ଥିଲେ । ବ୍ରିଟିଶ ସରକାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଯୋଗୁଁ ତାଙ୍କ ପୂର୍ବଜମାନେ ବାସ କରୁଥିବା ରାଜ୍ୟର ଶାସକ କ୍ଷୁବ୍ଧ ହୋଇ ତାଙ୍କୁ ରାଜ୍ୟରୁ ନିର୍ବାସିତ କରିଥିଲେ । ଫଳରେ ସେମାନେ ସେହି ରାଜ୍ୟ ଛାଡ଼ି ବ୍ରହ୍ମପୁର ଚାଲିଆସି ସେଠାରେ ବସବାସ କଲେ । ତାଙ୍କର ପିତା ରଘୁନାଥ ଆଚାର୍ଯ୍ୟ ଜଣେ ଆଦର୍ଶ ଶିକ୍ଷକ ଥିଲେ । ବିନାୟକଙ୍କର ଅଦ୍ୟ ଜୀବନ ସେହି ଆଦର୍ଶରେ ଗଢ଼ା ହେଲା । ତାଙ୍କର ମାତା ଜଣେ ଧର୍ମପ୍ରାଣା ମହିଳା ଥିଲେ । ଈଶ୍ୱର ଭକ୍ତି, ଦୁଃଖି ଦରିଦ୍ରମାନଙ୍କ ପାଇଁ ସମ୍ବେଦନଶୀଳତା, ଦୁଃଖିର ଦୁଃଖ ଲାଘବ ପାଇଁ ପ୍ରଚେଷ୍ଟା ଆଦି ସେ ତାଙ୍କ ମାତାଙ୍କଠାରୁ ଗ୍ରହଣ କରିଥିଲେ ।

ବିନାୟକ ଆଚାର୍ଯ୍ୟଙ୍କର ପ୍ରାଥମିକ ଶିକ୍ଷା ବ୍ରହ୍ମପୁର ସହରର ଶଙ୍କରପୁର ସାହି ପ୍ରାଥମିକ ବିଦ୍ୟାଳୟରେ ଆରମ୍ଭ ହୋଇଥିଲା । ପରେ ଆସ୍କା ରୋଡ଼୍ ମ୍ୟୁନିସିପାଲିଟି ମିଡ଼ିଲ୍ ସ୍କୁଲରେ ଉଚ୍ଚ ପ୍ରାଥମିକ ଶ୍ରେଣୀରେ ଯୋଗ ଦେଲେ । ଉକ୍ତ ବିଦ୍ୟାଳୟର ତତ୍କାଳୀନ ପ୍ରଧାନ ଶିକ୍ଷକ ରାମଚନ୍ଦ୍ର ଆଚାର୍ଯ୍ୟ ମଧ୍ୟ ତାଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲେ । ଖଲିକୋଟ କଲେଜିଏଟ୍ ସ୍କୁଲରୁ ସେ କୃତିତ୍ୱର ସହ ମାଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଏବଂ ଖଲିକୋଟ ମହାବିଦ୍ୟାଳୟରେ ଇଣ୍ଟରମିଡ଼ିଏଟ (କଳା) ଶ୍ରେଣୀରେ ଯୋଗ ଦେଇଥିଲେ । ବିନାୟକ କୃତିତ୍ୱର ସହିତ ଇଣ୍ଟରମିଡ଼ିଏଟ (କଳା) ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇସାରିବାପରେ ପାରଳାଖେମୁଣ୍ଡି ସ୍ଥ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟର ସ୍ନାତକ ଶ୍ରେଣୀରେ ନାମ ଲେଖାଇଥିଲେ । ସେତେବେଳେ ଓଡ଼ିଆ ଭାଷାଭାଷୀ ଲୋକଙ୍କୁ ଏକତ୍ରୀକରଣ କରାଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରାଇବାରେ ପାରଳା ମହାରାଜାଙ୍କର ସୁନାମ ଥିଲା । ଓଡ଼ିଆମାନଙ୍କୁ ବିଭିନ୍ନ ସେବା କ୍ଷେତ୍ରରେ ନିଯୁକ୍ତ କରିବାପାଇଁ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଆପ୍ରାଣ ଚେଷ୍ଟା କରୁଥିଲେ । ଦରିଦ୍ର ତଥା ମେଧାବୀ ଛାତ୍ରମାନଙ୍କୁ ବୃତ୍ତି ଓ ସାହାଯ୍ୟ ପ୍ରଦାନ କରିବାପାଇଁ ମୁକ୍ତ ହସ୍ତରେ ଖର୍ଚ୍ଚ କରୁଥିଲେ । ପାରଳା ମହାରାଜାଙ୍କର ବ୍ୟକ୍ତିତ୍ୱ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟର ପ୍ରତିଷ୍ଠା ଓ ସୁନାମ ତରୁଣ ବିନାୟକଙ୍କୁ ଆକୃଷ୍ଟ କରିଥିଲା । ବିନାୟକଙ୍କର ପାରଳାଖେମୁଣ୍ଡିରେ ଅବସ୍ଥାନ ସମୟରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଓ ତାଙ୍କ ଭିତରେ ସମ୍ପର୍କ ଅଧିକ ଘନିଷ୍ଠ ହୋଇଥିଲା । ମହାରାଜାଙ୍କର ଓଡ଼ିଆ ପ୍ରୀତି ଓ ଦେଶଭକ୍ତି ବିନାୟକଙ୍କୁ ବହୁଳଭାବରେ ଅନୁପ୍ରାଣିତ କରିଥିଲା ।

ସ୍ନାତକ ହୋଇସାରିବା ପରେ ବିନାୟକ କଟକ ଯାଇ ଶିକ୍ଷକ ତାଲିମ ନେଲେ । ଶିକ୍ଷକ ତାଲିମ୍ ଗ୍ରହଣ ପରେ ଆରମ୍ଭ ହେଲା ବିନାୟକଙ୍କର କର୍ମମୟ ଜୀବନ ।

ଛାତ୍ରାବସ୍ଥାରୁ ବିନାୟକ ସ୍ୱାଧୀନତା ସଂଗ୍ରାମରେ ସାମିଲ ହୋଇଥିଲେ । ସେ ଯେତେବେଳେ 10 ବର୍ଷ ବୟସ, ଦିନେ ପଡ଼ିଆରେ ଖେଳୁଥିବା ସମୟରେ ବିନାୟକ ଓ ତାଙ୍କ ବନ୍ଧୁମାନେ ଶୁଣିଲେ ବଡ଼ବଜାର ଛକଆଡ଼ୁ ପ୍ରବଳ ଗୁଳିବୃଷ୍ଟି । ଅନୁସନ୍ଧାନକରି ସେମାନେ ଜାଣିପାରିଲେ ଯେ, ସ୍ୱାଧୀନତା ସଂଗ୍ରାମୀମାନଙ୍କ ଉପରେ ପୋଲିସମାନେ ଗୋଳା ବର୍ଷଣ କରୁଛନ୍ତି । ସେହି ଗୁଳିକାଣ୍ଡରେ ଜଣେ ସ୍ୱାଧୀନତା ସଂଗ୍ରାମୀ ନିହତ ହେଲେ । ସେହି ଘଟଣାଟି ଲୋକମାନଙ୍କ ମନରେ ପ୍ରବଳ ଆଲୋଡ଼ନ ସୃଷ୍ଟି କଲା । ସେହି ଘଟଣାଟି ମଧ୍ୟ ବିନାୟକଙ୍କ ବାଳକ ମନରେ ଗଭୀର ରେଖାପାତ କରିଥିଲା । ସେହି ଦିନ ବିନାୟକ ତାଙ୍କର ଅନ୍ୟ ଜଣେ ବନ୍ଧୁଙ୍କ ସହ ଶପଥ ନେଲେ ଯେ ଦେଶ ସେବାପାଇଁ ସେମାନେ ପ୍ରାଣ ଉତ୍ସର୍ଗ କରିବେ, ସରକାରୀ ଚାକିରି କରିବେ ନାହିଁ ଓ ଦେଶର ଉନ୍ନତି ପାଇଁ ସମସ୍ତ ପ୍ରଚେଷ୍ଟା କରିବେ । କେତେକ ସହାଧ୍ୟାୟୀମାନଙ୍କ ସହ ମିଶି ବିନାୟକ "ସେବକ ଦଳ" ନାମରେ ଏକ ଅନୁଷ୍ଠାନ ଗଠନ କରିଥିଲେ । ଦୁଃଖୀ, ଦରିଦ୍ର, ଶୋଷିତ ଶ୍ରେଣୀର ଲୋକମାନଙ୍କର ସେବା କରିବା ସେହି ଅନୁଷ୍ଠାନର ଆଭିମୁଖ୍ୟ ଥିଲା । 1942 ମସିହାର ଦୁର୍ଭିକ୍ଷ ଓ ଦେଶବ୍ୟାପୀ ଆନ୍ଦୋଳନରେ "ସେବକ ଦଳ" ନାମକ ସେହି ଅନୁଷ୍ଠାନଟି ବହୁ କାର୍ଯ୍ୟ କରିଥିଲା । ଦୁର୍ଭିକ୍ଷର ବିଭୀଷିକାରୁ ସାଧାରଣ ଲୋକଙ୍କୁ ବଞ୍ଚାଇବା ପାଇଁ ଅନ୍ନଛତ୍ର ବ୍ୟବସ୍ଥା, ଖାଦ୍ୟ ବଣ୍ଟନ, ସେବା ଶୁଶ୍ରୂଷା ସଙ୍ଗେ ସଙ୍ଗେ ଦେଶାତ୍ମବୋଧକ ପ୍ରଚାର ପତ୍ର ବାଣ୍ଟିବା, ସ୍ୱାଧୀନତା ସଂଗ୍ରାମୀମାନଙ୍କ ମଧ୍ୟରେ ସଂଯୋଗ ରକ୍ଷା କରିବା ଇତ୍ୟାଦି କାର୍ଯ୍ୟ "ସେବକ ଦଳର" ସ୍ୱେଚ୍ଛାସେବୀମାନଙ୍କ ଦ୍ୱାରା କରାଯାଉଥିଲା । ସେ ସମୟରେ ବିନାୟକ କଂଗ୍ରେସ ଦଳର ଜଣେ ତରୁଣ ଯୋଦ୍ଧା ଭାବରେ ପରିଚିତ ହୋଇଥିଲେ ।

ଦେଶ ଓ ଦଶର ସେବା କରିବା ସହ ବିନାୟକ ବାଲ୍ୟକାଳରୁ ତର୍କ ଓ ବାଗ୍ମିତା ପ୍ରତିଯୋଗିତା ଇତ୍ୟାଦିରେ ଭାଗନେଇ ବେଶ ଜଣାଶୁଣା ହୋଇଥିଲେ । ମହାରାଜା କୃଷ୍ଣଚନ୍ଦ୍ର ଗଜପତି ମହାବିଦ୍ୟାଳୟରେ ଛାତ୍ର ଥିବା ସମୟରେ ବିନାୟକ ତାଙ୍କର ବାଗ୍ମିତା ପାଇଁ ବହୁ ସୁନାମ ଅର୍ଜନ କରିଥିଲେ ।

ବାଲ୍ୟକାଳରୁ ବିନାୟକ ଦୁଃଖି, ଦରିଦ୍ର ଓ ଶୋଷିତ ଜନସାଧାରଣ ପ୍ରତି ସମ୍ବେଦନଶୀଳ ଥିଲେ । ପରବର୍ତ୍ତୀ ଅବସ୍ଥାରେ ଏହି କାରଣ ଯୋଗୁଁ ସେ ମାର୍କସଙ୍କ ଦର୍ଶନ ଆଡ଼କୁ ଆକୃଷ୍ଟ ହୋଇ କାର୍ଲ ମାର୍କସଙ୍କ ଭଳି ସେ ମଧ୍ୟ ଏକ ଶୋଷଣହୀନ ସାମ୍ୟବାଦୀ ରାଷ୍ଟ୍ରଗଠନ କରିବାକୁ ପରିକଳ୍ପନା କରିଥିଲେ । ଗଞ୍ଜାମ ଜିଲ୍ଲାର ବିଖ୍ୟାତ ସାମ୍ୟବାଦୀ ନେତା ବିଜୟ ଚନ୍ଦ୍ର ଦାସ ବିନାୟକଙ୍କ ସାମ୍ୟବାଦୀ ଚିନ୍ତାଧାରା ଓ ଆନ୍ଦୋଳନ ଆଡ଼କୁ ବିଶେଷ ଭାବରେ ଆକୃଷ୍ଟ କରାଇଥିଲେ ।

ଶିକ୍ଷା ସମାପ୍ତି ପରେ ବିନାୟକ ଆର୍ଯ୍ୟ ହଣ୍ଟିଂଲିକାର୍ଟ ବେସରକାରୀ ବିଦ୍ୟାଳୟରେ ଶିକ୍ଷକତା ଆରମ୍ଭ କରିଥିଲେ । ଇଚ୍ଛା କରିଥିଲେ ସେ ଯେ କୌଣସି ସରକାରୀ ବିଦ୍ୟାଳୟରେ ଶିକ୍ଷକତା କରିପାରିଥାଆନ୍ତେ କିନ୍ତୁ ବାଲ୍ୟାବସ୍ଥାରେ ନେଇଥିବା ଶପଥ, ଶିକ୍ଷକତା କରିବାରେ ଥିବା ଆନନ୍ଦ ଓ ଦେଶ ଗଠନ କରିବାପାଇଁ ଥିବା ଇଚ୍ଛା ତାଙ୍କୁ ସରକାରୀ ଚାକିରି ପ୍ରତି ବୀତସ୍ପୃହ କରାଇଥିଲା । ଶିକ୍ଷକତା ଆରମ୍ଭ କରିବା ପରେ ସେ ଉପଲବ୍ଧି କରିଥିଲେ ଯେ ଶିକ୍ଷକମାନେ ସଙ୍ଗଠନ ଅଭାବରୁ ସେମାନଙ୍କର ନ୍ୟାଯ୍ୟ ଦେୟ ପାଇବାରୁ ବଞ୍ଚିତ ହେଉଛନ୍ତି । ତେଣୁ ସେ ଗଢ଼ିଲେ "ଶିକ୍ଷକ ମହାସଙ୍ଘ" । ଏହାପରେ ଆରମ୍ଭ ହେଲା ଶିକ୍ଷକମାନଙ୍କର ନ୍ୟାଯ୍ୟ ଦାବୀପାଇଁ ଶିକ୍ଷକ ଆନ୍ଦୋଳନ । ଉକ୍ତ ଅନୁଷ୍ଠାନ ଓ ସେହି ଆନ୍ଦୋଳନ ସହିତ ତାଙ୍କର ସମ୍ପର୍କ ଏତେ ନିବିଡ ଥିଲା ଯେ, ସେ ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଥିବା ସମୟରେ ମଧ୍ୟ ଉକ୍ତ ଅନୁଷ୍ଠାନ ଓ ଆନ୍ଦୋଳନ ସହିତ ଅଂଗାଙ୍ଗୀ ଭାବରେ ଜଡ଼ିତ ରହିଥିଲେ ।

ସାମ୍ୟବାଦରେ ବିଶ୍ୱାସ କରୁଥିବାରୁ ସେ ଶ୍ରମିକ ଆନ୍ଦୋଳନ ସହିତ ମଧ୍ୟ ଜଡ଼ିତ ଥିଲେ । ବ୍ରହ୍ମପୁରରୁ "ଆଜିର ଶ୍ରମିକ" ନାମରେ ଏକ ସାପ୍ତାହିକ ପତ୍ରିକା ନାଟ୍ୟଶ୍ରୀ ରଘୁନାଥ ମିଶ୍ରଙ୍କ ଦ୍ୱାରା ପ୍ରକାଶିତ ହେଉଥିଲା । ଉକ୍ତ ପତ୍ରିକାରେ ବିନାୟକ ନିୟମିତ ଶ୍ରମିକ କଲ୍ୟାଣ, ସାମ୍ୟବାଦ, କୃଷକ ଆନ୍ଦୋଳନ ତଥା ଅନ୍ୟାନ୍ୟ ବିଷୟରେ ଉପାଦେୟ ଲେଖାମାନ ପ୍ରକାଶ କରୁଥିଲେ ।

ମାର୍କସବାଦ ବିନାୟକଙ୍କୁ ଆକୃଷ୍ଟ କରିଥିଲା । ପରବର୍ତ୍ତୀ ଅବସ୍ଥାରେ ସେ ଉପଲବ୍ଧି କଲେ ଯେ ଗାନ୍ଧୀ ଦର୍ଶନରେ ମଧ୍ୟ କାର୍ଲମାର୍କସଙ୍କ ବହୁ ଚିନ୍ତା ପ୍ରତିଫଳିତ ହୋଇଛି । ତେଣୁ ଗାନ୍ଧୀବାଦ ପ୍ରତି ମଧ୍ୟ ସେ ଆକୃଷ୍ଟ ହେଲେ । ଗାନ୍ଧୀ ଚିନ୍ତାଧାରା ଯଥା 'ସରଳ ଜୀବନ ଯାପନ ଓ ଉଚ୍ଚ ଚିନ୍ତା' ଦ୍ୱାରା ସେ ପ୍ରଭାବିତ ହୋଇଥିଲେ । ଛାତ୍ର ଅବସ୍ଥାରେ ସେ ସ୍ୱଦେଶୀ ଆନ୍ଦୋଳନର ପ୍ରତୀକ ଖଦଡ଼ ବସ୍ତ୍ର ପିନ୍ଧୁଥିଲେ ଓ ଶେଷ ଜୀବନ ପର୍ଯ୍ୟନ୍ତ ସେହି ଅଭ୍ୟାସ ଛାଡ଼ିନଥିଲେ ।

ବିନୋବାଙ୍କ ଚିନ୍ତାଧାରା ଭୂ-ଦାନ ଆନ୍ଦୋଳନରେ ରୂପାୟିତ ହେବା ପରେ ବିନାୟକ ତାହା ଆଡକୁ ମଧ୍ୟ ଢଳିଥିଲେ । ମୁଷ୍ଟି ଭିକ୍ଷା ଦ୍ୱାରା ଦୁଃଖି, ଦରିଦ୍ର ଓ ଶୋଷିତ ଲୋକ ଯେ ଉପକୃତ ହୋଇପାରିବେ ତାହା ସେ ତାଙ୍କର ଶିକ୍ଷକତା ସମୟରେ ପ୍ରତିପାଦିତ କରିଛନ୍ତି ।

ବିନାୟକ ଜଣେ ଆଦର୍ଶ ଶିକ୍ଷକ ଥିଲେ । ଶ୍ରେଣୀରେ ସେ ସାଧାରଣତଃ ଇଂରାଜୀ ବ୍ୟାକରଣ ଓ ଭୂଗୋଳ ପଢାଉ ଥିଲେ । ତାଙ୍କର ଛାତ୍ରମାନଙ୍କଠାରୁ ଶୁଣିବାକୁ ମିଳେ ଯେ, ସେ ଯେଉଁ ବିଷୟଟି ପଢ଼ାଉଥିଲେ ଉକ୍ତ ବିଷୟଟି ଛାତ୍ରମାନଙ୍କ ମନରେ ରେଖାଙ୍କିତ ହୋଇ ରହିଯାଉଥିଲା । ଗୋଟିଏ ବିଷୟ "ବିନାୟକ ମାଷ୍ଟ୍ରେ" ପଢାଇଥିଲେ ସେଥିପାଇଁ ଦ୍ୱିତୀୟ ଥର ବହି ପଢିବା ଆବଶ୍ୟକ ହେଉନଥିଲା । ସେ ପ୍ରଥମେ ବେସରକାରୀ ହଣ୍ଟିଂଲିକାର୍ଟ ବିଦ୍ୟାଳୟରେ ଶିକ୍ଷକତା କରିଥିଲେ । ପରେ ବ୍ରହ୍ମପୁର ମ୍ୟୁନିସିପାଲିଟି ଉଚ୍ଚ ବିଦ୍ୟାଳୟରେ ସହ ଶିକ୍ଷକ ଭାବେ ଯୋଗ ଦେଇଥିଲେ । କିଛି ଦିନ ପରେ ପ୍ରଧାନ ଶିକ୍ଷକ ପଦକୁ ତାଙ୍କର ପଦୋନ୍ନତି ହୋଇଥିଲା ।

ଉତ୍କଳ ପ୍ରଦେଶ ଗଠିତ ହେବାପରେ ବିନାୟକ ଆଚାର୍ଯ୍ୟ ସମବୟସ୍କ କେତେଜଣ ଯୁବକଙ୍କୁ ନେଇ "ନବୋତ୍କଳସେବାସଂଘ" ନାମରେ ଏକ ଅନୁଷ୍ଠାନ ଗଢ଼ିଥିଲେ । ପ୍ରପୀଡ଼ିତ ଲୋକଙ୍କୁ ସେବା କରିବା, ବକ୍ତୃତା ଦେବା ଶିଖିବା ଇତ୍ୟାଦି ଉକ୍ତ ଅନୁଷ୍ଠାନର ଲକ୍ଷ୍ୟ ଥିଲା । ନିକଟସ୍ଥ ହାଡ଼ଗାଡ଼ି ଓ ବାଉରୀସାହିକୁ ଯାଇ ପରିବେଶ ନିର୍ମଳ ରଖିବା ଓ ମଦ୍ୟଭ୍ୟାସରୁ ବିରତ ହେବାପାଇଁ ଅନ୍ୟମାନଙ୍କୁ ଉପଦେଶ ଦେଉଥିଲେ ।

ସେହି ଆଦର୍ଶ ଶିକ୍ଷକ, ସାମ୍ୟବାଦରେ ଅତୁଟ ବିଶ୍ୱାସ କରୁଥିବା ଗାନ୍ଧିବାଦୀ ଶିକ୍ଷକଶିକ୍ଷକ ଆନ୍ଦୋଳନର ମୁଖ୍ୟ ନାୟକ ବିନାୟକ 1955 ମସିହା ପ୍ରଥମ ଥର ପାଇଁ ନିର୍ବାଚନ ରଣାଙ୍ଗନରେ ଅବତୀର୍ଣ୍ଣ ହୋଇଥିଲେ । କିନ୍ତୁ ସେହି ନିର୍ବାଚନରେ ସେ ପରାଜିତ ହୋଇଲେ । ଯଦିଓ ଛାତ୍ର ଅବସ୍ଥାରୁ ବିନାୟକ କଂଗ୍ରେସର ବହୁ ନେତୃ ସ୍ଥାନୀୟ ବ୍ୟକ୍ତିଙ୍କ ନିକଟ ସମ୍ପର୍କରେ ଆସିଥିଲେ ତଥାପି ସେ କଂଗ୍ରେସ ଦଳର ଏକ ସକ୍ରିୟ ସଭ୍ୟ ହୋଇନଥିଲେ ।

ତୃତୀୟ ଓଡ଼ିଶା ବିଧାନସଭା 1961 ମସିହା ଜୁନ୍ 21 ତାରିଖ ଦିନ ଗଠିତ ହେଲା । 1961 ମସିହା ଠାରୁ 1967 ମସିହା ପର୍ଯ୍ୟନ୍ତ ଓଡ଼ିଶାରେ କଂଗ୍ରେସ ଦଳ ସରକାର ଗଠନ କରିଥିଲା । ଏହି ସମସ୍ତ ମଧ୍ୟରେ ଶ୍ରୀ ବିଜୁ ପଟ୍ଟନାୟକଙ୍କ କାମରାଜ ପ୍ଲାନ କାର୍ଯ୍ୟକାରୀ କରାଇବାପାଇଁ 1961 ମସିହା ଜୁନ୍ 23 ତାରିଖ ଦିନ ମୁଖ୍ୟମନ୍ତ୍ରୀତ୍ୱରୁ ଅବ୍ୟାହତି ନେଲେ । ପରେ ପରେ ବିରେନ୍ ମିତ୍ର ଓ ସଦାଶିବ ତ୍ରିପାଠୀ ମୁଖ୍ୟମନ୍ତ୍ରୀ ହୋଇଥିଲେ । 1961 ଠାରୁ 1967 ପର୍ଯ୍ୟନ୍ତ ଓଡ଼ିଶାରେ କଂଗ୍ରେସର ଯେଉଁ ଶାସନ ଚାଲିଥିଲା ତାହା ବିରୁଦ୍ଧରେ ନାନା ଅଭିଯୋଗ ଆସିଥିଲା । ସେହି ଦଳ ଓ ସରକାର ଦୁର୍ନୀତି ଗ୍ରସ୍ତ ବୋଲି ଜନସାଧାରଣଙ୍କର ଧାରଣା ହୋଇସାରିଥିଲା । ଫଳରେ ଚତୁର୍ଥ ବିଧାନସଭା ପାଇଁ ନିର୍ବାଚନରେ କଂଗ୍ରେସର ବିଜୟ ସନ୍ଦେହର ଘେରର ଭିତରେ ଥିଲା । କଂଗ୍ରେସ ନେତୃବର୍ଗ ନିର୍ମଳଚରିତ୍ର ଥିବା ପ୍ରାର୍ଥୀ ଖୋଜିବାରେ ଲାଗିପଡ଼ିଥିଲେ । ତତ୍କାଳୀନ ରାଜନୈତିକ ପରିସ୍ଥିତି କଂଗ୍ରେସ ନେତୃବୃନ୍ଦଙ୍କୁ ବିନାୟକ ଆଚାର୍ଯ୍ୟଙ୍କ ଆଡ଼କୁ ମୁହାଁଇ ଦେଇଥିଲା । ବିନାୟକ ଆଚାର୍ଯ୍ୟଙ୍କର ନିର୍ମଳ ଭାବମୂର୍ତ୍ତି, ଲୋକପ୍ରିୟତା ଶିକ୍ଷକ ଆନ୍ଦୋଳନ ସହିତ ସମ୍ପର୍କ ତାଙ୍କୁ ବ୍ରହ୍ମପୁର ସହର ତଥା ଅବିଭକ୍ତ ଗଞ୍ଜାମ ଜିଲ୍ଲାର ଅପ୍ରତିଦ୍ୱନ୍ଦ୍ୱୀ ନେତା ହିସାବରେ ପ୍ରତିଷ୍ଠା କରାଇଥିଲା । ବିନାୟକ ବାବୁଙ୍କୁ ବ୍ରହ୍ମପୁର ଆସନ ପାଇଁ କଂଗ୍ରେସ ଟିକେଟ ମିଳିଲା ଓ ସେ ଚତୁର୍ଥ ବିଧାନସଭାକୁ 1967 ମସିହାରେ ନିର୍ବାଚିତ ହେଲେ ।

ଚତୁର୍ଥ ବିଧାନସଭାରେ କଂଗ୍ରେସ ଦଳ ସଂଖ୍ୟାଗରିଷ୍ଠତା ହାସଲ କରିପାରିନଥିଲା । ସ୍ୱତନ୍ତ୍ର ଓ ଜନ କଂଗ୍ରେସ ଦଳ ମିଶି ଏକ ମିଳିତ ମନ୍ତ୍ରୀମଣ୍ଡଳ ଗଠନ କଲେ । ଚତୁର୍ଥ ବିଧାନସଭାରେ ସ୍ୱତନ୍ତ୍ର ପାର୍ଟି 49ଟି ଆସନରେ ଜୟଯୁକ୍ତ ହୋଇଥିବାରୁ ଉକ୍ତ

ଦଳର ନେତା ରାଜେନ୍ଦ୍ର ନାରାୟଣ ସିଂହଦେଓ ମୁଖ୍ୟମନ୍ତ୍ରୀ ହୋଇଥିଲେ । କଂଗ୍ରେସ ଦଳର ନେତା ସଦାଶିବ ତ୍ରିପାଠୀ ବିରୋଧୀ ଦଳର ନେତା ହୋଇଥିଲେ । ମାତ୍ର ସ୍ୱାସ୍ଥ୍ୟଗତ କାରଣରୁ ସେ ନେତୃତ୍ୱ ପଦରୁ ଓହ୍ଲାଇ ଆସିବାରୁ ବିନାୟକ ଆଚାର୍ଯ୍ୟ ବିରୋଧୀ ଦଳର ନେତା ରୂପେ ନିର୍ବାଚିତ ହେଲେ । ସ୍ୱତନ୍ତ୍ର-ଜନ କଂଗ୍ରେସ ମିଳିତ ମନ୍ତ୍ରୀମଣ୍ଡଳ ବେଶି ଦିନ ଧରି କ୍ଷମତାରେ ରହି ପାରିଲେନାହିଁ । ଉଭୟ ଦଳ ଭିତରେ ମତାନ୍ତର, ମତାନ୍ତର କ୍ରମଶଃ 1971 ମସିହା ଜାନୁୟାରୀ ମାସ 9 ତାରିଖ ଦିନ ଏକ ବିସ୍ଫୋରକ ସ୍ତରରେ ଉପନୀତ ହେଲା । ସେହି ଦିନ ରାଜେନ୍ଦ୍ର ନାରାୟଣ ସିଂହଦେଓ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଲେ । ରାଜ୍ୟରେ 1971 ଜାନୁୟାରୀ ମାସ 11 ତାରିଖ ଦିନ ରାଷ୍ଟ୍ରପତି ଶାସନ ଜାରି ହେଲା । ଚତୁର୍ଥ ବିଧାନ ସଭା 1971 ମସିହା ଜାନୁୟାରୀ 23 ତାରିଖ ଦିନ ଭଙ୍ଗ କରାଗଲା । ପଞ୍ଚମ ବିଧାନସଭାପାଇଁ ମଧ୍ୟବର୍ତ୍ତୀ-କାଳୀନ ନିର୍ବାଚନ 1971 ମସିହା ମାର୍ଚ୍ଚ 5 ତାରିଖ ଦିନ ହୋଇଥିଲା । 1969 ମସିହାରେ କଂଗ୍ରେସ ଦଳଙ୍କ କଂଗ୍ରେସ (ଆର୍) ଓ କଂଗ୍ରେସ (ଓ) ଦଳରେ ବିଭକ୍ତ ହୋଇଯାଇଥିଲା । କଂଗ୍ରେସ ଦଳରୁ ଓହ୍ଲାଇ ଆସି ଶ୍ରୀ ବିଜୁ ପଟ୍ଟନାୟକ ଉତ୍କଳ କଂଗ୍ରେସ ନାମରେ ଏକ ଆଞ୍ଚଳିକ ଦଳ ଗଠନ କରିଥିଲେ । ପଞ୍ଚମ ବିଧାନସଭା ଏହି ପୃଷ୍ଠଭୂମିରେ 1971 ମସିହା ଏପ୍ରିଲ ମାସରେ ଗଠିତ ହେଲା । ସ୍ୱତନ୍ତ୍ର ଓ ଉତ୍କଳ କଂଗ୍ରେସ ଏକ ମିଳିତ ମନ୍ତ୍ରୀମଣ୍ଡଳ ଗଠନ କଲେ ଓ ବିଶ୍ୱନାଥ ଦାସ ରାଜ୍ୟର ମୁଖ୍ୟମନ୍ତ୍ରୀ ହେଲେ । କଂଗ୍ରେସ (ଆର) ଦଳ ପଞ୍ଚମ ବିଧାନସଭାରେ 51ଟି ଆସନ ପାଇଥିଲେ ମଧ୍ୟ ସରକାର ଗଠନ କରିନଥିଲେ । ବିନାୟକ ଆଚାର୍ଯ୍ୟ 1971 ମସିହା ମେ ମାସ 4 ତାରିଖ ଦିନ ପୁନର୍ବାର ବିରୋଧି ଦଳର ନେତା ଭାବରେ ନିର୍ବାଚିତ ହୋଇଥିଲେ । ସ୍ୱତନ୍ତ୍ର-ଉତ୍କଳ କଂଗ୍ରେସ ମିଳିତ ମନ୍ତ୍ରିମଣ୍ଡଳର ପତନ 1972 ମସିହା ଜୁନ୍ ମାସ 14 ତାରିଖ ଦିନ ହେଲା । ସେହିଦିନ ଶ୍ରୀମତୀ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କଲେ । ଶ୍ରୀମତୀ ଶତପଥୀଙ୍କ ମନ୍ତ୍ରୀମଣ୍ଡଳରେ ବିନାୟକ ଆଚାର୍ଯ୍ୟଙ୍କୁ ମନ୍ତ୍ରୀତ୍ୱ ମିଳିଲା । ସେ ଅର୍ଥ, କୃଷି, ସମବାୟ, ନଗର ଉନ୍ନୟନ, ଶ୍ରମ ଓ କର୍ମଯୋଗାଣ, ଗୃହ ନିର୍ମାଣ ଓ ଶିକ୍ଷା ବିଭାଗ ଆଦି ଦାୟିତ୍ୱରେ ରହିଥିଲେ । ବିନାୟକ ବିରୋଧୀ ଦଳର ନେତା ଭାବେ 4 ମଇ 1971 ମସିହା ଠାରୁ 14 ଜୁନ୍ 1972 ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ ।

ଶ୍ରୀମତୀ ଶତପଥୀଙ୍କର ନେତୃତ୍ୱରେ ଗଠିତ ମନ୍ତ୍ରୀମଣ୍ଡଳର ପତନ 1973 ମସିହା ମାର୍ଚ୍ଚ ମାସ 3 ତାରିଖ ଦିନ ହେଲା । କଂଗ୍ରେସ ଶାସକ ଦଳରୁ ବହୁ ସଭ୍ୟଙ୍କର ଦଳ ତ୍ୟାଗ ଏହି ମନ୍ତ୍ରୀମଣ୍ଡଳର ପତନର କାରଣ ହୋଇଥିଲା । ଷଷ୍ଠ ବିଧାନସଭା

1974 ମସିହା ମାର୍ଚ୍ଚ ମାସରେ ଗଠିତ ହେଲା । ଏହି ଗୃହରେ 147ଟି ଆସନରୁ କଂଗ୍ରେସ ଦଳ 71ଟି ଆସନ ହାସଲ କରିଥିବାରୁ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ନେତୃତ୍ୱରେ ମନ୍ତ୍ରୀମଣ୍ଡଳ ଗଠିତ ହୋଇଥିଲା । ଏହି ମନ୍ତ୍ରୀମଣ୍ଡଳରେ ବିନାୟକ ଆଚାର୍ଯ୍ୟ ମନ୍ତ୍ରୀ ହୋଇଥିଲେ ଓ ତାଙ୍କୁ ଅର୍ଥ ଓ ଅବକାରୀ ବିଭାଗ ଦାୟିତ୍ୱ ଦିଆଯାଇଥିଲା । ଶ୍ରୀମତୀ ଶତପଥୀ 1976 ମସିହା ଡିସେମ୍ବର 16 ତାରିଖ ଦିନ ଇସ୍ତଫା ଦେଲେ । ରାଜ୍ୟରେ ରାଷ୍ଟ୍ରପତି ଶାସନ 1976 ମସିହା ଡିସେମ୍ବର ମାସ 29 ତାରିଖ ପର୍ଯ୍ୟନ୍ତ ଜାରି କରାଯାଇଥିଲା । 16 ଡିସେମ୍ବର 1976 ଠାରୁ 29 ଡିସେମ୍ବର 1976 ପର୍ଯ୍ୟନ୍ତ ବିଧାନସଭାକୁ ସଜୀବ ନିଲମ୍ବିତ ଅବସ୍ଥାରେ ରଖାଯାଇଥିଲା । 29 ଡିସେମ୍ବର 1976 ଦିନ ବିନାୟକ ଆଚାର୍ଯ୍ୟ କଂଗ୍ରେସ ଦଳର ନେତା ନିର୍ବାଚିତ ହେଲେ ଓ ସେହିଦିନ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ମଧ୍ୟ ଗ୍ରହଣ କଲେ । ମୁଖ୍ୟମନ୍ତ୍ରୀତ୍ୱ ସମୟରେ ସେ ଗୃହ, ଅର୍ଥ, ଗ୍ରାମ୍ୟ ଉନ୍ନୟନ, ରାଜନୈତିକ ବ୍ୟାପାର ଓ ଆଦିବାସୀ ବିଭାଗ ଦାୟିତ୍ୱରେ ଥିଲେ । ମାତ୍ର 4 ମାସ ପରେ 1977 ମସିହା ଏପ୍ରିଲ 30 ତାରିଖ ଦିନ କେନ୍ଦ୍ରରେଥିବା ଜନତା ସରକାର ଉକ୍ତ ମନ୍ତ୍ରିମଣ୍ଡଳକୁ ବରଖାସ୍ତ କରିଥିଲେ ।

ପ୍ରକୃତପକ୍ଷେ 1969 ଠାରୁ 1977 ମସିହାରେ ସପ୍ତମ ଓଡ଼ିଶା ବିଧାନସଭା ଗଠିତ ହେବା ପର୍ଯ୍ୟନ୍ତ ଓଡ଼ିଶା ରାଜନୀତିରେ ଛକାପଂଝା ଲାଗିରହିଥିଲା । ଏହି ପୃଷ୍ଠଭୂମିରେ ବିନାୟକ ଆଚାର୍ଯ୍ୟଙ୍କର ଭୂମିକା ଏକ ନିର୍ଭୀକ, ସଚ୍ଚୋଟ, ଆଦର୍ଶବାଦୀ ରାଜନୀତିଜ୍ଞଙ୍କର ସ୍ୱାକ୍ଷର ବହନ କରେ ।

1977 ମସିହା ନିର୍ବାଚନରେ ବିନାୟକ ଆଚାର୍ଯ୍ୟ ବ୍ରହ୍ମପୁରରୁ ନିର୍ବାଚନ ଲଢ଼ି ପରାଜିତ ହୋଇଥିଲେ । ଏହାପରେ କଂଗ୍ରେସ (ସ୍ତ) ରେ ସେ ଯୋଗଦାନ କରିଥିଲେ । ଏହାବ୍ୟତୀତ ସେ ଅନେକ ଜାତୀୟ ଓ ଆନ୍ତର୍ଜାତୀୟ ଅନୁଷ୍ଠାନ ସହିତ ସଂଶ୍ଳିଷ୍ଟ ଥିଲେ । ଜୀବନର ଶେଷ ପର୍ଯ୍ୟନ୍ତ ଭାରତ-ସୋଭିଏତ୍ ମୈତ୍ରୀ ସଂଘ, ଭାରତ-ଜର୍ମାନ ମୈତ୍ରୀ ସଂସଦ, ଭାରତୀୟ ଶାନ୍ତି ପରିଷଦ ଇତ୍ୟାଦିର ସେ ଥିଲେ ମୁଖ୍ୟ କର୍ଣ୍ଣଧାର । 1973 ମସିହାରେ ବିନାୟକ ଆଚାର୍ଯ୍ୟ ବ୍ରହ୍ମପୁର ମ୍ୟୁନିସିପାଲିଟି ଚେୟାରମ୍ୟାନରୂପେ ନିଯୁକ୍ତ ହୋଇଥିଲେ । ସେ ଦୀର୍ଘଦିନ ଧରି ରାଷ୍ଟ୍ରଭାଷା ପ୍ରଚାର ସଭାର ସଭାପତି ଓ କୃଷକ ସମାଜର ସଭାପତି ରୂପେ ମଧ୍ୟ କାର୍ଯ୍ୟ କରିଥିଲେ । 1983 ମସିହା ଡିସେମ୍ବର 11 ତାରିଖ ଦିନ ବିନାୟକ ଆଚାର୍ଯ୍ୟଙ୍କର କର୍ମମୟ ଜୀବନର ଅବସାନ ଘଟିଥିଲା ।

---

1. ସ୍ୱର୍ଗତ ବିନାୟକ ଆଚାର୍ଯ୍ୟ ସ୍ମୃତି ସମିତି ଦ୍ୱାରା ପ୍ରକାଶିତ ଏବଂ ଲୋକନାଥ ପ୍ରିଣ୍ଟର୍ସ, ବ୍ରହ୍ମପୁର-1ରେ ମୁଦ୍ରିତ 'ବିନାୟକ ଆଚାର୍ଯ୍ୟ ସ୍ମରଣିକା' ଏବଂ ବିନାୟକ ଆଚାର୍ଯ୍ୟ ସ୍ମୃତି, ପୌର ଉଚ୍ଚ ବିଦ୍ୟାଳୟ, ଅମ୍ବା ରୋଡ଼, ବ୍ରହ୍ମପୁର, ପ୍ରକାଶିତ "ସୁବର୍ଣ୍ଣ ଜୟନ୍ତୀ ସ୍ମରଣିକା"ରୁ ଉଦ୍ଧୃତ ।

# ବିଧାନ ସଭାରେ ପ୍ରଦତ୍ତ ଭାଷଣ

(1) ଶିକ୍ଷା

(2) ସ୍ୱାସ୍ଥ୍ୟ

(3) ବିକ୍ରୀକର

(4) ଆଇନ

(5) ଶିଳ୍ପ

(6) ଖାଦ୍ୟ ଓ ସାଧାରଣ ଯୋଗାଣ

(7) କଲ୍ୟାଣ

(8) ଜଳସେଚନ

(9) ରାଜସ୍ୱ

(10) ନିଶାନିବାରଣ

(11) ଅନାସ୍ଥା ପ୍ରସ୍ତାବ

(12) ରେଳପଥ

(13) ବଜେଟ୍

(14) ରାଜ୍ୟପାଳଙ୍କ ଅଭିଭାଷଣ ଉପରେ ଆଲୋଚନା

(15) ଭାରତର ବୈଦେଶିକ ନୀତି ଓ ଭାରତ-ଚୀନ ସମ୍ପର୍କ

# ଶିକ୍ଷା

(23-6-1967)

ସଭାପତି ମହୋଦୟ, ବର୍ତ୍ତମାନ ଗୃହ ଆଗରେ ଯେଉଁ ମୂଳ ପ୍ରସ୍ତାବ ଏବଂ ଦୁଇଟି ସଂଶୋଧନ ପ୍ରସ୍ତାବ ଆସିଛି ତାକୁ ମୁଁ ସମର୍ଥନ କରୁଅଛି । ଅବଶ୍ୟ B type ସ୍କୁଲ ଶିକ୍ଷକ ଏବଂ ପୂର୍ବତନ ଜିଲ୍ଲାବୋର୍ଡ ଶିକ୍ଷକମାନଙ୍କ ମଧ୍ୟରେ କିଛିଏ ଫରକ ଅଛି । ତଥାପି B type schoolର ଯେଉଁମାନେ ବର୍ତ୍ତମାନ ସୁବିଧା ଅସୁବିଧା ଭୋଗ କରୁଛନ୍ତି ଗଡଜାତ ଅଞ୍ଚଳମାନଙ୍କରେ ସେମାନେ ସମସ୍ତେ A typeର ସୁବିଧା ପାଆନ୍ତୁ, ଏଥିରେ ସମସ୍ତେ ଏକମତ ହେବେ; କିନ୍ତୁ ଗଞ୍ଜାମ ଜିଲ୍ଲାବୋର୍ଡ ଏବଂ କୋରାପୁଟର ପୂର୍ବତନ ଜିଲ୍ଲାବୋର୍ଡର ମାଧ୍ୟମିକ ସ୍କୁଲ ଶିକ୍ଷକମାନଙ୍କ ପ୍ରତି ଘୋର ଅବିଚାର କରାଯାଇଛି । ଯେତେବେଳେ ଏ ଦୁଇଟି ଜିଲ୍ଲାବୋର୍ଡକୁ ଭାଙ୍ଗି ଦିଆଗଲା କର୍ମଚାରୀମାନଙ୍କୁ ସରକାରୀ କର୍ମଚାରୀ ହିସାବରେ ନେବାର ସ୍ଥିର ହେଲା ସେତେବେଳେ Works Department ଓ Public Health Department ଏବଂ ଶିକ୍ଷା ବିଭାଗର ଶିକ୍ଷକମାନଙ୍କ ମଧ୍ୟରେ ତଫାତ୍ ରଖାଗଲା । ଆପଣ ଶୁଣି ଆଶ୍ଚର୍ଯ୍ୟ ହେବେ ଯେ Works Department ଏବଂ ସ୍ୱାସ୍ଥ୍ୟ ବିଭାଗ କର୍ମଚାରୀମାନଙ୍କର ସମସ୍ତ ପୂର୍ବ ଚାକିରି ଗଣନା କରାଗଲା, ତାଙ୍କର ଦରମାହାର ସ୍ଥିର କଲାବେଳେ ଏବଂ ପ୍ରମୋସନ ବେଳେ ମଧ୍ୟ ତାହା ସାହାଯ୍ୟ କଲା; କିନ୍ତୁ ପୂର୍ବତନ ଜିଲ୍ଲାବୋର୍ଡର ମାଧ୍ୟମିକ ସ୍କୁଲ ଶିକ୍ଷକମାନଙ୍କର ଏହି ଚାକିରି ମୋଟେ ଗ୍ରହଣ କରାଗଲା ନାହିଁ ଯାହାଫଳରେ ସେମାନେ 1-1-1958ରୁ ଅର୍ଥାତ୍ ଯେଉଁଦିନଠାରୁ ସରକାର ସେମାନଙ୍କ ସ୍କୁଲଗୁଡ଼ିକୁ ହାତକୁ ନେଲେ ସେହିଦିନଠାରୁ ସେମାନଙ୍କ ଦରମା ହାର ନିର୍ଣ୍ଣୟ କରିବାର ହେଲା । ସରକାର ତାଙ୍କ ପ୍ରତି ଅନ୍ୟାୟ କରିଛନ୍ତି ବୋଲି ସେମାନେ କେତେ ସମ୍ମିଳନୀ ଓ ସଭାସମିତିରେ ତା'ର ପ୍ରତିବାଦ କଲେ । Deputationରେ ମଧ୍ୟ ଆସିଥିଲେ । ସେତେବେଳେ କୁହାଯାଇଥିଲା ଯେ Works Department ଓ Public Health Departmentର କର୍ମଚାରୀମାନଙ୍କୁ ଆବଶ୍ୟକତା ଦୃଷ୍ଟିରୁ ସରକାରୀ ଚାକିରିଆ ସ୍ତରରେ ଗ୍ରହଣ କରାଗଲା ଏବଂ ତାଙ୍କର ସମସ୍ତ ପୂର୍ବ ଚାକିରି ଗଣନା କରାଗଲା, ସେମାନଙ୍କର ଦରମାହାର ଧାର୍ଯ୍ୟ କରିବାରେ । କିନ୍ତୁ ଏ ମାଧ୍ୟମିକ ସ୍କୁଲ ଶିକ୍ଷକମାନଙ୍କୁ ସରକାରୀ ସ୍ତରକୁ ଆଣିବାର ଆବଶ୍ୟକତା ନାହିଁ । ତେଣୁ ତାଙ୍କର ପୂର୍ବ ଚାକିରି ଆଉ ବିଚାରକୁ ନିଆଯିବ ନାହିଁ । ମୁଁ ଭାବୁଛି ଏହାଠାରୁ ବଳି ଅଧିକ ଅନ୍ୟାୟ ଆଉ କିଛି ନାହିଁ । ସରକାର ସେମାନଙ୍କର ବିଷୟ ପୁନର୍ବିଚାର କରନ୍ତୁ ଏବଂ ସେମାନଙ୍କର ଦରମାହାର ନିର୍ଣ୍ଣୟ କରିବାରେ ତାଙ୍କର ପୂର୍ବ ଚାକିରି ଗ୍ରହଣ କରାଯାଉ । ତେଣୁ ମୂଳ ପ୍ରସ୍ତାବ ଓ ଦୁଇଟି ସଂଶୋଧନ ପ୍ରସ୍ତାବ ଓ ଦୁଇଟିଯାକ ମୁଁ ସମର୍ଥନ କରୁଛି । ମୂଳ ପ୍ରସ୍ତାବରେ C type କଥା କୁହାଯାଇଛି । ରାଜ୍ୟର Secondary

Schoolଗୁଡ଼ିକରେ ମଧ୍ୟ ବହୁ ତଫାତ୍ ରହିଛି । ଆମ ରାଜ୍ୟରେ ପୂର୍ବେ A type, B type, C type, private-managed, Church Fatherଙ୍କ ଦ୍ୱାରା ପରିଚାଳିତ Mission School, Proprietory School ଏହିପରି ବିଭିନ୍ନ କିସମର ସ୍କୁଲ ଅଛି । ଏହାକୁ ଯଦି ଆମେ ସରକାରୀ ଏବଂ ବେସରକାରୀ ଦୁଇଟି ଶ୍ରେଣୀରେ ବିଭକ୍ତ ନକରୁ ତାହାହେଲେ ଆମ ରାଜ୍ୟରେ ମାଧ୍ୟମିକ ଶିକ୍ଷା ଅଗ୍ରଗତି କରିପାରିବ ନାହିଁ । C type ଅର୍ଥସ୍ଥାନ । C typeରେ ମଧ୍ୟ ଏପରି ସ୍କୁଲ ଅଛି ଯେଉଁ ଶିକ୍ଷକମାନଙ୍କର ନିଯୁକ୍ତି ଓ ଦରମା ସରକାର ଦିଅନ୍ତି ଏବଂ ସେ ସ୍କୁଲର ଗୋଟିଏ Advisory Board ଥାଏ । ଆଉ ଗୋଟିଏ ଧରଣର full net deficit ସ୍କୁଲ ଅଛି ଯେଉଁଠାରେ ଶିକ୍ଷକମାନେ ବେସରକାରୀ ଦରମା ପାଆନ୍ତି । ସେମାନେ ସରକାରଙ୍କଠାରୁ full net deficit ପାଆନ୍ତି । ଗୋଟିଏ C type schoolକୁ ପରିଚାଳନା କରିବେ ସରକାର କିନ୍ତୁ ଆଉ ଗୋଟିଏ C type schoolକୁ ପରିଚାଳନା କରିବେ Managing Committee, ଏହିପରି 2ଟି ସ୍ତର ଅଛି । ଏପରି ଭାବରେ ଶିକ୍ଷାକ୍ଷେତ୍ରରେ ବିଭିନ୍ନ କିସମର ସ୍କୁଲ ରହିଥିବା ଯୋଗୁ, ଆମର ଶିକ୍ଷାର ଅଗ୍ରଗତି ହୋଇପାରୁ ନାହିଁ । ଏହି C type ସ୍କୁଲ ରହିବା ଆଦୌ ଉଚିତ୍ ନୁହେଁ, ବରଂ result ଦେଖିଲେ C type ସ୍କୁଲ ଭଲ କରୁଛି । ସରକାରୀ ସ୍କୁଲରେ ଭଲ ଭଲ ଶିକ୍ଷକ ଅଛନ୍ତି କିନ୍ତୁ ଭଲ result ହେଉ ନାହିଁ । କିନ୍ତୁ C type ସ୍କୁଲକୁ A typeରେ ଯଦି ସୁବିଧା ଦିଆଯାନ୍ତା ତା'ହେଲେ C type ସ୍କୁଲ ଆହୁରି ଭଲ result କରନ୍ତା । ବ୍ରହ୍ମପୁର ସହରରେ ଯେଉଁ ଗର୍ଲ ସ୍କୁଲ ହେଲା, ତା'ର ପରିଚାଳନାଧୀନରେ ଥିବା ସ୍କୁଲର ଗୋଟିଏ ଝିଅ ଏ ବର୍ଷ ପ୍ରଥମ ସ୍ଥାନ ଲାଭ କରିଛି । ତେଣୁ C type ସ୍କୁଲ-ଗୁଡ଼ିକୁ C type ରୂପେ ନ ରଖି A type ସ୍କୁଲରେ ପରିଣତ କରାଯାଉ । ଶିକ୍ଷା-କ୍ଷେତ୍ରରେ ଆମେ ମୋଟେ ଅଗ୍ରଗତି କରିପାରି ନାହୁଁ । ସବୁଠାରୁ ଦୁର୍ଭାଗ୍ୟର କଥା ଯେ ଆମର କଲେଜ ଶିକ୍ଷାର ଅଗ୍ରଗତି ବନ୍ଦ ହେବା ଉପରେ । ନୂଆ ନୂଆ କଲେଜ ଖୋଲିବାପାଇଁ ଅନୁମତି ଦେବାତ ଦୂରର କଥା post-graduate class ଖୋଲିବାପାଇଁ ମଧ୍ୟ ଅନୁମତି ଦିଆଯାଉ ନାହିଁ । ବହୁ ଗ୍ରାଜୁଏଟ୍ ଡାଓଲେଜ୍ ନେବା ପାଇଁ ଚେଷ୍ଟା କରୁଛନ୍ତି କିନ୍ତୁ ସେମାନଙ୍କୁ ସ୍ଥାନ ମିଳୁନାହିଁ । ତେଣୁ ଶିକ୍ଷାରେ ଆମେ ଅଗ୍ରଗତି କରିପାରୁ ନାହୁଁ । ବୋଲଗଡ଼ର ମାନ୍ୟବର ସଭ୍ୟ ଯେଉଁ statistics ଦେଲେ ତା' ମଧ୍ୟରେ କଲେଜ ଶିକ୍ଷାର figure ନାହିଁ । ବଡ଼ ଦୁର୍ଭାଗ୍ୟର କଥା ଆସାମ ଏକ ପାହାଡ଼ିଆ ଏବଂ ଆଦିବାସୀ ବହୁଳ ରାଜ୍ୟ । କିନ୍ତୁ ବଡ଼ ଦୁଃଖର ବିଷୟ ଆମେ ଶିକ୍ଷାକ୍ଷେତ୍ର ର ତା'ଠାରୁ ବହୁତ ପଛରେ ପଡ଼ିଛୁ । ମୁଁ ଆଦୌ ବିଶ୍ୱାସ କରିପାରୁ ନ ଥିଲି ଯେ ଆସାମ ଶିକ୍ଷାକ୍ଷେତ୍ରରେ ଏପରି ଆଗେଇଛି । ଆମେ କଲେଜ ଶିକ୍ଷା

ଉପରେ ଯଦି ଜୋର ନ ଦେବା ତା ହେଲେ meritorious ବା talented ପିଲା ଆମେ ପାଇପାରିବା ନାହିଁ । ଆମର ଶିକ୍ଷାର ଅଗ୍ରଗତି ଉପରେ ଦେଶର ଅଗ୍ରଗତି ନିର୍ଭର କରୁଛି । ମୁଁ ତ ଭାବୁଛି ଆମେ ଅତୀତରେ ଯେଉଁ ସବୁ ଯୋଜନା କରିଛୁ ସେଥିରେ ଶିକ୍ଷାକୁ ପ୍ରଥମ ସ୍ଥାନ ନ ଦେଇ ତ୍ରୁଟି କରିଛୁ । ଯେଉଁ ଦେଶରେ ଶିକ୍ଷାକୁ ଅଗ୍ରାଧିକାର ଦିଆଯାଇଛି ସେ ଦେଶରେ ଯୋଜନା successful ହୋଇଛି । ଶିକ୍ଷା ବିନା ଦେଶର ଉନ୍ନତି ସମ୍ଭବ ନୁହେଁ । ଯେଉଁ ଦେଶମାନେ ଯୋଜନାବଦ୍ଧ ଅର୍ଥନୀତିଦ୍ୱାରା ଉନ୍ନତ ହୋଇଛନ୍ତି ଦେଖାଯାଇଛି ସେମାନେ ଶିକ୍ଷାକୁ ଯୋଜନାରେ ପ୍ରଥମ ସ୍ଥାନ ଦେଇଛନ୍ତି । ବିଶେଷତଃ ପ୍ରାରମ୍ଭିକ ଶିକ୍ଷାପାଇଁ ଯଥେଷ୍ଟ ଗୁରୁତ୍ୱ ଦେଇଛନ୍ତି । ଆମେ ଭୁଲ କରିଛୁ ବୋଲି ଜାଣିଲା ପରେ ମଧ୍ୟ ପୁଣି ସେହି ଭୁଲ ବାଟରେ ଯାଉଛୁ । ଏହା ହେଉଛି ବଡ ଦୁର୍ଭାଗ୍ୟର କଥା । ତେଣୁ ଆମେ ଶିକ୍ଷାକ୍ଷେତ୍ରରେ ଉନ୍ନତି କରିପାରୁ ନାହୁଁ । ଅନ୍ୟ ରାଜ୍ୟମାନଙ୍କ ସହିତ ସମକକ୍ଷ ହେବା ଦୂରର କଥା, Private-managed School କଥା ବିଚାର କରାଯାଉ । ଲୋକେ ନିଜ ଚେଷ୍ଟାରେ ସ୍କୁଲଟିଏ କଲେ, ଉପକରଣ ଯୋଗାଡ କଲେ ସେ ଅଞ୍ଚଳରେ ପିଲାମାନଙ୍କୁ ଶିକ୍ଷା ଦେବାପାଇଁ ସ୍କୁଲ ଖୋଲିବା ପରେ ସରକାରଙ୍କ ପାଖକୁ ଆସିଲାବେଳେ ସରକାର କହୁଛନ୍ତି ଆମେ 2/3 grant ଦେବୁ । Managing Committee ବାକି 1/3 ଦେଉ । ଯେଉଁଠି ଚାନ୍ଦା କରି ସ୍କୁଲଟିଏ ହେଉଛି, ପଇସା ଦରମା ଦେଇପାରୁ ନାହାନ୍ତି, ସେଉଁଠି improvement levy ବା building fund ନାମରେ ପିଲାଙ୍କଠାରୁ ସ୍କୁଲ ଆଦାୟ କରି ଚଳୁଛି ପ୍ରତ୍ୟେକ ପିଲାକୁ ଏ ବାବଦରେ 2/3 ଟଙ୍କା ଅଧିକ ଦେବାକୁ ପଡୁଛି । ଏହି 1/3 managing କମିଟି କେଉଁଠୁ ଆଣିଦେବ । ତା ପରେ ଶିକ୍ଷକମାନଙ୍କର ମହଙ୍ଗାଭତ୍ତା କଥା ତ ଅଛି । ତେଣୁ C type ସ୍କୁଲକୁ A type ସ୍କୁଲରେ ପରିଣତ କରାଯାଉ । ଅର୍ଥର ଅଭାବ ଅଛି ବୋଲି ନ କହି ସବୁ C type ସ୍କୁଲକୁ A type କରାଯାଉ । ଜିଲ୍ଲା ସ୍କୁଲମାନଙ୍କୁ କେବଳ A type ନ କରି ସବୁକୁ A type କରାଯାଉ । ବ୍ରିଟିଶ ସରକାର ଥିଲା ବେଳେ ଜିଲ୍ଲା ହେଡ଼କ୍ୱାର୍ଟରମାନଙ୍କରେ ଗୋଟିଏ ଗୋଟିଏ ଆଦର୍ଶ ସ୍କୁଲ ରଖିଥିଲେ । ବର୍ତ୍ତମାନ ଗୁଡ଼ିଏ ସ୍କୁଲ ହେବାରୁ ସେ ଆଦର୍ଶର ଅଭାବ ନାହିଁ । ତେଣୁ A type ବା ସରକାରୀ ସ୍କୁଲ ଗୋଟିଏ ପ୍ରକାର ସ୍କୁଲ ହେଉ । ଆଉ ଗୋଟିଏ ପ୍ରକାର ସ୍କୁଲ ହେଉ ବେସରକାରୀ ସ୍କୁଲ । ତା'ପରେ ସରକାର ଗୋଟିଏ ନୀତି କରିଛନ୍ତି ଯେଉଁଟା approved expenditure net deficit calculation କଲାବେଳେ ତାକୁ କେବଳ ହିସାବକୁ ନିଆଯାଇଛି । ଏହି ଦ୍ୱାରା ମ୍ୟାନେଜିଂ କମିଟି ବଡ ଅସୁବିଧାରେ ପଡୁଛନ୍ତି । ସେମାନେ ଲୋକମାନଙ୍କଠାରୁ ଚାନ୍ଦା ଆଦାୟ କରି ସ୍କୁଲଟିଏ କଲେ ଏହା ଅତି ପ୍ରଶଂସନୀୟ କଥା । Full-fledged ସ୍କୁଲଟିଏ କରି ସରକାରଙ୍କ recognition

ପାଇଲେ । ଏଥିପାଇଁ ସେମାନେ ଧନ୍ୟବାଦର ପାତ୍ର । ସେମାନଙ୍କୁ ଆର୍ଥିକ ସାହାଯ୍ୟ ଦେଉଥିବାବେଳେ ସରକାର ଯେ ଏ ଯେଉଁ ଖଣ୍ଡି ନାଣ୍ଡି ପରୀକ୍ଷା କରୁଛନ୍ତି ତାହା କରିବା ଉଚିତ ନୁହେଁ । ମୋ ମତରେ ସ୍କୁଲର ଯେଉଁ net deficit ହେଉଛି ତାକୁ ସରକାର ପୁରାପୁରି ଦେଇଦିଅନ୍ତୁ । ତା ହେଲେ ଯାଇ ବେସରକାରୀ ସ୍କୁଲଗୁଡ଼ିକ ଚଳିପାରିବ ବା ନୂଆ ନୂଆ ସ୍କୁଲ ଖୋଲିବା ସମ୍ଭବ ହେବ । Female Educationର ଯେଉଁ statistics ଦିଆଯାଇଛି ସେଥିରୁ ଦେଖାଯିବ ସେମାନଙ୍କର ସାକ୍ଷରତା ସବୁଠାରୁ କମ୍ । ପ୍ରାଥମିକ ଶିକ୍ଷାର targetର ଆମେ ପହଞ୍ଚିଯାଇଛୁ ବୋଲି ଯାହା କୁହାଯାଉଛି ତାହା ଠିକ୍ ନୁହେଁ କାହିଁକିନା ଆମର ଜନସଂଖ୍ୟା ଯେଉଁ ହାରରେ ବଢ଼ୁଛି ଯଦି ନୂଆ ନୂଆ ପ୍ରାଥମିକ ସ୍କୁଲ ନ ଖୋଲିବେ ଆମ ପିଲେ ପ୍ରାଥମିକ ଶିକ୍ଷାରୁ ବଞ୍ଚିତ ହେବେ । ପ୍ରାଥମିକ ସ୍କୁଲସବୁ ପଞ୍ଚାୟତ ଅଧୀନରୁ ସରକାର ନିଜ ହାତକୁ ଆଣନ୍ତୁ ଏବଂ ନିଜେ ପରିଚାଳନା କରନ୍ତୁ । ଏ ଦିଗରେ ଶିକ୍ଷକମାନଙ୍କ ଦରମା ବାବଦରେ ଆମ ରାଜ୍ୟ ସରକାରଙ୍କ କୌଣସି ଟଙ୍କା ପଡ଼େ ନାହିଁ, କେନ୍ଦ୍ର ସରକାର ଦିଅନ୍ତି । ଘର, ଉପକରଣ ଇତ୍ୟାଦି ପାଇଁ ସାମାନ୍ୟ ଖର୍ଚ୍ଚ କରିବାକୁ ପଡ଼େ, ସେହିଦୃଷ୍ଟିରୁ ପୁରାପୁରି ସ୍କୁଲଗୁଡ଼ିକୁ ସରକାର ନିଜ ହାତକୁ ନିଅନ୍ତୁ । ଏହା ନେବାପାଇଁ ଆଉ ଗୋଟିଏ ଯୁକ୍ତି ହେଉଛି ପ୍ରାଥମିକ ଶିକ୍ଷାର ଉନ୍ନତି ନ ହେଲେ ମାଧ୍ୟମିକ ଶିକ୍ଷା ଓ ଉଚ୍ଚ ଶିକ୍ଷାର ଉନ୍ନତି ହୋଇପାରିବ ନାହିଁ । ମୁଁ ଦୁଃଖର ସହ କହିବି ଯେ ଆମର ପ୍ରାଥମିକ ଶିକ୍ଷାର ସ୍ତର କ୍ରମେ କମି ଯାଉଛି । ପ୍ରାଥମିକ ସ୍ତରରେ talented ଛାତ୍ର ନ ବାହାରିବାର କାରଣ ଏହା ମୂଳଦୁଆ ଟାଣ ନ ହେବାରୁ ଏହି ତ୍ରୁଟି ହେବ । ପ୍ରାଥମିକ ସ୍ତରରେ ମାନସିକ ବିକାଶ ନ ଘଟିଲେ ଆମେ Research Scholar ପାଇ ପାରିବା ନାହିଁ । ପ୍ରାଥମିକ ଶିକ୍ଷାର ଉନ୍ନତି ହେଲେ, ତା'ଭିତରୁ ବହୁପରିମାଣରେ talented ଛାତ୍ର ପାଇପାରିବା । ଆମେ ଯଦି ଅତୀତର ଭୁଲକୁ ସଂଶୋଧନ ନ କରିବା ତାହାହେଲେ ଆମ ଭବିଷ୍ୟତ ଅନ୍ଧକାର କହିଲେ ହେବ ।

Technical ଶିକ୍ଷା ବିଷୟରେ ସରକାର ସ୍ଥିର ସ୍ୱତନ୍ତ୍ରର ବିସ୍ତର କରିବାପାଇଁ ସ୍ୱତନ୍ତ୍ର ଦଳର ଜନପ୍ରତିନିଧିମାନଙ୍କୁ ଓ ସରକାରୀ ଅଫିସରମାନଙ୍କୁ ନେଇ ଆଲୋଚନା କରନ୍ତୁ । ସେମାନଙ୍କୁ ଚାକିରି ଯୋଗାଇ ପାରିବା କି ନାହିଁ ଏମାନଙ୍କ ପାଇଁ କେଉଁ କେଉଁ avenue ଖୋଲା ଅଛି ଏସବୁ ବିଷୟକୁ ଚିନ୍ତାକରି ଗୋଟିଏ ସ୍ଥିର ସିଦ୍ଧାନ୍ତରେ ପହଞ୍ଚିଲାପରେ ଅନୁଷ୍ଠାନମାନଙ୍କରେ ଶତକଡ଼ା 50 ଭାଗ ବା 25 କମାଇବା ଏହି ସିଦ୍ଧାନ୍ତ କରନ୍ତୁ । ବର୍ତ୍ତମାନ ଏହି ଟେକ୍‌ନିକାଲ ଶିକ୍ଷା ନେଇ ପିଲାଙ୍କ ଭିତରେ ହତାଶଭାବ ଦେଖାଦେଇଛି । ସେଥିପାଇଁ ଶିକ୍ଷା କ୍ଷେତ୍ରରେ ସତର୍କତାର ସହ ଚିନ୍ତାକରି ଶେଷ

ନିଷ୍ପତ୍ତିରେ ପହଞ୍ଚିବା ଉଚିତ । ତା ପରେ C ଟାଇପ୍ schoolକୁ A type କରିବା ପାଇଁ ଯେଉଁ ପ୍ରସ୍ତାବ ଆସିଛି ତାକୁ ମୁଁ ଦୃଢ଼ ସମର୍ଥନ କରୁଛି । ଶିକ୍ଷା ବୋର୍ଡ଼ ଶିକ୍ଷକମାନଙ୍କ ପ୍ରତି ଯେଉଁ ଅନ୍ୟାୟ କରାଯାଇଛି ତାକୁ ଦୂର କରିବା ପାଇଁ ସେମାନଙ୍କ ପୂର୍ବ ସ୍ଥିତିର ହିସାବକୁ ନିଆଯାଇ ସେମାନଙ୍କର ଦରମାହାର ଧାର୍ଯ୍ୟ କରାଯାଉ ।

Queen Mission Church ପୋଡ଼ିପରେ Churchର Fatherମାନେ ନିଷ୍ପତ୍ତି କଲେ, ସେମାନେ ଆଉ ସେ schoolକୁ ପରିଚାଳନା କରିପାରିବେ ନାହିଁ । Schoolଟି କେଉଁଠି ରହିବ ସ୍ଥିର ହେଲାନାହିଁ । 2 ମାସ ପରେ Schoolଟି ଶୈଳବାଳା କଲେଜ ଏବଂ ଟାଉନ ହାଇସ୍କୁଲରେ ସ୍କୁଲର shift systemରେ, କିନ୍ତୁ ସେ schoolର Headmaster ଆପତ୍ତି କଲେ ଯେ shift system ହେବାଦ୍ୱାରା ନିଜ ସ୍କୁଲର କ୍ଷତି ହେଉଛି । ସେ ଅନୁମତି ଦେବେ ନାହିଁ ବୋଲି କହିଲେ । ସେ ଯାହାହେଉ ଏହା ଭିତରେ କୌଣସି ବନ୍ଦୋବସ୍ତ ନ ହେବାରୁ ଏ. Managing Committee ପୂଜା ପର୍ଯ୍ୟନ୍ତ ଅନୁମତି ଦେଲେ । ଏ ଭିତରେ ଯଦି କୌଣସି ବନ୍ଦୋବସ୍ତ ହୋଇପାରନ୍ତା ତାହାହେଲେ ଭଲ ହୁଅନ୍ତା । Managing Committee କେବଳ ପୂଜା ପର୍ଯ୍ୟନ୍ତ ସେ ସ୍କୁଲ ପରିଚାଳନା ପାଇଁ ଅନୁମତି ଦେଲେ । ଆମର ଯେଉଁ ପୁରାତନ Industrial School ଅଛି ସେଠାରେ ଯଦି ଏ ମିସନ ସ୍କୁଲକୁ ପରିଚାଳନା କରିବାକୁ ଅନୁମତି ଦିଅନ୍ତି ତାହାହେଲେ ତାହାର କିଛି ଅବଲମ୍ବନ ହୁଏ ଓ ସେଠାରେ ସ୍କୁଲ କିଛିଦିନ ଚଳନ୍ତା । ସେ ସମ୍ପର୍କରେ ବର୍ତ୍ତମାନ ସୁଦ୍ଧା ସରକାର ପଦକ୍ଷେପ ନେଇ ନାହାନ୍ତି । ମନ୍ତ୍ରୀ କେବଳ କହୁଛନ୍ତି ଯେ ସେ Revenue Divisional Commissionerଙ୍କୁ କହିଛନ୍ତି । ସେ ଯଦି କୌଣସି ସ୍ଥାନରେ rented building ପାଇବେ ତାହାହେଲେ ସେହି rented buildingରେ ସ୍କୁଲ ଚାଲିବ । ଅଧ୍ୟକ୍ଷ ମହୋଦୟ, ଆଜିକାଲି ବରହମପୁରରେ ଏପରି rented buildingର ବହୁତ ଅଭାବ ଅଛି । ଆମେ ମଧ୍ୟ ଖୋଜି ପାଉନାହୁଁ । ଆମେ ଯଦି ପାଆନ୍ତୁ ତାହାହେଲେ ଆମେ ସେଠାରେ ସ୍କୁଲ ଚଳାନ୍ତୁ । ସେଣୁ ସରକାର ଉଚ୍ଚ ଶିକ୍ଷା ବିଭାଗ ଜରିଆରେ, ଶିଳ୍ପ ବିଭାଗ ଠାରୁ ସେହି ପୁରାତନ Industrial Schoolକୁ ନେଇ ଓ ମାସେ ଦୁଇମାସ ଭିତରେ ତାହାର କିଛି ପରିବର୍ତ୍ତନ କରି ସେଠାରେ ଯେପରି 17ଟି section ରହିପାରିବ ଏବଂ ପ୍ରାୟ 700 ପିଲା ଅଧ୍ୟୟନ କରିପାରିବେ ତାର ବ୍ୟବସ୍ଥା କରନ୍ତୁ । ସେହି ପୁରାତନ Industrial Schoolରେ ସେ ସ୍କୁଲ ସୁରୁଖୁରୁରେ ଚାଲିପାରନ୍ତା । ତାହା ନ ହେଲେ ମୋର ଭୟ ହେଉଛି ଅନ୍ୟୂନ 700 ପିଲାଙ୍କୁ ଅନ୍ୟ କୌଣସି ସ୍ଥାନରେ ଏକ ସମୟରେ ପଢ଼ାଇବାପାଇଁ

ସୁବିଧା ସୁଯୋଗ ନାହିଁ । ଆଉ ଗୋଟିଏ ସୁବିଧା ଅଛି ବରହମପୁରରେ ଥିବା ପ୍ରତ୍ୟେକ ସ୍କୁଲକୁ ଯାଇ ସେଠାରେ 50/60 ଲେଖାଏଁ ପିଲାଙ୍କୁ accommodate କରି ହେବ କି ଏହା ପରୀକ୍ଷାର । ସ୍ଥାନାଭାବ ହେତୁ ଆମର ଅନ୍ୟ କୌଣସି ଉପାୟ ନାହିଁ । ଯଦି ସରକାର ତୁରନ୍ତ ବ୍ୟବସ୍ଥା ନ କରନ୍ତି ତାହାହେଲେ ଘୋର ଅସୁବିଧା ହେବ । ପୂଜାପରେ ଆଉ ସ୍କୁଲ ଚାଲିପାରିବ ନାହିଁ । ସେମାନେ ଆଉ ଅନୁମତି ଦେବେ ନାହିଁ ।

## ଶିକ୍ଷା ବିଭାଗ ଖର୍ଚ୍ଚ ଦାବି ସଂକ୍ରାନ୍ତରେ ଆଲୋଚନା

### (13-7-1967)

ଅଧ୍ୟକ୍ଷ ମହୋଦୟ, ଶିକ୍ଷାମନ୍ତ୍ରୀ ମହୋଦୟ ଶିକ୍ଷା ନେଇ ଯେଉଁ ଖର୍ଚ୍ଚ ଦାବି ଉପସ୍ଥାପିତ କଲେ ମୁଁ ନାନା କାରଣରୁ ତାର ସମ୍ପୂର୍ଣ୍ଣ ବିରୋଧ କରୁଛି । ସେଥିମଧ୍ୟରୁ ମୁଖ୍ୟ ହେଲା, ବର୍ତ୍ତମାନ ସରକାର ବେସରକାରୀ ଶିକ୍ଷାନୁଷ୍ଠାନ କର୍ମଚାରୀଙ୍କ ପାଇଁ ଯେଉଁ ଶୃଙ୍ଖଳା ଓ ଆଚରଣବିଧି ପ୍ରଣୟନ କରିଛନ୍ତି ତାହା ଆମ ରାଜ୍ୟର ପ୍ରାଥମିକ ଓ ମାଧ୍ୟମିକ ସ୍କୁଲ ଏବଂ କଲେଜର ଶିକ୍ଷକମାନଙ୍କ ମଧ୍ୟରେ ଅସନ୍ତୋଷ ସୃଷ୍ଟି କରିଛି । ଆପଣ ଜାଣିଥିବେ ଇଂରେଜ ସରକାର ଏ ଦେଶରେ ଥିବାବେଳେ ମଧ୍ୟ ଏପରି ଗୋଟିଏ କଠୋର ନିୟମାବଳୀ ଶିକ୍ଷକମାନଙ୍କ ପ୍ରତି ଲାଗୁ କରିବାପାଇଁ ପ୍ରସ୍ତୁତ କରି ନ ଥିଲେ, ସାହାସ ବି କରି ନ ଥିଲେ । ବର୍ତ୍ତମାନ ଏ ମନ୍ତ୍ରୀ ମଣ୍ଡଳ ଯାହା କଲେ ସେଥିରୁ ଜଣା ପଡୁଛି ସରକାର ସବୁ କ୍ଷେତ୍ରରେ Fascist ନୀତି ପ୍ରୟୋଗ କରୁଛନ୍ତି । ଶିକ୍ଷା କ୍ଷେତ୍ର ହେଉଛି ତା'ର ଗୋଟିଏ ନମୁନା । ଯେଉଁ ଆଚରଣ ବିଧି ଏ ସରକାର ରଖିଛନ୍ତି, ସମସ୍ତ ଅଂଶକୁ ମୁଁ ପଢ଼ିବା ପଢ଼ୁନାହିଁ, ଶେଷଟି ପଢ଼ୁଛି—

"In case of any violation of those rules, decision of the competent authority shall be final. The Governing Body or Managing Committee as the case may be, should act in accordance with the instructions of the competent authority in respect of the employee violating any of these rules. In case of breach of any of these rules by an employee suitable action against the employee

should be taken by the Governing Body or Managing Committee, as the case may be, within the time as directed by the competent authority, failing which grant-in-aid will either be reduced or suspended or the name of the institution struck off from the Register of Grant-in-aid."

ଏହାଠାରୁ ବଳି କଠିନ ଆଇନ ବା ନିୟମାବଳୀ ଅନୁସାରେ ଶିକ୍ଷକମାନେ ସଙ୍ଘ ସଂଗଠନ କରି ପାରିବେ ନାହିଁ । ନିଜର ଦରମା ଭତ୍ତା ନେଇ ଆନ୍ଦୋଳନ କରିପାରିବେ ନାହିଁ । ନିର୍ବାଚନ କଥା ତ ଘୋର ପାପ ହେବ । କିନ୍ତୁ ଏ ସମ୍ପର୍କରେ ଶିକ୍ଷା କମିଶନ ଯାହାକୁ କୋଠାରୀ କମିଶନ ବୋଲି କୁହାଯାଉଥାଏ, ତାଙ୍କ Reportରେ Civil Rights ଶିକ୍ଷକମାନଙ୍କର କ'ଣ ହେବ ଲେଖାଅଛି ।

"We attach great importance to the civic freedom of teachers. We consider the participation of teachers in social and public life to be highly desirable in the interest of the profession and the educational service as a whole and that such participation will enrich the social and political life of the country. Teachers should be free to exercise all civil rights enjoyed by citizens and should be eligible for public offices at the local, district, State or national levels. No legal restriction should be placed on their participation in elections. When they do so, they should be expected to proceed on leave during the election campaign and to relinquish temporarily their teaching duties if they requires of public office interfere with their proper discharge."

କୋଠାରୀ କମିଶନ Reportକୁ ଆମ ସରକାର ଗ୍ରହଣ କରି ନେଇଛନ୍ତି । ତେଣୁ ବେସରକାରୀ ଶିକ୍ଷକମାନଙ୍କ ପ୍ରତି ସରକାର ଯେଉଁ ବ୍ୟବହାର ଦେଖାଉଛନ୍ତି ତାହା ଅତି ଅନ୍ୟାୟ । ଅତି ଚଞ୍ଚଳ ତାହାକୁ ପ୍ରତ୍ୟାହାର କରି ନେବା ଉଚିତ । ଯଦି ନ କରନ୍ତି ତେବେ ସାରା ଓଡ଼ିଶାର ବେସରକାରୀ ଶିକ୍ଷକମାନଙ୍କ ମଧ୍ୟରେ ଯେଉଁ ଅସନ୍ତୋଷ ସୃଷ୍ଟି ଦେଖା ଦେଇଛି ତାହା ଭବିଷ୍ୟତରେ ଭୀଷଣ ଭାବରେ ଜଳି ଉଠିବ ଓ ପରିଶେଷରେ ଏହି ମନ୍ତ୍ରୀମଣ୍ଡଳ ଯେ ତା'ର ଶିକାର ହେବେ ଏଥିରେ ସନ୍ଦେହ ନାହିଁ ।

ଶିକ୍ଷାକୁ 3 ଭାଗରେ ବିଭକ୍ତ କରାଯାଇପାରେ, ପ୍ରାଥମିକ, ମାଧ୍ୟମିକ ଓ କଲେଜ ସ୍ତରୀୟ ବା ଉଚ୍ଚଶିକ୍ଷା । ସେ ଦିନ ମନ୍ତ୍ରୀ ମହୋଦୟ କହିଲେ ଯାହାକି ହେଉ ନା କାହିଁକି ଆମ ରାଜ୍ୟରେ ଶିକ୍ଷାର ଯଥେଷ୍ଟ ଅଗ୍ରଗତି ହୋଇଛି । ତେଣୁ କୌଣସି ନୂଆ College ଖୋଲିବ ନାହିଁ । କୌଣସି Collegeରେ Post-Graduate ଶ୍ରେଣୀ ଖୋଲିବ ନାହିଁ । କୌଣସି ନୂଆ ସ୍କୁଲ, କଲେଜ ଖୋଲିବାକୁ ଅନୁମତି ଦିଆଯିବ ନାହିଁ । M. E. ଓ H. E. ସ୍କୁଲ ଖୋଲିବାକୁ ଅନୁମତି ଦିଆ ଯିବନାହିଁ । ସେ ଦିନ ଶିକ୍ଷା ମନ୍ତ୍ରୀ ଗୋଟିଏ statistics ଦେଇଥିଲେ । ମୁଁ ଅନ୍ୟ ଗୋଟିଏ statistics ମାଗୁଥିଲି । ମନ୍ତ୍ରୀଙ୍କ ପାଖରେ ନ ଥିଲା । ମୁଁ ସେ statistics ଦେଉଛି । ମନ୍ତ୍ରୀ ମହୋଦୟଙ୍କ ପାଖରେ ଆଉ କ'ଣ ଥିଲେ ଦେଇ ପାରନ୍ତି । ତାହା ହେଉଛି 1961 ମସିହାର Expenditure on Education *Per capita* ସାରା ଭାରତବର୍ଷରେ ଏ ବିଭାଗର ଯାହା ଖର୍ଚ୍ଚ ହେଉଛି ଓଡ଼ିଶାରେ ତାହା ହେଉଛି ନିମ୍ନତମ । କେରଳରେ 11·5 ଅର୍ଥାତ୍ ସବୁଠାରୁ ଅଧିକ ଖର୍ଚ୍ଚ ହେଉଛି । ଓଡ଼ିଶାରେ ହେଉଛି ମାତ୍ର 7·3 । ତା' ପରେ Percentage of expenditure on Education to States ଅର୍ଥାତ୍ Stateର ସମସ୍ତ ଶିକ୍ଷା ବିଭାଗରେ କେତେ ଖର୍ଚ୍ଚ ହୋଇଛି ବିଚାର କଲେ ଦେଖାଯିବ ଓଡ଼ିଶାରେ ହେଉଛି 1·5 Ratio ସେହିପରି Enrolement Ratioରେ ଅବଶ୍ୟ 1 ଠାରୁ 4 ଶ୍ରେଣୀ ପର୍ଯ୍ୟନ୍ତ ଆମର ଓଡ଼ିଶାରେ ଟିକିଏ ଭଲ ଅଛି । କିନ୍ତୁ 5 ରୁ 8 ଶ୍ରେଣୀ ପର୍ଯ୍ୟନ୍ତ ସାରା ଭାରତବର୍ଷ ତୁଳନାରେ ସବୁଠାରୁ କମ । 5ମରୁ 8ମ ଶ୍ରେଣୀରେ 16·1, Girls ହେଉଛି 7·01, 9ମ ଠାରୁ 11 ଶ୍ରେଣୀରେ 7·5, Girls ହେଉଛି 77 Higher Educationରେ ପ୍ରାୟ 10,000 ଭିତରେ ମାତ୍ର 8ଜଣ ଉଚ୍ଚଶିକ୍ଷା ପାଉଛନ୍ତି । ତା' ହେଲେ Educationally Backward ଜିଲ୍ଲାମାନଙ୍କ ମଧ୍ୟରୁ ସାରା ଭାରତବର୍ଷ ଦେଖିଲେ କଳାହାଣ୍ଡି ଜିଲ୍ଲାରେ ପ୍ରତି ହଜାରକେ 2, କୋରାପୁଟ ଜିଲ୍ଲାରେ 2, କେନ୍ଦୁଝର ଜିଲ୍ଲାରେ 3, ବଲାଙ୍ଗିରରେ 3ଜଣ ଶିକ୍ଷା ପାଉଅଛନ୍ତି । ଏଥିରୁ ଜଣାଯିବ ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଜିଲ୍ଲାରେ ହଜାରକେ ମୋଟେ 3ଜଣ ପାଠ ପଢ଼ନ୍ତି । ମାନ୍ୟବର ମୁଖ୍ୟମନ୍ତ୍ରୀ 10 ବର୍ଷରୁ ଅଧିକ ବିରୋଧୀ ଦଳର ନେତା ଥିଲେ । ମିଳିତ ମନ୍ତ୍ରୀମଣ୍ଡଳର ଉପମୁଖ୍ୟମନ୍ତ୍ରୀ ଥିଲେ । ତାଙ୍କ ଜିଲ୍ଲା ପ୍ରତି ସେ କିପରି ଦୃଷ୍ଟି ଦେଇଛନ୍ତି ଏଥିରୁ ଜଣାପଡ଼ୁଛି । ଏହି ଯେଉଁ statistics ଦିଆଗଲା ଏଥିରୁ ଜଣାଯିବ କିପରି ଶିକ୍ଷା ବିଭାଗରେ ଆମ ଓଡ଼ିଶା ବହୁତ ନିମ୍ନ ସ୍ତରରେ ପଡ଼ିଛି । ସେଥିପାଇଁ ଆମକୁ ଆହୁରି ଅଧିକ ସଂଖ୍ୟକ ପ୍ରାଇମେରୀ ସ୍କୁଲ ନିଶ୍ଚୟ ଖୋଲିବାକୁ ହେବ । 6 ବର୍ଷରୁ 10 ବର୍ଷ ପର୍ଯ୍ୟନ୍ତ School-going ଛାତ୍ର ଛାତ୍ରୀମାନଙ୍କ ପାଇଁ ଅଧିକ ସ୍କୁଲ ଖୋଲିବାକୁ ହେବ । ଏହା ପୂର୍ବରୁ ମୁଁ କହିବାକୁ ଚାହେଁ ଆମ ରାଜ୍ୟରେ Pre-Primary Education ପ୍ରତି

ମୋଟ ବୃଦ୍ଧି ହୋଇପାରୁନାହିଁ । ସେପରି ଶିକ୍ଷା ମୋଟେ ଆମ ସରକାରଙ୍କ ଧ୍ୟାନକୁ ଆସୁନାହିଁ । ଅର୍ଥାତ 2 ବର୍ଷରୁ 5 ବର୍ଷ ଭିତରର ବାଳକ ବାଳିକାମାନଙ୍କ ଉପରେ ଶିକ୍ଷା ହୋଇପିବ, Kinder Garten ଶିକ୍ଷା ହୋଇପିବ, ସେଥିପ୍ରତି ଆଦୌ ସରକାର ଦୃଷ୍ଟି ଦେଉନାହାନ୍ତି । ଦୁଃଖର କଥା ଏଭଳି School ଅଭାବରୁ ଅନେକ ଶ୍ରେଷ୍ଠ ଶ୍ରେଷ୍ଠ ପିଲାମାନେ ଘରେ ରହି ନାନାଦି କୁ କଥା ଶିଖୁଛନ୍ତି, ବାପା ମା'ଙ୍କ ଠାରୁ କଠୋର ତାଡନା ପାଉଛନ୍ତି । କୋଠାରୀ କମିଶନ Reportରେ ପ୍ରାଥମିକ ଶିକ୍ଷାକୁ 2 ସ୍ତରରେ ବିଭକ୍ତ କରାଯାଇଛି । ଗୋଟିଏ ହେଉଛି ଲୋୟର ପ୍ରାଇମେରି ଓ ଅନ୍ୟଟି ହେଉଛି ହାୟର ପ୍ରାଇମେରି । 7ମ ଶ୍ରେଣୀରେ ଏହା ଶେଷ ହେଉଛି । ଆମ ପ୍ରାଇମେରି ଶିକ୍ଷାକୁ 5ମ ଶ୍ରେଣୀରେ ଶେଷ ନ କରି ଯଦି 7ମ ଶ୍ରେଣୀରେ ଶେଷକରୁ ତେବେ ଆମେ Free Education ଦେଇ ପାରିବା ଓ ଏ ବାବଦରେ ଯାହା ଟଙ୍କା କେନ୍ଦ୍ର ସରକାରଙ୍କ ଠାରୁ ନିଶ୍ଚୟ ପାଇବା । ତେଣୁ ମୁଁ ଦାବି କରୁଛି 7ମ ଶ୍ରେଣୀ ପର୍ଯ୍ୟନ୍ତ ପ୍ରାଇମେରି Educationକୁ extend କରାଯାଉ । ପୂର୍ବତନ ଗଞ୍ଜାମ ଜିଲ୍ଲା ବୋର୍ଡରେ ଯେଉଁ Higher Elementary School ଥିଲା ସେଥିରେ 5ମ ଠାରୁ 8ମ ଶ୍ରେଣୀ ପର୍ଯ୍ୟନ୍ତ ପିଲାମାନେ ପଢୁଥିଲେ, ମାଗଣାରେ ପଢୁଥିଲେ । ତା'ପରେ Text Book ସମ୍ବନ୍ଧରେ ସେ ଦିନ ପ୍ରଶ୍ନ ହୋଇଥିଲା ସରକାର କହିଲେ, ଏଣିକି ପ୍ରତ୍ୟେକ ବହି ଦୋକାନରେ ସରକାରୀ ସ୍କୁଲ ପାଠ୍ୟପୁସ୍ତକ ରଖାଯିବ । ମୁଁ ସରକାରଙ୍କ ଠାରୁ ଜାଣିବାକୁ ଚାହେଁ ସରକାର ଯେଉଁ ପ୍ରତିଶ୍ରୁତି ଦେଇଥିଲେ ସେହି ଅନୁଯାୟୀ ନିର୍ଦ୍ଦେଶ ଗଲାଣି କି ? ପ୍ରତ୍ୟେକ ବହି ଦୋକାନରେ ସରକାରୀ ଛପା ବହି ବିକ୍ରି ହେବାକୁ ଦିଅ ଓ ଅଭିଭାବକମାନେ ସହଜରେ କିଣି ପାରିବେ ।

ବର୍ତ୍ତମାନ ମୁଁ ପ୍ରାଥମିକ ସ୍କୁଲ ଶିକ୍ଷକଙ୍କ ସମ୍ବନ୍ଧରେ କହିବାକୁ ଚାହେଁ । ଏହି ପ୍ରାଥମିକ ସ୍କୁଲ ଶିକ୍ଷକଙ୍କ ମଧ୍ୟରେ ସରକାରୀ ଓ ବେସରକାରୀ କୌଣସି ପାର୍ଥକ୍ୟ ନ ରହୁ । ବିଶେଷତଃ ଦରମା ହାର ଓ ମହଙ୍ଗା ଭତ୍ତାରେ ସରକାରୀ ଓ ବେସରକାରୀ ପ୍ରାଥମିକ ଶିକ୍ଷକଙ୍କ ମଧ୍ୟରେ ପାର୍ଥକ୍ୟ ରହିବା ଉଚିତ ନୁହେଁ । ଅବଶ୍ୟ ବର୍ତ୍ତମାନ ଦରମା ହାରରେ କୌଣସି ପାର୍ଥକ୍ୟ ନାହିଁ । କିନ୍ତୁ ମହଙ୍ଗା ଭତ୍ତାରେ ପାର୍ଥକ୍ୟ ରହିଛି । ଏହା ଅତି କଦର୍ଯ୍ୟ କଥା । କାରଣ ମହଙ୍ଗାଭତ୍ତା ସମସ୍ତଙ୍କ ପାଇଁ ସମାନ, ସେଥିପାଇଁ ସରକାରୀ ସ୍ତରର ପ୍ରାଥମିକ ଶିକ୍ଷକ ଗୋଟିଏ ହାରରେ ମହଙ୍ଗାଭତ୍ତା ପାଇବେ ଓ ବେସରକାରୀ ପ୍ରାଥମିକ ସ୍କୁଲର ଶିକ୍ଷକ ଅନ୍ୟ ଗୋଟିଏ ହାରରେ ମହଙ୍ଗାଭତ୍ତା ପାଇବେ, ଏହା ଅତି ଅସହ୍ୟ । ତେଣୁ ଏ ଦୁଇ ଶ୍ରେଣୀର ଶିକ୍ଷକଙ୍କର ଦରମା ଓ ମହଙ୍ଗାଭତ୍ତା ସମାନ କରାଯାଉ ।

ମୁଁ ଏହି ପ୍ରସଙ୍ଗରେ ଗୋଟିଏ କଥା କହିବାକୁ ଚାହେଁ । ଆମର ପ୍ରାଥମିକ ସ୍କୁଲ ଶିକ୍ଷକଙ୍କ ଦରମା ହାର 1961 ମସିହାରେ ନିର୍ଦ୍ଧାରିତ ହୋଇଥିଲା । ଏହି ସମୟରେ ଦରମା ହାର ଧାର୍ଯ୍ୟ ସମ୍ପର୍କରେ ଗୋଟିଏ କଥା ପରିଷ୍କାର ଭାବେ ଉଲ୍ଲେଖ କରାଯାଇଛି । ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗର ଗୋଟିଏ Resolutionରେ ଲୁହାଗଲା—

"IX pass or Matric failed-trained at any level is eligible to get Rs. 100 a month. A teacher who has put in 10 years service with qualifications and if less than M. E. may be treated as M. E. pass and less than IX and above M. E. then as IX passed and if less than Matric but above IX then as Matric pass.

Similar concession should be given to women teachers also. If the teacher is taking training at any level, he will be treated as a trained teacher and if untrained, as untrained teacher."

ଯେଉଁମାନେ ମାଟ୍ରିକ୍ ଫେଲ୍, IX ପାଶ୍ କରିଛନ୍ତି ଏବଂ E. T. ଟ୍ରେନିଙ୍ଗ ପାଇଛନ୍ତି ସେମାନଙ୍କ ଦରମା ଟ 100 ଧାର୍ଯ୍ୟ ହେଲା । ତାହା ଶିକ୍ଷା ବିଭାଗ ଧାର୍ଯ୍ୟକଲେ ଏବଂ Assistant Examiner of Accounts ତାକୁ ପାଶ୍ କଲେ । ତେଣୁ ବିଭିନ୍ନ ଜିଲ୍ଲାରେ ଏହି ଶ୍ରେଣୀ ଶିକ୍ଷକମାନେ ସେ ହାରରେ ଦରମା ପାଇବେ । 5 ବର୍ଷ ପରେ ହଠାତ୍ ସରକାର ନୂଆ scale କୁ revise କରି କହିଲେ, ମାଟ୍ରିକ୍ E. T. ମାନଙ୍କର ଦରମା ଆମେ ଦେଖିବାକୁ ଭୁଲି ଯାଇଥିଲୁ । ମାଟ୍ରିକ୍ C. T. ମାନଙ୍କ ପାଇଁ ଦରମା ଯେଉଁ ଟ 100 ରୁ ଟ 150 ଥିଲା, ସେହି ଦରମା କିଛି କମ୍ ମାଟ୍ରିକ୍ E. T. ବାଲା ପାଇବେ । ମନେ ରଖନ୍ତୁ 3ୟ ଯୋଜନା ସମୟରେ ଯେଉଁମାନେ IX ପାଶ୍ କରିଥିଲେ ଓ ମାଟ୍ରିକ୍ ଫେଲ ହୋଇଥିଲେ ଏବଂ 10 ବର୍ଷ Continuous service କରିଥିଲେ ଏବଂ E. T. Training ପାଇଥିଲେ, ସେମାନଙ୍କୁ ସେହି ହାରରେ retrospectively 1-4-1961ରୁ ଦରମା ଦିଆଗଲା । ବର୍ତ୍ତମାନ ସେମାନଙ୍କର scale revise ଟ 80—ଟ 120 କରିଦେବା ଫଳରେ ସେମାନଙ୍କୁ ପ୍ରତ୍ୟେକ ପ୍ରାୟ ହଜାର ହଜାର ଟଙ୍କା refund କରିବାକୁ ପଡ଼ୁଛି । ଏହାଠାରୁ ଅନ୍ୟାୟ ଆଉ କ'ଣ ହୋଇପାରେ ? ମୋ ପାଖରେ report ଅଛି । ଗୋଟିଏ ଗୋଟିଏ ସ୍କୁଲର ଶିକ୍ଷକମାନଙ୍କ ଠାର

ମାସିକ ଟ 60 କରି refund ନିଆ ଯାଉଛି । କେତୋଟି ସ୍ଥାନରେ 12 କିସ୍ତିରେ କେତେ ଟଙ୍କା ଫେରାଇବାକୁ ପଡ଼ିବ ବୋଲି କୁହାଯାଉଛି ଓ ଅନ୍ୟ କେତୋଟି ସ୍ଥାନରେ 24ଟି କିସ୍ତିରେ refund ଦେବେ ବୋଲି କୁହାଯାଇଛି । ଯେଉଁ ପ୍ରାଥମିକ ଶିକ୍ଷକ ଟ 100 ପାଉଥିଲେ ବର୍ତ୍ତମାନ ଟ 85ରୁ ଟ 100 କରିଦେବା ଫଳରେ ସେମାନଙ୍କ ଠାରୁ ଯେ ଟ 60 refund ମଗାଯିବ, ତା' ଠାରୁ ବଳି ଅନ୍ୟାୟ କ'ଣ ହୋଇପାରେ । ଏହି ସରକାର ଜାଣିଶୁଣି ଯଦି ଏହିପରି Instruction Deputy Inspector ଓ Sub-Inspector ମାନଙ୍କୁ ଦିଅନ୍ତି ତାହାହେଲେ ଏ ଯେଉଁ ପାପ ହେଉଛି ସେଥିରେ କେବଳ ଯେ Deputy Inspector ଓ Sub-Inspector ମାନେ ଭାଗୀ ତାହାନୁହେଁ ସେ ପାପରେ ଏ ମନ୍ତ୍ରୀ ମଧ୍ୟ ଭାଗୀ । ପ୍ରାଥମିକ ସ୍କୁଲ ଶିକ୍ଷକ—ତାଙ୍କ ପ୍ରତି ଏପରି ଅନ୍ୟାୟ ହେବା ସ୍ପୃହଣୀୟ ନୁହେଁ ।

ତା' ପରେ ମୁଁ Secondary Stageକୁ ଆସିବି । ଏହି Primary School ଶିକ୍ଷକଙ୍କ ପାଇଁ Triple Benefit Scheme ପୂର୍ବତନ ସରକାର ଘୋଷଣା କରି ଯାଇଥିଲେ ହେଁ, ଏ ସରକାର ତାକୁ ଏ ପର୍ଯ୍ୟନ୍ତ କାର୍ଯ୍ୟକାରୀ କଲେନାହିଁ । ଏହି ତ୍ରିବିଧ ସୁବିଧା କାର୍ଯ୍ୟକ୍ରମରେ ରହିଛି Provident Fund, ଲାଇଫ୍ ଇନ୍ସୁରାନ୍ସ ଏବଂ ପେନ୍‌ସନ୍ । ଆପଣ ଶୁଣି ଆଶ୍ଚର୍ଯ୍ୟ ହେବେ, ବର୍ତ୍ତମାନ ସରକାର ତାକୁ କାର୍ଯ୍ୟକାରୀ କରିବେ କି ନାହିଁ, ସେଥିରେ ପୁଣି ସନ୍ଦେହ ଅଛି । କାରଣ ସେ ସମ୍ପର୍କରେ ଏ ବଜେଟ୍‌ରେ କୌଣସି ଟଙ୍କାର ବ୍ୟବସ୍ଥା କରା ହୋଇନାହିଁ । 1320 ପୃଷ୍ଠାରେ Triple Benefit—Schemes—Voted—Nil—ଏଥିରୁ ଜଣାପଡୁଛି, ବର୍ତ୍ତମାନର ସରକାର ଯେ ପ୍ରାଥମିକ ଶିକ୍ଷକମାନଙ୍କୁ ଏହି ତ୍ରିବିଧ ଯୋଜନାର ସୁଯୋଗ ଦେବେନାହିଁ । ମୁଁ ଦାବି କରୁଛି ଯେ ପୂର୍ବତନ ସରକାର ଯାହା ଘୋଷଣା କରିଥିଲେ ତାକୁ କାର୍ଯ୍ୟକାରୀ କରିବାକୁ ହେବ ଓ ପ୍ରାଥମିକ ସ୍କୁଲ ଶିକ୍ଷକମାନେ ଯେପରି Triple Benefit Schemeର ସୁବିଧାପାଆନ୍ତି ତାର ବ୍ୟବସ୍ଥା କରିବାକୁ ହେବ । * * *

ଉପାଧ୍ୟକ୍ଷ ମହୋଦୟ, ଆମର ଶିକ୍ଷାମନ୍ତ୍ରୀ ନଥିଲେ, ଶିଳ୍ପମନ୍ତ୍ରୀ ରହିଥିବେ ବା ଶିଳ୍ପମନ୍ତ୍ରୀ ନଥିଲେ ମାଛଚାଷ ମନ୍ତ୍ରୀ ରହି ଏ କାମ ଚଳାଇବେ ।

ଯାହାହେଉ Secondary Stageରେ ଆପଣମାନେ ଦେଖିବେ ଆମ ଦେଶରେ ଆହୁରି ଅଧିକ ହାଇସ୍କୁଲ ହେବା ଦରକାର, କାରଣ ଆମେ ଯଦି ଅନ୍ୟାନ୍ୟ ପଡୋଶୀ ରାଜ୍ୟ ସହିତ ସମକକ୍ଷ ହେବାକୁ ଚାହୁଁ ତା' ହେଲେ ଅନ୍ୟରାଜ୍ୟରେ ଯେପରି ଅଧିକ ସଂଖ୍ୟକ ହାଇସ୍କୁଲ ଅଛି, ସେହିପରି ଆମର ଜନସଂଖ୍ୟା ଦୃଷ୍ଟିରୁ ସେହି ପରିମାଣରେ ହାଇସ୍କୁଲ ଓ

କଲେଜ ଖୋଲିବାକୁ ହେବ । ମୁଁ ସେହି report ଆପଣଙ୍କ ପାଖରେ ଦେବି, ସେଥିରୁ ଆପଣ ଦେଖିପାରିବେ ଆମ ରାଜ୍ୟ ଭିତରେ କେତେ ସଂଖ୍ୟକ ଲୋକେ High School Education ପାଉଛନ୍ତି ବା Higher Education ପାଉଛନ୍ତି ।

| | | |
|---|---|---|
| V—VIII | Boys | 16·1 per cent |
| | Girls | 2·0 per cent |
| IX—XII | Boys | 7·5 per cent |
| | Girls | 0·7 per cent |

ଏ ଦୃଷ୍ଟିରୁ ଆମକୁ ବହୁତ ଗୁଡ଼ିଏ ହାଇସ୍କୁଲ ଖୋଲିବାକୁ ହେବ । ବର୍ତ୍ତମାନ ସରକାରଙ୍କର ଯେଉଁ ଅଧୋଗତି, ସେଥିରେ କୌଣସି ନୂଆ ହାଇସ୍କୁଲ ବା Primary ସ୍କୁଲ ଖୋଲିବାକୁ ଅନୁମତି ହେବ ନାହିଁ ।

ତାପରେ Syllabus । ଆପଣ ସବୁ Education Commissionଙ୍କ report ଗ୍ରହଣ କରୁଛନ୍ତି ତାହାହେଲେ ମୁଁ କହିବି, ଏହି କମିଶନ report ଉପରେ ଭିତ୍ତିକରି ବା ନିର୍ଭର କରି Syllabus ହେବା ଉଚିତ । ଏ କମିଶନ ରିପୋର୍ଟରେ work experience ଉପରେ ଜୋର ଦିଆଯାଉଛି । Secondary stageରୁ ଆରମ୍ଭ କରି College ପର୍ଯ୍ୟନ୍ତ work experience ଉପରେ ଆମର Syllabus ହେବା ଉଚିତ୍ । ମୁଁ ଯେତେବେଳେ କଲେଜ ବିଷୟରେ କହିବି ସେତେବେଳେ ଏ ବିଷୟ ପୁଙ୍ଖାନୁପୁଙ୍ଖ ଆଲୋଚନା କରିବି । ବର୍ତ୍ତମାନ Secondary stageରେ ଏ work experienceକୁ ନେଇ ନୂଆ Syllabus ପ୍ରସ୍ତୁତ ହେବା ଦରକାର ଓ ଭିନ୍ନ ରାଜ୍ୟର ଶିକ୍ଷାବିତ୍‌ମାନଙ୍କୁ ନେଇ ଏକ କମିଟି ଗଢ଼ି Syllabus ପରିବର୍ତ୍ତନ କରନ୍ତୁ । In the light of the Pay Commission's recommendations.

ତାପରେ Secondary Schoolରେ ବହୁତ ଗୁଡ଼ିଏ ସମସ୍ୟା ରହିଛି, ଯାହା ସମାଧାନ ହୋଇପାରିନାହିଁ । ବର୍ଷ ବର୍ଷ ଧରି ଏପରିକି 10/15 ବର୍ଷ ଧରି ଗୋଟିଏ ଗୋଟିଏ problem ରହିଛି ଯାହାର ସମାଧାନ ହୋଇପାରୁନାହିଁ । ପ୍ରଥମ କଥା ହେଲା ସରକାରୀ ଓ ବେସରକାରୀ ଶିକ୍ଷକଙ୍କ ଦରମାହାରରେ ତାରତମ୍ୟ ରହିବା ଅନୁଚିତ । ଏକଥା ବାରମ୍ବାର ଆମର ବେସରକାରୀ ଶିକ୍ଷକ ସମ୍ମିଳନୀ ପୀଠରେ ଦାବି ହୋଇଆସିଛି । କିନ୍ତୁ ସରକାର ସେଥିପ୍ରତି କର୍ଣ୍ଣପାତ କରୁନାହାନ୍ତି । ଏ ସମ୍ପର୍କରେ Pay Committee

report ବାହାରିଲା, ସେମାନେ କହିଲେ, there should be a token difference, ଗୋଟିଏ ଦୁଇଟିକୁ ଗୁଣ୍ଡେଦେଲେ there is no token difference, there is major difference. Token difference କଥା ଯାହା କୁହାଯାଉଛି, ତାହା କେବଳ ଠକାଇବା ଉଦ୍ଦେଶ୍ୟରେ କୁହାଯାଉଛି । Token difference ଆଉଦୌ ନାହିଁ । ଆପଣ ଯଦି ଅନୁଧ୍ୟାନ କରିବେ ତାହେଲେ Government School teachers and non-Government School teachersଙ୍କ payରେ ଏହି ତଫାତ୍ ଅତି ସୁନ୍ଦର ଭାବ ପାଇପାରିବେ । ସରକାର ଯେତେବେଳେ ନିର୍ମଳ ଶାସନ କରିବେ ବୋଲି କହୁଛନ୍ତି, ଏବଂ ବିଶେଷକରି ଶିକ୍ଷାମନ୍ତ୍ରୀ ଏ ରାଜ୍ୟର ଶିକ୍ଷା ପରିସର ଠିକ୍ ତାହା କରିବେ ବୋଲି କହୁଛନ୍ତି, ସେତେବେଳେ ଏ ଦିଗରେ ଏ ସରକାର ପଦକ୍ଷେପ ନେଲେ ଭଲ ହୁଅନ୍ତା । ମୁଁ କହୁଛି ଏହି ମିଳିତ ଦଳ ଆଜି ଯେଉଁ ଘୋଷଣା କରୁଛନ୍ତି ଓ ଯାହାକୁ ବେଦମନ୍ତ୍ର ପରି ମୁଖ୍ୟମନ୍ତ୍ରୀ ତାଙ୍କ ଆଗରେ ରଖିଛନ୍ତି ତହିଁରେ ଅଛି "Expansion of both technical and general education with special attention to backward areas" ତାକୁ କାର୍ଯ୍ୟକରୀ କରନ୍ତୁ । ଉପବାଚସ୍ପତି ମହୋଦୟ, ମୁଁ ଆଜି ଦାବି କରୁଛି, ଏ ସରକାରଙ୍କର ଯଦି ସାହାସ ଅଛି, ଯଦି ସେ ଆମ ରାଜ୍ୟରେ ଶିକ୍ଷାର ଉନ୍ନତି କରିବାକୁ ଚାହାନ୍ତି, ଯଦି ଆମକୁ ଅନ୍ୟାନ୍ୟ ପଡ଼ୋଶୀରାଜ୍ୟ ସହିତ ସମକକ୍ଷ କରିବାକୁ ଚାହୁଁଛନ୍ତି, ତା'ହେଲେ, ଏହି ଯେଉଁ 14 ଦଫା ଘୋଷଣା ତାକୁ କାର୍ଯ୍ୟକାରୀ କରନ୍ତୁ । ଆଜି ଟେକ୍ନିକାଲ education ର ଅବସ୍ଥା କ'ଣ ତାହା ଆପଣ ସମସ୍ତେ ଦେଖୁଛନ୍ତି । ଆଜି technical educationର ଅବସ୍ଥା କ'ଣ ହୋଇଛି । ଏଥିପାଇଁ କମିଟି ବସିଥିଲା । ଓଭରସିଅରଂ ସ୍କୁଲରେ କେତେ ଗ୍ରୁପ ନେବେ ନ ନେବେ ସେ ବିଷୟରେ ଆଲୋଚନା ହେଲା । ସେ ଯାହାହେଉ ଅବସ୍ଥା ଦୃଷ୍ଟିରୁ ନିଷ୍ପତ୍ତି ନିଆଗଲା ନାହିଁ, କାରଣ ଓଭରସିଅରଂ ସ୍କୁଲକୁ ପିଲାଏ ଦରଖାସ୍ତ କଲେ ନାହିଁ । ସେଥିପାଇଁ ମନ୍ତ୍ରୀ ମହୋଦୟଙ୍କୁ ଅଧିକା ମୁଣ୍ଡ ଖେଳାଇବାକୁ ପଡ଼ିଲା ନାହିଁ । ଏହା କ'ଣ ଉପଯୁକ୍ତ ହେଲା । ଯେଉଁ ଗରିବ ବାପାମାଆ ତାଙ୍କ ପିଲାଙ୍କୁ ଇଞ୍ଜିନିୟରିଂ ପଢାଇ ପାରିବେ ନାହିଁ, medicine ପଢାଇ ପାରିବେ ନାହିଁ, ସେମାନେ ଓଭରସିଅରଂ ପଢାଉଥିଲେ । 3 ବର୍ଷ ପଢିଲାପରେ ରୋଜଗାର କରୁଥିଲେ । ଏହିଭଳି parents ସେମାନଙ୍କ ପିଲାମାନଙ୍କୁ ବୈଷୟିକ ଶିକ୍ଷା ଦେବାରେ ବଞ୍ଚିତ ହେଲେ । ସରକାରଙ୍କର ଯୋଜନା ନାହିଁ, ଭବିଷ୍ୟତ ଲକ୍ଷ୍ୟ ନାହିଁ । ସରକାର କେବଳ ଚାହୁଁଛନ୍ତି ଯାହା ଅଛି ତାକୁ maintain କରିବେ । ଆମେ କ୍ରମବର୍ଦ୍ଧମାନ ଅର୍ଥନୀତିକୁ ଗ୍ରହଣ କରି ଏ ରାଜ୍ୟକୁ ଉନ୍ନତ କରିବା ଦିଗରେ ଆମେ ଯୋଜନା କରି ଯଦି ପଦକ୍ଷେପ ନ ନେଉ ତାହାହେଲେ ଆମେ ଯେଉଁଠି ଅଛୁ ସେଇଠି ରହିବୁ । ଏ ସରକାର

କ'ଣ ସ୍ଥାଣୁତ୍ୱ ପ୍ରାପ୍ତ ହେଉଛନ୍ତି ? ଆମ ଦେଶକୁ ଯଦି ଆଗେଇ ନେବାକୁ ଚାହୁଁଛନ୍ତି ତାହାହେଲେ ଯୋଜନା କରି ଏହି ଓଭରସିଅରମାନଙ୍କୁ ଚାକିରି ଦିଅନ୍ତୁ । Overseering Schoolରେ ପିଲାମାନେ ଯେପରି ପୁନର୍ବାର admission ପାଇବେ ସେ ବ୍ୟବସ୍ଥା କରିବା ନିହାତି ଦରକାର ।

ଦ୍ୱିତୀୟରେ Secondary Education ବିଷୟରେ କହିବି ଯେ ଶିକ୍ଷକମାନଙ୍କ ଭିତରେ ଯେଉଁ ତାରତମ୍ୟ ରହିଛି ତାହା ନିହାତି ଛୁଟିବା ଦରକାର । ଉପବାଚସ୍ପତି ମହାଶୟ, ଆପଣ ଶୁଣି ଆଶ୍ଚର୍ଯ୍ୟ ହେବେ ସରକାରୀ ଓ ବେସରକାରୀ ସ୍କୁଲର ଯେଉଁ ତାରତମ୍ୟ ତାହା ବ୍ରିଟିଶ୍ ଅମଳରୁ ଚାଲିଆସିଛି । ସରକାରୀ ସ୍କୁଲରେ ଯେଉଁମାନେ ଚାକିରି କରୁଛନ୍ତି ସେମାନେ ସରକାରଙ୍କର ପାଳିତ ସନ୍ତାନ ଓ ବେସରକାରୀ ସ୍କୁଲର ଶିକ୍ଷକମାନେ ପାଳିତ ସନ୍ତାନ ନୁହନ୍ତି । ତାଙ୍କପ୍ରତି ସରକାରଙ୍କର ଦାୟିତ୍ୱ ନାହିଁ । ସରକାରୀ standard staff ହେଉଛନ୍ତି 13 । ବେସରକାରୀ ସ୍କୁଲର standard staff ହେଉଛନ୍ତି 11 । ଏହି standard staff ସମାନ କରିବା ପାଇଁ ଯେତେ କୁହାଗଲେ ମଧ୍ୟ ଆଜି ପର୍ଯ୍ୟନ୍ତ ସେ କଥା ହୋଇପାରୁ ନାହିଁ । ଏହା ନ ହେବା ଦ୍ୱାରା ଶିକ୍ଷକମାନଙ୍କ ଭିତରେ ଅସନ୍ତୋଷ ବଢ଼ୁଛି । କାରଣ, ସରକାରୀ ସ୍କୁଲରେ ଯେଉଁମାନେ ଅଛନ୍ତି ସେମାନେ କମ୍ period ନିଶ୍ଚୟ ପାଇବେ । ବେସରକାରୀ ସ୍କୁଲରେ ଯେଉଁମାନେ ଅଛନ୍ତି ସେମାନେ ଅଧିକ period ପଢାଉଛନ୍ତି । ସେଥିପାଇଁ standard staff ସରକାରୀ ଓ ବେସରକାରୀ ସ୍କୁଲର ସମାନ କରିବା ଉଚିତ୍ । ଅର୍ଥର ଯଦି ଅଭାବ ତେବେ 13କୁ 11 କରିପାରନ୍ତି । ମୋଟ ଉପରେ standard staff ସମାନ ହେବା ଦରକାର । Triple benefit, Secondary ସ୍କୁଲରେ କେହି ପାଆନ୍ତି ନାହିଁ । College Lecturer, Professor ପା'ନ୍ତି ନାହିଁ, ସେମାନେ ଏହା ନିହାତି ପାଇବା ଦରକାର । ବହୁତ ରାଜ୍ୟ ଏହା ଦେଲେଣି । ଏପରିକି ମଣିପୁର, ପଶ୍ଚିମ ବଙ୍ଗଳା, ୟୁ. ପି. ଏହି triple benefit ରେ family pension, gratuity ଦେଲେଣି । ଆମ ସରକାର ମୂକ ବଧିର ହୋଇ ବସିଛନ୍ତି । ବର୍ତ୍ତମାନ ୟେମାନଙ୍କର ଲୋକେଣି retire ହେଲେ କ'ଣ କରିବେ । ପ୍ରତ୍ୟେକ ଶିକ୍ଷକଙ୍କର retirement ନିକଟ ହେଲେ ହୃଦୟ ଧଡ଼ଧଡ଼ ହେଉଛି । ସେଥିପାଇଁ ଏହି triple benefits କାର୍ଯ୍ୟକାରୀ କରାଯାଉ ଓ ତାକୁ retrospective effect ଦିଆଯାଉ ।

ବାଚସ୍ପତି ମହାଶୟ, ମୁଁ ଆଜି ଦାବି କରିବି ଯେ 140ଟି 'C' type ସ୍କୁଲକୁ 'A' type କରାଯାଉ । ମୁଁ ଚାହେଁ ଏ ରାଜ୍ୟରେ ଦୁଇଟି type ସ୍କୁଲ ରହୁ । ସରକାରୀ ସ୍ତରରେ 5 ପ୍ରକାରର, ବେସରକାରୀ ସ୍ତରରେ 5 ପ୍ରକାର ସ୍କୁଲ

ରହିବା ମୁଁ ଚାହେଁ ନାହିଁ । ସରକାରୀ ସ୍ତରରେ ଗୋଟିଏ type ସ୍କୁଲ ହେଉ କମ୍ବା ସ୍ତରରେ ବା 'A' type । ମନ୍ତ୍ରୀ ମହାଶୟ କହିଲେ 'C' type ସ୍କୁଲ Government School ନୁହେଁ । ସେମାନେ ବେସରକାରୀ ଦରମା ପାଆନ୍ତି; କିନ୍ତୁ appointment ସରକାର କରନ୍ତି । ତାହା Advisory Committee ଦ୍ୱାରା ସୁପାରିସ କରେ; କିନ୍ତୁ managing body ନାହିଁ । ତାଙ୍କୁ transfer କରନ୍ତି Inspector । ଏହି 'C' type ସ୍କୁଲକୁ ମୁଁ ଚାହେଁ ଅନତିବିଳମ୍ବେ 'A' type କରାଯାଉ । ଏ ସମ୍ପର୍କରେ ମନ୍ତ୍ରୀ ମହାଶୟ ଗୃହରେ ଭୁଲ୍ ତଥ୍ୟ ଉପସ୍ଥାପିତ କରିଛନ୍ତି । ମୁଁ ଏ ପ୍ରସଙ୍ଗରେ ଅନ୍ୟ ସ୍ଥାନମାନଙ୍କରେ କହିଛି । ମୁଁ ଆଜି ବି challenge କରୁଛି ଏହି 140 'C' type schoolକୁ 'A' typeରେ ପରିଣତ କରିବା ପାଇଁ 1 କୋଟି 70 ଲକ୍ଷ ଟଙ୍କା ଆବଶ୍ୟକ ହେବାକି ଯାହା କହିଛନ୍ତି ତାହା ଭୁଲ ତଥ୍ୟ । କେବଳ 10 ଲକ୍ଷ ଟଙ୍କା ଭିତରେ ଏହି 140ଟି 'C' type ସ୍କୁଲ 'A' type ହୋଇପାରିବ । Pay scaleର ଯଥା ଉପାତ ତାଙ୍କୁ ହିସାବ କଲେ ଏ 140ଟି ସ୍କୁଲର ଯେତେ ହେବେ ସେତିକି ଟଙ୍କା ଆମର ଆବଶ୍ୟକ ପଡ଼ିବ ।

ଏହି Secondary ସ୍କୁଲର ଗୋଟିଏ ପ୍ରଧାନ କଥା ରହିଗଲା ଶିକ୍ଷକର ନିରାପତ୍ତା । 20/25 ବର୍ଷ ଶିକ୍ଷକ କାମପରେ one month notice ଦେଇ ସେମାନଙ୍କୁ ବାହାର କରି ଦେଉଛନ୍ତି । ସେ ବିଷୟରେ ଗୋଟିଏ କେଶ୍ High Courtରେ ଅଛି, ମୁଁ ସେ ବିଷୟ କହିବାକୁ ଯାଉ ନାହିଁ । ଆଜି ସେ ଶିକ୍ଷକମାନଙ୍କ ପାଇଁ ଶିକ୍ଷାମନ୍ତ୍ରୀ ଶୃଙ୍ଖଳା ଓ ଆଚରଣବିଧି ପ୍ରଣୟନ କରି ତାଙ୍କର ସ୍ୱାଧୀନତାକୁ ଅପହରଣ କରୁଛନ୍ତି । ତାହା ଭିତରେ ଶିକ୍ଷକ ନିରାପତ୍ତା ରକ୍ଷା କରିବା ପାଇଁ ବ୍ୟବସ୍ଥା କରିଥାନ୍ତେ ତାହାହେଲେ ଧନ୍ୟବାଦର ପାତ୍ର ହୋଇଥାନ୍ତେ । ତା' ବଦଳରେ ଶିକ୍ଷକମାନଙ୍କୁ ଖାଇବାକୁ ନ ଦେଇ ତାଙ୍କ ପିଠିକୁ ମାଡ଼ ଖଣ୍ଡିବାର ବ୍ୟବସ୍ଥା କରୁଛନ୍ତି । ଏ ନୂଆ Education Code ଆପଣ ଦେଖିବେ ସେଥିରେ କେବଳ ଭର୍ତ୍ତି ହୋଇଛି । ଏଥିରେ Bihar, Orissa ଓ Madras Education Codeର କେତେକ ଅଂଶ ସଂଗୃହୀତ ହୋଇଅଛି। ତା'ଭିତରେ D. P. I.ଙ୍କ Circular ଭର୍ତ୍ତି କରାଯାଇଛି ଏବଂ ବ୍ୟବସ୍ଥା କରାଯାଇଛି ଯେ it cannot be used in any Court of Law, ଶୀଘ୍ର ଓଡ଼ିଶାର ଗୋଟିଏ Code ହେବ । ତାହା ଆସେମ୍ବ୍ଲିରେ ପାସ୍ ହୋଇ ଆଇନରେ ପରିଣତ ହେଉ । ତାହାହେଲେ ଶିକ୍ଷକମାନେ ତା'ଉପରେ ପୂର୍ଣ୍ଣ ନିର୍ଭର କରିପାରିବେ ।

*    *    *    *

ମାନ୍ୟବର ଉପବାଚସ୍ପତି ମହୋଦୟ, ସରକାରୀ ଓ ବେସରକାରୀ ସ୍କୁଲ ଶିକ୍ଷକମାନଙ୍କର ଏକମାତ୍ରାର ସମୀକରଣ ବିଷୟରେ ମୁଁ କହୁଛି । ଏହି ସମ୍ପର୍କରେ Committee on petitions Second Report, 1966 ପ୍ରତି ଆପଣଙ୍କର ମୁଁ ଦୃଷ୍ଟି ଆକର୍ଷଣ କରୁଛି । ସେହି କମିଟିରେ ଚେୟାରମ୍ୟାନ ଥିଲେ ଶ୍ରୀ ସୁନାରାମ ସୋରେନ ଏବଂ ସଭ୍ୟଥିଲେ ସର୍ବଶ୍ରୀ କାଳଗତ ଦୁଲିଆ, ରଘୁନାଥ ମାହାପାତ୍ର ଗାନ୍ଧିଗଣ ତ୍ରିଭୁବନ ଦେବ ଓ ପ୍ରସନ୍ନ କୁମାର ପାଳ । Petition No. 7 ହେଲ:—

"Petition No. 7—The petition (Appendix B) which was presented by Shri Achyutananda Mahananda, M.L.A. on the 9th December 1966 contains the following prayers, namely :—

(*i*) that the disparity in the scales of pay between the teachers of Government and Non-Government Aided Colleges should be removed ;

(*ii*) that the disparity in the rates of dearness allowance between the teachers of Government and Non-Government Aided College employees should also be removed".

ଉକ୍ତ କମିଟିର ସୁପାରିଶ ହେଲ ଯେ—

"The Committee feels that they do not find any reason as to why there should be any disparity in the scales of Pay of teachers of equal educational qualifications and merit and holding equal responsibility serving in Government and Non-Government Colleges".

ତା'ପରେ ଉପବାଚସ୍ପତି ମହୋଦୟ, ଆଜିକାଲି ପରୀକ୍ଷା ସମ୍ପର୍କରେ ବହୁତ କଥା ଶୁଣାଯାଉଛି । ଖବରକାଗଜରୁ ପଢିଥିବେ ପରୀକ୍ଷା ହଲରେ ନକଲ copy ହେଉଛି ଏବଂ ନକଲ ବନ୍ଦ କଲା ସୃଷ୍ଟି ହେଉଛି ସେଥିପାଇଁ ପୋଲିସ ଫୋର୍ସ ଆମଦାନୀ କରିବାକୁ ହେଉଛି । ବାହାର ଲୋକ ପରୀକ୍ଷା ହଲକୁ ଆସି ପିଲମାନଙ୍କୁ copy ଯୋଗାଇବା ଚେଷ୍ଟା କରୁଛନ୍ତି, ଯାହା ଫଳରେ ପରୀକ୍ଷାର ପ୍ରକୃତ ମୂଲ୍ୟ କିଛି ରହୁନାହିଁ । ଏଥିପାଇଁ ଆମର ପରୀକ୍ଷା ପଦ୍ଧତି ଭୁଲ । ବର୍ଷ ତମାମ ପିଲ ସ୍କୁଲ କ ନଯାଉ ସ୍କୁଲକୁ ଆସୁ କ ନଆସୁ ପରୀକ୍ଷା ବେଳକୁ ହଲକୁ ଆସି ଯଥାତଥା 30% ରଖିଦେଲେ ପାଶ୍ କରିଗଲ

ଏଥିପାଇଁ ନାନା ପ୍ରକାର copy ଇତ୍ୟାଦ ହେଉଛି । ମୋର ବ୍ୟକ୍ତିଗତ ଅଭିଜ୍ଞତାରୁ ମୁଁ ଏହା ଜାଣେ । ସେଥିପାଇଁ ଅନ୍ୟାନ୍ୟ ଦେଶପରି ଏଠାରେ ମଧ୍ୟ Progress cards ହିଆଯାଉ, periodical examination ହୁଅନ୍ତୁ, ଓ ଅନ୍ୟାନ୍ୟ class ପରୀକ୍ଷାର ଶତକଡ଼ା 40 ନମ୍ବର ଶେଷ ବାର୍ଷିକ ପରୀକ୍ଷା ନମ୍ବର ସହିତ ମିଶନ୍ତୁ। ତେବେ ମୁଁ ଭାବୁଛି ଏବେ ଯେଉଁ ସବୁ ଦୁର୍ନୀତି କଥା ଶୁଣାଯାଉଛି ତା ବନ୍ଦ ହୋଇପାରନ୍ତା ନଚେତ୍ ଯଦି ଏହି ପଦ୍ଧତିରେ ପରୀକ୍ଷା ଚାଲିବ, ଡାଠପଢ଼ା ଯଦି ପରୀକ୍ଷା ସର୍ବସ୍ୱହୋଇ ରହିଥିବ ଏମିତି ଦୁର୍ନୀତି ଚାଲିଥିବ, ଏହି ପରୀକ୍ଷା ହଲ ଭିତରେ O. M. P. ଫୋର୍ସ ରହିଲେ ପରୀକ୍ଷା ସୁରୁଖୁରରେ ହୋଇ ପାରିବ ନହେଲେ ନାହିଁ ।

ମାଧ୍ୟମିକ ଶିକ୍ଷା ବୋର୍ଡ ସଂପର୍କରେ କ'ଣ ବା କହିବି, ଖଜଣା ଗଛ ମୂଳରୁ ପାହାଚ ପାହାଚ ସବୁଠାରେ ଏଇଭଳି ଚାଲିଛି, ଆମର ଦାବୀ ଥିଲା ମାଧ୍ୟମିକ ଶିକ୍ଷା ବୋର୍ଡରେ ଶିକ୍ଷକଙ୍କ ପ୍ରତିନିଧି ଶତକଡ଼ା 50 ରହିବେ ଏବଂ ସେମାନେ ମାଧ୍ୟମିକ ଶିକ୍ଷା କାର୍ଯ୍ୟକ୍ରମରେ ଭାଗନେବେ । କିନ୍ତୁ ତା ହୋଇପାରିଲା ନାହିଁ । ବିଭିନ୍ନ ପ୍ରକାର ଲୋକଙ୍କୁ ନେଇ ତା ଭିତରେ ଭର୍ତ୍ତି କଲେ । ଯାହା ଫଳରେ ବୋର୍ଡର କାର୍ଯ୍ୟ କିପରି ଚାଲିଛି, ପରୀକ୍ଷା କିପରି ହେଉଛି ଆପଣ ଜାଣନ୍ତି । ଏପ୍ରିଲ ମାସର M. E. ପରୀକ୍ଷା ହେଲା । ବର୍ତ୍ତମାନ ସୁଦ୍ଧା ପରୀକ୍ଷା ଫଳ ବାହାରିନାହିଁ । ଜୁନଠୁ ସ୍କୁଲସବୁ ଖୋଲିଲଣି । କିନ୍ତୁ next higher classରେ admission ନେବାର ସୁଯୋଗ ଓ ପିଲାଙ୍କର ବର୍ତ୍ତମାନ ସୁଦ୍ଧା ନାହିଁ । ମୁଁ ଆଶା କରୁଛି ମାନ୍ୟବର ଶିକ୍ଷାମନ୍ତ୍ରୀ ବିଚାର କରିବେ, ଯେ ଏଇ ବୋର୍ଡକୁ ଭାଙ୍ଗି ଦେଇ ଏହାର ପୁନର୍ଗଠନ କରାଯାଉ, ଯେଉଁଥିରେ ଶତକଡ଼ା 50ରୁ ଅଧିକ ଶିକ୍ଷକ ପ୍ରତିନିଧି ରହିବେ ଏବଂ ଅନ୍ୟାନ୍ୟ ଶିକ୍ଷାବିତ୍ ରହିବେ । ନଚେତ୍ ଏ ବୋର୍ଡର କାର୍ଯ୍ୟ ଠିକ ଏଇଭଳି ଚାଲିଥିବ ।

D. P. I. Office ବିଷୟରେ ପ୍ରଶ୍ନ କହିବି । ମୁଁ ସବୁବେଳେ କହେ this is a wild Jungle ଅର୍ଥାତ ଅଗମ୍ୟ ଅରଣ୍ୟ ବନନ୍ତୁ । ଯଦି କୌଣସି କାଗଜ ସେ officeକୁ ଯାଏ ତାର ଜବାବ 15ଦିନ କାହିଁକି 15ମାସରେ ବି ଆସେନାହିଁ । ଆଉ କୁହାଯାଉ ଯେକୌଣସି କାଗଜର ଜବାବ 2ଦିନଭିତରେ ଦେବାକୁ ହେବ ନାହିଁ ହେଲେ ଆମ ଶିକ୍ଷାର ସମସ୍ତ ଅଗ୍ରଗତି ଯାହା ସହିତ D. P. I. ଅଫିସ ସମ୍ପୃକ୍ତ ତା ନିଶ୍ଚୟ ବ୍ୟାହତ ହେବ, ସନ୍ଦେହ ନାହିଁ ।

କଲେଜ ଶିକ୍ଷା ସଂପର୍କରେ ମୁଁ କିଛି କହିବାପାଇଁ ଯାଉଛି । 1964 ସୁଦ୍ଧା ଆମ ରାଜ୍ୟରେ 17ଟି ବେସରକାରୀ କଲେଜ ଖୋଲିଲଣି । ବର୍ତ୍ତମାନ ସୁଦ୍ଧା ସରକାର ସେଗୁଡ଼ିକୁ recognise କରିନାହାନ୍ତି । ମୁଁ ଏଠାରେ କୌଣସି ଉଦାହରଣ ଦେବି ।

ଏଇ କଲେଜମାନଙ୍କରେ N. C. C. Officer ଅଛନ୍ତି । Cadetମାନଙ୍କୁ dhobi allowance, tiffin allowance ଏବଂ dress ମିଳେ । କିନ୍ତୁ ଏଇ ଅଫିସର ମାନଙ୍କୁ କୌଣସି allowance ମିଳେନାହିଁ । ଯେତେବେଳେ ବୁଝାଯାଉଛି D. P. I. କହୁଛନ୍ତି these colleges do not come under the provision of given recurring or non-recurring grant. ତେଣୁ ସେଇ 17ଟି କଲେଜ ମୋଟେ ସ୍ୱୀକୃତ ପାଉନାହାନ୍ତି । U. G. C. ଯେଉଁ ଦରମାହାର ସୁପାରଶ କରିଛନ୍ତି, ସେଇ ଦରମା ସରକାରୀ ଓ ବେସରକାରୀ କଲେଜ ଲେକଚରରମାନଙ୍କୁ ଦେବା ନହାତ ଦରକାର । ମନ୍ତ୍ରୀ ମହୋଦୟ କହିଲେ ଆମେ 5ବର୍ଷ ପର୍ଯ୍ୟନ୍ତ ଦେବୁ । ତା'ପରେ ଯଦି U.G.C. ବନ୍ଦକଲେ କ'ଣ କରିବା ? କିନ୍ତୁ ମନେରଖିବାକୁ ହେବ ପ୍ରତି 5 ବର୍ଷରେ ଥରେ Finance କମିଶନ ବସେ ଏବଂ ଆମେ U. G. C. ହାରରେ ଦରମା ଦେଲେ ଫାଇନାନ୍ସ କମିଶନ ନିଶ୍ଚୟ ତା ବିଷୟରକୁ ନେବେ ଏବଂ ଆମର ଅଭାବ ପୂରଣ କରିବେ ।

ଦୁଇଟି ବିଶ୍ୱବିଦ୍ୟାଳୟ ନୂଆକରି ହେଲା । ନିର୍ବାଚନରେ ପ୍ରତିଶ୍ରୁତ ଦିଆଯାଇଥିଲା establishment/expansion of University ଏହା ହେଉଛି ତେବେ ଦ୍ୱାଦଶ ଅଂଶ । ସମ୍ବଲପୁର ବିଶ୍ୱବିଦ୍ୟାଳୟ ବା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ହେଉ କେଉଁଠି ହେଲେ teaching, research ଇତ୍ୟାଦିର ବ୍ୟବସ୍ଥାନାହିଁ କେବଳ ପରୀକ୍ଷା । ପ୍ରଥମେ ଉତ୍କଳ ୟୁନିଭରସିଟି inefficiently ଚାଲୁଥିଲା । ବର୍ତ୍ତମାନ 3ଟିଯାକ ବିଶ୍ୱବିଦ୍ୟାଳୟ inefficiently ଚାଲିବ ।

ଶେଷରେ ସୈନିକ ସ୍କୁଲ ସଂପର୍କରେ ପଦେ କହିବି । ସମସ୍ତେ ଜାଣନ୍ତି ଏହା କେନ୍ଦ୍ର ସରକାରଙ୍କର ଗୋଟିଏ ଅନୁଷ୍ଠାନ କିନ୍ତୁ ଏହା ଗୋଟିଏ ଅଟୋନମସ୍ ବଡ଼ି ଏବଂ ସୈନିକ ସ୍କୁଲ ସୋସାଇଟିଦ୍ୱାରା ପରିଚାଳିତ । ପ୍ରିନ୍ସପାଲଙ୍କ ହାତରେ ସବୁ କ୍ଷମତା ଦିଆଯାଉଛି । ଶିକ୍ଷକ ନିଯୁକ୍ତ କରିବାପାଇଁ ଗୋଟିଏ କମିଟି ଥାଇଲେହେଁ ପ୍ରିନ୍ସପାଲ ସର୍ବେସର୍ବା । ମାସେ ନୋଟିସଦେଇ ଯାହାକୁ ଇଚ୍ଛା ତାକୁ ବାହାର କରିଦେଇ ପାରିବେ । 1962ରୁ ଆଜିପର୍ଯ୍ୟନ୍ତ 58ଜଣ ଶିକ୍ଷକ ସ୍କୁଲ ଛାଡ଼ିଦେଲେଣି ବା ତାଙ୍କୁ ବାହାରକରି ଦିଆଯାଇଛି । ଡେରାଡୁନ୍ ଓ କିଂ ଜର୍ଜସ୍କୁଲ ଇତ୍ୟାଦି ମିଲିଟାରୀ ଏକାଡେମୀରେ ସିଭିଲିଆନ ପ୍ରିନ୍ସିପାଲ ଥିଲେହେଁ ଏପରିକି A. I. M. A. ମିଲିଟାରୀ ଇନଷ୍ଟିଚ୍ୟୁଟରେ ସିଭିଲିଆନ୍ ପ୍ରିନ୍ସିପାଲ ଥାଇଲେହେଁ ଏଠାରେ ଜଣେ ମିଲିଟାରୀ ପ୍ରିନ୍ସିପାଲ କାହିଁକି ଅଛନ୍ତି ମୁଁ ବୁଝିପାରୁନାହିଁ । ରାଜ୍ୟ ସରକାର ସେ ସ୍କୁଲକୁ ଟଙ୍କା ଦିଅନ୍ତି । ତେଣୁ ତାହାର ସୁପରିଚାଳନା ପାଇଁ ଦୃଷ୍ଟି ଦେବା ଦରକାର ।

ମୂକ, ବଧିର ସ୍କୁଲରେ seat ବଢ଼ାଯାଉନାହିଁ । Seat ପାଇବା ଲାଗି 10 ବର୍ଷ ହେଲା ପିଲାମାନେ ବସିଛନ୍ତି । ବ୍ରହ୍ମପୁରରେ ମୋର ଜଣେ ଲୋକ 4 ବର୍ଷ ହେଲା seat ପାଇନାହିଁ, ତେଣୁ ମୋର ଅନୁରୋଧ ସେଠାରେ seat ସଂଖ୍ୟା ବଢ଼ାଯାଉ ।

## ଶିକ୍ଷା ବିଭାଗ ଖର୍ଚ୍ଚ ଦାବୀ ସଂକ୍ରାନ୍ତରେ ଆଲୋଚନା
## 11-12-1967

(ବ୍ରହ୍ମପୁର) : ଉପ ବାଚସ୍ପତି ମହାଶୟ, ବର୍ତ୍ତମାନ ଏ ଗୃହରେ ମାନ୍ୟବର ଶିକ୍ଷାମନ୍ତ୍ରୀ ଯେଉଁ ଅତିରିକ୍ତ ଖର୍ଚ୍ଚ ଦାବୀ ଉପସ୍ଥାପିତ କରିଛନ୍ତି ମୁଁ ତା'ର ବିରୋଧ କରୁଛି । ଆମ୍ଭମାନଙ୍କର ସୌଭାଗ୍ୟ କି ଦୁର୍ଭାଗ୍ୟ ଗତ 9/10 ମାସ ଭିତରେ ଆମେ 2 ଜଣ ଶିକ୍ଷା ମନ୍ତ୍ରୀଙ୍କୁ ଦେଖିବାକୁ ପାଇଲୁ ନାହିଁ । ଜଣେ ଶିକ୍ଷା ମନ୍ତ୍ରୀ ଥିଲେ ଗଲେ । ବର୍ତ୍ତମାନ ଆଉଜଣେ ଶିକ୍ଷା ମନ୍ତ୍ରୀ ଆସିଲେ ସେ ଜଣେ ଯୁବକ । ଆଶା କରାଯାଉଥିଲା ଶିକ୍ଷାର ଆଭିମୁଖ୍ୟ ବଦଳିବ ଓ ସେ କୋଟିଏ ନୂତନ ପଦକ୍ଷେପ ନେବେ । କିନ୍ତୁ ଗତିବିଧିରୁ ଜଣାଗଲା ଯେ old wine in a new bottle. ପରିବର୍ତ୍ତନର କୌଣସି ଲକ୍ଷଣ ଦେଖାଗଲାନାହିଁ । ଆପଣ ଲକ୍ଷ୍ୟ କରିଥିବେ ତଳ ସ୍ତରର ଛୋଟେଇ ହେଲା ଓ ଉପର ସ୍ତରରେ ସଂଖ୍ୟା ବଢ଼ିଲା । ଉପରିସ୍ଥ ହାକିମଙ୍କ ସଂଖ୍ୟା ବଢ଼ିଲା । ଜଣେ ଅତିରିକ୍ତ D. P. I. ପ୍ରାଇମେରୀ ଶିକ୍ଷାପାଇଁ ନିଯୁକ୍ତ ହେଲେ । ସେଥିପାଇଁ ଯେଉଁ ଖର୍ଚ୍ଚ ଦାବୀ ଆଗତ ହୋଇଛି ମୁଁ ତା'ର ବିରୋଧ କରୁଛି, ଜଣେ D. P. I. ଥିଲେ, ଜଣେ ଅତିରିକ୍ତ D. P. I. ଥିଲେ ଓ ଜଣେ D. D. P. I. ଥିଲେ । ଏହା ପରେ ପ୍ରାଇମେରୀ ଶିକ୍ଷାପାଇଁ ଆଉ ଜଣେ D. P. I.ଙ୍କର ଆବଶ୍ୟକତା ନାହିଁ । ମୋର ସ୍ପଷ୍ଟ ମତ ହେଉଛି ଜଣେ D. D. P. I. Primary Education ଦାୟିତ୍ୱରେ, ଆଉଜଣେ Secondary ଦାୟିତ୍ୱରେ ରହିଲେ କାମ ଚଳିବ । ଜଣେ D. P. I. ଉପରେ ରହି ଏ ସବୁ ବିଷୟ Co-ordinate ନକଲେ ଶିକ୍ଷା କ୍ଷେତ୍ରରେ ବିଭ୍ରାଟ ଉପୁଜିବା ଛଡ଼ା ଆଉ କିଛି ହେବନାହିଁ ।

ବର୍ତ୍ତମାନ Primary ଶିକ୍ଷା କ୍ଷେତ୍ରରେ ପରିବର୍ତ୍ତନ କିଛି ହୋଇନାହିଁ । ଯାହା ଦେଖାଯାଉଛି କେବଳ D.A. ଦେବାରେ ପାତର ଅନ୍ତର ଭାବ ଆଜିସୁଦ୍ଧା ଦୂର ହୋଇନାହିଁ । ତା'ର କାରଣ ଯେଉଁ Primary ଶିକ୍ଷକମାନେ ସରକାରୀ ପରିଚାଳିତ ସ୍କୁଲରେ ଅଛନ୍ତି ସେମାନେ ଯେଉଁ ହାରରେ ମହଙ୍ଗା ଭତ୍ତା ପାଉଛନ୍ତି ବେସରକାରୀ primary ଶିକ୍ଷକମାନେ ସେ ହାରରେ ମହଙ୍ଗା ଭତ୍ତା ପାଉନାହାନ୍ତି । ଗତଥର ବଜେଟ ଅଧିବେଶନରେ ଏକଥା କୁହାଯାଇଥିଲା । ଆଶା କରାଯାଉଥିଲା ଏ ରାଜ୍ୟର ସମସ୍ତ Primary ଶିକ୍ଷକମାନଙ୍କର ମହଙ୍ଗା ଭତ୍ତା ସମାନ ହେବ । କିନ୍ତୁ ଦୁଃଖର କଥା ତା' ହୋଇପାରି ନାହିଁ । ମହଙ୍ଗା ଭତ୍ତା ଏକଳି ପାତର ଅନ୍ତର ହେବା ଘୋର ଅନ୍ୟାୟ ଏବଂ ମହା ପାପ ମଧ୍ୟ । କାରଣ D. A. is common to all. ସମସ୍ତଙ୍କୁ ସମାନ ଭାବରେ ମହଙ୍ଗା ବାଧୁଛି । ତେଣୁ ସରକାରୀ ସ୍କୁଲ ଶିକ୍ଷକ ଅଧିକ ପାଇବେ, ବେସରକାରୀ ସ୍କୁଲ ଶିକ୍ଷକ କମ ପାଇବେ ଏଥିରେ କୌଣସି ଯୁକ୍ତିଯୁକ୍ତତା ନାହିଁ । ମୁଁ ଆଶା କରୁଛି ମାନ୍ୟବର ମନ୍ତ୍ରୀ ଏଥିପ୍ରତି ଦୃଷ୍ଟି ଦେବେ ଏବଂ ସମସ୍ତ Primary ସ୍କୁଲ ଶିକ୍ଷକମାନଙ୍କୁ ମହଙ୍ଗା ଭତ୍ତା ସମାନଭାବେ ଦେବେ ।

ବର୍ତ୍ତମାନ ଆମ ସରକାର ଯେଉଁ ଅତିରିକ୍ତ ମହଙ୍ଗା ଭତ୍ତା ଦେବାପାଇଁ ଘୋଷଣା କଲେ ତାଦ୍ୱାରା ଯେପରି ସରକାରୀ କର୍ମଚାରୀଙ୍କ ମଧ୍ୟରେ ବିଭେଦ ସୃଷ୍ଟି ହୋଇପାରିବ ସେ ଉଦ୍ଦେଶ୍ୟରେ କରିଛନ୍ତି । ଆଜି ସେ ଉଦ୍ଦେଶ୍ୟ ସଫଳ ହୋଇଛି । ସେ ମହଙ୍ଗା ଭତ୍ତା ଘୋଷଣାର ମୁଁ ବିରୋଧ କରୁଛି । ଯେଉଁ ପରିମାଣ ମହଙ୍ଗା ଭତ୍ତା ସରକାରୀ କର୍ମଚାରୀମାନଙ୍କୁ ଦିଆଯିବ ସେହି ହାରରେ ସରକାରୀ ବେସରକାରୀ ହାଇସ୍କୁଲ, ପ୍ରାଥମିକ ସ୍କୁଲ ଶିକ୍ଷକମାନଙ୍କୁ ଦିଅଯିବ । ବେସରକାରୀ ଅନୁଷ୍ଠାନ, Local Body ଅନୁଷ୍ଠାନ ଇତ୍ୟାଦିରେ ଯେଉଁମାନେ ଚାକିରି କରୁଛନ୍ତି ସେମାନଙ୍କୁ ମଧ୍ୟ ଏ ମହଙ୍ଗା ଭତ୍ତା ତୁରନ୍ତ ଦିଆଯାଉ । ସରକାର ଯଦି ସାରୁଥିବେ 3/4 ମାସ ଗଡ଼ିଗଲେ ଟଙ୍କା କିଛି ବଳିବ, ଏହା ହୃଦୟହୀନତା ଛଡ଼ା ଆଉ କିଛିନୁହେଁ । ଯେଉଁ ଦିନଠାରୁ ସରକାରୀ କର୍ମଚାରୀଙ୍କ ପାଇଁ ମହଙ୍ଗା ଭତ୍ତା ଘୋଷଣା କରାଗଲା. ଦେବାର ସ୍ଥିର ହେଲା, ସେହିଦିନଠାରୁ ବେସରକାରୀ ସଂସ୍ଥାମାନଙ୍କରେ ଚାକିରୀ କରୁଥିବା ସମସ୍ତ କର୍ମଚାରୀମାନଙ୍କୁ ମହଙ୍ଗା ଭତ୍ତା ଲାଗୁହେଉ । ଲାଗୁ ନ ହେବାର କୌଣସି କାରଣ ନାହିଁ ।

Age of retirement of Primary School teachers ବିଷୟରେ ସ୍ପଷ୍ଟ ନୀତି ସରକାର ବସ୍ଥାନ କରିବା ଦରକାର । ଶୁଣାଯାଉଛି ଯେଉଁମାନେ untrained ସେମାନେ 58 ବର୍ଷରେ ଯେଉଁମାନେ trained teacher ସେମାନେ 60 ବର୍ଷରେ retire କରିବେ । ଏହାର ଯୁକ୍ତିଯୁକ୍ତତା କିଛି ନାହିଁ । Untrained teacherମାନଙ୍କୁ ଟ୍ରେନିଂ ଦେବାକୁ ହେବ । ସେମାନଙ୍କର ଯଦି ଆଉ 10/15 ବର୍ଷ service ଥାଏ ତାହେଲେ ସେମାନଙ୍କୁ trained teacher ବୋଲି ଗଣ୍ୟ କରାଯାଇ ସମସ୍ତଙ୍କର retirement date ଗୋଟିଏ କରାଯିବା ଉଚିତ । ଏଥିରେ ପାତର ଅନ୍ତର ଭାବ ଅନ୍ୟାୟ ବୋଲି ବିବେଚନା କରୁଛି ।

ସେକେଣ୍ଡାରୀ ଏଡ଼ୁକେଶନ ସମ୍ପର୍କରେ ମୁଁ ଏତିକି କହିବି ସରକାର ଆମ ପ୍ରଦେଶର ଗଞ୍ଜାମ, କୋରାପୁଟରେ ଯେଉଁ High School ଶିକ୍ଷକମାନେ ଅଛନ୍ତି ସେମାନଙ୍କର ସମସ୍ୟା ଏପର୍ଯ୍ୟନ୍ତ ସମାଧାନ ହୋଇ ପାରିନାହିଁ । ସେମାନଙ୍କ ପ୍ରତିନିଧି ଆମ୍ଭଠାରେ ଶିକ୍ଷା ମନ୍ତ୍ରୀଙ୍କୁ ଏ ବିଷୟରେ ଭେଟିଥିଲେ । ସେତେବେଳେ ଶିକ୍ଷା ମନ୍ତ୍ରୀ ସେମାନଙ୍କୁ କହିଲେ ଅଳ୍ପ ଦିନ ହେଲା ସେ କ୍ଷମତାକୁ ଆସିଛନ୍ତି ତେଣୁ ଏ ସମସ୍ୟା ବିଷୟରେ ତାଙ୍କୁ ବିଶେଷ ଜଣାନାହିଁ । ସମସ୍ତ ବିଷୟ ଅଧ୍ୟୟନ କଲାପରେ ଏହାର ସମାଧାନ କରିବାପାଇଁ ଚେଷ୍ଟା କରିବେ, କିନ୍ତୁ 2/3 ମାସ କଟି ଯାଇଥିଲେ ମଧ୍ୟ ସେ ସମସ୍ୟା ସେହିପରି ରହିଛି । ଏ ଏକ ବହୁଦିନର ପୁରୁଣା ସମସ୍ୟା । ଏହାର ତୁରନ୍ତ ସମାଧାନ ହେବା ଦରକାର । ସେଥିପାଇଁ ଆବଶ୍ୟକ ହେଲେ ସେମାନଙ୍କ ପ୍ରତିନିଧି ଓ ଶିକ୍ଷା ମନ୍ତ୍ରୀ ବସି ତାର ଗୋଟିଏ ମୀମାଂସା କରିବା ଦରକାର ।

ତା'ପରେ କଲେଜ ଶିକ୍ଷା ସମ୍ପର୍କରେ ମୁଁ ଏଠାରେ କହିବି କଲେଜମାନଙ୍କର ଯେଉଁ ପ୍ରଫେସର, ଲେକଚରର ରହିଛନ୍ତି ସେମାନଙ୍କୁ U. G. C. pay scale ଦିଆଯାଉ। ତାହିଁକି ଯେ ଏପର୍ଯ୍ୟନ୍ତ ଦିଆ ନଯାଉଛି ତାର କିଛି କାରଣ ଜଣାନାହିଁ। ଗତ ବଜେଟ ଅଧିବେଶନରେ ଏକଥା କୁହାଯାଇଥିଲା। U. G. C. recommended pay scale ଆମ ସରକାର ଗ୍ରହଣ କଲେ। U. G. C. 80% ବହନ କରିବେ, ବାକି 20% ରାଜ୍ୟ ସରକାର contribution ଦେବେ। ମୁଁ ଆଶା କରୁଛି ମାନ୍ୟବର ମନ୍ତ୍ରୀ ଏଥିପ୍ରତି ଦୃଷ୍ଟି ଦେବେ। ଏ ଦିଗରେ ତେର ବର୍ଷ ଏବଂ ଏ ମଧ୍ୟରେ ବହୁତ ଷ୍ଟେଟ୍ U. G. C. pay scale ଗ୍ରହଣ କରି ସାରିଲେଣି।

ଆମର ଓଡ଼ିଶାରେ ଆଜି 2ଟି University ହେଲା, କିନ୍ତୁ ତାଙ୍କୁ କିପରି ଠିକ୍ ଭାବେ ପରିଚାଳନା କରାଯିବ, କିପରି ସେଠାରେ teaching ଏବଂ research କାମ କରିପାରିବ ଏକଥା କେମାନେ ଚିନ୍ତା କରୁଯାଉନାହିଁ। ଏ ଦୁଇଟି University ଏପର୍ଯ୍ୟନ୍ତ U. G. C.ରୁ recognition ପାଇପାରିନାହିଁ। ଏଥିପାଇଁ ଆମର ଉଦ୍ୟମର ଅଭାବ ବୋଲି ମୁଁ ଭାବୁଛି। ଆମର ବିଶ୍ୱରେ ଯେଉଁ ପାର୍ଲିଆମେଣ୍ଟ ସଭ୍ୟମାନେ ଅଛନ୍ତି ସେମାନେ ତାଙ୍କ ଦ୍ୱାରା ପ୍ରଭାବ ପକାଇ ଏ କାର୍ଯ୍ୟ କରିବା ଦରକାର ଏବଂ ସେମାନଙ୍କ ଜରିଆରେ ସେଥିପାଇଁ ସୁସ୍ଥ ବାୟୁମଣ୍ଡଳ ସୃଷ୍ଟି କରାଯାଇ କେନ୍ଦ୍ରର ବୋର୍ଡଙ୍କ ଉପରେ ଚାପ ପକାଇବା ଦରକାର। Recognisation Grant ନ ହେବା ଫଳରେ ଏ ଦୁଇ University ରେ ଯେଉଁ ଅଚଳ ଅବସ୍ଥା ସୃଷ୍ଟି ହୋଇଛି, ତାକୁ ଶୀଘ୍ର ଦୂର କରିବା ପାଇଁ ଚେଷ୍ଟା କରିବା ଉଚିତ୍। ଏ ଦିଗରେ ସରକାରଙ୍କର ଚିନ୍ତା ନ ଥିବା ମନେହୁଏ। ଯଦି ଫଳରେ ଯେ University ମାନଙ୍କରେ teaching ଏବଂ research provision କରିବା ଆବଶ୍ୟକ ହେଲେ ବାହାରୁ ଶିକ୍ଷାବିତ୍‌ମାନଙ୍କୁ ଆଣିବା ଉଚିତ୍। ଏଥିରେ ଓଡ଼ିଆ ଅଣଓଡ଼ିଆର ବିଚାର କଥା ନାହିଁ। ଯେଉଁ expertମାନେ ବାହାରେ ଅଛନ୍ତି ସେମାନଙ୍କୁ Universityରେ ଆଣି ପ୍ରଫେସର, ରିସର୍ଚ୍ଚ କାର୍ଯ୍ୟରେ ଲଗାଯାଇ ପାରିଲେ, ଯେଉଁ ଉଦ୍ଦେଶ୍ୟରେ ଦୁଇଟି University ସ୍ଥାପନ କରାଯାଇଛି ସେ ଉଦ୍ଦେଶ୍ୟ ବା ଲକ୍ଷ୍ୟ ସାଧିତ ହୋଇପାରିବ।

ବ୍ରହ୍ମପୁର ଇଉନିଭରସିଟି ପାଇଁ Land acquisition କରିବା ନାମରେ ସରକାର ଯେଉଁ ଟଙ୍କା ନ ଦେଇଛନ୍ତି ତା' ହେଲେ ଆଉ ଜମି ମିଳିବ ନାହିଁ। ଜମିର ମୂଲ୍ୟ ବଢ଼ିଯିବ। ଇଉନିଭରସିଟି ଆଉ ଜମି କିଣି ପାରିବ ନାହିଁ। ସେଥିପାଇଁ ଇଉନିଭରସିଟି ତରଫରୁ ଯେଉଁ ଯୋଜନା ଦିଆଯାଇଛି Land acquire କରିବାପାଇଁ ସରକାର ଟଙ୍କା ଦେବା ଉଚିତ୍। ଖଲିକୋଟ କଲେଜରେ D. Ed. ଶ୍ରେଣୀ ଖୋଲିବା ସମ୍ପର୍କରେ ସରକାର

ଯେଉଁ ଦେ ମାତ୍ରକ ଗ୍ରବ ଦେଖାଉଛନ୍ତି, ମୁଁ ବୁଝେଁ ଗଞ୍ଜାମର ସମସ୍ତ M. L. A. ମର୍ମାହତ । ଅନ୍ୟାନ୍ୟ ଠାରେ ଆଜ ପର୍ଯ୍ୟନ୍ତ ଷ୍ଟାଇପେଣ୍ଡର ବ୍ୟବସ୍ଥା କରାଯାଉଛି, କିନ୍ତୁ ଅନ୍ୟାନ୍ୟ ଆଜ ଦେଖାଇ ସେଠାରେ ଛାତ୍ରମାନଙ୍କୁ ଷ୍ଟାଇପେଣ୍ଡରୁ ବଞ୍ଚିତ କରାଯିବାର କୌଣସି କାରଣ ନାହିଁ । ସେମାନେ 62 ଶିକ୍ଷକଙ୍କୁ ଟ୍ରେନିଂ ଦେଇ ବାହାରକୁ ପଠାଇ-ଥିଲେ । ଯେଉଁମାନେ କି ସରକାରୀ ବେସରକାରୀ ସ୍କୁଲରେ କାର୍ଯ୍ୟ କରୁଛନ୍ତି । ଏହା ସତ୍ତ୍ୱେ ସରକାର ଷ୍ଟାଇପେଣ୍ଡ ନ ଦେବାର କାରଣ କିଛି ବୁଝାଯାଉନାହିଁ । ତୁରନ୍ତ D. Ed. ଛାତ୍ରଙ୍କୁ ଷ୍ଟାଇପେଣ୍ଡ ଦେବା କରାଯାଉ ।

## ଓଡ଼ିଶା ଶିକ୍ଷା ବିଧେୟକ ସଂକ୍ରାନ୍ତରେ ଆଲୋଚନା

5-12-1968

ଉପବାଚସ୍ପତି ମହାଶୟ, ବହୁଦିନର ଆକାଂକ୍ଷିତ Orissa Education Bill ଏ ଗୃହରେ ଉପସ୍ଥାପିତ ହୋଇଛି । ତା ସଙ୍ଗେ ସଙ୍ଗେ ସିଲେକ୍ଟ କମିଟିକୁ ପଠାଇବାକୁ ମନ୍ତ୍ରୀ ମହାଶୟ ପ୍ରସ୍ତାବ କରିଛନ୍ତି । ଖାଲି କେବଳ ସେତିକି ନୁହେଁ । ଗତକାଲି ମନ୍ତ୍ରୀ ମହାଶୟ ସକାଳ ୧୦ଟା ବେଳେ ଆମକୁ ଡାକିଥିଲେ ଏବଂ କହିଲେ ଯଦି ସୁବିଧା ହୁଏ ଏହି ସେସନରେ ବିଲକୁ ପାଶ୍ କରିଦେବା ।

*　　　*　　　*　　　*

କେତେକ ମେମ୍ବର ଯେଉଁ ପ୍ରସ୍ତାବ କଲେ ସେଥିରେ member-in-chargeଙ୍କର ଯଦି ଦୃଢ଼ବୋଧ ହୋଇ ନଥାନ୍ତା ତାହାହେଲେ ଏ ପ୍ରସ୍ତାବ ଆସିନଥାନ୍ତା । High Court ଯେଉଁ decision ଦେଇଛନ୍ତି ସେ ଦୃଷ୍ଟିରୁ ତରବରରେ ଏ ବିଲକୁ ପାଶ୍ କରିବା ଉଚିତ୍ ନୁହେଁ । ମୁଁ ମନ୍ତ୍ରୀ ମହାଶୟଙ୍କୁ କହିଥିଲି ଯେଉଁ transfer ହୋଇଛି ସେସବୁ ଦେଖାଇବ । ଯଦି transfer କରିବା ପୂର୍ବରୁ ସାବଧାନତାର ସହିତ ବିଚାର କରିଥାନ୍ତେ ଏ ପରିସ୍ଥିତି ସୃଷ୍ଟି ହୋଇନଥାନ୍ତା । କେବଳ ମାଡ୍ରାସ ଓ କେରଳରେ Education Act ଅଛି । ତା' ଛଡ଼ା ଅନ୍ୟ ରାଜ୍ୟମାନଙ୍କରେ Code ଓ Executive Orderରେ କାର୍ଯ୍ୟ ଚାଲିଛି । ଏ ବିଲ୍‌କୁ ସାବଧାନତାର ସହିତ କରିବାର ଥିଲା । ବର୍ତ୍ତମାନ ଏ ବିଲ୍‌ର ଯେଉଁ ଦଫା ସବୁ ଅଛି, ଆମ ରାଜ୍ୟରେ ଶିକ୍ଷାକ୍ଷେତ୍ରରେ ଯେଉଁ ସମସ୍ୟା ସବୁ ଦେଖା ଦେଇଛି, ସେ ସମସ୍ୟା ଏହାର ପରିସର ଭିତରେ ଆସୁନାହିଁ । ଯେଉଁ ସମସ୍ୟା ସବୁ ନେଇ ମନ୍ତ୍ରୀ ମହୋଦୟ ବିଚଳିତ ଓ ଏ ରାଜ୍ୟର ଶିକ୍ଷାବିତ୍‌ମାନେ ବିଚଳିତ ତାକୁ ଏ ଶିକ୍ଷା ବିଲ୍‌ର ପରିସର ଭିତରକୁ ଆଣି ଏହାର କଳେବର ବୃଦ୍ଧି କରି ଯଦି ଏହାକୁ ଉପସ୍ଥାପିତ କରାଯାଇଥାନ୍ତା, ମୁଁ ଭାବୁଛି ଭଲ ହୋଇ ଥାଆନ୍ତା । ସେ ଦୃଷ୍ଟିରୁ ଯେଉଁ ସଭ୍ୟମାନେ ଏଇ Education Billକୁ ସରକାର ପ୍ରତ୍ୟାହାର କରିନିଅନ୍ତୁ ବୋଲି

କହିଛନ୍ତି ମୁଁ ତାଙ୍କସହିତ ଏକମତ ହୋଇ ତାବି କରୁଛି ଯେ ଏ Billକୁ ପ୍ରତ୍ୟାହାର କରି ଗୋଟିଏ ପୂର୍ଣ୍ଣାଙ୍ଗ Bill ଆଗତ କରନ୍ତୁ । ଏଥିରେ ଆମ ସରକାରର ବିଶେଷ କିଛି ଅସୁବିଧା ହେବ ନାହିଁ । Billଟି ଥରେ ଉପସ୍ଥାପିତ କରିଦେଲେ ପୁଣି ଏହାକୁ କିପରି ପ୍ରତ୍ୟାହାର କରିବେ ଏ legality ଉପରେ ଚିନ୍ତା କରିହୋଇ ମନ୍ତ୍ରୀ ମହୋଦୟ ଯଦି ଏହାକୁ ପ୍ରତ୍ୟାହାର କରି ନେଇ ଆସନ୍ତା ବିଧାନ ସଭା ଅଧିବେଶନରେ ଗୋଟିଏ ପୂର୍ଣ୍ଣାଙ୍ଗ Bill ଉପସ୍ଥାପନ କରନ୍ତେ ଭଲ ହୁଅନ୍ତା । ଆପଣ ଜାଣନ୍ତି ସରକାରୀ ଅନୁଷ୍ଠାନମାନଙ୍କ ପ୍ରତି ଏ ଆଇନ ପ୍ରଯୁଜ୍ୟ ହେବନି । ତା' ହେଲେ ସରକାରୀ ଅନୁଷ୍ଠାନ ଯେଉଁ ଅଛି, ତାଙ୍କପାଇଁ କୌଣସି ଆଇନ ରହିଲା ନାହିଁ । ଦେଶରେ ଯେଉଁ ତକ ବେସରକାରୀ ଅନୁଷ୍ଠାନ ଅଛି. ମୁଁ ଆପଣଙ୍କୁ ଗୋଟିଏ ଉଦାହରଣ ଦେଉଛି, ଗୋଟିଏ ଆଦିବାସୀ ଅଞ୍ଚଳର ସରକାର High School କରିବାକୁ ଗ୍ରହିଲେ । ଯେଉଁ M. E. School ଥିଲା ତାକୁ upgrade କରିଗଲା, class VIII, IX, X ଏ ସବୁର recognition ପାଇଁ ସେ କେଉଁଠିକୁ ଦରଖାସ୍ତ କରିବେ, କଣ କରିକେ କିପରି ଭାବରେ ସେ recognition ପାଇଁ ପାଇବେ, ଯାହାକି ବେସରକାରୀ ଅନୁଷ୍ଠାନମାନଙ୍କ ପ୍ରତି ପ୍ରଯୁଜ୍ୟ । ତାହା ସେମାନଙ୍କ ପ୍ରତି ପ୍ରଯୁଜ୍ୟ ବୋଲି ସେମାନେ କେମିତି ଜାଣିବେ ? ସେଥିପାଇଁ ଆପଣ ଦେଖିବେ, Madras Actରେ କୌଣସି ତାରତମ୍ୟ ବା ବାଛ ବିଚାର ନାହିଁ । Government Institution ହେଉ ଅଥବା ବା ବେସରକାରୀ ଅନୁଷ୍ଠାନ ହୋଇଥାଉ ସବୁ ଅନୁଷ୍ଠାନ ପ୍ରତି ଗୋଟିଏ ଆଇନ ପ୍ରଯୁଜ୍ୟ । ଆଇନର preamble ପରେ establishment, management and control of Educational Institutions ଇତ୍ୟାଦି ଯାହା ରହିଛି, ସେଥିରୁ ଜଣାଯାଉଛି, ଯେମିତି Educational Institution କହନ୍ତେ, ସରକାରୀ, ବେସରକାରୀ ସବୁ ଶିକ୍ଷାନୁଷ୍ଠାନ ତା ଭିତରେ ଆସିଯାଉଛି । କିନ୍ତୁ ଏକ୍ଷେତ୍ରରେ ତାହାନୁହେଁ । ଏଥିରେ ଯେତେ clause ଅଛି ସବୁଯାକ ବେସରକାରୀ ସ୍କୁଲ ନିମନ୍ତେ ପ୍ରଯୁଜ୍ୟ । ବାସ୍ତବିକ୍ ସଦସ୍ୟମାନେ ଏଥିରେ ଯେଉଁ ଆଶଙ୍କା ପ୍ରକାଶ କରିଛନ୍ତି ଯେ ରାଜନୈତିକ ଦୃଷ୍ଟିକୋଣରୁ କେତେକ ଅନୁଷ୍ଠାନକୁ ସରକାର ହାତକୁ ନେବାକୁ ଗ୍ରହୁଁଛନ୍ତି ଏବଂ ସେ ଦୃଷ୍ଟିରୁ ଏହା ହୋଇଛି, ମୁଁ ତ ଭାବୁଛି କେତେକାଂଶରେ ତାହା ସତ୍ୟ । ଆଜି ଅଞ୍ଚଳର କେତେ ଅନୁଷ୍ଠାନ ଅଛି ଯେଉଁଥିରେ କେତେ ଅସୁବିଧା ଅଛି, ଏଭଳି ଅନୁଷ୍ଠାନକୁ ହାତକୁ ନେବାପାଇଁ ଯଦି ଗୋଟିଏ Bill ହୋଇଥାଏ, ମୁଁ ତ କହିବି ସେ ଅନୁଷ୍ଠାନକୁ ସହଜରେ ଆଣିପାରିବେ । ତା' ପାଇଁ ଏତେ ବଡ Bill ଟିଏ ଆଗତ କରିବାର କୌଣସି ଆବଶ୍ୟକତା ନାହିଁ । ସରକାର ଇଚ୍ଛା କଲେ ଯେ କୌଣସି ଅନୁଷ୍ଠାନକୁ ହାତକୁ ନେଇ ପାରିବେ । ମାନ୍ୟବର ସଭ୍ୟମାନେ ତ କହିଛନ୍ତି ଶହ ଶହ ଅନୁଷ୍ଠାନର Managing Committee ସରକାରଙ୍କୁ ଅନୁଷ୍ଠାନ ଦେଇ ଦେବାପାଇଁ ପ୍ରସ୍ତୁତ ଅଛନ୍ତି । କଥାରୁ

ସରକାର ଚଳାନ୍ତୁ । ସେଠାରେ କ'ଣ ବିଶୃଙ୍ଖଳା ହେଉନାହିଁ ? ଏଠାରେ ଚରମ ବିଶୃଙ୍ଖଳା ଦେଖା ଦେଇଛି କିନ୍ତୁ ସରକାରର ସେଥିରେ ହସ୍ତକ୍ଷେପ ନାହିଁ । ଏମାନଙ୍କ Managing Committee ଗଠିତ ହୋଇ ପାରୁ ନାହିଁ । ଚାନ୍ଦବାଲିରେ ଓ ବ୍ରହ୍ମପୁର Mission Schoolରେ ଯେଉଁ ଅସୁବିଧା ଓ ଗଣ୍ଡଗୋଳ ହେଲା, ତତ୍କାଳୀନ ସରକାର ତାକୁ taken over school କରିଦେଲେ କିନ୍ତୁ ଏ ପର୍ଯ୍ୟନ୍ତ ସେ School taken over school ହେଲା, କେଉଁ ଅବସ୍ଥାରେ ସେ School ଅଛି ଜଣାଯାଉ ନାହିଁ, କେବଳ Inspectorଙ୍କ ଦ୍ୱାରା ସେ ପରିଚାଳନା କରିବେ । ଏ ସ୍କୁଲ ସବୁ taken over school ଭାବରେ ପରିଚାଳନା କରାଯାଇଥାନ୍ତା ଏ ସବୁ ଅସୁବିଧା ଦେଖା ଦେଇ ନଥାନ୍ତା । ସେଥିପାଇଁ ମୋର କହିବାର କଥା, ସବୁ ସରକାରୀ ଓ ବେସରକାରୀ ଶିକ୍ଷାନୁଷ୍ଠାନକୁ ଗୋଟିଏ ଆଇନ ହେଉ । ମୁଁ ଆପଣ ଦେଖିବେ ଆମ ରାଜ୍ୟର ଶିକ୍ଷକମାନେ College Lecturer ଓ ପ୍ରଫେସରମାନେ ଆନ୍ଦୋଳନ କରୁଛନ୍ତି । ତୁଏତ ଆଜି ମାଧ୍ୟମିକ ଶିକ୍ଷକମାନଙ୍କର Demonstration ଏଠାରେ ହୋଇଥାନ୍ତା, କ'ଣ ପାଇଁ ? କେଉଁ କାରଣ ଲାଗି ଏମାନଙ୍କର ଶିକ୍ଷକ, Lecturer ଓ Professorମାନେ ଆନ୍ଦୋଳନ ସୃଷ୍ଟି କରୁଛନ୍ତି ସେ କଥା ଭାବିଥିଲେ ସେ ସବୁ ଏ ନୂଆ Billରେ ସ୍ଥାନ ପାଇଥାନ୍ତା । ସେମାନଙ୍କର condition of service, leave rule ଏବଂ ଅନ୍ୟାନ୍ୟ କଥା ଏଥିରେ କିଛି ନାହିଁ । ସେଥିପାଇଁ rule frame କରିବେ । Ruleରେ କ'ଣ ରହିବ ନ ରହିବ ତାହାର କିଛି ଠିକଣା ନାହିଁ । କେବଳ statutory ଆଇନ ଦେବାର କହିଲେ ଏ ପାସ ସେ ପାସ କରିବା ପାଇଁ ନା ସରକାର ନା Managing Committee ନା Governing Body ସାହାସ କରିପାରିବେ ନାହିଁ । ତାକୁ Rules ଭିତରେ ନ ରଖି ଯେପରି ହେଉ Madras Education Actରେ ଯେଉଁ ଅଛି ସେହିଭଳି ଆଇନ ଭିତରେ ରଖାଯାଉ । Security of Service, condition of service ନେଇ ସରକାରୀ ଓ ବେସରକାରୀ ସ୍କୁଲ ଶିକ୍ଷକମାନଙ୍କ ଭିତରେ ଯେଉଁ ତାରତମ୍ୟ ଅଛି ତାକୁ ଦୂର କରିବା ଦରକାର ଏବଂ ଏମାନଙ୍କ ଭିତରେ ଯେଉଁ ତଫାତ୍ ଅଛି ସେ ତଫାତ୍ ଦୂର କରିବା ଦରକାର, ତାହା ହୋଇପାରି ନାହିଁ । ସେଥିପାଇଁ ଏ ଆଇନଟି କଲେ ମଧ୍ୟ ଆମ ରାଜ୍ୟର କେଉଁ ସମସ୍ୟା ଏହାଦ୍ୱାରା ସମାହିତ ହେବ, ମୁଁ ବୁଝିପାରୁ ନାହିଁ । ମୁଁ ଏହାକୁ ଦେଖିଲା ବେଳକୁ ଭାବୁଛି It is merely a scrap of paper, ଖଣ୍ଡେ କାଗଜ ଛଡ଼ା ଆଉ ବିଷୟବସ୍ତୁ ଏଥିରେ କିଛି ନାହିଁ ।

ତା'ପରେ ଆପଣ ଦେଖିବେ ଯେଉଁ Advisory Council ଓ District School Board କରୁଛନ୍ତି, ମାନ୍ୟବର ଉତ୍କଳ ଗୌରବ ସେନ କୋଠାରୀ କମିଶନ ରିପୋର୍ଟକୁ ବିଚାର କରି ପଢ଼ିଲେ ସେ ଦୁଇଟି କମିଶନ ଗଠନ କରିବାକୁ କହୁଛନ୍ତି ।

ଗୋଟିଏ Education Advisory Body ଓ ଗୋଟିଏ Education Advisory କମିଟି ଏ ରାଜ୍ୟରେ ରହିବା ଦରକାର । କାରଣ ଯେତେ ଯେତେ ଶିକ୍ଷାଗତ ସମସ୍ୟା ଦେଶରେ ଦେଖା ଦେଉଛି ତାକୁ ସମାଧାନ କରିବା ପାଇଁ ବର୍ତ୍ତମାନ କେବଳ Secretariateରେ ଯେଉଁ Secretary ଅଛନ୍ତି I. A. S. ପୁରୁଷ ପୁଙ୍ଗବ, ବଉଲ ବିଭାଗର ଯେଉଁମାନେ Secretary ସେମାନେ ଭାବନ୍ତି ଯେ ଶିକ୍ଷା ବିଭାଗର Secretary ସେ ଶିକ୍ଷାରେ expert, ଯିଏ Industry Secretary ସିଏ Industryରେ expert, ବଡ଼ ଆଶ୍ଚର୍ଯ୍ୟର କଥା ଯେ ସେମାନଙ୍କ ପରାମର୍ଶରେ ଏ ଆଇନ ଆସିଛି ଯାହା କୌଣସି ଶିକ୍ଷାବିତ୍ ପରାମର୍ଶ ଦେଇଥାନ୍ତେ ଏପରି ଆଇନ କେବେ ହୋଇ ନ ଥାନ୍ତା । ଆପଣ ଦେଖିବେ Advisory Councilର କାର୍ଯ୍ୟ ହେଉଛି grant ଦେବା । ପ୍ରଚଳିତ ଶିକ୍ଷାପଦ୍ଧତିର ପରିବର୍ତ୍ତନ କରିବା, ପାଠ୍ୟପୁସ୍ତକଗୁଡ଼ିକୁ ସମୟୋପଯୋଗୀ କରିବା, ଯେଉଁଗୁଡ଼ିକ କି ତାଙ୍କର ମୌଳିକ ଦାୟିତ୍ୱ ହେବା ଉଚିତ୍ ସେଥିପ୍ରତି ଦୃଷ୍ଟି ଦିଆଯାଇ ନାହିଁ । ଏ Concilରେ ବହୁ ସରକାରୀ ଲୋକ ରହିଛନ୍ତି, ଯେଉଁ non-official ମେମ୍ବରମାନେ ରହିବେ ତାଙ୍କୁ ରାଜ୍ୟ ସରକାର ମନୋନୀତ କରିବେ, ଏଥିରେ ପ୍ରକୃତରେ ଶିକ୍ଷାବିତ୍ ରହିବେ କି ନାହିଁ ତାହା ମଧ୍ୟ ଗୋଟିଏ ସନ୍ଦେହର ବିଷୟ । କାରଣ ଆମେ ଯେତେବେଳେ ଦଳୀୟ ଶାସନ କରୁଛୁ ଦଳୀୟ ଦୃଷ୍ଟିକୋଣରୁ ଆମେ ସବୁ କଥା ଦେଖୁଛୁ । ଯେହେତୁ infancy of democracy ଏ ପର୍ଯ୍ୟନ୍ତ ଯାଇନାହିଁ, ତେଣୁ ପ୍ରକୃତ ଶିକ୍ଷାବିତ୍‌ମାନେ ଏଥିରେ ରହିବେ କି ନାହିଁ ଏ ବିଷୟରେ ବହୁତ ଆଶଙ୍କା ରହୁଛି, ଆଉ ସବୁଠାରୁ ଗର୍ହିତ କଥା ହେଉଛି ଯେ ଏହାପାଇଁ ଗୋଟିଏ ପର୍ଷଦ ହେବ । Higher Education ପାଇଁ ଯେଉଁ ଟଙ୍କା ସରକାର ଦେବାର କଥା ସେ ଟଙ୍କା ଏମାନଙ୍କୁ ଲୁଆଡ଼େ ଦେବେ । ବଉଲ କଲେଜ ଓ ଶିକ୍ଷା ଅନୁଷ୍ଠାନମାନଙ୍କୁ grant ଦେବା ବ୍ୟବସ୍ଥା କେଉଁଠି ଅଛି ମୁଁ ଜାଣିନାହିଁ । ସେ ପାଣ୍ଠି କାଳ କ'ଣ ହେବ ମୁଁ ବୁଝି ପାରୁ ନାହିଁ । ଅନ୍ୟ କେଉଁ ବେସରକାରୀ ସଂସ୍ଥା ବା ବେସରକାରୀ ଅନୁଷ୍ଠାନମାନଙ୍କରୁ ଯେଉଁ ଟଙ୍କା କିଛି ଆସନ୍ତା ତା'ହେଲେ ସେ ଟଙ୍କା ଉନ୍ନତିମୂଳକ କାର୍ଯ୍ୟରେ ବିନିଯୋଗ ହୁଅନ୍ତା । ଯେଉଁଟା regular teaching grant, ଯେଉଁଟା University ମାଧ୍ୟମରେ ବା ଅନ୍ୟ ଯାହା ମାଧ୍ୟମରେ ଦେବେ, ତା'ର କାର୍ଯ୍ୟ ଟଙ୍କା ବାଣ୍ଟିବା ହେବ ହେବା ଉଚିତ୍ ହେବ ନାହିଁ । ସେହିପରି ଆପଣ ଦେଖିବେ District School Boardରେ Collector Chairman ହେବେ, କେଉଁ କାରଣରୁ Collector Chairman ହେବେ ? Who is already over burden with one hundred and one works. ଆପଣ ଦେଖିବେ ପୁରାତନ ମାନ୍ଦ୍ରାଜ ଅଞ୍ଚଳରେ Education Advisory Councilର Chairman ହେଉଥିଲେ E. E. O.

କିନ୍ତୁ ଆଜି ଆମେ ଦେଖୁଛୁ Collector ହେଉଛି Chairman, ଜଣେ ମାନ୍ୟବର ସଭ୍ୟ କହୁଛନ୍ତି ଏ Bill ରେ D. E. O. ଅଛନ୍ତି ସେ କିଏ ? ଗଞ୍ଜାମରେ 2 ଜଣ D. I. ଅଛନ୍ତି ମାନ୍ୟବର ମନ୍ତ୍ରୀ ସେମାନଙ୍କ ସଂଖ୍ୟାକୁ 3/4 କରିବାକୁ ଯାଉଁଛନ୍ତି । ଗୋଟିଏ ଜିଲ୍ଲାରେ 3/4 ଜଣ D. I., Schools ରହିଲେ, 2/3ଟି ଜିଲ୍ଲାରେ ରହିଲେ ଗୋଟିଏ Inspector of Schools, ତା'ହେଲେ ଏ D. E. O.ଟି କିଏ, ଏଙ୍କୁ classify କରିଦିବା ଦରକାର । ତା'ପରେ ଏ ସମସ୍ତ 5 ଜଣ ଅଫିସର ନୋମିନେଟେଡ଼ରେ ହେବେ ତା' ରହିବା ଉଚିତ ନୁହେଁ କାହିଁକି ନା ଆମେ ଦେଖିଛୁ ସେକେଣ୍ଡାରୀ ବୋର୍ଡରେ ବାହାର ସଭ୍ୟମାନଙ୍କୁ ଭର୍ତ୍ତି କରି ଯେଉଁ ଖେଳନ୍ତି କରଯାଉଛି ସେଥିରେ ପ୍ରକୃତ ଶିକ୍ଷାବିତ୍‌ମାନେ ତା' ଭିତରକୁ ଯାଇପାରୁନାହାନ୍ତି । ସେଥିଲାଗି ଜିଲ୍ଲା ସ୍କୁଲ ବୋର୍ଡର ପରିବର୍ତ୍ତନ ହେବା ଉଚିତ୍ । ଯଦି D. I. ଙ୍କୁ ଚେୟାରମ୍ୟାନ ନ କରଯାଉଛି ତା' ହେଲେ ଅନ୍ତତଃ Inspector of Schoolsଙ୍କୁ ଚେୟାରମ୍ୟାନ କରଯାଉ । ଜଣେ D. I. ଙ୍କୁ ସେକ୍ରେଟାରୀ କରାଯାଉ । ତା'ହେଲେ ପ୍ରକୃତ ଶିକ୍ଷାବିତ୍‌ମାନେ ସ୍ଥାନ ପାଇବେ ଓ ଶିକ୍ଷାର ଉନ୍ନତି ହେବ । ଶେଷରେ ମୁଁ କହୁଛି ସ୍କୁଲ ଅଡ଼ଭାଇଜର ବୋର୍ଡ ହାତରେ ଆଉ ଦୀ ଅର୍ଥର ବାଣ୍ଟିଯିବା ନ ରହୁ ।

## ଶିକ୍ଷା ଦାବୀ (1970) ସମ୍ବନ୍ଧରେ ଆଲୋଚନା

13-3-1970

(ଆଲୋଚ୍ୟ ବିଷୟ – ଜାତୀୟ ଋଣ ବୃତ୍ତି ସମ୍ବନ୍ଧରେ ମଞ୍ଜୁର ନ ଥିବାରୁ ଉପୁଜିଥିବା ବିକ୍ଷୋଭ ଓ ଜାତୀୟ ଋଣ ବୃତ୍ତି ମିଳିବାପାଇଁ ଧାର୍ଯ୍ୟ ହୋଇଥିବା ହାରାହାରି ସର୍ବୋଚ୍ଚ ନମ୍ବରର ପରିବର୍ତ୍ତନ ।)

ବାଚସ୍ପତି ମହୋଦୟ, ମାନ୍ୟବର ଶିକ୍ଷା ମନ୍ତ୍ରୀ ଶିକ୍ଷା ସମ୍ପର୍କରେ ଯେଉଁ ଭାବ ଅଗତ କଲେ ମୁଁ ତା'ର ବିରୋଧ କରୁଛି । ଆପଣ ଜାଣନ୍ତି ଗତ 3 ବର୍ଷର ଶାସନକାଳମଧ୍ୟରେ ଏ ସରକାର ତାଙ୍କର କୌଣସି ନିର୍ଦ୍ଦିଷ୍ଟ ଶିକ୍ଷା ନୀତି ଘୋଷଣା କରି ନାହାଁନ୍ତି । ଅବଶ୍ୟ ଶିକ୍ଷା ମନ୍ତ୍ରୀ କହନ୍ତି ଯେ କେନ୍ଦ୍ର ସରକାର ଯେହେତୁ ତାଙ୍କର ନିର୍ଦ୍ଦିଷ୍ଟ ନୀତି ସ୍ପଷ୍ଟ ଭାବରେ ଘୋଷଣା କରି ନାହାଁନ୍ତି, ଆମେ କିପରି ଏହା କରିବୁ । ଏହି କୈଫିୟତ୍ ସେ ଦେଉଛନ୍ତି । ଯେ କୌଣସି ଗୋଟିଏ ନୀତି ଉପରେ ପ୍ରତିଷ୍ଠିତ ନ ହେଲେ ଆମର ଯେପରି ସ୍କୁଲ ସଂଖ୍ୟା ଓ କଲେଜ ସଂଖ୍ୟା ବଢ଼ୁଛି ତା'ର କିଛି ଅର୍ଥ ରହିବ ନାହିଁ । ଆପଣ ଜାଣନ୍ତି ଶିକ୍ଷା ସହିତ ଆମ ଦେଶର ଉନ୍ନତି ଓ ଆମ ଦେଶର ଜନସାଧାରଣଙ୍କର ଘନିଷ୍ଠ ଭାବରେ ସମ୍ପର୍କ ରହିଛି, ତାକୁ ବିଚାରକୁ ନ ନେଇ କେବଳ ଗଡ଼ଡ଼ାଳିକା ଭାବରେ ବା ଗତାନୁଗତିକ ଭାବରେ କେତେକ ସ୍କୁଲ ବଢ଼ାଇ ଦେଲେ ବା କଲେଜ ବଢ଼ାଇ ଦେଲେ କିଛି ହୋଇପାରିବ ନାହିଁ । ହଜାରେ ପ୍ରାଥମିକ

ଶିକ୍ଷକ ନିଯୁକ୍ତ କରିଦେଲେ ବା 5/7ଟା ହ୍ୱାଇସ୍କୁଲ ବଢ଼ାଇ ଦେଲେ କି କିଛି କଲେଜ କରିଦେଲେ ବା କଲେଜରେ କେତେକ ବିଷୟ ଖୋଲିଦେଲେ ଯେ ଆମର ସବୁ ହୋଇ-ଗଲା ଏହାର କିଛି ଅର୍ଥ ନାହିଁ । କେଉଁ ଉଦ୍ଦେଶ୍ୟରେ ଏସବୁ କରାଯାଉଛି ସେସବୁ ବିଷୟରେ ଜିଡ ସ୍ଥିର ହେବା ଉଚିତ୍ । ଆପଣ ଜାଣନ୍ତି ଏ ଜାତିର ଆଶା ଆକାଂକ୍ଷା ପୂରଣ କରିବାପାଇଁ ଶିକ୍ଷା ବିଭାଗ କେବଳ ଗୋଟିଏ ବିଭାଗ ଯାହାଦ୍ୱାରା କି ଏହା ଉପଯୁକ୍ତ ଭାବରେ ହୋଇପାରିବ । ଆଜି କୁହାଯାଉଛି ଯେ ଭାରତବର୍ଷର ଭାଗ୍ୟ ତା'ର ଶ୍ରେଣୀମାନଙ୍କରେ ରୂପାନ୍ତରିତ ହେଉଛି । ତା'ର ଅର୍ଥ ଦେଶର ଭାଗ୍ୟ ଶ୍ରେଣୀମାନଙ୍କରେ ରୂପାୟିତ ହେଉଛି । ଏପରି ଅବସ୍ଥାରେ ଆମର ଏ ବିଷୟରେ ଯଦି ଗୋଟିଏ ସ୍ପଷ୍ଟ ବିଗ୍ଭର ନ ରହିବ ଓ ଆମର ଶିକ୍ଷାର ଲକ୍ଷ୍ୟ କ'ଣ ନ ରହିବ ତା'ହେଲେ ଆମେ ଅଗ୍ରଗତି କରିବା କ'ଣ ? ଆପଣ ଜାଣନ୍ତି ଏ ସମ୍ପର୍କରେ ବହୁ କମିଶନ ରିପୋର୍ଟ ଲେଖିଛନ୍ତି । ସର୍ଜେଣ୍ଟ କମିଶନ, ମୁଦାଲିୟାର କମିଶନ ଓ ବିଶେଷୋକ୍ତ କମିଶନ ହେଉଛି କୋଠାରୀ କମିଶନ । ସେ reportକୁ ଅନ୍ତତଃ ଆମର ସାରାଂଶ ଗ୍ରହଣ କରିବା କଥା । କିନ୍ତୁ ଆଜି ସେହି ପୁରାତନ ସମସ୍ୟା ଦେଶରେ ଅପ୍ରତିହତ ରହିଛି ଓ ଆଜି ପର୍ଯ୍ୟନ୍ତ ପୁରାତନ ପଦ୍ଧତି ଅନୁସାରେ ଶିକ୍ଷା ପଦ୍ଧତି ଗ୍ଭଲୁ କରାଯାଉଛି । ସେ ସବୁ କୌଣସି ପ୍ରକାର ପରିବର୍ତ୍ତନ କରାଯାଇ ନାହିଁ । ଯାହା କିଛି ସାମାନ୍ୟ ପରିବର୍ତ୍ତନ ହୋଇଛି ତାହା ଶିକ୍ଷା ପଦ୍ଧତିର ପରିବର୍ତ୍ତନ ପାଇଁ । ଇଂରେଜୀ ଶିକ୍ଷା ବା ଆମର ଯେଉଁ college system of education ଅଛି ସ୍ୱାଧୀନ ଭାରତରେ ତା'ର ଆମୂଳଚୂଳ ବଦଳିବା ଦରକାର । କିନ୍ତୁ ସ୍ୱାଧୀନ ଭାରତରେ ଶିକ୍ଷାର ପଦ୍ଧତି ପରିବର୍ତ୍ତନ କରିବା ଭଳିଆ କିଛି କାମ ଏ ପର୍ଯ୍ୟନ୍ତ କରାଯାଇ ନାହିଁ । କୋଠାରୀ କମିଶନ ରିପୋର୍ଟ ପ୍ରକାଶିତ ହେଲା ପରେ ସମସ୍ତେ ଆଶା କରିଥିଲେ ଯେ ଓଡ଼ିଶା ସରକାର ଅନ୍ତତଃ ତାଙ୍କ ସୁପାରିଶକୁ ଗ୍ରହଣ କରି ଆମ ଶିକ୍ଷା ପଦ୍ଧତିରେ କିଛି ଜରୁରୀ ପରିବର୍ତ୍ତନ ଆଣିବେ । କିନ୍ତୁ ଏ ସରକାରଙ୍କର ଶାସନ 3 ବର୍ଷ ହୋଇ ଯାଇଥିଲେ ମଧ୍ୟ ସେ ଦିଗରେ ଏ ସରକାର କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରି ନାହାନ୍ତି । ଆପଣ ଜାଣନ୍ତି ଆମ ଦେଶରେ ଉତ୍ତମ ଶିକ୍ଷା ବୋଲି କାହାକୁ କୁହାଯାଏ । ଧନାର୍ଜନ ମାଧ୍ୟମରେ ଶିକ୍ଷା ଦେବା ହେଉଛି ଉତ୍ତମ ଶିକ୍ଷା । କିନ୍ତୁ ସେ ଦିଗରେ କିଛି ବ୍ୟବସ୍ଥା କରାଯାଇ ନାହିଁ । ଭାଷା ଶିକ୍ଷା, ସାହିତ୍ୟ ଶିକ୍ଷା, ସାମାଜିକ ବିଦ୍ୟା ଶିକ୍ଷା, ଜୀବନଧାରଣ ଶିକ୍ଷା, ଏହିପରି ନାନା ପ୍ରକାର ଶିକ୍ଷା ଦିଆଯାଉଛି । କିନ୍ତୁ ଯାହା ହେଉଛି ମୂଳ ଶିକ୍ଷା ଅର୍ଥାତ୍ ଧନାର୍ଜନ ମାଧ୍ୟମରେ ଶିକ୍ଷା, ସମାଜ ସେବା ଶିକ୍ଷା ଆଡ଼କୁ ଦୃଷ୍ଟି ଦେବାକଥା ଆମ ଶିକ୍ଷା ପଦ୍ଧତିରେ ନାହିଁ । ତା' ଫଳରେ ଆଜି ଦେଶରେ

ବେକାର ସମସ୍ୟା ଦେଖାଦେଇଛି । ଛତୁ ଫୁଟିଲା ଭଳିଆ ସ୍ଥାନେସ୍ଥାନେ ସ୍କୁଲ କଲେଜ ସ୍ଥାପିତ ହୋଇଥିଲେ ମଧ୍ୟ ଆଜି ବେକାର ସମସ୍ୟା ବଡ ଉତ୍କଟ ହୋଇଛି । ଆମର ସ୍କୁଲ କଲେଜମାନଙ୍କରେ କିଛି ନୂତନ ବ୍ୟବସ୍ଥା ନାହିଁ । ତା' ଫଳରେ ଯେଉଁ ଛାତ୍ରମାନେ ସ୍କୁଲ, କଲେଜରୁ ଉତ୍ତୀର୍ଣ୍ଣ ହେଉଛନ୍ତି ସେମାନେ କେବଳ ଚାକିରି ପାଇଁ ଉତ୍କଣ୍ଠ ହେଉଛନ୍ତି । ସେହି ପୁରୁଣା ମାନ୍ଧାତା systemରେ ଶିକ୍ଷା ଦିଆଯାଉଛି । ଏହାକୁ ତୁରନ୍ତ ପରିବର୍ତ୍ତନ ନ କଲେ ବେକାର ସମସ୍ୟା ଯେ ଭଳି ଉତ୍କଟ ହେଲାଣି ତାକୁ ସମ୍ଭାଳି ହେବ ନାହିଁ ଓ ତାହାକୁ ସମାଧାନ କରିହେବ ନାହିଁ । ରାଜ୍ୟ ସରକାର କେନ୍ଦ୍ର ସରକାରଙ୍କ ଦୃଷ୍ଟି ଏ ଦିଗରେ ଆକର୍ଷଣ କରିବା କଥା । କେନ୍ଦ୍ର ସରକାର କମିଶନ ବସାଇଲେ । ସେ କମିଶନ ରିପୋର୍ଟ ଅନୁସାରେ କାର୍ଯ୍ୟ କରିବା କଥା । ଯଦି କମିଶନ ରିପୋର୍ଟ ଅନୁସାରେ କାର୍ଯ୍ୟ କରିବାକୁ ଗଲାବେଳେ ଆର୍ଥିକ ଅସୁବିଧା ରହିଛି, ତେବେ ରାଜ୍ୟ ସରକାର କେନ୍ଦ୍ର ସରକାରଙ୍କୁ ଜଣାଇବା କଥା । ଆମର ଯଦି ଆର୍ଥିକ ଅସୁବିଧା କିଛି ଥାଏ, ତା'ହେଲେ କେନ୍ଦ୍ର ସରକାରଙ୍କୁ ଜଣାଇବା କଥା । କିନ୍ତୁ ସେ ଦିଗରେ ଆମ ସରକାର ବିହିତ କାର୍ଯ୍ୟାନୁଷ୍ଠାନ କରି ନ ଥିବା ହେତୁ ଯେଉଁ ପରମ୍ପରାରେ ଶିକ୍ଷା ଦିଆଯାଉଥିଲା, ସେହି ଶିକ୍ଷା ଆଜି ମଧ୍ୟ ଏ ରାଜ୍ୟରେ ପ୍ରଚଳିତ ହେଉଛି । ସେଥିପାଇଁ unemployment problem ଉତ୍କଟତର ହୋଇ ଉଠୁଛି । ଦିନ ଆସିବ, ଯେତେବେଳେ ତା'ର ସମାଧାନ ଅସମ୍ଭବ ହୋଇ ପଡ଼ିବ । ଯେତିକି ଡେରି ହେଉଛି ଆମ ଅସୁବିଧା ସେତିକି ସେତିକି ବଢ଼ି ଯାଉଛି ।

ଆମର ଗୋଟିଏ ବିଶ୍ୱବିଦ୍ୟାଳୟ ଥିଲା । ଆଉ 2ଟି ବିଶ୍ୱବିଦ୍ୟାଳୟ, ଗୋଟିଏ ବ୍ରହ୍ମପୁରରେ ଓ ଆଉ ଗୋଟିଏ ସମ୍ବଲପୁରରେ ହେଲା, ନୂତନ ବିଶ୍ୱବିଦ୍ୟାଳୟ 2ଟିକୁ ସମ୍ପୂର୍ଣ୍ଣ କରିବାପାଇଁ ଯେଉଁ ଅର୍ଥ ଆବଶ୍ୟକ ସେ ଅର୍ଥ ଆମ ସରକାର ଦେଇପାରୁ ନାହାଁନ୍ତି । 2ଟି ନୂଆ ବିଶ୍ୱବିଦ୍ୟାଳୟ ହେଲାବେଳେ ତତ୍କାଳୀନ ସରକାର କହିଥିଲେ ଚତୁର୍ଥ ଯୋଜନାରେ 3 କୋଟି ଟଙ୍କା ଏ 2ଟି ବିଶ୍ୱବିଦ୍ୟାଳୟକୁ ଦେବେ । ପ୍ରତ୍ୟେକ ବିଶ୍ୱବିଦ୍ୟାଳୟ ଦେଢ଼କୋଟି ଲେଖାଏ ପାଇବେ ଓ ପ୍ରତିବର୍ଷ 30 ଲକ୍ଷ ଟଙ୍କା କରି ଦିଆଯିବ । ସରକାର ଯାହା କହିଥିଲେ, ଏ 2ଟି ବିଶ୍ୱବିଦ୍ୟାଳୟର ଉନ୍ନତି ପାଇଁ ଯେଉଁ ଟଙ୍କା ଦେବାପାଇଁ କହିଥିଲେ, ସେ ଟଙ୍କାର ବ୍ୟବସ୍ଥା ହୋଇପାରୁନାହିଁ । ତେଣୁ ଏ 2ଟି ନୂତନ ବିଶ୍ୱବିଦ୍ୟାଳୟ ଉନ୍ନତି କରିପାରୁ ନାହାନ୍ତି । ବିଶେଷକରି ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ କଥା ମୁଁ ଜାଣେ । Vice-Chancellor ଏବଂ ଅନ୍ୟାନ୍ୟମାନେ ଟଙ୍କା ପାଇଁ ବହୁବାର ସରକାରଙ୍କ ଦ୍ୱାରସ୍ଥ ହୋଇଛନ୍ତି; କିନ୍ତୁ ସରକାର ଆବଶ୍ୟକ ଟଙ୍କା ଯୋଗାଇପାରି ନାହାନ୍ତି । ତା'ଫଳରେ ବିଶ୍ୱବିଦ୍ୟାଳୟର କୋଠାବାଡ଼ି, ଅଫିସ ଗୃହ ଓ ଅନ୍ୟାନ୍ୟ ଯେଉଁ ସବୁ ଆବଶ୍ୟକତା ଅଛି ତାହା ପୂରଣ ହୋଇପାରୁ ନାହିଁ ।

ମୋର ଆଶା ସରକାର ଯଦ ପ୍ରକୃତରେ ବିଶ୍ୱବିଦ୍ୟାଳୟ ଶିକ୍ଷା ପ୍ରତି ଦୃଷ୍ଟି ଦେବାକୁ ଚାହାଁନ୍ତି, ବିଶ୍ୱବିଦ୍ୟାଳୟ ଶିକ୍ଷା ସ୍ତରର ଉନ୍ନତି ଚାହାଁନ୍ତି ତାହାହେଲେ ସବଜମ୍ନ ଅଭାବ ପୂରଣ କରିବା ପାଇଁ ଯେଉଁ ଅର୍ଥ ଆବଶ୍ୟକ ଏ ବିଶ୍ୱବିଦ୍ୟାଳୟକୁ ଦେବେ ।

ଆଜିକାଲି ବିଶ୍ୱବିଦ୍ୟାଳୟରେ ଯେଉଁ ଶିକ୍ଷା ଦିଆଯାଉଛି ସେଥିରେ ବିଜ୍ଞାନ ଏବଂ ଗବେଷଣାକୁ ଯଥେଷ୍ଟ ଗୁରୁତ୍ୱ ଦିଆଯିବା ଦରକାର । ବୃତ୍ତିମୂଳକ ଓ ଧନାତ୍ମକ ଶିକ୍ଷା କେବଳ ପ୍ରାଥମିକ ବା ମାଧ୍ୟମିକ ସ୍ତରରେ ନୁହେଁ, ବିଶ୍ୱବିଦ୍ୟାଳୟ ସ୍ତରରେ ମଧ୍ୟ ସେ ଶିକ୍ଷା ଦେବାକୁ ହେବ । ବିଜ୍ଞାନ ଏବଂ ଗବେଷଣା ପରସ୍ପର ନିର୍ଭରଶୀଳ । ସେଥିପ୍ରତି ଅଧିକ ଦୃଷ୍ଟି ଦେବାକୁ ହେବ । ଆମେ ଦେଖୁଛୁ କଲା କଲେଜ ଖୋଲୁଛୁ, ଛାତ୍ରମାନେ ପଢୁଛନ୍ତି, ଉତ୍ତୀର୍ଣ୍ଣ ହେଉଛନ୍ତି, ଚାକିରି ମିଳୁନାହିଁ, ବେକାର ହୋଇ ବୁଲୁଛନ୍ତି । ଏପରି Arts College ଖୋଲିବା ଅପେକ୍ଷା ଯେଉଁଠାରେ Arts College ଖୋଲୁଛୁ, ସରକାର ନିଜେ ସାହାଯ୍ୟ କରି ସେଠାରେ ବିଜ୍ଞାନ ବିଭାଗ ମଧ୍ୟ ଖୋଲନ୍ତୁ । ତାହାହେଲେ ମୁଁ ଭାବୁଛି, ଆମେ ଆମର ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରିବେ ।

ବ୍ରହ୍ମପୁର, ଖଲିକୋଟ କଲେଜକୁ ସରକାର ହାତକୁ ନେବାକଥା କହି ଆସୁଥିଲେ ମଧ୍ୟ ଆଜି ପର୍ଯ୍ୟନ୍ତ ନେଇ ନାହାଁନ୍ତି । ସେଠାରେ ଯେଉଁ ଅବ୍ୟବସ୍ଥା ଲାଗି ରହିଛି, ଛାତ୍ର ବିଶୃଙ୍ଖଳା ହେଉଛି, ତାହା ଚତୁର୍ଦ୍ଦିଗକୁ ବ୍ୟାପୁଛି । ସରକାର ଜାଣିଶୁଣି ହେଳା କରୁଛନ୍ତି, ହାତକୁ ନେଉନାହାଁନ୍ତି । ମୋର ଅନୁରୋଧ ସେଠାର ଅବ୍ୟବସ୍ଥା ଦୂର କରିବାପାଇଁ ସରକାର ତୁରନ୍ତ ଖଲିକୋଟ କଲେଜକୁ ହାତକୁ ନିଅନ୍ତୁ । ଓଡ଼ିଶାର ଅନ୍ତର ଅନେକ କଲେଜ, ଯେଉଁଗୁଡ଼ିକ ପରିଚାଳନା ବୋର୍ଡ଼ ଚଳାଇ ପାରୁ ନାହାଁନ୍ତି, ନାନା ଅସୁବିଧା ଭିତରେ ଗତି କରୁଛନ୍ତି, ସେହିଭଳି କଲେଜ ଗୁଡ଼ିକୁ ସରକାର ହାତକୁ ନେବା କଥା । ଆଜି ପର୍ଯ୍ୟନ୍ତ ଯେଉଁସବୁ ଗୁଡ଼ିଏ କଲେଜ ହାତକୁ ନେବାପାଇଁ ସରକାର ଘୋଷଣା କରିଛନ୍ତି ସେ ଦିଗରେ କିଛି କାର୍ଯ୍ୟାନୁଷ୍ଠାନ ହୋଇନାହିଁ ।

ବ୍ରହ୍ମପୁରରେ ଗୋଟିଏ ଟ୍ରେନିଂ କଲେଜ ଅଛି । ତା' ପ୍ରତି ସରକାରଙ୍କ ଶୁଭ ଦୃଷ୍ଟି ପଡ଼ିଲା ଭଳି ମନେ ହେଉନାହିଁ । ଅନ୍ୟାନ୍ୟ ଟ୍ରେନିଂ କଲେଜରେ ଛାତ୍ରମାନଙ୍କୁ stipend ଦିଆଯାଏ । କିନ୍ତୁ ବ୍ରହ୍ମପୁର ଟ୍ରେନିଂ କଲେଜରେ ସମସ୍ତ ଛାତ୍ରମାନଙ୍କୁ stipend ଦିଆଯାଉ ନାହିଁ । ସେମାନଙ୍କ ଭିତରେ ଅସନ୍ତୋଷ ବ୍ୟାପୁଛି । ସେଥିପାଇଁ ଗତବର୍ଷ ଛାତ୍ରମାନେ ଆନ୍ଦୋଳନ କରିଥିଲେ । ଶିକ୍ଷା ମନ୍ତ୍ରୀଙ୍କ ପାଖକୁ ଆସିଥିଲେ । ଗତବର୍ଷ ସରକାର ପରିଚାଳନା କମିଟିକୁ କହିଥିଲେ ତାଙ୍କ ନିଜ ପାଣ୍ଠିରୁ stipend ଦିଅନ୍ତୁ ।

* * * * *

ବରହମ୍ପୁରରେ ଗୋଟିଏ ମହିଳା କଲେଜ ଅଛି । ସେଥିରେ ବିଜ୍ଞାନ ବିଭାଗ ଖୋଲିବା ପାଇଁ ବହୁ ବର୍ଷ ହେଲା ଦାବି ହେଉଛି । ଛାତ୍ରୀମାନେ ହାଇସ୍କୁଲରୁ ପାଶ କଲାପରେ ଯେଉଁମାନେ ବିଜ୍ଞାନ ନେବାକୁ ଚାହାଁନ୍ତି ଖଲିକୋଟ କଲେଜରେ admission ନେବାକୁ ବାଧ୍ୟ ହେଉଛନ୍ତି । ଖଲିକୋଟ କଲେଜରେ ଯେଉଁଳି ଅବ୍ୟବସ୍ଥା, ସେଠାରେ ଛାତ୍ରୀମାନେ ଅଧ୍ୟୟନ କରିବାରେ ଅସୁବିଧା ହେଉଛି । ତେଣୁ ମହିଳା କଲେଜରେ ବିଜ୍ଞାନ ବିଭାଗ ଖୋଲିଗଲେ ଛାତ୍ରୀମାନଙ୍କର ସୁବିଧା ହୁଅନ୍ତା । ଖାଲି ସେଇଠି ନୁହେଁ, ଓଡ଼ିଶାର ବିଭିନ୍ନ ସ୍ଥାନରେ ଯେଉଁଠାରେ ମହିଳା କଲେଜ ଅଛି, ସେ ସବୁ କଲେଜରେ ବିଜ୍ଞାନ କଲେଜ ରହିବା ଦରକାର । ଆମର ପିଲାମାନେ ବିଜ୍ଞାନ ପଢ଼ିବାକୁ ସୁବିଧା ପାଆନ୍ତେ । ତେଣୁ ବ୍ରହ୍ମପୁର ମହିଳା କଲେଜରେ ଅନ୍ତତଃ ପକ୍ଷେ ଆସନ୍ତା କଲେଜ ବର୍ଷ ଠାରୁ ବିଜ୍ଞାନ ଶିକ୍ଷା ପ୍ରଚଳନ କରିବାପାଇଁ ସରକାର ବ୍ୟବସ୍ଥା କରନ୍ତୁ ।

Secondary Education ସମ୍ପର୍କରେ ସରକାର କହୁଛନ୍ତି, 1970ରୁ back ward area ରେ 3ଟି ହାଇସ୍କୁଲ ଖୋଲିବେ ଏବଂ ନୂଆ ରାଜଧାନୀରେ 2ଟି ନୂତନ ହାଇସ୍କୁଲ ଖୋଲିବେ । ଆବଶ୍ୟକତା ଦୃଷ୍ଟିରୁ ଏହା ଯଥେଷ୍ଟ ନୁହେଁ । ଆଦିବାସୀ ବହୁଳ ଅଞ୍ଚଳରେ ଲୋକେ ନିଜ ପରିଶ୍ରମରେ ହାଇସ୍କୁଲ ଖୋଲିଛନ୍ତି ଏବଂ ନବମ ଶ୍ରେଣୀ ପର୍ଯ୍ୟନ୍ତ ଖୋଲିଲେଣି । ନାନା ଅସୁବିଧା ହେତୁ ସେମାନେ ସ୍କୁଲ ଖୋଲିପାରୁ ନାହାଁନ୍ତି । ସରକାର ସେ ସବୁ ଅଞ୍ଚଳର ତଥ୍ୟ ସଂଗ୍ରହ କରନ୍ତୁ ଏବଂ ସେ ସବୁ ଅଞ୍ଚଳରେ ସରକାର ଅଧିକରୁ ଅଧିକ ହାଇସ୍କୁଲ ନିଜେ ଖୋଲିବା କଥା । ଯଦି ନିଜେ ନ କରି ପାରନ୍ତି ଅନ୍ତତଃ ପକ୍ଷେ ଯେଉଁ ସବୁ ସ୍କୁଲଗୁଡ଼ିକ 9ମ ଶ୍ରେଣୀ ପର୍ଯ୍ୟନ୍ତ ଖୋଲିଲାଣି ସେଗୁଡ଼ିକୁ full deficit school ହିସାବରେ ଘୋଷଣା କରନ୍ତୁ । ସରକାର ଏ ବର୍ଷ 100 ଟି ସ୍କୁଲକୁ full deficit ସ୍କୁଲ ରୂପେ ନେବାପାଇଁ ଯାଉଛନ୍ତି । ତା'ର ଗୋଟିଏ ନୀତି ନିର୍ଦ୍ଧାରଣ କରନ୍ତୁ । କେଉଁ ଅଞ୍ଚଳରେ full deficit ସ୍କୁଲ କରିବେ, ସେ ସ୍କୁଲର ଆର୍ଥିକ ଅବସ୍ଥା କ'ଣ, କେଉଁ ଶ୍ରେଣୀର ଛାତ୍ର ପଢ଼ନ୍ତି, ସେ ଅଞ୍ଚଳ ଆଦିବାସୀ ବହୁଳ କି ନୁହେଁ, ଏସବୁ ବିଚାର କରି ନୀତି ସ୍ଥିର କରନ୍ତୁ । ତା' ନହେଲେ ନାନା ପ୍ରକାର ସଙ୍କୀର୍ଣ୍ଣ ଦୃଷ୍ଟିକୋଣରୁ ସ୍କୁଲ ଗୁଡ଼ିକୁ full deficit ସ୍କୁଲ ହିସାବରେ ଗ୍ରହଣ କରାଯାଉଛି, ଯେଉଁଥିପାଇଁ ସରକାର ସମାଲୋଚନାର ପାତ୍ର ହେଉଛନ୍ତି । ଗୋଟିଏ ନୀତି ସ୍ଥିର କରିଦେଲେ ଅଯଥା ସମାଲୋଚନାରୁ ରକ୍ଷା ପାଆନ୍ତେ ।

ଉପାଧ୍ୟକ୍ଷ ମହାଶୟ, ଆପଣ ଜାଣନ୍ତି, କିଛିଦିନ ତଳେ ଆମର ଶିକ୍ଷକମାନେ ଆନ୍ଦୋଳନ କରିଥିଲେ । ସରକାର ଶିକ୍ଷକମାନଙ୍କ ସହିତ ବୁଝାମଣା କରିଥିଲେ । ତା'ପରେ ଆନ୍ଦୋଳନ ପ୍ରତ୍ୟାହୃତ ହୋଇଥିଲା । ଯେଉଁସବୁ ସର୍ତ୍ତରେ ଆନ୍ଦୋଳନ ପ୍ରତ୍ୟାହାର ହୋଇଥିଲା ସେ ସର୍ତ୍ତ ଆଜି ପର୍ଯ୍ୟନ୍ତ ସରକାର ପାଳନ କରି ନାହାଁନ୍ତି । ପରନ୍ତୁ କମିଟି କଥା କୁହାଗଲା

ସେଥିରେ ବଭିନ୍ନ ଶିକ୍ଷକ Association ତରଫରୁ ପ୍ରତିନିଧି ରହିବାର କଥା । ହେଉଭାର ଝାଲଝୁଲ ମାଡ ଧରିଛନ୍ତି । ଏତ ଅତି ସହଜ କଥା, ଶିକ୍ଷକ Associationକୁ ଲୁହାଯ ଅନ୍ୟ ଭିନ୍ନ ଭିନ୍ନ ପ୍ରତିନିଧି ପଠାଅ । ତାହା ନକରି ସରକାର କହୁଛନ୍ତି ଭିନ୍ନ ଭିନ୍ନ Associationର ସଂଖ୍ୟା ଜାଣିବା ଦରକାର । ଆମେ ସେଥି ଭିତରୁ ଜଣକୁ ନେବାକୁ ବାଛିବୁ ।

ତାହାହେଲେ ଏମାନଙ୍କର ପ୍ରତିନିଧି କିଏ ବାଛିବ, ସରକାର ବାଛିବେ ନା ତାଙ୍କ Association ବାଛିବ ? ପରିଶୁଳନା କମିଟି ବର୍ତ୍ତମାନ କାର୍ଯ୍ୟକାରୀ ହେଉନାହିଁ, ଏହା ବଡ଼ ଦୁଃଖର କଥା । ଏହାର ତୁରନ୍ତ ସମାଧାନ ହେବା ଉଚିତ୍ । କେବଳ ସେତିକି ନୁହେଁ, ହଜୁର ଶିକ୍ଷକମାନେ ଜାଣିବୁ ଦାବି କଣାଇଥିଲେ ଯେ Aided ସ୍କୁଲମାନଙ୍କର ସେମାନଙ୍କ ପାଇଁ contributary provident fundର ସୁବିଧା ନାହିଁ । ଏପରି କି ଅନେକ ସ୍ଥାନରେ କଲେଜ ମାନଙ୍କରେ ସେ ସୁବିଧା ନାହିଁ । ଶିକ୍ଷକମାନେ ତ pension ପାଇବେ ନାହିଁ । ଅନ୍ତତଃ contributary provident fundର ଯଦି ସୁବିଧା ନ ରହିବ ତାହାହେଲେ ଅବସ୍ଥା ସାଂଘାତିକ ହେବ । ସେମାନେ ଯେତେବେଳେ ଅବସର ଗ୍ରହଣ କରିବେ ସେତେବେଳେ ଶୂନ୍ୟ ହସ୍ତରେ ଅନୁଷ୍ଠାନମାନଙ୍କରୁ ଘରକୁ ଫେରିବେ । ସେଥିପାଇଁ ପ୍ରତ୍ୟେକ Aided ସ୍କୁଲର contributary provident fund ବ୍ୟବସ୍ଥା କରିବାକୁ ଯେଉଁ ଦାବି ହେଉଥିଲା ତାକୁ କାର୍ଯ୍ୟକାରୀ କରିବା ଉଚିତ୍ । ସରକାର ଯଦି ଏ ବିଷୟରେ ସ୍କୁଲମାନଙ୍କୁ ନିର୍ଦ୍ଦେଶ ନ ଦିଅନ୍ତି ତାହାହେଲେ ଏ କାର୍ଯ୍ୟକାରୀ ହୋଇପାରିବ ନାହିଁ । ଶିକ୍ଷକମାନେ ଯେଉଁ ଅସୁବିଧା ଭୋଗ କରୁଥିଲେ ସେହି ଅସୁବିଧା ଭୋଗ କରିବେ ।

ପୁଣି ସେଦିନ କୁହାଯାଇଥିଲା ଯେ ଏହି ଶିକ୍ଷକମାନଙ୍କ ସମ୍ପର୍କୀୟ ସେଉଁସବୁ ଆଇନ୍ ତାହା ଅତିଶୀଘ୍ର ପ୍ରଣୟନ କରାଯିବ ଏବଂ ବିଧାନ ସଭାରେ ଉପସ୍ଥାପନ କରାଯିବ । ଆମେ ସମସ୍ତେ ଆଶା କରିଥିଲୁ ଯେ ବିଧାନ ସଭାର ଅନ୍ତତଃ ଏହି ଅଧିବେଶନରେ ସରକାର ଏ ଆଇନ୍ ପ୍ରଣୟନକରି ଉପସ୍ଥାପନ କରିବେ କିନ୍ତୁ ସେ କଥା ହୋଇ ପାରିଲା ନାହିଁ । ଏହି ଶିକ୍ଷକମାନଙ୍କ ଆଇନ୍ ସମ୍ପର୍କୀୟ ଯେଉଁ କଥାମାନ ତାହା ହେଉଛି ପ୍ରଧାନ । ତାକୁ ତୁରନ୍ତ ନକରି ପୁଣି Education Board ଉପରେ ନିର୍ଭର କରିବା ଦୁଃଖଦାୟକ । ଏ ଆଇନ୍ ଉପରେ ଯେତେ ବାଧା ଥିଲେ ମଧ୍ୟ ତାହା ଆଜି ସୁଦ୍ଧା ପ୍ରଣୟନ ହୋଇପାରି ନାହିଁ । ସେଥିପାଇଁ ଆପଣଙ୍କ ଜରିଆରେ ମନ୍ତ୍ରୀ ମହାଶୟଙ୍କୁ ମୁଁ ଅନୁରୋଧ କରିବି ଯେ ଅନ୍ତତଃ ପକ୍ଷେ ତୁରନ୍ତ ଏ ଆଇନ୍ ପ୍ରଣୟନ କରାଯାଉ ଏବଂ ଶିକ୍ଷକମାନଙ୍କ ମନରେ ଯେଉଁ ଆଶଙ୍କା ରହିଛି ତାକୁ ଦୂର କରାଯାଉ ।

ଆପଣ ଜାଣନ୍ତି, ଆମର ଏ ମାଧ୍ୟମିକ ଶିକ୍ଷା ପରିଚାଳନା କରିବାପାଇଁ Board of Secondary Education ଅଛି । ଏ ସମ୍ପର୍କରେ କହିବାର କୁହାଯାଇଛି ଯେ ଏଥିରେ ସରକାରଙ୍କର nominee ବହୁତ ଅଛନ୍ତି ଏବଂ ଏହା ଗୋଟିଏ ଗଣତାନ୍ତ୍ରିକ ସଂସ୍ଥା ନୁହେଁ । କହିବାର କହିବର୍ଷ ହେଲା ଏ ସମ୍ପର୍କରେ ଅଭିଯୋଗ ହେଉଛି । ସେ Boardରେ ଶିକ୍ଷକମାନେ ଯେପରି ସ୍ଥାନ ପାଇବେ ତା'ର ବ୍ୟବସ୍ଥା ନ ହେବା ହେତୁ ଶିକ୍ଷକମାନଙ୍କ ମନରେ ଘୋର ଅସନ୍ତୋଷ ହେଉଛି । ଯେଉଁ Board ଓଡ଼ିଶାର ମାଧ୍ୟମିକ ଶିକ୍ଷା ପରିଚାଳନା କରନ୍ତି, ସେହି Boardରେ ଏହିପରି ଅଗଣତାନ୍ତ୍ରିକ ପନ୍ଥା ସରକାର ଅବଲମ୍ବନ କରୁଥିବା ହେତୁ, ନିଜର nomineeମାନଙ୍କୁ ନେଇଥିଲେ ରଖିବା ହେତୁ ଶିକ୍ଷକମାନଙ୍କର ପ୍ରତିନିଧି ସେଥିରେ ସ୍ଥାନ ପାଉନାହାନ୍ତି ଏବଂ ମାଧ୍ୟମିକ ଶିକ୍ଷା ସମ୍ପର୍କରେ ସେମାନେ ସହଯୋଗ କରିବାରୁ ବଞ୍ଚିତ ହେଉଛନ୍ତି । ସେଥିପାଇଁ ତୁରନ୍ତ ଏ Board of Secondary Educationର ଗଠନ ପ୍ରଣାଳୀ ପରିବର୍ତ୍ତନ କରିବାକୁ ହେବ । ଏ ସମ୍ପର୍କରେ ମୁଁ କହିବାକୁ ଚାହେଁ ଯେ, ଏ Boardରେ ମଧ୍ୟ ଅଗରୁ ଆଲୋଚନା ହୋଇଥିଲା ଯେ ବର୍ତ୍ତମାନ Matric Examinationର result ପ୍ରକାଶ କରିବାରେ ଯେପରି ଭାବରେ ଡେରି ହେଉଛି, ଛାତ୍ରମାନେ ଯେପରି ଅସୁବିଧା ଭୋଗ କରୁଛନ୍ତି, ସେଥିପାଇଁ ସରକାର ଓଡ଼ିଶାକୁ 3ଟି ଜୋନ୍‌ରେ ପରିଣତ କରିବେ । 3ଟି ଜୋନ୍‌ର ପରୀକ୍ଷା ହେବ ଏବଂ ତା'ଫଳରେ ପରୀକ୍ଷାଫଳ ଠିକ୍ ସମୟରେ ଘୋଷଣା ହୋଇପାରିବ । ଏହା Boardରେ ଆଲୋଚିତ ହୋଇଥିଲେ ମଧ୍ୟ କାହିଁକି ଯେ ଆଜି ପର୍ଯ୍ୟନ୍ତ ସେ ଦିଗରେ କୌଣସି steps ନିଆ ଯାଇ ନାହିଁ ତାହା ବଡ଼ ଆଶ୍ଚର୍ଯ୍ୟର କଥା । ଅନ୍ୟାନ୍ୟ ରାଜ୍ୟରେ ଯେଉଁଠି ଏହିଭଳି ଅଧିକ ସଂଖ୍ୟକ ଛାତ୍ର ମାଟ୍ରିକ୍ ପରୀକ୍ଷା ଦିଅନ୍ତି ସେଠାରେ ଏହିଭଳି ବ୍ୟବସ୍ଥା କରିଛନ୍ତି । ଆମର ତାଙ୍କଠାରୁ ଅଧିକ ସଂଖ୍ୟକ ଛାତ୍ର ଅଛନ୍ତି । ସେହି ରାଜ୍ୟମାନଙ୍କୁ ଆଦର୍ଶ ସ୍ୱରୂପ ନେଇ ଆମର 3ଟି ଜୋନ କରିବା ଦରକାର । ସରକାର ଏହାକୁ କାର୍ଯ୍ୟକାରୀ କରିବାକୁ ତୁରନ୍ତ ଦୃଷ୍ଟି ଦେବେବୋଲି ମୋର ଅନୁରୋଧ । ଆମର ଏହି ଯେଉଁ ଅସୁବିଧା ପରୀକ୍ଷାରେ ଦେଖା ଦେଉଛି, ବିଶେଷକରି ମାଟ୍ରିକ୍ ପରୀକ୍ଷାରେ ଯେଉଁ ଅସୁବିଧା ଦେଖାଦେଉଛି, ଏପରି ବ୍ୟବସ୍ଥା କଲେ ତାହା ଦୂରୀଭୂତ ହୋଇପାରିବ । ଆପଣ ଦେଖିବେ ଆମ ରାଜ୍ୟରେ ଯେଉଁ Aided ସ୍କୁଲ ବା ପ୍ରାଇଭେଟ ସ୍କୁଲ ଅଛି ସେଗୁଡ଼ିକର ସଂଖ୍ୟା ସବୁଠାରୁ ଅଧିକ । ଆମର 12ଶହ private ସ୍କୁଲ ଅଛି । ଯାହାକୁ କି Aided ସ୍କୁଲ ବୋଲି କୁହାଯାଏ । 3ଶହ ସରକାରୀ ସ୍କୁଲ ଅଛି । ଏହି ସରକାରୀ ସ୍କୁଲଗୁଡ଼ିକର ବର୍ତ୍ତମାନ ଯେଉଁ 142 full deficit ସ୍କୁଲ ନେଲେ ତାହା ଅନ୍ତର୍ଭୁକ୍ତ ଅଛି । କିନ୍ତୁ ଏ ଯେଉଁ 12 ଶହ Aided institution ଅଛି ଏହା ସୁପରିଚାଳନା ପାଇଁ grant ଦେବାକୁ ସରକାରଙ୍କଠାରେ ଦାବି ହେଉଛି । ଅନେକ ରାଜ୍ୟ ଏ ଦିଗରେ

ପଦକ୍ଷେପ ନେଇଛନ୍ତି । ବେଙ୍ଗଲ, ବିହାର, ମହାରାଷ୍ଟ୍ର, ମଧ୍ୟପ୍ରଦେଶ, ଇତ୍ୟାଦି ରାଜ୍ୟରେ ଏମାନଙ୍କୁ full deficit ଦେବାପାଇଁ ସରକାର ବ୍ୟବସ୍ଥା କରିଛନ୍ତି । କିନ୍ତୁ ଆମ ରାଜ୍ୟରେ ଯାହା ପୂର୍ବବର୍ଷ grant-in-aid ପାଉଥିଲେ, ତାକୁ ଛୋଟାଇବା ପରିବର୍ତ୍ତେ ଆମେ ବରଂ ବଢ଼ାଉଛୁଁ । 3/4th deficit ଆମେ ଦେଉଥିଲୁ । ବର୍ତ୍ତମାନ ତାକୁ କମାଇ 3/4thକୁ ଆଣିଛୁଁ । ଏପରି ଭାବରେ ବ୍ୟବସ୍ଥା ହେଲେ ଯେ ଅନୁଷ୍ଠାନମାନଙ୍କର ସୁପରିଚାଳନାରେ ବାଧା ପଡ଼ିବ ଏବଂ ସେଠାରେ ଶିକ୍ଷା ବାଧାପ୍ରାପ୍ତ ହେବ । ସେହି ଅନୁଷ୍ଠାନ ଗୁଡ଼ିକ ଅନ୍ୟ କୌଣସି ସ୍ଥାନରୁ ଅର୍ଥ ସଂଗ୍ରହକରି deficit ପୂରଣ କରି ପାରିବେ ନାହିଁ । ସେହି ଦୃଷ୍ଟିରୁ ସରକାର ଏ grant-in-aidକୁ ବଢ଼ାଇବେ ଏବଂ ସେହି aided ସ୍କୁଲମାନଙ୍କରେ ଯେଉଁ deficit ହେଉଛି ତାହା ସେମାନଙ୍କୁ ଦେଲେ ସେମାନେ ତାଙ୍କର କାର୍ଯ୍ୟ ଅତି ସୁରୁମରୂପେ ପରିଚାଳନା କରିପାରିବେ ।

ବର୍ତ୍ତମାନ ସରକାର ଘୋଷଣା କରିଛନ୍ତି ଯେ ଯେଉଁ untrained ଶିକ୍ଷକମାନେ ଅଛନ୍ତି ସେମାନଙ୍କୁ ଆଉ ସ୍କୁଲରେ ସ୍ଥାନ ଦିଆଯିବ ନାହିଁ । ମୋ'ର କହିବାର କଥା ଯେ ବହୁସଂଖ୍ୟକ untrained ଶିକ୍ଷକମାନେ aided ସ୍କୁଲମାନଙ୍କରେ ଚାକିରି କରି ଆସିଛନ୍ତି । ବର୍ତ୍ତମାନ ଯଦି କୁହାଯିବ ଯେ ସେମାନେ ଟ୍ରେନିଂ ପାଇବେ ନଚେତ୍ ଚାକିରିରୁ ବିଦାୟ ନେବାକୁ ହେବ ; ତା'ହେଲେ ଏ ଗୋଟିଏ ଦୁଃଖଦାୟକ କଥା ହେବ । ଅନ୍ତତଃ ପକ୍ଷେ ଯେଉଁମାନେ 5 ବର୍ଷରୁ ଅଧିକ ଧାରାବାହିକ ଭାବରେ ଚାକିରି କରିଛନ୍ତି, ସେମାନଙ୍କୁ ଯଦି summer vacation କିମ୍ବା ଅନ୍ୟାନ୍ୟ vacation ରେ In service Training ଦେବାର ବନ୍ଦୋବସ୍ତ କରାଯାଏ, ତାହାହେଲେ ସୁବିଧା ହେବ । ସରକାରଙ୍କ ତରଫରୁ ଯେତେବେଳେ ସେମାନଙ୍କୁ ବାହାର କରିଦେବାପାଇଁ କଡ଼ା ନିର୍ଦ୍ଦେଶ ଯାଉଛି Managing Committeeକୁ, ସେତେବେଳେ Managing Committeeକୁ ବାଧ୍ୟହୋଇ ସେମାନଙ୍କୁ ବାହାର କରିବାକୁ ପଡ଼ୁଛି । ଯେଉଁମାନଙ୍କର ଅନ୍ତତଃପକ୍ଷେ 5 ବର୍ଷରୁ ଅଧିକ ଅଭିଜ୍ଞତା ଅଛି ସେମାନେ ସହଜରେ ତାଲିମପ୍ରାପ୍ତ ହୋଇ ପାରିବେ ଏବଂ ସେହି ଶିକ୍ଷାନୁଷ୍ଠାନମାନଙ୍କରେ କାର୍ଯ୍ୟକରି ପାରିବେ । ସେହିଦୃଷ୍ଟିରୁ ମୁଁ ମନ୍ତ୍ରୀ ମହୋଦୟଙ୍କୁ ଅନୁରୋଧ କରୁଛି ଯେ ସେ ଏଦିଗରେ ଯଥାର୍ଥ ପଦକ୍ଷେପ ଗ୍ରହଣ କରନ୍ତୁ ।

ତା' ପରେ ଆପଣ ଜାଣନ୍ତି ଯେ ବର୍ତ୍ତମାନର ପରୀକ୍ଷା ପ୍ରଣାଳୀ ପରିବର୍ତ୍ତନ ହେବା ଦରକାର । କେବଳ ଆମ ରାଜ୍ୟ ନୁହେଁ, ସାରା ଭାରତବର୍ଷରେ ଏହା ଗୋଟିଏ ସମସ୍ୟା ହୋଇ ଦେଖା ଦେଇଛି । ଏହାକୁ ଯଦି ଆମେ ତୁରନ୍ତ ପରିବର୍ତ୍ତନ ନ କରୁ, ଏହାକୁ ଯେପରି ପୂର୍ବରୁ ଥିଲା ସେହିପରି ଚାଲିବାକୁ ଦେଉ, ବର୍ତ୍ତମାନ ପରୀକ୍ଷାରେ ଯେପରି ଭାବରେ ଦୁର୍ନୀତି ପ୍ରବେଶ କରିଛି ଏବଂ ଶିକ୍ଷାନୁଷ୍ଠାନମାନେ ପରୀକ୍ଷା conduct

କରିବାକୁ ଯେପରି କଷ୍ଟସାଧ୍ୟ ମନେ କରିଲେଣି ତାହାହେଲେ ଆମର ପରୀକ୍ଷାରେ କୌଣସି ମୂଲ୍ୟ ରହିବ ନାହିଁ । ସେହି ଦୃଷ୍ଟିରୁ ଅନ୍ତତଃ ଆମ ରାଜ୍ୟରେ ଯେଉଁ ଶିକ୍ଷାବିତମାନେ ଅଛନ୍ତି ଏବଂ Centreରେ ଯେଉଁ Board of Education ଅଛି ସେମାନଙ୍କ ସହିତ consultation କରି ଆମକୁ ଏ ପରୀକ୍ଷା ପ୍ରଣାଳୀ ପରିବର୍ତ୍ତନ କରିବାକୁ ହେବ । ଏହା ଅତି ଜରୁରୀ । ଏହା ନ କଲେ ଆଜି ଶିକ୍ଷାର ସ୍ତର ଯେପରି ନିମ୍ନଗତି କଲାଣି ତାକୁ ଆମେ ରୋକି ପାରିବୁ ନାହିଁ । ସେଥିପାଇଁ ଏ ପରୀକ୍ଷା ପ୍ରଣାଳୀ ପରିବର୍ତ୍ତନ କରିବା ପାଇଁ ତୁରନ୍ତ ପଦକ୍ଷେପ ନେବାକୁ ମୁଁ ଅନୁରୋଧ କରୁଛି ।

ତା' ପରେ ଆପଣ ଜାଣିଥିବେ ଯେ ମାନ୍ୟବର ଶିକ୍ଷା ମନ୍ତ୍ରୀ ପ୍ରାୟ 2 ବର୍ଷ ହେଲା ବହୁ ସ୍ଥାନରେ ଭାଷଣ ପ୍ରସଙ୍ଗରେ କହୁଛନ୍ତି ଯେ ଆମେ ଆମର ଶିକ୍ଷାକୁ କୃଷି ଅଭିମୁଖୀ କରିବୁ । ଏହା ଆନନ୍ଦର କଥା । ଯେଉଁ ଦେଶରେ ଶତକଡ଼ା 70ରୁ ଅଧିକ ଲୋକ କୃଷି ଉପରେ ନିର୍ଭର କରନ୍ତି ସେହି ଦେଶରେ ଯଦି ଆମେ କୃଷି ଅଭିମୁଖୀ ଶିକ୍ଷା ଦେବୁ ତାହାହେଲେ ଏହା ଗୋଟିଏ ଆନନ୍ଦର କଥା । ଏ ଦିଗରେ ଦୃଢ଼ ପଦକ୍ଷେପ ନେବେ ବୋଲି ଭାବିଥିଲୁ । କିନ୍ତୁ ସରକାର ମାତ୍ର 20ଟି ସ୍କୁଲରେ କୃଷି ଶିକ୍ଷା ପ୍ରବର୍ତ୍ତନ କରୁଛନ୍ତି ବୋଲି କହୁଛନ୍ତି । କେବଳ ସେତିକି ନୁହେଁ । ସଂସ୍କୃତକୁ ମଧ୍ୟ M. E. Standardରୁ ବାଧ୍ୟତାମୂଳକ କରିଛନ୍ତି । M. E. Schoolରେ ସଂସ୍କୃତ ପଣ୍ଡିତ ନାହାନ୍ତି । ସେତେବେଳେ ଏହି ସଂସ୍କୃତକୁ କାହିଁକି ବାଧ୍ୟତାମୂଳକ ହେଲା । ଏହି ସ୍ତରରେ ଛାତ୍ରମାନେ ନିଜ ମାତୃଭାଷା ଓଡ଼ିଆ, ଇଂରାଜୀ, ହିନ୍ଦି, ସଂସ୍କୃତ ଏହିପରି 4ଟି ଭାଷା ଶିକ୍ଷା କରିବାକୁ ପଡ଼ୁଛି । ଏହି ଛଡ଼ା ଅନ୍ୟାନ୍ୟ ବିଷୟ ଅଛି । ଏହାଛଡ଼ା Minority Sectionର ପିଲାମାନେ ନିଜ ମାତୃଭାଷା ଛଡ଼ା Lower Oriya ପଢ଼ିବାକୁ ପଡ଼ୁଛି । ସଂସ୍କୃତକୁ 8ମ ଶ୍ରେଣୀରୁ ପଢ଼ିବାକୁ ହେଉଥିଲା, ସେଥିରେ କିଛି ଅସୁବିଧା ନଥିଲା । ତାକୁ ହଠାତ୍ 6ଷ୍ଠ ଶ୍ରେଣୀରୁ ସଂସ୍କୃତ ପ୍ରଚଳନ କରିବା ଦ୍ୱାରା M. E. Standardରେ ଅସୁବିଧା ହେଲାଣି । କାରଣ ସେଠି ସଂସ୍କୃତ ପଢ଼ାଇବାର କିଛି ବ୍ୟବସ୍ଥା ନାହିଁ । ସରକାର ଖାମଖିଆଲ ଭାବରେ ଏ ଯେଉଁ ବ୍ୟବସ୍ଥା କରୁଛନ୍ତି ବିଶେଷ ଭାବରେ Board of Secondary Education ସହିତ ଆଲୋଚନା ନ କରି executive orderରେ କରିବା ଦ୍ୱାରା ନାନାପ୍ରକାର ଅସୁବିଧା ସୃଷ୍ଟି ହେଉଛି । ଆପଣ ଦେଖିବେ ବିଜ୍ଞାନ ଶିକ୍ଷାରେ 1,030 Seconday Section ଭିତରୁ 581 ସ୍କୁଲରେ Laboratory ନାହିଁ କିମ୍ବା ବିଜ୍ଞାନ ପଢ଼ିବାର ବ୍ୟବସ୍ଥା ନାହିଁ । ସରକାର ଏ ଯେଉଁ statistics ଦେଇଛନ୍ତି ମୁଁ ତାର figure କେବଳ ଦେଉଛି । All-India Education Survey Orissa Reportରେ ଦର୍ଶାଯାଇଛି 1,030 ସେକେଣ୍ଡାରୀ ସ୍କୁଲରୁ 581ଟିରେ କୌଣସି Laboratory ନାହିଁ । ଏଥିରୁ ଦେଖାଯିବ ବିଜ୍ଞାନ ପ୍ରତି କିପରି ଶ୍ରଦ୍ଧା

ଅଛୁ । ଏହି ସ୍କୁଲରୁ ଯେଉଁ ଛାତ୍ରମାନେ ବାହାରୁଛନ୍ତି ସେମାନେ କଲେଜରେ ଭଲ ନେବାକୁ ବାଧ୍ୟ, ବିଜ୍ଞାନ ନେଇ ପାରିବେ ନାହିଁ । ଆମର ଯଦି High School ଗୁଡ଼ିକରେ ବିଜ୍ଞାନ ଶିକ୍ଷା ପ୍ରଚଳନ ନ କରିବା, Laboratoryର ବ୍ୟବସ୍ଥା ନ କରିବା ତାହାହେଲେ ଶିକ୍ଷା ପୂର୍ଣ୍ଣାଙ୍ଗ ହୋଇପାରିବ ନାହିଁ ।

ଆପଣ ଦେଖିବେ ତାଲିମପ୍ରାପ୍ତ ଶିକ୍ଷା ସମ୍ପର୍କରେ ଆମର ବହୁତ ତାଲିମ ନ ପାଇ ଶିକ୍ଷକ ଅଛନ୍ତି । ଗ୍ରାଜୁଏଟ୍‌ମାନଙ୍କ ଭିତରେ 30·4% trained । ଅନ୍ୟ ଅନ୍ୟାନ୍ୟ ସ୍ତରରେ ଆପଣ ଦେଖିବେ ତାଲିମ ଅଭାବ ବହୁତ ଶିକ୍ଷକ ଅଛନ୍ତି । ପ୍ରାଥମିକ ସ୍କୁଲ-ମାନଙ୍କରେ ଟ୍ରେନଡ୍ ଶିକ୍ଷକ 59·9%, M. E. Schoolରେ 31·2%, H. E. Schoolରେ 50% । ଏମାନଙ୍କର overall per cent ହେଉଛି 54·2. ଏଥିରୁ ଦେଖିବେ ତାଲିମ ନ ପାଇବା ଶିକ୍ଷକ ବହୁତ ଅଛନ୍ତି । ଯେଉଁମାନେ 5 ବର୍ଷରୁ ଅଧିକ ଶିକ୍ଷକତା କରୁଛନ୍ତି ସେମାନଙ୍କୁ In service Training ଦେବାକୁ ହେବ । ଆମର E. T. Training School ବନ୍ଦ ହୋଇଗଲା । ସରକାର ଏହାକୁ ଉଠାଇ ଭଲ କାମ କରିଛନ୍ତି । ତା' ପରିବର୍ତ୍ତେ ଯେଉଁଠି E. T. Training School ଥିଲା ସେଠି C. T. Training School ଆମେ କଲେ ଆମର ଯେଉଁମାନେ ଶିକ୍ଷକତା କରୁଛନ୍ତି ସେଠି ତାଲିମପ୍ରାପ୍ତ ଶିକ୍ଷକ ପାଇ ପାରିବା । ଯେଉଁମାନେ serviceରେ ଅଛନ୍ତି ସେମାନଙ୍କ ପାଇଁ ଯଦି ଅନ୍ୟ ପ୍ରକାର ବ୍ୟବସ୍ଥା କରିବା ତାଲିମ ପାଇ ଯଦି ଶିକ୍ଷକତା ନ କରିବେ ତାହାହେଲେ methodical teaching ଦେଇପାରିବା ନାହିଁ । ତା' ପରେ ଆପଣ ଦେଖନ୍ତୁ Class Iରୁ Admission ନେଇ Class VIIରେ Primary Education ଶେଷ ହେଲା । ସେଥିରେ ଆମର ଦେଖିବା କଥା class VIIର ଛାତ୍ର ସଂଖ୍ୟା କେତେ ଥିଲେ ଏବଂ ସେମାନଙ୍କ ଭିତରୁ High Schoolରେ 8ମ ଶ୍ରେଣୀରେ କେତେ ଯୋଗଦେଲେ । ଏହା ଭିତରେ କେତେ wastage ହେଉଛି । ସେହିପରି High Schoolରେ class Xରେ 23 ଜଣ ଛାତ୍ର ଥିଲା ବେଳେ 10 ଜଣ matriculationରେ ପଢୁଛନ୍ତି । ଅବଶିଷ୍ଟ 13 ଜଣ ଛାତ୍ର ପାଠ ଛାଡ଼ି ଯାଉଛନ୍ତି । ଏ ଯେଉଁ wastage ହେଉଛି ଏହାକୁ ଆମେ ରୋକିବାକୁ ହେବ । ଆମେ ଶିକ୍ଷାର ରୂପ ପରିବର୍ତ୍ତନ କରିବାକୁ ହେବ ଓ ପରୀକ୍ଷାର ପରିବର୍ତ୍ତନ କରିବାକୁ ହେବ । ତାହା ନ ହେଲେ wastage ବରାବର ଲାଗି ରହିବ । ଏ ଗୋଟିଏ national wastage, ଏଥିପ୍ରତି ସରକାର ଆଶୁପର୍ଯ୍ୟନ୍ତ ଦୃଷ୍ଟି ଦେଇ ନାହାନ୍ତି । ଦୁଃଖର କଥା ମାଧ୍ୟମିକ ସ୍କୁଲ ଓ କଲେଜ ସ୍ତରରେ ଯେଉଁ wastage ହେଉଛି ତାକୁ ରୋକାଯାଇ ପାରୁନାହିଁ । ସେଥିପ୍ରତି ସରକାର ଦୃଷ୍ଟି ଦେବାକୁ ହେବ ।

ଆମର ଅଲବଦନ ତଳେ 142ଟି ସ୍କୁଲ ସରକାର ହାତକୁ ନେଲେ । ଏହାକୁ ନେଲାବେଳେ ସେଠି ଯେଉଁ ଶିକ୍ଷକମାନେ ଶିକ୍ଷକତା କରୁଥିଲେ ସେମାନଙ୍କ service condition ଧ୍ୟାନକୁ ନେଇ ନାହିଁ । ସେମାନଙ୍କର ଯେଉଁ Association ଅଛି, ସେମାନଙ୍କ ସହିତ ପରାମର୍ଶକରି ସେମାନଙ୍କ service condition ଉପର କ'ଣ ରହିବ, ସେମାନଙ୍କ past service ବିଷୟରକୁ ନଅଯିବ କି ନାହିଁ, ଏସ ବିଷୟ ଆଲୋଚନା କଲେ ନାହିଁ । ଯେଉଁ ଶିକ୍ଷକମାନେ ନଜର ରକ୍ତ ଦେଇ ସ୍କୁଲ ଗଠନ କରିଥିଲେ ସେହିଭଳି ଶିକ୍ଷକମାନଙ୍କୁ ବୟସ ହୋଇଯାଇଥିବାରୁ retire କରାଗଲା । ଏ ସମ୍ପର୍କରେ ତାଙ୍କ ସହ କଥାବାର୍ତ୍ତାକରି ଅବସର ବୟସ ଧାର୍ଯ୍ୟ ହୋଇ ପାରିଲା ନାହିଁ । ସେମାନଙ୍କ ଭିତରେ ବହୁ ବିଖ୍ୟାତ ଶିକ୍ଷକ ଥିଲେ । ସେମାନେ retire ହେଲେ । ସେଥିରୁ ବହୁତ case High Courtରେ ଅଛି । ଏଥିପାଇଁ କାହିଁକି ସୁଯୋଗ ଦିଆଗଲା । ସେମାନଙ୍କ ସହିତ କଥାବାର୍ତ୍ତା କରି ମୀମାଂସାରେ ପହଞ୍ଚି ଥିଲେ ଏ ପରିସ୍ଥିତି ସୃଷ୍ଟି ହୋଇ ନ ଥାନ୍ତା । ଏ ପ୍ରସଙ୍ଗରେ କହିବାକୁ ଚାହେଁ ex-District Board ଗଞ୍ଜାମ, କୋରାପୁଟର ଶିକ୍ଷକମାନଙ୍କ ବିଷୟ ଆଜିପର୍ଯ୍ୟନ୍ତ ସମାଧାନ ହୋଇପାରିଲା ନାହିଁ । ଆପଣ ଜାଣନ୍ତି ex-District Board ଶିକ୍ଷକମାନେ, ଯେଉଁମାନେ ଅବସର ଗ୍ରହଣ କରିବା କଥା ସେମାନଙ୍କୁ ଅଧିକା ବର୍ଷେ ସମୟ ଦିଆଗଲା । ଏଥିପାଇଁ କି ସେମାନଙ୍କ Provident Fund Account, pay fixation ହୋଇ ନ ଥିଲା । କିନ୍ତୁ ଏ କୋଟିଏ ବର୍ଷ ଭିତରେ ସେସବୁ ହୋଇ ପାରିଲା ନାହିଁ । ଚଳିତ ବର୍ଷ ସେ ଅବସ୍ଥା ଦେଖା ଦେଇଛି । ଏହି pay fixation ଏପରି ଅସୁବିଧା ହୋଇଛି ଯେ ବହୁ ଶିକ୍ଷକ ଯାହା ଦରମା ପାଉଥିଲେ ତାହାଠୁଁ କମିଯିବ । 1951 ମସିହା Pay Committee Report ଅନୁଯାୟୀ ଏମାନଙ୍କ pay fixation ବର୍ତ୍ତମାନ ପୂର୍ବା ହୋଇ ପାରିଲନାହିଁ । ସେଥିପାଇଁ ସେମାନେ ଆବେଦନ କରିଛନ୍ତି ଆଉ କୋଟିଏ ବର୍ଷ ସମୟ ଦିଆଯାଉ । ତାହାହେଲେ ଏହି ସମୟ ଭିତରେ Provident Fund Account, pay fixation କରିବା ସମ୍ଭବ ହେବ । ଏ ସବୁ ବ୍ୟବସ୍ଥା ସରକାର କରନ୍ତୁ । ମୋର ବିଶ୍ୱାସ ଏହି ଯୁକ୍ତିଯୁକ୍ତ ଦାବି ଗ୍ରହଣ କରିବା ପାଇଁ ଶିକ୍ଷା ମନ୍ତ୍ରୀ ବିଚାର କରିବେ । ଯେଉଁମାନଙ୍କର ଅବସର ନେବା ସମୟ ହୋଇଛି ସେମାନଙ୍କୁ ପୁନର୍ବାର 1 ବର୍ଷ ସମୟ ଦେବେ ।

ଆଉ କୋଟିଏ କଥା Craft Teacher ମାନଙ୍କୁ ହଠାଇ ଦେବାପାଇଁ ସରକାର ସ୍ଥିର କରିଛନ୍ତି । ଶିକ୍ଷାକୁ ଧନ୍ଦାମୂଳକ, ବୃତ୍ତିମୂଳକ କରିବାକୁ ସରକାର ଯାଉଥିବା ବେଳେ ବଡ଼ିବଡ଼ ସ୍କୁଲରୁ craft ହଠାଇବାକୁ ଯାଉଛନ୍ତି । ଯଦି କେଉଁଠି ଅସୁବିଧା ରହୁଛି ଏହାକୁ ଉନ୍ନତକରି ଛାତ୍ରମାନଙ୍କୁ craft minded କରନ୍ତୁ । ସେମାନଙ୍କୁ ଯଦି ହଠାଇ ଦେବେ ଅନ୍ୟକୌଣସି ଶିକ୍ଷାବିଭାଗ ସ୍ଥାନରେ ସେମାନଙ୍କୁ ରଖିବା ବ୍ୟବସ୍ଥା ସରକାର କରନ୍ତୁ । ମୋର କହିବାର କଥା craft ସ୍କୁଲମାନଙ୍କରୁ ହଠିବା ଅନୁଚିତ୍ । ଯେଉଁଠି ବୃତ୍ତି

ଦେଖାଦେଉଛୁ ତା'ଙ୍କୁ ଦୂରକରି ଅଧିକା craft ଶିକ୍ଷକ ରଖନ୍ତୁ ଏବଂ ଛାତ୍ରମାନେ ଯେପରି craft minded ହେବେ ସେପରି ବ୍ୟବସ୍ଥା କରନ୍ତୁ । ଦୁଃଖର କଥା ଯେପରି ହୋଇ ପାରୁ ନାହିଁ ।

ତା'ପରେ physical education ବିନା ଆମର ଶିକ୍ଷା ପୂର୍ଣ୍ଣାଙ୍ଗ ହୋଇପାରୁ-ନାହିଁ । ଆମର play ground ସ୍କୁଲମାନଙ୍କରେ ଅଭାବ ହେତୁ Physical Education ପ୍ରତି ଯେପରି ଦୃଷ୍ଟି ଦେବାକଥା ଦିଆଯାଉନାହିଁ । World ଅଲମ୍ପିକରେ ଭାରତ ପଛରେ ପଡୁଛୁ । ତାର ପ୍ରଧାନ କାରଣ ହେଲା ସ୍କୁଲ ସ୍ତରରେ ଯେପରି ଛାତ୍ରମାନେ ତାଲିମ୍ ପାଇବା କଥା ସେପରି ପାଉନାହାନ୍ତି ।

ଆଜି ଛାତ୍ର ବିଶୃଙ୍ଖଳାର ପ୍ରଥମ କାରଣ ହେଉଛି ସେମାନଙ୍କର ଖେଳ, କସରତ, ଦଉଡ, ଇତ୍ୟାଦି ପାଇଁ ଆମର ବ୍ୟବସ୍ଥାର ଅଭାବ । କେଣୁ ସେହି ଦିଗରେ ବହୁତ ବ୍ୟବସ୍ଥା କରିବାକୁ ହେବ । ଅଥଚ ବହୁତ ସ୍କୁଲମାନଙ୍କରେ ତାହା ହୋଇପାରୁ ନାହିଁ । ଏହି ସ୍କୁଲ ମାନଙ୍କରୁ ସେମାନେ ଉପଯୁକ୍ତ ଭାବରେ ଗଠିତ ହୋଇ ପବ୍ଲିକ life କୁ ଯିବେ । ଯେଉଁମାନେ ଅଲମ୍ପିକ୍‌କୁ ଯିବେ ସେମାନଙ୍କର ସେ ଭିତ୍ତିନାହିଁ । ସ୍କୁଲ କଲେଜରେ ଉପଯୁକ୍ତ ତାଲିମ୍ ପାଇବାର ବ୍ୟବସ୍ଥା ନାହିଁ । ସେଥିପାଇଁ ଦେଖିବେ ଭାରତ ବହୁ ସମୟରେ ଅଲମ୍ପିକ୍ ବା International Sports Competition ରେ ବହୁ ପଛରେ ପଡି ରହୁଛି । ସେ ଦୃଷ୍ଟିରୁ ଛାତ୍ର ବିଶୃଙ୍ଖଳା ଦୂର କରିବା ଦୃଷ୍ଟିରୁ ଏବଂ ଶାରୀରିକ ସ୍ୱାସ୍ଥ୍ୟ ଛାତ୍ରମାନଙ୍କ ଉପରେ ପୂବ ପ୍ରଭାବ ବିସ୍ତାର କରିପାରିବ, ସେ ଦୃଷ୍ଟିରୁ Physical Education ପ୍ରତି ଆହୁରି ଅଧିକ ଦୃଷ୍ଟି ଦେବାକୁ ହେବ । ଯେଉଁ ସ୍କୁଲଗୁଡ଼ିକରେ ଖେଳ ପଡ଼ିଆ ନାହିଁ ସେମାନଙ୍କୁ ଖେଳ ପଡ଼ିଆ ଦେବାର କଥା ସରକାର ଏ ଦିଗରେ ବ୍ୟବସ୍ଥା କରିବା କଥା ।

ପ୍ରାଥମିକ ଶିକ୍ଷା ଓ ପ୍ରାଥମିକ ଶିକ୍ଷକମାନଙ୍କ ସମ୍ପର୍କରେ ଯାହା କୁହାଯାଇଥିଲା ଅବସର କାଳୀନ ବିଭିନ୍ନ ସୁବିଧା ସେମାନଙ୍କୁ ଦେବାପାଇଁ ଆଜି ପର୍ଯ୍ୟନ୍ତ ବହୁଶିକ୍ଷକ ଅବସର ଗ୍ରହଣ କଲାପରେ ମଧ୍ୟ ପେନ୍‌ସନ୍, provident ଫଣ୍ଡ ଓ ଗ୍ରାଚ୍ୟୁଇଟି ଏହି ବିଭିନ୍ନ ସୁବିଧା ସେମାନଙ୍କୁ ଦିଆଯାଇ ନାହିଁ । ମୁଁ ଦେଖନ୍ତି ପତ୍ରିକାରେ କି ରକମ Retirement Benefit (ବା) ଅବସର କାଳୀନ ସୁବିଧା ପ୍ରାଥମିକ ଶିକ୍ଷକମାନେ ପାଉଥିଲେ, ଅବଶ୍ୟ ମନ୍ତ୍ରୀ ମହୋଦୟ ସେ କଥା କହି ନଥିଲେ । ତାଙ୍କ ରିପୋର୍ଟରେ ଶେଷକୁ ଅଛି ବୋଲି କହିଥିଲେ । କିନ୍ତୁ ମୁଁ ନିର୍ଦ୍ଦିଷ୍ଟ ଭାବରେ ଆଜି ଜାଣିବାକୁ ଚାହେଁ କି, ଅବସର କାଳୀନ ସୁବିଧା ପ୍ରାଥମିକ ଶିକ୍ଷକମାନେ ପାଉଛନ୍ତି ଏବଂ କେତେକ ଶିକ୍ଷକ ପାଇ ସାରିଲେଣି, ତାହା ମୁଁ ଜାଣିବାକୁ ଚାହେଁ । ମୁଁ ଜାଣେ ବହୁ ପ୍ରାଥମିକ ଶିକ୍ଷକ ନା ପ୍ରୋଭିଡେଣ୍ଟ ଫଣ୍ଡ, ନା ପେନ୍‌ସନ୍ କିଛି ପାଇ ନାହାନ୍ତି ଏବଂ

ସେମାନଙ୍କ ଭିତରେ ବହୁ ଅସନ୍ତୋଷ ବର୍ତ୍ତମାନ ସୃଷ୍ଟି ହେଉଛି । ସେ ଅସନ୍ତୋଷ ଦୂର କରିବାକୁ ତେବେ ସରକାର ତାଙ୍କର ନୀତି ସ୍ପଷ୍ଟ ଭାବରେ ବ୍ୟକ୍ତ କରିବାକୁ ହେବ । ଯେଉଁମାନେ ଅବସର ନେଇଛନ୍ତି ସେମାନଙ୍କୁ ଏସବୁ ତୁରନ୍ତ ଦେବାପାଇଁ ବ୍ୟବସ୍ଥା କରିବାକୁ ହେବ ।

ଆପଣ ଜାଣନ୍ତି ଷଷ୍ଠ ଓ ସପ୍ତମ ଶ୍ରେଣୀକୁ ସରକାର ପ୍ରାଥମିକ ଶିକ୍ଷା ଶ୍ରେଣୀର ଅନ୍ତର୍ଭୁକ୍ତ କଲେ ଓ ପ୍ରାଥମିକ ଶିକ୍ଷା ବିଭାଗର ଅନ୍ତର୍ଭୁକ୍ତ କଲେ । ମୁଁ ଜାଣିବାକୁ ଚାହେଁ ସରକାର ଯେତେବେଳେ ଷଷ୍ଠ ଓ ସପ୍ତମ ଶ୍ରେଣୀକୁ ପ୍ରାଥମିକ ଶିକ୍ଷା ବିଭାଗରେ ରଖିଲେ ସେତେବେଳେ ଷଷ୍ଠ ଓ ସପ୍ତମ ଶ୍ରେଣୀର ଛାତ୍ରମାନଙ୍କଠାରୁ ଦରମା କାହିଁକି ଆଦାୟ ହେଉଛି ? ଆପଣ ଜାଣନ୍ତି ଆମ ପ୍ରାଥମିକ ଶିକ୍ଷା ଅବୈତନିକ, ଯେହେତୁ ଷଷ୍ଠ ଓ ସପ୍ତମ ଶ୍ରେଣୀ ପ୍ରାଥମିକ ଶିକ୍ଷା ବିଭାଗର ଅନ୍ତର୍ଭୁକ୍ତ ହେଲା, ତେଣୁ ଷଷ୍ଠ ଓ ସପ୍ତମ ଶ୍ରେଣୀର ଛାତ୍ରମାନଙ୍କଠାରୁ ଦରମା ନେବା ଅନୁଚିତ ଏବଂ ସେମାନଙ୍କୁ free education ବା ଅବୈତନିକ ଶିକ୍ଷା ଦେବା ଉଚିତ । ସେ ଦୃଷ୍ଟିରୁ ସରକାର କେବଳ ଏଗୁଡ଼ାକୁ ପ୍ରାଥମିକ ଶିକ୍ଷା ବିଭାଗରେ ରଖିଦେଲେ ବୋଲି ନ କହି ପ୍ରାଥମିକ ଶିକ୍ଷା ଶ୍ରେଣୀଭୁକ୍ତ ଷଷ୍ଠ ଓ ସପ୍ତମ ଶ୍ରେଣୀର ଛାତ୍ରମାନଙ୍କ ଠାରୁ ଦରମା ନ ନେବା ଉଚିତ୍ । ମୁଁ ଆଶାକରେ ଆସନ୍ତା ବର୍ଷଠାରୁ ଅନ୍ତତଃ ପକ୍ଷେ ଷଷ୍ଠ ଓ ସପ୍ତମ ଶ୍ରେଣୀର ଛାତ୍ରମାନଙ୍କଠାରୁ କୌଣସି ଦରମା ଆଦାୟ କରାଯିବ ନାହିଁ । ଭାରତୀୟ ସମ୍ବିଧାନ ନିର୍ଦ୍ଧାରଣ ଅନୁସାରେ 14 ବର୍ଷ ବୟସ ପର୍ଯ୍ୟନ୍ତ ଅବୈତନିକ ଶିକ୍ଷା ପ୍ରଚଳନ କରାଯିବା ଉଚିତ୍ ବୋଲି ଯାହାଅଛି ତାକୁ ବାସ୍ତବକ୍ ଆମେ କାର୍ଯ୍ୟକାରୀ କରି ପାରିବା ଓ ବାସ୍ତବରୂପ ଦେଇ ପାରିବା ଯଦି ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ କୌଣସି ଛାତ୍ରଙ୍କଠାରୁ ଆମେ ଦରମା ଆଦାୟ ନକରୁ । ଏ ପ୍ରସଙ୍ଗରେ ମୁଁ କହିବାକୁ ଚାହେଁ Single Teacher School କଥା । Single Teacher School ଗୋଟିଏ impossible କଥା । ଏପରି ସ୍ଥଳରେ ଜଣେ ଶିକ୍ଷକ ଚାରୋଟି ଶ୍ରେଣୀର ଶିକ୍ଷା ପରିଚାଳନା କରୁଥିବେ ଓ ସେଠାରେ କିପରି ଭାବରେ ଶିକ୍ଷା ଦାନ ଓ ଶିକ୍ଷାଲାଭ ହୋଇ ପାରୁଥିବ ତାହା ଆପଣ ଅନୁମାନ କରି ପାରୁଥିବେ । ଆପଣ ଶୁଣିଲେ ଆଶ୍ଚର୍ଯ୍ୟ ହେବେ ଏ ଗ୍ରାମାଞ୍ଚଳରେ ଯେଉଁ ସ୍କୁଲ ସବୁ ଅଛି ତନ୍ମଧ୍ୟରୁ ଶତକଡ଼ା 50·21 ହେଉଛି Single Teacher School, 20.12 ହେଉଛି Two-Teacher School ଏବଂ 10·28 ହେଉଛି Three-Teacher School. ଆପଣ ମନେ ରଖନ୍ତୁ ପ୍ରଚଳିତ ବ୍ୟବସ୍ଥା ଅନୁସାରେ ଆମର ପ୍ରାଥମିକ ଶିକ୍ଷା 5 ବର୍ଷରେ ଶେଷ ହେଉଛି । ଏହିପରି ଭାବରେ ଯେଉଁ ସବୁ ପ୍ରାଥମିକ ସ୍କୁଲରେ single teacher ବା double teacher ଅଛନ୍ତି ଏମାନେ କି ପାଠ ପଢ଼ାଉଥିବେ, କି ଶିକ୍ଷାଦାନ ସେ ସ୍କୁଲର ଛାତ୍ର ମାନଙ୍କୁ ଦେଉଥିବେ ତାହା ଆପଣ ଅନୁମାନ କରୁଥିବେ । ପ୍ରାଥମିକ ଶିକ୍ଷା ହେଉଛି ସମଗ୍ର ଶିକ୍ଷା ବ୍ୟବସ୍ଥାର ମୂଳଦୁଆ, ସେହିଟିକୁ ଯଦି ଦୃଢ଼ୀଭୂତ କରାଯାଏ ଓ ଅଧିକରୁ ଅଧିକ ଉନ୍ନତ କରାଯାଏ ତାହାହେଲେ ମାଧ୍ୟମିକ ଶିକ୍ଷା ଓ କଲେଜସ୍ତରର ଶିକ୍ଷା ସବୁ ଦୃଢ଼ୀଭୂତ ହେବ ।

କିନ୍ତୁ ଦୁଃଖର ବିଷୟ ଆମେ ସେହି ସାଧାରଣ କଥାକୁ ଭୁଲିଯାଉ ଏବଂ ପ୍ରାଥମିକ ଶିକ୍ଷାକୁ ଉପଯୁକ୍ତ ଦୃଷ୍ଟି ଓ ଗୁରୁତ୍ୱ ଦେବାର କଥା ତାହା ହେଉନାହିଁ । ସେଥିପାଇଁ ଏହି ଯେଉଁ Single Teacher Schoolଗୁଡ଼ିକୁ ଆମକୁ ପରିବର୍ତ୍ତନ କରିବାକୁ ହେବ । ଅନ୍ତତଃ ତିନୋଟି classରେ ପ୍ରତ୍ୟେକ class ପାଇଁ ଜଣେ ଜଣେ ଶିକ୍ଷକ ଏହିପରି ତିନିଜଣ ଶିକ୍ଷକ ସେଠାରେ ମଣ୍ଡଳରେ ରହିବେ ଏବଂ ତାହାର ବ୍ୟବସ୍ଥା ଆମକୁ କରିବାକୁ ହେବ ।

ବର୍ତ୍ତମାନ ଆମ୍ଭର ଶିକ୍ଷା ବିଭାଗକୁ ଆମର ଶିକ୍ଷା ମନ୍ତ୍ରୀ ବହୁତଗୁଡ଼ିଏ ଶିକ୍ଷା ଜିଲା ସୃଷ୍ଟି କରିଛନ୍ତି । ଆଗରୁ ରେଭିନ୍ୟୁ ଜିଲା ଥିଲା । ରେଭିନ୍ୟୁ ଜିଲା ସଙ୍ଗେ ସଙ୍ଗେ ବହୁତ-ଗୁଡ଼ିଏ ଶିକ୍ଷା ଜିଲା ହେଲା । ତାହା ଫଳରେ ଅନେକ ପ୍ରଶାସନିକ ଅସୁବିଧା ହେଉଛି । ଗୋଟିଏ ହେଉଛି transfer of teachers । ଗୋଟିଏ ଜିଲାରୁ ଅନ୍ୟ ଗୋଟିଏ ଜିଲାକୁ ଶିକ୍ଷକ transfer ହେବ ତାକୁ କୌଣସି D. I. କରି ପାରିବେ ନାହିଁ । ତାକୁ ଡାଇରେକ୍ଟର ନିଜେ କରିବେ । ଏବେ ଯେତେଗୁଡ଼ିଏ ଶିକ୍ଷାଜିଲା ଅଛି, ଗୋଟିଏ ଗୋଟିଏ ରେଭିନ୍ୟୁ ଜିଲାରେ ତିନୋଟି ଲେଖାଏ ଶିକ୍ଷାଜିଲା ଅଛି । ଗୋଟିଏ ଜିଲା ଭିତରେ ଯେଉଁ ଶିକ୍ଷା ଅଛି ସେହି ଜିଲାମାନଙ୍କ ଭିତରେ ଶିକ୍ଷକ transfer ହେବାତ ଅତି ସାଧାରଣ କଥା କିନ୍ତୁ ସେ transfer କରିବ କିଏ ? ପୂର୍ବରୁ ଯେପରି D. P. I. କରୁଥିଲେ ସେହି କରିବେ କି ଆଉ କିଏ କରିବ ? ଏହି ନିର୍ଦ୍ଦେଶ ସରକାର ଦେବାକୁ ହେବ । ମନେ କରନ୍ତୁ ପାରଳାଖେମୁଣ୍ଡି, ଛତ୍ରପୁର ଓ ଭଞ୍ଜନଗର ଗୋଟିଏ ଗୋଟିଏ ଶିକ୍ଷାଜିଲା । ଭଞ୍ଜନଗରରୁ ପାରଳାଖେମୁଣ୍ଡିକୁ ଟ୍ରାନ୍‌ସଫର ହେବ ବା ଭଞ୍ଜନଗରରୁ ଛତ୍ରପୁରକୁ ଟ୍ରାନ୍‌ସଫର ହେବ ? ତାହାହେଲେ କ'ଣ D. P. I. ଏହା କରିବେ କି ଆଉକିଏ କରିବ ? ଏ ବିଭାଗରେ ଯେଉଁ ପ୍ରଶାସନିକ ଅସୁବିଧା ସୃଷ୍ଟି ହେଉଛି ତାକୁ ଦୂର କରିବାକୁ ହେବ । ଖାଲି ଶିକ୍ଷା ଜିଲା ସୃଷ୍ଟି କରି ଦେଲେ ହେବନାହିଁ । ଧୂପଗଭିଜନ, ଇତ୍ୟାଦି ଭଲହେଉ ନଥିଲେ ବୋଲି ଶିକ୍ଷା ଜିଲା ସୃଷ୍ଟି କରିଥିଲେ ସେଥିରେ ମୋ'ର କହିବାର କଥା କିଛି ନାହିଁ, ସେ ଭଲ ହୋଇଛି । କିନ୍ତୁ ଏ ଯେଉଁ ପ୍ରଶାସନିକ ଅସୁବିଧା ହେଉଛି ତା'କୁ ଦୂର କରିବା ସକାଶେ ସରକାର ଚେଷ୍ଟା କରିବେ ବୋଲି ମୋର ଆଶା ।

Inspector of Schools ମାନଙ୍କୁ ସେ ଦାୟିତ୍ୱ ଦିଆଯାଉ ତାହାହେଲେ ସେ କାର୍ଯ୍ୟ ସୁବିଧାରେ ହୋଇ ପାରିବ । ତା' ପରେ ପଞ୍ଚାୟତ ଅଧିନରେ ଯେଉଁ ସ୍କୁଲ ଅଛି ସେଠାରେ dual administration ଚାଲିଛି; ଫଳରେ ପ୍ରାଥମିକ ଶିକ୍ଷାର ଅବସ୍ଥା ଅତି ଶୋଚନୀୟ ହୋଇଗଲାଣି । ସରକାର ସେଥିପ୍ରତି ଯଥେଷ୍ଟ ଧ୍ୟାନ ଦେବା ଉଚିତ୍ ହେବ । କାରଣ ବ୍ଲକ ଅଧୀନରେ ଯେଉଁ ଶିକ୍ଷକମାନେ ଥିଲେ ବ୍ଲକର ଏଥିରୁ ସ୍କୁଲ ପରିଚାଳନା କରିବାର ଯେଉଁ ଅଧିକାର ଥିଲା ତାକୁ ସରକାର ଛଡାଇ ଆଣିଲେ ଏବଂ S. I. ମାନଙ୍କୁ

ଏସ ଦାୟିତ୍ୱ ନେଉଥିଲ । ବର୍ତ୍ତମାନ ଆପଣ ଦେଖିବେ B. D. O. ଗୋଟିଏ ପଞ୍ଚ ଏବ S.-I. ଅନ୍ୟ ଧରଣ ରହିବା ଫଳରେ ଦୁଇ ଜଣଙ୍କର ଶାସନ ଏ ସ୍କୁଲ ମାନଙ୍କ ଉପରେ ଚାଲିଛି । ସେଥିପାଇଁ ଯେଉଁଠି B. D. O., S.-I.ଙ୍କର ଉପରେ ହେଲେ ବା ମତ ପାର୍ଥକ୍ୟ ହେଲ ସମ୍ପୃକ୍ତ ପ୍ରାଥମିକ ଶିକ୍ଷା ଅନୁଷ୍ଠାନଗୁଡ଼ିକ ଧ୍ୱଂସ ହେବାକୁ ଯାଉଛି । ସ୍କୁଲ ସବୁ ବନ୍ଦହୋଇ ରହୁଛି । ଶିକ୍ଷା ଦିଆଯାଇ ପାରୁନାହିଁ । ନାନା ଅସୁବିଧା ହେଉଛି । ପଞ୍ଚାୟତମାନଙ୍କରେ ଯେଉଁ ପ୍ରାଥମିକ ସ୍କୁଲ ଅଛି ନାନା ବିଶୃଙ୍ଖଳା ଓ ଅସୁବିଧା ସେ ସ୍କୁଲ ମାନଙ୍କରେ ଦେଖାଯାଉଛି । ସେଥିପାଇଁ ସରକାର ନିର୍ଦ୍ଦିଷ୍ଟ କରନ୍ତୁ ଯଦି B. D. O.ର କ୍ଷମତା ଅଛି ତାଙ୍କୁ ଅଧିକରୁ ଅଧିକ କ୍ଷମତା ଦିଅନ୍ତୁ ଏବଂ S.-I.ଙ୍କୁ କେବଳ Supervision କ୍ଷମତା ଦିଅନ୍ତୁ । ନଚେତ୍ Supervision ଓ ଅନ୍ୟାନ୍ୟ କ୍ଷମତା ପୂର୍ବ ମାତ୍ରାରେ S.-I. of Schoolsମାନଙ୍କୁ ଦେବାକୁ ଚାହାନ୍ତି ତ ଦିଅନ୍ତୁ ଏବଂ ପ୍ରାଥମିକ ସ୍କୁଲ ଯେଉଁଗୁଡ଼ିକ ଅଛି ସେଗୁଡ଼ିକୁ ପୂର୍ଣ୍ଣ ସରକାରୀ ସ୍କୁଲରେ ପରିଣତ କରାଯାଉ । ତାହା ନ ହେଲେ ବର୍ତ୍ତମାନ ଯେପରି ଦ୍ୱୈତ ଶାସନ ଚାଲିଛି ସେ ସ୍କୁଲମାନଙ୍କର ଉନ୍ନତ ହେବନାହିଁ । ପ୍ରାଥମିକ ଶିକ୍ଷାର ପୁରାପୁରି ଅବନତି ଘଟିବ । ସେଥିପାଇଁ ସରକାର ଏ କଥାକୁ ଦୃଷ୍ଟି ଦେବେ ବୋଲି ମୋର ଅନୁରୋଧ । ତାହା ସଙ୍ଗେ ସଙ୍ଗେ ଆପଣ ଦେଖିବେ ପଞ୍ଚାୟତ ସ୍କୁଲ ଘରଗୁଡ଼ିକ ଅଛି ତାହାର ମା, ବାପ, କେହି ନାହାନ୍ତି । ସେ ସ୍କୁଲଘର ଭାଙ୍ଗିରୁଜି ଗଲାଣି । ତାହାର ମରାମତି ବା ପୁନଃନିର୍ମାଣ କରିବାପାଇଁ ପଞ୍ଚାୟତ ହାତରେ ଟଙ୍କା ନାହିଁ । ସେଥିପାଇଁ ସରକାର ସେ ସ୍କୁଲ ଘରମାନଙ୍କର ପୁନର୍ଗଠନ ବା ମରାମତିପାଇଁ ଯଥେଷ୍ଟ ଟଙ୍କା ବ୍ୟବସ୍ଥା କରିବାକୁ ପଡ଼ିବ । ପଞ୍ଚାୟତମାନେ କୌଣସି ମତେ ସ୍କୁଲଗୁଡ଼ିକ ନିର୍ମାଣ କରି ପାରିବେ ନାହିଁ । ସରକାର ନକଲେ ସେ ସ୍କୁଲ ଘର ଭାଙ୍ଗିରୁଜି ଯିବାହିଁ ସାର ହେବ । ସେଥିପାଇଁ ଏ ଦିଗରେ ସରକାର ବହୁତ ଦୃଷ୍ଟି ଦେବେ ବୋଲି ମୁଁ ଅନୁରୋଧ କରୁଛି । ଆପଣ ଜାଣନ୍ତି additional ଶିକ୍ଷକ ଦେବା ବିଷୟରେ ସରକାରଙ୍କର ଚାଲିଛି ଯାହା ଅଛି ଶିକ୍ଷକ ଓ ଛାତ୍ରମାନଙ୍କର average proportion ଏହା ଠିକ୍ ନୁହେଁ । ଅନେକ ସ୍ଥାନରେ ଛାତ୍ର ଶିକ୍ଷକ proportion ଅତି ଅଧିକ ମାତ୍ରାରେ ରହିଛି । ଆମ ବରହମପୁର ମ୍ୟୁନିସିପାଲିଟିର ସେକେଣ୍ଡାରୀ ଗୋଟିଏ ଗୋଟିଏ ଶ୍ରେଣୀରେ 60 ଲେଖାଏଁ ଛାତ୍ର ହୋଇଗଲେ ସେକେଣ୍ଡାରୀ additional accommodation କରିବାପାଇଁ ଆମେ ସରକାରଙ୍କଠାରୁ ଅନୁମତି ଚାହିଁଲୁ । ସରକାର କହିଲେ ଆମେ ଅଧିକ ଶିକ୍ଷକ ଦେଇ ପାରିବୁ ନାହିଁ । ନିଜ ସଂସ୍ଥାରୁ ରଖି ସେମାନଙ୍କୁ ନିଯୁକ୍ତ କରିବାକୁ କର । ସେମାନଙ୍କୁ ଦରମା ଓ ଅନ୍ୟାନ୍ୟ ଭତ୍ତା ନିଜ ପାଣ୍ଠିରୁ ଦେବାକୁ ହେବ । ମୁଁ ବୁଝିପାରୁ ନାହିଁ ଯଦି ସେକସନମାନଙ୍କରେ ଛାତ୍ର ସଂଖ୍ୟା ଅଧିକରୁ ଅଧିକ ବଢ଼ିଗଲେ ସେହି ଅନୁପାତରେ ଅତିରିକ୍ତ ଶିକ୍ଷକ ଦେବା ଦାୟିତ୍ୱ ସରକାରଙ୍କର । ଏହିଦୃଷ୍ଟିରୁ ଯଦି ଦେଖନ୍ତି ଜିଲ୍ଲାରୁ ଏକକ

ଆପତ୍ତି ଆସେ ତାହା ହେଲେ ଅନୁପାତକୁ ଠିକ୍ ରଖିବାପାଇଁ ଅତିରିକ୍ତ ଶିକ୍ଷକ ଦେବା ନିହାତି ଦରକାର । ତା'ପରେ ଆଞ୍ଚଳିକ ଭାଷାରେ ସାହିତ୍ୟ ସୃଷ୍ଟି କରିବାପାଇଁ କେନ୍ଦ୍ର ସରକାର ଆମକୁ ଏକ କୋଟି ଟଙ୍କା ଦେଇଛନ୍ତି । ଦୁଇ ବର୍ଷ ହେଲା ଏହି ଘୋଷଣା ହୋଇ ଅଛି । କିନ୍ତୁ ଆଜି ପର୍ଯ୍ୟନ୍ତ ଏ ଦିଗରେ ସରକାର କୌଣସି ପଦକ୍ଷେପ ନେଇ ନାହାନ୍ତି । ଓଡ଼ିଆ ଭାଷା ଜରିଆରେ ପ୍ରଶାସନିକ କାର୍ଯ୍ୟ କରିବେ ବୋଲି 5 ବର୍ଷ ହେବ ସରକାର ପ୍ରତିଶ୍ରୁତି ଦେଇ ଆସୁଛନ୍ତି କିନ୍ତୁ ସେ ପ୍ରତିଶ୍ରୁତିକୁ ସରକାର ରକ୍ଷା କରିପାରିଲେ ନାହିଁ । ଆଞ୍ଚଳିକ ଭାଷାରେ ସାହିତ୍ୟ ସୃଷ୍ଟି କରିବା ଠିକ୍ ସେହି ଅବସ୍ଥାକୁ ଆସିଗଲା । ଓଡ଼ିଆ ଭାଷାରେ ପୁସ୍ତକାଦି ଅନୁବାଦ କରିବାପାଇଁ ସରକାର କି ବିହିତ କାର୍ଯ୍ୟାନୁଷ୍ଠାନ କରିଛନ୍ତି, ମୁଁ ଅନୁରୋଧ କରୁଛି ଜଣାଇବେ ।

ପରିଶେଷରେ ମୁଁ ଦୁଃଖର ସହିତ କହିବାକୁ ବାଧ୍ୟ ହେଉଛି ଅନେକ ସମସ୍ୟାରେ ସରକାର ଦଳୀୟ ଦୃଷ୍ଟିକୋଣରୁ କାର୍ଯ୍ୟ କରୁଛନ୍ତି । ଶିକ୍ଷାନୁଷ୍ଠାନମାନଙ୍କ ଭିତରେ ଦଳୀୟ ରାଜନୀତି ପ୍ରବେଶ କରିବା ବଡ଼ ଦୁଃଖ ଦାୟକ । ସରକାର ଯଦି ଭାବୁଥାନ୍ତି ଏହାଦ୍ୱାରା ସୁବିଧା ହେବ, ମୁଁ ତାଙ୍କୁ ଚେତାଇ ଦେବାକୁ ଚାହେଁ, ଏହାଦ୍ୱାରା ସେମାନେ ସେହି ଅସୁବିଧାର ସମ୍ମୁଖୀନ ହେବେ ସେଥିପାଇଁ ସେମାନେ ସାବଧାନ ରହିବା ଉଚିତ । ଉଦାହରଣସ୍ୱରୂପ ମୁଁ କହିବି ଉତ୍କଳ କଲେଜ ହତା ଭିତରେ ଅଜସ୍ର armed ପୋଲିସ ରହିଛି । ଶାନ୍ତି ଶୃଙ୍ଖଳା ନାହିଁ ସେଠି 144 ଧାରା ଜାରି ହୋଇଛି । ଏହା ବଡ଼ ଦୁଃଖଦାୟକ । ସବୁ ମ୍ୟାନେଜିଂ କମିଟିରେ ପରିବର୍ତ୍ତନ କରିବାପାଇଁ ସରକାର ଆଗରୁ ଦୃଷ୍ଟି ଦେଇଥାନ୍ତେ ବା କଥାବାର୍ତ୍ତା କରିଥାନ୍ତେ ଏପରି ହୋଇ ନ ଥାନ୍ତା କିନ୍ତୁ ତାଙ୍କୁ ସଙ୍ଗ ଦେବା ଦୃଷ୍ଟିରୁ ଏପରି ହେଲା । ଯେଉଁ କେତେଜଣ ଦକ୍ଷଲୋକ ଅଛନ୍ତି ତାଙ୍କୁ ଅନ୍ତର କରିଦେବା ପାଇଁ ଯାହା କରାଗଲା ତା' ବଡ଼ ଦୁଃଖଦାୟକ । ଅବଶ୍ୟ ବିଶ୍ୱବିଦ୍ୟାଳୟ ଯାହା ସ୍ଥିର କଲେ ମୁଁ ତା କହୁନାହିଁ । କିନ୍ତୁ ପ୍ରାଥମିକ ଅବସ୍ଥାରେ ସରକାର ଯାହା କଲେ ତା' ନିନ୍ଦନୀୟ । ଗୁରୁମାନଙ୍କୁ ମତଦେବା ଓ ଛାତ୍ରମାନଙ୍କ ପାଇଁ ଅସୁବିଧା ସୃଷ୍ଟି କରିବା ବଡ଼ ଦୁଃଖଦାୟକ । ସଙ୍କୀର୍ଣ୍ଣ ଦୃଷ୍ଟିକୋଣରୁ ଶିକ୍ଷାନୁଷ୍ଠାନଗୁଡ଼ିକ ରକ୍ଷା ପାଇବା ଉଚିତ ।

ଖ୍ରୀଷ୍ଟ କଲେଜରେ ଯେଉଁପରି ଯାହା ହୋଇଛି ତା' ଅତି ଦୁଃଖଦାୟକ । ଆଗରୁ ଏ ବିଷୟ ସମାଧାନ ହୋଇପାରିଥାନ୍ତା । ଲେକଚରମାନେ ଧର୍ମଘଟ କରୁଛନ୍ତି । ତା' ସହଜରେ ବନ୍ଦ ହୋଇପାରି ଥାନ୍ତା । ତାଙ୍କୁ ତୁରନ୍ତ ବନ୍ଦ କରିବାପାଇଁ ସରକାର କି କି ବ୍ୟବସ୍ଥା ଗ୍ରହଣ କରିଛନ୍ତି ମାନ୍ୟବର ମନ୍ତ୍ରୀ କହିବେ । ଶିକ୍ଷାନୁଷ୍ଠାନମାନଙ୍କରେ ଜାତିଆଣ ଭାବ ବା ଧର୍ମାବଲମ୍ବୀଭାବ ଉଠାଇବା ଉଚିତ ନୁହେଁ । ଆମର ହେଉଛି ଏକ ଧର୍ମନିରପେକ୍ଷ ରାଷ୍ଟ୍ର । ଦକ୍ଷତାନୁସାରେ ନିଯୁକ୍ତ ହେବା ଉଚିତ । କିନ୍ତୁ କୌଣସି denominationକୁ ସୁବିଧା ଦେବା ଉଚିତ ନୁହେଁ । ମ୍ୟାନେଜିଂ କମିଟି ଗଢ଼ିବାପାଇଁ ଶିକ୍ଷା ମନ୍ତ୍ରୀ କହିଥିଲେ । କ'ଣହେଲା

ଅନ୍ୟମାନେ ଜାଣିପାରନ୍ତି ନାହିଁ । ଆଶାକରେ ଶିକ୍ଷା ମନ୍ତ୍ରୀ ଜଣାଇବେ । ତା'ପରେ ରିଷଧାସ୍ତ ପଣ୍ଡା ହରି ସଂସ୍କୃତ ବିଦ୍ୟାଳୟର ହେଡମାଷ୍ଟର ଶ୍ରୀ ଗୋପୀନାଥଙ୍କ ବିରୁଦ୍ଧରେ A. S. P. ଚଦନ୍ତ କରି ତାଙ୍କ ସୁପରଭିଜନ ନୋଟରେ କହିଛନ୍ତି ଏ ଜଣେ ଜନ ସଂସ୍ରବ ଲୋକ । ତାଙ୍କର Case No. 32 of 1970ରେ ସେ କହିଛନ୍ତି ପୋଲିସ asked the Inspector of Schools to relieve him. କିନ୍ତୁ ଆଜି ପର୍ଯ୍ୟନ୍ତ ସେ ଲଭ୍ ହୋଇନାହାନ୍ତି । ତାଙ୍କ ବିରୁଦ୍ଧରେ 380 ଦଫା ଓ 451 ଦଫା ଇତ୍ୟାଦି ବିଭିନ୍ନ ଦଫାରେ ବହୁତ ଅଭିଯୋଗ ଅଛି । ତାଙ୍କୁ arrest କରିବା ପାଇଁ କୌଣସି ବ୍ୟବସ୍ଥା ହେଉନାହିଁ । ତାଙ୍କୁ ପଣ୍ଡ ଘୋଡ଼ାଇବା ପାଇଁ ଚେଷ୍ଟା ହେଉଛି । ଗତବର୍ଷ ଏ ବିଷୟରେ ଆଲୋଚନା ହୋଇଥିଲା, କିନ୍ତୁ ତାଙ୍କର ବଦଳି ହେଲନାହିଁ । ଦୁଃଖର ବିଷୟ ଏହିପରି ଭାବରେ ଶିକ୍ଷାନୁଷ୍ଠାନମାନଙ୍କରେ ଦଳୀୟ ରାଜନୀତି ପ୍ରବେଶ କରୁଯାଉଛି ।

ପରିଶେଷରେ ମୁଁ ଅଳ୍ପ କେତୋଟିଏ କଥା କହି ଶେଷ କରିବି । ସେକେଣ୍ଡରୀ ସ୍କୁଲ ସବନ୍ଧରେ ବହୁବାର ଦୃଷ୍ଟି ଆକର୍ଷଣ କରାଯାଇଛି । ସେଠି 4ର୍ଥ ଶ୍ରେଣୀ କର୍ମଚାରୀଙ୍କୁ ଯେପରି ବ୍ୟବହାର କରାଯାଉଛି ଓ ଖଟା ଯାଉଛି ଦୈନିକ 12 ଘଣ୍ଟା ପରିଶ୍ରମ କରିବାକୁ କୁହାଯାଉଛି ତା ଅତି ଦୁଃଖଦାୟକ । ଓଡ଼ିଆ ଓ ଅଣଓଡ଼ିଆ ଏଇ ଭାବ ଯେପରି ସୃଷ୍ଟି କରାଯାଉଛି ତା ଅତି ଦୁଃଖଦାୟକ । ସେମାନେ ବାହାରୁ ତାଙ୍କ ଲୋକ ଆଣିବେ । ଅଥଚ ଏଠି ଯୋଗ୍ୟ ଓଡ଼ିଆ ଲୋକ ଥିବା ସ୍ଥଳେ ତାଙ୍କୁ ରଖିବେ ନାହିଁ ଏହା କାହିଁକି ହେବ ? ଆମ ସରକାରଙ୍କର କଣ ଏଥିରେ କିଛି ଦାୟିତ୍ୱ ନାହିଁ ? ଆମ ସରକାର ଲକ୍ଷାଧିକ ଟଙ୍କା ଏଇ ଅନୁଷ୍ଠାନକୁ ଦେଉଛନ୍ତି । ଶିକ୍ଷା କ୍ଷେତ୍ରରେ ଯୋଗ୍ୟତାସମ୍ପନ୍ନ ଲୋକଙ୍କୁ ଦେବା କଥା । ପରନ୍ତୁ ଏହା ଏକ କେନ୍ଦ୍ର ଅନୁଷ୍ଠାନ ତଥାପି decentralisation ଦୃଷ୍ଟିରୁ ବିଭିନ୍ନ ଅଞ୍ଚଳରେ ଏପରି କେନ୍ଦ୍ର ଅନୁଷ୍ଠାନମାନ ରହିଛି । ତେଣୁ ଓଡ଼ିଆ ଓ ଅଣ ଓଡ଼ିଆଭାବ ରହିବା ଉଚିତ ନୁହେଁ । ଏପରିକି ଏମାନେ 4ର୍ଥ ଶ୍ରେଣୀ କର୍ମଚାରୀଙ୍କୁ ନିଜ ଅଞ୍ଚଳରୁ ଆଣିଛନ୍ତି । ଆମର କ'ଣ ଏଠି Accounts ଜାଣିଥିବା ଲୋକେ ନାହାନ୍ତି ? ମାଟ୍ରିକ, ଆଇ. ଏ. ଓ ବି. ଏ. ପାଶ୍‌ବାଲା ନାହାନ୍ତି; ସେଠି ଅତି ସଙ୍କୀର୍ଣ୍ଣ ଦୃଷ୍ଟିକୋଣ ସୃଷ୍ଟି କରାଯାଇଛି ତା ମାରାତ୍ମକ, ତା ତୁରନ୍ତ ବନ୍ଦ ହେବା ଉଚିତ ଓ ଆମ ସରକାର ଏ ଦିଗରେ ଦୃଢ଼ ପଦକ୍ଷେପ ନେବା ଉଚିତ । ଆମର ଏଠି ବହୁ ଉପଯୁକ୍ତ ଓ ଅଭିଜ୍ଞ ଶିକ୍ଷକ ଅଛନ୍ତି । ତାଙ୍କର କର୍ତ୍ତବ୍ୟ ହେଲା ଦକ୍ଷତା ଦେଖି ଲୋକ ନେବା । ଅବଶ୍ୟ ତାଙ୍କର ଆଭ୍ୟନ୍ତରୀଣ ଶାସନରେ ଆମେ ହସ୍ତକ୍ଷେପ କରିବା ଉଚିତ ନୁହେଁ । ତଥାପି ଯେତେବେଳେ ଅଟେ ଏ ଅନୁଷ୍ଠାନକୁ ଲକ୍ଷାଧିକ ଟଙ୍କା ଦେଉଛୁ, ସେତେବେଳେ ଆମେ ନୀରବ ଦ୍ରଷ୍ଟା ହୋଇ ରହିପାରିବୁନାହିଁ । ସେଠି ଯେଉଁସବୁ ଅସ୍ୱାଭାବିକ ପରିସ୍ଥିତି ସୃଷ୍ଟି ହୋଇଛି ତାକୁ ତୁରନ୍ତ ସମାଧାନ କରିବାପାଇଁ ଚେଷ୍ଟା କରିବେ ବୋଲି ସରକାରଙ୍କୁ ମୋର ଅନୁରୋଧ ।

## ଓଡ଼ିଶା ଶିକ୍ଷା (ସଂଶୋଧନ) ବିଧେୟକ, 9-7-1971

ମାନ୍ୟବର ମହୋଦୟ, ଏ ଯେଉଁ Orissa Education (Amendment) Bill, 1971 ଶିକ୍ଷା ମନ୍ତ୍ରୀ ଆଗତ କରିଛନ୍ତି, ଏହାର Statement of Objects and Reasons ପଢ଼ିଲା ପରେ ମୋର ଗୋଟିଏ ସନ୍ଦେହ ହେଉଛି ଯେ ଏଥିପାଇଁ Original Actର ପରିବର୍ତ୍ତନ କରିବା ବା ତା'ର Amendment କରିବା ଦରକାର ଥିଲା କି ? କାରଣ ଆପଣ ଦେଖିଥିବେ Statement of objects and reasonsରେ ଅଛି—"Certain inadequacies in the legislation were noticed and it was therefore necessary that these inadequacies were removed in the first instance so that the rules could be comprehensive and contained effective measures for implementing the intention of the legislature". ଅର୍ଥାତ୍ last Billରେ ଆମେ ଯେଉଁ ବ୍ୟବସ୍ଥା କରିଥିଲୁ ସେଥିରେ କିଛି ଅଭାବ ରହିଗଲା ଯୋଗୁଁ rules ତିଆରି ହୋଇ ପାରିଲା ନାହିଁ । Sir, ମୁଁ ଗୋଟିଏ କଥା ମନେ ପକାଇ ଦେବାକୁ ଚାହେଁ ଏବଂ ସେହି କଥା ମୁଁ question hourରେ କହିଥିଲି ଯେ ତତ୍କାଳୀନ ଶିକ୍ଷା ମନ୍ତ୍ରୀ ଆଇନ ବ୍ୟବସ୍ଥା ହେଲା ପରେ ଆଇନ ପ୍ରଣୟନ କରିବେ ବୋଲି କହିଥିଲେ ଏବଂ ତା'ର ପରେ ପ୍ରଶ୍ନ ଦେବାରୁ କହିଥିଲେ ଯେ ଆଇନ ହୋଇଛି, ଖାଲି refer ହେବାକୁ ଅଛି । ସମସ୍ତେ ଆଶା କରିଥିଲେ ଯେ ତାହା ଶୀଘ୍ର ହୋଇଯିବ । ବର୍ତ୍ତମାନ ପୁଣି ଆଉ ଥରେ Actର amendment ହେବ ଏବଂ amendment ହେଲା ପରେ ପୁଣି ନିୟମାବଳୀ ପ୍ରସ୍ତୁତ ହେବ । ଏହା କେବେ ସମ୍ଭବ ହେବ, ଏ କଥା ବୁଝିବାକୁ ଦେବାକୁ ହେବ ।

ଆପଣଙ୍କର ମନେ ଥିବ ସେତେବେଳେ ଗୋଟିଏ ଅପ୍ରୀତିକର ପରିସ୍ଥିତି ଉପୁଜିଥିଲା, ଶିକ୍ଷକମାନଙ୍କର ଧର୍ମଘଟ ହୋଇଥିଲା, ଯାହା ଫଳରେ ସେତେବେଳେ ଏଭଳି ଏକ ଆଇନ ପ୍ରଣୟନ କରିବା ଅତି ଜରୁରୀ ହୋଇ ପଡ଼ିଥିଲା । ସେଇ ଆଇନ ଭିତରେ security of service of teachers ଥିଲା ଅନ୍ୟ ମୁଖ୍ୟ, ଯାହାକୁ ଆମେ ଆଇନରେ ରଖିପାରିଲୁ ନାହିଁ । ଆଇନରେ ନ ରହିବା ହେତୁ ମନ୍ତ୍ରୀ ମହୋଦୟ କହିଥିଲେ ଯେ ତାକୁ ନିୟମାବଳୀ ଭିତରେ ଅନ୍ତର୍ଭୁକ୍ତ କରି ରଖିବେ । ବ୍ୟସ୍ତ ହେବାର କାରଣ ନାହିଁ । Statement of Objects and Reasonsରେ ଯାହା ରଖା ଯାଇଛି ଏବଂ ମନ୍ତ୍ରୀ ମହୋଦୟ ଯେଉଁ explanatory note ଦେଲେ, ସେଥିରୁ ଦେଖାଯାଉଛି ଯେ Panchayat Samitis, Municipalities ଏବଂ Notified Area Council ଅଧୀନରେ ଥିବା Primary Schoolଗୁଡ଼ିକ ଆଉ Private

School ହୋଇ ରହିବ ନାହିଁ । ତା ମୁଁ ବୁଝିପାରୁଛି । ସେହି ସ୍କୁଲଗୁଡ଼ିକ ପଞ୍ଚାୟତ ସମିତି ବା ମ୍ୟୁନିସିପାଲିଟି ପରିଚାଳନାଧୀନ ଅଛି ଏଠି ସେ ସବୁ କେଉଁ ଟାଇପର ସ୍କୁଲ ହୋଇ ରହିବ, ଯଦି ପ୍ରାଇଭେଟ ସ୍କୁଲ ନ ହେଲ, ଏ ବିଲର Statement of Objects and Reasonsର ଗୋଟିଏ ସ୍ଥାନ ର କୁହାଯାଇଛି – "The emolument of the teachers are fully borne by the State Government and Panchayat Samiti is only agency of disbursement". ତାର ଅର୍ଥ ସେ କ'ଣ ବୁଝାଇବାକୁ ଚାହୁଁଛନ୍ତି ? ଯଦି ସବୁ ସ୍କୁଲ ସରକାରୀ ହୋଇଯାଏ ତା'ହେଲେ ମୂଳ ଆଇନ ଉପରେ ଗୋଟିଏ improvement ହେଲ ହୋଇ ଥାନ୍ତା ଏବଂ ଗୋଟିଏ inadequacy ଦୂର ହୋଇ ଯାଇ ବୁଝନ୍ତି । ଯଦି ସରକାର ଛାଡୁନାହାନ୍ତି ସବୁଯାକ ସ୍କୁଲ ପ୍ରାଇଭେଟ ସ୍କୁଲ ହେବେ ପ୍ରତ୍ୟେକ ସ୍କୁଲ ପାଇଁ ଗୋଟିଏ ଲେଖାଏ ମ୍ୟାନେଜିଂ କମିଟି ରହିବ; ଏହା ଅସମ୍ଭବ କଥା । ଏତଦ୍ବ୍ୟତୀତ ଗଭର୍ଣ୍ଣିତ ଖରାପ ହେବ । ଏଠ ଦୃଷ୍ଟିରୁ ପ୍ରାଇଭେଟ ସ୍କୁଲଗୁଡ଼ିକୁ ଗୋଟିଏ categoryରେ ରଖିଦେଲେ । ଏ କେଉଁ category ହେଲ, ଏହାକୁ କ'ଣ କହିବା । ଏହା କେଉଁ ଟାଇପ୍ ସ୍କୁଲ ହେବ ? Government and Non-Government Private and aided, ଏଇପରି ଆମେ divide କରୁଛୁ । ତା'ହେଲେ ମନ୍ତ୍ରୀ ମହୋଦୟ ଆଉ ଗୋଟିଏ ଟାଇପର ସ୍କୁଲ ରଖିବାପାଇଁ ଚେଷ୍ଟା କରୁଛନ୍ତି । Schools run by Panchayat Samitis and other local bodies, ଏଇପରି ଗୋଟିଏ category of schools କରିବାକୁ ଚାହୁଁଛନ୍ତି କି ? ଏହି ବିଷୟ ଆଉ ଟିକିଏ ସ୍ପଷ୍ଟ ହୋଇଥିଲେ ଭଲ ହୋଇଥାନ୍ତା । ତାହା ନ ହେବା ଯୋଗୁ ସନ୍ଦେହ ସୃଷ୍ଟି ଉପୁଜୁଛି । ବର୍ତ୍ତମାନ ସରକାରୀ ଏବଂ ବେସରକାରୀ ସ୍କୁଲ ହୋଇ ଅଛି । କିନ୍ତୁ ଆଉ ଏକ ଶ୍ରେଣୀ ସ୍କୁଲ ରଖିବାକୁ ଚାହୁଁଛନ୍ତି । ତାହା ହେଉଛି ସ୍ଥାୟୀ ଶାସନ ଦ୍ୱାରା ସ୍କୁଲ । ଏ ସନ୍ଦେହ ସୃଷ୍ଟି ହେବାର ଆସୁଛି ।

ମୂଳ ଆଇନର 3 ଧାରାର (3) ଉପଧାରାରେ କୁହାଯାଇଛି—

"(3) Notwithstanding anything contained in sub-section (2), the prescribed authority may, in cases where any of the conditions referred to in the said sub-section has not been fulfilled, accord recognition to the institution subject to such condition being fulfilled within such reasonable period as the prescribed authority may fix in that behalf".

ଏଠାରେ ସେ ବୁଝାଇବାକୁ ଚାହାନ୍ତି ମୂଳ ଆଇନରେ provisional recognition କଥା ନ ଥିଲା । କାରଣ ସେଥିରେ କେବଳ permanent recognition କଥା ରହିଥିଲା । ଏହାର କାରଣ ମୁଁ ବୁଝିପାରୁନାହିଁ । ଆମର ଶିକ୍ଷା Code ଅନୁସାରେ ଯେପରି ସ୍ତରରେ ସ୍କୁଲ ପରିଚାଳିତ ହେଉଛି ପ୍ରଥମେ provisional recognition ହୁଏ ତା'ପରେ permanent recognition ଦିଆଯାଏ । ସେହିଭଳି ହେବାର କଥା । ବୋଧହୁଏ ତାକୁ ସ୍ପଷ୍ଟ କରଣ କରିବାପାଇଁ ଲେଖିଲେ । ତା'ପରେ ଏଥିରେ କୁହାଯାଇଛି—

"(4) Where the condition is not fulfilled within the period fixed under preceding sub-section, the prescribed authority may, after giving the applicant a reasonable opportunity of being heard, withdraw the recognition so accorded".

କିଏ recognition withdraw କରିବେ ସେ କଥା? ଏଠାରେ prescribed authority କିଏ କିଛି କହିନ ନାହିଁ । Whether it is Government or the Board, ଜାଣିହେଉନାହିଁ ।

ଏହାକୁ ଆଉ ଟିକିଏ ସ୍ପଷ୍ଟ କରି ଦେଇଥିଲେ ଭଲ ହୋଇଥାନ୍ତା । The Board or the State Government as the case may be ଏଭଳି ଲେଖିଥିଲେ ସନ୍ଦେହ ହୁଅନ୍ତା ନାହିଁ । Prescribed authority ମାନେ ତାଙ୍କର Inspectorate କିମ୍ବା ତାଙ୍କର Department ହୋଇପାରେ ।

ସବୁଠାରୁ ବଡ଼ କଥା ହେଲା ମୂଳ ଆଇନର ଷଷ୍ଠ ଧାରା ଏଥିରେ କୁହାଯାଇଛି—
"No private educational institution, which has not been recognised by the State Government under this Act shall

entitled to be recognised by the Board of Secondary Education". ଏ ଦଫା ଉଦ୍ଦେଶ୍ୟ recognition ଦେବାପାଇଁ ସରକାରଙ୍କୁ ଆମେ କ୍ଷମତା ଦେଇ ଦେଉଛୁ । ସେ ଯଦି recognise ନ କରନ୍ତି ତାକୁ Board of Secondary Education ରେ ଅନ୍ୟ କେହି ଭରପାଇବେ ନାହିଁ । ବର୍ତ୍ତମାନ ପର୍ଯ୍ୟନ୍ତ ଯାହା ବ୍ୟବସ୍ଥା ଅଛି 8ମ ଶ୍ରେଣୀ ପର୍ଯ୍ୟନ୍ତ ସରକାର ମଞ୍ଜୁର କରିବେ । ହାଇସ୍କୁଲର 9ମ, 10ମ ଓ 11ଶ ଶ୍ରେଣୀ ଓ କଲେଜସବୁ ବିଶ୍ୱବିଦ୍ୟାଳୟ ମଞ୍ଜୁର କରିବେ । ବର୍ତ୍ତମାନ ପ୍ରତ୍ୟେକ classକୁ recognise କରିବାପାଇଁ ସରକାରଙ୍କ ପାଖକୁ ଯାଉଛି । ଏ ଅଧିକାର ସରକାର କାହିଁକି ନେବେ ? ସରକାର କେବଳ grant-in-aid ଦେଇ-ପାରନ୍ତି । ତା'ବୋଲି ସ୍କୁଲ recognition ହାତରେ ରଖିବା ଠିକ୍ ହେବ ନାହିଁ । ଯେଉଁପାଇଁ Board of Secondary Education ସୃଷ୍ଟି ହୋଇଛି by an Act of this legislature, ସେଇ ଅନୁସାରେ ସେ ସ୍କୁଲ ପରିଚାଳନା କରନ୍ତୁ । କିନ୍ତୁ ଏଠାରେ ଯାହା ଅଛି ଏହା ସରକାରଙ୍କୁ ଅମାପ କ୍ଷମତା ଦେଉଛି ଏବଂ ତା' ଅପବ୍ୟବହାର ହେବା ସମ୍ଭାବନା ରହୁଛି ।

ମନ୍ତ୍ରୀ ମହୋଦୟ ଯେତେ ବୁଝାଇଲେ ମଧ୍ୟ ଅନେକ କ୍ଷେତ୍ରରେ ପୂର୍ବ ସରକାରଙ୍କ କ୍ଷେତ୍ରରେ ହସ୍ତକ୍ଷେପ ଦେଖା ଦେଇଛି । ଦଳୀୟ ସ୍ୱାର୍ଥ ଦୃଷ୍ଟିରୁ କିମ୍ବା ଅନ୍ୟ କୌଣସି ଦୃଷ୍ଟିରୁ recognition ନ ଦେବା ଏବଂ recognition withdraw କରିବ ଦେଖା ଦେଇଛି । ସେଥିପାଇଁ ଏଥିରେ ନିର୍ଦ୍ଦିଷ୍ଟ ଖବରର ରହିବା କଥା । ଏଥିରେ ଯାହା ରହୁଛି ଏତଦ୍ୱାରା ବୋର୍ଡର କ୍ଷମତା ସଙ୍କୁଚିତ ହେଉଛି । ତେଣୁ ଏ provisionକୁ ଏଥିରୁ ପୁରାପୁରି ହଟାଇ ଦେବା ଦରକାର । କାରଣ ମୂଳ ଆଇନରେ ଯେତିକି ଅଛି ତାହା ଯଥେଷ୍ଟ । କୁହାଯାଉଛି ନିୟମ ପ୍ରଣୟନ କରିବାରେ ଅସୁବିଧା ହେବ । ତାହା ଠିକ୍ ନୁହେଁ । ଏହାକୁ ହଟାଇ ନ ଦେଲେ ସରକାର ଏହାକୁ ପୂର୍ଣ୍ଣ ଭାବେ control କରିବାକୁ ଯାଉଛନ୍ତି ବୋଲି ଯେଉଁ ସନ୍ଦେହଜାତ ହେଉଛି ତାହା ଦୂର ହେବ ନାହିଁ ।

ଏ ସଂଶୋଧନ ବଳରେ ଆଉ ଗୋଟିଏ ଦେଖିବେ ମୂଳ ଆଇନର 17ଦଫାରେ ଅଛି ସ୍କୁଲ ସବୁ yearly audit ହେବା କଥା । ବହୁତ ଆଲୋଚନା ପରେ ମୂଳ ଆଇନରେ ଏହା ରଖାଯାଇଥିଲା । ଅନେକ ସମୟରେ ସ୍କୁଲମାନଙ୍କୁ ଯେଉଁ ଗ୍ରାଣ୍ଟ ଦିଆଯାଏ ତାର ଅପବ୍ୟବହାର ହେଲେ ତାହା କେବଳ audit ହୁଏ । 2-4 ବର୍ଷ ପରେ ସେତେବେଳ

ପର୍ଯ୍ୟନ୍ତ utilisation certificate ଦେବା ଅସୁବିଧା ହୁଏ । ତେଣୁ ଏ ଗୃହରେ ବିଗୁର ହୋଇଥିଲା । Audit Departmentକୁ ବୁଝାଇବ । Audit ଠିକ୍ ଭାବରେ କରିବାକୁ ହେଲେ Auduitorଙ୍କ କେତେକ ସ୍କୁଲର ଦାୟିତ୍ୱ ଦିଆଯିବ ଉଚିତ । ବର୍ତ୍ତମାନ ରଖିଛନ୍ତି—shall be subject to yearly audit ତାହା ବାଇନଆଲ୍ ହେବ କି 3ବର୍ଷରେ ଥରେ ହେବ ବୁଝାପଡ଼ୁନାହିଁ । କେତେକ ଏହି ଦୃଷ୍ଟି କରିବ ସମୟରେ ଆମେ ବାର୍ଷିକ auditର ବ୍ୟବସ୍ଥା ରଖିଥିଲୁ । ସରକାର କହୁଥାଆନ୍ତି ସେଭଳି କୌଣସି Statutory provision ରହିନାହିଁ ଯଦ କୌଣସି କାରଣରୁ annual audit ନ ହୋଇପାରେ, ତା'ହେଲେ ସେଥିରେ ଆଇନଗତ ତ୍ରୁଟି ରହିଯିବ । ମୋର କହିବାର କଥା ଯଦ ଆମ୍ଭେ Annual auditର ବ୍ୟବସ୍ଥା ରଖିବା ନାହିଁ କେଉଁ schoolର audit ନ ହୋଇପାରିବ ମୁଁ ବୁଝିପାରୁନାହିଁ । ଏହା ଏପରି କୌଣସି deficiency ନୁହେଁ ଯେଉଁଥିପାଇଁ ପରିବର୍ତ୍ତନ ଆଣିବା ଦରକାର ପଡ଼ିଲା ।

ମୂଳ ଆଇନର 6ଧାରା ବଦଳରେ ଯେଉଁ ନୂଆ ସଂଶୋଧନ ଅଣାଯାଇଛି ତାହା ଅତ୍ୟନ୍ତ ମାରାତ୍ମକ । ମୂଳ ଆଇନରେ ଯାହା ଥିଲା ତା ଯଥେଷ୍ଟ । ସରକାରଙ୍କୁ ଅମାପ କ୍ଷମତା ଦେଇ ଦେବା ଠିକ୍ ହେବ ନାହିଁ ।

ସର୍ବୋପରି local body schoolଗୁଡ଼ିକ ପଞ୍ଚାୟତ ସମିତି, ମ୍ୟୁନିସିପାଲିଟି ଓ N.A.C.କୁ ଦିଆଯିବ ବୋଲି କୁହାଯାଇଛି । ତା'ହେଲେ ଏହି ସବୁ schoolଗୁଡ଼ିକ କେଉଁ ପର୍ଯ୍ୟାୟରେ ଆସିବେ ? ଆପଣ କହୁଥାଆନ୍ତି these are not private schools. କିନ୍ତୁ ଆପଣଙ୍କୁ ସ୍ୱୀକାର କରିବାକୁ ହେବ ଯେ ଏହାଦ୍ୱାରା ଆପଣ ଆଉ ଗୋଟିଏ Category of Institution କରୁଛନ୍ତି ନା ସରକାରୀ school ବୋଲି ଘୋଷଣା କରୁଛନ୍ତି ଏହା ସ୍ପଷ୍ଟ ହେବା ଦରକାର ।

## ଶିକ୍ଷା (15-7-1971)

ବାଚସ୍ପତି ମହୋଦୟ, ଓଡ଼ିଶା ଶିକ୍ଷା ବିଭାଗର ତ୍ରୁଟି ଏତେ ଅଛି ଯେଉଁ ବିଷୟରେ କୌଣସି ସମାଧାନ କରି କେଉଁଠିକୁ ଗ୍ରହଣ କରିବ ମୁଁ ସେ ଚିନ୍ତା କରିପାରୁନାହିଁ । କେବଳ ମନ୍ତ୍ରୀ ମହୋଦୟ ମଧ୍ୟ ଜାଣନ୍ତି ଏହାକୁ ସହଜରେ ସମାଧାନ କରିହେବ ନାହିଁ କାରଣ—ଷଣ୍ଡ ଗଛ ମୂଳରୁ ପାହାଚ ପାହାଚ ଭଳିଆ ପ୍ରାଥମିକ ଠାରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ସ୍ତର ପର୍ଯ୍ୟନ୍ତ ଏହିପରି ଯେଉଁ ଧାଡ଼ି ବିସ୍ତାର ରହିଛି ।

ସେଥିରୁ କେଉଁଠିକି ଗୁରୁତର, କେଉଁଟିକୁ ଉଚିତ ଏ ବିଷୟରେ ସମାଧାନ କରି ହେଉନାହିଁ ଓ ସରକାର ମଧ୍ୟ କରିପାରୁ ନାହାନ୍ତି । ପ୍ରଥମେ ଧର୍ମଶାଳାର ମାନ୍ୟବର ସଭ୍ୟ ଯେଉଁ ପରୀକ୍ଷା ସମ୍ପର୍କରେ କହିଲେ ସେ କଥା ଦେଖିବାକୁ ହେବ ଏବଂ ନିଶ୍ଚିତ ଭାବରେ ତାର ସମାଧାନ କରିବାକୁ ହେବ । ତାହା ନହେଲେ ଏ ବିଶ୍ୱବିଦ୍ୟାଳୟ ଶିକ୍ଷାର କିଛି ମୂଲ୍ୟ ନାହିଁ । ମାନ୍ୟବର ମନ୍ତ୍ରୀ ଜାଣିଥିବେ କେବଳ କାଗଜମାନଙ୍କରେ ନୁହେଁ ସେ ଖବର ଏବେ ମଧ୍ୟ ହାଇସ୍କୁଲମାନଙ୍କରେ ପ୍ରଚାରିତ ହେଲାଣି । ଆଜି ହାଇସ୍କୁଲ ପରୀକ୍ଷା ଭିତରେ ସେ କପି କଲାବେଳେ ପରୀକ୍ଷକମାନେ ତାଙ୍କୁ ଧରିଲେ ସେମାନେ ମାନୁନାହାନ୍ତି ବରଂ ପରୀକ୍ଷକମାନଙ୍କୁ ଧମକ ଦିଆଯାଉଛି । ଏଣୁ ଏହାର ସମାଧାନ କରିବାକୁ ଗଲେ ଏହାର ତ୍ରୁଟି କେଉଁଠି ରହୁଛି ତାକୁ ଅନୁସନ୍ଧାନ କରିବାକୁ ହେବ ।

ମୁଁ ଜାଣେ ଯେଉଁଠି ମାସ ମାସ ଧରି ଆଜିର ଅଧ୍ୟାପକ ନିଯୁକ୍ତ ନହେବା ଫଳରେ Lecturer, Reader, Professor, ପଦ ନିଯୁକ୍ତ ନ ହେବା ସେଠି ପିଲାମାନେ କ'ଣ ପଢ଼ିବେ କ'ଣ ବା ପରୀକ୍ଷା ଦେବେ । ଆମ Ravenshaw Collegeରେ ବୋଟାନି ଅଧ୍ୟାପକମାନେ ମାସ ମାସ ଧରି ନିଯୁକ୍ତ ପାଇଲେ ନାହିଁ । ଲେକ୍‌ଚରମାନେ ନିଯୁକ୍ତ ପାଉଥିଲେ ନାହିଁ । ସେ ପିଲାମାନେ ପଢ଼ିବେ କ'ଣ ଏବଂ ବୋଟାନି ସମ୍ପର୍କରେ ପରୀକ୍ଷା ଦେବେ କିପରି ସେଥିପାଇଁ ଏହାର ଅନୁସନ୍ଧାନ କରିବା ଦରକାର ପଡ଼ୁଛି ।

ଆଠଗଡ଼ର ମାନ୍ୟବର ସଭ୍ୟ ଯେପରି କହିଲେ ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ଛାତ୍ର ବିକ୍ଷୋଭ ସମ୍ପର୍କରେ ଯେଉଁ କମିଟି ବସିଥିଲା ସେ କମିଟି ତାଙ୍କ recommendation ଦେଇଛନ୍ତି । ସେ ବର୍ତ୍ତମାନ ନିଜେ ମୁଖ୍ୟମନ୍ତ୍ରୀ ଅଛନ୍ତି । ସେ ଯେଉଁ ସୁପାରିସ୍ କରିଥିଲେ ତାକୁ କାର୍ଯ୍ୟକାରୀ କରିବାକୁ ହେବ ଏବଂ ତା'ର କାରଣ ଅନୁସନ୍ଧାନ କରିବାକୁ ହେବ । ଆପଣ ଜାଣନ୍ତି ଛାତ୍ର ଅଶାନ୍ତି ସର୍ବତ୍ର ବ୍ୟାପିଲା । ଆନ୍ଦୋଳନ ହେବା ଫଳରେ ୟୁନିଭରସିଟି ଗ୍ରାଣ୍ଟ କମିଶନ, ଶ୍ରୀ ଗଜେନ୍ଦ୍ର ଗଡ଼କର 1969ରେ ସେ report ଦେଇ ସାରିଲେଣି । ସେଥିରେ ସେ ଯେଉଁ ସୁପାରିଶ କରିଛନ୍ତି ତାକୁ ଅନୁଧ୍ୟାନ କରି ଛାତ୍ର ଅସନ୍ତୋଷ ଦୂର କରିବାପାଇଁ ଚେଷ୍ଟା କରିବାକୁ ହେବ । କେବଳ ସସ୍ତା ଲୋକପ୍ରିୟତା ଅର୍ଜନ କରିବା ପାଇଁ ହଠାତ୍ ଆଦେଶ ଦେଇ ପୁଣି ତାକୁ withdraw କରିବା ଠିକ୍ ହେଉନାହିଁ । ଯାହାର ଏଲ୍ଡନ କଲେ ସିଣ୍ଡିକେଟ୍ ଓ ସିନେଟ୍ ସମ୍ପର୍କରେ ଯେଉଁ ଭୁଲ କଲେ ସେ ଭୁଲ ଆଉ କରନ୍ତୁ ନାହିଁ ।

ଆପଣ ଜାଣନ୍ତି Pre-primary ଠାରୁ High School ପର୍ଯ୍ୟନ୍ତ ଆମର କିଛୁ ହୋଇପାରିନି ନାହିଁ । Pre-primary ଶିକ୍ଷା ସମ୍ପର୍କରେ ସରକାରଙ୍କ ନୀତିରୁ ମଧ୍ୟ କିଛୁ ହୋଇପାରିନି ନାହିଁ । ଅନ୍ୟାନ୍ୟ ଦେଶରେ Pre-primary ଓ Primary ଶିକ୍ଷାକୁ ଦେଶରେ ଗୁରୁତ୍ୱ ଦେଇ ଦୃଷ୍ଟି ଦିଅନ୍ତି ଅନ୍ୟ ଶିକ୍ଷାସ୍ତର ଏତେ ଗୁରୁତ୍ୱ ଦିଅନ୍ତି ନାହିଁ । କାରଣ Primary ଶିକ୍ଷା ହେଉଛି ଶିକ୍ଷାର ମୂଳଦୁଆ ତାହା ଉପରେ ନିର୍ଭର କରେ । ଆମର pre-primary ଶିକ୍ଷା ଠିକ୍ ଭାବରେ କରା ଯାଇଥିଲେ କୋମଳମତି ବାଳକ ବାଳିକାଙ୍କ ମନରେ ଉତ୍କର୍ଷ ସାଧନ ହୋଇଥାନ୍ତା । କିନ୍ତୁ ତାହା ହୋଇ ପାରିନି ନାହିଁ । ଆମର Pre-Primary ଶିକ୍ଷା ସଫଳ ହୋଇନାହିଁ । ଆମର Primary ଶିକ୍ଷା ପ୍ରଥମରୁ 5ମ ଶ୍ରେଣୀ ଥାଏ ଥିଲା । ବର୍ତ୍ତମାନ ସରକାର ଯେଉଁ ପ୍ରାଥମିକ ଶିକ୍ଷାରେ 6ଷ୍ଠ, 7ମ ଅର୍ଥାତ M.E.ର ଦୁଇଟି ଶ୍ରେଣୀ ମିଶାଇ ଦେଇ ପ୍ରାଥମିକ ଶିକ୍ଷାକୁ ଶକ୍ତ କରିବା ପାଇଁ ସ୍ଥିର କଲେ । ତାହା ହେଲେ ସରକାର ସ୍ଥିର କଲେ 1ମ ଠାରୁ 7ମ ପର୍ଯ୍ୟନ୍ତ ପ୍ରାଥମିକ ଶ୍ରେଣୀ । ତେଣୁ ପ୍ରଥମରୁ 7ମ ଶ୍ରେଣୀ ପର୍ଯ୍ୟନ୍ତ ଅବୈତନିକ ଶିକ୍ଷା ଦିଆଯିବା ଉଚିତ । ସେହିଭଳି ସିଲାବସ ବା courses of studies ପ୍ରାଥମିକ ଶିକ୍ଷା ପାଇଁ ହେବ ତାହା Class I ଠାରୁ Class VII ପର୍ଯ୍ୟନ୍ତ କରିବାକୁ ହେବ । ତାହା ନକରି 1ମରୁ 3ୟ ଶ୍ରେଣୀ ପର୍ଯ୍ୟନ୍ତ ଏଲ୍.ପି., 4ର୍ଥ, 5ମ U.P. ଓ 6ଷ୍ଠ, 7ମ M.E. ଶ୍ରେଣୀକୁ Primary ଶିକ୍ଷାରେ ଅନ୍ତର୍ଭୁକ୍ତ କରାଗଲେ କ'ଣ ହେବ ? ଆମେ ପ୍ରଥମ ଶ୍ରେଣୀରୁ 7ମ ଶ୍ରେଣୀ ପର୍ଯ୍ୟନ୍ତ ଖାଲି ପ୍ରାଥମିକ ଶିକ୍ଷାରେ ଅନ୍ତର୍ଭୁକ୍ତ କରିଛୁ ସିନା ଆଉ କିଛୁ କରିପାରି ନାହୁଁ । ତାର ଯୋଗିଁ continuity ବା ଧାରାବାହିକ ଭାବରେ କରିବା ଉଚିତ ଥିଲା । ବର୍ତ୍ତମାନ ଆମ ଦେଶରେ କେତେଗୁଡ଼ିଏ ରାଜ୍ୟ ଅଛନ୍ତି ଯାହାର High School course ପାଇଁ 10 ବର୍ଷ କରାଯାଇଛନ୍ତି । Class I ଠାରୁ Class X ପର୍ଯ୍ୟନ୍ତ ଅର୍ଥାତ୍ 10ମ ଶ୍ରେଣୀ ପରେ Secondary ଶିକ୍ଷା ଶେଷ ପାଉଛି । ବର୍ତ୍ତମାନ ଆମର ଲୋଅର ପ୍ରାଇମେରୀ 3ଟି Class, ଅପର ପ୍ରାଇମେରୀ 4ର୍ଥ, 5ମ ଶ୍ରେଣୀ । M.E.ରେ 6ଷ୍ଠ, 7ମ, ଶ୍ରେଣୀ । 8ମ କ୍ଲାସଟି ସେ ଛଡ଼ାଇ ଦେଇଛନ୍ତି । ଯାହାର 8ମ ବୋଲି ଏକକ କିଛୁ ନାହିଁ । High Schoolରେ 9ମ, 10ମ, 11ଶ ଶ୍ରେଣୀ ରହୁଛି । ଆମେ ଯଦି 8ମ ଶ୍ରେଣୀ ଛଡ଼ାଇ ଦେବୁ ତାହା ହେଲେ ଆମର ପ୍ରଥମ ଶ୍ରେଣୀ ଠାରୁ 10ମ ଶ୍ରେଣୀ ପର୍ଯ୍ୟନ୍ତ ଏମିତି ସ୍କୁଲ ଶିକ୍ଷା ହୋଇଯିବ । ଏଇଟା ମଧ୍ୟ All India Secondary Teachers Federationର ଯୋଗିଁ demand ରହୁଛି । ଅନ୍ୟାନ୍ୟ ଶିକ୍ଷାବିତ୍‌ମାନେ ମଧ୍ୟ ଏଥିରେ ଏକମତ ହୋଇଛନ୍ତି ଏବଂ କୋଠାରି କମିଶନ ସେ ସୁପାରିଶ କରିଛନ୍ତି । ତେଣୁ ଅଷ୍ଟମ

ଶ୍ରେଣୀର ଅନାବଶ୍ୟକତା ସମ୍ପର୍କରେ ଶିକ୍ଷାବିତ୍‌ମାନେ ହୃଦୟଙ୍ଗମ କରୁଥିଲେ ମଧ୍ୟ ଆଜି ପର୍ଯ୍ୟନ୍ତ ଅଷ୍ଟମ ଶ୍ରେଣୀ ରହିଛି । ଆମେ ଦେଖିବା ପ୍ରାଥମିକ ଶ୍ରେଣୀ ଠାରୁ ମାଧ୍ୟମିକ ଶ୍ରେଣୀ ଶେଷ ପର୍ଯ୍ୟନ୍ତ କେତେ Stagnation ଏବଂ Wastage ହେଉଛି ଏକଥା କେହି ଚିନ୍ତା କରୁନାହାନ୍ତି । Stagnation ଅର୍ଥାତ୍ ହେଉଛି detention ଯୋଗୁ । କରସ୍ପୃଶ୍ୟଙ୍କରର ମାଧ୍ୟମର ସର୍ବ ଆଜି ସବୁବେଳେ ହିସାବ କରି କହୁଛନ୍ତି, ପ୍ରଥମରୁ ଏକାଦଶ ଶ୍ରେଣୀ ଭିତରେ କେତେ Wastage ହେଉଛି । ଏ ସମ୍ପର୍କରେ କେହି ଚିନ୍ତା କରିବାକୁ ନାହିଁ । ସମସ୍ୟା ସମାଧାନ କରିବାକୁ ଉଦ୍ୟମ ନାହିଁ । ଆଉ ସରକାର ଯାହା କରିଛନ୍ତି ଭଲ କରିଛନ୍ତି । କେବଳ ସପ୍ତମ ଶ୍ରେଣୀ ଶେଷରେ ଗୋଟିଏ ପରୀକ୍ଷା ଏବଂ ଏକାଦଶ ଶ୍ରେଣୀର ଗୋଟିଏ ପରୀକ୍ଷା । ଅର୍ଥାତ୍ ପ୍ରାଥମିକ ଶିକ୍ଷାର ଶେଷ ପରେ ଥରେ ପରୀକ୍ଷା ହେବ । ମାଧ୍ୟମିକ ଶିକ୍ଷା ପରେ ଆଉ ଥରେ ପରୀକ୍ଷା ହେବ । ଅନ୍ୟ ଶ୍ରେଣୀ ଗୁଡ଼ିକର ପରୀକ୍ଷା ହେବନି ।

ଅଧ୍ୟକ୍ଷ ମହାଶୟ, ଆ-ମ ପଢ଼ିଲା ବେଳେ ମାଟ୍ରିକ ପରେ ଥିଲା I.A. 2ବର୍ଷ, B.A. 2ବର୍ଷ ଏବଂ M.A. 2ବର୍ଷ । ସେତେବେଳେ କ'ଣ ଅସୁବିଧା ହେଉଥିଲା, ଏବେ କ'ଣ ସୁବିଧା ହେଉଛି ମୁଁ ବୁଝିପାରୁନି । ଏବେ ହେଉଛି ମାଟ୍ରିକ ପରେ ପ୍ରି-ୟୁନିଭରସିଟି ବର୍ଷ, ସେଠି ଥରେ ପରୀକ୍ଷା ତା'ପରେ 3ବର୍ଷିଆ ଡ଼ିଗ୍ରୀ କୋର୍ସର ପ୍ରଥମ ବର୍ଷ ପରୀକ୍ଷା, ଦ୍ୱିତୀୟ ବର୍ଷ ପରୀକ୍ଷା ପୁଣି 3ୟ ବର୍ଷ ଶେଷରେ ପରୀକ୍ଷା । କେବଳ ପରୀକ୍ଷା, ପରୀକ୍ଷା । ଏହି ପରୀକ୍ଷାମୂଳକ ଶିକ୍ଷା ସବୁ ଧ୍ୱଂସ କଲାଣି । P.U ଉଠାଇ ଦେଇ ପୁଣି ପୂର୍ବ ଭଳି କରନ୍ତୁ । ମାତ୍ର ଯେ ଗଭର୍ଣ୍ଣମେଣ୍ଟ ସେଭଳି କରିଲେଣି ବୋଲି ଜଣାଯାଉଛି । I. A. ଦୁଇ ବର୍ଷ ପଢ଼ିବା ପରେ ଗୋଟିଏ ପରୀକ୍ଷା, B. A. 2ବର୍ଷ ପଢ଼ିଲା ପରେ ଗୋଟିଏ ପରୀକ୍ଷା ଏବଂ ସ୍ନାତକ ଶ୍ରେଣୀରେ 2ବର୍ଷ ପଢ଼ିବା ପରେ ଗୋଟିଏ ପରୀକ୍ଷା ଏଭଳି କରାଗଲେ ପରୀକ୍ଷାରେ ଦୁର୍ନୀତି କମିଯିବ । ସବୁଠାରୁ ବଡ଼ କଥା ହେଉଛି ଯାହା ଆମ ସରକାର ବା ଶିକ୍ଷାବିତ୍‌ମାନେ ହୃଦୟଙ୍ଗମ କରିପାରୁ ନାହାଁନ୍ତି, ତାହା ହେଉଛି ଆମ ଦେଶରେ ଯେଉଁ economic growth ହେବ ସେ economic growth ସହିତ ଶିକ୍ଷାର ଘନିଷ୍ଠ ସମ୍ପର୍କ ରଖିବା କଥା । ଯୋଜନା କଲାବେଳେ ଏ ଦୁଇଟିକୁ ମିଶାଇ ଯୋଜନା କରାଯାଇ ପାରୁନାହିଁ । ଯୋଜନା ସମନ୍ୱୟ ବିଭାଗ ଯେତେବେଳେ ଯୋଜନା ପ୍ରସ୍ତୁତ କରୁଛନ୍ତି ଶିକ୍ଷା ବିଭାଗ ସହିତ technical manpower ବିଷୟରେ ଶିକ୍ଷା ବିଭାଗ ସହିତ ସମ୍ପର୍କ ରଖୁନାହାନ୍ତି । ଶିକ୍ଷା ବିଭାଗ ସହିତ ସମ୍ପର୍କ ନରଖିଲେ ଯୋଜନା କରିହେବନି । ଆମର କେ manpower ଦରକାର, କେତେ scientific manpower ଦରକାର, କେତେ technical manpower ଦରକାର ଏସବୁ ଶିକ୍ଷାବିଭାଗ scheme କରିବ ଅଥଚ ତାକୁ ଆମେ ଛାଡ଼ି ଦେଉଛୁ ।

ବର୍ତ୍ତମାନ ଶିକ୍ଷାରେ diversification ଆଣିବା କଥା ଚିନ୍ତା କରାଯାଉଛି । ଅନେକ କହୁଛନ୍ତି ସପ୍ତମ ଶ୍ରେଣୀ ଶେଷରେ diversification କରାଯାଉ । ସେତେବେଳକୁ ପିଲାର ବୟସ ହୋଇଥିବ 13. ଯଦି ସେଠାରେ diversification ହୁଏ ତେବେ ମାଟ୍ରିକ ଶେଷରେ ଆଉ ଥରେ diversification ହେଉ । ତା'ପରେ କିଏ I. T. I.କୁ ଯିବ, କିଏ ଇଂଜିନିୟରିଙ୍ଗ ସ୍କୁଲକୁ ଯିବ, କିଏ ଅନ୍ୟାନ୍ୟ vocational Instituteକୁ ଯିବ । ଏଥିପାଇଁ ପିଲାମାନଙ୍କୁ ଉତ୍ସାହିତ କରିବା ଦରକାର । ଛାତ୍ର, ଅଭିଭାବକ ଏବଂ ଶିକ୍ଷକଙ୍କ ଭିତରେ ସମ୍ପର୍କ ରହିଲେ ପିଲାର କେଉଁ subjects ପ୍ରତି aptitude ଅଛି ସେଟା ଜଣା ପଡ଼ିଯାନ୍ତା । ସେଥିପାଇଁ କରିବାକୁ ହେଲେ ପ୍ରତି ପିଲାର cumulative record ରଖିବାକୁ ହେବ । ପୂର୍ବତନ ଶିକ୍ଷାମନ୍ତ୍ରୀ ଏହା କରାଯିବ ବୋଲି କହିଥିଲେ । ଆଜି ପର୍ଯ୍ୟନ୍ତ କୌଣସି ହାଇସ୍କୁଲରେ cumulative record ରଖାଯାଇ ନାହିଁ । ଏ record ରଖିବାକୁ ହେଲେ ପ୍ରତ୍ୟେକ ଶିକ୍ଷକଙ୍କୁ ପ୍ରତିଦିନ ଅଧଘଣ୍ଟା ସମୟ ଦେବାକୁ ପଡ଼ିବ । ଆଜିକାଲି ପିଲାଙ୍କ ସହିତ ଶିକ୍ଷକଙ୍କ ସମ୍ପର୍କ ରହୁନି । ଶିକ୍ଷକ ପିଲାଙ୍କୁ ନ ଚିହ୍ନି ତାଙ୍କୁ ରୋଲ ନମ୍ବର 1, 2, 40 ଏହିପରି ଭାବରେ ଡ଼ାକନ୍ତି । ଏସବୁ କରିବାକୁ ହେଲେ ଛାତ୍ର ଏବଂ ଶିକ୍ଷକ, ଅଭିଭାବକ ଏବଂ ଶିକ୍ଷକଙ୍କ ଭିତରେ ଘନିଷ୍ଠ ସମ୍ପର୍କ ରହିବା ଦରକାର । ତାହାହେଲେ diversification ବା bifurcation କରିବା ସୁବିଧା ହୁଅନ୍ତା । କେନ୍ଦ୍ର ଶିକ୍ଷା ମନ୍ତ୍ରୀ 500 ସ୍କୁଲର ଯୋଜନା କରିଛନ୍ତି । Work experience ବା କର୍ମଭିତ୍ତିକ ଶିକ୍ଷା ଆମର ହେବା ଦରକାର । ଶିକ୍ଷା productive ହେବା ଦରକାର । ସେଇ କଥା ମହାତ୍ମାଗାନ୍ଧୀ basic educationରେ କହିଥିଲେ, ଆମେ ସେଇଟା ପରୀକ୍ଷା କରି ଛାଡ଼ିଦେଲେ ।

ଆମ ମୁଖ୍ୟମନ୍ତ୍ରୀ ବହୁତ ଦିନ ପରେ ରାଜ୍ୟକୁ ଫେରି ମୁଖ୍ୟମନ୍ତ୍ରୀ ହୋଇଥିବାରୁ ଆମେ କିପରି ମୌଳିକ ଶିକ୍ଷାକୁ ପରୀକ୍ଷା କରି ଛାଡ଼ି ଦେଇଛୁ ସେ କଥା ସେ ଜାଣି ନାହାନ୍ତି । ବର୍ତ୍ତମାନ ମୌଳିକ ଶିକ୍ଷା ସମ୍ବନ୍ଧ experiment କରିବା ପାଇଁ ସେତେବେଳେ ଥିଲେ ସେମାନେ ଛାଡ଼ି ଦେଇଛନ୍ତି । ଆଉ ଶିକ୍ଷାବିତ୍‌ମାନେ ତାକୁ ତ୍ୟାଗ କରିଛନ୍ତି । କୌଣସି ମୌଳିକ ପରିବର୍ତ୍ତନ ଯୋଜନା କରିବାକୁ ଗଲାବେଳେ ଶିକ୍ଷାବିତ୍‌ମାନେ ପ୍ରତିବାଦ କରିଛନ୍ତି । ଏଥିପାଇଁ ଅଧିକ ପରିଶ୍ରମ ଓ ଧ୍ୟାନ ଦେବାକୁ ପଡ଼ିବ । ମହାତ୍ମାଗାନ୍ଧୀ ଏ ଦେଶର ନାଡ଼ି ଚିହ୍ନି ଏହି ଶିକ୍ଷା ଯୋଜନା କରିଥିଲେ । ଦକ୍ଷିଣ ଆଫ୍ରିକାର ଜେହାନସବର୍ଗରେ ଥିଲାବେଳେ ସେ ଏହି ଯୋଜନା କରିଥିଲେ । ସେ ପରୀକ୍ଷା ସଫଳ ହେଲା ପରେ ସୃଷ୍ଟି ହେଲା basic based education. ସେ ବ୍ୟବସ୍ଥା ମଧ୍ୟ ଏବେ ଆଉ ନାହିଁ ।

ଉତ୍କଳ ଶିକ୍ଷା କମିଶନ୍ ରିପୋର୍ଟ କାହିଁକି ପକାଇ ରଖିଛନ୍ତି ପଚାରିଲେ ସରକାର କହିବେ କିଛି କରୁନାହାନ୍ତି । ଏହା purely State subject. କୋଠାରି କମିଶନ ରିପୋର୍ଟ ଆମ ଆଗରେ ଅଛି । ତାଙ୍କର ପ୍ରତ୍ୟେକ ସୁପାରିଶ implement କଲେ ଅଧିକା ଟଙ୍କା ଖର୍ଚ୍ଚ ହେବନି ସେତେବେଳେ କରିବା କାହିଁକି ? ପୂର୍ବତନ ସରକାର ଏ ବିଷୟ ସେମିତି vague କରି ରଖିଥିଲେ । ଆମେ ଗୋଟିଏ ପ୍ଲାନ ପିରିଅଡ଼ ଭିତରେ ଗତି କରୁଛେ । This is third year of the Fourth Plan. ଏ ଧାରଣା ଆମ ମନ୍ତ୍ରୀମାନଙ୍କର ନାହିଁ । ସେ ଦିନ ଏ ଗୃହରେ ନାନା ପ୍ରୋଗ୍ରାମକୁ ଅନ୍ୟ ପ୍ରୋଗ୍ରାମ ସହିତ integrate କରିବା ବିଷୟରେ ଆଲୋଚନା ହେଉଥିଲେ ଜଣେ ମାନ୍ୟବର ମନ୍ତ୍ରୀ କହିଲେ ଯେ ସେପରି କୌଣସି ଯୋଜନା ନାହିଁ । ମୁଁ ଭାବୁଛି ଆମର ଯେପରି annual Budget ଏବେ ସେମିତି ଚାଲିଛି । The plan is there and we are in the third year of the Fourth Plan. ଶିକ୍ଷା ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଷୟ । ଏଥିପ୍ରତି ଯଥାର୍ଥ ଦୃଷ୍ଟି ଦେବାକୁ ହେବ । ଏହାକୁ ସ୍ପର୍ଶ କରିବାକୁ ଅନେକ ଡରୁଛନ୍ତି । ମୁଁ କିଛି କରିବେ ବୋଲି କାଳେ ଆଉ କେଉଁଠି କିଛି reaction ହୋଇଯିବ, ଏଥିପାଇଁ ସମସ୍ତେ ଡରୁଛନ୍ତି । ମୁଁ ଯାହା କହୁଥିଲି ଏମାନେ ଗୁହାଁନ୍ତି let the sleeping dog lay. ସେ ସେମିତି ଥାଉ । ମଝିରେ ମଝିରେ ଟିକିଏ ଟିକିଏ ପରିବର୍ତ୍ତନ କରୁଥିବ । କିନ୍ତୁ ଏଥିରେ ଗୋଟିଏ ବୈପ୍ଳବିକ ପରିବର୍ତ୍ତନ ଆଣିବା ଦରକାର ହେଉଛି ।

ଆମର ଜଣେ ମାନ୍ୟବର ଶିକ୍ଷାବିତ୍ ଏହି ଭୁବନେଶ୍ୱରରେ ଅଛନ୍ତି । ସେ ଦିନେ ବକ୍ତୃତାରେ କହିଲେ ବର୍ତ୍ତମାନର ଶିକ୍ଷାପଦ୍ଧତି ଆମର ସାମାଜିକ ଆବଶ୍ୟକତା ପୂରଣ କରୁଛି । ଆଉ ପରିବର୍ତ୍ତନ ଦରକାର ନାହିଁ । ମୁଁ ଏଥିରେ ଏକମତ ନୁହେଁ । ମୋର ଭିନ୍ନ ମତ ରହିଛି । ଆମେ ବେକାର ସମସ୍ୟାକୁ ଯେତେ theorise କଲେ ମଧ୍ୟ ଶିକ୍ଷାପଦ୍ଧତିର ପରିବର୍ତ୍ତନ ନ ହେଲେ ବେକାର ସମସ୍ୟା ସମାଧାନ ହୋଇପାରିବ ନାହିଁ । ଜଣେ ଶିକ୍ଷାବିତ୍ କହିଛନ୍ତି ଆମ ସମାଜରେ ମୁଣ୍ଡପିଛା ହାରାହାରି ଆୟ 553 ଟଙ୍କା ଥିଲାବେଳେ ଜଣେ ଗ୍ରାଜୁଏଟ ପିଛା average ସରକାର ଖର୍ଚ୍ଚ କରୁଛନ୍ତି 2,700 ଟଙ୍କା; in addition to the expenditure that the parents incur on the graduate student. ସେମାନେ କଲେଜରୁ ଆସିବା ପରେ ସେମାନଙ୍କୁ utilise କରିବା ପାଇଁ ଆମେ କ'ଣ ବ୍ୟବସ୍ଥା କରୁଛୁ । In an age of developed economy ଅର୍ଥନୈତିକ ଉନ୍ନତ କରିବା ପାଇଁ ଯାହା ଚାଲିଛି ଏହି ଯୋଜନାକୁ ଆମେ ଠିକ୍ ଭାବରେ ପରିଚାଳନା କଲେ ଯୋଜନା ସହିତ ଶିକ୍ଷା ଅତି ଘନିଷ୍ଠ ସମ୍ପର୍କରେ ଆସିବ ଏବଂ ଆମର ଆବଶ୍ୟକତା ପୂରଣ କରିବା ପାଇଁ ଶିକ୍ଷାକ୍ଷେତ୍ରରେ ସେହିପରି ଭାବରେ ମୌଳିକ ପରିବର୍ତ୍ତନ ଆଣିପାରିବା ।

## ଶିକ୍ଷା ବିଭାଗ ଖର୍ଚ୍ଚ ଦାବି (1971-72) ସମ୍ପର୍କରେ ଆଲୋଚନା
(17-3-1972)

ଅଧ୍ୟକ୍ଷ ମହୋଦୟ, ଶିକ୍ଷା ବିଭାଗ ଖର୍ଚ୍ଚଦାବି ଉପରେ ଯେଉଁ କାଟ ପ୍ରସ୍ତାବ ଆସିଛି ମୁଁ ସେ ସବୁ ସମର୍ଥନ କରୁଛି । କେଉଁ ପରିସ୍ଥିତିରେ ଆମେ ଏଭଳି ଦାବି ଉପସ୍ଥାପିତ କରିଛୁ ତାହା ମୁଁ କହିବାକୁ ଚାହୁଁଛି । 1971 ଜନଗଣନା ଅନୁସାରେ ଆମର ସାକ୍ଷର ସଂଖ୍ୟା ହେଲା 26·12 ପରସେଣ୍ଟ, ତହିଁରୁ ପୁରୁଷ 14·7 ପରସେଣ୍ଟ ଏବଂ ସ୍ତ୍ରୀ 8·6 ପରସେଣ୍ଟ । ଆମର *per capita* expenditure on education ଅନ୍ୟ ରାଜ୍ୟ ତୁଳନାରେ ଦେଖାଯାଉ । 1956-57ରେ ଓଡ଼ିଶାର ମୁଣ୍ଡପିଛା ଖର୍ଚ୍ଚ କରିଥିଲେ 3 ଟଙ୍କା, ଠିକ୍ ସେ ବର୍ଷ ଆସାମ 4·8, ଆନ୍ଧ୍ର 4·3, ବିହାର 3·3, ପଶ୍ଚିମବଙ୍ଗ 8·3 ଏବଂ ଭାରତର ହାରାହାରି 5 ଟଙ୍କା ଖର୍ଚ୍ଚ ହୋଇଥିଲା । 1961-62ରେ ଆମର ମୁଣ୍ଡ ପିଛା ଖର୍ଚ୍ଚ ବଢି 4·5 ଟଙ୍କାକୁ ଆସିଲା, ସେହି ବର୍ଷ ଆସାମ 8·4, ଆନ୍ଧ୍ର 7·5, ବିହାର 5·2, ପଶ୍ଚିମ ବଙ୍ଗ 10·6 ଏବଂ ଭାରତର ହାରାହାରି 8·8 ହୋଇଥିଲା । ହେଲେ ପରେ 1964-65ରେ ଓଡ଼ିଶାର ମୁଣ୍ଡ ପିଛା ହାରାହାରି ଖର୍ଚ୍ଚ ବଢି 7·9 ହୋଇଥିବା ବେଳେ, ଆସାମ 10·7, ଆନ୍ଧ୍ର 8·8, ବିହାର 5·8, ପଶ୍ଚିମ ବଙ୍ଗ 14 ଏବଂ ଭାରତର ହାରାହାରି 11 ହୋଇଥିଲା । ଅନ୍ୟ ପ୍ରଦେଶମାନେ କିପରି ଶିକ୍ଷା ଉପରେ ତାଙ୍କର ମୁଣ୍ଡ ପିଛା ଖର୍ଚ୍ଚ ବଢାଇ ଚାଲିଥିବାବେଳେ ଆମେ କିପରି କେତେ ପଛରେ ଯାଉଛୁ ଅନୁମାନ କରନ୍ତୁ । ଅଡ଼ ଗୋଟିଏ କଥା ଦେଖିବେ ଆମର enrolment ratio of the school going children 4ର୍ଥ ଓ 5ମ ଶ୍ରେଣୀରେ 69 ପରସେଣ୍ଟ, 6ଷ୍ଠରୁ 8ମ ଶ୍ରେଣୀ ଭିତରେ 22 ପରସେଣ୍ଟ ଏବଂ 9ମରୁ 11ଶ ଭିତରେ 13·9 ପରସେଣ୍ଟ । ଏଥିରୁ ଦେଖିବେ ସମସ୍ତ school going childrenଙ୍କ ପାଇଁ ଆମେ ଶିକ୍ଷା ବ୍ୟବସ୍ଥା କରିନାହୁଁ ଏବଂ କ୍ରମଶଃ classwise ଯେତେ ଉପରକୁ ଯାଉଛୁ wastage ବଢୁଛି ହେଉଛି । ଏହି ପରିପ୍ରେକ୍ଷୀରେ ଆମ ସରକାରଙ୍କର କିଛି ଶିକ୍ଷାନୀତି ବୋଲି ନାହିଁ । ଯେତେ ଅଧିକ ଦୃଷ୍ଟି ଶିକ୍ଷା ପ୍ରତି ଆମେ ଦେଉଥାନ୍ତେ ଏବଂ ଅଧିକ ଟଙ୍କା ବିନିଯୋଗ କରିଥାନ୍ତେ ତାହା କରିପାରି ନାହୁଁ । ପ୍ରଥମ ଦୁଃଖଦାୟକ କଥା ହେଲା ଆମର କୌଣସି ନିର୍ଦ୍ଦିଷ୍ଟ ଶିକ୍ଷାନୀତି ନାହିଁ । କୋଠାରି କମିଶନ report କଥା କୁହାଯାଉଛି । ସେ report ଆମ ଆଗରେ ରହିଛି । ସେ report ଅନୁସାରେ ଆମେ ଶିକ୍ଷାନୀତି ପରିବର୍ତ୍ତନ କରିବା କଥା । ଆଜିଯାଏ ତାହା ହୋଇ ପାରିଲା ନାହିଁ । ବହୁବାର ଏ ଗୃହରେ ଏ ସମ୍ପର୍କରେ ଆଲୋଚନା ହୋଇଛି । ଅନ୍ତତଃ ପକ୍ଷେ କମିଶନଙ୍କର ଯେଉଁ ସୁପାରିଶଗୁଡ଼ିକ କାର୍ଯ୍ୟକାରୀ କରିବାପାଇଁ ବିଶେଷ ଅର୍ଥ ଆବଶ୍ୟକ ନୁହେଁ ଏବଂ ଯେଉଁ work experience ଉପରେ ଭିତ୍ତିକରି ଶିକ୍ଷାର attitude ପରିବର୍ତ୍ତନ କରାଯାଇ ପାରନ୍ତା, ସେଗୁଡ଼ିକ କାର୍ଯ୍ୟକାରୀ କରିବା ନିମି

କୌଣସି ଉଦ୍ୟମ ହେଉନାହିଁ । White coloured education ମାନଙ୍କେ ସାହେବଙ୍କ ସମୟରୁ ଚଳି ଆସୁଛି । ଆଜି ପର୍ଯ୍ୟନ୍ତ ସେଥିର ମଝିରେ ମଝିରେ ସାମାନ୍ୟ patch work ହେଉଛି । ମୌଳିକ ଦୃଷ୍ଟିଭଙ୍ଗୀର ପରିବର୍ତ୍ତନ ହେଉ ନାହିଁ । ଭାରତବର୍ଷର ପରମ୍ପରାଗତ ସଂସ୍କୃତି ଓ ଜନସାଧାରଣଙ୍କ ଦୃଷ୍ଟିଭଙ୍ଗୀ ଆଧାର ଆକାରରେ ଗଢି ବାପୁଜୀ ମୌଳିକ ଶିକ୍ଷା ଆରମ୍ଭ କରିଥିଲେ । ଆଶା କରାଯାଉଥିଲା ତାକୁ ଭିତ୍ତିକରି ତା'ର କିଛି improvement କରି ଶିକ୍ଷା କ୍ଷେତ୍ରରେ ପ୍ରୟୋଗ କରାଯିବ । ତାହା ହେଲା ନାହିଁ । କୋଠାରୀ କମିଶନ professional education କଥା କହୁଛନ୍ତି । ଗୋଟିଏ ନିର୍ଦ୍ଦିଷ୍ଟ ଶ୍ରେଣୀ ପରେ ଶିକ୍ଷାର bifurcation ହେବ । ଯେଉଁ ଛାତ୍ରମାନେ ଉଚ୍ଚ ଶିକ୍ଷା ଗ୍ରହଣ କରିବେ, ସେମାନେ ଯିବେ । ଅନ୍ୟମାନେ lower grade technical educationରେ ଯିବେ । ଏକଥା ଦୃଷ୍ଟିକୋଣ ଆମର ନାହିଁ । ଗତାନୁଗତିକ ପ୍ରଣାଳୀରେ ଯାହା ଚାଲି ଆସିଛି ତାକୁହିଁ ଚାଲୁ ରଖିବା ଆମେ ଚାହୁଁ । ଗତଥର ଶିକ୍ଷାମନ୍ତ୍ରୀ ଏହି demand ଉପରେ କହୁଥିଲେ ଯେ ଏହାକୁ ପରିବର୍ତ୍ତନ କରିବା ଏତେ ସହଜ ନୁହେଁ, ଅତିବେଶୀ ସମାଲୋଚନା କରାଯାଉଛି । କିନ୍ତୁ ଅଧ୍ୟକ୍ଷ ମହୋଦୟ, ଏହାର ଯଦି ମୌଳିକ ପରିବର୍ତ୍ତନ ନ ହୁଏ, ଭାରତରେ ବେକାରୀ ସମସ୍ୟା ଅଧିକରୁ ଅଧିକ ବଢିଯିବ । କେବଳ ସେତିକି ନୁହେଁ, ଆମେ High School ଓ Collegeରୁ ଏପରି ଲୋକଙ୍କୁ ବାହାର କରୁଛୁ, ଯେଉଁମାନେ ଚାକିରୀମୁଖୀ ହେଉଛନ୍ତି । ସେମାନଙ୍କର ଏକମାତ୍ର ଉଦ୍ଦେଶ୍ୟ ହେଲା, ଅଫିସରେ କିରାଣୀ କାମ କରିବା । ଏ ଦୃଷ୍ଟିଭଙ୍ଗୀ ରହିଲେ ବେକାରୀ ସମାଧାନ ହେବ ନାହିଁ । କୌଣସି productive କାମରେ ତାଙ୍କୁ ନିୟୋଗ କରିପାରିବା ନାହିଁ । ଏଣୁ ଏହି ପରମ୍ପରାଗତ ଅତି ପୁରୁଣା ଶିକ୍ଷାନୀତିରେ ପରିବର୍ତ୍ତନ କରିବା କଥା । କେନ୍ଦ୍ରକୁ ଦୋଷ ଦେବା ଠିକ୍ ନୁହେଁ । ଶିକ୍ଷା ଆମର State subject, ତା'ଛଡା କୋଠାରୀ କମିଶନ report ଆମ ଆଗରେ ରହିଛି । ପୂର୍ବବର୍ତ୍ତୀ କମିଶନମାନଙ୍କର report ମଧ୍ୟ ଅଛି । ସେ ସବୁ କାର୍ଯ୍ୟକାରୀ କରିବାରେ କେହି ବାଧା ଦେବେ ନାହିଁ । ବିଭିନ୍ନ ସମୟରେ କେନ୍ଦ୍ର ସରକାରଙ୍କଠାରୁ ଯେଉଁ ସବୁ ସାହାଯ୍ୟ ଓ ପ୍ରସ୍ତାବ ଆସୁଛି, ସରକାର ତାକୁ କାର୍ଯ୍ୟକାରୀ କରୁନାହାନ୍ତି । କେନ୍ଦ୍ରରୁ ଗୋଟିଏ ନୂଆ ପ୍ରସ୍ତାବ ଆସିଥିଲା । ତାହା ହେଉଛି National Rural Talent Scholarship. ପ୍ରତ୍ୟେକ ବ୍ଲକକୁ ଦୁଇଟି ବୃତ୍ତି ଦିଆଯିବ । ବୃତ୍ତିର ହାର ମାସିକ 100 ଟଙ୍କା । ଏହି schemeର ଆମର 314ଟି ବ୍ଲକରୁ 628 ଜଣ ଛାତ୍ର ବୃତ୍ତି ପାଇପାରିଥାନ୍ତେ । ଏହାକୁ କାର୍ଯ୍ୟକାରୀ କରାଯାଇ ନାହିଁ । ଶୁଣାଯାଏ କେନ୍ଦ୍ର ସରକାର ଏଥିପାଇଁ ଟଙ୍କା ପଠାଇଲେଣି । ଆମର କାମ ଏଯାଏଁ ଆରମ୍ଭ ହୋଇନାହିଁ । ଗତବର୍ଷ test କରିଥିଲେ, ଚଳିତ ବର୍ଷଠାରୁ ପ୍ରତି ବ୍ଲକରୁ ଦୁଇଜଣ ଛାତ୍ର

ବୃତ୍ତି ପାଉଅଛନ୍ତି । ଏଥିରୁ ଦେଖିବେ, କେନ୍ଦ୍ର ସାହାଯ୍ୟ ସେବାରେ ଅବହେଳା କରୁନାହିଁ । ରାଜ୍ୟ ସରକାର କାର୍ଯ୍ୟକାରୀ କରୁ ନାହାନ୍ତି ।

ଆଉ ଗୋଟିଏ ହେଉଛି development of science in lower classes. ପ୍ରାଥମିକ ଶ୍ରେଣୀରେ ବିଜ୍ଞାନ ପ୍ରସାର ପାଇଁ UNICEFର ସାହାଯ୍ୟ ଆସିବାର scheme ଥିଲା । ଶୁଣିବାକୁ ମିଳୁଛି D. P. I. Officeରେ ଯେଉଁ ବ୍ୟକ୍ତି ଏ କାମ କରୁଥିଲେ ତାଙ୍କର ବଦଳି ହୋଇଗଲା ।

ପାଠ୍ୟ ପୁସ୍ତକର ଜାତୀୟକରଣ କଥା ବହୁବାର ଆଲୋଚନା କଲେ ମଧ୍ୟ ସରକାର ସେଥିରେ କିଛି ଶିକ୍ଷା ପାଉନାହାନ୍ତି । ଦୁଃଖର କଥା 5ମ ଶ୍ରେଣୀ ପାଇଁ ଜାତୀୟକରଣ ବହି ଜାନୁୟାରୀ ମାସରେ ଦେବାକୁ ହୋଇଥିଲା । ଜନୁଆରୀ ଜାନୁୟାରୀ ପର୍ଯ୍ୟନ୍ତ ପିଲାଏ ବହି ପାଇଲେ ନାହିଁ । ଆମେ ଯାହା କରିବାକୁ ଠିକ୍ କରୁଛୁ, ତାକୁ ଅନୁଶାସନରେ ସହିତ କରୁନାହିଁ ।

ଗତ ସରକାର ସ୍ଥିର କରିଥିଲେ, 6ଷ୍ଠ, 7ମ ଶ୍ରେଣୀ higher primary ହେବ । ଏ ସରକାର ଏ ପର୍ଯ୍ୟନ୍ତ ତାହା କାର୍ଯ୍ୟକାରୀ କରିନାହାନ୍ତି । ଶୁଣିବା ଅନୁଯାୟୀ କରୁଛନ୍ତି, 6ଷ୍ଠ, 7ମ ଶ୍ରେଣୀ ପ୍ରାଥମିକ ଶିକ୍ଷା ହୋଇଗଲେ, ସେ ପିଲାମାନଙ୍କୁ ପରୀକ୍ଷା ଗ୍ରହଣ କରିବାକୁ ପଡ଼ିବ । ପ୍ରାଥମିକ ଶିକ୍ଷା free ହେବା କଥା । ସରକାର ଯଦି ତାକୁ ଭାଙ୍ଗି ଦେବେ, ତାହା ବଡ଼ ଦୁଃଖଦାୟକ ହେବ । ପ୍ରଥମରୁ 7ମ ପ୍ରାଥମିକ, ଅଷ୍ଟମରୁ ଏକାଦଶ ମାଧ୍ୟମିକ, ତା'ପରେ ଦୁଇ ବର୍ଷ I. A., I. Sc. ତା'ପରେ ଦୁଇ ବର୍ଷ B. A., B. Sc. ଏ ପଦ୍ଧତି ଅନୁସରଣ କରିବାକୁ ପଡ଼ିବ । ଅନ୍ତତଃପକ୍ଷେ 7ମ ଶ୍ରେଣୀ ପର୍ଯ୍ୟନ୍ତ ଯଦି ଅବୈତନିକ ଶିକ୍ଷା ନ ଦେଇ ପାରିବା, ତା'ଠାରୁ ବଳି ଦୁଃଖଦାୟକ କଥା ଅଉ କ'ଣ ଥାଇପାରେ ?

ପ୍ରାଥମିକ ସ୍କୁଲ ଶିକ୍ଷକମାନଙ୍କ ପାଇଁ ବିଭିନ୍ନ ସୁବିଧା ଦେବାପାଇଁ ଆମେ ସ୍ଥିର କଲେ । ଅବସର ଗ୍ରହଣ କଲେ ମଧ୍ୟ ସେ ସୁବିଧା ଅନେକ ଶିକ୍ଷକ ପାଉନାହାନ୍ତି । ପେନ୍‌ସନ୍, gratuity, ଯେଉଁ ହାରରେ ବଢ଼ିବ ବର୍ତ୍ତମାନ ପର୍ଯ୍ୟନ୍ତ ସ୍ଥିର ହୋଇନାହିଁ । ଆମେ ତାଙ୍କ ପାଇଁ ଅବସର ଗ୍ରହଣର ବୟସ 58 ବର୍ଷ କରିଦେଲେ । ତା'ପରେ ସେମାନେ ବଞ୍ଚିବେ କିପରି ? ବିଭିନ୍ନ ସୁବିଧା କେବଳ କାଗଜ କଲମରେ ନ ରଖି ବାସ୍ତବରେ ତୁରନ୍ତ କାର୍ଯ୍ୟକାରୀ କରିବା ଦରକାର ।

ବର୍ତ୍ତମାନ Secondary Educationକୁ ମୁଁ ଆସୁଛି । କୋଠାରୀ କମିଶନ ସୁପାରିଶ ଆମେ କାର୍ଯ୍ୟକାରୀ ନ କରିଥିବାରୁ ପ୍ରାଥମିକ ଶ୍ରେଣୀରେ ଆମେ ପରିବର୍ତ୍ତନ କରି-ପାରି ନାହୁଁ । ଫଳରେ Secondary Education Stageରେ ଆମ ମାତ୍ର କିଛି ପରିବର୍ତ୍ତନ ହୋଇନାହିଁ ।

ପ୍ରାଥମିକ school ଶିକ୍ଷକମାନଙ୍କ ସମ୍ପର୍କରେ ମୁଁ ଗୋଟିଏ କଥା କହିବି । ବର୍ତ୍ତମାନ ଏମାନେ କେତେକ B. D. O. ଓ Inspectorଙ୍କ ଦ୍ୱୈତ ଶାସନ ଅଧୀନରେ ଅଛନ୍ତି, ତାହା ନ କରି ଏମାନଙ୍କୁ ପୁରାପୁରି ସରକାରୀ ସ୍ତରକୁ ନିଆଯାଉ, ଏମାନେ ସରକାରୀ ଶିକ୍ଷକ ହୁଅନ୍ତୁ । ସରକାର ଏଗୁଡ଼ିକର management ଦାୟିତ୍ୱ ନିଅନ୍ତୁ, ବର୍ତ୍ତମାନ କେତେକ ଅଛି D.I., S.I.ଙ୍କୁ consult କରିବେ, S.I., B.D.O.ଙ୍କ ଅଧୀନକୁ ଅସିଲ ଏକ୍ତିଆରକୁ ହୁଏତ ପୁରାପୁରି ସରକାରଙ୍କ ଅଧୀନରେ ରଖାଯାଉ କିମ୍ବା ପୁରାପୁରି ବେସରକାରୀ ସଂସ୍ଥାକୁ ଦିଆଯାଉ । ଆମ ଅଞ୍ଚଳରେ ଜିଲ୍ଲା ପରିଷଦ High School ଗଢ଼ାଯାଉଛି, ମୋ ମତରେ ଯେହେତୁ ସରକାର ଶିକ୍ଷକମାନଙ୍କର ପୁରା ଦରମା ଦେଉଛନ୍ତି ଏବଂ ସେମାନଙ୍କର Service rules ପ୍ରସ୍ତୁତ କରୁଛନ୍ତି, ସେଥିପାଇଁ ସରକାର ପ୍ରାଥମିକ schoolଗୁଡ଼ିକୁ ପୁରାପୁରି ସ୍ୱତନ୍ତ୍ର ପରିଚାଳନା କରନ୍ତୁ, କାରଣ ଆମର ଯଦି ପ୍ରାଥମିକ ଶିକ୍ଷା ଦୁର୍ବଳ ହୋଇଯାଏ ତା' ସଙ୍ଗେ ସଙ୍ଗେ Secondary stage ଓ University stage ମଧ୍ୟ ଦୁର୍ବଳ ହୋଇଯିବ ।

Secondary stageରେ ମଧ୍ୟ ପରିବର୍ତ୍ତନ କରିବା ଦରକାର । ଏହି stageରେ ଗୋଟିଏ Board ଅଛି, ତା' ହେଉଛି Board of Secondary Education. ଶିକ୍ଷକ Association ବହୁବର୍ଷ ହେଲା ଦାବି କରୁଛି ଯେ ତାହା ଗୋଟିଏ ନିର୍ବାଚିତ Board ହେଉ, ଏଥିରେ ଶିକ୍ଷକମାନଙ୍କର ପ୍ରତିନିଧି ଓ ଅନ୍ୟାନ୍ୟ ନିର୍ବାଚିତ ପ୍ରତିନିଧି ରହନ୍ତୁ । କିନ୍ତୁ ତାହା ହେଲା ନାହିଁ । ଆଜି ଏ Board ସରକାରଙ୍କର ବୋଲକରା ଅନୁଷ୍ଠାନ ଭଳି ରହିଛି । ସେଥିରେ ଆମେ କ'ଣ ଆଶା କରିବୁ । ଯେ Board ଆଜି ଯେଉଁ ପରିସ୍ଥିତିରେ ଅଛି ସେଥିରେ ସେ ତାହାର କାର୍ଯ୍ୟ ତୁଲାଇପାରୁ ନାହିଁ । ସେଥିପାଇଁ ଉଚିତ ଏହାକୁ ଗୋଟିଏ Elected Boardରେ ପରିଣତ କରିବାକୁ ହେବ ଏବଂ ଶିକ୍ଷକ ପ୍ରତିନିଧି ଓ ଅନ୍ୟାନ୍ୟ ପ୍ରତିନିଧିଙ୍କୁ ସ୍ଥାନ ଦେବାକୁ ହେବ, ତା'ହେଲେ ଏ Boardରେ ଠିକ୍ ଭାବରେ କାର୍ଯ୍ୟ ଚାଲିବ ବୋଲି ମୁଁ ଆଶା କରିବି ।

ତା'ପରେ ଆପଣ ଦେଖନ୍ତୁ D.P.I. officeକୁ Cuttackରୁ Bhubaneswarକୁ ଆଣିଲେ କିନ୍ତୁ Board office କାହିଁକି Bhubaneswarକୁ ନ ଆସୁଛି, ମୁଁ ବୁଝି-ପାରୁନି, Boardର ନିଜ ଘର Cuttackରେ ନାହିଁ । 1953ରୁ ଆଜି ପର୍ଯ୍ୟନ୍ତ ଗୋଟିଏ

ପରେ ଭଡ଼ା ଦେଇ ରହୁଛନ୍ତି । D.P.I. happens to be the President of the Board. ସେ ପ୍ରଥମ Board office ଦେଖିବାପାଇଁ Bhubaneswarରୁ Cuttack ଯାଉଥିବେ କାହିଁକି ? ତେଣୁ Board officeକୁ Bhubaneswar ଆଣିବା ବିଷୟରେ ସରକାର ଚିନ୍ତା କରିବା ଉଚିତ ।

ଏହି Board ଅଧୀନରେ Cuttackରେ ଗୋଟିଏ High School ଚାଲିଛି, ସେତେବେଳେ ସମାଲୋଚନା ହୋଇଥିଲା ଯେ Cuttackରେ କାହିଁକି Board School ରହିବ । ପ୍ରତ୍ୟେକ districtରେ Boardର ସେହିଭଳି ଗୋଟିଏ ଗୋଟିଏ school ରହିବା ଦରକାର । ଯଦି Boardର finance ଅଛି, ତା'ହେଲେ ପ୍ରତ୍ୟେକ ଜିଲ୍ଲାରେ Board ପରିଚାଳିତ ଗୋଟିଏ ଗୋଟିଏ High School ରହୁ ।

ଆମର ପ୍ରସ୍ତାବ ଥିଲା ଯେ ଓଡ଼ିଶାରେ 4ଟି zone କରି ପରୀକ୍ଷା ଏବଂ ଅନ୍ୟାନ୍ୟ ବିଷୟ ପରିଚାଳନା କରିବାକୁ ହେବ । ତା'ହେଲେ ଆମେ ପରୀକ୍ଷା result ଶୀଘ୍ର ଘୋଷଣା କରିପାରିବୁ । ଅନ୍ୟାନ୍ୟ ଅସୁବିଧା ଯାହି ସେଇ ଏତେ ହେଉଛି ତାହା ହୁଅନ୍ତା ନାହିଁ । Headquarters Bhubaneswarରେ ରହିଲେ Cuttackରେ ଗୋଟିଏ zonal office ରହୁ, ସମ୍ବଲପୁର, ବ୍ରହ୍ମପୁର, କେନ୍ଦୁଝର ଓ ମୟୂରଭଞ୍ଜରେ ଏହିପରି ଭାବରେ zone କଲେ, ପରୀକ୍ଷା result ଆମେ ଅତି ଶୀଘ୍ର ଘୋଷଣା କରିପାରିବୁ । ଏଥିରେ ଅନ୍ୟାନ୍ୟ ସୁବିଧା ମଧ୍ୟ ହେବ, ମାତ୍ର ସେ କଥା ଆଜି ପର୍ଯ୍ୟନ୍ତ ହେଲା ନାହିଁ ।

ତା'ପରେ ଆପଣ ଦେଖିବେ Inspection ଏବଂ Administration ଏ ଦୁଇଟିକୁ ପ୍ରାଥମିକ stage ଠାରୁ ଆରମ୍ଭ କରି ପ୍ରତ୍ୟେକ stageରେ ଅଲଗା କରିବାକୁ ହେବ । ଜଣେ Inspector school inspection କରିବେ ଓ ସଙ୍ଗେ ସଙ୍ଗେ administration ଦେଖିବେ । ଏ ଦୁଇଟି ଏକାଠି ସମ୍ଭବ ହେଉନାହିଁ । ଏଥିପାଇଁ ଅଲଗା ଅଲଗା Inspector ରହିଲେ ଯେଉଁ Inspector inspection କରିବାକୁ ଯିବେ ସେ ତାଙ୍କର Inspection report ଦେଇ ପାରିବେ । ସେହି ଉପାଦେୟ Inspection report ଶିକ୍ଷକମାନଙ୍କ ପାଖକୁ ଯିବ ଏବଂ ସେମାନଙ୍କର ଯାହା ତ୍ରୁଟି ଅଛି ତାହା ଦୂର କରିବାକୁ ସେମାନେ ଚେଷ୍ଟା କରିବେ । ବର୍ତ୍ତମାନ Inspection report ଆଦୌ ଯାଉ ନାହିଁ । ଆମର ଦକ୍ଷିଣାଞ୍ଚଳରେ ଯେଉଁ Inspector ଅଛନ୍ତି ସେ ତ କୌଣସି school inspection କରନ୍ତି ନାହିଁ । Visiting a school is quite different from inspecting a school. ସେ ଖାଲି school visit କରନ୍ତି,

ସେଥିପାଇଁ 2ଜଣ Inspector ରଖିବା ଉଚିତ । ଏଇଟା ମୋର ନିଜ କଥା ନୁହେଁ, କୋଠାରି Commission reportରେ ମଧ୍ୟ ଏହି ମତ ସ୍ୱୀକୃତ ହୋଇଛି । ସରକାର ଏହାକୁ ମାନିନେଲେ ଆମର ବହୁତ ସୁବିଧା ହେବ ।

ବର୍ତ୍ତମାନ ଆମ ଦେଶରେ mode of examination change କରିବା କଥା । ମୁଁ ଚାହୁଁଛି ସରକାର ଏ ବିଷୟରେ ଗୋଟିଏ Seminar କରି ଶିକ୍ଷକମାନଙ୍କ ସହିତ ଆଲୋଚନା କରନ୍ତୁ । ମାସକୁ ମାସ classରେ ପିଲାମାନଙ୍କର attainment record ରଖାଯାଉ । ବର୍ତ୍ତମାନ ବର୍ଷ ଶେଷରେ 7/8 ଦିନ ପରୀକ୍ଷା ହେଉଛି, ସେଥିରେ copy ଓ ଅନ୍ୟାନ୍ୟ ଦୁର୍ନୀତି ହେଉଛି, ପିଲାଙ୍କର class ରେ attainment ପ୍ରତି ଦୃଷ୍ଟି ଦିଆଯାଉ ନାହିଁ । ବର୍ତ୍ତମାନ ବିଦେଶରେ ଏପରି ଭାବରେ ପରୀକ୍ଷା କରାଯାଉନାହିଁ । ସେଥିପାଇଁ ଆମେ ମଧ୍ୟ ସେହି ପ୍ରଥା ଅବଲମ୍ବନ କରିବା ଉଚିତ । ପିଲାମାନଙ୍କର attainment ର cumulative record କଡ଼ାକଡ଼ି ଭାବରେ ରଖାଯାଉ । ଆମେ system of examination change ନ କଲେ ବର୍ତ୍ତମାନର ଦୁର୍ନୀତିକୁ ବନ୍ଦ କରାଯାଇପାରିବ ନାହିଁ ।

ବର୍ତ୍ତମାନ Education Secretariat ସମ୍ପର୍କରେ ମୋର ଗୋଟିଏ କଥା କହିବାକୁ ଅଛି । Administrative Reforms Commission ର ଯେଉଁ report ଆସିଛି ତାକୁ ଆମେ ଅଧ୍ୟୟନ ନ କରି ବନ୍ଦ ବାକ୍ସ ରଖିଦେଇଛୁ । ତାକୁ ଅଧ୍ୟୟନ କରି କାର୍ଯ୍ୟକାରୀ କରାଗଲେ ଆମର administration ରେ ଯେଉଁ ଦୋଷତ୍ରୁଟି ରହିଛି ତାହା ଦୂର କରାଯାଇ ପାରନ୍ତା । ଆମର ଯେଉଁ Highly qualified technical persons Directorate ରେ ଅଛନ୍ତି ସେମାନଙ୍କୁ non-technical Secretariat men ନିୟନ୍ତ୍ରଣ କରୁଛନ୍ତି । Secretariat ରେ non-technical I. A. S. Officer ରହିବେ, ସେ Policy ନିର୍ଦ୍ଧାରଣ କରିବେ । Directorate ତା'କୁ କାର୍ଯ୍ୟକାରୀ କରିବେ, ଏ କି ଅସମ୍ଭବ କଥା । ମୁଁ ବୁଝିପାରୁନାହିଁ ଜଣେ ଅନଭିଜ୍ଞ non-technical person ଶିକ୍ଷା ସମ୍ପର୍କରେ ମନ୍ତ୍ରୀଙ୍କୁ ପରାମର୍ଶ ଦେବେ । ଶିକ୍ଷାନୀତି ସମ୍ପର୍କରେ ପରାମର୍ଶ ଦେବେ । Highly technical person ତାକୁ Directorate ରେ କାର୍ଯ୍ୟକାରୀ କରିବେ ଏଇଟା ବଡ଼ ଦୁଃଖଦାୟକ । ସେଥିପାଇଁ ଶିକ୍ଷା କ୍ଷେତ୍ରରେ ଏ ପରିବର୍ତ୍ତନଟା ଆରମ୍ଭ ହେଉ । ଆଜି Administrative

Reforms Commission ତାଙ୍କ report ରେ ସ୍ପଷ୍ଟଭାବରେ ଏ କଥା ଲେଖିଛନ୍ତି । University Education ସମ୍ପର୍କରେ ଦେଖନ୍ତୁ ଯେ ଆମର ଦୁଇଟି ନୂଆ ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର ଓ ସମ୍ବଲପୁର ବିଶ୍ୱବିଦ୍ୟାଳୟ ହେଲା । କିନ୍ତୁ ଏ ଦୁଇଟି ବିଶ୍ୱବିଦ୍ୟାଳୟର ଗୃହ ଓ campus ତିଆରି କରିବାପାଇଁ ଆମେ ଯେଉଁ ଟଙ୍କା ଦେବାର କଥା ତାହା ଦେଇପାରିଲୁ ନାହିଁ । ଯଦିଓ ପ୍ରଥମରୁ ଏହି ଦୁଇଟି ବିଶ୍ୱବିଦ୍ୟାଳୟ ଆରମ୍ଭ ହେବାବେଳେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଘୋଷଣା କରିଥିଲେ 1 କୋଟି 50 ଲକ୍ଷ କରି ପ୍ରତ୍ୟେକ ବିଶ୍ୱବିଦ୍ୟାଳୟ ପାଇବେ ସେ କଥା ତ ସରକାର ରକ୍ଷା କଲେ କିନ୍ତୁ ଏବେ ତା'ର campus ବଢାଇବାପାଇଁ ଯାହା ଅଧିକ ଟଙ୍କା ଦରକାର ସେ ଟଙ୍କା ନ ଦେଉଥିବାରୁ University ର growth ହୋଇପାରୁନାହିଁ । ତା'ପରେ ଆପଣ ଦେଖିବେ University ଶ୍ରେଣୀରେ ବହୁ କଲେଜରେ post ଖାଲି ପଡ଼ିଛି । ଏ post ଖାଲି ପଡ଼ିବା ଘୋର ଅଶାନ୍ତିର କାରଣ ହୋଇଛି । Post ଖାଲି ପଡ଼ିବା ସଙ୍ଗେ ସଙ୍ଗେ କାହିଁକି ପୂରଣ କରାଯାଇ ନ ଦିଏ ମୁଁ ବୁଝି ପାରୁନାହିଁ । ଅନୁଗୁଳ କଲେଜରେ Reader ନଥିବା ସଂକ୍ରାନ୍ତରେ hunger strike ହୋଇଥିଲା । ଏହି ଉଦାହରଣ ଭଳି କଥା । ଏପରି ବହୁ କଲେଜର report ଅଛି ଯେ post ସବୁ fill up ହୋଇପାରୁ-ନାହିଁ । ବିଶେଷକରି ଉତ୍ତରା କଲେଜରେ ଅନ୍ତତଃ Reader grade ରେ ଲୋକ ରହିବା ଦରକାର । ନୂଆ ନୂଆ subject ଯଥା —Applied Science, Marine Engineering, Industial Chemistry ଇତ୍ୟାଦି ଯେଉଁ ସବୁ ବିଷୟ ଅଛି ତାକୁ ଆମ କଲେଜରେ introduce କରାଯିବା ଉଚିତ । ସବୁଠାରେ ଖାଲି Physics, Chemistry, Mathemactics, History, Political Science, Oriya ଯେମିତି ପୂର୍ବରୁ ରହିଥିଲା ସେମିତି ରହିଛି । ଅନ୍ତତଃପକ୍ଷେ Nuclear Physics, Marine Engineering, Industrial Chemistry ଇତ୍ୟାଦି ନୂଆ ନୂଆ ବିଷୟ ଆମେ ଆମ courses of study ରେ introduce କରିବା ଦରକାର ଏବଂ post-graduate ସ୍ତରରେ ଯେଉଁ specialisation ରହୁଛି ତାକୁ କିପରି ଆହୁରି ଅଧିକ specialised କରିବା ସେ ଦିଗରେ ଟିକିଏ ଦୃଷ୍ଟି ଦେବା ଦରକାର । ମୁଁ ଜାଣେ ଆଜି research କରିବା ନାମରେ କେତେ Lecturer ଓ କେତେ Professor ଗୋଟିଏ କଲେଜରେ ରହିବାପାଇଁ ବାହାନା କରୁଛନ୍ତି । ମୁଁ ଜାଣିବାକୁ ଚାହେଁ ଏଠି ଯେଉଁ research ହେଉଛି ସେ research ର ଫଳାଫଳ କ'ଣ ହେଲା ।

ମୁଁ ଯେଉଁ Appllied Science କଥା କହୁଥିଲି ସେ science introduce କଲେ ଆମେ ଆମର research study କୁ ସାହାଯ୍ୟ ଦେଇ ପାରିବା ଏବଂ ଆମର ଯାହା କିଛି industry ଅଛି ଶିକ୍ଷା ସହିତ ଆମେ ତାହାର ସମ୍ପର୍କ ରକ୍ଷା କରିପାରିବା ଓ ଆମର research ଭଲଭାବରେ କରିପାରିବା । ତାହା ନ ହେଲେ ଗଡ଼ଲିକା ପ୍ରବାହରେ ଗୋଟିଏ University ରେ ଯେଉଁ course ଅଛି ଅନ୍ୟାନ୍ୟ University ରେ ଠିକ୍ ସେହି course ଚାଲିଛି । ରେଭେନ୍ସା କଲେଜକୁ ଗୋଟିଏ Autonomous College କରିବା କଥା । ତତ୍କାଳୀନ ଶିକ୍ଷାମନ୍ତ୍ରୀ ଘୋଷଣା କରିଥିଲେ । ମୁଁ ଆଶା କରୁଛି ବର୍ତ୍ତମାନ ଏ ଶିକ୍ଷାମନ୍ତ୍ରୀ ଓ ସରକାର ତାକୁ ଗୋଟିଏ ସ୍ୱୟଂକୃତ ଅନୁଷ୍ଠାନ କରିବାପାଇଁ ସମସ୍ତ ପ୍ରକାର ବ୍ୟବସ୍ଥା ଗ୍ରହଣ କରିବେ । ଯେହେତୁ ଭୁବନେଶ୍ୱର ଆମର ରାଜଧାନୀ ହେଲା ଏଠାରେ ଗୋଟିଏ National Laboratory ରହିବା ଦରକାର । ଗୋଟିଏ ସ୍ଥାନରେ ଯେପରି ସବୁ ପ୍ରକାର research କରିବାପାଇଁ ସମସ୍ତ ସୁବିଧା ରହିବ ସେ ସୁବିଧା ଦେବାପାଇଁ National Laboratory ଆମ ରାଜଧାନୀରେ ରହିବା ନିହାତି ଦରକାର ପଡ଼ୁଛି । ଆଉ ଗୋଟିଏ କଥା ବର୍ତ୍ତମାନରେ ଯାହା ଅସୁବିଧା ହେଉଛି ବିଶେଷକରି College class ରେ subjectwise promotion on seniority ହେଉଥିବାରୁ ଅସୁବିଧା ହେଉଛି । ମୁଁ ଚାହୁଁଛି cadrewise seniority ଯଦି ଦେଖା ଯାଆନ୍ତା ତା'ହେଲେ Lecturer, Professor ଙ୍କ ଭିତରେ ଯେଉଁ ଅସନ୍ତୋଷ ରହୁଛି ତାହା ନ ଥାନ୍ତା । Subjectwise seniority କରିବା ହେତୁ ପ୍ରକୃତରେ ଅସୁବିଧା ଉପୁଜୁଛି । କିନ୍ତୁ ହେଲାପରେ cadrewise seniority ପରେ ସେ ଅସୁବିଧା ରହନ୍ତା ନାହିଁ । ପ୍ରତ୍ୟେକ କଲେଜରେ ଜଣେ ଲେଖାଏ Principal ଅଛନ୍ତି । ଜଣେ ଲେଖାଏ Vice-Principal ମଧ୍ୟ ରହିବା ଦରକାର । Principal Academic side ଦେଖିବେ । Vice-Principal General Management side ଦେଖିବେ । ଯେହେତୁ ଜଣେ Principal both academic management ଦେଖିବା ହେତୁ ଉଭୟ ପ୍ରତି justice ଦେଇପାରୁ ନାହାନ୍ତି, ତେଣୁ ପ୍ରତ୍ୟେକ କଲେଜପାଇଁ Vice-Principal post ଆରମ୍ଭ କରିବା ଉଚିତ ବୋଲି ମୁଁ ଭାବୁଛି । ଏ କଥା ଆମେ ନିହାତି ପରୀକ୍ଷା କରିବା ଉଚିତ । ନୟାଗଡ଼ କଲେଜ ଓ ଆଉ କେତେକ କଲେଜ ସମ୍ପର୍କରେ ଯେଉଁ ଗଳଦ ପ୍ରକାଶ ପାଇଛି ଓ ଯେଉଁ audit report ହୋଇଛି ତା'କୁ ପ୍ରକାଶ କରାଯାଉନାହିଁ । ଗତ ବିଧାନ ସଭାରେ ମଧ୍ୟ ଏ ବିଷୟ ଉଠିଥିଲା ।Audit report ପ୍ରକାଶ କରିବାରେ କ'ଣ ଅସୁବିଧା ହେଉଛି

ମୁଁ ବୁଝିପାରୁନାହିଁ । Government ର କେତେ ଟଙ୍କା ନଷ୍ଟ ହୋଇଛି ତାହା ୪ଷ୍ଟବର୍ଷର audit report ରେ ଅଛି । ଶୁଣାଯାଉଛି ଯିଏ ସେକ୍ରେଟେରୀ ଥିଲେ ଓ ତତ୍କାଳୀନ ଯିଏ principal ଥିଲେ ସେମାନଙ୍କ ବିରୁଦ୍ଧରେ କେତେକ ଅଭିଯୋଗ ହୋଇଛି । ଏ ଅଭିଯୋଗ audit report ରେ ରହିଛି । ମୁଁ ଜାଣେ audit ସେ report ଦେବାର ମଧ୍ୟ ତାକୁ ଚାପିଦେବା ପାଇଁ audit ନ କରିବା ପାଇଁ, paper ପୋଡ଼ିଦେଲେ ଦେବାପାଇଁ ଉଦ୍ୟମ ହୋଇଥିଲା । କିନ୍ତୁ ଛାତ୍ରମାନଙ୍କ ଆନ୍ଦୋଳନ ଯୋଗୁଁ ଓ ସେମାନେ ସଚେତ ରହିବା ଯୋଗୁଁ ସେ କଥା ହୋଇପାରିଲା ନାହିଁ । ଆଜି audit report ଯାହା ଅଛି ତାହା କାହିଁକି ପ୍ରକାଶିତ ହେଉନାହିଁ ? ଯେଉଁମାନେ ଏଥିପାଇଁ ଦାୟୀ, ଯେଉଁମାନେ ଅର୍ଥ ଆତ୍ମସାତ୍ କରିଛନ୍ତି ସେମାନଙ୍କ ବିରୁଦ୍ଧରେ ଉପଯୁକ୍ତ କାର୍ଯ୍ୟାନୁଷ୍ଠାନ କାହିଁକି ନ ହେଉଛି ମୁଁ ବୁଝିପାରୁ ନାହିଁ । ଏପରି କଥା ମଧ୍ୟ ହୋଇଛି ଯେ ଜଣେ principal ଗଣ୍ଡଗୋଳରେ ତାଙ୍କର ଦୁର୍ନୀତିଗ୍ରସ୍ତ କାର୍ଯ୍ୟକୁ ଘୋଡ଼ାଇବାପାଇଁ ତାଙ୍କର ନିକଟତମ ଲୋକଙ୍କୁ Principal କରି ପୁଣି ସେଠାକୁ ପଠାଉଛନ୍ତି । ଯେପରି ସେ ସବୁ ଦୁର୍ନୀତି କଥା ପଦାକୁ ନ ଯିବ । ଠିକ୍ ସେହିପରି ଆମର ଶିକ୍ଷାମନ୍ତ୍ରୀଙ୍କ ଭାଇ ଯିଏ Inspector ଅଛନ୍ତି, ସେ ଯେତେବେଳେ ଟେଣ୍ଡର ପାଇଁ ଗଲେ ସେତେବେଳେ ଅନ୍ୟ କୌଣସି ଲୋକଙ୍କୁ ପଠା ନ ଯାଇ ଏପରିଭାବରେ private arrrangement ହେଲା ଯେ ସେ ଯାହା ଯାହା କରିଛନ୍ତି ତାହା ଚାପିଦେଲେ । ସେମିତି ଜଣେ ଯିଏ William Jones ସ୍କୁଲ ଥିଲେ Inspector ସେ ଅତି ଉଚ୍ଚକୋଟୀର Inspector, ସେ ଏ କାର୍ଯ୍ୟ କରିପାରିଛନ୍ତି ବୋଲି ତାଙ୍କୁ ଅନ୍ୟତ୍ର transfer କରିଗଲେ । ନୟାଗଡ଼ କଲେଜର ଯିଏ Principal ଥିଲେ ତାଙ୍କୁ ବାହାର କରିଦେଲେ ଓ ତାଙ୍କର ଜଣେ ଲୋକଙ୍କୁ ସେଠାକୁ Principal କରି ପଠାଇଲେ । Education Department ଅନ୍ତର୍ଭୁକ୍ତ ଏ ସବୁରୁ ଦୂରରେ ରହିବା ଉଚିତ୍ । କିନ୍ତୁ ଅନ୍ୟାନ୍ୟ ବିଭାଗରେ ଯେମିତି ହେଉଛି ଏହି ବିଭାଗରେ ମଧ୍ୟ ସେମିତି ହେଉଛି । ଅଧ୍ୟକ୍ଷ ମହୋଦୟ, Inspector ଙ୍କ ସମ୍ପର୍କରେ ଏତେ କଥା ରହିଛି ଯେ ଦିନ ଦିନ ଧରି କହିଲେ ମଧ୍ୟ ସେ ଅପୂର୍ଣ୍ଣ ରହିଯିବ । କିନ୍ତୁ ସବୁ ନ କହିଲେ ମଧ୍ୟ କେତେକ କଥା ମୁଁ ନ କହି ଏଠି ରହିପାରୁନାହିଁ ।

୪୦। Inspector ଅଫିସ୍‌ରୁ ଗୋଟିଏ ଆଦେଶ ଦେଉଛୁ ଏବଂ ସେ ଆଦେଶରେ ଅଛୁ—

Office of the Inspector of Schools, Ganjam-Phulbani Circle, Berhampur

Office Memo. No.

Under Article 398 of the Orissa Education Code the constitution of the Managing Committee of Jawhar High School, Badakodanda with the following office-bearers and members is hereby approved with effect from the 26th October 1971 on *ad hoc* basis :—

1. Shri A. K. Mohanty, District Inspector of Schools, Bhanjanagar, President
2. Shri B. Hari Krushna Patro, Secretary
3. Shri Bada Kasinath Prusty, Member
4. Shri Arjun Sahu, Member
5. Shri Bhimraju Prusty, Member
6. Headmaster, J. H. S., Badakodanda
7. Senior Assistant Teacher,Teacher Representative

Memo. No.

Copy to Shri Suba Rao Prusty, ex-Secretary for information and necessary action. He is requested to suggest four names in order to enable me to accommodate them in the newly formed Managing Committee of Jawhar High School at an early date in order to release the grant-in-aid in favour of the High School for smooth running of the School.

ତା'ପରେ ଗୋଟିଏ ଏପରି ଦିଆଗଲା Copy to Shri Suba Rao Prusty, ଯେ କି ଜଣେ ଭଲ କଂଗ୍ରେସର ଲୋକ ସେଠାକାର ex-Secretary ଥିଲେ ତାଙ୍କୁ copy ଦିଆଗଲେ for information and necessary action, after he left the management. He is requested to suggest four names in order to enable me to accommodate them in the newly formed Managing Committee.. ........Who is he to suggest four names when he is no more in the Managing Committee? ସେ ସେକ୍ରେଟେରୀ ନାହାନ୍ତି ତାଙ୍କୁ କୁହାଯାଉଛି ତାଙ୍କ 4ଟା ନାମ ପଠାଇବେ Managing Committee ପାଇଁ ହେବ ଏବଂ ତା'ପରେ ତାକୁ grant ଦିଆଯିବ । ଏ ଅସମ୍ଭବ ଆଦେଶ ସେ କେବଳ ଦେଇ ପାରନ୍ତି କେଉଁ ଦୃଷ୍ଟିରୁ ଦେଇଛନ୍ତି ମୁଁ ଜାଣିପାରୁ ନାହିଁ । Education Codeରେ କେଉଁଠି ନିୟମ ଅଛି ସେଇ ନିୟମ ଅନୁସାରେ ଜଣେ ex-Secretaryଙ୍କୁ 4ଟା ନାମ Suggestion କରିବାପାଇଁ କୁହାଯିବ । ମୁଁ ଆଗେ ଦୃଷ୍ଟିକୁ ଆଉ ଗୋଟିଏ କଥା ଆଣୁଛି । ସେଦିନ ଶିକ୍ଷା ମନ୍ତ୍ରୀ କହିଲେ ମୁଁ କୌଣସି ଗୋଟିଏ ସ୍କୁଲର Managing Committeeରେ ସମ୍ପୃକ୍ତ ଅଛି. ସେ Managing Committeeର ବହୁତ ଟଙ୍କା ସରକାରୀ ଭଣ୍ଡାରରୁ ଖର୍ଚ୍ଚ ହେଉଛି । ମୁଁ ଆପଣଙ୍କୁ ସ୍ପଷ୍ଟ କହିଦେବାକୁ ଚାହେଁ ମୁଁ ଏଭଳି କୌଣସି ସ୍କୁଲ ସହିତ ସମ୍ପୃକ୍ତ ନୁହେଁ । ସେ ସ୍କୁଲ ସେକ୍ରେଟେରୀମାନେ ମୋତେ ତାଙ୍କ ମ୍ୟାନେଜିଂ କମିଟିରେ ରହିବାକୁ କହିଲେ ମୁଁ ପରିଷ୍କାର ମନା କରିଦେଲି । ମୁଁ ବିଧାନସଭା କାର୍ଯ୍ୟରେ ବ୍ୟସ୍ତ । ମୋତେ ସମସ୍ତ ହେବନାହିଁ । ମୁଁ ହେଉପାରିବ ନାହିଁ କହିଲୁ ସେମାନେ ତା 16-3-1969 ମସିହାରେ ମ୍ୟାନେଜିଂ କମିଟିର ବୈଠକ ଡକାଇ resolution ପାସକଲେ ଓ ପରେ କହିଲେ ମ୍ୟାନେଜିଂ କମିଟିର ଥିବା ପ୍ରସ୍ତାବରେ ମୁଁ ରହିବ । ମୁଁ ସେମାନଙ୍କୁ ପରିଷ୍କାର ଭାବରେ ମନା କରିଦେଲି ମୁଁ ବିଧାନସଭା କାର୍ଯ୍ୟରେ ବ୍ୟସ୍ତ । ମୁଁ ସମୟ ଦେଇପାରିବ ନାହିଁ । ଦୁଇମାସ ପରେ ତା 11-5-1969 ରିଖରେ ସେମାନେ ଆଉ ଗୋଟିଏ ପ୍ରସ୍ତାବ ପାସ୍ କଲେ ଯେ ଶ୍ରୀ ବିନାୟକ ଆଚାର୍ଯ୍ୟ ବିଧାନସଭାର କାର୍ଯ୍ୟରେ ବ୍ୟସ୍ତଥିବା ଯୋଗୁଁ ସେ ସ୍କୁଲ ପରିଚାଳନା କମିଟିର ଦାୟିତ୍ୱ ଗ୍ରହଣ କରିପାରିବେ ନାହିଁ । ତେଣୁ ତାଙ୍କୁ ସଭ୍ୟ ପଦରୁ ଅବ୍ୟାହତି ଦିଆଗଲା । ତେଣୁ ମୁଁ କହୁଛି ଏଥିରୁ ପ୍ରକୃତ କଥା ଜଣାପଡ଼ିବ । ଅନ୍ୟ କୌଣସି ସ୍କୁଲର ମ୍ୟାନେଜିଂ କମିଟିରେ ମୁଁ ସଭ୍ୟ ନାହିଁ ବା କୌଣସି ସ୍କୁଲ ସହିତ ମୋର କୌଣସି ସମ୍ପର୍କ ନାହିଁ । ତେଣୁ ମୋର ଅନୁରୋଧ ମାନ୍ୟବର ଶିକ୍ଷା ମନ୍ତ୍ରୀ ମୋ ବକ୍ତୃତାରେ ଯାହା କହିଥିଲେ withdraw କରିନେବେ ।

ସେଦିନ ମୁଁ ଯେତେବେଳେ ଶିକ୍ଷା ମନ୍ତ୍ରୀଙ୍କ ଉତ୍ତର ଦେଉଥିଲି ସେତେବେଳେ ସେ ଗୃହରେ ନ ଥିଲେ । ଥିଲେ ମୋ replyରେ ସେ ସନ୍ତୁଷ୍ଟ ହୋଇଥାନ୍ତେ । ତା'ପରେ ବାଲିଗୁଡ଼ାର D. I. ଙ୍କୁ ଅନ୍ୟାୟ ଭାବରେ ସସ୍‌ପେଣ୍ଡ କରାଯାଇଛି । ତାଙ୍କ ବିରୁଦ୍ଧରେ Charge frame ହୋଇନାହିଁ । ରାଜ୍ୟସ୍ତରୀୟ ଭାବରେ ଶିକ୍ଷକମାନଙ୍କର ଏକ Co-ordination Committee ଅଛି । ସେ Co-ordination କମିଟିର branch ବ୍ରହ୍ମପୁର, ଭଞ୍ଜନଗର, ଆସ୍କା, ଚିକିଟି, ପାରଳାଖେମୁଣ୍ଡି ପ୍ରଭୃତି ଜାଗାରେ ଅଛି । ଜିଲ୍ଲାସ୍ତରୀୟ କମିଟିର ଏସବୁ ଜାଗାରେ branch ଅଛି, ସେଠି M. G. O. ତରଫରୁ ସଭା ହୋଇଥିଲା । ସେମାନେ ପ୍ରସ୍ତାବ ପାସ୍ କରିଥିଲେ ଅନ୍ୟାୟ ଭାବରେ, ଦଳୀୟସ୍ୱାର୍ଥ ଭାବରେ ଶିକ୍ଷକମାନଙ୍କୁ ବଦଳି କରାଯାଉଛି । ଗୁଣ୍ଡି ଦୋକାନ କରୁଥିବା ଯାହାମାନେ, କୁକୁଡ଼ା ଫାର୍ମ କରିବା ଯାହାମାନେ, ମଦ ଦୋକାନ କରିବା ଯାହାମାନେ ଶିକ୍ଷକମାନଙ୍କୁ ବଦଳି କରାଯାଉଛି । ଏହିପରି 640 ଜଣ ଶିକ୍ଷକଙ୍କୁ ଅନ୍ୟାୟଭାବେ ବଦଳି କରାଯାଇଛି । ମୁଁ ମନ୍ତ୍ରୀଙ୍କୁ ପଚାରିବାକୁ ଚାହେଁ ଏଇ 640 ଜଣ କ'ଣ ମଦ ଦୋକାନ କରୁଥିଲେ । ଶିକ୍ଷାଦାନ ଓ ଶିକ୍ଷକତା ଏକ ମହାନ ଦାୟିତ୍ୱ । ମଦ କାରବାର ଏକ ଅସାମାଜିକ କାମ । ଯଦି ଏ ଶିକ୍ଷକମାନେ ଅସାମାଜିକ କାମ କଲେ ସେମାନଙ୍କୁ ବଦଳି କାହିଁକି କରୁଛ । ସମାଜର ବୃତ୍ତିରୁ ବାହାର କରୁନାହାନ୍ତି କାହିଁକି ? Teachers Association ଏପରି ପ୍ରସ୍ତାବ ପାସ କରିଛନ୍ତି । Standing order ଅଛି ଆଞ୍ଚଳିକ ଓ ରାଜ୍ୟସ୍ତରରେ ଯେଉଁମାନେ Office-bearer ଥିବେ ସେମାନଙ୍କୁ ତିନି ବର୍ଷ ପର୍ଯ୍ୟନ୍ତ ବଦଳି କରାଯିବ ନାହିଁ । ଏଠି ତା ବିପରୀତ ହୋଇଛି । ମନ୍ତ୍ରୀ ମହାଶୟ ଆକଳ ପ୍ରକାଶ କରି କହନ୍ତି, ଶିକ୍ଷକମାନେ ଏପରି ରାଜନୀତିରେ ଅଛନ୍ତି ଯେ ସେମାନଙ୍କ କାମରେ ବ୍ୟାଘାତ ଦିଆଯାଉଛି । କିନ୍ତୁ ଅତି ଦୁଃଖର କଥା ଶହ ଶହ ଶିକ୍ଷକଙ୍କୁ ଏପରି ଅଯଥାରେ ବଦ୍‌ନାମ କରି ବଦଳି କରାଯାଉଛି । ମୁଁ କୌଣସି Officerଙ୍କ ବିରୁଦ୍ଧରେ କହୁନାହିଁ । ଶ୍ରୀ ହରିହର ମିଶ୍ର ଏକ ଆଦର୍ଶ ଶିକ୍ଷକ ଥିଲେ । ଶ୍ରୀ ରାଜକିଶୋର-ରାୟ ସେହିପରି ଜଣେ ଆଦର୍ଶ ଶିକ୍ଷକ । ସେମାନେ ଆମର ନମସ୍ୟ । ଆମେ ସେଦିନ ମୁଖ୍ୟମନ୍ତ୍ରୀଙ୍କ ସହିତ ଦୁଇ ଘଣ୍ଟା ପର୍ଯ୍ୟନ୍ତ ଆଲୋଚନା କଲୁ । ସେ କାହିଁକି ନିଜକୁ ଏପରି ଅସହାୟ ମନେ କରୁଛନ୍ତି ମୁଁ ବୁଝିପାରୁ ନାହିଁ । ସେ ହେଉଛନ୍ତି ମନ୍ତ୍ରୀମଣ୍ଡଳର ମୁଖ୍ୟ । ସେ ନିଜେ ଆଦେଶ ଦେଲେ ହେବ । ମୁଁ ତାଙ୍କୁ ଅନୁରୋଧ କରୁଛି ଏ ବିଷୟରେ ଏକ ଜୁଡିସିଆଲ ଇନ୍‌କ୍ୱାରି ହେବାପାଇଁ order ଦିଅନ୍ତୁ । ଏ ଅଫିସର କାହିଁକି ସସ୍‌ପେଣ୍ଡ ହୋଇଛନ୍ତି ତା ଇନକ୍ୱାରି କଲେ ବୁଝିବେ । ଏହାଭିତରେ ବହୁ ରାଜନୀତିକ ରହସ୍ୟ ରହିଛି । ବହୁ ସତ କଥା ଏଥିରୁ ବାହାରିବ ।

## ହୁଗୁପୁର ମେଡ଼ିକାଲ କଲେଜ ସମ୍ପର୍କରେ

(28-3-1972)

ମୁଁ ଅନୁରୋଧ କରିବି ଯେ, ଦାବି ଆଜି ଆପଣ ଏ ସମସ୍ତ କଟମୋଶନ ଉପରେ ଗୋଚ୍ଚ କରନ୍ତୁ । ଏ ସ୍ୱାସ୍ଥ୍ୟ ବିଭାଗ ଉପରେ ଯେଉଁସବୁ କାଟମୋସନ ଆସିଛି, ସେ କାଟମୋସନ ଗୁଡ଼ିକୁ ମୁଁ ସମର୍ଥନ କରୁଛି । ଆଜି ଓଡ଼ିଶାର ସ୍ୱାସ୍ଥ୍ୟ ବିଭାଗରେ ମନ୍ତ୍ରୀଙ୍କଠାରୁ ଆରମ୍ଭକରି Director, Secretary ଏବଂ Dy. Secretary ପର୍ଯ୍ୟନ୍ତ ଏମାନେ ସମସ୍ତେ ଅଯୋଗ୍ୟ ହୋଇଛନ୍ତି ଏବଂ ଏମାନଙ୍କର କଥା ଆଜି ଦାଣ୍ଡରେ ଘଣ୍ଟ ବାଡ଼େଇ ଗାଉଛନ୍ତି । ଆପଣ ଯେଉଁଠିକି ଯାଆନ୍ତୁ ଆପଣ ଦେଖିବେ *ad hoc* appointment, Director of Health appointmentକୁ ମଧ୍ୟ 3 ମାସ ହେଲା ଚାକିରିରେ ରଖାଇଲେ ଏପରି ଅସ୍ପଷ୍ଟ ହେଉଛି । ଏ *ad hoc* appointmentର ଅର୍ଥ କ'ଣ ମୁଁ ଜାଣିପାରୁନାହିଁ । 36 ଜଣ ଡାକ୍ତରଙ୍କୁ *ad hoc* appointment ଦିଆଗଲା । ସେମାନଙ୍କର ସ୍ଥାୟିତ୍ୱ ଆସିପାରୁ ନାହିଁ । ଯେକୌଣସି ମୁହୂର୍ତ୍ତରେ ସେମାନଙ୍କୁ ବିଦାୟ ଦେବାକୁ ପଡ଼ିବ । ପ୍ରଥମରୁ ସ୍ୱାସ୍ଥ୍ୟମନ୍ତ୍ରୀ କହିଥିଲେ ଯେ, ଆମେ କେବଳ 70 ଜଣଙ୍କୁ ନେବୁ । ସେତେବେଳେ 270 Vacancy ଥିଲା । ଆଉ 200 କ'ଣ ହେବ ? ସେ 200 *ad hoc* appointment ହେବାର ଥିଲା, ଯାହାହେଉ ତାହା P. S. C.କୁ ଗଲା ଏବଂ P. S. C. ତାକୁ ମଞ୍ଜୁର କରିବ । ତେଣୁ ଏମାନଙ୍କ ହାତରେ ମାତ୍ର ରହୁଛି । ବର୍ତ୍ତମାନ 130 Post *ad hoc* appointment ବାକି ଅଛି । ଏଗୁଡ଼ିକ କାହିଁକି *ad hoc* appointment ହେବ । D. M. S. M. ଡାକ୍ତରମାନେ ମଫସଲ ଯାଇବାକୁ ଯାଉଥିଲେ । ଦୁଃଖର କଥା ଯେ, dispensary-ମାନଙ୍କରେ 7/8 ମାସ ହେବ post fill up ନ ହୋଇ ରହିଛି । ଆଜି କୁହାଯାଉଛି *ad hoc* appointment ହେବ । Why should there be *ad hoc* appointment ? ବର୍ତ୍ତମାନ ସାଧାରଣ ଜନତା appointment ସମ୍ପର୍କରେ କ'ଣ କହୁଛନ୍ତି ତାହା ମନ୍ତ୍ରୀଙ୍କର ଜାଣିବା ଦରକାର । କେତେକେ Assistant Professor ଭିନ୍ନ Medical Collegeରେ ଏପରି *ad hoc* appointmentରେ ଅଛନ୍ତି ତାହା ମନ୍ତ୍ରୀ ମହାଶୟ କହିବେ । ଏମାନଙ୍କର ଏପରି ଦୁରବସ୍ଥା ହୋଇଛି ଯେ ସେମାନେ 6 ମାସ ହେଲା ଦରମା ପାଇନାହାନ୍ତି । ମୁଁ ଶୁଣିବାକୁ ପାଇଲି ଯେ Cuttackର ଏଭଳି ଜଣେ ଡାକ୍ତର ଖାଇବାକୁ ମଧ୍ୟ ପାଇଲେ ନାହିଁ । ନିଜର କୁଟୁମ୍ବ ପରିପୋଷଣ କରିପାରିଲେ ନାହିଁ । ମନ୍ତ୍ରୀ ମହାଶୟ ଏ ବିଷୟରେ ଯଦି ଧ୍ୟାନ ନ ଦେବେ ଏସବୁ କିଛି ହୋଇ ପାରିବନି । ମୁଁ ଏଠାରେ ଏକ କାହାଣୀ ରଖିବି Tarpaulin କଣା ହେଲା

ବିଷୟ ବୁଝିପାରୁନାହିଁ । ଜନସାଧାରଣ ଗୋଟିଏ ବିଷୟ ଜାଣିବାକୁ ଚାହୁଁଛନ୍ତି ମୁଁ ତାହା ଗୋଟିଏ ସ୍ଥାନରୁ ଶୁଣିଲି । ମୁଁ ସେହି ବିଷୟ କହୁଛି । ତାହା ହେଉଛି ବାତ୍ୟା, ବନ୍ୟା ପରେ ପ୍ରାୟ 8 ଲକ୍ଷ ଟଙ୍କାର ଔଷଧ କିଣିବାକୁ ମନ୍ତ୍ରୀ ମହାଶୟ କଲିକତା ଯାଇଥିଲେ । If that is a fact, I cannot understand what made the Minister go there. I stand for correction.

I said I stand for correction. ମନ୍ତ୍ରୀ କହେ ଯାଇଥିଲେ ବୋଲି କୁହାଯାଉଛି । ସେଥିପାଇଁ ସେ ମନା କରୁଛନ୍ତି, ସେ ସମ୍ପର୍କରେ କେବଳ ଗୋଟିଏ କଥା ଅଛି । ବିନା quotation ରେ ଆଣି ଗୋଟିଏ firmକୁ 8 ଲକ୍ଷ ଟଙ୍କାର ଔଷଧ କିଣିବାକୁ order ଦିଆଯାଇଥିଲା ।

ମୁଁ ଆମର ବ୍ରହ୍ମପୁର Medical Collegeର ଉଦାହରଣ ଦେଉଛି । ଆପଣ ଦେଖିବେ ସେଠି କେତେ Medical Collegeରେ କେତେ Post ଖାଲି ରହୁଛି । ଏପରି ଅନ୍ୟାନ୍ୟ Medical Collegeରେ କେତେ Post ଖାଲିଥିବ । ବ୍ରହ୍ମପୁର Medical Collegeର Class I vacancy 14, Class II vacancy 13, Class III vacancy 8 ଏବଂ Class IV vacancy 2. ତେବେ କେତେଦିନ ହେଲା ଏ vacancy fill up ହୋଇପାରୁନାହିଁ । ଯେଉଁମାନେ retire କରିବେ, ସେମାନଙ୍କ Post vacant ହେବ । ଏହାପରେ ଯେଉଁ postଗୁଡ଼ିକ vacant ହେବ, ତାହା 6 ମାସ ବର୍ଷ ଆଗରୁ ଜଣାପଡ଼ିବା କଥା । Assistant Professorମାନଙ୍କୁ କେବଳ ଭାବରେ *ad hoc* ନିଯୁକ୍ତ ଦେଇ ଶେଷରେ ତାଙ୍କୁ ହଇରାଣ କରିବା ଅନୁଚିତ । ଗୋଟିଏ Collegeରେ ଯଦି ଏତିକି କେତେଗୁଡ଼ିଏ vacancy ରହେ, ତାହେଲେ ସେ Collegeର ପାଠପଢ଼ା କ'ଣ ହେଉଥିବ ଓ Medical Collegeର ଯେଉଁ Attached Hospital ଅଛି, ସେଥିରେ କିଭଳି ଚିକିତ୍ସା ହେଉଥିବ ଆପଣ ତାହା ବେଶ୍ ଅନୁମାନ କରିପାରିବେ ।

ଆଉ ଗୋଟିଏ କଥା ହେଉଛି ପ୍ରତିବର୍ଷ Grant ଇତ୍ୟାଦି ସେ କଲେଜମାନଙ୍କୁ ଦିଆଯାଉଛି । ଏ ବିଷୟରେ କ'ଣ ହେଉଛି ଆପଣ ଶୁଣିଲେ ଆଶ୍ଚର୍ଯ୍ୟ ହେବେ । ଯେଉଁଠି Miscellaneous Contingency ପାଇଁ ନବେ ହଜାର ଟଙ୍କା ମଗା ହୋଇଥିଲା ସେଠି ଦିଆହେଉଛି 48 ହଜାର । ଯେଉଁଠି Electric Charges 50 ହଜାର ଟଙ୍କା ମଗାଯାଇଥିଲା ସେଠି ଦିଆହେଉଛି 35 ହଜାର । କେଉଁ Basisରେ ଏହା ଦିଆହେଉଛି

କରୁ ବୁଝିହେଉନାହିଁ । ଏଠି କ'ଣ Business ଚାଲିଛି, ହଗ୍‌ଲି ଚାଲିଛି, ପଚିଶହଜାର ମାଗିବା ଜାଗାରେ 35 ହଜାର ଏମାନେ ଦେଉଛନ୍ତି କପର ? ସେହିପରି ଦେଖିବେ Water tax ବାକିପଡ଼ିଛି ଏକଲକ୍ଷ ତେଇଶହଜାର । But you are giving thirty thousand on the otherhand. You are asking water charges. ଆଜିପର୍ଯ୍ୟନ୍ତ କାହିଁକି ଦିଆଯାଉନାହିଁ ? You still put this question to the Principals of the Medical Colleges, Berhampur and Cuttack S.C.B. Medical College, କଟକ ମେଡିକାଲ କଲେଜର ୩,୫ ଲକ୍ଷ ଟଙ୍କା Water Supply ବାବଦର ବାକି ଅଛି । ତା'ପରେ ଦେଖନ୍ତୁ Books and Periodicals ପାଇଁ ମଞ୍ଜୁର ହୋଇଥିଲା 28 ହଜାର ଟଙ୍କା । Post-Graduate ଶ୍ରେଣୀ କରାଯାଉଛି, M. B., B. S. ପଢ଼ୁଥିବା ପିଲାମାନେ ବହିପତ୍ର ପାଇ ପଢ଼ୁଛନ୍ତି । କିନ୍ତୁ ତାଙ୍କୁ ଦିଆଯାଉଛି ତିନିହଜାର ଦୁଇଶହ ଟଙ୍କା । ସେହିପରି teaching meterials କିଣିବା ପାଇଁ ଦଶହଜାର ଟଙ୍କା ମଞ୍ଜୁର ହୋଇଥିଲା, କିନ୍ତୁ ସେଥିପାଇଁ କିଛି ଦିଆଯାଉ ନାହିଁ । ଏପରିକି ପଢ଼ା କେମିତି ହେବ, Teaching କେମିତି ହେବ ତାହା ବିଚାର କରିବା କଥା । ବହି ଅଭାବରେ ପିଲା ଜ୍ଞାନର ବିକାଶ ହେବ ; ବହି ଅଭାବରେ କିପରି ସେମାନଙ୍କର ଜ୍ଞାନର ବିକାଶ ହେବ ମୁଁ ତ ତାହା ଜାଣିପାରୁନାହିଁ ।

ଆଉ ଗୋଟିଏ କଥା ଆପଣ ଦେଖିବେ ତାହା ହେଉଛି ବ୍ରିଟିଶ୍ କାଉନ୍‌ସିଲ ଭଲେଣ୍ଟାରି ସର୍ଭିସ । ଏମାନେ ଦୁଇଟି କଥାରେ ସୁବିଧା ଦେବାକୁ କହିଲେ । ଗୋଟିଏ ହେଉଛି Servicing and Maintenance of Sophisticated Medical apparatus. ସେମାନେ free service ଦେବାକୁ ଚାହିଁଲେ, କିନ୍ତୁ ଯନ୍ତ୍ରପାତି ମରାମତି କରିବାପାଇଁ ବ୍ୟବସ୍ଥା କରିବାକୁ କହିଲେ । ତା' ପରେ Medical Laboratory ହେଉଛି ଗୋଟିଏ ପ୍ରଧାନ କଥା । ସେମାନେ ଅନ୍ୟକାମ କରିବାକୁ ପ୍ରସ୍ତୁତ । ଆମେ ତାଙ୍କ ପାଇଁ ବାସଗୃହ ଦେବାକଥା । ସେମାନେ voluntary service ଦେବେ, S.C.B.Medical Collegeର ଏହା ହେବ । କିନ୍ତୁ ତା'ର ସୁବିଧା ଆଜିପର୍ଯ୍ୟନ୍ତ କରାଯାଇପାରିନାହିଁ । ସେମାନେ ବାରମ୍ବାର ଏଥିପାଇଁ ଧରୁଛନ୍ତି । ସେମାନଙ୍କ ଖାଦ୍ୟ ଓ maintenance ବାବଦରେ କିଛି ଟଙ୍କା ଦେବାକୁ ହେବ । ତା'ବଦଳରେ ସେମାନେ ଅନ୍ୟକାମ କରିବାକୁ ପ୍ରସ୍ତୁତ ଅଛନ୍ତି । ସେ ବାରମ୍ବାର Principalଙ୍କୁ ପଚାରୁଛନ୍ତି, କିନ୍ତୁ ସେ କୌଣସି ଜବାବ ଦେଉନାହାନ୍ତି ।

ଆପଣ ସେହିକଥା Free Service offer ଅସୁବିଧା ନାହିଁ ଆମେ କେମିତି ତା'ର ସୁଯୋଗ ନେବାପାଇଁ ପ୍ରସ୍ତୁତ ନୋହୁଁ ।

ଅଧ୍ୟକ୍ଷ ମହୋଦୟ, transfer list କଥା ହେଉଛି । ଏହା ଗୋଟିଏ Ridiculous କଥା । ବଡ ବଡ ଲମ୍ବା list transferପାଇଁ ତିଆରି ହେଉଛି, କୁହାଯାଉଛି ଏହି ଅନୁସାରେ transfer ହେବ । ବିଶେଷକରି Health ଓ Education ଏହି ଦୁଇଟା ବିଭାଗର ଲମ୍ବା transfer list ତିଆରି ହୋଇଯାଉଛି । ତା'ପରେ କ'ଣ ହେଉଛି କେଜାଣି ସେଥିରୁ one-third transfer ହେଉଛନ୍ତି, ବାକି two-third cancel ହେଉଛି । What is this fun? ଏହାର ପଦ ହେଉଥାଏ, ତାକୁ check କରିବା ଦରକାର । ଏଥିଦ୍ୱାରା Departmentର prestige ଯାଉଛି, ସରକାରଙ୍କର prestige ଯାଉଛି, ମନ୍ତ୍ରୀଙ୍କର prestige ଯାଉଛି । ସେଥିପାଇଁ ଦୋଷ ଲଦିବା କଥା, ଏହାର ହେବାଟାକୁ ବନ୍ଦ କରିବା ଦରକାର । ଆପଣ ଦେଖିବେ vacancy ଭିତରେ C.D.M.O. transfer ହେଉଛନ୍ତି । ସେମାନେ ଅଭିଜ୍ଞ ଲୋକଙ୍କୁ transfer ହେଉଛନ୍ତି, କିନ୍ତୁ ସେମାନଙ୍କ ପାଇଁ କୌଣସି ଖାଲି ସ୍ଥାନ ନାହିଁ । କାରଣ କିଏ ରହିବେ ଅନ୍ୟ ସେଠାରୁ ଛାଡ଼ିକରି ଯିବାକୁ ନ ଚାହେଁ । ସେଥି ନେଇ ବହୁତ ଅସୁବିଧା ହେଉଛି ।

ମୁଁ ଆଉ ଗୋଟିଏ କଥା ଆପଣଙ୍କ ଦୃଷ୍ଟିକୁ ଆଣିବି । ଆମ ବ୍ରହ୍ମପୁର ମେଡ଼ିକାଲ କଲେଜର ଡାକ୍ତର ଛାତ୍ରମାନେ ଦିଗପହଣ୍ଡିକୁ ଯାଆନ୍ତି । ସେଠାରେ ଗୋଟିଏ Rural Health Centre ଅଛି । ଏହି Rural Health Centreର ଘର ତିଆରିପାଇଁ ଗତ ବଜେଟରେ ଟଙ୍କା ବ୍ୟବସ୍ଥା କରାଯାଇଥିଲା, କିନ୍ତୁ ସେ ଟଙ୍କାରେ building ହୋଇପାରିନାହିଁ । ଅନ୍ୟାନ୍ୟ equipment ଯାହା ଦିଆଯିବା କଥା ତାହା ମଧ୍ୟ ଯାଇପାରି ନାହିଁ । କିନ୍ତୁ ମନ୍ତ୍ରୀ ତାଙ୍କ ନିଜ Constituencyରେ ଗୋଟିଏ 20 ବେଡ୍ ଥିବା ହସ୍ପିଟାଲ କରିଛନ୍ତି । ସେଇଠାକୁ ଟଙ୍କା ଯାଉ ନେଇ ହେବା କଥା ତାହା ତ କରିଗଲେ ନାହିଁ ସେ ଟଙ୍କା ଆଣି ସେ ଗୋଟିଏ 20-bedded Hospital ତାଙ୍କ ନିର୍ବାଚନମଣ୍ଡଳୀରେ କରିଗଲେ । ତୁମେ ଗୋଟିଏ bedded କ'ଣ ଗୋଟିଏ 200-bedded-Hospital କର, ଆମର ଆପତ୍ତି ନାହିଁ । କିନ୍ତୁ ଅନ୍ୟ କାର୍ଯ୍ୟପାଇଁ ଥିବା ଟଙ୍କାକୁ ଆଣି ନିଜ Constituencyରେ ଗୋଟିଏ Hospital କରିବା ଉଚିତ ନୁହେଁ । 'ଦିଗପହଣ୍ଡି'ରେ Rural Health Centreପାଇଁ ଯେଉଁ ଟଙ୍କା ଥିଲା ତାହା କାହିଁକି

ଖର୍ଚ୍ଚ କରାଗଲା ନାହିଁ ? Medical ପିଲାମାନେ ଏଥିପାଇଁ suffer କରୁଛନ୍ତି । ସେମାନେ ଡାକ୍ତରଖାନାରେ traning ପାଇଁ experience ହେବା କଥା ତାହା ତ ପୂର୍ଣ୍ଣ ବୁଝିବା ଦରକାର । କେତେ ତାହା ଜାହିଁଜ ନ ହେଉଛି ମୁଁ ଜାଣିବାକୁ ଚାହେଁ ।

ତା' ପରେ ଗତଥର ମନ୍ତ୍ରୀ ମହୋଦୟ ଏହି ବିଧାନ ସଭାରେ କହିଥିଲେ ଯେ ଏଥର ଦଶଗୁଣ ଔଷଧ ଯିବ । ପ୍ରତ୍ୟେକ Hospital ଓ Dispensaryକୁ ଦଶଗୁଣ ଔଷଧ ଯୋଗାଇ ଦିଆଯିବ ବୋଲି ସେ ଘୋଷଣା କରିଥିଲେ । ମୁଁ ସେ ବିଷୟ Clarification ପାଇଁ ପଚାରିଥିଲି ଯେ Primary Health Centre ମାନଙ୍କୁ ଓ interior villege ମାନଙ୍କରେ ଥିବା Medical-Aid-Centre ମାନଙ୍କୁ ଏ ଦଶଗୁଣ ଔଷଧ ଯୋଗାଇ ଦିଆଯିବ କି ନାହିଁ । ତା'ର ଉତ୍ତରରେ ମନ୍ତ୍ରୀ କହିଲେ ଯେ ସମସ୍ତେ ଏ ଦଶଗୁଣ ଔଷଧ ପାଇବେ । କିନ୍ତୁ ପ୍ରକୃତରେ ଅବସ୍ଥା କ'ଣ ହେଉଛି ତାହା ଆପଣ ନଜର କରନ୍ତୁ । ମୁଁ ଆଜି Medical College Hospital କଥା କହୁଛି । ଦୁଇଟି B.Complex ବଟିକା ଯାହାର cost କି 20ପଇସା ହେବ ତାକୁ out-doorରେ ରୋଗୀଙ୍କୁ ଦିଆଯାଉଛି । କେହି ରୋଗୀ 75 ପଇସା ବଜାରରୁ ଖର୍ଚ୍ଚ କରି ଔଷଧ ଆଣି ଆସୁଛି, ଅନ୍ୟାନ୍ୟ ଯେଉଁ ଔଷଧ ଦରକାର ତାହା ଡାକ୍ତରଖାନାରେ ନାହିଁ ବୋଲି କୁହାଯାଉଛି । ଏ Hospital କ'ଣ ଗରିବ ଲୋକଙ୍କପାଇଁ ଅଛି ? ସାଧାରଣ ଗରିବ ଲୋକ ଯେଉଁ ଔଷଧ ଚାହୁଁଛନ୍ତି ତାହା ଡାକ୍ତରଖାନାରେ ମିଳୁନାହିଁ । ମନ୍ତ୍ରୀ ଓ ତାଙ୍କର ବଡ଼ ବଡ଼ ଅଫିସରମାନେ କ'ଣ କହିବେ ଯେ all these hospitals and dispensaries are meant for the poor.How are the poors being benefited by these institutions ?

ଆଜି ଗୋଟିଏ କଥା ଶୁଣୁଛୁ ଗୋଟିଏ ଯୋଜନା ହେଉଛି ଯେ Medicines ଓ Medical appliances ପାଇଁ ଗୋଟିଏ Central Store କରାଯିବ ଓ ସେଠାରୁ ବିଭିନ୍ନ ଜାଗାକୁ ପଠାଯିବ । You find the same thing in the Education Department for the purchase of books and other things. There will be a central place ସେଠାରୁ ବିଭିନ୍ନ ଜାଗାକୁ ପଠାଯିବ । ଏମ T.R.W. ବିଭାଗ ମଧ୍ୟ has taken the same stand. There will be central purchase to send the books, etc.,

to different places. ମୁଁ ତ କହୁଛି ସରକାର ଏହାକୁ finalise ନ କରନ୍ତୁ । ଏହାକୁ ବନ୍ଦ କରିବା ଦରକାର ।

ମୋର ଶେଷକଥା ହେଉଛି ଜଣେ ମାନ୍ୟବର ସଭ୍ୟ ଯାହା କହିଲେ ଆୟୁର୍ବେଦିକ ଓ Homoeopathic Dispensary ଯେଉଁ ଯେଉଁ ଜାଗାରେ ହୋଇଯାଉଛି ତା'ର ତାଲିକା ହୋଇଯାଉ । ଯଦି ଏଥିରେ କୌଣସି ମନୋଭାବ ରହିଯାଏ, ତାହାହେଲେ ତା'ର ପରିଣତି ଭଲ ନ ହେବ । ତାହାଙ୍କ ନା କେବଳ ଆପଣଙ୍କ ଅଞ୍ଚଳରେ ତ ରୋଗୀ ନାହାନ୍ତି, ଅନ୍ୟାନ୍ୟ ଅଞ୍ଚଳରେ ମଧ୍ୟ ଆପଣଙ୍କ ଅଞ୍ଚଳପରି ରୋଗୀ ଅଛନ୍ତି, ତେଣୁ ସର୍ବସାଧାରଣ ରୋଗୀ କଷ୍ଟ ପାଇବେ । ତେଣୁ ଏଥିରେ ଦଳୀୟ ମନୋଭାବର କିଛି କରିଯିବା ଉଚିତ ନୁହେଁ । ସେଥିପାଇଁ ମୁଁ କହୁଛି, ଏଇ ବିଷୟରେ for God's sake do not keep that. ଏହି ବିଷୟରୁ partisan attitude ଦୂର କରନ୍ତୁ । କାରଣ ମୁଁ ଶୁଣିବାକୁ ପାଇଲି deserving places କବିରାଜ ଓ ହୋମିଓପାଥି Dispensary ପାଉ ନାହାନ୍ତି । ଏହି ଅବସ୍ଥାରେ ମନ୍ତ୍ରୀ ମହୋଦୟ ସେହି ଦରକାରୀ ସ୍ଥାନମାନଙ୍କରେ dispensary ଦେବାର ଉଦ୍ୟମ କରନ୍ତୁ । ଶେଷକଥା ହେଉଛି Homoeopathic College faculty । ସେହି ବିଷୟରେ ଆମ ମନ୍ତ୍ରୀ ମହୋଦୟଙ୍କୁ କହୁଥିଲି, ସେଠାର ପିଲାମାନେ First Year ପାସ୍ କରି Second Yearରେ ପଢିଲେ । ବର୍ତ୍ତମାନ Third Year pass କରିଛନ୍ତି । But there is no examination for the 2nd Year. Now the Principal is asked to certify that, they have passed the 2nd Year College Examination in order to qualify themselves to get some scholarships. There was some difficulty in 1st Year, which we know. କିନ୍ତୁ Second Year ଆସିଲାବେଳକୁ faculty create କରି ପରୀକ୍ଷା ହେବା କଥା । ଆଗେ ବର୍ତ୍ତମାନ principle ପଚାରୁଛନ୍ତି, ପିଲା ପରୀକ୍ଷା ଦେଇ ନ ଥିଲେ ମଧ୍ୟ ତାଙ୍କୁ certificate ଦିଆଯାଉ—So that they will get scholarship— ଏକଥା ମନ୍ତ୍ରୀ ମହୋଦୟ ବୁଝିବେ ।

## ବଣ୍ଟୀକର

(1-7-1968)

Select କମିଟି report ଯେଉଁ ଆକାରରେ ଆସିଛି ତାକୁ ପୁଣି ଜନମତପାଇଁ ପଠାଇବା ଲାଗି ଯେଉଁ ପ୍ରସ୍ତାବ ଆସିଛି, ମୁଁ ତାକୁ ସମର୍ଥନ କରୁଛି । 15 ହଜାର gross turnoverକୁ ବଢାଇ 20 ହଜାର କରିଦେଲେ ତାହା ଅନେକଷ୍ଟ ହେବନାହିଁ ବୋଲି ବହୁ ମାନ୍ୟବର ସଭ୍ୟ କହିଗଲେଣି । ଆଉ ହେଉଛି 50 ହଜାର gross turnover ର ସୀମାରେଖା । 20 ହଜାର କଲେ ଆପଣ ଦେଖିବେ ଦୈନିକ ସେ 54 ଟଙ୍କାର କାମ କରିବ ତାକୁ registration କରିବାକୁ ହେବ । ସେଥିପାଇଁ ଛୋଟ ଛୋଟ ବ୍ରେଡିଂର retailerମାନେ ଲାଭବାନ ହେବେ ନାହିଁ । ଯେଉଁ ଲୋକମାନଙ୍କୁ Sales Tax ଦାୟରୁ ସରକାର ରକ୍ଷା କରିବାକୁ ଚାହାନ୍ତି ତା'ହେଲେ gross turnover 50 ହଜାର ଟଙ୍କା କରାଯାଉ । ସରକାର ଯୁକ୍ତି କହିବେ 50 ହଜାର କରିଦେଲେ Sales Tax ବର୍ତ୍ତମାନ ଯାହା ଆଦାୟ ହେଉଛି ତା'ଠାରୁ କମ ଆଦାୟ ହେବ । ସେଥିପାଇଁ ଅନ୍ୟ ଯେଉଁ ବ୍ୟବସ୍ଥା ଅଛି ସେ କଥା ସମାନ୍ତ ତର୍କ୍‌ ଉଠାଇପାରିବ ନାହିଁ । ଭୁବନେଶ୍ୱରରେ ବ୍ୟବସାୟୀମାନଙ୍କର ଯେଉଁ ସଭା ହୋଇଥିଲା ସେଥିରେ ବହୁ ଉଦବୃଦ୍ଧର ମାନ୍ୟବର ସଭ୍ୟ ଉପସ୍ଥିତ ହୋଇଥିଲେ । ସେ ସଭାରେ ସାଧାରଣ ମତ ପ୍ରକାଶ ପାଇଲା ଯେ first point collection ହେଉ । ତଦ୍ୱାରା ବ୍ୟବସାୟୀମାନଙ୍କୁ relief ଦେଇହେବ । ମୁଁ ଗୋଟିଏ ଉଦାହରଣ ଦେଉଛି । ବ୍ରହ୍ମପୁରରେ ଯେଉଁମାନେ Medicine dealer ଅଛନ୍ତି ସେମାନେ Sales Tax ଅଫିସରଙ୍କୁ କହିଲେ ଆମର medicines ସବୁ railway ଯୋଗେ, lorry ଯୋଗେ ଆସୁଛି । Railway Station କିମ୍ବା lorry standରେ ଆପଣ R. R. ଦେଖି ଯେତେ per cent tax ବସାଇବା କଥା ସେତିକି per cent ଆମଠୁ ନେଇ ଯାଆନ୍ତୁ ତା'ପରେ ଆମର ଯଦି ହେଲା କି ନାହିଁ ସେଇଟା ଆମେ ଦେଖିବୁ । ସରକାର ଏଥିରେ ନିଶ୍ଚିତ ଲାଭବାନ ହେବେ କାରଣ entire tax ସେ ସେଇଠି ପାଇଯିବେ, ସେହିପରି soap, କନ୍ଦେଇ ଯାହା ବାହାରୁ ଆସୁଛି ସେଇଟା ଜାଣିହେବ ଓ rail headରୁ tax collect କରିହେବ । ଯଦି ସରକାର ଏଥିରେ ରାଜି ହେଉ ନାହାନ୍ତି ତେବେ ମୁଁ ବୁଝିବି ସରକାର ଯେଉଁ ଲକ୍ଷ୍ୟ ସ୍ଥିର କରୁଛନ୍ତି ସେ ଲକ୍ଷ୍ୟ ହାସଲ କରିବା ସକାଶେ ବର୍ତ୍ତମାନର ବ୍ୟବସ୍ଥା ଠିକ୍ ହେଉଛି । ଯେତେବେଳେ

Sales Tax ଅଫିସର ଦୋକାନକୁ ଯାଆନ୍ତି ସେ ସବୁ ଦେଖନ୍ତି । ସାମାନ୍ୟ mistake ଦେଖିଲେ 2/3 ହଜାର ଟଙ୍କା penalty ଆଦାୟ କରି ନିଅନ୍ତି । ଗୋଟିଏ ଔଷଧ ଦୋକାନକୁ ଯାଇ ଦେଖିଲେ କିଛି ଭୁଲ ନାହିଁ । କିନ୍ତୁ ସେ ସେଠାରେ Sulpha Guanidine tablet ଖୁଚୁରା ବିକ୍ରି କରିଥିଲେ । ତା'ଉପରେ କାହିଁକି sales tax ନ ହେଲା ସେଥିପାଇଁ ଟ 1,000ଟା penalty ବସାଇ ଦେଲେ । ବ୍ୟବସାୟୀମାନେ ଏହାଦ୍ୱାରା ହଇରାଣ ହେଉଛନ୍ତି । Target ହାସଲ କରିବାପାଇଁ ଏପରି penalty ବଢାଇବା ଘୋର ଅନ୍ୟାୟ । ବହୁତ ଦୋକାନୀ ହଇରାଣ ହୋଇ ଦୋକାନପାଟ ବନ୍ଦ କରି ଦେଉଛନ୍ତି । First point collection କଲେ ଏସବୁ ଅସୁବିଧା ଦୂର ହୋଇପାରନ୍ତା । ବ୍ୟବସାୟୀମାନଙ୍କ ସଭାରେ ବାସୁଦେବପୁରର ମାନ୍ୟବର ସଭ୍ୟ ପଚାରିଥିଲେ କିଛି practical suggestion ଦିଅ । First point କେଉଁଠି ହେବ, କିପରି ହେବ, Check-gate କରି first point କଲେ ଦୁର୍ନୀତି ବଢ଼ିଯିବ । Check-gateରେ ଯେଉଁ ଅଫିସର ରହିବେ ସେ ଯାହାଣ୍ଡା ଆଦାୟ କରି ଗ୍ରହଣ କରିବେ । କିନ୍ତୁ ଯେଉଁ କେତେକ ଜିନିଷ ଉପରେ ଆଗରୁ first point କରାଯାଇଛି ସେଥିରୁ ଆୟ ହୋଇଛି । ମୁଁ ତ କହିଲି medicine, soap, Banaspati ଓ ଅନ୍ୟାନ୍ୟ edible oil ତା' ଉପରେ ଆଗେ first point collection କରାଯିବା ।

ବିଭିନ୍ନ ସମୟରେ କାହିଁକି କେଉଁଥିରୁ ବିଭିନ୍ନ ପ୍ରକାର notification ବାହାରୁଛି । କେଉଁ କେଉଁ ଜିନିଷ ଉପରେ tax ବଢ଼ିଲା ସେ କଥା ବର୍ଷର ଯେ କୌଣସି ସମୟରେ ବିଭିନ୍ନ ପ୍ରକାର notification ହେଉଛି । ଏହାଦ୍ୱାରା ବ୍ୟବସାୟୀମାନଙ୍କର ଜାଣିବାରେ ଏବଂ ଠିକ୍ ହିସାବ ରଖିବାରେ ବହୁତ ଅସୁବିଧା ହେଉଛି । ସେମାନେ ତ ଆଉ ସବୁବେଳେ Gazette ଦେଖି ହିସାବ ରଖିବା ସମ୍ଭବ ନୁହେଁ । ତେଣୁ ଏ Billରେ ଏଭଳି ଏକ ବ୍ୟବସ୍ଥା ରହୁ ଯେ ଯେକୌଣସି tax ବଢ଼ିଲେ ସେଇଟା April ପହିଲାଦିନ notification ହେବ । ତା' ହେଲେ ସେହି ହାରରେ ଏପ୍ରିଲ ପହିଲାଠାରୁ March 31 ପର୍ଯ୍ୟନ୍ତ ବ୍ୟବସାୟୀମାନେ tax ଅସୁଲ କରିବେ ଓ account ରଖିବେ । ଏହି point ଉପରେ ବିଶେଷ ଜୋର ଦିଆହୋଇଥିଲେ ହେଁ ଏ Billରେ ତା'ର କୌଣସି ବ୍ୟବସ୍ଥା ନାହିଁ । ସେଥିପାଇଁ ଏହାକୁ ଜନମତକୁ ପଠାଇବା ଉଚିତ୍ ବୋଲି ମୁଁ ଭାବୁଛି ।

ମୋର ଶେଷ କଥା ହେଉଛି Sales Tax ଅଫିସରମାନଙ୍କର ହାତରୁ ବ୍ୟବସାୟୀମାନଙ୍କୁ ରକ୍ଷା କରିବା ନିତାନ୍ତ ଆବଶ୍ୟକ । ପୁନରାବୃତ୍ତି ହେଉଥିଲେ ହେଁ ଏକଥା କହିବାକୁ

ମୁଁ ବାଧ ହେଉଛୁ । ଭୁବନେଶ୍ୱର ସମ୍ବଲ୍ ବ୍ରହ୍ମପୁରର ବ୍ୟବସାୟୀମାନେ କହିବା ସେଲସ ଅଫିସରମାନେ ସେମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କରିଦେଲେ । ମୋତେ କେତେଜଣ କହୁଥିଲେ ଆଜ୍ଞା, ସବୁକୁ ଯାଇ ଆମର କିଛି ହେଉନାହିଁ । ଏଥିର ଫଳ ହେଲା ଯେ ଅଫିସରମାନେ ଆମକୁ ନାନା ଧମକ ଚମକ ଦେଇ ଅତ୍ୟାଚାର ଆରମ୍ଭ କଲେଣି । ସେଥିପାଇଁ ସରକାରଙ୍କ ପକ୍ଷରୁ ନିର୍ଦ୍ଦେଶ ଯାଉ ବା Billରେ ବ୍ୟବସ୍ଥା ରହୁ, କେଉଁ ସମୟ ଭିତରେ ଅଫିସରମାନେ ଯିବେ । ବର୍ତ୍ତମାନ କଥା ହେଲା ସରକାରଙ୍କର ନିର୍ଦ୍ଦେଶ ହେଉ ବା fieldରେ ବ୍ୟବସ୍ଥା ହେଉ କେଉଁ ସମୟ ଭିତରେ ଯିବେ, କେ କେ ହିସାବ ଦେଖିବେ, କେଉଁ ସ୍ଥାନରେ ହିସାବ ତନଖି କରିବେ । ଅନେକ businessmanଙ୍କ ଘର ଦୋକାନକୁ ଭିଜିଲାନ୍ସ ଯେତେବେଳେ ଯାଉଛନ୍ତି ତାଙ୍କ ପାଖରେ ଯେଉଁ ଗୁପ୍ତ ଗୁପ୍ତ କାଗଜପତ୍ର ରହିଛି ତାକୁ ନେଇ ଯାଉଛନ୍ତି । ଏପରି କରିବାଦ୍ୱାରା କେବଳ ଆତଙ୍କ ସୃଷ୍ଟି ହେଉଛି । ସେମାନଙ୍କର ବ୍ୟବସାୟ ହେଉନାହିଁ । ସେମାନଙ୍କୁ ରକ୍ଷା କରିବା ଉଚିତ ଦରକାର । ବ୍ୟବସାୟୀମାନେ ଏ ଯେଉଁ ହଇରାଣ ହେଉଛନ୍ତି ସେମାନଙ୍କୁ ସେଥିରୁ ରକ୍ଷା କରିବାକୁ ହେବ । ବାସୁଦେବପୁରର ମାନ୍ୟବର ସଭ୍ୟଙ୍କ ସହିତ ମୁଁ ଏକମତ । ଏ ବିଲ୍‌ରେ ଯାହା ସଂଶୋଧନ ଆସିଛି ତାହା ଯଥେଷ୍ଟ ନୁହେଁ । Sales Tax Actର ଆମୂଳଚୂଳ ପରିବର୍ତ୍ତନ ହେବା ଦରକାର । ଏ ଆଇନକୁ ସରଳ ଓ ସୁଗମ କରିବାକୁ ହେବ । ଯାହାଫଳରେ କି ଆଦାୟ ଠିକ୍ ରହିବ ବ୍ୟବସାୟୀମାନେ ହଇରାଣ ହେବେ ନାହିଁ ।

ଯେତେବେଳେ ଏ ସେଲସ୍ ଟ୍ୟାକ୍ସ ବିଲ ଏ ଗୃହ ଆସିଲା ସେତେବେଳେ ସାରା ରାଜ୍ୟର ବ୍ୟବସାୟୀ ମାନଙ୍କ ମନରେ ଆଶା ଜାତ ହୋଇଥିଲା ଯେ ସେଲସ୍ ଟ୍ୟାକ୍ସ ବିଷୟରେ ଯେଉଁସବୁ ଅସୁବିଧା ସେମାନେ ଅନୁଭବ କରୁଥିଲେ ସେସବୁ ଏବେ ଦୂର ହେବ । କିନ୍ତୁ ଦୁଃଖରେ ଯେପରିଭାବରେ ଏ ସଂଶୋଧନ ହେଲା ଓ ଯେପରି ଭାବରେ ଏହା ପାସ୍ ହେବାକୁ ଯାଉଛି ତଦ୍ୱାରା ଆମ ବ୍ୟବସାୟୀମାନଙ୍କର କୌଣସି ଉପକାର ହୋଇପାରିବ ନାହିଁ । ଆମ ବିରୋଧୀ ଦଳ ପକ୍ଷରୁ ଟ 40,000ଙ୍କା ଉପ ଆନୁଆଲ୍ ଟର୍ନ ଓଭର ରଖିବାପାଇଁ ଯେଉଁ ଦାବି ହୋଇଥିଲା ତାକୁ ଗ୍ରହଣ କରାଯାଇଥିଲେ ହୁଏତ ବ୍ୟବସାୟୀମାନେ କିଛି ସାହାଯ୍ୟ ପାଇଥାନ୍ତେ । କିନ୍ତୁ ତାକୁ ଟ 25,000ଙ୍କା ଯାହା କରାହୋଇଛି ସେଥିରେ ବ୍ୟବସାୟୀଙ୍କର କୌଣସି ଉପକାର ହୋଇପାରିବ ନାହିଁ । ଏହା କରିବା ବଦଳରେ first point tax ଯଦି ହୋଇପାରିଥାନ୍ତା ତାହେଲେ ଅତି ଭଲ ହୋଇଥାନ୍ତା । ଏ ଗୋଟିଏ ଅତି ଜରୁରୀ ବିଷୟ । ତାହା

କଲେ ହୁଏତ ଯେତେ ଟିକସ ଆଦାୟ ହେଉଛି ତାହାଠାରୁ ଅତୁଳ ଅଧିକ ଆଦାୟ ହୋଇ ପାରିବ । ବ୍ୟବସାୟୀଙ୍କର ଜନକଷ୍ଟ ବଢ଼ି ହେବ । କ ହେଉ first pointରେ ଯାହା ଟ୍ୟାକ୍ସ ଧାର୍ଯ୍ୟ ହୋଇଥିବ ତାହା ସେମାନେ ଦେବେ ବା ନେଣ୍ଟ first pointରେ taxation କରିବାକୁ ବ୍ୟବସ୍ଥା କ କରି ଲୋକ ଦେଇପାର 20/15/25 ହଜାର କର ଦେଲେ ବ୍ୟବସାୟୀମାନଙ୍କର କୌଣସି ଉପକାର ହେବ ନାହିଁ । ତା'ପରେ ମୋର ଗୋଟିଏ ପ୍ରସ୍ତାବ ଅଛି ଯେ ଏ ସେଲସ୍ ଟ୍ୟାକ୍ସ ଆଇନକୁ ପୂରାପୂରି ସଂସ୍କାର କରିଯିବା କଥା । ବ୍ୟବସାୟୀମାନଙ୍କର ପ୍ରତିନିଧି ବସିବେ । ଏହି ବ୍ୟବସ୍ଥାଟରାର ପ୍ରତିନିଧିମାନେ ଯିବେ । ସରକାରଙ୍କର ପକ୍ଷରୁ ପ୍ରତିନିଧିମାନେ ମଧ୍ୟ ସେଥିରେ ରହିବେ । ସେମାନେ ଏକାଠି ବସି ଏ ଆଇନର ଆମୂଳଚୂଳ ପରିବର୍ତ୍ତନ କରିବାପାଇଁ ଯାହାକିଛି ବ୍ୟବସ୍ଥା କରିବେ ସେଥିରେ first point tax ମୁଖ୍ୟତଃ ରହିବା ଉଚିତ୍ । ତା'ହେଲେ ଆମର ବ୍ୟବସାୟୀମାନେ ଯାହା ଆଶା କରିଥିଲେ ସେକଥା ହୋଇପାରିବ । ତାହା ନ ହେଲେ ଏ ସଂଶୋଧନ ବିଲ୍ ଦ୍ୱାରା ଯାହା ସୁବିଧା ପାଇବେ ବୋଲି ଆଶା କରିଥିଲେ ବାସ୍ତବରେ ସେ ସୁବିଧା ସେମାନେ ପାଇବେ ନାହିଁ । ଏଥିପାଇଁ ସେ ବ୍ୟବସ୍ଥା ସରକାରଙ୍କ ପକ୍ଷରୁ ଶୀଘ୍ର ହେବା ଉଚିତ୍ । ତାହା ହେଲେ ଆମ ଓଡ଼ିଶାର ହଜାର ହଜାର ବ୍ୟବସାୟୀ ଏ ଅସୁବିଧାରୁ ଅବ୍ୟାହତି ପାଇବେ ।

## ଓଡ଼ିଶା ଅତିରିକ୍ତ ବକ୍ରୀ ଟିକସ
## (7-4-1975)

ଆଜି ଓଡ଼ିଶା ଅସ୍ଥାୟୀକାଳ ସେଲସ ଟ୍ୟାକ୍ସ ଉପରେ ବହୁ ମାନ୍ୟବର ସଭ୍ୟ ଆଲୋଚନାରେ ଅଂଶ ଗ୍ରହଣ କରିଛନ୍ତି । ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଛି । ସେମାନେ ଯେଉଁ ମୂଲ୍ୟବାନ ପରାମର୍ଶ ଆଲୋଚନା ପ୍ରସଙ୍ଗରେ ଦେଇଛନ୍ତି, ସେଗୁଡ଼ିକୁ କାର୍ଯ୍ୟକାରୀ କରିବାପାଇଁ ଆମ ସରକାର ଆବଶ୍ୟକୀୟ ପଦକ୍ଷେପ ନେବ । ଏ ବିଲ୍ ସମ୍ପର୍କରେ ପ୍ରତ୍ୟେକ ମାନ୍ୟବର ସଭ୍ୟଙ୍କ ମନରେ ଦ୍ୱିଧା ରହିଛି । ତା' ହେଉଛି ଯେ, ଏହା ଗୋଟିଏ ଇନ୍‌ଡାଇରେକ୍ଟ ବା ପରୋକ୍ଷ ଟିକସ ଶେଷରେ ଖାଉଟିମାନଙ୍କ ଉପରେ ପଡ଼ିବ । କେତେକ ମାନ୍ୟବର ସଭ୍ୟ କହିଛନ୍ତି ଯେ ଆମର ଜାଣିବା ଦରକାର ଯାହା ସେଥିରେ ଏ ଟିକସ ସରକାରଙ୍କ ପାଖକୁ ଆସିବ ନାହିଁ । ଅନ୍ୟମାନେ, ଯେଉଁମାନଙ୍କର ଏଥିରେ ଅଭିଜ୍ଞତା ଅଛି, ବିଶେଷକରି କେନ୍ଦ୍ରାପଡ଼ାର ମାନ୍ୟବର ସଭ୍ୟ ଅନେକ ଉପାଦେୟ କଥା କହିଛନ୍ତି । ସେ କହିଛନ୍ତି ଯେ, ବେପାରୀ ଶ୍ରେଣୀର ଲୋକେ 2/3ୟ ଏକାଉଣ୍ଟ ବା ତା'ଠାରୁ ଅଧିକ ଏକାଉଣ୍ଟ ରଖି ଟ୍ୟାକ୍ସ ନ ଦେବାପାଇଁ ଯେଉଁ ବ୍ୟବସ୍ଥା କରନ୍ତି ସେଥିପ୍ରତି ସେ ମୋର ଦୃଷ୍ଟି ଆକର୍ଷଣ କରିଛନ୍ତି । ମୋର କହିବାର କଥା ଯେ, ଏ ବିଲ୍ ପାସ୍ ହେଲେ ବଢ଼ି ଟିକସରୁ 50 ଲକ୍ଷ ଟଙ୍କା ଆମର ଅଧିକ ଆଦାୟ ହେବ । ଆଇନରେ ବ୍ୟବସ୍ଥା ଅଛି ଯେ, ହୋଲ୍‌କୁ

ସିଧାସଳଖ ଗ୍ରାହକମାନଙ୍କ ଉପରେ ଲଦି ଦିଆଯାଇପାରିବ ନାହିଁ । ସେପରି ଯେ କରିବ ତା'ପ୍ରତି ଶାସ୍ତି ବିଧାନ କରିବାପାଇଁ ବ୍ୟବସ୍ଥା ଅଛି । କିନ୍ତୁ ଗୋଟିଏ ଆଶଙ୍କା ପ୍ରକାଶ କରାଯାଇଛି ଯେ, ବ୍ୟବସାୟୀମାନେ ଏକାଠି ହୋଇ ଜିନିଷପତ୍ରର ଦର ବୃଦ୍ଧି କରିଦେବେ । ଏଇଟା ସମ୍ଭବ ବୋଲି ଅନେକ ମାନ୍ୟବର ସଭ୍ୟ କହିଛନ୍ତି । ଏପରିସ୍ଥଳେ ତାକୁ ରୋକିବା-ପାଇଁ କେତେକ ବ୍ୟବସ୍ଥା କରାଯାଇଛି । ଆମର ସ୍ଲାବ ବ୍ୟବସ୍ଥା ଅଛି । ଏକ ଲକ୍ଷ ଟଙ୍କା ଟର୍ଣ୍ଣଓଭର ପର୍ଯ୍ୟନ୍ତ ହେଉଛି ପ୍ରଥମ ସ୍ଲାବ । କିନ୍ତୁ ଯଦି ଜଣେ ବେପାରୀ ଦରଦାମ ବୃଦ୍ଧି କରି ଏକ ଲକ୍ଷରୁ ଅଧିକ ଟର୍ଣ୍ଣଓଭର କରେ, ସେ ଦ୍ୱିତୀୟ ସ୍ଲାବରେ ପଡ଼ିବ ଓ ଅଧିକ ଟିକସ ଦେବ ।

ଯଦି ଅଯଥା ଟର୍ଣ୍ଣ ବୃଦ୍ଧି କରି ହିସାବରେ ଦେଖାଇବ ତା'ହେଲେ ବିକ୍ରି ଟିକସ ମଧ୍ୟ ସେ ଅଧିକା ଦେବ । ବିକ୍ରି ଟିକସ ବୃଦ୍ଧି ହେଲେ ଅତିରିକ୍ତ ବିକ୍ରି ଟିକସ ପରିମାଣ ବୃଦ୍ଧି ହେବ । ଯଦି ଖାତାରେ ନ ଦେଖାଇ ଅନ୍ୟ ପ୍ରକାର ବ୍ୟବସ୍ଥାକରି ଗ୍ରାହକମାନଙ୍କ ଉପରେ ଲଦି ଦେବାକୁ କାରସାଦି କରେ ତାକୁ ରୋକିବାକୁ ହେବ । 30 ରୁ 40 ହଜାରରେ ପ୍ରଥମ ସ୍ଲାବରେ ରଖିବାପାଇଁ ଯଦି ବ୍ୟବସ୍ଥା କରେ ସେଥିପାଇଁ ମଧ୍ୟ ବ୍ୟବସ୍ଥା ରଖାଯାଇଛି ।

ବିଲ୍‌ରେ ଯଦି ଏହାକୁ ରୋକିବା ପାଇଁ ପ୍ରୋଭିଜନ ନ ଥାନ୍ତା ତା'ହେଲେ ଏହା ସମ୍ଭବପର ହୁଅନ୍ତା । ଯେହେତୁ ବିଲ୍‌ରେ ସ୍ପଷ୍ଟ ଭାବରେ ବ୍ୟବସ୍ଥା କରାଯାଇଛି ଯେ ସେ କ୍ୟାସମେମୋ ନଦେଇ ବିକ୍ରୀ କରିପାରିବ ନାହିଁ । ଆପଣଙ୍କର ସନ୍ଦେହ ହେଉଛି ଯେ କ୍ୟାସ ମେମୋରେ ନ ଲେଖି ବା କୌଣସି ହିସାବରେ ନ ଦେଖାଇ ବୃଦ୍ଧିହାରରେ ଜିନିଷ ବିକିବା ଆପଣ ଜାଣନ୍ତି ମାର୍କେଟରେ କପର କଂପିଟିସନ୍ ହେଉଛି । ଜିନିଷ-ପତ୍ରର ଦର ଯେଉଁଠି ପାଞ୍ଚ ପଇସା କମ୍ ପଡ଼ୁଛି ଗ୍ରାହକମାନେ ସେଇଠି ଯାଇ ପହଞ୍ଚୁଛନ୍ତି । ଯେଉଁଠି ଗ୍ରାହକ ଜିନିଷ ବା ବ୍ୟବହାର୍ଯ୍ୟ ଜିନିଷର ଦର କମ୍ ଦେଖିବେ ସେଠି ଜିନିଷ ବା କିଣିବାପାଇଁ ଗ୍ରାହକମାନେ ଉଦ୍ୟମ କରିବେ । ମାନ୍ୟବର ସଭ୍ୟମାନେ ଗୋଟିଏ କଥା କହୁଛନ୍ତି ଯେ ରିଟେଲରମାନେ ଅଧିକ ଦର ନ ଦେଲେ ହୋଲସେଲ-ମାନେ ତାଙ୍କୁ ଜିନିଷ ଦେବେ ନାହିଁ । ସେଇଟାକୁ ଟିକିଏ ଦେଖିବା କଥା, ଏଥିପ୍ରତି ଆମ ସରକାର ନିଶ୍ଚୟ ଦୃଷ୍ଟି ଦେବେ ।

ମାନ୍ୟବର ସଭ୍ୟ ଯାହା କହୁଛନ୍ତି ସେଇଟା ଅଲଗା କଥା । ସେଇଟା ଅତିରିକ୍ତ ବିକ୍ରୟ ଟିକସ କଥା ନୁହେଁ । ଉପାଧ୍ୟକ୍ଷ ମହୋଦୟ, ମୋର କହିବାର କଥା ମାନ୍ୟବର ସଭ୍ୟମାନେ ଯେଉଁ ଆଶଙ୍କାପ୍ରକାଶ କରୁଛନ୍ତି ସେଥିରୁ ଅନୁମାନ ହେଉଛି ଯେ ଏହା

ଗୋଟିଏ ନୂଆ ଟିକସ ହେବାକୁ ଯାଉଛି । ଆପଣ ଜାଣିଥିବେ ଭାରତର ଅନ୍ୟାନ୍ୟ ସ୍ଥାନରେ ବହୁ ଆଗରୁ ଟର୍ଣ୍ଣଓଭର ଟ୍ୟାକ୍ସ କରାଯାଇଛି । ଆନ୍ଧ୍ରର 1963 ମସିହାରୁ ହୋଇଛି ତାମିଲନାଡ଼, ବିହାର, ପଶ୍ଚିମ ବଙ୍ଗଳ, କର୍ଣ୍ଣାଟକ, କେରଳ ଏବଂ 6ଟି ରାଜ୍ୟ ଆମ ଆଗରୁ ଅତିରିକ୍ତ ବିକ୍ରିକର ଧାର୍ଯ୍ୟ କରିଛନ୍ତି । କେରଳରେ ଯେତେବେଳେ ଅତିରିକ୍ତ ବିକ୍ରିକର ବଢାଇବା ପାଇଁ ବସିଥିଲେ ସେତେବେଳେ ସୁପ୍ରିମକୋର୍ଟକୁ ଗୋଟିଏ କେସ୍ ଯାଇଥିଲା । କେରଳ ବିଲ୍ ଠିକ୍ ଆମ ବିଲ୍ ଅନୁରୂପ ଥିଲା । ସୁପ୍ରିମକୋର୍ଟର ଜଜମାନେ କହିଲେ ଯେ ରାଜ୍ୟ ସରକାର ଓ ବିଧାନସଭାର ଅଧିକାର ଅଛି ଏପରି ଆଇନ କରିବାପାଇଁ । କେବଳ ସେତିକି ନୁହେଁ ସୁପ୍ରିମକୋର୍ଟ ମତ ଦେଇଥିଲେ ଯେ such a Bill is a progressive measure and does not violate Article 14 of the Constitution.

ସେଠି slab system ଥିଲା ତାହା ପ୍ରୋଗ୍ରେସିଭ ନୁହେଁ ବୋଲି ପ୍ରଶ୍ନ ଉଠିଥିଲା । And so that was a part of the judgement. ତେଣୁ ଆମ ଆଇନରେ ଯେଉଁ slab system ଅଛି, ପ୍ରଥମ ଏକଲକ୍ଷ ଟଙ୍କା ପର୍ଯ୍ୟନ୍ତ ଏକ ଏବଂ ଅନ୍ୟାନ୍ୟ ଯାହା ରହିଛି ସେ ବିଷୟରେ ସୁପ୍ରିମ କୋର୍ଟ ଏ କଥା କହିଛନ୍ତି । କିନ୍ତୁ ମାନ୍ୟବର ସଭ୍ୟ ଆଶଙ୍କା ପ୍ରକାଶ କରିଛନ୍ତି ଯେ ଖାଉଟିଙ୍କ ଉପରେ ଏହା ପଡ଼ିବ । ଏହା ସେମାନେ ସେପରି ନ କରନ୍ତୁ ସେଥିପାଇଁ ବିଲ୍‌ରେ ଯାହା ବ୍ୟବସ୍ଥା ରଖାଯାଇଛି ତା ବାହାରେ ସେମାନେ ଅନେକରେ ନିମିତ୍ତ pass on ନ କରିପାରିବେ ସେଥିପାଇଁ ଆମ ବିଭାଗ ମଧ୍ୟ କଡ଼ା ନଜର ରଖିବେ । ଯେହେତୁ ମାନ୍ୟବର ସଭ୍ୟମାନେ ଏ ବିଷୟରେ ଆଶଙ୍କା ପ୍ରକାଶ କରିଛନ୍ତି । କଟକ ସଦରର ମାନ୍ୟବର ସଭ୍ୟ ସେକ୍ସନିଙ୍କ ପରାମର୍ଶ ଦେଇଛନ୍ତି । ସେ ଗୋଟିଏ ପ୍ରଶ୍ନ ଉତ୍ଥାପନ କରିଛନ୍ତି ଯେ ଏ ଯେଉଁ ଅତିରିକ୍ତ ବିକ୍ରିକର ନିଆଯାଉଛି, ଇନ୍‌କମ୍ ଟ୍ୟାକ୍ସରୁ ସେଥିପାଇଁ ସେମାନେ ରିହାତି ପାଇବେ କି ନାହିଁ । ସେ ହେତୁ ଏ ଟଙ୍କାକୁ ଏକ୍ସପେଣ୍ଡିଚର ହିସାବରେ ଦେଖାଇବେ । ତେଣୁ ନିଶ୍ଚିତ ଭାବରେ ଇନ୍‌କମ୍ ଟ୍ୟାକ୍ସରୁ ସେମାନେ ପରୋକ୍ଷରେ ରିହାତି ପାଇବେ । କଟକ ସହରର ମାନ୍ୟବର ସଭ୍ୟ ଏ ଗୋଟିଏ strategy ବୋଲି ଯାହା କହିଲେ, strategy ଠିକ୍ ଭାବରେ ନ ହୋଇପାରେ ତେବେ ଇନ୍‌କମ୍ ଟ୍ୟାକ୍ସରେ ଯାହା ବ୍ୟବସ୍ଥା ଅଛି ସେ ଅନୁସାରେ ସେ ପରୋକ୍ଷରେ ରିହାତି ନିଶ୍ଚିତ ଭାବରେ ପାଇବେ । କେବଳ ମୁଁ ଗୋଟିଏ କଥାର ତାଙ୍କ ସହିତ ଏକମତ ହୋଇପାରୁନାହିଁ । ସେ କହିଛନ୍ତି, ଯାହାକି ରାଜ୍ୟରେ single point tax ଅଛି । ମୁଁ ତାଙ୍କୁ ଅବଗତ କରିବା ପାଇଁ କହିପାରେ ଯେ ରାଜସ୍ଥାନ, ପଞ୍ଜାବ, ହରିଆନା, ହିମାଚଳ ପ୍ରଦେଶ, ଜାମ୍ମୁ, କାଶ୍ମୀର, ଓଡ଼ିଶା,

ପଶ୍ଚିମ ବଙ୍ଗ, ଆସାମ, ମଣିପୁର, ନାଗାଲାଣ୍ଡ ଓ ମଧ୍ୟପ୍ରଦେଶ ସେପରି 13ଟି ରାଜ୍ୟରେ single point system ଅଛି । ମାନ୍ୟବର ସଭ୍ୟ କହୁଥିଲେ 5ଟି ରାଜ୍ୟରେ single point ଅଛି । ମୁଁ କହୁଥିଲି 9ଟି ରାଜ୍ୟରେ ଅଛି । ବର୍ତ୍ତମାନ ମୁଁ ସେ ରାଜ୍ୟଗୁଡ଼ିକର ନାମ ପଢ଼ିଲି, ମାନ୍ୟବର ସଭ୍ୟ ଜାଣିପାରିବେ । ଏହିପୂର୍ବରୁ ମାନ୍ୟବର ସଭ୍ୟ ଯାହା କହୁଛନ୍ତି ସେ ସବୁ ଉପରେ ଦେଖୁ କଥା । ସେଥିପାଇଁ ଶେଷରେ ସେହି Sales Tax Amendment Bill ଆସୁଛି ମୁଁ ମାନ୍ୟବର ସଭ୍ୟଙ୍କୁ ଅନୁରୋଧ କରିବି ଏହାକୁ ସିଲେକ୍ଟ କମିଟିକୁ ନ ପଠାଇ ଯେଉଁ ସମୟ ଲାଗୁ ପଡ଼ିଛି ତାହାର ଏଠାରେ ବହୁତ କଥା ଯଦି ଆମେ ପାସ୍ କରିଦେବା ତ' ହେଲେ ଆମ ବର୍ଣ୍ଣିତ ଆଦାୟର ଯେଉଁସବୁ ତ୍ରୁଟି ରହୁଯାଉଛି ତାକୁ ସୁଧାରିପାରିବା । ମାନ୍ୟବର ସଭ୍ୟ ଯେଉଁ କଥା କହିଲେ ଟଙ୍କା ଖାଉଟିମାନଙ୍କଠାରୁ ଅସୁଲ ହୋଇଛି କିନ୍ତୁ ସରକାରଙ୍କ ପାଖକୁ ଆସୁନାହିଁ । ଏ ବର୍ଷରେ ଆଇନରେ ଯେଉଁସବୁ ଦୋଷତ୍ରୁଟି ରହିଯାଉଛି ତାକୁ plugging କରିବାପାଇଁ ଆମେ ଯଦି ସେ ସବୁ ଆଇନକୁ ଏ ଗୃହରେ ମଞ୍ଜୁର କରି ପାସ୍ କରିଦେଇପାରିବା । ତା' ହେଲେ ଆମର ଆୟ ବହୁତ ବଢ଼ିଯିବ ବୋଲି ମାନ୍ୟବର ସଭ୍ୟ ଯେଉଁ ଆଶା ପ୍ରକାଶ କରିଛନ୍ତି, ସେଥିରେ ମୁଁ ତାଙ୍କ ସହିତ ଏକମତ । ସେ ଯେଉଁସବୁ ତ୍ରୁଟିର କାରଣ ଦର୍ଶାଇଲେ ଓ ସ୍ୱାର୍ଥ ବ୍ୟବସାୟୀ ଓ vested interest ଥିବା ଅଫିସରଙ୍କ ବିଷୟରେ ଯାହା କହିଲେ ସେଥିପ୍ରତି ସରକାରଙ୍କ ଦୃଷ୍ଟି ଦେଇଛନ୍ତି । ଏ ବର୍ଷ ଯେଉଁ Sales Tax ବଢ଼ିଲା ସେଥିରେ ଜିନିଷପତ୍ର ଦରଦାମ୍ ବୃଦ୍ଧି ହେଉ ବଢ଼ିଲା ତା' ନୁହେଁ । ମାନ୍ୟବର ସଭ୍ୟମାନେ ଜାଣିଥିବେ ସେମିତି ଜିନିଷପତ୍ରର ଦାମ ବଢ଼ିଛି ସେମିତି volume of trade ବଢ଼ିଛି କିନ୍ତୁ ଅଫିସରମାନେ କଲେକ୍ସନ୍‌ର ଇନ୍ସପେକ୍ଟ କରିଛନ୍ତି ଏବଂ ଚେକିଂ ଆଉ ନୂଆ ପଦ୍ଧତିର ଭିତରେ loop holes ଗୁଡ଼ିକ plugging କରିବା ଦିଗରେ ଅଧିକ ଉଦ୍ୟମ କରିଛନ୍ତି । ସେଥିପାଇଁ କଲେକ୍ସନ ନିଶ୍ଚିତ ରୂପରେ ବଢ଼ିଛି ଏଥିରେ ସନ୍ଦେହ ନାହିଁ । ବାକି ଆମର ଯେଉଁସବୁ ଅନ୍ୟ ରାଜ୍ୟମାନଙ୍କରେ ରହୁଛି, ଆପଣ ଦେଖିବେ H.S.L.କୁ ବର୍ତ୍ତମାନ ମହାରାଷ୍ଟ୍ର ସରକାର ସପ୍ଲାଇ କରୁଛନ୍ତି । ତାଙ୍କର stock yard ନ ରହିଲେ ହୋଇଥାନ୍ତା ଆମେ ଜିନିଷ ଆଣିବାରେ ଅସୁବିଧା ହେବ । ସେଥିପାଇଁ ବାହାର ରାଜ୍ୟର ଯେଉଁସବୁ ସଂସ୍ଥା ଅଛି ତାଙ୍କର ନିଜ ନିଜର stock yard ସେମାନେ କରିଛନ୍ତି ଏବଂ ସେଠାକୁ ସେମାନେ ଜିନିଷ ପଠାଇବେ ଏବଂ ତା' ଉପରେ ଆମେ Sales Tax ଆଦାୟ କରିବା ଏକ ଚିନ୍ତାର ବିଷୟ ହୋଇଛି ଏବଂ ତାକୁ କିପରି ଅତିକ୍ରମ କରାଯିବ ତାହା ସରକାର ଚିନ୍ତାର ବିଷୟ ହୋଇରହିଛି । ଏ ବିଷୟ ଉପରେ ନିଶ୍ଚିତ ରୂପରେ ଆବଶ୍ୟକ ପଦକ୍ଷେପ ନିଆଯିବ । କିନ୍ତୁ ଯେପରି ମାନ୍ୟବର ସଭ୍ୟ କହିଲେ ଆମର Purchase Tax ଥିଲା, Sales Tax ଥିଲା । ବର୍ତ୍ତମାନ Purchase Tax ବା Sales Tax ହେଲା କିନ୍ତୁ ରେଟ୍‌ର ପରିବର୍ତ୍ତନ

ହେଉନାହିଁ । ହଠାତ୍ ମୋ ପାଖରେ ସେ particulars ନାହିଁ । ଯେଉଁ ପରସେଣ୍ଟେଜ୍ Sales Tax ଥିଲା ସେହି ପରସେଣ୍ଟେଜ Purchase Tax ହେଲା ଏବଂ ତା'ଉପରେ Sales Tax ହେଉଛି ଅର୍ଥାତ୍ ଡବଲ ଟ୍ୟାକ୍ସ ହେଉଛି । ତା'ନୁହେଁ ମୂଗ ଉପରେ Purchase Tax ରହିଲା । ତାଲି ଉପରେ ସେଲ୍ସ ଟ୍ୟାକ୍ସ ରହିଲା । ମୋ ଜାଣିବାରେ Purchase Tax ଅଧିକ ହେଉନାହିଁ । 2% Sales Tax ଥିଲା । Purchase Tax 3% ହେଲା । ତେଣୁ ଅଧିକ 1% ଲାଗିଲା, ତାହା ନୁହେଁ ।

× × ×

ଆଗେ ମୂଗ ଉପରେ Sales Tax 3% ଥିଲା, ଡାଲି ଉପରେ 3% ଥିଲା । ଡାଲିପାଇଁ ଅଧିକ ଟ୍ୟାକ୍ସ, ମୁଗପାଇଁ ଅଲଗା ଟ୍ୟାକ୍ସ, ଏପରି କିଛି ନାହିଁ । ମୁଗ ଯେପରି ସ୍ୱରୂପରେ ବିକ୍ରି କରିବେ ତା' ଉପରେ 3% ହୋଇଛି । ତେଣୁ ଏଥିରେ ଆଶଙ୍କା ପ୍ରକାଶ କରିବାର କୌଣସି କାରଣ ନାହିଁ । କଟକ ସହରର ମାନ୍ୟବର ସଭ୍ୟ ଯାହା କହିଲେ ଯେ Sales Tax ଆଇନ simple and unambiguous ହେବା ଦରକାର । ଯେପରି ସାଧାରଣ ଲୋକ ଓ ବ୍ୟବସାୟୀମାନେ ତାକୁ ବୁଝିପାରିବେ, ସେ ବିଷୟରେ ମୁଁ ତାଙ୍କ ସହିତ ଏକମତ । That is one of the canons of good taxation. ଯେଉଁ ଆଇନଟି ହେବ ସେଇଟା ଯେପରି ସରଳ, ସହଜ ଏବଂ ବୋଧଗମ୍ୟ ହେବ ଏବଂ 2/3ଟି ପ୍ରକାର interpretation ହେଉ ନ ଥିବ ସେ ଦିଗରେ ଆମର ଉଦ୍ୟମ ହେଉଛି । ସେ ଗୋଟିଏ କଥା ପଚାରିଛନ୍ତି ଯେ, ଚେକ୍ ଗେଟ୍‌ରେ ମୁଁ କେବେ ପ୍ରସ୍ତାବିତ ହୋଇଛି କି ନାହିଁ । ମୁଁ ପ୍ରସ୍ତାବିତ ହେବା ଦୃଷ୍ଟିରୁ ମୁଁ ଗୋଟିଏ କଥା ସ୍ଥିର କରିଥିଲି ଯେ, ଚେକ ଗେଟରେ ଯେଉଁମାନେ ଅଛନ୍ତି ସେମାନଙ୍କୁ ପ୍ରତି 6 ମାସରେ ଟ୍ରାନ୍ସଫର କରିବାପାଇଁ ଏବଂ ସେଥିପାଇଁ ଟଙ୍କାର ବ୍ୟବସ୍ଥା ମଧ୍ୟ କରାଯାଇଥିଲି । କିନ୍ତୁ ଦୁର୍ଭାଗ୍ୟର କଥା ଗତ ବର୍ଷ ଏମାନଙ୍କ ରହିବାପାଇଁ କ୍ୱାର୍ଟର ନ ହୋଇପାରିଥିବା ହେତୁ 6 ମାସରୁ 6 ମାସ transfer ବ୍ୟବସ୍ଥା କାର୍ଯ୍ୟକାରୀ ହୋଇପାରିନାହିଁ । ଆମର ଯେଉଁଠି unified check-gate ଅଛି ଓ ଯେଉଁଠି 4/5ଟି ବିଭାଗର ଲୋକେ ରହି collection କରୁଛନ୍ତି ସେଠି ଆମର କେତେକାଂଶରେ corruption check ହୋଇଛି । ଆମର ଯେଉଁଠି ସବୁ different pointର check-gate ଅଛି କ୍ରମଶଃ ତାକୁ ଉଠାଇଦେଇ ଏକକ unified check-gate କରିବାପାଇଁ ବ୍ୟବସ୍ଥା ହେଉଛି । ଯେଉଁଠି କିଛି corruptionର ସୂଚନା ମିଳୁଛି ତାକୁ ଦୂର କରିବାପାଇଁ ଯେଉଁ ପ୍ରକାର ବ୍ୟବସ୍ଥା ଗ୍ରହଣ କରିବା କଥା ତାହା ଆମେ ଗ୍ରହଣ କରୁଛୁ । ସେମାନେ କହୁଛନ୍ତି check-gateର ରହିବା ମୂଳରେ ଯେଉଁ vested interest grow କରୁଛି ତାକୁ ଦୂର କରିବାପାଇଁ ଆମେ ଏ ପ୍ରକାର ପନ୍ଥା ଗ୍ରହଣ କରୁଛୁ ।

Turnover ଉପରେ additional tax ହେଉଛି ବୋଲି ମାନ୍ୟବର କଟକ ସହରର ସଭ୍ୟ କହିଲେ । 1 ଲକ୍ଷ ଟଙ୍କା turnover ଉପରେ tax କଥା ହେଉନାହିଁ । ଏକ ଲକ୍ଷ ଟଙ୍କା ହେଲେ classification ହେବ । 1 ଲକ୍ଷ, 5 ଲକ୍ଷ ଓ 5 ଲକ୍ଷରୁ ବେଶି ଏହିଭଳି ତିନୋଟି classification ରହିଛି । ଏହି turnover ଭିତରେ ଯେଉଁ amount Sales Tax ସଂଗ୍ରହ କରାଯାଏ ସେହି Sales Tax ଉପରେ ଏ collection ହେବ । କିନ୍ତୁ ଏହା turnover ଉପରେ Sales Tax ନୁହେଁ । The turnover is meant for classification. ବର୍ତ୍ତମାନ ଯେଉଁ first, second ଓ third classification କରାଯାଇଛି ସେଥିପାଇଁ turnover ରହିଛି ।

ମାନ୍ୟବର କେନ୍ଦ୍ରାପଡ଼ାର ସଭ୍ୟ କହିଛନ୍ତି ଯେ ଯେବେ 50 ଲକ୍ଷ ଟଙ୍କା ଆଦାୟ କରିବାକୁ ଗଲେବେଳେ ବ୍ୟବସାୟୀମାନେ ହୁଏତ ସାଧାରଣ ଲୋକଙ୍କ ଠାରୁ 5 କୋଟି ଟଙ୍କା ଆଦାୟ କରିବେ । I think it is highly exaggerated. ସେମାନେ ଯେପରି ଅଧିକ କିଛି ଆଦାୟ କରି ନ ପାରିବେ ସେଥିପାଇଁ ସେପରି ନଜର ଦେବା କଥା ତାହା ମୁଁ କହୁଥାଉଛି । Additional Sales Tax introduce କଲେ କିପରି ଅର୍ଥନୀତି ଧ୍ୱଂସ ହେବ ତାହା ମୁଁ ବୁଝିପାରୁ ନାହିଁ । ମୁଁ ଆଗରୁ କହିଛି ଯେ ଆମ ପୂର୍ବରୁ 6ଟି ରାଜ୍ୟ turnover tax ଧାର୍ଯ୍ୟ କରିଛନ୍ତି । ଆମେ 7ମ ରାଜ୍ୟ ହିସାବରେ Additional Sales Tax ଧାର୍ଯ୍ୟ କରିବାକୁ ଯାଉଛୁ । ଅର୍ଥନୀତିକୁ ଏହାଦ୍ୱାରା ଧ୍ୱଂସ କରିବା ବ୍ୟବସ୍ଥା କରାଯାଇ ନାହିଁ କି ଆମର ସେପରି ଲକ୍ଷ୍ୟ ନାହିଁ । ଏପରି ଚିନ୍ତିବା ମଧ୍ୟ ଭୁଲ ।

ଜିନିଷ ଉପରେ tax ନ କରିବାପାଇଁ ମାନ୍ୟବର ନୟାଗଡ଼ର ସଭ୍ୟ କହିଛନ୍ତି । Additional Sales Tax କୌଣସି ଜିନିଷ ଉପରେ ଧାର୍ଯ୍ୟ କରାଯାଇ ନାହିଁ । ତାହା କରାଯାଇଥିଲେ ଏହା ସିଧାସଳଖ ଲୋକମାନଙ୍କ ଉପରେ ପଡ଼ନ୍ତା । ତେଣୁ ସେପରି ଆଶଙ୍କା ପୋଷଣ କରିବା ଠିକ୍ ନୁହେଁ ।

ଏହା ଗୋଟିଏ direct tax କି ନୁହେଁ ବୋଲି ପ୍ରଶ୍ନ ଉଠିଛି । ଏଇଟା ତ indirect tax ନୁହେଁ । ଏହାକୁ ଆମେ quasi direct tax ବୋଲି କହୁଛୁ । ଏହି ହିସାବରେ ଆମେ ତାକୁ ଗ୍ରହଣ କରୁଛୁ । ତେଣୁ ଏ ସମ୍ପର୍କରେ ଅଧିକ କିଛି କହିବାର ନାହିଁ । ମାନ୍ୟବର ସଭ୍ୟମାନେ ଏହାକୁ ଗ୍ରହଣ କରିବେ ବୋଲି ମୁଁ ଆଶା କରୁଛି ।

× × ×

ଆମର ଏ ଯେଉଁ 3ଟି କ୍ଲାସିଫିକେସନ୍ କରାଗଲା ସେଥିରେ ବାର୍ଷିକ 50 ଲକ୍ଷ ଟଙ୍କା ଆଦାୟ କରିବାର ଅଛି, ଏମାନେ କହୁଛନ୍ତି 1 ଲକ୍ଷ ଟଙ୍କାର ଟର୍ଣ୍ଣଓଭର ପର୍ଯ୍ୟନ୍ତ ଯେଉଁ ବ୍ୟବସାୟୀ ଅଛନ୍ତି ସେମାନଙ୍କ ଉପରେ ଟିକସ ଧାର୍ଯ୍ୟ ନ କରାଯାଉ । 25 ହଜାର ଟଙ୍କା ପର୍ଯ୍ୟନ୍ତ ଯେଉଁମାନଙ୍କର ବାର୍ଷିକ ଟର୍ଣ୍ଣଓଭର ସେମାନଙ୍କ ଉପରେ ବିକ୍ରିକର ନାହିଁ । ତେଣୁ ଅତିରିକ୍ତ ବିକ୍ରିକର ପ୍ରଶ୍ନ ସେଠାରେ ନାହିଁ । ଆଉ ବାକି ଯାହା ରହିଲେ ଆମ ଓଡ଼ିଶାରେ 2,500ରୁ ଲକ୍ଷେ ପର୍ଯ୍ୟନ୍ତ ଟର୍ଣ୍ଣଓଭର ଭିତରେ ବ୍ୟବସାୟୀଙ୍କ ସଂଖ୍ୟା 50 ପରସେଣ୍ଟରୁ ଅଧିକ । ତେଣୁ ଆମେ ବିକ୍ରିକର ଯାହା ସ୍ଥିର କରିବା ତା'ହେଲେ ଆଦାୟ କରିବାପାଇଁ ଯେଉଁ ଅଟକଳ ହୋଇଛି ତାହା ହୋଇପାରିବ ନାହିଁ ।

ତା'ପରେ incidence of taxation କଥା ଯାହା କୁହାଯାଉଛି ମୁଁ ଗୋଟିଏ ଉଦାହରଣ ଦେଇ ବୁଝାଇଦେବି, ଏହା କେତେ କମ୍ ଯାହାକି ଆମ ବ୍ୟବସାୟୀମାନେ ନିଜ ହାତରୁ ଦେବେ । ଧରନ୍ତୁ ସୋରିଷ ତେଲ କିଲୋ ଟ 8·00ରେ 3 ପରସେଣ୍ଟ କର ହେଲେ 24 ପଇସା କର ଟିକସ ହେବ ଏବଂ 2 ପରସେଣ୍ଟ ଅତିରିକ୍ତ ବିକ୍ରିକର ଆଦାୟ ହେଲେ ସେଇଟା ହେବ ଟ 00·40 ପଇସା । ତେଣୁ 1 କେ. ଜି. ସୋରିଷ ତେଲରୁ ଯାହା ଆଦାୟ କରିବେ ବା ନିଜକୁ ଦେବାକୁ ପଡ଼ିବ ତାହା ଅତି କମ୍ । ସେଥିପାଇଁ ମୁଁ କହୁଛି ଅସୁବିଧା ହେବନାହିଁ । ଏବେ Cycle କଥା ନେନ୍ତୁ ଯାହା ଦର ଅଧିକ Cycle ଦର ଟ 200·00 ହେଲେ 8 ପରସେଣ୍ଟ ହିସାବରେ ବିକ୍ରିକର ହେଉଛି ଟ 16·00 ଏବଂ ଲକ୍ଷ ଟଙ୍କା turnover ଭିତରେ ଜଣେ ବ୍ୟବସାୟୀ ଏ ବାବଦରେ 32 ପଇସା ଦେବ । ଏହାପରେ ହିସାବକର 3 ଗୋଟି slab କରାଯାଇଛି । ତେଣୁ ମୁଁ ବୁଝିପାରୁନାହିଁ ବ୍ୟବସାୟୀର କପର କଷ୍ଟ ହେବ । ମୁଁ କେନ୍ଦ୍ରାପଡ଼ାର ସଭ୍ୟଙ୍କୁ ପ୍ରଶ୍ନ ଦେବାକୁ ଚାହେଁ ଯେ ଆମେ ପ୍ରଥମ କର ଏହା ଧାର୍ଯ୍ୟ କରୁଛୁ । ସେଥିରୁ ଏହାଦ୍ୱାରା ଅସୁବିଧା ହେଉଛି କି ନାହିଁ ? ଯଦି ସେଥିରୁ ଅସୁବିଧା ହେଲା ତା'ହେଲେ ଏହାର ପରିବର୍ତ୍ତନ କରିବୁ । ମୁଁ ଏଥରବେଳେ କହୁଥିଲି taxable turnover ଗୋଟିଏ । ଆଉ ଗୋଟିଏ ହେଲା gross turnover. ଯେଉଁ ଜିନିଷ ଉପରେ ବ୍ୟବସାୟୀମାନେ Sales Tax ଦେବେ ତା'ର ଉପରେ ଅତିରିକ୍ତ ଟିକସ ହେବ । ସେଥିପାଇଁ ମଧ୍ୟ Income Taxରୁ ରିହାତି ମିଳିବ । ମାନ୍ୟବର ସଭ୍ୟ ଏ ଯେଉଁ ଆଶଙ୍କା କରୁଛନ୍ତି ସେପରି ଆଶଙ୍କା କରିବା ଠିକ୍ ନୁହେଁ । କେତେକ ଜିନିଷ ଉପରେ Sales Tax ନାହିଁ । ସେତିକି ଜିନିଷ ଉପରେ ଅଛି । ସେ ଯାହା ହେଉ ଯଦି ଦେଖାଯିବ ଏ ଆଇନ କାର୍ଯ୍ୟକାରୀ କରିବାପରେ କିଛି ଅସୁବିଧା

ଦିଆଯିବ ତା'ହେଲେ ଏହାର ସଂଶୋଧନ ଆଣାଯିବ । ବ୍ୟବସାୟୀ ନିଜ ହାତରୁ Sales Tax ଦେବେ ନାହିଁ । ସେଥିପାଇଁ ସେ କିଛି ସୁବିଧା ପାଏ । ସେ ଯାହା ହେଉ ବ୍ୟବସାୟୀ ଯେଉଁ ଲାଭ କରେ ସେଥିରୁ କିଛି ଅଂଶ ସରକାରଙ୍କୁ ଦେବ । ଏହି ତଥ୍ୟ ହୃଦୟଙ୍ଗମ ହେଲା ନାହିଁ ।

ଉପାଧ୍ୟକ୍ଷ ମହୋଦୟ, ଏଇ ଯେଉଁ ବିକ୍ରିକର ସଂଶୋଧନ ବିଲ୍ ଆସିଛି ଏଥିରେ କାର୍ଯ୍ୟକାରୀ ପଦ୍ଧତି (ପ୍ରୋସିଡ଼ିଓର) କ୍ଷେତ୍ରରେ କେତେକ ପରିବର୍ତ୍ତନ କରିବାପାଇଁ ସଂଶୋଧନ ପ୍ରସ୍ତାବ କରାଯାଇଛି । ପ୍ରଚଳିତ ବିକ୍ରିକର ଆଇନରେ କେତେକ ତ୍ରୁଟି ରହିଥିବା ହେତୁ ଅସାଧୁ ବ୍ୟବସାୟୀମାନେ ତା'ର ସୁବିଧା ନେଇ ଟିକସ ଫାଙ୍କୁଛନ୍ତି । ଆଉ ମଧ୍ୟ ଏଥି ମଧ୍ୟରେ ଅଦାଲତମାନେ କେତେକ ରାୟ ଦେଇଛନ୍ତି । ତା' ଫଳରେ ଏ ଆଇନର କେତେକ ଦଫା ସଂଶୋଧନ କରିବା ଆବଶ୍ୟକ ହୋଇପଡ଼ିଛି । ବର୍ତ୍ତମାନ ବିକ୍ରିକର ଆଇନରେ ବକେୟା ଟିକସ ଆଦାୟ କରିବାରେ ଅଯଥା ବିଳମ୍ବ ଘଟୁଛି । ଯାହା ଫଳରେ କି ଆମ ରାଜ୍ୟ ରେଭିନ୍ୟୁ ପାଇବାରେ ଡେରି ହେଉଛି । ତାକୁ ତ୍ୱରାନ୍ୱିତ କରିବା ଏ ସଂଶୋଧନର ଉଦ୍ଦେଶ୍ୟ । କେତେକ ଦଫା ବିକ୍ରିକର ଆଇନର କେତେକ ଦଫା ସଂଶୋଧନ କଲେ ରାଜସ୍ୱ ଆଦାୟ ତ୍ୱରାନ୍ୱିତ ହୋଇପାରିବ । ଆଉ ଗୋଟିଏ କଥା ଗତ 27 ବର୍ଷ ଭିତରେ ଏ ଆଇନର କାର୍ଯ୍ୟକାରିତା ଉପରେ କେତେକ ଅସୁବିଧା ସୃଷ୍ଟି ହୋଇଛି । ଯାହାକି ସାମୟିକ ଭାବରେ ସଂଶୋଧନ ହୋଇଆସିଛି । କେତେକ ସାମୂହିକ ସଂଶୋଧନ କରିବା ନିହାତି ଦରକାର ହେଉଥିବାରୁ ଏ ସଂଶୋଧନ ବିଲ୍ ଆସିଛି । ଉପରେ ଦଫାମାନଙ୍କୁ ସଂଶୋଧନ କରାଯାଉଛି ତା'ର କେତେକ ଉଦାହରଣ ମୁଁ ଦେଉଛି । ଆପଣ ଦେଖିବେ ସାର୍ଟିଫିକେଟ ସାଧାରଣ କେତେ ବର୍ଷ ଭିତରେ ହେବ ଏଠି ସେପରି କିଛି ନ ଥିଲା । ବର୍ତ୍ତମାନ ପ୍ରତିବର୍ଷ ସ୍ଥିର କରିବାପାଇଁ ସଂଶୋଧନର ବ୍ୟବସ୍ଥା ହୋଇଛି । ଏଥି ସହିତ ବ୍ୟବସାୟୀଙ୍କ ଫର୍ଦ୍ଦ ଓ ଚାର୍ଟ ମଧ୍ୟ ରଖିବାର ବ୍ୟବସ୍ଥା କରାଯାଉଛି । ବିକ୍ରିକର ଉପଦେଷ୍ଟା କମିଟିର ପରାମର୍ଶ ଅନୁସାରେ ଏ ଆଇନର କେତେକ ଧାରା ସଂଶୋଧନ କରାଯାଉଛି । ଅଧିକ ଟିକସ ଯେଉଁ ବ୍ୟବସାୟୀ ଦେଇ ଦେଉଛନ୍ତି ତା'କୁ ଫେରସ୍ତ ଦେଲାବେଳେ ବହୁତ ଡେରି ହେଉଛି । ତା'ର ମଧ୍ୟ ସମୟ ଥିଲା ଆସେସମେଣ୍ଟର 24 ମାସ ଭିତରେ ଅପିଲପାଇଁ ଦରଖାସ୍ତ କରିବାର ଥିଲା । ତାକୁ ସଂଶୋଧନରେ 12 ମାସ ମଧ୍ୟରେ ଦରଖାସ୍ତ କରିବା ବ୍ୟବସ୍ଥା ସଂଶୋଧନରେ ରହିଛି । ବ୍ୟବସାୟୀଙ୍କ ସୁବିଧା ଦୃଷ୍ଟିରୁ ଏ ସଂଶୋଧନ ଆଣାଯାଇଛି । ଅପିଲ ଫି ସର୍ବୋଚ୍ଚ ଶହେ ଟଙ୍କା ରଖାଯାଇଥିଲା । ଏହାକୁ ଫେରସ୍ତ କରାଯାଉଥିଲା । ବର୍ତ୍ତମାନ ସଂଶୋଧନରେ ଟ 25 ଟଙ୍କାକୁ କମାଇ ଦିଆଯାଇଛି । ଏ ଟ 25 ଆଉ ବ୍ୟବସାୟୀମାନେ ଫେରସ୍ତ ପାଇବେ ନାହିଁ । ଆମେ

କମିଶନର ଓ ଆସିଷ୍ଟାଣ୍ଟ କମିଶନର ସୋମାନଙ୍କ ଶଭଜନ ବିରୁଦ୍ଧରେ ଅପିଲ କରିବାର ନ ଥିଲା । ସେ ଦଫାକୁ ସଂଶୋଧନ କରି କମିଶନର ବା ଆସିଷ୍ଟାଣ୍ଟ କମିଶନର ସୋମାନଙ୍କ ଶଭଜନ ଅପିଲ କରିବାକୁ ସୁଯୋଗ ଦିଆଯାଇଛି । ବର୍ତ୍ତମାନ ଆସିଷ୍ଟାଣ୍ଟ କମିଶନରମାନଙ୍କୁ ବ୍ୟବସାୟୀମାନେ ଅପିଲ କରିବା ବେଳେ ସୁଦ୍ଧା ମାଫି କରିବା ଅଧିକାର ଦିଆଯାଇଛି । ଆଗେ ସେ ଅଧିକାର ଆସିଷ୍ଟାଣ୍ଟ କମିଶନରମାନଙ୍କର ନ ଥିଲା । ବର୍ତ୍ତମାନ ସମ୍ପୃକ୍ତ ଦଫାକୁ ସଂଶୋଧନକରି ସେ ଅଧିକାର ତାଙ୍କୁ ଦିଆଯାଇଛି । ପ୍ରଚଳିତ ଆଇନ ଅନୁସାରେ ଯେଉଁମାନେ ଟିକସ ଫାଙ୍କୁଛନ୍ତି ତାଙ୍କ ବିରୁଦ୍ଧରେ କଠୋର ଦଣ୍ଡର ବ୍ୟବସ୍ଥା ନ ଥିଲା । କିନ୍ତୁ ଏ ସଂଶୋଧନ ଯେପରି ହେବାକୁ ଯାଉଛି ସେଥିରେ ଯେଉଁମାନେ ଟିକସ ଫାଙ୍କୁଛନ୍ତି ସେମାନେ ଯେପରି କଠୋର ଦଣ୍ଡ ପାଇବେ ସେ ବ୍ୟବସ୍ଥା ଏଥିରେ ଅଛି । ଆପଣ ଦେଖିବେ ଏହି ଦଣ୍ଡ ବ୍ୟବସ୍ଥା ଯୋଗୁଁ ଯେଉଁମାନେ ଟିକସ ଫାଙ୍କନ୍ତି ସେମାନେ ଆଉ ଟିକସ ଫାଙ୍କିବେ ନାହିଁ, ଠିକ୍ ସମୟରେ ସେମାନେ ଦେବେ । ଆଉ ଗୋଟିଏ ଦେଖିବେ ଆମର ଯେଉଁସବୁ ଶିଳ୍ପ ପ୍ରତିଷ୍ଠାନ ଗୁଡ଼ିକ ହୋଇଅଛି ସେମାନେ କଞ୍ଚାମାଲ କିଣିବାରେ କିଛି ସୁବିଧା ପାଉଥିବେ, କିଛି ରିହାତିପାଇଁ କମ୍ ହାରରେ ସେମାନେ କଞ୍ଚାମାଲ କିଣନ୍ତି । ପୁଣି ଯେଉଁସବୁ ନୂତନ ଶିଳ୍ପ ପ୍ରତିଷ୍ଠାନ ହୋଇଛି ଏବଂ ଯେ କି ତା 1-4-1971ରେ ଉତ୍ପାଦନ ଆରମ୍ଭ କରିଛନ୍ତି ସେମାନେ ପ୍ରାୟ 5 ବର୍ଷପାଇଁ ଯେଉଁ କଞ୍ଚାମାଲ କିଣିବେ ତା'ଉପରୁ ବିକ୍ରିକର ନିଆଯାଉ ନ ଥାଏ । ଏ ସୁବିଧା ଯେଉଁସବୁ ନୂଆ ଶିଳ୍ପ ପ୍ରତିଷ୍ଠାନ ପ୍ରତିଷ୍ଠିତ ହେବ ସେମାନଙ୍କୁ ଦିଆଯାଇଥିଲା । କିନ୍ତୁ ଏହାଭିତରେ ଦେଖାଗଲା ଯେ ଏହାର ସୁଯୋଗ ନେଇ ଯେଉଁ ପାର୍ଟିଫିକେଟ ଦିଆଯାଇଥାଏ, ଯାହାର ବଳରେ କଞ୍ଚାମାଲ ଉପରୁ କୌଣସି ବିକ୍ରିକର ଆଦାୟ ହୁଏ ନାହିଁ, ତା'ର ସୁଯୋଗ ନେଇ ସମ୍ପୃକ୍ତ ବ୍ୟକ୍ତିମାନେ ସେ ଜିନିଷକୁ ଅନ୍ୟଆଡ଼େ ବିକ୍ରି କରିବା ବା ଯେଉଁ ଉଦ୍ଦେଶ୍ୟପାଇଁ ନେଇଥିଲେ ସେ ଉଦ୍ଦେଶ୍ୟରେ ବିନିଯୋଗ ନ କରି ଅନ୍ୟ ଉଦ୍ଦେଶ୍ୟରେ ତାକୁ ବିନିଯୋଗ କରିବା ଏପରି ବହୁ ଘଟଣା ଦୃଷ୍ଟିକୁ ଆସିଛି । ତେଣୁ ସେପରି କ୍ଷେତ୍ରରେ ସେମାନଙ୍କଠାରୁ ପୂରା ଟିକସ ଆଦାୟ କରିବା ବ୍ୟବସ୍ଥା କରାଯାଇଛି । ପ୍ରଚଳିତ ବିକ୍ରିକର ଆଇନରେ ତାଙ୍କଠାରୁ ଟିକସ ଆଦାୟ କରିବାର ସେମିତି କୌଣସି ବ୍ୟବସ୍ଥା ନ ଥିଲା । ସେପରି ବଡ଼କଥା ଉପାଧ୍ୟକ୍ଷ ମହୋଦୟ ଗଚ୍ଛିତ ମାଲର ବା ଷ୍ଟକ୍‌ର ହିସାବ ବହୁ ବ୍ୟବସାୟୀ ରଖୁନଥିଲେ ବିକ୍ରି ସମୟରେ Cash Memo. ଦେଉ ନ ଥିଲେ । ଏହାଫଳରେ ସେମାନେ ଟ୍ୟାକ୍ସ ଫାଙ୍କିବାଠାରୁ ଆରମ୍ଭକରି ଜିନିଷପତ୍ର ଲୁଚାଇବା ଏବଂ ଉପଯୁକ୍ତ ସମୟରେ ତାକୁ ବିକ୍ରି କରିବା ଏସବୁ ସୁବିଧା ସେମାନେ ପାଉଥିଲେ । ତେଣୁ ଗଚ୍ଛିତ ମାଲର ହିସାବ ଦସ୍ତାବିଜ ରଖିବାପାଇଁ ଏବଂ ଅନ୍ତତଃପକ୍ଷେ ଟ 5 ଟଙ୍କାର ଜିନିଷ ବିକ୍ରିକଲେ Cash Memo. ଦେବାପାଇଁ ବାଧ୍ୟ ହେବା ଏକଥା ଏ ସଂଶୋଧନ ଆଇନ୍‌ରେ କରାଯାଇଛି । ଏହିପରି 28

ସଂଶୋଧନ ଆମର ହୋଇଛୁ । ଏ ସଂଶୋଧନ ହୋଇଗଲେ ବର୍ତ୍ତିକର ଜନ୍ମ ନ ବଢାଇ ମଧ୍ୟ ପ୍ରାୟ 5 କୋଟି ଟଙ୍କା ପର୍ଯ୍ୟନ୍ତ ଆମର ଆୟ ବଢ଼ିଯାଇବ ଏ ବିଶ୍ୱାସ ରହିଛୁ । ପ୍ରଚଳିତ ବର୍ତ୍ତିକର ଆଇନରେ ଯେଉଁସବୁ ଲୁପ୍‌ହୋଲ୍‌ସ ରହିଛୁ, ଯାହାର ସୁଯୋଗ ନେଇ ଅସାଧୁ ବ୍ୟବସାୟୀମାନେ ବର୍ତ୍ତିକର ଫାଙ୍କିବା ଓ ଅନ୍ୟାନ୍ୟ ଅସାମାଜିକ କଥା କରୁଥିଲେ ତାକୁ plugging କରି ଆମେ ଏ ଯେଉଁ ସଂଶୋଧନ ଆଇନ ଆଣିଛୁ, ମୁଁ ଆଶା କରୁଛି ଏ ଗୃହ ସେ ସଂଶୋଧନ ଗ୍ରହଣ କରିବେ ।

## ବର୍ତ୍ତିକର (11-11-75)

ଗତ କାଲି ମାନ୍ୟବର ସଭ୍ୟ ଆଲୋଚନା ଆରମ୍ଭ କରି କହିଲେ ଯେ ଖବରକାଗଜରେ ଏ ବର୍ଦ୍ଧିତ ବାହାରିବ କି ନାହିଁ । ତାହିଁକି ସେ ଏକଥା କହିଲେ ମୁଁ ବୁଝିପାରୁ ନାହିଁ । ସେ ଗୃହ ସମ୍ମୁଖରେ ଯାହା ଉପସ୍ଥାପିତ କରୁଛନ୍ତି ତା' ତଦ୍ଵାରା ଆମର ହୃଦ୍‌ବୋଧ କରାଇଦେବ ଯେ ଏଠାରେ ଭୁଲ ରାହିଯାଉଛି ତାହାହେଲେ ଗୃହ ତାହା ଗ୍ରହଣ କରିବ; ସନ୍ଦେହ ନାହିଁ । ଖବରକାଗଜରେ ବାହାରିବ କି ନାହିଁ ବୋଲି ସେ ଯାହା କହିଛନ୍ତି, ମୋର ଦୁର୍ବଳ ବୁଦ୍ଧିରେ ଭୁଲ ହୋଇପାରେ, ତାଙ୍କର ଉଦ୍ଦେଶ୍ୟ ଖବରଟି ବାହାରେ ପ୍ରକାଶ ହେବା ଉଚିତ ଏବଂ ଯେଉଁମାନେ ଜାଣିବା ଉଚିତ୍ ସେମାନେ ଜାଣନ୍ତୁ । He is more interested from that side than to justify what he says here. ତା'ପରେ ଆମେ ସେତେବେଳେ ଆଲୋଚନା କରୁଛୁ whose interest we are serving ? ଆମେ ଆଲୋଚନାରେ ଆଇନର ପରିବର୍ତ୍ତନ ସମ୍ବନ୍ଧରେ କରିବାକୁ ଯାଉଛେ । ଆମେ କାହାର ସ୍ୱାର୍ଥ ରକ୍ଷା କରିବାପାଇଁ ଯାଉଛୁ—ଏ ରାଜ୍ୟର 2 କୋଟି 20 ଲକ୍ଷ ଲୋକଙ୍କର ସ୍ୱାର୍ଥ ରକ୍ଷାକରିବା ନା 22 ହଜାର ଡିଲରଙ୍କ ସ୍ୱାର୍ଥ ରକ୍ଷାକରିବା, ଏଥିପ୍ରତି ଆମକୁ ଦୃଷ୍ଟି ଦେବାକୁ ହେବ । କାଲି ଆଲୋଚନାରେ ବିରୋଧୀ ଦଳର ବନ୍ଧୁ ମାନ୍ୟବର ସଭ୍ୟ ଗ୍ରେଟ ବେପାରୀ ବା small dealersଙ୍କ ଉପରେ ବହୁତ stress ଦେଇଛନ୍ତି, ଯେପରି କି ଆମେ small dealerମାନଙ୍କ ପାଇଁ ଏହା ଉତ୍ତରର ବାଛ ଦେଉଛୁ । ଆପଣ ଜାଣନ୍ତି ଓ ମାନ୍ୟବର ସଭ୍ୟମାନେ ଜାଣନ୍ତି ଯେ, ଯେଉଁମାନଙ୍କର ବାର୍ଷିକ turnover 25 ହଜାର ଟଙ୍କାରୁ କମ୍ ସେମାନେ Sale Tax ଦଅନ୍ତି ନାହିଁ । ତା'ପରେ ଆମର Select କମିଟି ସ୍ଥିର କଲେ ଯେ 75 ହଜାର ଟଙ୍କା ପର୍ଯ୍ୟନ୍ତ ଯେଉଁମାନଙ୍କର turnover ହେବ ସେମାନେ Cash Memo. ଦେବେ ନାହିଁ । ସେମାନେ compounding କରିବେ । 75 ହଜାର ବା ତତୋଧିକ gross turnover ଯାହା ରହିବ ସେ Cash memo,

ହେବ । ଏହି ଆଲୋଚନା ପ୍ରସଙ୍ଗରେ ମୁଁ କହିବି ଯେ ସେଠାରେ ଆମେ ସମସ୍ତେ ଏକମତ ହେଲୁ ଯେ ଯେତେବେଳେ ଆମେ groess turnoverର ସୀମା 75 ହଜାରକୁ ବଢ଼ାଇ ଦେଉଛୁ ସେତେବେଳେ ସେମାନେ ପ୍ରତ୍ୟେକ item ପାଇଁ Cash Memo. ଦେବେ । ଏ ଗୋଟିଏ ବିଷୟରେ ସମସ୍ତେ ଏକମତ ହେଲେ । There was a consensus about it . ତାହାପରେ ଭିନ୍ନ ମତ ପୋଷଣ କରିବା ଦୁଃଖଦାୟକ । ସେଠାରେ ଯାହା ହୋଇଥିଲା ସବୁ ଯଦି ପ୍ରକାଶ କରିବାକୁ ହୁଏ ତାହାହେଲେ ମୁଁ ଦୁଃଖର ସହିତ କହିବି ଯେ ସେଠାରେ ଆମେ ପ୍ରତ୍ୟେକ ବିଷୟରେ consensusକୁ ଆସିଥିଲୁ । ତାହାପରେ ମାନ୍ୟବର ସଭ୍ୟମାନେ ଭିନ୍ନ ମତ ପୋଷଣ କଲେ ଏଥିରେ ମୁଁ ଆଶ୍ଚର୍ଯ୍ୟ ହେଉଛି । ଆମ୍ଭେ ଏ ସମ୍ପର୍କରେ ବହୁତ ଆଲୋଚନା କରିଛୁ officerମାନଙ୍କ ସହିତ ଏବଂ ବ୍ୟବସାୟୀ ପ୍ରତିନିଧିମାନଙ୍କ ସହିତ ଆମେ ଆଲୋଚନା କରିଛୁ । Cash Memo. ଦେବା ପ୍ରସଙ୍ଗରେ ମୁଁ କହିବି ଯେ ଏହାକୁ ଆମେ ନୂଆକରି ଆରମ୍ଭ କରୁନାହୁଁ । କର୍ଣ୍ଣାଟକରେ 60 ହଜାର ଟଙ୍କା gross turn over ପର୍ଯ୍ୟନ୍ତ dealer ମାନେ ଇଚ୍ଛାକଲେ compounding କରି-ପାରିବେ କିନ୍ତୁ ଯାହାର 20 ହଜାର ଟଙ୍କାରୁ ଅଧିକ gross turnover ହେଉଛି ସେ Cash Memo. ଦେବାକୁ ବାଧ୍ୟ, ଯଦି ସେ compounding ନ କରନ୍ତି । Sir, ଆମ ପଡ଼ୋଶୀ ରାଜ୍ୟ ଆନ୍ଧ୍ରରେ ଏଇଟା mandatory Cash Memo. ଦେବା ମହାରାଷ୍ଟ୍ରରେ ଅଛି, ଯାହାର 3 ହଜାର ଟଙ୍କାରୁ ଅଧିକ sale ହେବ ସେ Cash Memo. ଦେବାକୁ ବାଧ୍ୟ । ହରିଆନା, ପଞ୍ଜାବ, ଦିଲ୍ଲୀ ଇତ୍ୟାଦିରେ 10 ହଜାର ଟଙ୍କାରୁ ଅଧିକ sale ପାଇଁ Cash Memo. ଦେବାକୁ ହେବ । ଏହି Cash Memo. ଦେବା ପ୍ରଥା ଏଥିପାଇଁ ଦରକାର ଯେ ସେମାନଙ୍କର କ'ଣ sale ହେଉଛି, ତାହା ଜାଣିବାର କୌଣସି ଉପାୟ ବର୍ତ୍ତମାନ ନାହିଁ । ବର୍ତ୍ତମାନ ଆମର ବ୍ୟବସାୟ ଏପରି ସ୍ତରରେ ଚାଲିଛି ଯେ କେତେ stock ଆସିଲା, କେତେ ବିକ୍ରି ହେଲା ଓ ଆଉ କେତେ ଜିନିଷ ରହିଲା ଏହା ଜାଣିବାର କୌଣସି ପଥ ନାହିଁ । କାଲି ମୋର ବନ୍ଧୁ compounding ସମ୍ପର୍କରେ Taxa-tion Inquiry Committee କଥା କହୁଥିଲେ, ସେ ଆଜି ନାହାନ୍ତି । Taxation Inquiry Committee ବା P.S. Lokanathanଙ୍କ କମିଟି ଏ ବିଷୟରେ କହିଛନ୍ତି ଯେ compoundingକୁ popularise କରିବାକୁ ହେବ, ଏ ସମ୍ପର୍କରେ ଆଲୋଚନା କରିବାପାଇଁ ଆମେ officer ମାନଙ୍କୁ ଗତ ସପ୍ତାହରେ ଡାକିଥିଲୁ । ବ୍ୟବସାୟ ପ୍ରତିଷ୍ଠାନର ପ୍ରତିନିଧିମାନଙ୍କ ସହିତ ମଧ୍ୟ ଆଲୋଚନା ହୋଇଥିଲା ଓ compoundingକୁ କିପରି popularise କରାଯିବ ସେ ବିଷୟରେ ଆମ୍ଭେ ଚିନ୍ତା କରୁଛୁ—ଯେପରି ବହୁତ ବ୍ୟବସାୟୀ

compounding କରିବାକୁ ଆସିବେ, ଆମେ ତାହା ବ୍ୟବସ୍ଥା କରୁଛୁ । ତା'ପରେ Cash Memo . ଦେବା କଥା ମଧ୍ୟ P. S. Lokanathan ଜଣଙ୍କ ତାଙ୍କ reportରେ ଲେଖିଛନ୍ତି । ସେ କହୁଛନ୍ତି ଯେ, it must be made compulsory. ଏଥିରେ ଆଉ କୌଣସି ପ୍ରଶ୍ନ ନାହିଁ । ସେ କହୁଛନ୍ତି—

"Related to this is the wider question of ensuring that the dealer will invariably issue a Cash Memo .for each sale. Often the seller and the buyer act in collusion in this matter and it is not easy either to locate such instances or to stop them effectively. The only methods of surprise checks and test purchases. We have already stated that issue of the Cash Memo. in a prescribed form should be made compulsory under law."

ମାନ୍ୟବର କେନ୍ଦ୍ରାପଡ଼ାର ସଭ୍ୟ ପ୍ରଶ୍ନ ଉଠାଇଥିଲେ ଯେ, ଗୋଟିଏ grocery ଦୋକାନ 100ଟି item ବିକ୍ରି କରୁଛି ସେ କହୁଲେ ଯେ ସରକାରଙ୍କର ମଧ୍ୟ Sale Tax ପାଇଁ 7/8ଟି rate ଅଛି । ସେ କେଉଁ rate ହେକେବେଲେ charge କରିବ ଏହା ଜାଣିବା ସୁବିଧାଜନକ ନୁହେଁ । ଏ ପ୍ରସଙ୍ଗରେ ମୁଁ ମାନ୍ୟବର ସଭ୍ୟମାନଙ୍କୁ ଏବଂ ଗୃହକୁ ଜଣାଇ ଦେବାକୁ ଚାହେଁ ଯେ ଆମର ବର୍ତ୍ତମାନ 8ଟି rate ଅଛି । ଏହାକୁ ଆମେ ପରିବର୍ତ୍ତନ କରି 4ଟି rate କରି ଦେଉଛୁ, ଏହି 4ଟି rateରୁ ପ୍ରତ୍ୟେକଟି କେଉଁ କେଉଁ ଜିନିଷ ଉପରେ charge କରାଯିବ, ତାକୁ ମଧ୍ୟ specifyକରି ସବୁ business men ମାନଙ୍କ ପାଖକୁ ଆମେ ଗୋଟିଏ ବହି issue କରୁଛୁ । ଏହା ଦ୍ୱାରା ସେମାନଙ୍କର ସୁବିଧା ହେବ, ସେମାନେ at a glance କହିପାରିବେ ଯେ କେଉଁ କେଉଁ ଜିନିଷ ଉପରେ କେତେ rate ଅଛି । ଏଥିରେ କୌଣସି ଅସୁବିଧା ହେବ ନାହିଁ ।

ଆଉ ଗୋଟିଏ କଥା କୁହାଗଲା ଯେ, Registration Certificate ପାଇବାପାଇଁ ସମସ୍ତ ଲାଗିବ ଓ D Formପାଇଁ ଦରଖାସ୍ତ କଲେ କେବେ ପାଇବେ । ମୁଁ କହୁଛି ଯେଉଁ ଦିନ D Formପାଇଁ ଦରଖାସ୍ତ ଆସିବ ସେମାନେ ତାହା ସେହିଦିନ ପାଇବେ—ଆଜି ଯେପରି C Formପାଇଁ ଦରଖାସ୍ତ କରିବା ସଙ୍ଗେ ସଙ୍ଗେ ପାଉଛନ୍ତି । D Form ସେହିଭଳି ପାଇବେ । ତେଣୁ କିଛି ଅସୁବିଧା ହେବ ନାହିଁ । Registration Certificate

ପାଇବାରେ ନିୟମ ଅଛି ଯେ ଯେଉଁବେ tax ଦେବା ପାଇଁ ହେବ ତା'ର ମାସେ ପୂର୍ବରୁ ନୂଆ businessକୁ ଦେଖି ସେ ନୂଆ ବ୍ୟବସାୟୀ Registration Certificate ପାଇଁ ଦରଖାସ୍ତ କରିବେ, ଏଥିରେ କୌଣସି ଅସୁବିଧା ନାହିଁ। ଯେତେବେଳେ ବୁଝାଯିବ ଯେ ତୁମକୁ କିଛି security ଦେବାକୁ ହେବ, ସେତେବେଳେ ତୁମମାନେ security ଦେବାରେ ନିଜ ଆଡୁ ଡେରି କଲେ Registration Certificate ଦେବାରେ ଡେରି ହେବ ନଚେତ୍ 1 ମାସ ଭିତରେ Registration Certificate ପାଇବେ। ଆମେ ସ୍ଥିର କରିଛୁ ଯେ 45 ଦିନ ଭିତରେ renewal ନିଷ୍ପତ୍ତି ହୋଇ ପାରିବ। ଗୋଟିଏ Quarter ଶେଷ ହେବାର 45 ଦିନ ପୂର୍ବରୁ ବା ନୂଆ ବର୍ଷ ଆସିବାର 45 ଦିନ ଆଗରୁ ସେମାନେ ଦରଖାସ୍ତ କରିବେ ଏବଂ 45 ଦିନ ଭିତରେ ସେମାନେ Renewal Certificate ପାଇବେ। ନୂଆ ଆଇନରେ ସର୍ତ୍ତ ନାହିଁ ଏହା ପାଶ ହେଲାପରେ ରୁଲ ଭିତରେ ତାହା ନିଶ୍ଚୟ ରହିବ। ଅଧିକନ୍ତୁ ଯେଉଁ ଏକ୍‌ଜିକ୍ୟୁଟିଭ ଅର୍ଡର ଅଫିସରମାନଙ୍କୁ ଦିଆଯିବ, ସେଥିରେ ଦୁଇ ମାସକ ଭିତରେ ରେଜିଷ୍ଟ୍ରେସନ ସାର୍ଟିଫିକେଟ ନ ଦେଲେ ସେ ଅଫିସରଙ୍କ ଉପରେ ଆକସନ୍ ନିଆଯିବ ବୋଲି କମର୍ସିଆଲ କମିଶନର ନିର୍ଦ୍ଦେଶ ଦେଇସାରିଲେଣି। ଡିଲର 45 ଦିନ ଭିତରେ ନିଶ୍ଚୟ ରେଜିଷ୍ଟ୍ରେସନ୍ ସାର୍ଟିଫିକେଟ ପାଇବ।

କୁହାଯାଇଛି ଯେ ଏ ଧାରାଗୁଡ଼ିକ ଅସେସ କରିବାରେ କଳା ହୋଇଛି— କିପରି କଳା ହେଲା? ଜଣେ ଡିଲର ରେଜିଷ୍ଟ୍ରେସନ ନମ୍ବର ନ ଦେଇ ଲୋକଙ୍କଠାରୁ 5 ପରସେଣ୍ଟ ଜାଗାରେ 7 ପରସେଣ୍ଟ ଆଦାୟ କରୁଛି, ଯେଉଁ ଜିନିଷ ଉପରେ ଟିକସ ନାହିଁ ସେ ଜିନିଷ ଉପରେ ଟିକସ ଆଦାୟ କରୁଛି, ଏ ସବୁ offence ପାଇଁ C. C. T. ପ୍ରତି ମାସରେ କେସ କରି Judicial Magistrate not below the rank of a Magistrate, 1st Class ଙ୍କ ପାଖକୁ ବିଚାରପାଇଁ ପଠାଉଛୁ। ଏ offence, ବିଚାର ପରେ କୋର୍ଟ ଡିଲରକୁ ଦୋଷୀ ସାବ୍ୟସ୍ତ କଲେ ତାଙ୍କଠାରୁ ଦଣ୍ଡବିଧାନ କରିବ କି ତେଣୁ C. C. T. ଦଣ୍ଡବିଧାନ କରିବ। ପ୍ରଶ୍ନ ଉଠୁଛି। ନୂଆ ଇନକମ୍ ଟ୍ୟାକସ ଆଇନ ଅନୁସାରେ ଆମେ ସେଲ୍ସ ଟ୍ୟାକସ ଆଇନର ପରିବର୍ତ୍ତନ କରିଛୁ। ଜୁଡ଼ିସିଅଲ ମାଜିଷ୍ଟ୍ରେଟ୍‌ଙ୍କୁ ଡିଲରକୁ ଦଣ୍ଡଦେବା କ୍ଷମତା ଦିଆଯାଇଛି। ଡିଲରମାନଙ୍କର ସୁବିଧାପାଇଁ ବ୍ୟବସ୍ଥା କରାଯାଇଛି ଯେ ଡିଲରମାନେ compounding କରିବାପାଇଁ C. C. T.ଙ୍କ ପାଖକୁ ଯାଇପାରିବେ। ତାହାର ଯେପରି ହଇରାଣ ନ ହେବେ C. C. T. ତାଙ୍କୁ କମ୍ପାଉଣ୍ଡ କରିପାରିବେ।

ଅଫିସରମାନଙ୍କୁ ଦଣ୍ଡ ଦେବାପାଇଁ କୁହାଯାଉଛି । ଯେଉଁ ଅଫିସରମାନେ ଅସତ୍ ଉଦ୍ଦେଶ୍ୟ ରଖି ଡିଲରମାନଙ୍କଠାରୁ ଦଣ୍ଡ ବିଧାନ କରାଇ ଥିବେ, ତା' ପ୍ରମାଣିତ ହେଲେ ସେ ଅଫିସରଙ୍କୁ ଦଣ୍ଡ ଦିଆଯାଉଛି । ଯଦି ଜଣେ ଅଫିସର ଭ୍ରମ କାରଣରୁ ଭୁଲ ହୋଇଯାଉଛି, ସେଥିରେ ତାଙ୍କୁ ଦଣ୍ଡ ଦିଆଯାଉନାହିଁ । କିନ୍ତୁ ଯଦି ଜଣେ ଅଫିସର ଆଇନଗତ କାର୍ଯ୍ୟ ନକରି କେବଳ ଡିଲରଙ୍କୁ ଦଣ୍ଡ ଦେବାପାଇଁ ବେଆଇନ କାର୍ଯ୍ୟ କରିଛି, ସେ ନିଶ୍ଚିତ ଭାବରେ ଦଣ୍ଡନୀୟ ହେଉଛନ୍ତି ଓ ହେବେ । କେତେକ ଲୋକ ଯେ ଡିଲରଙ୍କୁ ଦଣ୍ଡ ଦିଆଯାଉଛି ଓ ଅଫିସରଙ୍କୁ ଦଣ୍ଡ ଦିଆଯାଉ ନାହିଁ, ତା'ଭାବିବା ଠିକ୍ ନୁହେଁ ।

ତା'ପରେ ପରଦାନସିନ ନାରୀଙ୍କ କଥା କୁହାଯାଉଛି । ଅନ୍ତର୍ଜାତିକ ମହିଳା ବର୍ଷରେ ବ୍ୟବସାୟ କରିବାକୁ ଚାହୁଁଥିବା ଜଣେ ନାରୀ ରେଜିଷ୍ଟ୍ରେସନ ସାର୍ଟିଫିକେଟ ଚାହୁଁଲାବେଳେ ତାଙ୍କୁ ତାଙ୍କ ଫଟୋ ମାଗିବା ଠିକ୍ ନୁହେଁ ବୋଲି କୁହାଯାଉଛି । ବ୍ୟବସାୟ କରିବାକୁ ଚାହୁଁଥିବା ଜଣେ ନାରୀଙ୍କୁ ଫଟୋ ମାଗିବା ଅନ୍ୟାୟ ନୁହେଁ । ଯେଉଁମାନେ ପରଦାନସିନ ନାରୀ ଘର ଭିତରେ ରହନ୍ତି ସେମାନଙ୍କୁ ଫଟୋ ମଗାଯାଉ ନାହିଁ । କିନ୍ତୁ ଯେଉଁ ନାରୀ ବ୍ୟବସାୟ କରିବାକୁ ରେଜିଷ୍ଟ୍ରେସନ ସାର୍ଟିଫିକେଟ ଚାହୁଁବେ ସେ ନିଶ୍ଚୟ ଫଟୋ ଦେବେ । ପରଦାନସିନ ନାରୀ ଯେଉଁମାନେ ବାହାରକୁ ଯାଇପାରିବେ ନାହିଁ, ଅଦାଲତରେ ଉପସ୍ଥିତ ହୋଇ ପାରିବେ ନାହିଁ ସେମାନଙ୍କପାଇଁ ଆଇନରେ ସୁବିଧା ଦିଆଯାଇଛି । କିନ୍ତୁ ଯେଉଁମାନେ ବ୍ୟବସାୟ କରିବେ, ବାହାରକୁ ଯିବେ, ଅଦାଲତରେ ଉପସ୍ଥିତ ହେବେ, ଆଇନରେ ସେମାନଙ୍କପାଇଁ ଏହି ବ୍ୟବସ୍ଥା ନାହିଁ ।

ତା'ପରେ ହିସାବ ରଖିବା ବିଷୟରେ କୁହାଯାଉଛି । ମେଣ୍ଟିନାନ୍ସ ଓ ଷ୍ଟକ୍ ଏକାଉଣ୍ଟ ଗୋଟିଏ ମୁଖ୍ୟ କଥା । ଜଣେ ଡିଲର କେତେ ଜିନିଷ କାରବାର କଲା ତା'ର ହିସାବ କିପରି ନ ରଖିବ ? ଯଦି ଜଣେ ଡିଲର କହେ ମୁଁ ଏତେ ଜିନିଷ ଆଣିଛି ଏହା ଉପରେ ଟିକସ ଧାର୍ଯ୍ୟ କର, ସେ ଯଦି ହିସାବ ନ ରଖିବ ସେ କେତେ କାରବାର କଲା ଆମର ଜାଣିବାର ଉପାୟ ନାହିଁ । ଜଣେ honest dealer ମଧ୍ୟ ପ୍ରତ୍ୟେକ ଜିନିଷ କେତେ ଆଣିଲା ଓ କେତେ ବିକିଲା, ତା'ର ହିସାବ ରଖେ । ଜଣେ ଡିଲର ହିସାବ ନ ରଖି କାରବାର କରେ, ଏହା ମୁଁ ବିଶ୍ୱାସ କରିପାରେ ନାହିଁ, ଯେତେ ଛୋଟ ଡିଲର ହେଲେ ମଧ୍ୟ ସେ ହିସାବ ରଖେ । ତେଣୁ ଏ ଡିଲରଙ୍କୁ ବାର୍ଷିକ ଷ୍ଟକ୍ ଏକାଉଣ୍ଟ ମାଗିବା ଗୋଟିଏ ବଡ଼ କଥା ନୁହେଁ । ଖାଲି inventory ରଖିଲେ ହିସାବ ନ ରହିବାର କିଛି ମାନେ ନାହିଁ । ଧରନ୍ତୁ ଜଣେ 40 କ୍ୱିଣ୍ଟାଲ ଚାଉଳ ଓ 5 କ୍ୱିଣ୍ଟାଲ

ଗୃପ ଅଣିଲ, ସେ ବର୍ଷ ଭିତରେ କେତେ ଟଙ୍କା ତା'ର ହିସାବ ସେ ନ ରଖିବ କିପରି ? ସେହିପରି ଜଣେ ଡିଲର କେତେ କମେଷନ ଆଣିଲ ଓ କେତେ ଟଙ୍କା ତା'ର ମଧ୍ୟ ହିସାବ ରଖେ । ସେଥିପାଇଁ ସପ୍ଲାଇ ଡିପାର୍ଟମେଣ୍ଟ ପ୍ରତି କମେଷନ୍ ହିଣବେ ହୁଇ ଦେଇଲ ପର୍ଯ୍ୟନ୍ତ ତାଙ୍କର wastage ହେବ ବୋଲି କହୁଛନ୍ତି । ସେମିତି ଅନ୍ୟାନ୍ୟ commoditiesରେ wastage ଦିଆଯାଉଛି । ତା'ପରେ ଆମକୁ ବସ୍ତୁ ହିସାବ ଦେଖିବାକୁ ହେବ । ତାହା ନ ହେଲେ ଖାଲି ଅନ୍ଧାରରେ ବାଡ଼ି ବୁଲାଇବା ଛଡ଼ା ଅନ୍ୟ କିଛି ଉପାୟ ନାହିଁ, ହିସାବ ନାହିଁ, account ନାହିଁ । ଜଣେ ଲୋକ ଗୋଟିଏ ଜାଗାକୁ ଗଲ, ସେଠୁ କିଛି ଜିନିଷ ଧରି ଆସିଲ । ଗୋଟିଏ ଟ୍ରକ୍ ନେଇ ଜଣେ କଲିକତା ବୁଲିଗଲ । Without paying Sales Tax 10 ହଜାର ଟଙ୍କାର ଜିନିଷ ସୂଟ-କେଶରେ ଆଣି ଦୋକାନରେ ରଖି ବିକି ଦେଲ । ଏ ସବୁ କ'ଣ ଆମେ ଦେଖିବା ନାହିଁ । କେତେବେଳେ ହଠାତ୍ ଅଫିସର ଦୋକାନରେ ପହଞ୍ଚିଲେ ସେ ତାକୁ ଚେକ୍ କରିବେ that is very unlikely. ତେଣୁ ହିସାବ ଯଥାଯଥ ଭାବରେ ରଖିବାକୁ ହେବ । ମୁଁ ଯାହା ଦେଖୁଛି no honest dealer opposes କେବଳ fraudulent ମାନେ ଯିଏ ଏ କାମ କରନ୍ତି ଏପରି କି Association ମାନେ ଆମକୁ ଚିଠି ଦେଇଛନ୍ତି ଯେ fraudulent ମାନେ ଏ ଯେଉଁ କାରବାର କରୁଛନ୍ତି ତା'ଙ୍କୁ ବନ୍ଦ କରିବାପାଇଁ ରେଜିଷ୍ଟ୍ରେସନ ସର୍ଟିଫିକେଟ୍ ସମ୍ପର୍କରେ ଯାହା ହେଲ ମୁଁ କହିଲି fraudulent dealerମାନେ ସେଥିରେ ଯେଉଁ କାରବାର କରି ଯାଉଛନ୍ତି ସେଭଳି ବହୁତ ଘଟଣା କଟକ ସହରରେ ଓ ଅନ୍ୟଆଡ଼େ ମଧ୍ୟ ହେଉଛି । ମୁଁ କାହାରିକୁ ନିନ୍ଦା କରୁନାହିଁ । I do not say all the dealers are bad, କିନ୍ତୁ ଆମେ ଏପରି ବ୍ୟବସ୍ଥା କରିବା ଉଚିତ୍ ଯେପରି ସମସ୍ତଙ୍କୁ ଠିକ୍ ଭାବରେ ପରିଚାଳିତ କରିପାରିବା ଏବଂ କ୍ରମଶଃ double accounting ଏବଂ ଅନ୍ୟାନ୍ୟ ଯାହାସବୁ ହେଉଛି ଏହା ସମ୍ପୂର୍ଣ୍ଣ ବନ୍ଦ ହେବ । ମୋର ଆଶା କେହି ଏଥିରେ ଆପତ୍ତି କରିବେ ନାହିଁ । Every honest dealer welcomes it. ଅନ୍ୟ ଯେଉଁମାନେ oppose କରୁଛନ୍ତି, ମୋର ଆଶା ସେମାନେ ପରିବର୍ତ୍ତିତ ପରିସ୍ଥିତିରେ ନିଜେ honest dealing କରିବା ପାଇଁ ପ୍ରସ୍ତୁତ ହେବେ ଏବଂ ଏହାଦ୍ୱାରା ଆପତ୍ତି କରିବେ ନାହିଁ ।

ମାନ୍ୟବର କେନ୍ଦ୍ରାପଡ଼ାର ସଭ୍ୟ 4/5 ଜଣଙ୍କୁ ନେଇ ଗୋଟିଏ ଷ୍ଟେଟିଙ୍ଗ କମିଟି ଗଢ଼ି ବଜାର ଦୋକାନକୁ ଯାଇ ଦେଖିବାପାଇଁ ପ୍ରସ୍ତାବ ଦେଇଛନ୍ତି ଯେ, Cash Memo. ଦେଲେ କେତେ ସମୟ ଯିବ । ମୁଁ ମାନ୍ୟବର ସଭ୍ୟଙ୍କୁ ଜଣାଇଦେବାକୁ ଚାହେଁ, ମୁଁ ଜଣେ ବେପାରି ନ ହେଲେ ମଧ୍ୟ ଜଣାଇ ଚାହିଁବ

ହିସାବରେ ନିଜେ ଦୋକାନକୁ ଯାଇ ଖର୍ଚ୍ଚ କରୁଛୁ । ମୁଁ ଜାଣେ ଯେଉଁମାନେ 5 ପଇସା, 7 ପଇସାର ଜିନିଷ କିଣନ୍ତି ସେମାନେ ବଡ଼ ଦୋକାନକୁ ଯାଆନ୍ତି ନାହିଁ, କାରଣ ପ୍ରଥମେ ବଡ଼ ଦୋକାନୀ ବଡ଼ ବଡ଼ କଣାଳୀ ଗ୍ରାହକଙ୍କର ଆବଶ୍ୟକତା ପ୍ରତି ପ୍ରଥମେ ଦେଖନ୍ତି । ତେଣୁ ଗ୍ରେଟ୍ ଗ୍ରେଟ୍ କଣାଳୀମାନଙ୍କୁ (କଷ୍ଟମରମାନଙ୍କୁ) ବହୁ ସମୟ ଅପେକ୍ଷା କରିବାକୁ ପଡ଼େ । ଫଳରେ ସେମାନେ ସେ ପାଖରେ ଥିବା ଗ୍ରେଟ୍ ଦୋକାନକୁ ଯାଆନ୍ତି । ସେଠି କଣାଳୀ ସଂଖ୍ୟା କମ୍ ଥା'ନ୍ତି । ତା'ର ବେଶୀ ଜିନିଷ ସେ କେବଳ ସରକାରୀ ଦଳର 2/4 ଜଣ ଏମ୍. ଏଲ୍. ଏ. ଙ୍କୁ ନେଇ ଗୋଟିଏ ଗ୍ରେଟିଆ କମିଟି କରି କେତେଗୁଡ଼ିଏ ଦୋକାନରେ ବସାନ୍ତୁ ଏବଂ ଯେଉଁ ଗରିବମାନେ ଆସୁଛନ୍ତି ସେମାନେ କମିଟି ଜରିଆରେ ତାକୁ dispose କରୁଛନ୍ତି ଦେଖନ୍ତୁ ।

ଯାହାର କହିବା ଦରକାର ଥାଏ ସେ କେବଳ ବଡ଼ ଦୋକାନକୁ ଯାଆନ୍ତି ସେଥିପାଇଁ କୌଣସି କମିଟିର ଆବଶ୍ୟକତା ନାହିଁ । ଏ Bill କୁ ତରବରରେ ଆମେ ପାସ୍ କରିଦେଉଛୁ ବୋଲି ମାନ୍ୟବର ସଭ୍ୟ ଧାରଣା ପୋଷଣ କରନ୍ତୁ ନାହିଁ । ଆମ ଆଇନର Objects and Reasons ରେ ଯାହା ଉଦ୍ଦେଶ୍ୟ ଅଛି ତାକୁ ଠିକେ ଅନୁଧ୍ୟାନ କରନ୍ତୁ । ଆମେ କେବଳ ସାଧାରଣ କାର୍ଯ୍ୟ କରିବାକୁ ଯାଉଛୁ । ଯଦି କୌଣସି ସ୍ଥାନରେ hardship ହୋଇଥିଲେ ପୁଣି ତାକୁ ଟିକ୍ସ ବସ୍ତୁରକାରୀ ପରିବର୍ତ୍ତନ ହୋଇପାରିବ ନାହିଁ, ଏପରି କଥା ନାହିଁ । ତେଣୁ କରିଦ୍ଧି ଠିକସ ଵ୍ୟକ୍ତିଗତ ବେପାରୀମାନଙ୍କୁ ଦମନକରି ରଖିବା ବା ତାଙ୍କୁ ଦଣ୍ଡ ଦେବାପାଇଁ ରହୁ ନାହିଁ । ସେମାନେ ନିଜେ କିଛି ନିଅନ୍ତି ନାହିଁ । ଲୋକଙ୍କଠାରୁ ଆଦାୟ କରି ଆମକୁ ଦିଅନ୍ତି । କିନ୍ତୁ ତାଙ୍କୁ ଯେଉଁମାନେ ଫାଙ୍କନ୍ତି, ଯେଉଁସବୁ tax ବରବାଦ ହେଉଛି, କାଟକଣା ପ୍ରୟୋଗକରି ଯେପରି ତାକୁ ବନ୍ଦ କରାଯିବ ସେ ଦୃଷ୍ଟିରୁ ଏହା ପରିବର୍ତ୍ତନ କରିବାକୁ ଯାଉଛୁ । ତା'ପରେ ମାନ୍ୟବର ସଭ୍ୟ first point ରେ ଡିଲରମାନେ tax ଦେଇଦେବା କଥା ଯାହା କହୁଛନ୍ତି ଆମେ ସେ ଦଗରେ ବର୍ତ୍ତମାନ କେତେକ ପଦକ୍ଷେପ ନେଉଛୁ । କେତେକ ଜିନିଷ ଉପରୁ first point tax ନେଉଛୁ । ଫର୍ଟିଲାଇଜର ସର୍ଭିସ୍ କୋ-ଅପରେଟିଭମାନେ କେନ୍ଦ୍ରରେ first point ରେ tax collect କରୁଛନ୍ତି । Cocacola ଉପରେ ବି first point tax ଆଦାୟ କରୁଛୁ । ସେ ଦଗରେ ଆମେ ଧ୍ୟାନ ଦେଉଛୁ । ଏହି Bill ଦ୍ୱାରା ବେପାରୀ-ମାନଙ୍କୁ ଅସୁବିଧାରେ ପକାଇବା ବ୍ୟବସ୍ଥା କରାଯାଉ ନାହିଁ । ଯେଉଁମାନେ ଭୁଲ୍ କରୁଛନ୍ତି ସେମାନଙ୍କୁ ରାସ୍ତାକୁ ଆଣିବାକୁ ବ୍ୟବସ୍ଥା ହେଉଛି । ମୋର ଆଉ କିଛି

କରିବାର ନାହିଁ । ମାନ୍ୟବର କେନ୍ଦ୍ରାପଡ଼ାର ସଭ୍ୟଙ୍କ ଏପରି କରିବାକୁ ଚାହେଁ, ଏହାର କାର୍ଯ୍ୟକାରିତାରେ କୌଣସି ଅସୁବିଧା ହେଲେ ତା'ର ପରିବର୍ତ୍ତନ କରିବା ବଡ଼ କଥା ନୁହେଁ ।

---

## ଜଗନ୍ନାଥ ମନ୍ଦିର ପରିଚାଳନା ସମ୍ପର୍କୀୟ ବିଧେୟକ

1-4-1968

ଜଗନ୍ନାଥ ଧାମ ଆମ ହିନ୍ଦୁ ଜଗତରେ ପ୍ରଧାନ ତୀର୍ଥ ହେଉ । ଜଗନ୍ନାଥ ଦେବାଳୟ ସମ୍ପର୍କରେ ଅନେକ ଯେଉଁ ଆଇନ ଆସିଛି ତାକୁ ତରବରିଆରେ ପାସ୍ କରିବାପାଇଁ ଯେଉଁ ଉଦ୍ୟମ ହେଉଛି ତା'ର ମୁଁ ଘୋର ନିନ୍ଦା କରୁଛି । ଆପଣ ଜାଣିଥିବେ ଆମର ଜଗନ୍ନାଥ ଦେବାଳୟ ସମ୍ପର୍କରେ ବା ଜଗନ୍ନାଥସ୍ୱାମୀଙ୍କ ସମ୍ପର୍କରେ ଯାହା ସବୁ ଘଟେ ତାହା ସମସ୍ତ ହିନ୍ଦୁ ଜଗତ ପାଇଁ ପ୍ରମୁଖ । କେଣ୍ଟି ସେ ଜଗନ୍ନାଥଦେବଙ୍କ ସମ୍ପର୍କରେ ପୁରାଣରେ ଯେଉଁ ବିଧାପଦ୍ଧତି ରହିଛି, ସେ ସମ୍ପର୍କରେ ଯେଉଁ କମିଟି ଇତ୍ୟାଦି ସରକାର କରିବାକୁ ଯାଉଛନ୍ତି ବା ପରିବର୍ତ୍ତନ କରିବାକୁ ଯାଉଛନ୍ତି ସେ ସମ୍ପର୍କରେ ଏତେ ଶୀଘ୍ର ଗୋଟିଏ Bill pass କରାଇ ଦେବା ଉଚିତ ହେବନାହିଁ ବୋଲି ମୁଁ କହୁଛି । ମୁଁ ଆଶା କରୁଛି ଏ ଗୃହର ସମସ୍ତ ସଭ୍ୟ ଏହା ସହିତ ଏକମତ ହେବେ ଯେ Bill ଗୁଡ଼ିକ ଏତେ ତରବରିଆରେ pass କରାଇ ଦେଲେ ଅଧିକା କ୍ଷତି ହେବା ସମ୍ଭାବନା ଅଛି, ସେଥିପାଇଁ ମୋର ପ୍ରସ୍ତାବ ଅନୁସାରେ ଜନସାଧାରଣଙ୍କ ମତାମତପାଇଁ ଏଠା ପଠାଯାଉ । ଏ Bill ରେ ଯାହାସବୁ କାର୍ଯ୍ୟ ସାଧିତ ହେବାର କଥା ମନ୍ତ୍ରୀ ମହୋଦୟ କହିଲେ ସେଥିରେ ଆଶଙ୍କା ହେଉଛି ତଦ୍ୱାରା ଅଧିକରୁ ଅଧିକ ଜଟିଳତା ସୃଷ୍ଟି କରିବ, ଯାହା ଫଳରେ ଦେବାଳୟର ପୂଜାପଦ୍ଧତି ଇତ୍ୟାଦିରେ ଘୋର ବ୍ୟାଘାତ ଘଟିବ । ବର୍ତ୍ତମାନ ଯେଉଁ ସବୁ ଜଟିଳତା ହେଉଛି ତାକୁ ଦୂର କରିବାକୁ ଯାଇ ମୋର ଆଶଙ୍କା ହେଉଛି ଏ Bill ଯଦି ଆଇନରେ ପରିଣତ ହୁଏ ତାହାହେଲେ ସେ ଜଟିଳତାକୁ ଆହୁରି ଅଧିକ ଜଟିଳତର କରିବ । Record-of-rights ସମ୍ପର୍କରେ ଏ Bill ରେ ଅଛି—

"15. B. (1) The Administrator may, on an application made in that behalf by any Sevak, other than the Raja of Puri, and after making an enquiry in the prescribed manner, make an order effecting any

change in any entry made in the Record-of-rights in all or any of the following grounds, namely:—"

Record-of-rights ବହୁଦିନ ଧରି କାହାର କି ଅଧିକାର ଅଛି ସେଥିରେ recorded ହୋଇ ରହିଛି । ଏପରି administration ଦ୍ୱାରା ତା'ର ପରିବର୍ତ୍ତନ କରିବା କେତେଦୂର ଯୁକ୍ତିସଙ୍ଗତ ମୁଁ ବୁଝିପାରୁ ନାହିଁ । ଏ ସଂପର୍କରେ Sub-Committee କୁ ଅପିଲ କରିବା ଏବଂ Administrative କୁ ଅପିଲ କରିବା ବ୍ୟବସ୍ଥା ରଖାଯାଇଛି । ଏପରି ବ୍ୟବସ୍ଥା ନ ରଖି ଅନ୍ୟ କିଛି ବ୍ୟବସ୍ଥା ରଖାଯାଇ ପାରନ୍ତା । ଯଦି Record-of-rights ରେ କିଛି ତ୍ରୁଟି ଦେଖାଦେଲା, ଯାହାର ଯଦି entry ହୋଇନାହିଁ ତାକୁ entry କରିବାପାଇଁ ବର୍ତ୍ତମାନ Record-of-rights ରେ ଯାହାସବୁ ତ୍ରୁଟି ରହିଛି ତାକୁ ସୁଧାରିବାପାଇଁ ଅନ୍ୟ କୌଣସି ବ୍ୟବସ୍ଥା କରାଯାଇଥିଲେ ଖୁବ୍ ଭଲ ହୁଅନ୍ତା । ଏ ପ୍ରସଙ୍ଗରେ ଅଛି, ସେହି Sub-Committee ରହିବ ସେଥିରେ 3 ଟି ସେବାୟତମାନଙ୍କର ପ୍ରତିନିଧି ରହିବେ । ଆପଣ ଜାଣନ୍ତି ସେବାୟତମାନଙ୍କ ମଧ୍ୟରେ ପ୍ରାୟ 36 ରୁ 40 ପ୍ରକାର ସେବାରେ ଅଛନ୍ତି । ଏମାନଙ୍କ ଭିତରୁ କାହିଁକି ଯେ ନିର୍ଦ୍ଦିଷ୍ଟ ସେବାୟତ କେବଳ ସେ Committee ରେ ରହିବେ ।

"3. (ii) (e) Three persons to be nominated by the State Government from among the Sevaks of the Temple belonging to the classes of Puja Pandas, Puspalakas and Pratiharis, one person being nominated from each class."

ଏହାଦ୍ୱାରା ସେବାୟତମାନଙ୍କ ମଧ୍ୟରେ ଅସନ୍ତୋଷ ବୃଦ୍ଧି ଜାତ ହୋଇବ । ବର୍ତ୍ତମାନ ସେହି କାର୍ଯ୍ୟ temple ଭିତରେ ସୁରୁଖ ରୂପରେ ହେଉଛି ସେଥିରେ ଗୁରୁତର ବ୍ୟାଘାତ ହୋଇପାରିବ । ତାହାଛଡ଼ା ସେ କମିଟିକୁ ୩ଜଣ ସଭ୍ୟ ସରକାର ପୁଣି nominate କରିବେ ।

*(f)* One person to be nominated by the State Government from among the Sevaks not belonging to any of the classes referred to in clause (e).

ସରକାର କାହିଁକି କରିବେ ? ସେବାୟତମାନଙ୍କ ମଧ୍ୟରେ ନିର୍ବାଚନ ସୂତ୍ରରେ ୩।୪ ଜଣ ସଭ୍ୟ ନେବା ବ୍ୟବସ୍ଥା ରହୁ । ସେବାୟତମାନେ ଯାହାକୁ nominate କରିବେ ବା elect କରିବେ ସେହିମାନଙ୍କୁ ନିଆଯାଉ । ଏହା ନ କଲେ ସରକାରଙ୍କ ହସ୍ତକ୍ଷେପ ମନ୍ଦିର ପରିଚାଳନା ଏବଂ ମନ୍ଦିରର ଆଭ୍ୟନ୍ତରୀଣ ବ୍ୟାପାରରେ କଲବଲିଆ ହେଉଛି । ତା'ପରେ ପୁଲିସ ହସ୍ତକ୍ଷେପ କଥା ମୋର ପୂର୍ବବର୍ତ୍ତୀ ବକ୍ତା ଶ୍ରୀ ବେଗୁନିଆର ସଭ୍ୟ କହିଛନ୍ତି ।

"30-B. Any police officer may arrest without a warrant any person who is committing or who is reasonably suspected to have committed any offence under this Act."

ଏଥିରେ ପୁଲିସକୁ ଅଧିକରୁ ଅଧିକ କ୍ଷମତା ଦିଆଯାଉଛି । ତାର ଫଳରେ ମନ୍ଦିରର ବିଶୃଙ୍ଖଳା ସୃଷ୍ଟି ହେବ । ପୁରୁଣାକାଳରୁ ଚାଲିଥିବା କାର୍ଯ୍ୟରେ ବ୍ୟାଘାତ ସୃଷ୍ଟି ହେବ । ମନ୍ଦିର କାର୍ଯ୍ୟ ସୁରୁଖୁରୁରେ ଚାଲିବା ପରିବର୍ତ୍ତେ ଜଟିଳତା ସୃଷ୍ଟି ହେବ ଏବଂ କାନୁନୀ କଟୁ ସମସ୍ୟା ଦେଖା ଦେଉଥିବ । ସେଥିପାଇଁ ଏ ପ୍ରସଙ୍ଗରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିବା ଉଚିତ୍ ।

ତା'ପରେ ରାଜାଙ୍କୁ ଅଧିକ କ୍ଷମତା ଦେବା କଥା ଏଥିରେ କୁହାଯାଇଛି—

"8-A.(1) Where the Raja of Puri claims for himself any right in addition to those recorded in the Record-of-rights he may make an application to the State Government in that behalf."

ରାଜା ଜଣେ ସେବାୟତ । ହୁଏତ ମୁଖ୍ୟ ସେବାୟତ ହୋଇ ପାରନ୍ତି । ତାଙ୍କୁ ଏତେ ଅଧିକ କ୍ଷମତା ଦେବା ଉଚିତ୍ ନୁହେଁ । ଯେଉଁ କ୍ଷମତା ରାଜାଙ୍କୁ ମିଳିବ ଅନ୍ୟାନ୍ୟ ସେବାୟତଙ୍କୁ ମଧ୍ୟ ସେ ସୁବିଧା ସୁଯୋଗ ମିଳିବା ଦରକାର । ଯଦି ସେପରି କରି ନ ହେବ ତାହାହେଲେ ରାଜାଙ୍କୁ ସେ ସବୁ ସୁବିଧାରୁ ବଞ୍ଚିତ କରିବା ଉଚିତ୍ । ଯାହା ହୋଇଛି ପୂର୍ବରୁ ମୁଁ ଜାଣେ ଯେଉଁ ସବୁ ସୁବିଧା ଦିଆଯାଇଛି ସେ ଦୃଷ୍ଟି ମତ ସେ ସବୁ ସୁବିଧାରୁ ତାଙ୍କୁ ବଞ୍ଚିତ କରିବା ଉଚିତ୍ । କାରଣ ସେ ରାଜା ହିସାବରେ ସେବାୟତର ଯେଉଁ ସବୁ ସୁବିଧା ସୁଯୋଗ, ପାଉଣା ଖେଇ ଭୋଗ୍ୟାଦି ପାଇବାର କଥା ସେତିକି ପାଇବାର ହକଦାର । ତା ବାହାରେ ଅନ୍ୟାନ୍ୟ କୌଣସି ସୁବିଧା ସେ ପାଇବା ଉଚିତ୍ ନୁହେଁ ।

ତା'ପରେ ଏ Billରେ ଯାତ୍ରୀ କରୁ Sub-Committee, କଥା କୁହାଯାଉ Finance Sub-Committee, ଜଳ Sub-Committee ଇତ୍ୟାଦି ରହିବ ରହିଛି । କିନ୍ତୁ ଯାତ୍ରୀଙ୍କର ଉନ୍ନତି ପାଇଁ କୌଣସି Sub-Committeeର ବ୍ୟବସ୍ଥା ନାହିଁ କି ମନ୍ଦିର Development Sub-Committee ଏ ୨ଟି ମୁଖ୍ୟ Committee କଥା ଏଥିରେ ଉଲ୍ଲେଖ ନାହିଁ । ଯେଉଁ ଯାତ୍ରୀମାନେ ଆସନ୍ତି ସେମାନେ ଯାତ୍ରୀ ନିବାସରେ କେଉଁଭଳି ସୁବିଧାରେ ରହିବେ ସେପରି development ପାଇଁ ଆମେ ଯଦି ଚିନ୍ତା ନ କରୁ ତାହାହେଲେ ମନ୍ଦିରର ଉନ୍ନତି ହୋଇପାରିବ ନାହିଁ । ଏଥିରେ Finance Sub-Committee, ଜଳ Sub-Committee, ରତ୍ନଭଣ୍ଡାର Sub-Committee ବିଷୟରେ ବ୍ୟବସ୍ଥା ରହିଛି । ଯାତ୍ରୀ ନିବାସ ନିମିତ୍ତ ପାଇଁ ଏବଂ ମନ୍ଦିରର development ପାଇଁ ୨ଟି Sub-Committee ରହିବା ଉଚିତ୍ । ଏହା ନ ହେଲେ ଅପର Sub-Committee ଗଠନ କରିବା ଉଦ୍ଦେଶ୍ୟ ଚରିତାର୍ଥ ହୋଇ ପାରିବ ନାହିଁ କିମ୍ବା ଏହାର ସଫଳତା ଲାଭ କରିପାରିବ ନାହିଁ ।

ଏହା ନ ରହିଲେ ଏ ସବ-କମିଟି ଗଠନ କରିବାର ଉଦ୍ଦେଶ୍ୟ ଚରିତାର୍ଥ ହୋଇପାରିବ ନାହିଁ କି ସଫଳତା ଲାଭ କରି ପାରିବ ନାହିଁ । ଏ ସବୁ ଦୃଷ୍ଟିରୁ ଅନ୍ତତଃ ଅନେକ କଥା ବିଶେଷ କରି record-of-rights ସମ୍ପର୍କରେ ଓ claims and privilege ସମ୍ପର୍କରେ ରହିଛି । ତା ସଙ୍ଗେ ସଙ୍ଗେ ମନ୍ତ୍ରୀ ମହାଶୟ କହିଲେ ଯେ Raja of Puriଙ୍କୁ right ଦିଆଯାଇଛି ସେ High Courtରେ ଅପିଲ କରିପାରିବେ । କିନ୍ତୁ ସାଧାରଣ ସେବାୟତମାନେ କୌଣସି Magistrateଙ୍କ ପାଖରେ ଦରଖାସ୍ତ କରିପାରିବେ । ଏ ତଫାତ୍ କାହିଁକି ରହିଲା ମୁଁ ବୁଝି ପାରୁ ନାହିଁ । ପୁରୀର ମହାରାଜା ଜଣେ ସେବାୟତ ହିସାବରେ High Court ଯିବାକୁ ତାଙ୍କୁ ଏ ଅଧିକାର ଦିଆଯାଇଛି । ଅନ୍ୟ ସେବାୟତମାନଙ୍କୁ ସେପରି ଅଧିକାର କାହିଁକି ଦିଆଯାଉ ନାହିଁ । ପୁରୀର ରାଜା ମୁଖ୍ୟ ସେବାୟତ ହିସାବରେ ତାଙ୍କର ଯାହା ପାଉଣା ପାଇବାର କଥା ତାହା ପାଇବା ଉଚିତ ଓ ଅନ୍ୟ ସେବାୟତମାନଙ୍କ ଭିତରେ ତଫାତ୍ ହେବା ଉଚିତ ନୁହେଁ । ତେଣୁ ମୋର ଦୃଢ଼ ମତ ଯେ ଏ ବିଲକୁ ତର-ବରିଆରେ ପାଶ ନକରି ଜନମତ ସଂଗ୍ରହ କରିବା ପାଇଁ ଏହାକୁ ପଠାଯାଉ । ତାହାହେଲେ କେନ୍ଦୁଝର ମାନ୍ୟବର ସଭ୍ୟ ଯାହା କହିଲେ ଏଥିରେ ସେବାୟତମାନେ ଅଛନ୍ତି ଓ ଯେଉଁ ଦେବ ଜନ୍ମ ସହିତ ଘନିଷ୍ଠ ଭାବରେ ସଂପୃକ୍ତ ଥିବା ବ୍ୟକ୍ତି ଅଛନ୍ତି ସେମାନଙ୍କ ମତାମତ ପ୍ରତି ଗୁରୁତ୍ୱ ଦିଆଯିବା ଉଚିତ । ସେମାନଙ୍କ ମତାମତକୁ ଛାଡ଼ି ଯଦି ଏ ଆଇନ ମୁଦ୍ରିତ ହେଲେ ଏ ଆଇନର ଉଦ୍ଦେଶ୍ୟ ସାଧିତ ହେବ ନାହିଁ । ତରବରିଆରେ ଏ ବିଲକୁ ପାଶ କଲେ ବିଲର ଉଦ୍ଦେଶ୍ୟ ସାଧିତ ହୋଇପାରିବ ନାହିଁ ।

## ମ୍ୟୁନିସିପାଲିଟି ଆଇନ ସଂପର୍କରେ ଆଲୋଚନା     4-4-1968

ଗତ ଦୁଇଦିନ ତଳେ ଆମର ଅର୍ବାନ ଡେଭଲପମେଣ୍ଟ ମନ୍ତ୍ରୀ ମହୋଦୟ ଉତ୍ତର ଦେଇ କହିଥିଲେ ମ୍ୟୁନିସିପାଲିଟି ଆଇନରେ ପରିବର୍ତ୍ତନ ଓ ପରିବର୍ଦ୍ଧନ କରି ଏକ ସଂଶୋଧକ ବିଲ ଅଣାଯାଉଛି । ପୁରୁଣା ଆଇନ 18ବର୍ଷ ତଳେ ହୋଇଥିଲା । କାର୍ଯ୍ୟକାରୀତାରେ ଉପଲବ୍ଧ ହୋଇଥିବା ଦୋଷତ୍ରୁଟିଗୁଡ଼ିକୁ ସୁଧାରିବାପାଇଁ ଏ ଆଇନରେ ବିଶେଷ ପରିବର୍ତ୍ତନ ଦରକାର ପଡୁଛି; କିନ୍ତୁ ସେ ଆଇନରେ ସେପରି କିଛି ଉଦ୍ୟମ ହୋଇନାହିଁ । ନିଜେ ମନ୍ତ୍ରୀ ମହୋଦୟ କହିଥିଲେ ବିହାର ଓଡ଼ିଶା ମ୍ୟୁନିସିପାଲିଟି ଆଇନ ଓ ମାଡ୍ରାଜ ଜିଲ୍ଲା ମ୍ୟୁନିସିପାଲିଟି ଆଇନରୁ ଏଠୁ କିଛି, ସେଠୁ କିଛି ନେଇ ଗୋଟିଏ ଆଇନ18ବର୍ଷ ତଳେ ହୋଇଥିଲା । Executive Officerମାନଙ୍କ ତାଙ୍କର conferenceରେ ଯେଉଁସବୁ ଦୋଷ ତ୍ରୁଟି ଦେଖାଇ ଦେବେ ସେସବୁକୁ ଦୃଷ୍ଟିରେ ରଖି ଯଦି ଏ ଆଇନର ପରିବର୍ତ୍ତନ କରାଯାଇଥାନ୍ତା ବା ଠୋ ଆଇନ ଅଣାଯାଇଥାନ୍ତା ତାହେଲେ ଓଡ଼ିଶା ସ୍ୱାୟତ୍ତଶାସନ ସଂସ୍ଥାମାନଙ୍କର ଉପକାର ହୋଇଥାନ୍ତା; କିନ୍ତୁ ତାହା ନ କରି ଯେଉଁ ସବୁ ଆଇନର ଦଫା ଅଛି ତା ଭିତରେ କିଛି କିଛି ସଂଶୋଧନ କରିଦେବା ଫଳରେ ଯେଉଁସବୁ ଅସୁବିଧା ହେଉଥିଲା ତାହା ଦୂର ହୋଇପାରିଲା ନାହିଁ । ମୁଁ ଆଗରୁ ଯାହା କହିଥିଲି ଏହି ସ୍ୱାୟତ୍ତଶାସନ ସଂସ୍ଥାକୁ ଅଧିକରୁ ଅଧିକ ସ୍ୱାତନ୍ତ୍ର୍ୟ ଦେବା ଉଚିତ । ତା ପରିବର୍ତ୍ତେ ଆଜି ତାଙ୍କର ସ୍ୱାତନ୍ତ୍ର୍ୟକୁ ହ୍ରାସ କରିଦିଆଯାଉଛି । ଏହା କରିବା ଦ୍ୱାରା କ୍ଷମତାର ବିକେନ୍ଦ୍ରୀକରଣ ଆଦୌ କରାଯାଉ ନାହିଁ । ଏସ ଗୋଟିଏ ଅଟୋନୋମସ୍ ସଂସ୍ଥା ଓ ଅନୁଷ୍ଠାନ ହେବା ଉଚିତ । ତାକୁ ଅଧିକରୁ ଅଧିକ କ୍ଷମତା ଦିଆଯିବା କଥା । ପାଶ୍ଚାତ୍ୟ ଦେଶମାନଙ୍କରେ ଯେଉଁସବୁ ମ୍ୟୁନିସିପାଲିଟି ଅଛି ତାଙ୍କ ଅଧୀନରେ ସେଠାରେ ଫାୟାର ବ୍ରିଗେଡ୍ ଅଛି । ସହରାଞ୍ଚଳର ଶାନ୍ତିଶୃଙ୍ଖଳାରକ୍ଷା କରିବାପାଇଁ ପୋଲିସ ରହିଛନ୍ତି । ଏପରିକି ବିଚାର କରିବାପାଇଁ ସେମାନେ ନିଜର ବିଚାରପତି ରଖିଥାନ୍ତି; କିନ୍ତୁ ବଡ଼ ଦୁଃଖର କଥା ଯେ ଇତିପୂର୍ବରୁ ମ୍ୟୁନିସିପାଲିଟି ଓ N.A.C ସବୁ ସ୍ୱାଧୀନତା ଉପଭୋଗ କରୁଥିଲେ ଓ ମ୍ୟୁନିସିପାଲିଟି ଚେୟାରମ୍ୟାନଙ୍କ କ୍ଷମତା ମଧ୍ୟ କାଟି ନିଆଯାଇଛି । ଏକଜିକ୍ୟୁଟିଭ୍ ଅଫିସର ହେଉଛନ୍ତି ସରକାରଙ୍କର ଜଣେ ଏଜେଣ୍ଟ । ଏମାନଙ୍କ କ୍ଷମତାକୁ ସଙ୍କୁଚିତ କରି ନିର୍ବାଚିତ ପ୍ରତିନିଧି ସଂସ୍ଥାକୁ ଅଧିକ କ୍ଷମତା ଦିଆଯିବା ଉଚିତ; କିନ୍ତୁ ଏକଜିକ୍ୟୁଟିଭ ଅଫିସରଙ୍କୁ ଏତେ କ୍ଷମତା ଦିଆଯାଇଛି ଯେ ମୋର ପୂର୍ବବର୍ତ୍ତୀ ବକ୍ତା ଯାହା କହିଗଲେ ପ୍ରତ୍ୟେକ କଥାରେ ତାଙ୍କର ଅର୍ଡର ଦରକାର ହେଉଛି, ଏପରିକି ପୂର୍ତ୍ତ ବିଭାଗ କାର୍ଯ୍ୟ ପାଇଁ ଯେଉଁ ପ୍ଲାନ ଓ ଏଷ୍ଟିମେଟ୍ ହେବ ତହିଁରେ ଏ ଅଫିସର ଅର୍ଡର ଦେବେ । ଏହା ନ କରି ଯେତେବେଳେ ଚେୟାରମ୍ୟାନ ହେଉଛନ୍ତି ନିର୍ବାଚିତ ସଂସ୍ଥାର ମୁଖ୍ୟ ସେତେବେଳେ ତାଙ୍କ ଉପରେ ଦାୟିତ୍ୱ ଦେବା କଥା । ଏପରି ଚେୟାରମ୍ୟାନଙ୍କ କ୍ଷମତା ବଢାଇ ଅଫିସରଙ୍କ କ୍ଷମତା ହ୍ରାସ କରିବା ଉଚିତ ।

5 ବର୍ଷକୁ 3 ବର୍ଷ ଯାହା କରାଯାଉଛି ମୁଁ ଏ ଦୃଷ୍ଟିରେ ବହୁ ମାନ୍ୟବର ସଭ୍ୟ କହିଲେଣି । ମ୍ୟୁନିସିପାଲିଟି ଆୟୁଷ 3ବର୍ଷ ଯାହା ହେଉଛି ତାକୁ ଯଦି ବସ୍ତୁର କରିବା ତା' ହେଲେ ଦେଖିବା ଯେ ବିଧାନ ସଭା ଓ ପାର୍ଲ୍ୟାମେଣ୍ଟ ଇତ୍ୟାଦି ଲୋକପ୍ରତିନିଧି ଅନୁଷ୍ଠାନ-ଗୁଡ଼ିକର ଆୟୁଷ ଯେତେବେଳେ 5ବର୍ଷ ରହୁଛି ସେତେବେଳେ ମ୍ୟୁନିସିପାଲିଟି ଓ N.A.C.ର ଆୟୁଷ 3ବର୍ଷର କାହିଁକି ହେଉଛି, ମୁଁ ବୁଝି ପାରୁନାହିଁ । ସେହିପରି ଏ ଗୃହରେ ମାନ୍ୟବର ସଭ୍ୟଙ୍କର ସ୍ୱଳ୍ପ ଶୁଣିଲି ପରେ ମଧ୍ୟ ସେହି 3ବର୍ଷ ଯାହା ମନ୍ତ୍ରୀ ମହୋଦୟ କହିଛନ୍ତି ତାହା ବାସ୍ତବିକ ଦୁଃଖଦାୟକ । 3ବର୍ଷ ରଖିଲେ ପ୍ରକୃତ ସୁବିଧା ବିଳମ୍ବ ହେବ ସେଥିରେ କିଛି କାର୍ଯ୍ୟ ହୋଇପାରିବ ନାହିଁ । 5ବର୍ଷ ଥିବାରୁ ସହରର ଉନ୍ନୟନ ଯୋଜନା ଯେପରି କାର୍ଯ୍ୟକାରୀ ହେଉଛି 3ବର୍ଷ କରାଗଲେ ତା, ଭିତରେ ସେହି ପ୍ରୋଗ୍ରାମ କାର୍ଯ୍ୟକାରୀ ହୋଇପାରିବ ନାହିଁ କି ସହରର ଉନ୍ନୟନ ଯୋଜନା କାର୍ଯ୍ୟକାରୀ ହୋଇପାରିବ ନାହିଁ । ସେଥିଯୋଗୁଁ 3ବର୍ଷ ନ କରି 5ବର୍ଷ କରିବା କଥା । ଅବଶ୍ୟ ମନ୍ତ୍ରୀ ଏ ମହୋଦୟଙ୍କ ଆମେରିକା ଗଭର୍ଣ୍ଣମେଣ୍ଟ ଓ ଯୁନାଇଟେଡ଼୍ କିଂଡମର ଉଦାହରଣ ଦେଇଛନ୍ତି । କହିଛନ୍ତି ଯେ ତାଙ୍କର 4ବର୍ଷ ପାଇଁ ଆୟୁଷ ରହିଛି । ବାସ୍ତବିକ ଗଣତନ୍ତ୍ର ଆମ ଦେଶରେ ଅଗ୍ରଗତି କରିବ ତାହା କରାଯାଇ ପାରେ; କିନ୍ତୁ ଆମର ଗଣତାନ୍ତ୍ରିକ ଶାସନରେ ଯେଉଁ ତ୍ରୁଟି ରହିଛି ସେଥିଯୋଗୁ 4ବର୍ଷ ବା 3ବର୍ଷ କରାଯିବା ଉଚିତ ନୁହେଁ । ବର୍ତ୍ତମାନ ଯାହା 5ବର୍ଷ ଅଛି ତାହାହିଁ ରହୁ । 3ବର୍ଷ ହେଲେ ଘୋର ଅସୁବିଧା ହେବ ।

ତା'ପରେ ଗୋଟିଏ Evaluation Organisationର ବ୍ୟବସ୍ଥା ହେଉଛି । ଟ୍ୟାକ୍ସର କଥା ଧାର୍ଯ୍ୟ କରିବାପାଇଁ ଓ ଏସେସ୍‌ମେଣ୍ଟ ଧାର୍ଯ୍ୟ କରିବାପାଇଁ ଏ ସଂସ୍ଥା କାହିଁକି ରଖାଯାଇଛି ଆମେ ବୁଝି ପାରୁନାହିଁ । ଏହା କରିବା ଦ୍ୱାରା କିଛି ମ୍ୟୁନିସିପାଲିଟି ଓ N.A.C. ଉପରେ ଅଧିକ ଭାର ପଡ଼ୁଛି । ଇଭାଲୁଏସନକୁ ବଢ଼ାଇବାକୁ ଏମାନେ କାହିଁକି ଟଙ୍କା ଦେବେ ମୁଁ ବୁଝିପାରୁନାହିଁ । ଯେଉଁ ଅବୈଧ ଯାହା ଟ୍ୟାକ୍ସ ହେବ ବା ଜମାଧର ହେଉଛି ତା'ପାଇଁ କିଛି ନିୟମ କରିଦେଲେ କିମ୍ବା ରୁଲ୍‌ସର କିଛି ବ୍ୟବସ୍ଥା କଲେ ଭଲ ହେବ କିମ୍ବା କେତେକ ଲୋକେ କିଛି ପ୍ରଣୟନ କରି ସେ ଅନୁସାରେ ବରଂ ମ୍ୟୁନିସି-ପାଲିଟି ଓ N.A.C. ମାନଙ୍କରେ ନିଜସ୍ୱ ଧାର୍ଯ୍ୟ କଲେ ଅସୁବିଧା ହେବନାହିଁ । ବର୍ତ୍ତମାନ୍ ଅସୁବିଧା ଯାହା ହେଉଛି ତାହା ଆଉ ହେବ ନାହିଁ ! କପରି ଘରର ଘରେ ଭାଲ୍ୟୁଏସନ ହେବ ତାକୁ ଯଦି ନିୟମରେ ଫିକ୍ସ କରି ଦିଆଯାଏ ତାହାହେଲେ ସେ ଅସୁବିଧାର ସମ୍ମୁଖୀନ ହେବାକୁ ଆଉ ପଡ଼ିବ ନାହିଁ । ଯେ ନିଜ ଘରେ ରହୁଛି ସେଥିପାଇଁ ତା' ଘରକୁ କେତେ କରାଯିବ ଓ ଯେ ଘରକୁ ଭଡ଼ା ଦେଇଛି ତା ଘରପାଇଁ କେତେ ଟ୍ୟାକ୍ସ ଫିକ୍ସେସନ ହେବ ସେ ବିଷୟରେ ମଧ୍ୟ ବ୍ୟବସ୍ଥା ନିୟମରେ ରହିବା ଉଚିତ । ତାହାହେଲେ କେଉଁକରେ

ଅଡରକ୍ତ ଷ୍ଟାକ୍‌ଚ ବସାଯିବାରୁ ଯେଉଁ ଅବସ୍ଥା ହେଲ ତାହା ଆପଣ ସ୍ପଷ୍ଟ ଭାବରେ ଜାଣନ୍ତି । ସେଥିପାଇଁ ନୀତ ନିୟମ ପ୍ରଣୟନ କରିଦେଲେ ସବୁ ମ୍ୟୁନିସିପାଲିଟି ଓ N.A.C.ରେ ଗୋଟିଏ ନିୟମ ଲାଗୁ ହେବ । କଟକର ମ୍ୟୁନିସିପାଲିଟିରେ ଏବେ ଯେଉଁ ଅବସ୍ଥା ହେଲ ଅନ୍ୟଠି ହେବ ନାହିଁ ।

ଏ ଆଇନର ଅନ୍ତରେ ଅତ୍ୟନ୍ତ ଅନେକଗୁଡ଼ିଏ ଦଫା ଅଛି ଯାହାକୁ କି ହଟାଇ ଦେବା ଦରକାର ଓ କେତେକ ନୂଆ ଦଫା ଯୋଡ଼ିବା ଉଚିତ୍ । ଯଦ୍ଵାରା କି କାଉନସିଲ ହାତକୁ ତଥା ଚେୟାରମ୍ୟାନଙ୍କ ହାତକୁ ଅଧିକ କ୍ଷମତା ଆସିବ । ଏକଜିକ୍ୟୁଟିଭ୍ ଅଫିସରଙ୍କ କ୍ଷମତା ସେପରି କମିବ ସେଥିପାଇଁ ଆମକୁ ବ୍ୟବସ୍ଥା କରିବାକୁ ହେବ । ସର୍ବୋପରି ମ୍ୟୁନିସିପାଲିଟିର କର୍ମଚାରୀମାନଙ୍କପାଇଁ ଗୋଟିଏ All Orissa Local Fund Service ଗଠନ କରିବା ଉଚିତ ତା'ହେଲେ ବିଭିନ୍ନ ମ୍ୟୁନିସିପାଲିଟି ଭିତରେ ତାଙ୍କର ଅଦଳ ବଦଳ ତ ହୋଇପାରିବ । ଧରନ୍ତୁ କେଉଁଠି ଏକାଉଣ୍ଟାଣ୍ଟ କିଏ ଅଛନ୍ତି କିମ୍ବା ବରହମପୁରଠାରେ ଏ ସଂସ୍ଥାରେ ଯେପରି ମ୍ୟାନେଜର ଅଛନ୍ତି ଓ ସେ ଏକାଉଣ୍ଟସ୍‌ ମୁଖ୍ୟ ହୋଇ ରହିଛନ୍ତି ସେ ଲୋକଙ୍କ ସେଇଠାରେ ଶେଷରେ ପହଞ୍ଚିଲା ପରେ ତାଙ୍କପାଇଁ ଆଉ କିଛି ଉନ୍ନତିର ଆଶା ନାହିଁ । ତେଣୁ କାମ କରିବାକୁ ଯେଉଁ ଉତ୍ସାହ ଆସିବା କଥା ତାହା ଆସିପାରୁ ନାହିଁ । ଯେଣୁ ସେ ଗୋଟିଏ ଛୋଟ ମ୍ୟୁନିସିପାଲିଟିରେ ଭଲ କାମ କଲା ତା'ହେଲେ ଗୋଟିଏ ବଡ଼ ମ୍ୟୁନିସି-ପାଲିଟିକୁ ତାକୁ ତା'ର ପଦୋନ୍ନତି କରି ପଠାଇଲେ କାମ କରିବାକୁ ତା'ର ଉତ୍ସାହ ଆସିବ । ଯଦ୍ଵାରା ଏ ସଂସ୍ଥାର ଉନ୍ନତି ହେବ । ତେଣୁ All Orissa Local Fund Service ଗୋଟିଏ ରହୁ । ତା'ଛଡ଼ା ଯେଉଁ ସରକାରୀ ଏକ୍ଜିକ୍ୟୁଟିଭ୍ ଅଫିସର, ହେଲ୍‌ଥ ଅଫିସର, ଇତ୍ୟାଦି ମ୍ୟୁନିସିପାଲିଟିକୁ ଯାଉଛନ୍ତି ଓ ସରକାର ଯାହାଙ୍କୁ ପଠାଉଛନ୍ତି ବିଶେଷ କରି ଆସିଷ୍ଟାଣ୍ଟ ଇଞ୍ଜିନିଅର ଏମାନଙ୍କପାଇଁ ଗୋଟିଏ କ୍ୟାଡ଼ର ସୃଷ୍ଟି ହେଉ । ଏମାନେ 5ବର୍ଷ-ପାଇଁ ଯାଉଛନ୍ତି ଓ ପେନ୍‌ସନ ଆଲାଉନ୍ସ ପାଉଛନ୍ତି । 5ବର୍ଷ ପରେ ସରକାରଙ୍କୁ ଫେରି ଆସିବା ଦ୍ଵାରା ମ୍ୟୁନିସିପାଲିଟି କାର୍ଯ୍ୟ ଭଲ ହୋଇପାରୁ ନାହିଁ । ଏହି All Orissa Local Fund Service ସୃଷ୍ଟି ହେଲେ ସରକାରୀ କର୍ମଚାରୀ ଭଳି ସେମାନଙ୍କର ବିଭିନ୍ନ ମ୍ୟୁନିସିପାଲିଟି ଭିତରେ ଅଦଳ ବଦଳ ହୋଇପାରିବ । ତା'ଛଡ଼ା ଏ ବ୍ୟବସ୍ଥା ଆଇନରେ ରହିଲେ ଇଞ୍ଜିନିୟର, ଓଭରସିଅରମାନଙ୍କ ଭିତରେ ଯେଉଁ ବେକାର ସମସ୍ୟା ଦେଖାଦେଇଛି ତାଙ୍କୁ ସିଧାସଳଖ ଏ ସର୍ଭିସରେ ରିକ୍ରୁଟ୍ କରାଗଲେ ବେକାର ସମସ୍ୟା କିଛିଟା ପରିମାଣରେ ହ୍ରାସ ପାଇବ ।

ବର୍ତ୍ତମାନ ଆଲୋଚନା ହେଉଛି ଯେ ଏହା ସାଞ୍ଚ କମିଟିକୁ ଯାଉ । ସାଞ୍ଚ କମିଟି ବିଭିନ୍ନ ସ୍ଵାୟତ୍ତଶାସନ ଅନୁଷ୍ଠାନଙ୍କର ମତାମତ ନେଇ ଏଠା ଆଇନରେ ଆବଶ୍ୟକୀୟ ସଂଶୋଧନ କଲେ

ଭଲ ହେବ । ତା'ଛଡ଼ା ଆହୁରି ଅନେକ ଅନୁଷ୍ଠାନ ବିଭିନ୍ନ ଜିଲ୍ଲାରେ ରହିଛି ସେଗୁଡ଼ିକ ମଧ୍ୟ ଏ ବିଲ୍ ସଂପର୍କରେ ସେମାନଙ୍କର ମତାମତ ଦେଇପାରନ୍ତେ । ସେ ଅନୁସାରେ ଏ ବିଲରେ ପରିବର୍ତ୍ତନ କଲେ ଭଲ ହେବ । ତା'ଛଡ଼ା ଅନେକ ଅଭିଜ୍ଞ ଲୋକ ଅଛନ୍ତି ସେମାନେ ନିଜର ମତାମତ ଦେଇ ଏହି ବିଷୟରେ ଆଲୋଚନା କରିପାରନ୍ତେ । ସେ ଦୃଷ୍ଟିରୁ ଏହାକୁ କିଛି ସମୟ ଦେଇ ବିଭିନ୍ନ ପବ୍ଲିକ୍ ସଂସ୍ଥା ଓ ବିଭିନ୍ନ ସଂସ୍ଥାର ମତାମତ ନେଇ ଏହାକୁ ଆମେ ପରିପୁଷ୍ଟ କରିପାରନ୍ତା । ଏଣୁ ମୋର କହିବାର କଥା ଏ ବିଲ୍‌କୁ ତରବରରେ ପାଶ୍ ନ କରି ଏହାକୁ ସମୟ ଦେଇ ଆଇନର ତ୍ରୁଟି ସବୁ ଦୂର କରି ଏ ଆଇନକୁ ଏକ ପୂର୍ଣ୍ଣାଙ୍ଗ ଆଇନରେ ପରିଣତ କଲେ ଭଲ ହେବ ।

ବହୁ କଂଗ୍ରେସ କର୍ମୀ ମାନବିକତା ଦୃଷ୍ଟିରୁ ବିଚାର କରିବାପାଇଁ ଶିଳ୍ପ ମନ୍ତ୍ରୀଙ୍କୁ ଅନୁରୋଧ କରିଛନ୍ତି । ମୁଁ ମଧ୍ୟ ଆପଣଙ୍କ ଜରିଆରେ ସେଇ ମାନବିକତା ଦୃଷ୍ଟିକୋଣରୁ ବିଚାର କରିବାକୁ ଶିଳ୍ପ ମନ୍ତ୍ରୀଙ୍କୁ କହୁଛି । ମୁଁ ଜାଣେ ଆମେ ଯେଉଁସବୁ ଅବତାରଣା କରୁଛୁ ତା' ସେ ବିଷୟବସ୍ତୁକୁ ନେଇ ଆଇନ ଦେଖାଇ ଖଣ୍ଡନ କରିବେ ଏବଂ ସରକାର ଯାହା step ନେଇଛନ୍ତି ତା'ର ଯଥାର୍ଥତା ପ୍ରତିପାଦିତ କରିବେ । କିନ୍ତୁ ମୁଖ୍ୟମନ୍ତ୍ରୀ ଯେଉଁ କଥାଟି ସବୁବେଳେ କହୁଥାନ୍ତି ମୁଁ ଶିଳ୍ପ ମନ୍ତ୍ରୀଙ୍କୁ ସେଇ ଦୃଷ୍ଟିରୁ ଅର୍ଥାତ ବାସ୍ତବତା ଦୃଷ୍ଟିରୁ ବାସ୍ତବ ପରିସ୍ଥିତି ଦୃଷ୍ଟିରୁ ଏହାକୁ ବିଚାର କରନ୍ତୁ ବୋଲି ମୁଁ ଶିଳ୍ପ ମନ୍ତ୍ରୀଙ୍କୁ କହିବି । ବର୍ତ୍ତମାନ ଯୁଗରେ ବେକାର ସମସ୍ୟା ବଡ଼ ଉତ୍କଟ ଆକାର ଧାରଣ କଲଣି । ତାକୁ ଆହୁରି ଉତ୍କଟତର କଲେ ଅବସ୍ଥା ଆହୁରି ଜଟିଳ ହେବ । ଯେଉଁ ଲୋକମାନେ 10/15 ବର୍ଷ କାମ କଲେଣି ସେମାନଙ୍କୁ ଛଟେଇ ଯଦି କରାଯାଏ ତା' ହେଲେ ସେମାନେ ଅନ୍ୟ କୌଣସି କ୍ଷେତ୍ରରେ କର୍ମସଂସ୍ଥାନ ପାଇବେ ନାହିଁ । ମାନବିକତା ଦୃଷ୍ଟିକୋଣରୁ ଏହାକୁ ବିଚାର କରିବା ଉଚିତ । ଯେତେବେଳେ ଶିଳ୍ପ ମନ୍ତ୍ରୀ ଋଣ ଦେବା କଥା କହୁଥିଲେ, ଆମ୍ଭମାନେ ଭାବୁଥିଲୁ ପୁନର୍ଗଠନ ନ ହେବାକୁ ସରକାର ଏହା ଋଣ ପୁଣି ଏହାର ପୁନର୍ଗଠନ ପାଇଁ ବ୍ୟବସ୍ଥା କରିବେ । ଶାସନଗତ ଯେଉଁ ତ୍ରୁଟି ବା ଅସୁବିଧା ରହିଛି ନୂଆ କରି ବୋର୍ଡ ପୁନର୍ଗଠନ କଲାବେଳେ ତା'ଦୂର କରିବେ । କିନ୍ତୁ ସେଇ ଖଦୀସଂସ୍ଥା ରହିବ । ବର୍ତ୍ତମାନ ଯାହା ଦେଖୁଛୁ ସେଥିରେ ଆମକୁ ହତାଶ ହେବାକୁ ପଡ଼ୁଛି । କୁଟୀର ଶିଳ୍ପକୁ କ୍ଷୁଦ୍ରଶିଳ୍ପ, ଗୋଟିଏ ରାଜ୍ୟର କଥା ନୁହେଁ । ଏହାର ଗୁରୁତ୍ୱ ଅର୍ଥନୀତି ଉପରେ ଯଥେଷ୍ଟ ରହିଛି । ଏଇ ଗୁରୁତ୍ୱକୁ ଏକ କଲମଗାରରେ କାଟିଦେଲେ ହେବ ନାହିଁ । 40/50 ହଜାର ଲୋକଙ୍କୁ ବେକାର କରିବା ଠିକ୍ ହେବ ନାହିଁ । ଯେଉଁଠି ତ୍ରୁଟି ଦେଖା ଦେଉଛି ତାକୁ ସୁଧାରି ସଂସ୍ଥାଟିକୁ ଯେପରି ଅଧିକ ସୁପରିଚାଳିତ ହେବ, ଅଧିକ ଲାଭଜନକ ହେବ, ତା' କଲେ ଭଲ ହୁଅନ୍ତା । କିନ୍ତୁ ମୁଁ ଦେଖିବି ସେଗ ବଢ଼ିମଭଳ ତ୍ରୁଟିକୁ ଦୂର ନ କରି ସଂସ୍ଥାଟିକୁ ସରକାର ଭାଙ୍ଗି ଦେବାକୁ ଯାଉଛନ୍ତି । ଖଦୀବୋର୍ଡ

କେବଳ ଓଡ଼ିଶା ରାଜ୍ୟର ସଂସ୍ଥା ନୁହେଁ, ଏହା ଏକ ଆନ୍ତଃରାଜ୍ୟୀୟ ସଂସ୍ଥା । ଏହାକୁ ଆମେ ନ ଭୁଲି ଯଦି ସଜାଡ଼ି ନେଇ ଚଳାଇ ହେଉଥିଲା ଆମେ ସାରା ଭାରତରେ ଆଦର୍ଶ ସ୍ଥାନୀୟ ହେବୁ । ବର୍ତ୍ତମାନ ପରିସ୍ଥିତିରେ ସରକାର ଯଦି ଦେଖୁଛନ୍ତି ଏହାର ସୁପରିଚାଳନା ହୋଇପାରୁ ନାହିଁ । ମୁଁ କହିବି ସରକାର ଏହି ସଂସ୍ଥାକୁ ନିଜ ଦାୟିତ୍ୱକୁ ନେଇ ଏହାର ସୁପରିଚାଳନା କରନ୍ତୁ ଏବଂ ଅନ୍ୟାନ୍ୟ ରାଜ୍ୟ ପକ୍ଷରେ ଆମ ରାଜ୍ୟ ଆଦର୍ଶସ୍ଥାନୀୟ ହେଉ । ଆପଣଙ୍କ ଜରିଆରେ ଶିଳ୍ପ ମନ୍ତ୍ରୀଙ୍କୁ ମୁଁ ଏହି ଅନୁରୋଧ କରିବି । ବରହମପୁରଠାରେ ଶିଳ୍ପ ମନ୍ତ୍ରୀଙ୍କ ସହିତ ଯେଉଁ ବୈଠକରେ କଥାବାର୍ତ୍ତା ହୋଇଥିଲା ସେଥିରେ ସ୍ପଷ୍ଟ ହୋଇ ନ ଥିଲା ଯେ ଏହାକୁ ସେ କୌଣସି ବେସରକାରୀ ସଂସ୍ଥାକୁ ଦେବେ, କର୍ମଚାରୀମାନଙ୍କୁ ଚାକିରିରୁ ଅନ୍ତର କରି-ଦେବେ । ଆମ୍ଭମାନେ ଶୁଣିଥିଲୁ ଯେ ଏହା ହୋଇଥିଲେ ଶ୍ରମ କର୍ମଚାରୀଙ୍କ ସହିତ କଥାବାର୍ତ୍ତା ହୋଇ ସ୍ଥିର କରି ଆସିଥିବେ ଏହି ସଂସ୍ଥା କିପରି ଚାଲିବ । ଆଲୋଚନା କରିବାପରେ ଏ ସଂସ୍ଥା ଚାଲୁ ରହିବା ଦିଗରେ ବ୍ୟବସ୍ଥା କରିବେ ବୋଲି ମୁଁ ଭାବିଥିଲି । ଶିଳ୍ପ ମନ୍ତ୍ରୀଙ୍କର ଗୃହ ଆଗରେ କର୍ମଚାରୀମାନେ ବିକ୍ଷୋଭ ପ୍ରଦର୍ଶନ କରୁଛନ୍ତି ଏବଂ ଅନଶନ କରୁଛନ୍ତି ବୋଲି ମନରେ କ୍ରୋଧ ରଖି ଯଦି ତାଙ୍କ ଉପରେ [illegible] କରିବାକୁ ଯାଉଛନ୍ତି ମୁଁ ଅନୁରୋଧ କରିବି ସେପରି କରନ୍ତୁ ନାହିଁ । କର୍ମଚାରୀମାନେ ଅନ୍ୟ କୌଣସି ଉପାୟ ନ ପାଇ ଅଗତ୍ୟା ଅବଲମ୍ବନ କରିଛନ୍ତି ଏହା କରିବାପାଇଁ ବାଧ୍ୟ ହେଉଛନ୍ତି । ଅନଶନ କରିବାଟା ଆନନ୍ଦ-ଦାୟକ ନୁହେଁ କି ଖରା ବା ବର୍ଷା, ଶୀତ କାକର ତଳେ ବସି ରହିବା ଆରାମଦାୟକ ନୁହେଁ । ସେମାନଙ୍କୁ ସେପରି ବାଧ୍ୟତା ହେତୁ ବଞ୍ଚି ରହିବାର ଅନ୍ୟ କୌଣସି ଉପାୟ ନ ଦେଖି ଏହା କରୁଛନ୍ତି । ତେଣୁ, ମାନବିକତା ଦୃଷ୍ଟିରୁ ସରକାର ଏହା ବିଚାର କରନ୍ତୁ ଏବଂ ଓଡ଼ିଶା କୁଟୀର ଶିଳ୍ପକୁ ଆଦର୍ଶ ସ୍ଥାନୀୟ କରିବାପାଇଁ ଯଦି ନିୟନ୍ତ୍ରଣ କରିବାପାଇଁ ଚାହୁଁଛନ୍ତି ପରାମର୍ଶଦାତା କମିଟି କରନ୍ତୁ ବା ବୋର୍ଡ କରନ୍ତୁ ଯାହା କିଛି କରି ଏହାର ସୁପରିଚାଳନା କରନ୍ତୁ ।

## ଦରଦାମ ନିୟନ୍ତ୍ରଣ

(26-6-1967)

ନିର୍ବାଚନ ସମୟରେ ବର୍ତ୍ତମାନ ଶାସନରେ ଥିବା ଦୁଇଟି ଦଳ ଜନସାଧାରଣଙ୍କୁ ପ୍ରତିଶ୍ରୁତି ଦେଇଥିଲେ ଯେ ଜିନିଷପତ୍ରର ଦରଦାମ ନିଶ୍ଚୟ କମାଇବେ । ମୁଁ ତାଙ୍କୁ ଆହ୍ୱାନ କରୁଛି ଯେ ସେମାନେ ଦରଦାମ କମାନ୍ତୁ । ଯଦି ଦରଦାମ କମାଇବାରେ ସେମାନେ ଅସମର୍ଥ ହୁଅନ୍ତି ତାହାହେଲେ ନିର୍ବାଚନ ସମୟରେ ସେମାନେ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ତାକୁ ପାଳନ କରିପାରୁ ନାହାନ୍ତି ବରଂ ସେ ସମୟରେ ଲୋକଙ୍କୁ ସେମାନେ ଠକିବାକୁ ଚେଷ୍ଟା କରିଛନ୍ତି । ବର୍ତ୍ତମାନ ସାଧାରଣ ମଧ୍ୟବିତ୍ତ ପରିବାର ଏବଂ ନିମ୍ନ

ମଧ୍ୟବିତ୍ତ ପରିବାରର ଲୋକେ ଖାଇବାକୁ ନ ପାଇ ହନ୍ତସନ୍ତ ହେଉଛନ୍ତି ଓ ନାନା ଅସୁବିଧାର ସମ୍ମୁଖୀନ ହେଉଛନ୍ତି । ତାକୁ ନିରାକରଣ କରିବା ଉପାୟ ସରକାରଙ୍କ ହାତରେ ଅଛି । ଏ ସମ୍ପର୍କରେ ମୁଁ ଗୋଟିଏ ଉଦାହରଣ ଦେବି । ମାନ୍ଦ୍ରାଜ ସରକାର ଏ ଦିଗରେ କାର୍ଯ୍ୟ କରିବାପାଇଁ ତତ୍ପର ହେଲେ ଏବଂ ସେତେବେଳେ ଯାଏ ଚାଉଳ ଦର ସେମାନେ କମାଇ ନ ଥିଲେ ମନ୍ତ୍ରୀମଣ୍ଡଳର ସଭ୍ୟମାନେ ଦରମା ନେଲେ ନାହିଁ । ସେମାନେ ପଣ କରିଥିଲେ ଯେ ଚାଉଳ ଦର ନିଶ୍ଚୟ କମାଇବେ ଏବଂ କମାଇଲେ, ଏହିପରି କିଛି ଗୋଟିଏ ପଣ ଏ ମନ୍ତ୍ରୀମଣ୍ଡଳ ନିଅନ୍ତୁ, ଯେପରିକି ଅତି ଚଞ୍ଚଳ ବଢ଼ି ଯାଉଥିବା ଦରଦାମକୁ କମାଇବେ । ଏ ଦରଦାମ୍ ବଢ଼ିବା ସମ୍ପର୍କରେ ବହୁ ମାନ୍ୟବର ସଭ୍ୟ କେନ୍ଦ୍ର ସରକାରଙ୍କ ଉପରେ ଦୋଷାରୋପ କରୁଛନ୍ତି । ମୁଁ ମାନୁଛି inflation ଓ devaluation ଯୋଗୁ ଦରଦାମ ବଢ଼ିଛି । କିନ୍ତୁ ମୁଁ ଗୋଟିଏ କଥା ପଚାରିବାକୁ ଚାହେଁ ଯେ, ଯେତେବେଳେ ନୂତନ ମନ୍ତ୍ରିମଣ୍ଡଳ ଗାଦିନସୀନ ହେଲେ ସେଦିନଠାରୁ inflation ଯୋଗୁଁ ଓ devaluation ଯୋଗୁ ଜିନିଷର ଦାମ କେତେ ବଢ଼ିଛି ତା'ର ହିସାବ ନେଇଛନ୍ତି କି? ମୁଁ କହିବି ଏ ମନ୍ତ୍ରିମଣ୍ଡଳ ତାଙ୍କ କର୍ତ୍ତବ୍ୟ ପ୍ରତିପାଳନ ନ କରିବାରୁ ଆଜି ମହାଜନ୍‌ଦୋକାନୀ-ମାନେ ଦରଦାମ୍ ବଢ଼ାଇବାରେ ଲାଗିଛନ୍ତି । ଏ ଗୃହରେ ଯେତେବେଳେ ଦରଦାମ ବିଷୟ ପଡ଼ୁଛି, ମୁଁ ଖବର ପାଇଲି ଯେ, ବରହମପୁର Railway Stationରୁ 150 ବସ୍ତା ମୁଗ, ବିରି ଅନ୍ୟତ୍ର ଯାଉଛି । ଯେତେବେଳେ ଏ ଗୃହରେ ଦରଦାମ୍ ବିଷୟରେ ଆଲୋଚନା ହେଉଛି ସେତେବେଳେ ବାହାରକୁ ଏ ମୁଗ, ବିରି କାହିଁକି ପଠାଗଲା ବୋଲି ମୁଁ ପ୍ରଶ୍ନ କରୁଛି । ଯେତେବେଳେ ଆମ ରାଜ୍ୟରେ ମୁଗ, ବିରିର ଅଭାବ ରହୁଛି ସେତେବେଳେ ସେ ସବୁ ବାହାରକୁ ପଠାଇବା ଅର୍ଥ ଦରଦାମ୍ ଅଧିକ କରିବା ନୁହେଁ କି ? ସେହିପରି ଚାଉଳ ଓ ଅନ୍ୟାନ୍ୟ ଅତ୍ୟାବଶ୍ୟକୀୟ ଜିନିଷର ଦର କଠୋର ଭାବରେ ନିୟନ୍ତ୍ରଣ କରିବାକୁ ହେବ । ଚାଷୀ ଯେପରି ପଇସା ପାଇବ ସେଥିପ୍ରତି ଦୃଷ୍ଟି ଦେବାକୁ ହେବ ।

ବଙ୍ଗଳାର ଚାଉଳ ଦର ଓ ଆମ ରାଜ୍ୟର ଚାଉଳ ଦର ଭିତରେ ବିଶେଷ ପାର୍ଥକ୍ୟ ଥିବାରୁ ବାଲେଶ୍ୱର ବାଟେ ଆମ ଧାନ ଚାଉଳ ଅବାଧିତ ଭାବରେ ବଙ୍ଗଳାକୁ ଚାଲିଯାଉଛି । ଏହାକୁ ରୋକିବା ଆମର କର୍ତ୍ତବ୍ୟ । ମୁଁ ପ୍ରସ୍ତାବ କରୁଛି ଯେ, ଆମର ଦୁଇଟି O. M. P. ଓ୍ୱାଗନକୁ ନେଇ ଆମ borderକୁ ସିଲ୍ କରିଦେବା ଦରକାର । ଏପରିକି borderବାଟେ ମହାଜନ୍‌ଦୋକାନୀମାନେ ଓ ଚୋରାବଜାରୀମାନେ ଜିନିଷପତ୍ର ପଠାଇପାରିବେ ନାହିଁ । ଆମର ଯେଉଁ wholesale dealer ଅଛନ୍ତି ସେମାନେ ହରଡ଼ ଡାଲି ଓ ତେଲ ବାହାରୁ ଆଣିବାରେ କାରବାର କରୁଛନ୍ତି । ମୁଁ ବରହମପୁରରୁ ଖବର ରଖିଛି ଯେ, wholesale dealer-ମାନେ ଗୋଟିଏ rateରେ କିଣନ୍ତି ଓ ଆଉ ଗୋଟିଏ ରେଟ୍‌ରେ ରସିଦ୍ ଦେଉଛନ୍ତି ।

ଉଦାହରଣ ସ୍ୱରୂପ ସେମାନେ ହରଡ଼ ଡାଲି K. g. ଟ 1·60 ରେ କିଣି ବଟେଇ ଡିଲର ମାନଙ୍କୁ ଟ 1·80ରେ ନେବାକୁ ବାଧ୍ୟ କରୁଛନ୍ତି । ସେଇ ଦରରେ ବସ୍ତା ବସ୍ତା ହରଡ଼ ଡାଲି ରିଟେଲ ଡିଲରମାନେ ନେଉଛନ୍ତି ଏବଂ ଖାଉଟିମାନଙ୍କୁ ଟ 1·80ରେ ଅଉ 20 ପଇସା ମିଶାଇ ଟ 2 ଦରରେ ବିକୁଛନ୍ତି । ଏଇ wholesaler ମାନଙ୍କୁ ଯଦି କଡ଼ା କରା ନ ଯାଏ ତା'ହେଲେ ଆମେ ଦରଦାମ୍ ବୃଦ୍ଧିକୁ ରୋକିପାରିବା ନାହିଁ । ମୁଁ ମାନୁଛି ଯେ control commodities control shopରେ ଅଧିକ ଦରରେ ବିକ୍ରି ହେଉ ନାହିଁ । ସେଇଠି control shop ଅଛି ଯେଉଁଠି ନିର୍ଦ୍ଧାରିତ ଦରରେ ବିକ୍ରୀ ହେଉଛି; କିନ୍ତୁ ଅନେକ ସମୟରେ ଦେଖା ଯାଉଛି ଯେ fair price shopରେ ଜିନିଷ ମିଳୁ ନ ଥିବାବେଳେ କଳା ବଜାରରେ ବହୁତ ଜିନିଷ ମିଳୁଛି । ଅବାରିତ ଭାବରେ ଯେଉଁସବୁ permit issue ହେଉଛି ସେ ସବୁ permitରେ ଜିନିଷ ନ ନେଇ ବେପାରୀଙ୍କୁ ବିକୁଛନ୍ତି ଏବଂ କଳାବଜାରରେ ସେସବୁ ଅତ୍ୟଧିକ ଦରରେ ବିକ୍ରି ହେଉଛି । ଚିନି ଓ ଗହମଜାତ ଦ୍ରବ୍ୟ ପ୍ରଚୁର ପରିମାଣରେ କଳାବଜାରରେ ମିଳୁଛି । ଏ ସବୁକୁ ଯଦି ଆମେ ଚେକ୍ ନ କରିବା ତା'ହେଲେ ଅନ୍ୟକୁ ଦୋଷାରୋପ କରିବାରେ ଓ କେନ୍ଦ୍ର ଉପରେ ଦାୟିତ୍ୱ ପକାଇବାରେ କିଛି ଲାଭ ହେବ ନାହିଁ । ସେଥିପାଇଁ ମୋର ନିବେଦନ ସରକାର ଏଥିରେ ଟିକିଏ ତତ୍ପର ହୁଅନ୍ତୁ ଏବଂ ଖାମଖିଆଲ ଭାବରେ ବୃଦ୍ଧି ନ କରି ଯେପରି ଦରଦାମ୍ କମିବ ସେ ଦିଗରେ ଚେଷ୍ଟା କରନ୍ତୁ ।

## ଅତ୍ୟାବଶ୍ୟକ ସାମଗ୍ରୀ ଆଇନ ଓ ଡ୍ରଗ୍ ନିୟନ୍ତ୍ରଣ ଆଇନ
## (10-4-1975)

ଏ ମୁଦ୍ଦର ଦୁଇଜଣ ମାନ୍ୟବର ସଭ୍ୟ ଏ ବିଲ୍‌ର ଆଲୋଚନାରେ ଅଂଶ ଗ୍ରହଣ କରି ଯେଉଁ ଉପାଦେୟ ପରାମର୍ଶ ଦେଇଛନ୍ତି ସେଥିପାଇଁ ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଛି । ଯେହେତୁ ଏହି ବିଲ୍ ଯାଞ୍ଚ କମିଟିକୁ ଯାଉଛି ପୁଙ୍ଖାନୁପୁଙ୍ଖ ରୂପେ ଆଲୋଚନା କରିବାର ସୁଯୋଗ ମିଳି ନାହିଁ । ତଥାପି କହିବି ଯାଞ୍ଚ କମିଟିରେ ଏ ସମସ୍ତ କଥା ବିଚାରକୁ ନିଆଯିବ ଏବଂ ଯାହା ଠିକ ତାହା ଗ୍ରହଣ କରାଯିବ । ଆଲୋଚନା ପ୍ରସଙ୍ଗରେ ମାନ୍ୟବର କେନ୍ଦ୍ରାପଡ଼ାର ସଭ୍ୟ କହିଲେ ବ୍ୟବସାୟୀମାନେ ଷ୍ଟକ୍ ଆକାଉଣ୍ଟ ରଖିବେ, କ୍ୟାସ ମେମୋ ରଖିବେ । ମୁଁ ତାଙ୍କୁ ସ୍ମରଣ କରାଇ ଦେବାକୁ ଚାହେଁ ଟ 5 ଠାରୁ ଅଧିକ ବିକ୍ରୀ କରୁଥିବା ବ୍ୟବସାୟୀମାନେ ଷ୍ଟକ୍ ଆକାଉଣ୍ଟ ରଖିବେ । କ୍ୟାସ ମେମୋ ରଖିବେ ସେଥିପାଇଁ ଯାଞ୍ଚ କମିଟି ନିଶ୍ଚିତଭାବରେ ଦୃଷ୍ଟି ଦେବେ । Essential Commodities Act ଏବଂ Drugs Control Act ଅନୁସାରେ ଅନେକ ବ୍ୟବସାୟୀ ଷ୍ଟକ୍ ଆକାଉଣ୍ଟ ରଖିବାପାଇଁ କ୍ୟାସ ମେମୋ ଦେବାକୁ ବାଧ୍ୟ । ବାକି ଯେଉଁ ଜିନିଷ ରହୁଛି ତା'ର ଷ୍ଟକ୍ ଆକାଉଣ୍ଟ ରଖିବା ପ୍ରତ୍ୟେକ ବ୍ୟବସାୟୀ ପକ୍ଷରେ ଉଚିତ ହେବ । ଅନ୍ତତଃ ଲାଭ କ୍ଷତି ହିସାବ ଦୃଷ୍ଟିରୁ ତା'ର ସ୍ୱାର୍ଥ ଦୃଷ୍ଟିରୁ, ଏହା ନିଶ୍ଚିତ ଭଲ ହେବ ।

ଟ5 ଙ୍କାରୁ ଅଧିକ ହେଲେ ଅନ୍ୟାନ୍ୟ ରାଜ୍ୟମାନଙ୍କରେ କ୍ଲାସ ଦେଖାନ୍ତ, ପ୍ରଭୃତି ବ୍ୟବସାୟୀମାନଙ୍କୁ ଦେବାକୁ ହୁଏ । ଅନ୍ୟାନ୍ୟ ରାଜ୍ୟରେ କ'ଣ ହୋଇଛି ସାଞ୍ଚ କମିଟିର ଆଲୋଚନା ହେଉଥିବାବେଳେ ନିଶ୍ଚିତ ଭାବରେ ସେସବୁ କଥା ଉଠିବ । ତା'ପରେ ମାନ୍ୟବର ସଭ୍ୟ କହିଲେ ଆମ ରାଜ୍ୟରେ ଅସାଧୁ ବ୍ୟବସାୟୀମାନେ sales tax କର୍ମଚାରୀମାନଙ୍କୁ ଧରି ଟିକସ ଫାଙ୍କୁଛନ୍ତି । ମୁଁ ତାଙ୍କ ସହିତ କେତେକାଂଶରେ ଏକମତ । ଯେପରି ଅଧିକ ରାଜସ୍ୱ ଆଦାୟ ହୋଇପାରିବ ସେଥିପାଇଁ ଏ ସଂଶୋଧନ ବିଲ୍ ଆସିଛି । ଏ ସମ୍ପର୍କରେ ମୁଁ କହିଦେବାକୁ ଚାହେଁ ଆମ ରାଜ୍ୟରେ ସମସ୍ତ ପ୍ରକାର ବ୍ୟବସାୟୀ ଅଛନ୍ତି ; ସେମାନଙ୍କ ଭିତରେ ସାଧୁ ବ୍ୟବସାୟୀ ଅଛନ୍ତି । ଅସାଧୁ ମଧ୍ୟ ଅଛନ୍ତି । ଅସାଧୁ ବ୍ୟବସାୟୀଙ୍କର ନେତ୍ର ବନ୍ଦ କରିବା ପାଇଁ କିଛି ବ୍ୟବସ୍ଥା ନାହିଁ । କିନ୍ତୁ ଯେପରି ସେମାନେ ଟିକସ ନ ଫାଙ୍କନ୍ତି ସେଥିପାଇଁ କେତେ ବ୍ୟବସ୍ଥା ରହିଛି । ସେମାନେ ଠିକମତ stock account ରଖିବେ, cash memo. ଦେବେ । ଯୋଗାଇଲେ ଏ କାମ କରିବାକୁ ସେମାନେ କେବେହେଲେ ସାହସ କରିବେନି । ଏ ଦୃଷ୍ଟିରୁ ଏ ସଂଶୋଧନ ଆସିଛି । ଏ ସବୁ ସାଞ୍ଚ କମିଟିରେ ନିଶ୍ଚିତ ଭାବରେ ଆଲୋଚିତ ହେବ । ମାନ୍ୟବର ସଭ୍ୟ ଦୁଇ ପର୍ଯ୍ୟବେକ୍ଷଣଠାରୁ ବାର ପରସେଣ୍ଟ ଭିତରେ ଯେଉଁସବୁ ସେଲ୍ ଟିକସ ଅଛି ତାକୁ 4/5ଟା ରେଟ୍ କରିଦେଲେ ଭଲ ହେବ ବୋଲି କହି ଯେଉଁ ଚାଲିଜାଣି ଦେଇଛନ୍ତି ତାକୁ ମୁଁ ବିଚାର କରିବି । ଏମା ମଧ୍ୟରେ ଏକ୍ସପର୍ଟ ମାତ୍ର 4/5 ଟଙ୍କାଟି ଦ୍ୱାରା କରିଦେଲେ ସୁବିଧାଜନକ ହେବ । ସରକାର ସେ ଦିଗରେ ମଧ୍ୟ ଚିନ୍ତା କରୁଛନ୍ତି । ଅସାଧୁ ବ୍ୟବସାୟୀମାନେ ଆମର ବିଭାଗୀୟ କର୍ମଚାରୀମାନଙ୍କ ସହିତ ସଲସୁତୁରା କରି ଟିକସ ଫାଙ୍କୁଛନ୍ତି ବୋଲି ଯେଉଁ ଅଭିଯୋଗ ହୋଇଛି ଏବଂ vested interestଙ୍କ ସହିତ ସମ୍ପର୍କ ରଖି ଯେଉଁ ଟିକସ ଫାଙ୍କୁଛନ୍ତି ବୋଲି ଯେଉଁ ଅଭିଯୋଗ ହୋଇଛି ସେ ସମ୍ପର୍କରେ କାର୍ଯ୍ୟାନୁଷ୍ଠାନ କରିବାପାଇଁ ସେଲ୍ ଟିକସ ବିଭାଗର କର୍ମଚାରୀମାନଙ୍କୁ ବିଭିନ୍ନ ସମୟରେ ଚେକ୍‌ପୋଷ୍ଟକୁ ଏବଂ ଅନ୍ୟାନ୍ୟ ବିଭାଗକୁ ବଦଳି କରାଯାଉଛି । ଯେପରି ସେଲ୍ ଟିକସ ବିଭାଗର କେହି କର୍ମଚାରୀ ସବୁବେଳେ ସେ କାମରେ ନ ରହିବେ ସେଥିପାଇଁ ବ୍ୟବସ୍ଥା ହେଉଛି । ତାଙ୍କର ଚରିତ୍ର ବିଷୟରେ ଉପରସ୍ଥ ହାକିମ ହୁକୁମମାନେ entry କରୁଛନ୍ତି । ମୋର ବିଶ୍ୱାସ ଏହା ଫଳରେ ଅଧିକ ରାଜସ୍ୱ ଆଦାୟ ହେବ । ଶ୍ରୀ ଗଣନାଥ ପ୍ରଧାନ କହିଲେ ଯେଉଁମାନେ 20/30 ହଜାର ଟଙ୍କାର କାରବାର କରୁଛନ୍ତି ତାଙ୍କ ପ୍ରତି ଦୃଷ୍ଟି ଦେବାକୁ ହେବ । ଯେଉଁମାନଙ୍କର gross turnover ଅଧିକ ହୁଏ ସେମାନଙ୍କ ପାଇଁ compoundingର ବ୍ୟବସ୍ଥା ରହିଛି । ଆଇନରେ ଯେଉଁ ସଂଶୋଧନ ହେଉଛି ସେ ଅନୁସାରେ ଷ୍ଟକ୍ ରଖିବ ବା କ୍ୟାସମେମୋ ଇତ୍ୟାଦି ଦେବା ଏସବୁ ନ କରି କମ୍ପାଉଣ୍ଡିଙ୍ଗ୍ କରିବାର ସୁବିଧା ଅଛି । ଯେଉଁ ବ୍ୟବସାୟୀ ଯାହାର gross turnover 40 ହଜାର ଟଙ୍କାରୁ କମ୍ ସେମାନଙ୍କ ପ୍ରତି ଏହା ଲକ୍ଷ୍ୟ

ହେବ ନାହିଁ । ସେମାନଙ୍କର ଯାହା ଅସୁବିଧା ହେବ ବୋଲି ବୁଝାଯାଉଛି ସେମାନଙ୍କୁ ଏସବୁ ଅସୁବିଧା ଭିତରେ ଗତି କରିବାକୁ ପଡ଼ିବ ନାହିଁ । ସରକାର ତରଫରୁ 'D' Form ପ୍ରିଣ୍ଟ୍ କରି ଦେବାର ବ୍ୟବସ୍ଥା ହେଉଛି । ବ୍ୟବସାୟୀମାନେ ନିଜେ 'D' Form ପ୍ରିଣ୍ଟ୍ କରି ବ୍ୟବହାର କରୁଥିଲେ । ଏଣିକି ଆମ ସରକାର ସେ ଫର୍ମ ଦେବାର ବ୍ୟବସ୍ଥା କରୁଛୁ । ସେ ଆଉ ନିଜେ 'D' Form ଦେଇ କାରବାର କରିପାରିବେ ନାହିଁ । ସେଥିପ୍ରତି ମଧ୍ୟ କଡ଼ା ନଜର ରଖାଯିବ ।

ବହୁ ଷ୍ଟେଟରେ ପ୍ରତି ବର୍ଷ ସାନକରଣ କରିବାର ବ୍ୟବସ୍ଥା ଅଛି । ଏହାଦ୍ୱାରା ଅସୁବିଧା ହେଉଛି ବୋଲି ମାନ୍ୟବର ସଭ୍ୟମାନେ କହୁଛନ୍ତି । ଆମେ ଯଦି ଏହା ନେବା ଆମ ଅଫିସରମାନେ କୌଣସି କାମ ନ କରି ବସିବେ ଯେତେବେଳେ ସାନକରଣ ସମୟ ଆସିବ ସାନ କରିପାରିବେ ନାହିଁ । ଆମ ଡିଲରମାନେ ଅସୁବିଧା ଭୋଗ କରିବେ । ମୁଁ ମାନ୍ୟବର ସଭ୍ୟଙ୍କୁ କହୁଛି ଏ ଆମେ ଯେଉଁପରି ଭାବରେ ସେଲସ୍ଟାକ୍ସ ବିଭାଗର ପୁନର୍ଗଠନ କରୁଛୁ ତଦନୁସାରେ ପ୍ରତ୍ୟେକ ଅଫିସରଙ୍କୁ କେତେ ଜଣ ଲେଖାଏଁ ଡିଲରଙ୍କର ଦାୟିତ୍ୱ ଦେଉଛୁ । ସେହି ସେହି ଡିଲରମାନଙ୍କର ସମସ୍ତ କଥା ସେହି ଅଫିସର ଦେଖିବେ । ତେଣୁ ପ୍ରତିବର୍ଷ ସାନକରଣ କରିବାରେ ଅସୁବିଧା ହେବ ନାହିଁ । ଏହା ଉପରେ ସିଲେକ୍ଟ କମିଟିରେ ବିଶେଷ ଆଲୋଚନା କରାଯାଇ ପାରିବ, ତେଣୁ ସେ ସମ୍ପର୍କରେ ମୁଁ ଆଉ ବିଶେଷ କିଛି କହୁନାହିଁ ।

ତା'ପରେ ଦଳଗତ ଦୃଷ୍ଟିକୋଣ କଥା ଯାହା କହିଲେ ମୁଁ ମାନ୍ୟବର ସଭ୍ୟମାନଙ୍କୁ ସ୍ପଷ୍ଟ କରି ଦେଉଛି ଯେ, ଟିକସ ଆଦାୟରେ ସେ ସବୁ କଥା ଉଠିବ ନାହିଁ । ଯେଉଁ ଦଳର ବା ଯେଉଁ ରାଜନୈତିକ ମତବାଦର ସେ ବ୍ୟକ୍ତି ହୁଅନ୍ତୁ ନା କାହିଁକି ଆଇନ ସମ୍ମତ ଭାବରେ ତାହା ସ୍ୱୀକାର କରି ଦେବା କଥା ତାହା ନିଶ୍ଚିତ ଭାବରେ ତାଙ୍କୁ ଦେବାକୁ ହେବ । ଏଥିରେ ସନ୍ଦେହ ନାହିଁ ।

ଫର୍ଟିଲାଇଜର ଡିଲରମାନଙ୍କର ଯୁକ୍ତି କଥା ବୁଝାଯାଉଛି । ସେ ଅସୁବିଧା ଦୂର କରିବାପାଇଁ ମଧ୍ୟ ଉଦ୍ୟମ ହେଉଛି । ସରକାରଙ୍କର ଏ ବିଷୟରେ ବିବେଚନାଧୀନ ଅଛି । R. M. C. S. ରେ ଟିକସ୍ ଦେଇ ସେମାନେ ମାଲ ଆଣୁଛନ୍ତି । ପୁଣି ସେମାନଙ୍କ ଉପରେ ସେଲସ୍ ଟାକ୍ସ ଲଦି ଦିଆଯାଉଛି । ଏହା ନ କରିବାପାଇଁ ଆମେ ଅତି ଚଞ୍ଚଳ କିଛି ଯୋଗାଡ଼ ବ୍ୟବସ୍ଥା କରୁଛୁ । ଯଦି ସେମାନେ R. M. C. S. ରେ ଟିକସ ଦେଉଛନ୍ତି ଆମେ ଚେଷ୍ଟା କରୁଛୁ ଯାହା ଫଳରେ ସେମାନେ ଯେତେବେଳେ ବିକ୍ରି କରନ୍ତି ତାଙ୍କ ଉପରେ ପୁଣି ସେଲସ ଟାକ୍ସ ଭାର ନ ହୋଇ ପାରିବ । ସେଥିପାଇଁ ଅତି ଚଞ୍ଚଳ ଆମେ ପଦକ୍ଷେପ ନେଉଛୁ ।

ସାର୍, ଏ ଯେଉଁକ ସଂଶୋଧନ ଅସିଛୁ ଏହାର ମୂଳ ଉଦ୍ଦେଶ୍ୟ ହେଲା ଆମର ପ୍ରଚଳିତ ଆଇନରେ ଯାହା ସବୁ ତ୍ରୁଟି ରହି ଯାଉଛି, ତାହାର ସୁବିଧା ନେଇ ଅସାଧୁ ବ୍ୟବସାୟୀମାନେ ଯେଉଁ ଟିକସ ଫାଙ୍କୁନ୍ତି ସେସବୁ ଦୋଷତ୍ରୁଟି ସୁଧାରିବା ଏବଂ କଡ଼ାକଡ଼ିଭାବରେ ଟିକସ ଆଦାୟ କରିବା । ମାନ୍ୟବର ଗଣନାଥ ପ୍ରଧାନ କହିଛନ୍ତି ଯେ, ଅସାଧୁ ବ୍ୟବସାୟୀମାନେ ଟାକ୍ସ ଇଭେଜନ୍ ଯେ କରୁଛନ୍ତି ତାଙ୍କ ପ୍ରତି କଠୋର ଦଣ୍ଡ ବିଧାନ କରାଯାଉ । ଏଥିପାଇଁ ଆଇନରେ ବ୍ୟବସ୍ଥା ନ ଥିଲା ଏହି ଆଇନରେ ସେମାନେ ଯେପରି କଠିନ ଦଣ୍ଡ ପାଇବେ ସେ ବ୍ୟବସ୍ଥା ଆମେ କରୁଛୁ । ଯାହାଦ୍ଵାରା ଟାକ୍ସ ଇଭେଜନ୍ ମଧ୍ୟ ବନ୍ଦ ହୋଇ ପାରିବ । ମୁଁ ଆଶା କରୁଛି ସିଲେକ୍ଟ କମିଟିରେ ଏସବୁ ଆଲୋଚନା କଲାବେଳେ ଆମର ପ୍ରସ୍ତାବ ସେମାନେ ଗ୍ରହଣ କରିବେ ।

ଡଃ କ୍ରିରୋଲ ସଭ୍ୟ କହିଲେ ଶିଳ୍ପ ପ୍ରତିଷ୍ଠାନଗୁଡ଼ିକ 5 ବର୍ଷ ପାଇଁ କଞ୍ଚାମାଲ କିଣିବାରେ ସେଲଟାକସ ରିହାତି ପାଉଥିଲେ । ସେଇଟା ଉଠିଯାଇଛି । ସାର୍, ଆମେ ଏଇଟା ଉଠାଇ ନାହୁଁ । ସେଇଟା ରହିଛି । ଏଧରଣର ସ୍ମଲ୍ ଅସୁବିଧା କେତେକ ଇଣ୍ଡଷ୍ଟ୍ରି ଯେଉଁମାନେ ସେଲଟାକସ ରିହାତି ପାଉଛନ୍ତି ସେମାନେ ମଧ୍ୟ ପାଇବେ । କିନ୍ତୁ କଥା ହେଲା ଯେଉଁ ରାଜିଟି ଗୋଟିଏ ସ୍ଥାନପାଇଁ ଏବଂ ଉଦ୍ଦେଶ୍ୟରେ କଞ୍ଚାମାଲ କିଣା ଯାଉଛି ଅନ୍ୟ ଉଦ୍ଦେଶ୍ୟରେ ବିକ୍ରି କରନ୍ତି ଏବଂ ଅନ୍ୟ ସ୍ଥାନରେ ବିକ୍ରି କରନ୍ତି ସେହିପରି ବ୍ୟବସାୟୀ ଧରାପଡ଼ିଲେ ଆମର ପ୍ରଚଳିତ ଆଇନରେ ତାଙ୍କ ପାଇଁ ଦଣ୍ଡବିଧାନ କରିବା ଏବଂ ତାଙ୍କଠାରୁ ଟ୍ୟାକ୍ସ ଅସୁଲ କରିବାପାଇଁ କୌଣସି ବ୍ୟବସ୍ଥା ନ ଥିଲା । ବର୍ତ୍ତମାନ ଆଇନରେ ଯେଉଁ ବ୍ୟବସ୍ଥା କରାଯାଇଛି ଏହିପରି ବ୍ୟବସାୟୀ ଧରାପଡ଼ିଲେ ତାଙ୍କଠାରୁ ପୂର୍ଣ୍ଣମାତ୍ରାରେ ଟ୍ୟାକ୍ସ ଆଦାୟ କରାଯିବ ଏବଂ ଦଣ୍ଡବିଧାନ ମଧ୍ୟ କରାଯିବ ।

ଦ୍ଵିତୀୟ କଥା, ପ୍ରତିବର୍ଷ ସାନକରଣ ହେବା ବହୁତ ଦରକାର । ଆମର ବାର୍ଷିକ ସାନକରଣ କରିବା ଉଦ୍ଦେଶ୍ୟ ହେଉଛି ଯେଉଁ ବୋଗସ ଏବଂ ଫକ୍‌ଟିସିଅସ ଡିଲର୍ସ ଅଛନ୍ତି ସେମାନଙ୍କୁ ଧରାଯାଇ ପାରିବ । ଏହିପରି ଅନେକ ରାଜ୍ୟରେ ପ୍ରତିବର୍ଷ ସାନକରଣ କରିବାପାଇଁ ବ୍ୟବସ୍ଥା ଅଛି । ଆମର ଏ ବ୍ୟବସ୍ଥା ପ୍ରଚଳନ କଲେ ଅନେକ ସୁବିଧା ହେବ । ମୁଁ କଣ୍ଟ୍ରୋଲର ମାନ୍ୟବର ସଭ୍ୟଙ୍କୁ କହିଦେଉଛି, କେବଳ ଯେଉଁମାନେ ସ୍ଵେଚ୍ଛାକୃତଭାବେ ରେଜିଷ୍ଟ୍ରେସନ କରିଛନ୍ତି ସେମାନେ ଜାନୁଆରୀ ସାର୍ଟିଫିକେଟ ପାଇଁ ଦରଖାସ୍ତ କରିବା ବ୍ୟବସ୍ଥା ରହିଛି । କିନ୍ତୁ ଯଦି ହଠାତ୍ ତା'ର ମୃତ୍ୟୁ ହୋଇଯାଏ ସେ 6 ମାସ ଆଗରୁ ସାର୍ଟିଫିକେଟ ପାଇଁ ଆପ୍ଲିକେସନ କରିବାର ବ୍ୟବସ୍ଥା ଏଥିରେ ନାହିଁ । ଯେଉଁ କାଜୁଆଲ ଡିଲର୍ସ ଅଛନ୍ତି ସେମାନଙ୍କ ଭିତରୁ ସ୍ଵେଚ୍ଛାକୃତଭାବେ

ରେଜିଷ୍ଟ୍ରେସନ୍ କରିବାପାଇଁ ସାର୍ଟିଫିକେଟ ଅମଳରୁ 6 ମାସ ଆଗରୁ ଦରଖାସ୍ତ ଦେବାର ବ୍ୟବସ୍ଥା ଅଛି । ଅନ୍ୟ ଗୋଟିଏ ହେଲା, ଖାଦ୍ୟ ନେଲା ପ୍ରକାର ମାନ୍ୟବର ସଭ୍ୟ କ୍ୟାସମେମୋ ସମ୍ପର୍କରେ କହୁଛନ୍ତି, "ଅନ୍ୟ ରାଜ୍ୟମାନଙ୍କରେ 3 ଟଙ୍କାରୁ ଅଧିକ ବିକ୍ରୀହେଲେ କ୍ୟାସ ମେମୋ ଦେବାର ବ୍ୟବସ୍ଥା ଅଛି" ।

ଆମର ଆଇନ ସଂଶୋଧନ ବଳରେ 3ଟି କାଟାଗୋରି କରାଯାଇଛି । ଗୋଟିଏ ହେଲା ମାନୁଫାକଚରର । ଆଉ ଗୋଟିଏ ହୋଲସେଲର । ଅନ୍ୟଟି ରିଟେଲର । ଏ 3ଟି ଟାଇପ୍ ନିର୍ଦ୍ଦିଷ୍ଟ ଭାବରେ ରହିବ । ଏଣୁ ଯେ ପ୍ରଡକସନ୍ କରୁଛି ଏବଂ ଅନ୍ୟ ଯେଉଁମାନେ ଡ୍ରଗସ୍ ଆଣି ଷ୍ଟୋର କରି ବିକ୍ରୀ କରୁଛନ୍ତି ସେ ବିଷୟରେ କିଛି ଆଶଙ୍କା ଆସିବ ନାହିଁ । ଡ୍ରଗ୍ କଣ୍ଟ୍ରୋଲ ଆଇନ ଅନୁସାରେ ଯେଉଁମାନେ ଔଷଧ ଆଣି ଷ୍ଟକ ରଖିବେ, ଏମାନେ ଯେତେବେଳେ ପରଚେକ୍ କରୁଛନ୍ତି ସେତେବେଳେ ଏମାନଙ୍କ ପକ୍ଷରେ ମଧ୍ୟ କିଛି ଅସୁବିଧା ହେବ ନାହିଁ ।

ମୁଁ ଆଉ ଏ ସମ୍ପର୍କରେ ଆଲୋଚନା କରି ଅଧିକ ସମୟ ନେବି ନାହିଁ । ସେ ବିଷୟରେ ସିଲେକ୍ଟ କମିଟିରେ ଆଲୋଚନା ହେବ ।

## ନିଯୁକ୍ତିରେ ସ୍ଥାନ ସଂରକ୍ଷଣ
## (24-1-1970)

ସମ୍ବିଧାନରେ reservationର ବ୍ୟବସ୍ଥା ରହିଛି । କିନ୍ତୁ ବାସ୍ତବରେ ତାହାପ୍ରତି ଅବହେଳା କରାଯାଉଛି କେବଳ ସରକାରୀ ସ୍ତରରେ ନୁହେଁ ଅର୍ଦ୍ଧ ସରକାରୀ ସଂସ୍ଥା ବା Corporation ମାନଙ୍କରେ ବୃକର ସମ୍ପର୍କରେ ତାଙ୍କର ନ୍ୟାଯ୍ୟ ଦାବିରେ ଅବହେଳା କରାଯାଉଛି, ମାତ୍ର ସମ୍ବିଧାନର ସଂଶୋଧନ କରି ଅଧିକ 10 ବର୍ଷପାଇଁ ସ୍ଥାନ ସଂରକ୍ଷଣ ଇତ୍ୟାଦି ସୁବିଧା ଦେଲେ, ଫଳ କଅଣ ହେବ ମୁଁ ଏହା ବୁଝି ପାରୁ ନାହିଁ । ସେଥିପାଇଁ All round efforts ହେବା ଦରକାର । ସବୁ ରାଜନୈତିକ ଦଳ, ସମାଜରେ ଉଚ୍ଚ ସ୍ଥାନରେ ଥିବା ବ୍ୟକ୍ତିମାନେ, ସମସ୍ତେ ଏକାଠି ବସି ଏମାନଙ୍କ ଅବସ୍ଥାର ଉନ୍ନତି କରିବା ପାଇଁ ଆଉ ଯଦି ଯୋଜନା ନ କରୁ ତାହାହେଲେ ସେମାନଙ୍କର କୌଣସି ଉନ୍ନତି ହେବ ନାହିଁ । ପ୍ରଥମେ ସେମାନଙ୍କର ଅର୍ଥନୈତିକ ଅବସ୍ଥା ଉନ୍ନତ ହେଲେ ସେମାନେ ସମାଜରେ ଗୋଟିଏ ସ୍ତରକୁ ଆସି ପାରିବେ । ଆଜି ସେମାନେ ଦରିଦ୍ର ଅବସ୍ଥାରେ ଥିବା ହେତୁ ସମାଜରେ ଅନୁନ୍ନତ ସ୍ତରରେ ଅଛନ୍ତି, ଅନ୍ୟମାନଙ୍କ ସହିତ ସମକକ୍ଷ ହୋଇପାରୁ ନାହାନ୍ତି । ଅର୍ଥନୈତିକ ଦିଗରେ ସେମାନଙ୍କର ଉନ୍ନତି କରିବା ଉଚିତ । ହରିଜନମାନଙ୍କୁ 9,000 ଏକର ଓ ଆଦିବାସୀମାନଙ୍କୁ 2,75,000 ଏକର ଜମି ଦିଆଯାଇଛି ବୋଲି ରାଜ୍ୟପାଳଙ୍କ reportରେ ଅଛି, ସେମାନଙ୍କ ସଂଖ୍ୟା ତୁଳନାରେ ଏ ଜମିର ପରିମାଣ କିଛି ନୁହେଁ । ସେମାନଙ୍କ ମଧ୍ୟରେ ଥିବା ଭୂମିହୀନ

ଶ୍ରମିକମାନଙ୍କୁ ବୃତ୍ତୋପଯୋଗୀ ଜମି ବଣ୍ଟନ କରିବା ନିତାନ୍ତ ଆବଶ୍ୟକ । ବିଶେଷ କରି ଗାନ୍ଧୀ ଶତବାର୍ଷିକୀ ବର୍ଷରେ ସରକାର ଘୋଷଣା କରିଛନ୍ତି ଯେ ଯେଉଁ ଆଦିବାସୀ ହରିଜନମାନେ ଜମିପାଇଁ ଦରଖାସ୍ତ କରିବେ ସେମାନଙ୍କର ବିଚାର କରାଯିବ, ଜମି ଦିଆଯିବ । ଆମେ ଏସ ଦିଗରେ ଶୀଘ୍ର ଆଗେଇବା କଥା । ଜମି ଜମା ସମ୍ପର୍କରେ ଆପଣ ଜାଣିଥିବେ ଆଦିବାସୀଙ୍କ ଭିତରେ ଉତ୍ତେଜନା ପ୍ରକାଶ ପାଉଛି । ରକ୍ତାକ୍ତ ବିପ୍ଳବ କରିବାପାଇଁ ସେମାନେ ପ୍ରସ୍ତୁତ ନାହାନ୍ତି । ଏହା ଆମ ଦେଶ ପକ୍ଷରେ ଶୁଭ ସୂଚନା ନୁହେଁ । ଆମେ ଯେଉଁ କାମ କରି ପାରିବାର କଥା ସେ କାମ କରି ପାରି ନାହୁଁ । ସେମାନଙ୍କୁ ଜମି ଦେଇ ପାରି ନାହୁଁ । ସେମାନଙ୍କ ମଧ୍ୟରେ ଏହା Land hunger ଆମେ ସନ୍ତୁଷ୍ଟ କରି ପାରି ନାହୁଁ, କିନ୍ତୁ କାହିଁକି ହୋଇ ପାରି ନାହିଁ ତାର କାରଣ ମୁଁ ବୁଝିପାରୁ ନାହିଁ । ଏହା ଗୋଟିଏ ସାମାଜିକ ବ୍ୟାଧି, ସେ ବ୍ୟାଧି ଦୂର କରିବାକୁ ହେଲେ ମୌଳିକ କଥା ହେଉଛି, ସେମାନଙ୍କୁ ଜମି ଦେବା । ସୁନାବେଡା ମିଗ୍ କାରଖାନା ପାଇଁ ଯେଉଁ ଆଦିବାସୀମାନେ ବାସଚ୍ୟୁତହେଲେ ହୀରାକୁଦ ବନ୍ଧ ହେବା ଦ୍ୱାରା ଯେଉଁମାନେ ବାସଚ୍ୟୁତ ହେଲେ, ରାଉରକେଲା କାରଖାନା ସକାଶେ ଯେଉଁମାନେ ବାସଚ୍ୟୁତ ହେଲେ ସେମାନଙ୍କୁ ସ୍ୱୀକର ଦେବା, ସେମାନଙ୍କର ଥଇଥାନ କରିବା ହେଉଛି ପ୍ରଥମ କର୍ତ୍ତବ୍ୟ । ଆଜି ପର୍ଯ୍ୟନ୍ତ ସେମାନଙ୍କୁ ସ୍ୱୀକର ଦେବା ବା ଥଇଥାନ କରିବା କାର୍ଯ୍ୟ ହୋଇପାରି ନାହିଁ । ଯୋଡ଼ୁ ଗୁଣ୍ଡ ଅଞ୍ଚଳରେ ଆଦିବାସୀମାନଙ୍କ ସହିତ ଦୀର୍ଘ ସମୟ ଧରି ଆମେ କଥାବାର୍ତ୍ତା କରିଥିଲୁ । ଆମେ ତାଙ୍କୁ ଅନୁରୋଧ କରିଥିଲୁ ଓ ପାଡୁ ଚାଷ କର ନାହିଁ, ବଣ ଜଙ୍ଗଲ ନଷ୍ଟ କରନାହିଁ, ସେମାନେ ଆମ କଥା ଶୁଣିବାପାଇଁ ନାରାଜ । ସେମାନଙ୍କର ବିଶ୍ୱାସ ହେଉ ନାହିଁ । ଯଦିଓ ଆମେ ସେମାନଙ୍କୁ ବାରମ୍ବାର କହୁଛୁ ତୁମକୁ ଘର ଯୋଗାଇ ଦିଆଯିବ, ବଳଦ କିଣି ଦିଆଯିବ ଟଙ୍କା ସାହାଯ୍ୟ ଦିଆଯିବ । ତୁମେ ଜଙ୍ଗଲ କାଟିବା ବନ୍ଦ କର,' କିନ୍ତୁ ତାଙ୍କ ମନରେ ସେ ବିଶ୍ୱାସ ଆସୁନାହିଁ । କାରଣ ଏତେଦିନ ଧରି ସେମାନେ ତାର ସ୍ୱାଦ ଚାଖି ନାହାନ୍ତି, ଆଶା କରାଯାଇ ଥିଲା କୋରାପୁଟ ଆଦିବାସୀମାନଙ୍କ ଅବସ୍ଥାରେ 3 ବର୍ଷ ଭିତରେ କିଛି ଉନ୍ନତି ହେବ । କିନ୍ତୁ ଉନ୍ନତି ପରିବର୍ତ୍ତେ ଅବସ୍ଥା ଆହୁରି ସଙ୍ଗୀନ୍ ହୋଇଛି । ସେଠାରେ ଆଦିବାସୀମାନେ ଆତଙ୍କିତ ହୋଇ ପଡ଼ିଛନ୍ତି । ନକ୍ସଲପନ୍ଥୀମାନଙ୍କୁ ଦମନ କରିବା ନାଁରେ ଗରିବ ଆଦିବାସୀମାନଙ୍କ ଉପରେ ପୋଲିସର ଦମନ ଲୀଳା ଚାଲିଛି । ଝଂଜ ମାଲତୀ ଚୌଧୁରୀ ସେ ଗ୍ରାମରେ ଥିଲାବେଳେ ପୋଲିସ ଜୁଲମ ଚାଲିଥାଏ । ବିନା ମୂଲ୍ୟରେ ଓ ଛେଳି, କୁକୁଡ଼ା ଦେବାପାଇଁ ପୋଲିସ ଦାବି ଜିଦ୍ ଧରିଆନ୍ତି । ଅତ୍ୟନ୍ତ ଲଜ୍ଜାର କଥା ନକ୍ସଲପନ୍ଥୀମାନଙ୍କୁ ଦମନ କରିବା ନାଁରେ ନିରୀହ ଆଦିବାସୀମାନେ ପୋଲିସର ଶିକାର ହେଉଛନ୍ତି ।

କୋରାପୁଟ ଗାଁଗହଳରେ ସାହୁକାର ମାନଙ୍କର ଅତ୍ୟାଚାର ଏବେ ମଧ୍ୟ ସେହିପରି ଚାଲିଛି । ସେମାନଙ୍କୁ ସାହୁକାର, ମହାଜନମାନଙ୍କ ଅତ୍ୟାଚାରରୁ ରକ୍ଷା କରିବାପାଇଁ ସର୍ବୋଦୟ କର୍ମୀମାନେ ଏବଂ ଗାନ୍ଧୀ ସେବାଶ୍ରମ କର୍ମୀମାନେ ସେମାନଙ୍କୁ ସଙ୍ଗଠନ କରୁଥିଲେ । ସେମାନଙ୍କୁ ଶୋଷଣ ମୁକ୍ତ କରିବା ଲାଗି କାର୍ଯ୍ୟ କରୁଥିଲେ ସେମାନେ କାହିଁକି ସରକାରଙ୍କ କୋପ ଦୃଷ୍ଟିରେ ପଡ଼ିଲେ ମୁଁ ବୁଝିପାରୁ ନାହିଁ । ଅହିଂସା ମାର୍ଗରେ, ଶାନ୍ତି ପୂର୍ଣ୍ଣ ପଥରେ ସେମାନେ ସଙ୍ଗଠନ କରୁଥିଲେ, ଏବଂ ସେମାନଙ୍କୁ ଏକଜୁଟ କରୁଥିଲେ । ଏହା କିଛି ଅନ୍ୟାୟ କିମ୍ବା ଅସାମାଜିକ କାମ ନୁହେଁ । ଏ କାର୍ଯ୍ୟ ଆଜି ପର୍ଯ୍ୟନ୍ତ ନ ହୋଇପାରିଥିବାରୁ ଆଦିବାସୀଙ୍କ ଅବସ୍ଥା ଉନ୍ନତ ହୋଇ ପାରୁ ନାହିଁ । ଯେଉଁ କେତେକ ଲୋକ ସେମାନଙ୍କ ମଧ୍ୟରେ କାର୍ଯ୍ୟକରି ରାଜନୈତିକ ଚେତନା ବୃଦ୍ଧି କରିବା ଏବଂ ସାମ୍ବିଧାନିକ ଅଧିକାର ସାବ୍ୟସ୍ତ କରିବାପାଇଁ, ସେମାନଙ୍କ ମନରେ ଚେତନା ଆଣିବାପାଇଁ କାର୍ଯ୍ୟ କରୁଥିଲେ, ହଠାତ୍ ସେମାନଙ୍କୁ ସାହାଯ୍ୟ ବନ୍ଦ କରିଦେବା ଯୁକ୍ତିଯୁକ୍ତ ନୁହେଁ । ମୁଁ ଜାଣିଛି ସରକାର କୌଣସି ଏକ ଦୂରଭିସନ୍ଧି ରଖି ଏ କାମ କରିଛନ୍ତି । ସରକାରଙ୍କର ନିଜର ସେପରି କୌଣସି ସେବା ମୂଳକ ସଂସ୍ଥା ନାହିଁ, କେବଳ ପୋଲିସ ସଂସ୍ଥା ଅଛି । ସେମାନେ କି ଆଦିବାସୀ ମାନଙ୍କୁ କବଳିତ କରୁଛନ୍ତି । କେବଳ ସେତିକି ନୁହେଁ, ଯେଉଁ କର୍ମୀମାନେ ଲୋକଙ୍କ ମଧ୍ୟରେ ପରିଚିତ ଏବଂ ଲୋକ ସେବାରେ ନିଜର ସମସ୍ତ ସମୟ ନିୟୋଜିତ କରିଥିଲେ ପୋଲିସ ସେମାନଙ୍କୁ ତାଙ୍କ ଷ୍ଟେସନରେ ରଖି ନିର୍ମମ ମାଡ଼ ଚଲାଇଛନ୍ତି । ଏଭଳି ଅବସ୍ଥାରେ ଆମେ ଆଉ 10 ବର୍ଷ reservation ରଖିଲେ ମଧ୍ୟ ସେମାନଙ୍କର ମଙ୍ଗଳ ସାଧନ ହୋଇ ପାରିବ ନାହିଁ, 10 ବର୍ଷ ସମୟ ଦେବା ସଙ୍ଗେ ସଙ୍ଗେ ସେମାନଙ୍କର ଉନ୍ନତି ବିଧାନପାଇଁ ଯଦି ଆମେ ଚେଷ୍ଟା ନ କରୁ ସେମାନଙ୍କର ଉନ୍ନତି ହୋଇପାରିବ ନାହିଁ ।

ଏହା ତ ଗଲା ଅର୍ଥନୈତିକ କଥା । ଅନ୍ୟାନ୍ୟ ସାମାଜିକ କଥା ଦେଖନ୍ତୁ । ସ୍ୟାଡେଲ୍ଡ କମିଟି ରିପୋର୍ଟ ଯଦି ପଢ଼ିବେ ଆପଣ ଦେଖିବେ ଗାଁଗହଳରେ ହରିଜନମାନଙ୍କ ଉପରେ କିଭଳି ଅତ୍ୟାଚାର କରାଯାଉଛି । ଅସ୍ପୃଶ୍ୟତାକୁ ଆମେ ସମ୍ବିଧାନରେ ବର୍ଜନ କଲୁ, ଅଥଚ ଗାଁ ଗହଳରେ ଆଜି ଯାଏ ଅସ୍ପୃଶ୍ୟତା ରହିଛି । କେବଳ ଆଇନ କରିଦେଲେ ଅସ୍ପୃଶ୍ୟତା ଆପଣ ଛାଏଁ ଚାଲିଯିବ ଏଭଳି ଭାବିବା ନିର୍ବୋଧତା । ଏ ଗୋଟିଏ ସାମାଜିକ ବ୍ୟାଧି, ଏ ବ୍ୟାଧି ଦୂର କରିବାକୁ ହେଲେ ସମାଜକୁ ହୃଦବୋଧ କରାଇବାକୁ ହେବ, ସରକାରୀ ଦଳ, ବିରୋଧୀ ଦଳ ସମସ୍ତେ ଏ ଦିଗରେ ଶକ୍ତି ନ ଲଗାଇଲେ ଏ ଜାତିର ଗୋଟିଏ ଅଙ୍ଗ ସବୁଦିନପାଇଁ ଅଚଳ ଅବସ୍ଥାରେ ରହିଯିବ,

ତାପରେ ଆରମ୍ଭ ହେବ ସର୍ବପ୍ରକାର ବିପ୍ଳବ, ନକ୍ସଲଙ୍କ ଭଳି ବା ଅନ୍ୟ [illegible] ପ୍ରଦେଶ କଲାଣି ସମ୍ପୂର୍ଣ୍ଣ ଅଧିକାର ଚ୍ୟୁତ ସେମାନେ [illegible] ହେଲାଣି ବହୁଦିନଧରି ଅଭାବ, ଅନାଟନ, ଦାରିଦ୍ର୍ୟ ଭିତରେ ଗତି କରିଥିବାରୁ ସେମାନଙ୍କ ଭିତରେ ବିଦ୍ରୋହ ଭାବ ଜାଗ୍ରତ ହେବ, ଏ ଉତ୍କ୍ରାନ୍ତି ବିପ୍ଳବକୁ ପ୍ରଶସ୍ତ କରିଦେଇ କମ୍ୟୁ ବିପ୍ଳବ ପାଇଁ କ୍ଷେତ୍ର ପ୍ରସ୍ତୁତ କରିବାପାଇଁ ସରକାରଙ୍କୁ ମୁଁ ଅନୁରୋଧ କରୁଛି They must read the writings on the wall. ଆମେ ଆଗରୁ ଯଦି ଏ ବିଷୟରେ ସତର୍କ ନ ହେଉ, ଯଦି ସେମାନଙ୍କ ମୌଳିକ ଅଭାବ ପ୍ରତି ଦୃଷ୍ଟି ନ ଦେଉ ଏବଂ ସେମାନଙ୍କ ମୌଳିକ ଅଭାବ ଦୂର କରିବାପାଇଁ ଉଦ୍ୟମ ନକରୁ ତାହେଲେ ଏ ଦେଶରେ ଉତ୍କ୍ରାନ୍ତି ବିପ୍ଳବ ହେବ । ଯଦିଓ କି ଆଜି [illegible] ଆରମ୍ଭ ହୋଇଛି । ତାକୁ କେହି ରୋକି ପାରିବେ ନାହିଁ ; ମିଲିଟାରୀ ପୋଲିସ ଫୋର୍ସ ତାକୁ ଦବାଇ ପାରିବେ ନାହିଁ । ସେଥିପାଇଁ ମୋର କହିବାର କଥା ଯେ ଏହାର ସମାଧାନ କରିବାକୁ ଗଲାବେଳେ ଆମେ ଆଦିବାସୀମାନଙ୍କର ମୌଳିକ ଅଭାବ ପ୍ରତି ଦୃଷ୍ଟି ଦେଇ ତାଙ୍କର ସେ ଅଭାବ ଦୂର କରିବାକୁ ଉଦ୍ୟମ କରିବା ଉଚିତ । ସେମାନଙ୍କ ଅଞ୍ଚଳରେ ହସ୍ପିଟାଲ ନାହିଁ, ରାସ୍ତା ନାହିଁ, ଶିକ୍ଷା ମଧ୍ୟ ସୁବିଧା ନାହିଁ । ଯଦି [illegible] ଆଶ୍ରମ ସ୍କୁଲ ଅଛି ଆମର ଦେଖିବାରେ ଆସେ ସେଠାରେ [illegible] ଚାଲୁଛି । ଗୋଟିଏ ଆଶ୍ରମ ସ୍କୁଲକୁ ମୁଁ ଯାଇଥିଲି । ସେଠି ଦେଖିଲି ପିଲା ନାହାନ୍ତି, ମାଷ୍ଟର ନାହାନ୍ତି । ଏ ରକମ [illegible] ପାଇଁ ହେଉଛି [illegible] ପିଲାଙ୍କୁ ମାଗି କହୁଛି କେବେ ଅଫିସର ଆସିବେ, ତାଙ୍କ ଖୋଲିବେ, 10/15ଜଣ ପିଲା ଆସିବେ । ତା’ର 5ଦିନ ପରେ ସ୍କୁଲ ବନ୍ଦ । ଏପରି ଭାବରେ ଆମେ ଶିକ୍ଷାର ପ୍ରସାର କିପରି କରିବା ? ସେ ଅଞ୍ଚଳରେ ଆଶ୍ରମ ସ୍କୁଲ ଛଡ଼ା ଅନ୍ୟ ସ୍କୁଲ ନାହିଁ । କିନ୍ତୁ ସେ ଦିଗରେ କି କାର୍ଯ୍ୟ ହେଉଛି ? ଯେତେ ଟଙ୍କା ଆଦିବାସୀମାନଙ୍କ ପାଇଁ ଖର୍ଚ୍ଚ ହେଉଛି ତା’ର ପ୍ରତ୍ୟେକ [illegible] ହେଉଛି କି, ତା ଦେଖିବା କଥା । ସେମାନଙ୍କର ଦରକାର ପାଇଁ ଟଙ୍କା ଅଛି । ଅଥଚ ସେମାନଙ୍କ କାର୍ଯ୍ୟରେ ଲାଗିପାରୁ ନାହିଁ । ସେଥିପାଇଁ ମୁଁ କହିବାକୁ ଚାହେଁ ଯେ ଆମେ ଉଦ୍ୟମ କରିବା କିପରି ସେମାନଙ୍କ ଭିତରେ ଶିକ୍ଷାର ପ୍ରସାର ହେବ । ଆମେ ଉଦ୍ୟମ କରିବା ସେମାନଙ୍କର ଅର୍ଥ-ନୈତିକ ଅବସ୍ଥାର ଉନ୍ନତି କରିବାପାଇଁ ସାମାଜିକସ୍ତରରେ ଯେଉଁ ବାଧା ହେଉଛି ଏବଂ ଯାହାଦ୍ୱାରା ସେମାନେ ସମାଜରେ [illegible] ଏବଂ ଘୃଣିତ ହେଉଛନ୍ତି ତାକୁ [illegible] ସାମାଜିକ ସମାନ [illegible] କରିବାକୁ ହେବ । [illegible] ସରକାରୀ, ଅର୍ଦ୍ଧସରକାରୀ ଓ ବେସରକାରୀ ସ୍ତରରେ ଆମେ [illegible] କରିବା । [illegible] ସ୍ତରରେ ତାଙ୍କର ଯାହା percentage ଅଛି ସେ percentage ଅନୁସାରେ ଆମେ ଯଦି

ତାଙ୍କ ବ୍ୟବସ୍ଥା ଦେଖୁ ତେବେ ଏ ବିଷୟରେ ଆମେ ଅନ୍ୟମାନଙ୍କୁ ମଧ୍ୟ ପ୍ରଭାବିତ କରିପାରିବୁ । ଆମେ କହୁଛୁ ବର୍ତ୍ତମାନ ସରକାର ତାଙ୍କର କର୍ତ୍ତବ୍ୟ କଲେ, ବାହାର ସଂସ୍ଥା ଯେଉଁମାନେ ଅଛନ୍ତି ସେମାନେ ମଧ୍ୟ ସେଇ ଅନୁସାରେ ଲୋକ ନିଯୁକ୍ତ କରନ୍ତୁ । ତେଣୁ ସେମାନଙ୍କୁ ଉପଯୁକ୍ତ ସଂଖ୍ୟାରେ ଦକ୍ଷତାକୁ ଦୃଷ୍ଟିରେ ରଖି ବ୍ୟବସ୍ଥା ଦେବାକୁ ହେବ ।

ମୋର ଶେଷକଥା ହେଉଛି ଏସବୁ ପ୍ରତି ଦୃଷ୍ଟି ରଖି ଆମେ ଯଦି କର୍ତ୍ତବ୍ୟ ନକରୁ ତା ହେଲେ ଅସୁବିଧା ହେବ ବର୍ତ୍ତମାନ ଗୋଟିଏ କଥା କହି ମୋର ବକ୍ତୃତା ଶେଷ କରିବି । ଗଞ୍ଜାମ ଜିଲ୍ଲାରେ ପାଲସର ଗୋଟିଏ ଅଞ୍ଚଳ । ତା ଆଦିବାସୀ ଅଞ୍ଚଳ ନୁହେଁ । ସେଠାରେ ହରିଜନମାନେ ଗୋଟିଏ ବନ୍ଧହୁଡ଼ାରେ ବହୁଦିନରୁ ଘର କରିଥିଲେ । ସେମାନେ ସେଠାରେ 20/30 ବର୍ଷ ହେବ ଥିଲେ । କେତେଜଣ ହିନ୍ଦୁ ଭାଇଙ୍କର ସେ ଜମିରୁ କିଛି ଅଂଶ ଦରକାର ପଡ଼ିଲା । ସେମାନଙ୍କୁ କହିଲେ ଆମେ କ୍ଲବ କରିବୁ ତୁମେ ଜାଗା ଛାଡ଼ିଦିଅ । ସେମାନେ କହିଲେ ଆମେ ପୁରୁଷାନୁକ୍ରମେ ଏଠାରେ ଅଛୁ ଆମେ ଯିବୁ କୁଆଡ଼େ । ଏଇକଥା ଶୁଣି ତାଙ୍କ ବାଡ଼ପଟେ ଯେଉଁ ଗଛ ଥିଲା ସେ ସବୁ ହାଣି ଦେଲେ ଏବଂ କେତେକ ସ୍ଥାନରେ ନିଆଁ ଲଗାଇ ଦେଲେ । କେବଳ ସେତିକି ନୁହେଁ ସେମାନେ କହିଲେ ଯଦି ତୁମ୍ଭେମାନେ ସ୍ଥାନ ନ ଛାଡ଼ିବ ତା ହେଲେ ତୁମକୁ ଜୀବନ୍ତ ମାରିଦେବୁ । ଏ ସମ୍ବନ୍ଧରେ ପୋଲିସ କେତେକ ଆରେଷ୍ଟ କରିଥିଲେ । ପରେ ସେମାନଙ୍କୁ ଛାଡ଼ିଦେଲେ । ସେମାନଙ୍କ ଉପରେ କେଶ୍ ହେଲା ନାହିଁ । ଯେଉଁମାନେ ଏସବୁ କାର୍ଯ୍ୟ କରୁଛନ୍ତି ସେମାନଙ୍କ ପ୍ରତି ଯଦି ପୋଲିସ ତାଙ୍କର କର୍ତ୍ତବ୍ୟ ନ କରିବେ କୌଣସି ରାଜନୈତିକ ଦଳର ପ୍ରରୋଚନାରେ ଯଦି ନିଷ୍କ୍ରିୟ ରହିବେ ତାହେଲେ ଗାଁଗଣ୍ଡାରେ ଏହା ଗୋଟିଏ ନିତିଦିନିଆ ଘଟଣା ହୋଇଯିବ । ସେଥିପାଇଁ ଏ ଦିଗରେ ଆମର ପୋଲିସ ବିଭାଗ ସତର୍କ ହେବା ଉଚିତ । ବର୍ତ୍ତମାନ ଏଠାରେ ଅମର Home Minister ଥିଲେ ଭଲ ହୋଇଥାନ୍ତା । ଯାହା ଦେଖାଯାଉଛି ଯେଉଁ ସ୍ଥାନରେ ପୋଲିସର ଦରକାର ନାହିଁ ସେଠାରେ ସେମାନେ ସମସ୍ତ ଶକ୍ତି ପ୍ରୟୋଗ କରୁଛନ୍ତି । କିନ୍ତୁ ଯେଉଁଠାରେ ସେମାନଙ୍କର action ନେବାର କଥା ସେଠାରେ ସେମାନେ action ନେଇପାରୁ ନାହାନ୍ତି । ଆପଣ ଜାଣନ୍ତି ଅମର ଗୋଟିଏ ହୋଟେଲ ଆକ୍ଟ ଅଛି । କିନ୍ତୁ ଅନେକ ସ୍ଥାନରେ ହୋଟେଲବାଲାମାନେ ହୋଟେଲ ଭିତରେ ହରିଜନମାନଙ୍କୁ ପ୍ରବେଶ କରାଇ ଦେଉ ନାହାନ୍ତି । ସେପରି କ୍ଷେତ୍ରରେ ପୋଲିସ ପାଖକୁ ଗଲେ ସେମାନେ କହୁଛନ୍ତି ସାକ୍ଷୀ ତ ମିଳିବେ ନାହିଁ ଆମେ କ'ଣ କରିବୁ । ଏପରି ବହୁତ ଘଟଣା ଘଟୁଛି । ଶେଷରେ ମୁଁ କହିବି ସରକାରୀ ସ୍ତରରେ ଯେଉଁସବୁ ତ୍ରୁଟି ଆମେ ଦୂର କରିପାରିବୁ ତାକୁ ଯଦି ଆମେମାନେ ଦୂର କରୁ ତାହେଲେ ସମ୍ବିଧାନ ପ୍ରାବଧାନର କିଛି ମୂଲ୍ୟ ଅଛି ବୋଲି ଜାଣିବା ।

## ଆଦିବାସୀ ମାନଙ୍କ କଲ୍ୟାଣ

( 4-1-1972 )

Yes, ମୁଁ କହୁଛି କେତେ ଶିକ୍ଷକ ଓ କେତେ S.-I. ଙ୍କୁ ସସପେଣ୍ଡ କରାଗଲା । ସେଥିରୁ ଜଣେ ଶିକ୍ଷକ ହାଇକୋର୍ଟକୁ ଗଲେ । ହାଇକୋର୍ଟ ଅର୍ଡ଼ର ଦେଲେ Inspector ତାଙ୍କୁ ଟ100 ଦେବେ । You know what he said ? He said, 'I did not pay the fine Government paid for me. କୌଣସି ଅଫିସରଙ୍କ ସମ୍ପର୍କରେ ମୁଁ ସାଧାରଣତଃ କେବେହେଲେ କୁହେନା । କିନ୍ତୁ ଅଜ ଦୁଃଖର ସହିତ ମୋତେ କହିବାକୁ ପଡ଼ୁଛି in the presence of Shri Biju Patnaik who happens to be their leader and the Minister who is quite young and energetic like our Health Minister who is known to be the monument of corruption during this short period. ଶାସନ ନାମରେ ଶିକ୍ଷା ବିଭାଗକୁ ଏହିପରି କଳଙ୍କିତ କରାଯାଉଛି । ଆଜି ସେଠିକାର ଶିକ୍ଷକ ମାନେ S.-I. ମାନେ ଅତିଷ୍ଠ ହେଉଛନ୍ତି । ଆଜି କେତେ agents ସେଠାକୁ ପଠାଯାଉଛି, ତୁମେ ଲୋକଙ୍କଠାରୁ ଦସ୍ତଖତ ଆଣ, ଏ Inspector ଭଲ ଲୋକ । ମୁଁ କହୁଛି he must be suspended. କରାଯାଇପାରନାହିଁ, ନକ୍ସଲାଇଟ ନାଁରେ ସେଠାରେ ଲୋକଙ୍କ ଉପରେ ପୋଲିସ ଜରିଆରେ ନାନା ଅତ୍ୟାଚାର ଆରମ୍ଭ କଲେ । ମୁଁ ସେତେବେଳେ କହିଥିଲି that is not the way. ତାଙ୍କର ମୌଳିକ ସମସ୍ୟା ସମାଧାନ ନକରି କେବଳ force ଜରିଆରେ ଯଦି low down କରାଯାଏ You are simply gossing them. ପୃଥିବୀରେ ବିପ୍ଳବକୁ କେହି ଧ୍ୱଂସ କରିପାରି ନାହିଁ । ଯେଉଁ ବିପ୍ଳବ ଭଦରଜୁଲାରୁ ଆରମ୍ଭ ହୋଇଛି ସେ ବିପ୍ଳବ ପୋଲିସ force ଜରିଆରେ ଜବତ ହୋଇ ପାରିବ ନାହିଁ । ଭିଏତନାମରେ ହୋଇନାହିଁ, କଲିକତାରେ ବି ହୋଇନାହିଁ । ମୋର କହିବାର କଥା ତାଙ୍କର ମୌଳିକ ସମସ୍ୟା ଖାଦ୍ୟ, ବସ୍ତ୍ର ଅଭାବ ଯଦି ଆମେ ପୂରଣ ନ କରିବା ତେବେ ତାଙ୍କପାଇଁ କ'ଣ କରିବା ତାଙ୍କୁ ଆମେ କହୁଛୁ democracy has equal right, voting rights ଦେଉଛୁ ସମ୍ବିଧାନରେ ଅଛି ସମସ୍ତେ ମନ୍ତ୍ରିସଭାରେ ବସିବାର ସୁଯୋଗ ପାଇବେ । ସେ ବିଷୟରେ କ'ଣ କରାଯାଇଛି ? ଅତି ଦୁଃଖର କଥା, ଲଜ୍ଜାର କଥା ଅନେକ ଆଦିବାସୀ

ଛୁଏଗ୍ରୁଡ଼ୀ ଚାକିରି ବନ୍ଦ କରାଗଲା ନାହିଁ, ବାସନକୁସନ ଏପରିକି ସ୍କ୍ରାଉ ମଧ୍ୟ ପାଉନାହାନ୍ତି । ନଭେମ୍ବର ମାସ ପରେ ଶିକ୍ଷକମାନେ ଦରମା ପାଇପାରିଲେ ନାହିଁ । ସେଇ ହେଡ଼-ମାଷ୍ଟରଙ୍କ drawing and disbursing କ୍ଷମତା ଦିଆଯାଇଥିଲା authority ନ ପାଇବାରୁ ସେ draw କରିପାରିଲେ ନାହିଁ । What type of treatment is this ? Is it because they are Adibasis ? ଯଦି କଂଗ୍ରେସ ହୋଇଥାନ୍ତି you would not have been in peace. ମୁଁ ଅନେକ ସ୍କୁଲକୁ ଯାଇଛି, ତାଙ୍କର ଅଭାବ ଅସୁବିଧା ଦେଖିଛି ତାଙ୍କ ଅଭାବ ଦୂର କରିବାକୁ ଏ ସରକାର କୌଣସି ଅସୁବିଧା ସୃଷ୍ଟି କରୁଛନ୍ତି । ବର୍ତ୍ତମାନ ସରକାରର ଯଦି ଏଇଟା character ହୁଏ ତେବେ ଏମାନେ ଏଇଟାକୁ democracy ବୋଲି କହୁଛନ୍ତି କାହିଁକି ? ସବୁ ଦଳକୁ ସମର୍ଥନ ଚେଷ୍ଟା କରିବା କଥା । ରୋଟିଏ resolution ଆସିଥିଲା, ମୁଖ୍ୟମନ୍ତ୍ରୀ କହିଲେ ଆଦିବାସୀ ହରିଜନଙ୍କ ବିଷୟରେ କହିଲେ । Is this the result of that ? ସେଇ ପଇସା କାଟିଦେବା ଅଛି before you dismiss it budgetରେ ଯାହା ବ୍ୟବସ୍ଥା ଅଛି, ସେ ଅନୁସାରେ ନ ଦେବାର କାରଣ କ'ଣ ? ସେଇ କର୍ମଚାରୀ ଥିଲେ you can later on change it, ଆପଣ ଯାହାକିଛି କରିବେ କରନ୍ତୁ କିନ୍ତୁ ସେତେବେଳେ ପାଇଁ provision ଅଛି ସେ ଅନୁସାରେ ଦିଅନ୍ତୁ । ସେମାନଙ୍କୁ ଶହ ଶହ workers ଅଛନ୍ତି । ମାସ ମାସ ଧରି ଦରମା ପାଉନାହାନ୍ତି । ଏ ଯେଉଁ alliance ଏଠାରେ ଚାଲିଛି, ସେଇ 3ଟା ଦଳର ଶାସନ ଚାଲିଛି, ମୁଁ ଜାଣେନି ସେମାନଙ୍କର ଆଭିମୁଖ୍ୟ କ'ଣ ? Revenue Minister happens to be the most calm and quiet man. ସେ କହିଲେ ସେଠାରେ କାଶ୍ମୀର ମହାରାଜାଙ୍କ ପାଖରେ ରହିଲେ କିଛି ନାହିଁ ଏଠି ପାଟନା ମହାରାଜାଙ୍କ ପାଖରେ ରହିଲେ ଜାତି ଚାଲିଯିବ କାହିଁକି ? ମୁଁ କହୁଛି ସେ ସେ ପାଟନା ମହାରାଜାଙ୍କ ପାଖରେ ଧରିବନ ପାଇଁ ଚାହାନ୍ତି । ତା'ଛଡ଼ା ତାଙ୍କ ଜୀବନରେ ଆଉ କିଛି ନାହିଁ । That is what he desires. That is why you have made strange bed fellows today. You read the writings on the wall, ତେବେ ଜନକଂଗ୍ରେସ କି ଏକାଠି ହୋଇଥିଲା । Jana Congress went to oblivion. I gave a similar warning to Jana Congress that after the elections you will find you will be no where.

**ଜଳସେଚନ**

**( 7-12-1967 )**

କ୍ଷୁଦ୍ର ଜଳସେଚନ ବର୍ତ୍ତମାନ ଏ ରାଜ୍ୟରେ କୌଣସି ସ୍ଥାନରେ ସଫଳତାର ସହିତ କାର୍ଯ୍ୟକାରୀ ହୋଇପାରି ନାହିଁ । ଜଳସେଚନ ଯୋଜନା ପ୍ରତି ସେତିକି ଦୃଷ୍ଟି ଦେବା କଥା ଅନେ-

ପର୍ଯ୍ୟନ୍ତ ଏ ସରକାରଙ୍କଠାରୁ ହୋଇ ପାରନାହିଁ । ମୁଁ ବିଶେଷ କରି କହିବି ଗଞ୍ଜାମ ଜିଲ୍ଲାରେ ଏବର୍ଷ ଯେଉଁ ମରୁଡ଼ି ପଡ଼ିଲା ଏଥିରୁ ବହୁ ଲୋକଙ୍କୁ ଆମେ ରକ୍ଷା କରି ପାରିଥାନ୍ତୁ, ବହୁ ଶସ୍ୟ ଯାହି ପୋଡ଼ିଗଲା ରକ୍ଷା ହୋଇପାରିଥାନ୍ତା; ଯଦି ଆମର କ୍ଷୁଦ୍ର ଜଳସେଚନ ଯୋଜନାଗୁଡ଼ିକ ଠିକ୍ ସମୟରେ କାର୍ଯ୍ୟକାରୀ କରାଯାଇଥାନ୍ତା । ଏହିକଥା ଗତଥର ବଜେଟ ସମ୍ପର୍କରେ ଆଲୋଚନାବେଳେ ସରକାରଙ୍କୁ ଚେତାବନୀ ଦିଆଯାଇଥିଲା ଏବଂ ସେ-ଭଳି କେତେ ହୋଇଯାଇଥିଲା ଗାଁ ଗହଳରେ ଯେଉଁଠି ପୁଷ୍କରିଣୀ ଇତ୍ୟାଦି ଅଛି, ଯାହାର ସଂସ୍କାର ଜମିଦାରମାନେ କରୁଥିଲେ ବର୍ତ୍ତମାନ ସରକାର ସେଥିପ୍ରତି ମଧ୍ୟ ଦୃଷ୍ଟି ଦେଉନାହାନ୍ତି । ଯେଉଁଠି କ୍ଷୁଦ୍ର ଜଳ-ସେଚନ ଯୋଜନା 1 ଲକ୍ଷ 2 ଲକ୍ଷ ବା 60 ହଜାର ଟଙ୍କାରେ ହୋଇପାରନ୍ତା ସେଥିପ୍ରତି ଦୃଷ୍ଟି ନ ଦେଇ 10 ରୁ 15 ଲକ୍ଷକୁ ବଢାଇବା ମାନେ ମୁଁ କିଛି ବୁଝିପାରୁନାହିଁ । ମୋର କହିବାର କଥା ଏହିପରି ଗୋଟିଏ ଗୋଟିଏ ଅବାନ୍ତର ବିଷୟ ଆଣି ଆଇନ ପ୍ରବର୍ତ୍ତନ କରିବାରେ ଯେଉଁ ବ୍ୟଗ୍ରତା ମନ୍ତ୍ରୀ ମହୋଦୟ ଦେଖାଉଛନ୍ତି, ତା' ନ କରି ଯଦି କ୍ଷୁଦ୍ର କ୍ଷୁଦ୍ର ଜଳସେଚନଗୁଡ଼ିକ ଉପରେ କାର୍ଯ୍ୟକାରୀ ହେବ, ଯାହାର ସୀମା କଦାପି 10 ଲକ୍ଷ ଟପିବ ନାହିଁ, ଏହିପରି ଶହ ଶହ ଯୋଜନା ଅଛି, ଯାହାକି 1 ଲକ୍ଷ 2 ଲକ୍ଷ ଟଙ୍କା କାର୍ଯ୍ୟକାରୀ ହୋଇ 100/200 ଏକର ଜମି ସୁବିଧାରେ ଜଳସେଚିତ ହୋଇପାରନ୍ତା । ସେଥିପ୍ରତି ମନ୍ତ୍ରୀ ମହୋଦୟ ଟିକେ ଦୃଷ୍ଟି ଦିଅନ୍ତୁ । ଏ ବର୍ଷ ଗଞ୍ଜାମରେ ଯାହା ହୋଇଛି, ଯଦି ସରକାରଙ୍କର ଦୃଷ୍ଟି ନ ପଡ଼ି ତା'ହେଲେ ଲଗ ଲଗ 3 ବର୍ଷ ବହୁ ଅଞ୍ଚଳରେ ଯେଉଁ ପୋଡ଼ି ହୋଇଛି ସେଥିରୁ ଲୋକଙ୍କୁ ରକ୍ଷା କରିବାପାଇଁ ତୁରନ୍ତ ଯଦି କ୍ଷୁଦ୍ର ଜଳସେଚନ ବ୍ୟବସ୍ଥା କରା ନ ଯାଏ ତା'ହେଲେ ଆସନ୍ତା ବର୍ଷ ଯାହା ହେବ ତହିଁରୁ ଲୋକଙ୍କୁ ରକ୍ଷା କରିବା କଷ୍ଟକର ହୋଇପଡ଼ିବ । ଗତକାଲି ମଧ୍ୟମ ଜଳସେଚନ ସମ୍ପର୍କରେ ବହୁ ମାନ୍ୟବର ସଭ୍ୟ ବହୁକଥା କହିଲେ । ମୁଁ କାଲି ତାକୁ ଶୁଣୁଥିଲେ କି ନାହିଁ ମନ୍ତ୍ରୀ ମହୋଦୟ ଯେପରି ହସି ହସି ବସିଥାନ୍ତି ମୋର ମନେ ହେଉଛି ସେ ଭାବୁଥାନ୍ତି ବିଲ୍ ଗୋଟାଏ ଆଗେ ଆସୁ, ମାନ୍ୟବର ସଭ୍ୟମାନେ କାହିଁକି ଏଣ୍ଡ ଡେଣ୍ଡ କହୁଛନ୍ତି । ମନ୍ତ୍ରୀ ମହୋଦୟଙ୍କର ହୃଦବୋଧ କରିବା କଥା ଯୋଉ ସମ୍ପର୍କରେ ଏ ଗୃହର ସମସ୍ତ ସଭ୍ୟ ଉପରେ ବ୍ୟଥିତ, ସଭ୍ୟମାନଙ୍କ ଆଲୋଚନାରୁ ସେ ଅନୁମାନ କରୁଥିବେ । ନିଜେ ଯେଉଁ କାର୍ଯ୍ୟ କରୁନାହାନ୍ତି ସେଥିପାଇଁ ସମାଲୋଚିତ ହେଉଛନ୍ତି ।

ତା'ପରେ ମୁଁ ଗଞ୍ଜାମର ଋଷିକୁଲ୍ୟା ପ୍ରୋଜେକ୍ଟ କଥା କହିବି, ଯାହାକି ବ୍ରିଟିଶ୍ ସରକାର ଅମଳରେ ହୋଇଥିଲା । ଏପରି ଗୋଟିଏ ଯୋଜନା ଅନ୍ୟତ୍ର

ନାହିଁ । କିନ୍ତୁ ଦୁଃଖର କଥା ସରକାର ଜାଣନ୍ତି ଏବଂ ସରକାରଙ୍କ ଦୃଷ୍ଟିକୁ ମଧ୍ୟ ଆଣାଯାଉଛି । ଯେଉଁ ଦୁଇଟି ଜଳଭଣ୍ଡାର ତାକୁ ପାଣି ଯୋଗାଉଛି ତାହା silted ହୋଇ ଯାଉଛି ତା'ର ପ୍ରତିକାର କରିବାପାଇଁ ଚେଷ୍ଟା ନ କଲେ ଆମେ ଯେଉଁଠି ଏକ ହଜାର କ୍ୟୁସେକ ଫ୍ଲୋ କରୁଥିଲୁ ବର୍ତ୍ତମାନ 300 ଫ୍ଲୋ କରୁଛୁ । ଅସନ୍ତା ବର୍ଷ ତାହା ଆହୁରି କମିଯିବ । ତେଣୁ ହରଭଙ୍ଗୀ ଯୋଜନା ତୁରନ୍ତ କାମର କାର୍ଯ୍ୟକାରୀ ହେଲେ ଏବଂ ରୁଷିକୁଲ୍ୟା କେନାଲ ସିଷ୍ଟମକୁ ଉପର ପାଣି ଯୋଗାଇ ଦିଆଯିବ, କାର୍ଯ୍ୟାନୁଷ୍ଠାନ ହେବା ଉଚିତ । ସେ ବ୍ୟବସ୍ଥା ନ ହେଲେ ବହୁ ଅଞ୍ଚଳ ଜଳସେଚିତ ହୋଇପାରିବ ନାହିଁ । ଆଗେ ରୁଷିକୁଲ୍ୟା କେନାଲ ଦ୍ୱାରା ପ୍ରାୟ ଏକ ଲକ୍ଷ ସେଚିତ ହେଉଥିଲା । ବର୍ତ୍ତମାନ ଟେଲ୍ ଲ୍ୟାଣ୍ଡ କୌଣସି କାଗଜରେ ପାଣି ପାଉନାହିଁ । ଖୁବ୍ ହେଲେ 60 ହଜାର ଏକର ପର୍ଯ୍ୟନ୍ତ ପାଉଥିବ । ହରଭଙ୍ଗୀ ଯୋଜନା ତୁରନ୍ତ କାର୍ଯ୍ୟକାରୀ ହେଲେ ଗଞ୍ଜାମର ଚାଷୀ ଉପକୃତ ହେବେ ଏବଂ ଗଞ୍ଜାମ ଚାଷୀ ଏଭଳି ଲୋକ ଯେଉଁମାନେ ଜଳ ପାଇଲେ ଭୂମିରୁ ସୁନା ଉତ୍ପାଦନ କରିବେ । ସେମାନେ କଠିନ ପରିଶ୍ରମ କରନ୍ତି । କେବଳ ଜଳ ଅଭାବରୁ ଅଧିକ ଉତ୍ପାଦନ କରିପାରୁ ନାହାନ୍ତି । ମୁଁ ଏଥିପାଇଁ ଦାବୀ କରୁଛି ଗଞ୍ଜାମରେ ମଧ୍ୟମ ଯୋଜନାପାଇଁ 5 କୋଟି ଏବଂ କ୍ଷୁଦ୍ର ଯୋଜନାପାଇଁ ଉକ୍ତ ଜିଲ୍ଲାରୁ ଯେତେ ଲକ୍ଷ ଟନ୍ ସଂଗ୍ରହ କରିବାକୁ ଚାହାନ୍ତି ସରକାର ତା' କରିପାରିବେ । କାରଣ ମୁଁ ଜାଣେ ଏହି ଜଳସେଚନ ଯୋଜନା ହେଲେ ଚାଷୀମାନେ ଦୁଇ ଥର ଫସଲ କରିପାରିବେ । ତା'ପରେ ନିଜେ ବଞ୍ଚିବାପାଇଁ ରଖି, ସରକାର ଯାହା ମାଗିବେ ସେ ଖାଦ୍ୟ ମଧ୍ୟ ଅନ୍ୟପାଇଁ ସେ ଦେଇପାରିବେ । ସେ ଦୃଷ୍ଟିରୁ ଗଞ୍ଜାମ ଜିଲ୍ଲା ପ୍ରତି ସରକାର ସ୍ୱତନ୍ତ୍ର ଦୃଷ୍ଟି ଦେଇ ସେଥିରେ ଯେଉଁ ମଧ୍ୟମ ଜଳସେଚନ ଯୋଜନାଗୁଡ଼ିକ 10/12 ବର୍ଷ ହେଲେ incomplete ହୋଇ ପଡ଼ିଛି ତାକୁ ଉପର ତୁରନ୍ତ ସମ୍ପୂର୍ଣ୍ଣ କରିବେ ସେ ଦିଗରେ ବ୍ୟବସ୍ଥା କରନ୍ତୁ । କ୍ଷୁଦ୍ର ଜଳ-ସେଚନ ଯୋଜନା ବାବଦରେ ଏତିକି କହିବି ଯେ ପୁଷ୍କରଣୀର ପଙ୍କୋଦ୍ଧାର କରିବା-ପାଇଁ ଓ ଯେଉଁଠି ଯେଉଁଠି, ସେ ସବୁର ମାଇନର repair ହେବାପାଇଁ ସରକାର ଟଙ୍କା ଦିଅନ୍ତୁ ତା'ହେଲେ ପାଣି ଯଥେଷ୍ଟ ପରିମାଣରେ ଷ୍ଟକ୍ ହୋଇପାରିବ ।

ଶେଷରେ ମୁଁ ଗୋଟିଏ ପ୍ରସ୍ତାବ ଦେଉଛି ଯେ, କ୍ଷୁଦ୍ର ଜଳସେଚନ ଯୋଜନାର ମରାମତିପାଇଁ ଟେଣ୍ଡର ମଗା ନ ଯାଉ । ଯେଉଁସବୁ କାର୍ଯ୍ୟରେ 1 ଲକ୍ଷ ଭିତରେ ଖର୍ଚ୍ଚ ହେବ ସେସବୁ କାର୍ଯ୍ୟପାଇଁ Tender ନ ଡାକି ସେହି ଗ୍ରାମବାସୀଙ୍କର କମିଟିକୁ ଦିଆଯାଉ । ତାହାହେଲେ ସେସବୁ କାମ କମ୍ ସମୟରେ ଓ ଭଲ ଭାବରେ

ହୁଅନ୍ତା । ସେ ଗ୍ରାମରେ ସମସ୍ତ ଲୋକଙ୍କର ଯେଉଁ ଜମି ପୋଡ଼ ପଡ଼ୁଛି ତାହା ଚଷା ପାଇବ ବୋଲି ସେ ଲୋକେ ବେଶି ପରିଶ୍ରମ କରି କାମ କରିବେ । ଟଙ୍କାପାଇଁ ସେମାନେ ଯେତେ ପରିଶ୍ରମ ନ କରନ୍ତେ ତା'ଠାରୁ ବେଶି ପରିଶ୍ରମ କରିବେ ତାଙ୍କ ଜମିରେ ପାଣି ମାଡ଼ିବାର ସୁବିଧା ହେବ ବୋଲି । ସେଥିପାଇଁ ଆଇନଗତ ଅସୁବିଧା ଅଛି ବୋଲି ମୁଁ ଶୁଣିଛି । କିନ୍ତୁ ସମୂହ ସ୍ୱାର୍ଥ ଦୃଷ୍ଟିରୁ ଓ ସର୍ବସାଧାରଣ ସ୍ୱାର୍ଥ ଦୃଷ୍ଟିରୁ ଆଇନଗତ ଅସୁବିଧା ଦୂର କରାଯାଇ ପାରିବ । ଗ୍ରାମ୍ୟ କମିଟିକୁ ଏ କାର୍ଯ୍ୟ ଦିଆଗଲେ ସେମାନେ ସୁରୁଖୁରୁରେ କାର୍ଯ୍ୟ କରିବେ ଓ ଯେତେଟଙ୍କା ଦିଆଯିବ ତା'ଠାରୁ ଅଧିକ କାର୍ଯ୍ୟ କରିବେ । ସେଥିପାଇଁ ମୁଁ ମନ୍ତ୍ରୀଙ୍କୁ ଅନୁରୋଧ କରୁଛି ଯେ, ଏଥିପାଇଁ ଯାହା ଆଇନଗତ ଅସୁବିଧା ଅଛି ତାକୁ ଦୂର କରନ୍ତୁ, ଲୋକେ ଯେପରି ସୁବିଧା ପାଇବେ ତା'ର ବ୍ୟବସ୍ଥା କରନ୍ତୁ ।

ଗତ ବର୍ଷ ଏ ରାଜ୍ୟରେ ଅଭୂତପୂର୍ବ ବନ୍ୟା, ବାତ୍ୟା ଓ ମରୁଡ଼ି ଦେଖାଗଲା । ପ୍ରଥମେ ବନ୍ୟା ହେଲା ଯାହାକି ଏଥି ପୂର୍ବରୁ ଏ ରାଜ୍ୟରେ ଦେଖା ନ ଥିଲା । ଏହାଦ୍ୱାରା ବାଲେଶ୍ୱର ଜିଲ୍ଲା, ମୟୂରଭଞ୍ଜ ଏବଂ ଅନ୍ୟାନ୍ୟ ଜିଲ୍ଲା କ୍ଷତିଗ୍ରସ୍ତ ହେଲେ । ଅନ୍ୟାନ୍ୟ ଜିଲ୍ଲାର ଲୋକେ ଆଶା କରିଥିଲେ ଯେ ବନ୍ୟାପ୍ଲାବିତ ଅଞ୍ଚଳମାନେ ତୁରନ୍ତ ସାହାଯ୍ୟ ପାଇବେ । ଘର ତିଆରି ସାହାଯ୍ୟ, gratuitous relief ପାଇବେ । ଯେତେ ଦିନ ଧରି ସେମାନେ କାର୍ଯ୍ୟକ୍ଷମ ହୋଇ ନାହାନ୍ତି ସାହାଯ୍ୟ ପାଇବେ, କିନ୍ତୁ ଦୁଃଖର କଥା ଯେ ସେ ଅଞ୍ଚଳରେ ଲୋକେ ଅସୁବିଧାର ସମ୍ମୁଖୀନ ହେଲେ କିନ୍ତୁ ସରକାର ଯେଉଁ ପରିମାଣରେ ସାହାଯ୍ୟ ଦେଲେ ତାହା କ୍ଷତିଠାରୁ କମ ଏବଂ ଲୋକମାନଙ୍କର ଅଭାବ ସେଥିରେ ମେଣ୍ଟି ନାହିଁ । ଆଜ ସକାଳବେଳେ ଏ ଗୃହରେ ପ୍ରଶ୍ନୋତ୍ତର ଛଳରେ ଯେଉଁ ତଥ୍ୟ ଆସିଲା ତହିଁ, ସେଥିରୁ ଆପଣଙ୍କର ହୃଦବୋଧ ହୋଇଥିବ ଯେ ବନ୍ୟାପ୍ଲାବିତ ଅଞ୍ଚଳର ଗୃହ ନିର୍ମାଣ ପ୍ରକାଶେ ଅଜ ପର୍ଯ୍ୟନ୍ତ ସରକାରୀ ସାହାଯ୍ୟ ଟଙ୍କା ଅନେକ କ୍ଷେତ୍ରରେ ଲୋକେ ପାଇ ନାହାନ୍ତି । ବାଲେଶ୍ୱର ମୟୂରଭଞ୍ଜରେ ବନ୍ୟାପ୍ଲାବିତ ହେଲା, ସେ ବନ୍ୟାପ୍ଲାବିତ ଲୋକଙ୍କୁ ଆବଶ୍ୟକ ହେଉଥିବା ଧନ ପର୍ଯ୍ୟନ୍ତ ସାହାଯ୍ୟ ଦିଆଗଲା ନାହିଁ । ମାନ୍ୟବର ସଭ୍ୟମାନେ ସେକଥା ଉତ୍ଥାପନ କରିଥିଲେ । ତାହାଛଡ଼ା ସରକାରଙ୍କ ଟେଷ୍ଟରିଲିଫ୍ ଡ୍ରମ ଗ୍ରାଣ୍ଟ, ପରୀକ୍ଷା ଫିସ୍ ଛାଡ଼, ମଧ୍ୟାହ୍ନ ଭୋଜନ ସ୍କୁଲମାନଙ୍କର ଦେବା ଯେଉଁ ପ୍ରତିଶ୍ରୁତି ଦିଆଯାଇଥିଲା ତାହା ପ୍ରତିଶ୍ରୁତିରେ ରହିଛି । ମୁଁ ଆଶା କରୁଛି ବନ୍ୟାପ୍ଲାବିତ ଅଞ୍ଚଳର ଗ୍ରାମ୍ୟମାନଙ୍କ ବିଶେଷ ଭାବରେ ଆଲୋଚନା କରିବେ ମୁଁ ଆଉ ବିଶେଷ କହୁନାହିଁ ।

ବାତ୍ୟାଅଞ୍ଚଳ ଲୋକଙ୍କ ବିପତ୍ତି ସବୁଠାରୁ ଅଧିକ । ଏଥିରେ ବହୁ ଜନ କ୍ଷୟ ହେଲା । ବହୁଶତକର ଜୋଡ଼ି ଗାଈ ଓ ଅନ୍ୟାନ୍ୟ ଗୃହପାଳିତ ପଶୁମାନେ ମୃତ୍ୟୁ ମୁଖରେ ପଡ଼ିଲେ । ତା' ପାଖକୁ ଲୋକଙ୍କ ଘର ସୁଦ୍ଧା ରହିଲା ନାହିଁ । ଯେତେ ପରିମାଣରେ ଆମର କ୍ଷୟ କ୍ଷତି ହେଲା ତାହା ଓଡ଼ିଶା ବାହାରେ ପ୍ରଚାରିତ ହୋଇ ପାରିଲା ନାହିଁ । ସେଥିଯୋଗୁଁ ଆମେ କେନ୍ଦ୍ର ସରକାରଙ୍କଠାରୁ ଯେଉଁ ପରିମାଣରେ ସାହାଯ୍ୟ ପାଇବା କଥା ତାହା ପାଇ ପାରିଲୁ-ନାହିଁ । କେବଳ ଏତିକି ନୁହେଁ, ଭାରତର ବିଭିନ୍ନ ଅଞ୍ଚଳରେ ବହୁ ସାହାଯ୍ୟକାରୀ ସଂସ୍ଥା ଅଛନ୍ତି ଯେଉଁମାନେ କି ଏଭଳି ପରିସ୍ଥିତିରେ ସାହାଯ୍ୟ ଦେଇଥାନ୍ତି । ଏ ଯେଉଁ ହୃଦୟବିଦାରକ ପରିସ୍ଥିତି ସେମାନେ ଯଦି ଜାଣି ପାରିଥାନ୍ତେ ସେ ଅଞ୍ଚଳର ଲୋକେ ବହୁ ପ୍ରକାର ସାହାଯ୍ୟ ପାଇପାରିଥାଆନ୍ତି ତାହା ହୋଇ ପାରିଲା ନାହିଁ । ମୁଁ ଏଥିପାଇଁ ସରକାରଙ୍କୁ ଦୋଷ ଦେଉଛି । ତାଙ୍କ ଅପାରଗତା ଯୋଗୁ outside the State ଏହା ପ୍ରଚାର ହୋଇ ପାରିଲା ନାହିଁ । ତେଣୁ କେନ୍ଦ୍ର ସରକାରଙ୍କର ବି ଦୃଷ୍ଟିବୋଧ ହେଲାନାହିଁ । ସେ ସମୟରେ ମନ୍ତ୍ରୀମାନେ ସେ ଅଞ୍ଚଳକୁ ଘନ ଘନ ଗସ୍ତକରି କିନ୍ତୁ ଏ ଭଳି ଅନେକ ଅଞ୍ଚଳ ଅଛି ଯେଉଁଠିକି ସରକାରଙ୍କ ସାହାଯ୍ୟ ପହଞ୍ଚି ନାହିଁ । ଏ କଥା ଶ୍ରୀ ସତ୍ୟନାରାୟଣ ସିହ୍ନା ସେ ଅଞ୍ଚଳ ଗସ୍ତକରି ଆସିବା ପରେ ସାମ୍ବାଦିକ ସମ୍ମିଳନୀରେ ତାହା କହିଥିଲେ । ଏ କଥା ସ୍ପଷ୍ଟ ହୋଇଥିଲା ଯେ ଏଭଳି ସାହାଯ୍ୟ ନ ପାଇ ବହୁ ଅଞ୍ଚଳ ରହିଯାଇଛି

ସେ ଅଞ୍ଚଳର ଯେଉଁ ବନ୍ଧୁମାନେ ଗୃହରେ ଉପସ୍ଥିତ ଅଛନ୍ତି ସେମାନେ କହିବେ । ଯେ ତତ୍କାଳ Relief Committee ବସିଥିଲା, ସେଥିରେ ବହୁକଥା ଆଲୋଚନା ହେଲା, ସେଠି କୋଟିଏ କଥା ସ୍ଥିର ହୋଇଥିଲା ଯେ ଗୃହ ନିର୍ମାଣ ପାଇଁ 5,000 ଟଙ୍କା ପର୍ଯ୍ୟନ୍ତ ଲୋକଙ୍କୁ ଋଣ ଦିଆଯିବ । ଆଜି ସକାଳେ ମନ୍ତ୍ରୀ ମହାଶୟ ଯେଉଁ ଜବାବ ଦେଲେ ଏଇ 5,000 ଟଙ୍କା ଦେବ କଥା କେଉଁଠି କହିଲେ ନାହିଁ । Relief Committeeରେ କୋଟିଏ କଥା ସ୍ଥିର ହୋଇଥିଲା 2 ଏକରରୁ 5 ଏକର ଜମିଥିବା ଲୋକମାନଙ୍କୁ ଏଇ ଋଣ ଦିଆଯିବ କିନ୍ତୁ 5 ଏକର ଜମିଥିବା ଲୋକେ କୌଣସି ସାହାଯ୍ୟ ପାଇ ନାହାନ୍ତି । ଦୁଇ ଏକରରୁ 5 ଏକର ଲୋକଙ୍କ ଜମିକଥା ପରିବୃଷ୍ଟ କଲେ । ରିଲିଫ କମିଟି ସରକାରଙ୍କୁ ଯେଉଁ ପରାମର୍ଶ ଦେଲେ ତାହା କାର୍ଯ୍ୟରେ ପରିଣତ ହୋଇ ପାରିଲା ନାହିଁ । ଏ ଯେଉଁ ଘର ଭଙ୍ଗା grant ଦିଆଯିବ ତାହା minimum 50 ଟଙ୍କା କରି ଦେବେ ଏବଂ maximum 300 ଟଙ୍କା ଦେବେ । କିନ୍ତୁ ତାହା କାର୍ଯ୍ୟକାରୀ ହେଉନାହିଁ । କଲେକ୍ଟର ପାଖରେ ରିପୋର୍ଟ ଯାଇ ପହଞ୍ଚିଲା ଅଫିସରମାନେ ତାକୁ କାର୍ଯ୍ୟକାରୀ କରୁନାହାନ୍ତି । ଏସବୁ ପ୍ରଶ୍ନ ଯେତେ ଥର ପଚାରିଲୁ ସରକାରଙ୍କଠାରୁ ଜବାବ ମିଳିଲା ରିପୋର୍ଟ ଠିକ ସମୟରେ ପହଞ୍ଚି ପାରୁନାହିଁ । ଆମର ନିର୍ଦ୍ଦେଶ ପହଞ୍ଚି ପାରୁନାହିଁ । 50 ଟଙ୍କା କରି ଦିଆଯାଉ ନାହିଁ, 20 ଟଙ୍କା କରି

ଦଶା ହୋଇଛି । ଆଉ ଅଧିକ 30 ଟଙ୍କା ଦିଆଯିବ ଏକଥା ରିଲିଫ କମିଟିରେ ସ୍ଥିର ହୋଇଥିଲା କିନ୍ତୁ ତାହା କାର୍ଯ୍ୟକାରୀ ହୋଇ ପାରିଲା ନାହିଁ । ଏଥିରୁ ଦେଖାଯାଉଛି ବାତ୍ୟା ବିପନ୍ନ ଅଞ୍ଚଳର ଲୋକଙ୍କର ଏ ଦୁର୍ଦ୍ଦଶା ପାଇଁ ଆଂଶିକ ଭାବରେ ତାହାଙ୍କ ପୁନର୍ବାସରେ ସରକାର ଦାୟୀ । ସରକାର ଠିକ୍ ଭାବରେ କାମ କରିଥିଲେ ସେମାନଙ୍କ ଦୁଃଖ ଲାଘବ ହୋଇପାରିଥାନ୍ତା ଏଥିରେ ସନ୍ଦେହ ନାହିଁ ।

ତାପରେ ଆମ ଜିଲ୍ଲା ନାହିଁ କି, ଓଡ଼ିଶାର ବହୁ ଅଞ୍ଚଳରେ ଏ ବର୍ଷ ପୋକ ଦେଖା ଦେଇଛି । ଏ ପୋକପାଇଁ ସରକାରଙ୍କୁ ଦାୟୀ କରିବ, କାରଣ ଆପଣ ଦେଖିଥିବେ ସେପ୍ଟେମ୍ବର ମାସ ପର୍ଯ୍ୟନ୍ତ ଯେପରି ଭାବରେ ବର୍ଷା ହେଲା ସମସ୍ତେ ଆଶାକରୁଥିଲେ bumper crop ହେବ । ପତ୍ର ପତ୍ରିକାରେ ମଧ୍ୟ ସେଭଳି ରିପୋର୍ଟ ଦିଆଯାଇ ଥିଲା ।

ମୋର ମନେଅଛି ଯୋଗାଣ କମିଟି ଏବଂ ରିଲିଫ କମିଟିରେ ଆମ୍ଭମାନଙ୍କୁ କୁହାଯାଇଥିଲା । ଅକ୍ଟୋବର ମାସରେ ବର୍ଷା ହେଲେ ପ୍ରଚୁର ଶସ୍ୟ ଆମଦାନୀ ହେବ । ତା'ହେଲେ ଆମର ଗଚ୍ଛିତ ଧାନ ସ୍ଥଳରୁ ଆମେ ଅଧିକ ପରିମାଣରେ ବାହାରକୁ ପଠାଇ ପାରିବୁ । ସେଥିପାଇଁ କର୍ମକର୍ତ୍ତାମାନେ ଶିଥିଳ ହୋଇଗଲେ, ସରକାରୀ ବିଶୃଙ୍ଖଳା ହେଲା । ଅକ୍ଟୋବର ମାସରେ ବର୍ଷା ଯେତେବେଳେ ନ ହେଲା ପୂଜା ଛୁଟିପରେ ସରକାରୀ ଅଫିସ ସବୁ ଯେତେବେଳେ ଖୋଲିଲା ସେହି ସମୟ ମଧ୍ୟରେ ପୋକ ଯୋଗୁଁ ଲୋକଙ୍କୁ ସାହାଯ୍ୟ ଦେବା ବ୍ୟବସ୍ଥା ହୋଇ ପାରିଲା ନାହିଁ । ସେମାନେ ବରାବର ଆଶା କରୁଥିଲେ ବର୍ଷା ହେବ ବୋଲି, ତେଣୁ ଜିଲ୍ଲା କଲେକ୍ଟରମାନଙ୍କଠାରୁ କୌଣସି ରିପୋର୍ଟ ମଗାଗଲା ନାହିଁ । ଅକ୍ଟୋବର ମାସରେ ବର୍ଷା ନ ହେବାରୁ ଚାଷୀମାନେ ଆତୁର ହୋଇ ନଳର ଖର୍ଚ୍ଚ ବଞ୍ଚାଇବାପାଇଁ ପମ୍ପ ଯୋଗାଇବାକୁ ଦରଖାସ୍ତ କଲେ । ତାହା ତାଙ୍କୁ ମିଳିଲା ନାହିଁ । ଏତେ ଆତୁର ହୋଇ ଚାଷୀ ରଡ଼ି କରିଛନ୍ତି ଆମେ କିନ୍ତୁ ଯୋଗାଇ ପାରିଲୁ ନାହିଁ । ଯାହାକାହା ଭଙ୍ଗାରୁଜା ଥିଲା ସେହି ମାସ 20 ତାରିଖ ଭିତରେ ମରାମତି କରାଯାଇ ପାରିଥାନ୍ତା । ଯଦି ଅକ୍ଟୋବର ମାସ ଶେଷ ସପ୍ତାହରେ ବର୍ଷା ହୋଇଥାନ୍ତା ମରାମତି ହୋଇଥିବା ପମ୍ପଗୁଡ଼ିକ ହୁଏତ ରବି ଫସଲ ପାଇଁ ବ୍ୟବହାର କରିପାରିଥାନ୍ତେ । ମରାମତିରେ ପଇସା ଖର୍ଚ୍ଚ ହେବ ବୋଲି ଡର ସେଥିରେ ଆଗଭର ହେଲେ ନାହିଁ । ଶେଷ ସମୟରେ ଚାଷୀ ପମ୍ପ ଯୋଗାଇବା ପାଇଁ ରଡ଼ି କଲାରୁ ଯୋଗାଣ ମଧ୍ୟ ହୋଇ ପାରିଲା ନାହିଁ । ପରେ ଯୋଗାଣ କମିଟିର ଆଲୋଚନାରେ କୁହାଗଲା 5 ଘୋଡ଼ା ଶକ୍ତି ବିଶିଷ୍ଟ ପମ୍ପର ଆବଶ୍ୟକତା ନାହିଁ । କାରଣ 24 ଘଣ୍ଟା ଚଳିଲେ ମଧ୍ୟ ଏକ ଏକର ଜମିରୁ ଅଧିକ ଜଳସେଚନ କରିପାରିବ ନାହିଁ । ତା' ସତ୍ତ୍ୱେ ଚାଷୀଙ୍କୁ ସନ୍ତୁଷ୍ଟ କରିବାପାଇଁ

ବିଭିନ୍ନ ସ୍ଥାନକୁ କିଛି କିଛି ପମ୍ପ ପଠାଗଲା । ତଦ୍ୱାରା ଅତି ସାମାନ୍ୟ ଜମି ପୋଡ଼ିରୁ ରକ୍ଷା ପାଇଲା, କିନ୍ତୁ ଏହା ଭିତରେ ଯେତେ କ୍ଷୁଦ୍ର ଜଳସେଚନ ବନ୍ଦୋବସ୍ତ ହୋଇପାରିଥାନ୍ତା, ମୁଁ ସବୁବେଳେ କହୁଥିଲି ଜନତାର ଅମଳରେ ଯେଉଁସବୁ କ୍ଷୁଦ୍ର ଜଳସେଚନ ମରାମତି ହେଉଥିଲା ସେଗୁଡ଼ିକ ମରାମତି ହୋଇଥିଲେ ଚାଷୀ ବହୁ ଶହ ଏକର ଜମିରେ ଖର୍ଚ୍ଚ ବଞ୍ଚାଇ ପାରିଥାନ୍ତା । ତାହା ହେଲା ନାହିଁ, ଯତ୍ ସାମାନ୍ୟ ପାଣି ଚାଷୀ ପାଇଲା ଅତି ଅସୁବିଧାରେ ତାକୁ ବ୍ୟବହାର କରି ଖର୍ଚ୍ଚ ବଞ୍ଚାଇବା ପାଇଁ ଚେଷ୍ଟା କଲା ।

ଗଞ୍ଜାମର ଋଷିକୁଲ୍ୟା ସିଷ୍ଟମରେ ଯେତେ ପାଣି ଗଡ଼ିବାର କଥା ତା'ର ଟେଲ୍ ଏଣ୍ଡ ଯଥା, ରୁଣ୍ଡପୁର, ବ୍ରହ୍ମପୁର ଏବଂ ତା'ଠାରୁ ଦୂରରେ ଥିବା ଅଞ୍ଚଳ ପାଣି ଯୋଗାଇ ଦିଆଯାଇ ପାରିଲା ନାହିଁ । ସେ ସମୟରେ ମୁଁ ଉପସ୍ଥିତ ଥିଲି, ମୁଁ ଦେଖିଛି ବ୍ରାଞ୍ଚ କେନାଲରେ ଜଳ ଛାଡ଼ିବା ପାଇଁ କୃଷକଙ୍କ ଭିତରେ ଯେଉଁ ଆତୁରତା ଏବଂ ସେତେବେଳେ କର୍ମଚାରୀ ଗୋଷ୍ଠୀର ହୃଦୟହୀନତା ଦେଖିଲେ ଦୁଃଖ ଲାଗେ । ସେମାନେ କହନ୍ତି 4 ଦିନ ପାଣି ଦେବୁ, କିନ୍ତୁ ଗୋଟିଏ ଦିନ ଯୋଗାଇ ଅନ୍ୟ ଦିନମାନଙ୍କରେ କେନାଲ ପାଣି ବନ୍ଦ କରିଦିଅନ୍ତି । ଏହା ଫଳରେ ଚାଷୀର ବହୁତ କ୍ଷତି ହେଲା, ଏଥିପାଇଁ ଏ ଯୋଜନା କାର୍ଯ୍ୟକାରୀ ନ ହେଲେ ବିଶେଷ କରି ମଧ୍ୟମ ଜଳସେଚନ ଯୋଜନା ଶୀଘ୍ରରେ ଯେପରିକି ଅଛି କାର୍ଯ୍ୟକାରୀ ନ ହେଲେ ଆମେ ଚାଷୀଙ୍କୁ ବଞ୍ଚାଇ ପାରିବୁ ନାହିଁ କି ତାଙ୍କର ଖର୍ଚ୍ଚ ବଞ୍ଚାଇ ପାରିବୁ ନାହିଁ । ମୁଁ ଏକାନ୍ତ କହୁଥିଲି ଲଗ ଲଗ ତିନିବର୍ଷ ଗଞ୍ଜାମର ଅନେକ ଅଞ୍ଚଳ ପୋଡ଼ି ହୋଇଛି ତା' ଫଳରେ ଚାଷୀର ମେରୁଦଣ୍ଡ ଭାଙ୍ଗି ଯାଇଛି, ସେମାନେ ବଞ୍ଚିବେ କିପରି ତା' ଏକ ଚିନ୍ତାର ବିଷୟ ହୋଇ ପଡ଼ିଛି । ଯେଉଁ ଅଞ୍ଚଳରେ କେନାଲ ଯାଇଛି ସେଠାରେ କିଛି ଧାନ ହୋଇଛି ପୁଣି ସେହି ଧାନରୁ ଦେଖାଯାଉଛି ଅଗାଡ଼ି ବହୁତ ବାହାରୁଛି । ସରକାର କୌଣସି ସ୍ଥାନରେ ଶତକଡ଼ା 75 ବା 80 ଫସଲ ହୋଇଛି ବୋଲି ଯାହା ଭାବୁଛନ୍ତି ବାସ୍ତବ କ୍ଷେତ୍ରରେ ତା' ହେବ ନାହିଁ । ଗତବର୍ଷ sample survey ହେଉଛି ବୋଲି କଲେକ୍ଟର କହିଲାବେଳେ ମୁଁ କହିଲି sample survey କଲାବେଳେ ଜମିର ଧାନକୁ ଦେଖି କରିବେ ନାହିଁ, ଧାନରେ ଅଗାଡ଼ି ମଧ୍ୟ ରହୁଛି, ତାକୁ ଦେଖି ରିପୋର୍ଟ ଉପସ୍ଥାପିତ କରିବେ । ଯେହେତୁ ବହୁ କ୍ଷେତ୍ରରେ ଏହିଭଳି ଅଗାଡ଼ି ଦେଖାଯାଇଛି । ସେହି ଦୃଷ୍ଟିରୁ ସେଥିରେ ମହକୁମାର ରିପୋର୍ଟ ଆସିବ ମୋର ଧାରଣା ତାହା ବାସ୍ତବ ଚିତ୍ର ନୁହେଁ । ଠିକେ ଅତିରଞ୍ଜିତ କରି ଦେଇଥିବେ । ଉପବାଚସ୍ପତି ମହୋଦୟ ଏ ପ୍ରସଙ୍ଗରେ ଅତି ଦୁଃଖର ସହିତ କହିବାକୁ ହେଉଛି ଯେଉଁ ଅଞ୍ଚଳ ଲଗ ଲଗ 3 ବର୍ଷ ପୋଡ଼ି ହୋଇଛି, ଯେଉଁ ଅଞ୍ଚଳ ଲୋକଙ୍କର କ୍ରୟ ଶକ୍ତି ନାହିଁ, ଯେଉଁମାନେ କି ବଣଜଙ୍ଗଲରୁ କାଠଗୋଟା ଆଣି ଚଳୁଛନ୍ତି ସେଠାରେ ଯେଉଁ ଖଇରାତି ଦୋକାନ ଥିଲା ବନ୍ଦ ହୋଇଯିବା ଫଳରେ ଲୋକେ ରହିବାପାଇଁ

ବଡ଼ ଅସୁବିଧାରେ ପଡ଼ୁଛନ୍ତି । ଲୋକଙ୍କୁ କର୍ମଯୋଗାଣ ଏବଂ ଖଚୁରା ଦୋକାନକୁ ଚାଉଳ ଯୋଗାଣ ନ ହେଲେ ସେମାନେ ବଞ୍ଚିପାରିବେ ନାହିଁ । ଏକଥା ବାରମ୍ବାର କୁହାଗଲେ ମଧ୍ୟ ସରକାର କାହିଁକି ଶୁଣି ନ ଶୁଣିଲା ପରି ରହୁଛନ୍ତି । କାଲି ଯୋଗାଣ ମନ୍ତ୍ରୀ କହିଲେ ଖଚୁରା ଦୋକାନ କୌଣସିଠାରେ ବନ୍ଦ କରାଯାଇ ନାହିଁ । ମୁଁ ରିପୋର୍ଟ ପାଇଛି ବାଲେଶ୍ୱର ଜିଲ୍ଲାର ଅନେକ ସ୍ଥାନରେ ଖୁଚୁରା ଦୋକାନ ବନ୍ଦ କରି ଦେଉଛନ୍ତି । ତେଣୁ ଚାଷୀଙ୍କୁ ଚାଉଳ ଯୋଗାଇବା ପ୍ରଧାନ ସମସ୍ୟା ହୋଇ ପଡ଼ୁଛି, ସେଥିପ୍ରତି ସରକାର ଦୃଷ୍ଟି ଦିଅନ୍ତୁ । ନିକଟରେ ପାର୍ଲିଆମେଣ୍ଟ ମେମ୍ବରମାନଙ୍କୁ ଡକା ଯାଇଥିଲା, ସରକାର ସେମାନଙ୍କୁ ଗୋଟିଏ ଉଚ୍ଚକ୍ଷମତାପନ୍ନ କମିଟିରେ ବସାଇ ରାଜ୍ୟର ଆର୍ଥିକ ଅବସ୍ଥା ଏବଂ ବିଭିନ୍ନ ଯୋଜନା ବିଷୟ ସେମାନଙ୍କୁ ବୁଝାଇଥିଲେ ଏବଂ ସ୍ଥିର ହୋଇ କେନ୍ଦ୍ର ସରକାରଙ୍କ ଠାରୁ ଯେ କୌଣସି ମତେ 10 କୋଟି ଟଙ୍କା ସାହାଯ୍ୟ ଆଣି କ୍ଷୁଦ୍ର ଜଳ ଯୋଜନାରେ ସେ ଟଙ୍କା ଖଟାଇବୁ । ଏତଦ୍ୱାରା ଆମର ଚାଷୀ ଜଳ ପାଇବେ ଏବଂ ବେକାର ଓଭରସିଅର ଇଞ୍ଜିନିୟରମାନଙ୍କର କର୍ମସଂସ୍ଥାନ ହୋଇ ପାରିବ । କିନ୍ତୁ ଏ କଥା କେବଳ ପ୍ରସ୍ତାବରେ ରହିଲା । ସେ ଦିଗରେ କୌଣସି ସକ୍ରିୟ ଓ sincere ଉଦ୍ୟମ ହେଲା ନାହିଁ । ଯାହା ଫଳରେ ମୁଁ ଆଶଙ୍କା କରୁଛି ଆମେ ଯେତେ ପାଟିତୁଣ୍ଡ କଲେ ମଧ୍ୟ ଚାଉଳ ଯୋଗାଣ ପରିସ୍ଥିତି କେବେ ସୁଧୁରି ପାରିବ ନାହିଁ । ସରକାର ହୃଦୟତା ଥିଲେ ଭଲ କାର୍ଯ୍ୟ କରିବା ଉଚିତ୍ । ହୃଦୟହୀନତା ହେଲେ ଚଳିବ ନାହିଁ । କେବଳ ବାକ୍ୟରେ ବଲ୍ଲଭାରେ ଲୋକଙ୍କୁ ଚାଉଳ ଯୋଗାଇବାକୁ ଚାଷୀମାନଙ୍କୁ ଜଳସେଚନ ବ୍ୟବସ୍ଥା କରିବୁ ବୋଲି ଆମେ କହିବୁ ତା'ହେଲେ ସେ ସବୁ କେବେ ସାଫଲ୍ୟମଣ୍ଡିତ ହୋଇପାରିବ ନାହିଁ । ଆମେ ଯାହା କରିବା ତାକୁ ଠିକେ sincerely ଭାବରେ କରିବା ଉଚିତ୍ ବୋଲି ମୋର ଯେତେବେଳେ ଭାରତର ବିଭିନ୍ନ ରାଜ୍ୟରେ ଏଠୁ Delegation ଯାଇ କେନ୍ଦ୍ର ପ୍ରଧାନ ମନ୍ତ୍ରୀ, ଜଳସେଚନ ମନ୍ତ୍ରୀ ଓ ଅର୍ଥ ମନ୍ତ୍ରୀଙ୍କୁ ତାଙ୍କ ନିଜର ଦୁରବସ୍ଥା କଥା ବୁଝାଇ କିଛି ଅଧିକ ଅର୍ଥ ସାହାଯ୍ୟ ଆଣିଛନ୍ତି, ସେତେବେଳେ ଆମେ କାହିଁକି ସେହିଭଳି ଉଦ୍ୟମ ନ କରିବା । ଆମେ ସେହିଭଳି ଉଦ୍ୟମ କରି କେନ୍ଦ୍ର ସରକାରଙ୍କଠାରୁ ଆମର ଦୁରବସ୍ଥା ଦୂର କରିବାପାଇଁ ଅଧିକ ଟଙ୍କା ଆଣି ପାରିବା । ତାହା ଯଦି ନ କରାଯାଏ ତା'ହେଲେ ଏ ଦେଶର ଲୋକଙ୍କୁ ବଞ୍ଚାଇବା କିପରି ? ଲୋକଙ୍କୁ କିପରି ବଞ୍ଚାଇବା, ଏ ହେଲା ବଡ଼ କଥା । ଆମେ ଲୋକଙ୍କୁ ବଞ୍ଚାଇବା ପାଇଁ ସକଳ ପ୍ରକାର ଉଦ୍ୟମ କରିବା ଉଚିତ୍ । ସେଥି ଭିତରୁ ପ୍ରଧାନ ଉଦ୍ୟମ ହେଉଛି କେନ୍ଦ୍ର ସରକାରଙ୍କଠାରୁ ଅଧିକ ଟଙ୍କା ଆଣିବା । L. I. C. ଠାରୁ ମଧ୍ୟ ସୁବିଧା କରି ଟଙ୍କା ଆଣିବା । ଅନ୍ୟ ଯେ କୌଣସିଠାରୁ ମଧ୍ୟ ନାନା ଉପାୟ କରି ଟଙ୍କା ଆଣିବା ଓ ଆମର ଜଳସେଚନ ଯୋଜନାକୁ କାର୍ଯ୍ୟକାରୀ କରିବା ।

ଉପାଧ୍ୟକ୍ଷ ମହୋଦୟ, ମୁଁ ଏହି ପ୍ରସଙ୍ଗରେ ଆପଣଙ୍କୁ ଏତିକ କହିବି ଯେ ଜଳସେଚନ ଯୋଜନା କରିବା ହେଉଛି ଆମର ଗୋଟିଏ ମୁଖ୍ୟ ସମସ୍ୟା । ତା'ପରେ retail shops ଖୋଲିବା ହେଉଛି ଦ୍ୱିତୀୟ ପ୍ରଧାନ ସମସ୍ୟା, ସେଥି ସଙ୍ଗେ ସଙ୍ଗେ ଲୋକଙ୍କୁ ମଧ୍ୟ କାମ ଯୋଗାଇବା ଉଚିତ୍ । ଆଜି ସକାଳେ ଯୋଗାଣ ମନ୍ତ୍ରୀ କହୁଥିଲେ ଯେ ଆମର 1 ଲକ୍ଷ tonnes ଚାଉଳ ମହଜୁଦ ଅଛି । ଏତେ ଚାଉଳ ଥାଇ ଥାଇ ବିଭିନ୍ନ ସ୍ଥାନରେ ଯେଉଁ-ସବୁ retail shop ଥିଲା ତାକୁ ସରକାର କାହିଁକି ବନ୍ଦ କରିଦେଲେ, ମୁଁ ତ ବୁଝିପାରୁ ନାହିଁ । ସେହି ସ୍ଥାନମାନଙ୍କରେ ସେ ସବୁ ଦୋକାନ ଯେବେ ଖୋଲି ରଖାଯାଇଥାନ୍ତା, କେବଳ ସେତିକ ନୁହେଁ, ନୂତନ ନୂତନ ସ୍ଥାନମାନଙ୍କରେ ଯେଉଁଠି ପୂର୍ବରୁ ପୋଡ଼ି ହୋଇଛି ସେ ଅଞ୍ଚଳରେ ଦୋକାନ ଖୋଲିବା ପାଇଁ ଯେତେ ଅପତ୍ତି ହେଲା ସରକାର ସେଥିରେ ନଜର ରଖିଛନ୍ତି । ସେ ସବୁ ଜାଗାରେ ଚାଉଳ ଦୋକାନ ଖୋଲାଗଲା ନାହିଁ । ତା' ଫଳରେ ଲୋକେ ଅନେକ ଦୁଃଖ ଯାତନା ଆଜି ଭୋଗ କରୁଛନ୍ତି । ସେଥିପ୍ରତି ଆଜି ଆମ ସରକାରଙ୍କର ଆଖି ଖୋଲୁ । ବିଶେଷକରି ଯେଉଁସବୁ ଅଞ୍ଚଳରେ ଗତ 3 ବର୍ଷ ଧରି ଲଗ ଲଗ ପୋଡ଼ି ହୋଇଛି ସେ ଅଞ୍ଚଳରେ ଲୋକଙ୍କୁ କାର୍ଯ୍ୟ ଦେବାପାଇଁ ସରକାର ବନ୍ଦୋବସ୍ତ କରନ୍ତୁ । ମାଇନର irrigation ବନ୍ଧକଟା ମରାମତି କାର୍ଯ୍ୟରେ ତାଙ୍କୁ ନିଯୁକ୍ତ କରାଯାଉ । ସେଥିପାଇଁ ମୁଁ କହୁଛି ଯେ ଏ ସବୁ କାମ ଗାଁ କମିଟି ଯଦି ଦିଆ-ହୋଇଥାନ୍ତା ତା'ହେଲେ ଗାଁ ଲୋକେ ନିଜେ ପରିଶ୍ରମ କରି ସେ ସବୁ କାର୍ଯ୍ୟ କରନ୍ତେ । ଯେତେ ପଇସା ଦିଆଯିବ ତା'ଠାରୁ ସେମାନେ ଯଥେଷ୍ଟ ଅଧିକ କାମ କରନ୍ତେ । ବନ୍ଧ, ପୁଷ୍କରିଣୀ ଓ ଅନ୍ୟାନ୍ୟ କ୍ଷୁଦ୍ର ଜଳସେଚନ ଯୋଜନା କରିଗଲେ ସେମାନଙ୍କ ଜମିରେ ଜଳଯୋଗାଣ ହେବ । ଏହି ଲକ୍ଷ୍ୟ ଓ ଉଦ୍ଦେଶ୍ୟରେ ଚଳିତ ବର୍ଷ ଯେଉଁ ଦୁଃଖ କଷ୍ଟ ଭୋଗ କଲେ ସେ ନିଶ୍ଚୟ ଅଧିକ କାମ କରି ନିଜ ଅଞ୍ଚଳକୁ ବଞ୍ଚାଇବାପାଇଁ ଚେଷ୍ଟା କରିବେ । ସେ ଦୃଷ୍ଟିରୁ ତୁରନ୍ତ ସେମାନଙ୍କୁ କାର୍ଯ୍ୟ ଯୋଗାଇବା ଦରକାର । ଯଦି ଏଥିରେ ଡେରି କରାଯାଏ ଓ ୩/୪ ମାସ ପରେ ତାଙ୍କୁ କର୍ମ ଯୋଗାଇବା ପାଇଁ ବ୍ୟବସ୍ଥା କରାଯାଏ ତା'ହେଲେ ସେମାନେ ଏପରି ଅବସ୍ଥାରେ ପଡ଼ିବେ ଯେ ସରକାର ତାଙ୍କ ପାଇଁ କର୍ମ ସଂସ୍ଥା ନ କଲାବେଳକୁ ସେମାନେ କାର୍ଯ୍ୟକ୍ଷମ ଅବସ୍ଥାରେ ନ ଥିବେ । ସେତେବେଳେ ଏ ସରକାରଙ୍କୁ gratuitous relief ତାଙ୍କୁ ଦେବାକୁ ପଡ଼ିବ । ତେଣୁ ମୁଁ କହୁଛି ଯେ ତାଙ୍କୁ ଯାହା ବର୍ତ୍ତମାନ test relief ଟଙ୍କା ଦିଆଯିବ ୫୦/୬୦ ହଜାର ଓ ବିଭିନ୍ନ ଜିଲ୍ଲାକୁ ଯାହା ଟଙ୍କା ଦିଆଯିବ ମୁଁ ସେ ବିଷୟରେ କିଛି ନ କହି କହୁଛି ଯେ ଯଦି ଗଞ୍ଜାମ ଜିଲ୍ଲାକୁ ୧ କୋଟି ଟଙ୍କା test relief ଦିଆଯିବ ତା'ହେଲେ ବିଭିନ୍ନ ଅଞ୍ଚଳରେ ଏହି test relief କାମ ଆରମ୍ଭ କରାଯାଇ ପାରିବ ।

ତା'ପରେ ଆଉ ଗୋଟିଏ କଥା ହେଉଛି ଆମର ସେ ଅଞ୍ଚଳରେ ଯେଉଁଠି ମାଇନର ସ୍କୁଲ, U. P. School ଛାତ୍ରମାନଙ୍କୁ mid-day mill ଦିଆଯାଉଥିଲା, ବଡ଼ ଦୁଃଖର କଥା ତାହା ବର୍ତ୍ତମାନ ବନ୍ଦ ହୋଇଯିବା ଉପରେ । କାରଣ ଯେଉଁ ସମସ୍ତପାଇଁ ଏହା ଦିଆଯାଉଥିଲା, ତାକୁ ବର୍ତ୍ତମାନ ସଙ୍କୁଚିତ କରାଯିବା ଉପରେ । ୩/୪ ମାସ ପର୍ଯ୍ୟନ୍ତ ଦିଆଯିବ । District Social Organiser ଏ କଥା କହୁଥିଲେ । ମୁଁ ତ କହୁଛି କେବଳ U. P. ଓ ପ୍ରାଥମିକ ସ୍କୁଲ ନୁହେଁ । ଯେଉଁଥିରୁ ଯୋଡ଼ ଅଞ୍ଚଳରେ ଖାଇବାକୁ ନାହିଁ, ଲୋକେ ଦୁଃଖ ଦୁର୍ଦ୍ଦଶା ଭୋଗୁଛନ୍ତି, ତେଣୁ M. E. ଓ High School ଛାତ୍ରମାନଙ୍କ ପାଇଁ mid-day mill ବ୍ୟବସ୍ଥା କରିବା ଉଚିତ । ଆମର ଛାତ୍ର ଓ ଶିଶୁ ସମାଜକୁ ବଞ୍ଚାଇବାକୁ ହେଲେ ଏହି mid-day millର ବ୍ୟବସ୍ଥା ଆମକୁ କରିବାକୁ ହେବ । ହାଇସ୍କୁଲ ଓ M. E. ସ୍କୁଲରେ ଯେପରି aided School ସେଥିରେ ଛାତ୍ରମାନଙ୍କୁ ଦରମା ଦେବାକୁ ହେଉଥିଲା । ଛାତ୍ରମାନେ ତ ଆଉ ଦରମା ଦେଇପାରୁ ନାହାନ୍ତି, ତେଣୁ ସରକାରର ପୂରା ଗ୍ରାଣ୍ଟଦେବା ଉଚିତ୍ । ତା ନ କଲେ ସ୍କୁଲଗୁଡ଼ିକ ବନ୍ଦ ହୋଇଯିବ । ସେ ସ୍କୁଲଗୁଡ଼ିକର ଅବସ୍ଥା ଏପରି ଯେ ଏମାନେ ତାଙ୍କର ଶିକ୍ଷକ ଓ establishmentମାନଙ୍କରେ ଯେଉଁମାନେ କାର୍ଯ୍ୟ କରୁଛନ୍ତି ତାଙ୍କ ଦରମା ଦେଇପାରୁ ନାହାନ୍ତି । ସେଥିପାଇଁ ତାଙ୍କର ଯେଉଁ ଖର୍ଚ୍ଚ ତାକୁ ପୂରା ସରକାର ଗ୍ରାଣ୍ଟ ହିସାବରେ ନ ଦେଲେ ସେ ସ୍କୁଲଗୁଡ଼ିକ ତିଷ୍ଠି ପାରିବ ନାହିଁ । ଯେ ସ୍କୁଲ-ଗୁଡ଼ିକ କିପରି ବଞ୍ଚିବ ସେଥିପାଇଁ ବ୍ୟବସ୍ଥା କରାଯିବା କଥା ନ ହେଲେ ଅବସ୍ଥା ଅସମ୍ଭାଳ ହେବ ।

ତା' ସାଙ୍ଗେ ସାଙ୍ଗେ ତଗାଭି ଓ ଅନ୍ୟାନ୍ୟ ଋଣ କୃଷୀମାନେ ପାଉପାରିବା କଥା ସେଥିପାଇଁ security ଦେବା କଥା । ତାଙ୍କର ତ ସମ୍ପତ୍ତି ବୋଲିଲେ ଜମି ଓ ଘର । ସେ ସବୁ ଦେଇ ତ ତଗାଭି ଓ ଅନ୍ୟ ଋଣ ଆଣି ସାରିଛନ୍ତି । ଚଳିତ ବର୍ଷ ତ ସବୁ ପୋଡ଼ି ଯାଇଛି । ଆଉ କ'ଣ security ଦେଇ ସେମାନେ ଋଣ ଆଣିବେ । ମୁଁ ସେଥିପାଇଁ କହୁଛି ସରକାର ଆଇନ୍ ପରିବର୍ତ୍ତନ କରିବା ଉଚିତ୍ । ତା'ହେଲେ ସେମାନେ ତଗାଭି ଓ ଅନ୍ୟ ଋଣ ପାଇ-ପାରିବେ । ସେ ସବୁ ତଗାଭି ଓ ଅନ୍ୟ ଋଣ ପାଇଲେ କୃଷୀ ଜେଲ୍ଲାର ପ୍ରକୃତ ଉପକାର ପାଇବ ଓ ତାହାର ସଦ୍‌ବ୍ୟବହାର କରିବ । ତେଣୁ ଏ ବାବଦରେ ଆଇନଗତ ବାଧାକୁ ଦୂର କରାଯାଉ ଓ କୃଷୀମାନେ କିପରି ସୁବିଧାରେ ଋଣ ପାଇବେ ତା'ର ବ୍ୟବସ୍ଥା କରାଯାଉ । ଏ ସବୁ ବ୍ୟବସ୍ଥା ଖୁବ୍ ଶୀଘ୍ର ହେବା ଦରକାର । ଯଦି ଆବଶ୍ୟକ ହୁଏ ବିଭିନ୍ନ ଦଳର ଦଳ-ପତିମାନଙ୍କୁ ଡାକି ତାଙ୍କ ସହିତ ପରାମର୍ଶ କରି ତୁରନ୍ତ ବ୍ୟବସ୍ଥା କରିବା ଉଚିତ୍ । ତା'ହେଲେ କିଛି ନା କିଛି ଯୋଜନା ତୁରନ୍ତ କାର୍ଯ୍ୟକାରୀ ହେବ । ନ ହେଲେ ଅବସ୍ଥା ଅସମ୍ଭାଳ ହେବ । ଗଲା relief କମିଟିରେ ମୁଁ କହିଥିଲି test relief କାମ, road କାମ ଓ ମରାମତି ହେବା କାମ ଅତି ଶୀଘ୍ର କରିବା ଦରକାର । Test relief ଓ ମାଇନର irrigation

ଟଙ୍କାକୁ drought affected ଅଞ୍ଚଳରେ ଯୋଗାଇବା ଓ road repair କାମ କରିବା ତା'ହେଲେ ଲୋକମାନେ ବାସ୍ତବିକ ଉପକୃତ ହେବେ ଓ ସେମାନେ ଚଳିବାପାଇଁ ଦୈନିକ ଭଲ ଟଙ୍କା ପାଆନ୍ତେ । ତା ସଙ୍ଗେ ସଙ୍ଗେ ନିଜ ଅଞ୍ଚଳରେ ଯେଉଁ କୂପ, ପୁଷ୍କରିଣୀ ବା ଅନ୍ୟାନ୍ୟ ଜଳସେଚନର ବ୍ୟବସ୍ଥା ଅଛି, ସେ ଗୁଡିକର ଉନ୍ନତି ପାଇଁ ବ୍ୟବସ୍ଥା କଲେ ତାଙ୍କର ନିଜର ମଧ୍ୟ ଉନ୍ନତି ହେବ । ସେ ଦୃଷ୍ଟିରୁ ଏ ସବୁ କାର୍ଯ୍ୟ କରିବାପାଇଁ ସରକାର ତୁରନ୍ତ ପଦକ୍ଷେପ ନିଅନ୍ତୁ । ବନ୍ୟା ସମୟରେ ଯେପରି ସେମାନଙ୍କର ଅଦୂରଦର୍ଶିତା ଏବଂ ଅପାରଣାମ-ଦର୍ଶିତା ଜଣାଗଲା ସେପରି ବାତ୍ୟାଞ୍ଚଳରେ ଦେଖା ନ ଯାଉ । ତା' ପୂର୍ବରୁ ମୁହିର warning ସରକାର ଶୁଣନ୍ତୁ ଏବଂ କାର୍ଯ୍ୟ କରନ୍ତୁ, ଏତିକି ମୋର ନିବେଦନ ।

ମରୁଡ଼ି ସମ୍ପର୍କରେ ଆଲୋଚନା କରିବା ପୂର୍ବରୁ ଅନାହାର ମୃତ୍ୟୁ ସମ୍ପର୍କରେ ଏ ରାଜ୍ୟର ବହୁଳ ପାଠରୁ ଖବରକାଗଜରେ ବାହାରିଛି । କେବଳ ଖବରକାଗଜମାନଙ୍କରେ ନୁହେଁ ଏ ବ୍ୟବସ୍ଥା ସଭାର ସଭ୍ୟମାନେ ଓ ଅନ୍ୟାନ୍ୟ ମାନ୍ୟଗଣ୍ୟ ବ୍ୟକ୍ତିମାନେ ଅନାହାର ମୃତ୍ୟୁ ଖବର, ଖବରକାଗଜରେ ପ୍ରକାଶ କରିଛନ୍ତି । ସେ ସମ୍ପର୍କରେ ସରକାର ନୀରବ ଅଛନ୍ତି ଏବଂ ଏବେ କେବଳ ଅନାହାର ମୃତ୍ୟୁ ଘଟିନାହିଁ ବୋଲି ବ୍ୟବସ୍ଥା ସଭାରେ ଘୋଷଣା କରୁଛନ୍ତି । ମୁଁ ବୁଝିପାରୁ ନାହିଁ, ବାସ୍ତବିକ୍ ଯେଉଁଠି ଅନାହାରଜନିତ ମୃତ୍ୟୁ ଘଟିଛି ସରକାର ତାକୁ ମାନିଲେ ତାଙ୍କ ମର୍ଯ୍ୟାଦା କିପରି ବ୍ୟାଘାତ ଘଟିବ ? ଅନାହାର ମୃତ୍ୟୁ ଘଟିନାହିଁ ବୋଲି ଢ଼ିଣ୍ଡିମ ପିଟିବା ଦ୍ୱାରା ଦେଶରେ ଘଟିଥିବା ମରୁଡ଼ି ଜନିତ ଅବସ୍ଥା ବାହାରର ଲୋକମାନେ ପାଇପାରୁନାହାନ୍ତି । ଏପରି କି କେନ୍ଦ୍ର ସରକାର ବି ଭଲ ଭାବରେ ହୃଦୟଙ୍ଗମ କରି ନାହାନ୍ତି । ଅନାହାର ମୃତ୍ୟୁକୁ ନ ମାନିବା ଅର୍ଥ ପ୍ରକୃତ ପରିସ୍ଥିତିକୁ ଘୋଡ଼ାଇ ରଖିଲାପରି ହେଉଛି । ଆପଣ ଜାଣନ୍ତି ଏ ରାଜ୍ୟର ମରୁଡ଼ି ଚିର ସହଚର । ଗତ 3 ବର୍ଷ ଧରି ଏ ରାଜ୍ୟରେ ଏହା ଘଟିଛି । ଏଥିପୂର୍ବରୁ କଳାହାଣ୍ଡି ଜିଲ୍ଲାରେ ଯେଉଁ ମରୁଡ଼ି ହୋଇଥିଲା ତାହା ଉତ୍କଟ ହେଲେ ବି ଏତେ ବ୍ୟାପକ ହୋଇନଥିଲା । କିନ୍ତୁ ଗତ ବର୍ଷ ବନ୍ୟା ଓ ମରୁଡ଼ି ପରିସ୍ଥିତି ଯାହା ହୋଇଛି ତାହା ଅନ୍ୟାନ୍ୟ ବର୍ଷ ତୁଳନାରେ ଅତ୍ୟନ୍ତ ଉତ୍କଟ ବ୍ୟାପକ ହୋଇଛି । ଆମ ଗଞ୍ଜାମ ଜିଲ୍ଲାରେ ପରିସ୍ଥିତି ଯେପରି ଉତ୍କଟ ହୋଇଥିଲା ଆମ ଜିଲ୍ଲାର ସମସ୍ତ ପ୍ରତିନିଧି ଏକତ୍ରିତ ହୋଇ ଏ ବିଷୟ ମୁଖ୍ୟମନ୍ତ୍ରୀଙ୍କୁ କହିଥିଲୁ । ଆମେ ଡିସେମ୍ବର ମାସରେ କହିଥିଲୁ ସେ ସବୁ ଅଞ୍ଚଳରେ ପାନୀୟ ଜଳ ଯୋଗାଣରେ ତୁରନ୍ତ ବ୍ୟବସ୍ଥା କରିବା ଦରକାର । ଯେପରି ଦେଖାଯାଉଛି ଆମେ କହିଥିଲୁ ଅନାବୃଷ୍ଟି ଯୋଗୁଁ ଅନେକ ନାଳାମାନଙ୍କର ପାଣି ଅଭାବ ହେଲାଣି । ଆଉ ମାସେ ପରେ ଖଣ୍ଡେ ଭିତରେ ପାଣି ଶୁଖିଯିବ । ଲୋକେ ପିଇବାପାଣି ପାଇବେ ନାହିଁ ।

ଅଭାବରେ ଯେପରି ସେମାନେ ଛଳବଳ ହେଲେ ତାହା ଅକଥନୀୟ। ପିଇବାପାଣି ପାଇବେ ଲୋକେ ବର୍ଷିବ ଏହିପରି ଯୋଗାଡ଼ିବେ ଗୁରୁତର ବିଷୟ ପ୍ରତି ସରକାର ଦୃଷ୍ଟି ଦେଉନ ନାହିଁ। ବାଚସ୍ପତି ମହାଶୟ, ଗତ 3 ବର୍ଷ ହେଲା ସେହି ଅଞ୍ଚଳରେ ଲାଗ ଲାଗ ମରୁଡ଼ି ହୋଇଛି ସେ ଅଞ୍ଚଳ ଲୋକଙ୍କର ଦୁରବସ୍ଥା କଥା ବହୁବାର ଆଲୋଚିତ ହୋଇଛି। ସେମାନଙ୍କ ଆର୍ଥିକ ଦୁରବସ୍ଥା କଥା ଦର୍ଶାଇଛୁ। ସେମାନଙ୍କର ଜମି ଶସ୍ୟ ନାହିଁ ବୋଲି ବାରମ୍ବାର ଏ କଥା ସରକାରଙ୍କୁ ବୁଝାଇଗଲାଣି। ସେହି ଅଞ୍ଚଳ ଲୋକଙ୍କୁ କାମ ଧନ୍ଦା ଯୋଗାଇ ଦେବାପାଇଁ ଯଥେଷ୍ଟ ବ୍ୟବସ୍ଥା ହୋଇପାରି ନାହିଁ। ଆମେ ଗଞ୍ଜାମ ଜିଲ୍ଲା ତରଫରୁ ଅନୁରୋଧ କରିଥିଲୁ ମାଇନର ଇରିଗେସନ ପାଇଁ 1 କୋଟି ଟଙ୍କା ଦିଅନ୍ତୁ। ଯାହାଫଳରେ କି ଆମେ ଟେଷ୍ଟ ରିଲିଫ୍ କରିଆରେ ଇରିଗେସନ କାମ କରି ଲୋକଙ୍କୁ କାମ ଧନ୍ଦା ଯୋଗାଇ ଦେବୁ। କିନ୍ତୁ ତା ମଧ୍ୟ ହେଲା ନାହିଁ। ଅତି ଦୁଃଖର କଥା ପ୍ରଥମ କିସ୍ତିରେ ଆମ ଜିଲ୍ଲାକୁ 3 ଲକ୍ଷ ଟଙ୍କା ଦିଆଗଲା। ଯେଉଁଠି 1 କୋଟି ଟଙ୍କାର କାମ କରିବାପାଇଁ ଥିଲା ସେଠାରେ 3 ଲକ୍ଷ ଟଙ୍କା ନେଇ ଜିଲ୍ଲାର 4ଟି ସବ୍‌ଡିଭିଜନ ଭିତରେ ବାଣ୍ଟିବା ଅତି କଷ୍ଟକର ବ୍ୟାପାର ହୋଇ ପଡ଼ିଲା। ସେଥିପାଇଁ District Relief Committeeରୁ ଆମେ ସମସ୍ତ ସଭ୍ୟ walk out କରି ଚାଲିଆସିଲୁ, ସରକାରଙ୍କୁ protest କରି ଅଧିକ ଟଙ୍କା test relief ଓ drinking water ପାଇଁ ଦେବାଲାଗି ଅନୁରୋଧ କରିଥିଲୁ। କିନ୍ତୁ ତା'ପରେ ମଧ୍ୟ ସେପ୍ଟେମ୍ବରରେ ଏ ଟଙ୍କା ସାହାଯ୍ୟ ଦିଆଗଲା ତାହା ମଧ୍ୟ ଯଥେଷ୍ଟ ନୁହେଁ ଏବଂ ଲୋକଙ୍କୁ କାମ ଧନ୍ଦା ଯୋଗାଇବାକୁ ଓ ଅଧିକ ଟଙ୍କା ଯୋଗାଇବାରେ ସରକାର ବିଫଳ ମନୋରଥ ହୋଇଛନ୍ତି ବୋଲି ମୁଁ କହିବି, କାରଣ ଯେଉଁ ଆକାରରେ ପୁଣି ସେତେ ଲୋକ ଏ ମରୁଡ଼ିଗ୍ରସ୍ତ ଅଞ୍ଚଳରେ ଅଛନ୍ତି, ସେତେ ଲୋକଙ୍କୁ ଏ ମରୁଡ଼ି ବାଧୁଛି, ସେ ଲୋକମାନଙ୍କ ପାଇଁ ସରକାର ଯାହା ଟଙ୍କା ଦେଉଛନ୍ତି ତାକୁ ଯଦି ହିସାବ କରାଯାଏ ତାହାହେଲେ ଆପଣ ଦେଖିବେ 2 ମାସ ପାଇଁ ମୁଣ୍ଡପିଛା ମୋଟେ ଅଠେଣି ପଡ଼ୁଛି। Test relief କାମ ଯେତିକି ହୋଇଛି ତା'ର ହିସାବ ନେଲେ ଆପଣ ଦେଖିବେ ଦୁଇ ମାସରେ ମୁଣ୍ଡ ପିଛା ଟ 4 ପଡ଼ୁଛି। ଏଥିରୁ ସେ କି ରକମ relief ପାଇବେ ଆପଣ ବୁଝିପାରୁଥିବେ। ଏ ବିଷୟରେ ବାରମ୍ବାର ଖବରକାଗଜରେ ଆପତ୍ତି ହେଉଛି କିନ୍ତୁ ଆପତ୍ତି ଅଭିଯୋଗ କୌଣସି କଥା ଶ୍ରବଣ କରାଯାଉ ନାହିଁ।

ତା'ପରେ Test relief କମିଟିରେ ମଧ୍ୟ ଏ କଥା ଆଲୋଚିତ ହୋଇଛି। କୁହାଯାଉଛି Test relief କରିଆରେ ଟଙ୍କା ଦିଆଯାଉଛି। ଥରେ ଦୁଇ ଲକ୍ଷ, ଥରେ ଲକ୍ଷେ, କେଉଁଠି 50, 000 ଏହିପରି ବିଭିନ୍ନ ଜିଲ୍ଲାରେ ଦିଆଯାଉଛି। ଯାହା ଦେବାର କଥା

block amount କର୍ଣ୍ଣନ କେଳସି ଫଣ୍ଡରୁ ଦଅଯାଉ । ମରୁଡ଼ିର ତାରତମ୍ୟ ଦୃଷ୍ଟିରୁ ଭିନ୍ନ ଜିଲ୍ଲାରେ ତାକୁ ବଣ୍ଟନ କରାଯାଉ । ଏପର କରଥିଲେ ଆମେ ବଭିନ୍ନ ମରୁଡ଼ିଗ୍ରସ୍ତ ଅଞ୍ଚଳର ଲୋକଙ୍କୁ ବାସ୍ତବକ କିଛି ସାହାଯ୍ୟ କର ପାରଥାନ୍ତୁ । ଅଧିକ Minor Irrigation, କୂପ ଖନନ ଓ ପୁଷ୍କରଣୀ ଖନନ ଇତ୍ୟାଦ କାମରେ ଅଧିକ ଲୋକଙ୍କୁ ନଯୁକ୍ତ କରପାରଥାନ୍ତୁ ଓ ସେମାନଙ୍କ ଚଳବାପାଇଁ କାମ ଧନ୍ଦା ଓ ପଇସା ସେମାନେ ପାଇଥାନ୍ତେ । ତାହା ସଙ୍ଗେ ସଙ୍ଗେ ଆମେ କହୁଥିଲୁ ସେଥିପାଇଁ ଏ ଅଞ୍ଚଳର ଲୋକଙ୍କ ଆର୍ଥିକ ଦୂରବସ୍ଥା ଅତ ସଙ୍କଟଜନକ, ଲୋକଙ୍କର କ୍ରୟ ଶକ୍ତି ଆଦୌ ନାହିଁ, ସେମାନଙ୍କୁ retail shop ଜରଆରେ ଯେଉଁ ଚାଉଳ ଯୋଗାଇ ଦଆଯିବ ତାହା ସରକାରୀ ଦ୍ୱାରରେ ନ ଦେଇ subsidised rateରେ ଦଆଯାଉ । କାରଣ 3 ବର୍ଷ ଅନାଟନ ଯୋଗୁଁ ସେମାନଙ୍କ ଆର୍ଥିକ ମେରୁଦଣ୍ଡ ଭାଙ୍ଗି ଯାଇଛି । ସେମାନଙ୍କୁ subsidised rate ରେ ଚାଉଳ ଯୋଗାଇ ଦେଲେ ସେମାନେ ବଞ୍ଚି ପାରିବେ । ଆଜିପର୍ଯ୍ୟନ୍ତ କୌଣସି retail shop ରେ subsidised rate ରେ ଦଆଯାଇ ନାହିଁ । ବଭିନ୍ନ ଜିଲ୍ଲାରେ ଯେଉଁ ଯେଉଁ ଅଞ୍ଚଳ ତନ ବର୍ଷ ଧାରାବାହିକଭାବେ ମରୁଡ଼ି ପ୍ରପିଡ଼ିତ ସେ ହସାବ ସରକାରଙ୍କ ପାଖରେ ଅଛି, ସେ ଅଞ୍ଚଳରେ ଯଦ ଆମେ subsidised sale centre କରଥାନ୍ତୁ ଲୋକେ ଯାହା କିଛି ଟଙ୍କା test reliefରୁ ପାଉଛନ୍ତି ସେଥିରେ ଅନ୍ତତଃ ବଞ୍ଚିବାପାଇଁ ଚେଷ୍ଟା କରଥାନ୍ତେ । କନ୍ତୁ ଦୁଃଖର କଥା ତାହା ହୋଇନାହିଁ । ମୁଁ ଜାଣେ କାରଣ ବୃନ୍ଦାବଣ୍ଡି Block ଗୋଟିଏ ପଶ୍ଚାତ୍ପଦ ସମିତି । ପାନୀୟ ଜଳର ଭୟଙ୍କର ଅଭାବ ଓ ଖାଦ୍ୟ କଷଣ ଅଭାବ ଏବଂ ପଶୁଙ୍କ ସେ ସ୍ଥାନରେ ଖାଦ୍ୟାଭାବ-ର ମୃତ୍ୟୁ ବ ଘଟିଛି । ଏଇ ସମ୍ପର୍କରେ ବଧାନ ସଭାରେ ମନ୍ତ୍ରୀ ମହାଶୟ ଜବାବ ଦେଇଥିଲେ ଯେ, ସେ ନଜେ ଯାଇ ଦେଖି ଆସିବେ, କିନ୍ତୁ ଦୁଃଖର କଥା ସେ ନଜେ ଯାଇଥିଲେ ମଧ୍ୟ ସବୁ ସମୟରେ ସେ ଯାଇଥିବା ନେଉରୁ ବାସ୍ତବ ଅବସ୍ଥା କ'ଣ ପାନୀୟ ଜଳର ଅଭାବ ଉପରେ ଉତ୍କଟତମ ତାହା ଉପଲବ୍ଧ କରବାର ସୁଯୋଗ ସେ ଲାଭ କରପାର ନଥିଲେ । ଫଳରେ ସେ ଅଞ୍ଚଳର କୌଣସି ପ୍ରତକାର ସୁବଧା କଣ ଦଆଗଲାନାହିଁ । ଅବଶ୍ୟ ସେ ଅଞ୍ଚଳରେ ପାଣିର ଅଭାବ ଘଟିଥିବା ଅଛି । କାରଣ ବଭିନ୍ନ ଜିଲ୍ଲାକୁ ଯେ ରକମ ଟଙ୍କା ଦଆଯାଇଛି, ପୁଣି ବଭିନ୍ନ ଜିଲ୍ଲାର ସବଡ଼ିଭିଜନ ଭିତରେ ତାକୁ ବଣ୍ଟନ କରବାର ଯେଉଁ ବ୍ୟବସ୍ଥା କରାଯାଇଛି ସେଥିରେ ଗୋଟିଏ ଗୋଟିଏ affected ଗାଆଁକୁ ହଜାରେ, ଦୁଇ ହଜାର ଏପର ଟଙ୍କା ମିଳୁଛି । ଅଥଚ ଗ୍ରାମବାସୀଙ୍କ ସଂଖ୍ୟା କେଉଁଠି କେଉଁଠି 500, 1,000. ଏହା ଫଳରେ ସେ ଲୋକଙ୍କର ଚଳବା କଷ୍ଟକର ହେଉଛି । କେନ୍ଦ୍ର ସରକାର କେଶୀ

test relief ଦେବା ର ଓ ପାନୀୟ ଜଳର ବ୍ୟବସ୍ଥା କରିବାରେ ଯେ ମୁଁ ଅପାରଗ ହୋଇଛନ୍ତି ଏଥିରେ ସନ୍ଦେହ ନାହିଁ । କାରଣ ଏଇଭଳି ଗୋଟିଏ ପରିସ୍ଥିତି ଯେତେବେଳେ କଳାହାଣ୍ଡି ଜିଲ୍ଲାରେ ଘଟିଥିଲା ପୂର୍ବତନ ସରକାର ପ୍ରାୟ 11 କୋଟି ଟଙ୍କା ଖର୍ଚ୍ଚ କରିଥିଲେ । ବର୍ତ୍ତମାନ 13ଟି ଜିଲ୍ଲାରୁ 11ଟି ଜିଲ୍ଲା ମରୁଡ଼ି ପ୍ରପୀଡ଼ିତ ହୋଇଛି ଓ ସମସ୍ତ 11ଟି ଜିଲ୍ଲାପାଇଁ ସରକାର ମୋଟ 14 କୋଟି ଟଙ୍କା ଖର୍ଚ୍ଚ କରିଛନ୍ତି । ଆଉ ଦୁଃଖର କଥା, କେନ୍ଦ୍ର ଅନୁଧ୍ୟାନକାରୀ କମିଟି ଓଡ଼ିଶାରେ ଆସିଲେ, ଓଡ଼ିଶାରେ ଆସିଲାପରେ ଯେଉଁ ଭାଷା ପ୍ରଶାସନ କରିଛନ୍ତି, କେନ୍ଦ୍ରରୁ ଆମେ କିଛି ଟଙ୍କା ପାଇବୁ ଓ ଲୋକଙ୍କପାଇଁ କାମଧନ୍ଦାର ବ୍ୟବସ୍ଥା କରିପାରିବୁ । ସେମାନେ ଶୀଘ୍ର ଆସିଥିଲେ ଲୋକଙ୍କର ସୁବିଧା ହୋଇଥାନ୍ତା । କାରଣ ଲୋକଙ୍କର କାମଧନ୍ଦା ନାହିଁ । ବହୁ Irrigation Project ବିଶେଷକରି Minor Irrigation Project incomplete ଅଛି । ସେଗୁଡ଼ିକ କାର୍ଯ୍ୟକାରୀ କରାଯାଇଥିଲେ କିମ୍ବା, ପୁଷ୍କରିଣୀର ମରାମତି କରାଯାଇ ପାରିଲେ ଉତ୍ତରାଞ୍ଚଳରେ ପାନୀୟ ଜଳର କଷ୍ଟ ରହନ୍ତାନାହିଁ ଓ ଯେତେବେଳେ ଠିକ୍ ସମୟରେ ବର୍ଷା ନ ହେଉଛି, ଆମେ ଜଳସେଚନ ଦ୍ୱାରା ଲୋକଙ୍କ ଶସ୍ୟକୁ ମଧ୍ୟ ରକ୍ଷାକରି ପାରନ୍ତେ, କିନ୍ତୁ ତାହା ନ ହେବାରୁ ଲୋକେ ଅଧିକରୁ ଅଧିକ କ୍ଷତିଗ୍ରସ୍ତ ହେଉଛନ୍ତି । ବାଲେଶ୍ୱର, କୋରାପୁଟ ପ୍ରଭୃତି ଜିଲ୍ଲାରେ ବର୍ତ୍ତମାନ ଖୁବ୍ ପରିସ୍ଥିତି ଅତି ଭୟାନକ ଆକାର ଧାରଣ କରିବାରେ ଲାଗିଛି । ଲୋକେ ପରିସ୍ଥିତିର ସୁଯୋଗନେଇ ଯେତେବେଳେ ହାଣ୍ଡିଭାତ ଲୁଟ କରୁଛନ୍ତି, ସେତେବେଳେ ସରକାରଙ୍କ ପକ୍ଷରୁ ହିଂସାକାଣ୍ଡ ମଧ୍ୟ ହେଉଛି । ମୁଁ ଅତି ଦୁଃଖର ସହିତ କହିବ ଯେଉଁଠି ଜନତା ଯେତେବେଳେ ଖାଦ୍ୟପାଇଁ ଯାଉଛି, ସେତେବେଳେ ଆମ ଅଫିସରମାନେ ତାକୁ ସନ୍ଦେହ ଦୃଷ୍ଟି ଦେବାର କଥା, ଯେଉଁଠି ଲୋକ ସେତେବେଳେ ଯାଉଛି, ତା'ପକ୍ଷରେ ଅସ୍ୱାଭାବିକ ପରିସ୍ଥିତି ସୃଷ୍ଟି କରିବା ଆଦୌ ଅସ୍ୱାଭାବିକ ନୁହେଁ । ଉଦର ଜ୍ୱାଳାର ଅତିଷ୍ଠ ହୋଇ ଯେ ଯେତେବେଳେ କିଛି ଖାଦ୍ୟପାଇଁ ଯାଉଛି, ତାପ୍ରତି ସରକାରଙ୍କ ଦୃଷ୍ଟି ଅନ୍ୟ ରକମ ହେବା ଦରକାର । ତାହା ନ ହୋଇ ଆଇନ ଶୃଙ୍ଖଳା ନାମରେ ଯେପରି ବାଲେଶ୍ୱରରେ ହେଲା ସେପରି ହିଂସାକାଣ୍ଡ କରାଯାଏ ତାହା ବାସ୍ତବିକ ଅନ୍ୟାୟ । କାରଣ ଆମେ ଲୋକଙ୍କର ଉଦରଜ୍ୱାଳା, ଲୋକଙ୍କର ଦୁଃଖକଷ୍ଟ ଅନୁଭବକରି ନ ପାରି ସେମାନଙ୍କର ଆର୍ତ୍ତନାଦକୁ ଗୋଳା, ଗୁଳି ଓ ଲାଠି ଦ୍ୱାରା ଦବାଇ ଦେବାକୁ ଚେଷ୍ଟା କଲୁ, କୌଣସି ସଭ୍ୟ ସରକାର ପକ୍ଷରେ ଏହା ଠିକ୍ ବୋଲି କେହି କହି ପାରିବେ ନାହିଁ । ବରଂ ମୁଁ କହିବ ସରକାରଙ୍କଠାରେ ମାନବିକତାର ଅଭାବ, ଉଦାରତାର ଅଭାବ ପରିଲକ୍ଷିତ ହେଲା । ଯେତେବେଳେ ଲୋକେ ନ ଖାଇ ନ ପିଇ ମରୁଛନ୍ତି ସେତେବେଳେ ସରକାରଙ୍କ ପକ୍ଷରୁ ଅନ୍ୟ ରକମ ବ୍ୟବସ୍ଥା କରିବା ଉଚିତ୍ ଥିଲା ।

ତାହା ନ କରି ଲୋକଙ୍କ ସ୍ୱର ଗୋଳା, ଗୁଳି ଓ ଲାଠି ମାଡ଼ରେ ଦବାଇ ଦେବାକୁ ଯେ ଚେଷ୍ଟା ହେଉଛି, ଏହା ଅତି ଗର୍ହିତ କାର୍ଯ୍ୟ । ଏସବୁ କେହି ଦବାଇ ଦେଇ ପାରିନାହାନ୍ତି ।

ବାଚସ୍ପତି ମହାଶୟ, ଆମର ଯେଉଁ Rice retail shop କରାଯାଉଛି ଏହା କେଉଁ ଭିତ୍ତିରେ ହୋଇଛି ମୁଁ ଜାଣିପାରୁନାହିଁ । ଯେଉଁଠି ଲୋକେ ଅଧିକ ପୀଡ଼ିତ ହେଉଛନ୍ତି ସେଠାରେ ଯଦି ଅଧିକ ଦୋକାନ ଖୋଲାଯାଏ ଯେଉଁଟା worst affected area ସେଠାରେ ଯଦି କମ ସଂଖ୍ୟକ Retail shop ଖୋଲାଯାଏ ତା'ହେଲେ ଆମେ ଧ'ରେ ନେବୁ, ଯେଉଁଠି ଆନ୍ଦୋଳନ ହେବ, ଉତ୍ତେଜନା ସୃଷ୍ଟି ହେବ, ସେଇଠାରେ ସରକାର ଅଧିକ ସାହାଯ୍ୟ ଦେବାପାଇଁ ଇଚ୍ଛା କରୁଛନ୍ତି । ଆମେ ଗୃହକୁ ସରକାର ପ୍ରତ୍ୟେକ ସ୍ଥାନକୁ ଖାଦ୍ୟ ପଠାଇବା କଥା, କେଉଁ ଅଞ୍ଚଳ, କେତେ ପରିମାଣରେ କ୍ଷତିଗ୍ରସ୍ତ, ସେ ହିସାବ ସରକାରଙ୍କ ପାଖରେ ଅଛି ଓ ସେଇ ଅନୁପାତରେ ଭିନ୍ନ ଅଞ୍ଚଳକୁ ସାହାଯ୍ୟ ଦେବା ଓ ଭିନ୍ନ ଅଞ୍ଚଳରେ Subsidised Sale Centre ଖୋଲିବା ନିହାତି ଦରକାର । ମୁଁ ଏ ପ୍ରସଙ୍ଗରେ କହିବି ଗଞ୍ଜାମ ଜିଲ୍ଲାର ଘୁମୁସର ଅଞ୍ଚଳ, କୋଡ଼ି, ଦିଗପହଣ୍ଡି ଓ ମଜୁରିଗଣ୍ଡ ଅଞ୍ଚଳରେ ମରୁଡ଼ି ପରିସ୍ଥିତି ଅତି ଭୟଙ୍କର ହୋଇଛି । ସେଠାରେ ସରକାର ଯାହା ସାହାଯ୍ୟ ଦେଉଛନ୍ତି ବା Test Relief ପାଇଁ ବା Drinking water supply ପାଇଁ ଯାହା ଦେଉଛନ୍ତି ତାହା ଅତିକମ ।

ତା'ପରେ ଆମର ଯେଉଁ gratuitous relief ଦିଆଯାଉଛି ସେଥିରେ ମଧ୍ୟ ପାତରଅନ୍ତର କରାଯାଉଛି । ଯେଉଁଠି ପୀଡ଼ିତ ହେଉଛି ସେଠାରେ ଅଧିକ gratuitous ଦିଆଯାଉଛି । ଯେଉଁଠି ଆଇନ ଶୃଙ୍ଖଳା ନାହିଁ, ଲୋକ ଆବେଦନ ନିବେଦନ କରୁଛନ୍ତି, ସେ ଆବେଦନ ନିବେଦନ ଗୃହୀତ ହୋଇ ପାରୁନାହିଁ । ଗଞ୍ଜାମ ଜିଲ୍ଲାର ଘୁମୁସର ଅଞ୍ଚଳ ଓ ଅନ୍ୟାନ୍ୟ ଅଞ୍ଚଳରେ ସେଇ ପରିସ୍ଥିତି ଉପୁଜିଛି । ଯେଉଁ ଗାଆଁରେ 200/300 ପର୍ଯ୍ୟନ୍ତ ଅକର୍ମଣ୍ୟ ଲୋକ ଅଛନ୍ତି, ଯେଉଁମାନେ gratuitous relief ପାଇବାକୁ ଯୋଗ୍ୟ, ସେଠାରେ ଖୁବ୍ ବେଶୀହେଲେ 30/40 ଜଣଙ୍କୁ gratuitous ଦିଆଯାଉଛି । ଯଦିଓ ପୂର୍ବରୁ, ଯେତେବେଳେ ଜିଲ୍ଲା ରିଲିଫ କମିଟିର ବୈଠକ ହୁଏ, ଆମେ ବି. ଡ. ଓ. ଓ ଜିଲ୍ଲାପାଳଙ୍କୁ ବାରମ୍ବାର କହିଥାଉଁ ଯେ gratuitous relief ଯାହା ଦିଆଯାଉଛି ତାହା ଅତି ନଗଣ୍ୟ, ସେସବୁ ଅଞ୍ଚଳରେ ସାହାଯ୍ୟ ଅତି ମାତ୍ରାରେ ବୃଦ୍ଧି କରିବାକୁ ହେବ ଯାହାଫଳରେ ଯେଉଁମାନେ ଅକ୍ଷମ ଲୋକ ଅଛନ୍ତି ସେମାନେ ବଞ୍ଚିପାରିବେ । କିନ୍ତୁ ଏ ଆବେଦନ ନିବେଦନ ଗୃହୀତ ହୋଇନାହିଁ । ସେଥିପାଇଁ ମୁଁ ଆଶଙ୍କା କରୁଛି ଯେ, Law and order positionରେ ବିଶୃଙ୍ଖଳା ସୃଷ୍ଟି ନ କଲେ ଏସବୁ ସାହାଯ୍ୟ ମିଳିବ ନାହିଁ ବୋଲି ଲୋକଙ୍କ ଧାରଣା ହେଉଛି । ସରକାର ଯଦି ଚାହାନ୍ତି ଯେ ମରୁଡ଼ିର

ଉତ୍କଟତା Law and order position ଉପରେ ନିର୍ଭର କରିବ ତାହାହେଲେ ନିଶ୍ଚିତଭାବରେ ସରକାର ଜାଣି ରଖନ୍ତୁ ଯେ ବିଭିନ୍ନ ସ୍ଥାନରେ ବିଭିନ୍ନ ମରୁଡ଼ିଗ୍ରସ୍ତ ଅଞ୍ଚଳରେ Law and order positionରେ ଯେ ବିଶୃଙ୍ଖଳା ଘଟିବ ଏଥିରେ ସନ୍ଦେହ ନାହିଁ । ବିଭିନ୍ନ ମରୁଡ଼ିଗ୍ରସ୍ତ ଅଞ୍ଚଳରେ ଯେତିକି ସାହାଯ୍ୟ ଦରକାର ତାହା ସରକାରଙ୍କୁ ଦେବାକୁ ପଡ଼ିବ । ଯେଉଁ ଅଞ୍ଚଳକୁ ମନୋନୀତ ଶାସନରେ ବୁଲୁଛି ମୁଁ ତା'ର ଯୋଗ ଜଣା କରୁଛି । ଏହା ଲୋକଙ୍କର ପେଟପାଟଣାର କଥା । ଲୋକେ ଭୃତବନା, ଯାନ୍ତ୍ରିବନା ସହୁଛନ୍ତି । ଏଥିରେ ପାତର ଅନ୍ତର ବା ଭେଦଭାବ ରଖିବା ଅନୁଚିତ । ମରୁଡ଼ିଗ୍ରସ୍ତ ଅଞ୍ଚଳରେ ବିଭିନ୍ନ ପଞ୍ଚାୟତକୁ ଯେଉଁ ଟେଷ୍ଟ ରିଲିଫ୍ ଦିଆଯାଉଛି ମୁଁ ଦେଖିଛି ଯେଉଁଠି ମରୁଡ଼ିର ଉତ୍କଟତା ଅଧିକ ଅଛି ସେଠି ସେପରି ସାହାଯ୍ୟ ଦିଆଯାଇ ନାହିଁ । ଅଥଚ ଯେଉଁ ଅଞ୍ଚଳରେ ଯେଉଁଠି ମରୁଡ଼ିର ଉତ୍କଟତା ସେତେ ନାହିଁ ସେଠି ବିଶେଷ ଭାବରେ ସାହାଯ୍ୟ ଦିଆଯାଇଛି । ଏହାର ସତ୍ୟତା ବିଭିନ୍ନ ଅଞ୍ଚଳର ମାନ୍ୟବର ସଭ୍ୟମାନେ ବକ୍ତବ୍ୟ ଦେଲାପରେ ସରକାର ଜାଣିପାରିବେ । ରେଭିନ୍ୟୁ ଅଫିସରମାନେ ଯେଉଁ crop cutting ର report ଦେଇଛନ୍ତି ତାହା ଭୁଲ ବୋଲି ମାନ୍ୟବର ସଭ୍ୟମାନେ କହୁଛନ୍ତି । Test Relief Committee ଓ ଜିଲ୍ଲା ରିଲିଫ୍ କମିଟିରେ ଏକଥା କୁହାଯାଇଛି । 50% ହୋଇଥିଲେ ତାକୁ ମରୁଡ଼ି ଅଞ୍ଚଳ ବୋଲି ଧରାଯିବ ବୋଲି ଯାହା ସ୍ଥିର ହୋଇଥିଲା ତାକୁ କମାଇ ଦେବାପାଇଁ ଟେଷ୍ଟ ରିଲିଫ୍ କମିଟିରେ ନିଷ୍ପତ୍ତି ହୋଇଛି; କିନ୍ତୁ ଏପରି କେତେକ ଅଞ୍ଚଳ ଅଛି ଯେଉଁଠିକି 25% ହୋଇଛି । ତାକୁ ମରୁଡ଼ିଗ୍ରସ୍ତ ଅଞ୍ଚଳ ବୋଲି ଧରାଯାଇନାହିଁ ।

ଯେଉଁ ମରୁଡ଼ିଗ୍ରସ୍ତ ଅଞ୍ଚଳରେ ପାନୀୟଜଳର ଅଭାବ ଅଧିକ ବଢ଼ି ଯାଉଛି ସେ ଅଞ୍ଚଳରେ ପାନୀୟଜଳ ଯୋଗାଇବାକୁ ଉପାୟ ନାହିଁ । ଜିଲ୍ଲା ଓ ସବ୍ ଡିଭିଜନାଲ୍ ରିଲିଫ୍ କମିଟିରେ ଏହା ପ୍ରକାଶ ପାଇଲେ ମଧ୍ୟ ସରକାରଙ୍କ ତରଫରୁ ସେପରି ଘୋଷଣା ପ୍ରକାଶ ନ ପାଇଲେ ଆମେ କିଛି କରିପାରିବୁ ନାହିଁ ବୋଲି କର୍ତ୍ତୃପକ୍ଷଙ୍କଠାରୁ ଉତ୍ତର ମିଳୁଛି । ସେ ସମ୍ପର୍କରେ ମୁଁ ଗୋଟିଏ ଟେଲିଗ୍ରାମ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ପଠାଇଥିଲି । ତା'ର ଉତ୍ତରରେ ମୁଖ୍ୟମନ୍ତ୍ରୀ କହିଛନ୍ତି ଯେ ଆପଣ ଯେଉଁ ବିଷୟ ଉତ୍ଥାପିତ କରିଛନ୍ତି ତା'ର ବିଚାର ଆମେ କରୁଛୁ । କିନ୍ତୁ ସେ କ'ଣ ବିଚାର କଲେ ଜଣା ନାହିଁ । R.D.C.ଙ୍କୁ କହିବାରୁ ସେ କହୁଛନ୍ତି ଯେ ଟେଷ୍ଟ ରିଲିଫ୍ ପାଣ୍ଠିରେ ପାନୀୟଜଳ ପାଇଁ ଟଙ୍କା ନାହିଁ । ଏ ସମ୍ପର୍କରେ ସରକାର ଠିକ୍ ଚିନ୍ତା କରନ୍ତୁ । ଆସନ୍ତା ଯେଉଁ loan month ଆସୁଛି ସେଥିରେ ଖାଦ୍ୟଶସ୍ୟ ବେଶୀ ଅଭାବ ପଡ଼ିବ । ତା'ର ସମାଧାନ ହେବାପାଇଁ ମରୁଡ଼ି ଅଞ୍ଚଳରେ Subsidised sale centre କରିବା ଦରକାର । ସରକାର ଯେଉଁ ରେଟ୍ ସ୍ଥିର କରିଛନ୍ତି ସେଥିରେ ଲୋକଙ୍କର କିଣିବାକୁ ଅସୁବିଧା-ଜନକ ହେଉଛି । ତାକୁ କମାଇ Subsidised rate କରିବା ଦରକାର । କେନ୍ଦ୍ରରୁ

ଯେଉଁ ଟଙ୍କା ଆସୁଛି ସେଥିରେ ବର୍ତ୍ତମାନ ରୂପ ଇତ୍ୟାଦି ଗଠନ କରିବା ସମ୍ଭବ ନୁହେଁ । ଲୋକଙ୍କୁ ଧାରାବାହିକ ଭାବରେ କାମ ଯୋଗାଇଦେଲେ ସେମାନେ subsidised centreରୁ ଖାଦ୍ୟଶସ୍ୟ କିଣି ବଞ୍ଚିପାରିବେ । ସବୁ ମରୁଡ଼ିଗ୍ରସ୍ତ ଅଞ୍ଚଳର ଲୋକଙ୍କୁ gratuitous-relief ଦେବାକୁ ଯୋଗାଇ ଦିଆଯାଏ ତା'ର ବ୍ୟବସ୍ଥା କରିବା ଦରକାର । ମରୁଡ଼ିଗ୍ରସ୍ତ ଅଞ୍ଚଳମାନଙ୍କରେ ସବୁ ବାଳକବାଳିକା ଓ ଗର୍ଭବତୀ ସ୍ତ୍ରୀମାନଙ୍କୁ CARE ସଂସ୍ଥା ଯେପରି ଖାଦ୍ୟ ଦେଇପାରିବେ ସେଥିପାଇଁ ସେ ସଂସ୍ଥାକୁ ଅଧିକ ଟଙ୍କା ଯୋଗାଇ ଦିଆଯିବା ଉଚିତ ।

ପ୍ରଳୟଙ୍କରୀ ବନ୍ୟା

(2-12-1968)

ଗତ ଅକ୍ଟୋବର 26/27 ତାରିଖ ଗଞ୍ଜାମ, ପୁରୀ ଏବଂ କଟକ ଜିଲ୍ଲାର ଉପକୂଳ ଅଞ୍ଚଳରେ ଅଭୂତପୂର୍ବ ବାତ୍ୟା ଓ ବନ୍ୟା ହୋଇଛି । ଏ ବାତ୍ୟା, ବନ୍ୟା ଫଳରେ ପ୍ରାୟ 13ଲକ୍ଷ ଲୋକ ବିପଦଗ୍ରସ୍ତ ହୋଇଛନ୍ତି । ବାତ୍ୟା, ବନ୍ୟା ହେବାର ପ୍ରଥମ ଦିନଠାରୁ ପର୍ଯ୍ୟନ୍ତ ଲୋକଙ୍କ ପାଖରେ କୌଣସି ସାହାଯ୍ୟ ପହଞ୍ଚି ପାରିନି ନାହିଁ । ସେତେବେଳେ ଜଣାଗଲା ଯେପରି ଏ ରାଜ୍ୟରେ କୌଣସି ଗୋଟିଏ ସରକାର ନାହିଁ । ଯଦି ପ୍ରକୃତିରେ ସରକାର ଥାଆନ୍ତା ତାହାହେଲେ ସବୁ ପ୍ରକାର ବାଧା ବିପଦରେ ଯେଉଁମାନେ ବିପଦଗ୍ରସ୍ତ ହୋଇଛନ୍ତି, ସେମାନଙ୍କୁ ସାହାଯ୍ୟ ଦେବା ସମ୍ଭବ ହୋଇପାରି ଥାଆନ୍ତା । ମୁଁ ବିଶେଷକରି କୃଷ୍ଣପୁରରେ କଥା କହିବି । ଅନ୍ୟ ଜିଲ୍ଲାମାନଙ୍କରେ ଯେତେ ବନ୍ୟା ହୋଇଥିଲା କୃଷ୍ଣପୁରରେ ସବୁଠାରୁ ବେଶୀ ହୋଇଛି । ସେଉଁଠି ବର୍ଷା ଗୁଡ଼ିଏ ତା'ପରଦିନଠାରୁ 2/3ଦିନ ପର୍ଯ୍ୟନ୍ତ ଲୋକେ ଖାଇବାକୁ ପାଇଲେ ନାହିଁ,ଅଥଚ ସେମାନଙ୍କ ନିକଟକୁ ସାହାଯ୍ୟ ପହଞ୍ଚି ପାରିନି ନାହିଁ । ସରକାରଙ୍କ ପକ୍ଷରୁ କୁହାଯାଇପାରେ ରାସ୍ତା ନ ଥିଲା ବା ଯିବାର ଅନ୍ୟ କୌଣସି ପନ୍ଥା ନ ଥିଲା । ସେଥିପାଇଁ ତୁରନ୍ତ ସାହାଯ୍ୟ ପହଞ୍ଚି ପାରିଲା ନାହିଁ । କୃଷ୍ଣପୁରରେ ଏପରି କୌଣସି ପରିସ୍ଥିତି ସୃଷ୍ଟି ହୋଇ ନ ଥିଲା, ଯାହାଫଳରେ କି ସାହାଯ୍ୟ ଯୋଗାଇ ଦିଆଯାଇପାରିନି ନାହିଁ । କଲେକ୍ଟର ଓ ଅନ୍ୟାନ୍ୟ କର୍ମକର୍ତ୍ତାଙ୍କ କହିବାରୁ 3 ଦିନ ପରେ ସାହାଯ୍ୟ ଦେବା କାମ ଆରମ୍ଭ ହେଲା । ତା' ଭିତରେ ଯେଉଁ ବ୍ଲକଗୁଡ଼ିକ ବନ୍ୟାକ୍ଷତିଗ୍ରସ୍ତ ହୋଇଛନ୍ତି ସେହି ବ୍ଲକଗୁଡ଼ିକ ଆଗ ସାହାଯ୍ୟ ପଠାଗଲା । କିନ୍ତୁ ମୁଁ ଜାଣେ ସେହିପରି ଗୋଟିଏ କ୍ଷତିଗ୍ରସ୍ତ ଅଞ୍ଚଳକୁ ପ୍ରଥମେ 5 କୁଇଣ୍ଟାଲ ଅଟା ପଠାଗଲା ଅଥଚ ତାହା ନିତାନ୍ତ କମ୍ । ଏ ବିଷୟରେ କୁହାଗଲା ବ୍ଲକମାନେ indent ଦେଇନାହାନ୍ତି । ସେମାନେ indent ଦିଅନ୍ତୁ ବା ନ ଦିଅନ୍ତୁ ବନ୍ୟା ଅଞ୍ଚଳର କ୍ଷତି ହିସାବ ନେଇ ଅନ୍ତତଃପକ୍ଷେ 15/20 କୁଇଣ୍ଟାଲ କରି ପ୍ରତ୍ୟେକ ବ୍ଲକକୁ ଦିଆଯିବା ଉଚିତ ଥିଲା । କିନ୍ତୁ ପ୍ରଥମେ ତାହା ହୋଇ ପାରିଲା ନାହିଁ । ଏହା ଛଡ଼ା ପୁଣି କୃଷ୍ଣପ୍ରସାଦ, ଗଞ୍ଜାମ ଜିଲ୍ଲାର ପାଣ୍ଡୁର ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇଥିଲା, ଅଥଚ କୃଷ୍ଣପ୍ରସାଦ ଅଞ୍ଚଳକୁ 8/10 ଦିନ ପର୍ଯ୍ୟନ୍ତ ସାହାଯ୍ୟ ପହଞ୍ଚିପାରିଲା ନାହିଁ । ଆମେ ଇଞ୍ଜିନବୋଟ୍, ପଥର,

କେଶପୁର ଦେଖିବାକୁ ଗଲାବେଳେ ପାଖାକୁଦରୁ ଶହଶହ ଲୋକ କୌଣସି ସାହାଯ୍ୟ ନ ପାଇ ଅପେକ୍ଷାକରୁଛନ୍ତି । ରାଜସ୍ୱ ମନ୍ତ୍ରୀ ରିଲିଫ୍ କମିଟିରେ କହିଲେ ଆମ ପାଖରେ Power Boat ନ ଥିଲା । ଏହା ଯଥେଷ୍ଟ କାରଣ ନୁହେଁ । ଯେତେବେଳେ ବର୍ଷା ହେଲା ସରକାର ଜରୁରୀ ଜାଣିଥିବେ ଯେ ପାଖାକୁଦ ଅଞ୍ଚଳର ଲୋକେ ବଢ଼ିରେ ପଡ଼ିଥିବେ । ଏହା ସବୁ ହୋଇ-ପାରିଲା ନାହିଁ, 7ଦିନ ପର୍ଯ୍ୟନ୍ତ ଲୋକେ ନ ଖାଇ ରହିଲେ, ଏହାର ସଫେଇ ତାଙ୍କ କାର୍ଯ୍ୟ ସାଧନ କଲେ ବୋଲି କଦାପି କୁହାଯାଇପାରିବ ନାହିଁ ।

ମୁଖ୍ୟମନ୍ତ୍ରୀ ଗଞ୍ଜାମ ପରିଦର୍ଶନରେ ଯାଇ କେତେକ କ୍ଷତିଗ୍ରସ୍ତ ଅଞ୍ଚଳ ପରିଦର୍ଶନ କରି ଫେରିଆସିଲେ । ତା'ପରେ ରାଜସ୍ୱ ମନ୍ତ୍ରୀ ମଧ୍ୟ କେତୋଟି ପଞ୍ଚାୟତ ଦେଖି ଫେରିଆସିଲେ । ସେ-ତେବେଳେ ମନ୍ତ୍ରୀମାନେ ଲୋକଙ୍କ ପାଖରେ ଯାଉଥିଆ ହେବା କଥା ଏବଂ ଆମ ମନ୍ତ୍ରୀ-ମାନଙ୍କ ବ୍ୟବସ୍ଥା ଓ କାର୍ଯ୍ୟ ଦେଖି ସବୁ ଲାଗେ । ଏହି ସମୟରେ ଟୁର୍ ପ୍ରୋଗ୍ରାମ କରି ମନ୍ତ୍ରୀମାନେ ବିଭିନ୍ନ ସ୍ଥାନକୁ ଯାଉଛନ୍ତି to contact officials and non-officials. ଏହି ବିସ୍ତୀର୍ଣ୍ଣ ବିପନ୍ନ ଅଞ୍ଚଳକୁ କେତୋଟି ଜୋନ କରି ଜଣେ ଜଣେ ମନ୍ତ୍ରୀ ଯଦି ତା'ର ଦାୟିତ୍ୱ ନେଇଥାନ୍ତେ ଏବଂ ଅଫିସରମାନେ ତାଙ୍କ କର୍ତ୍ତବ୍ୟ କରିବାରେ ହେଳା କରି ନ ଥାନ୍ତେ । ରାଜସ୍ୱ ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଅଳ୍ପ କେତୋଟି ଅଞ୍ଚଳ ବୁଲି ଆସିଗଲେ । ତା' ତୁଳନାରେ କେନ୍ଦ୍ର ମନ୍ତ୍ରୀ ଅତି ଦୁର୍ଗମପଥ ଅତିକ୍ରମ କରି ବହୁ ଅଞ୍ଚଳକୁ ଯାଇଥିଲେ, ଲୋକଙ୍କ ଦୁଃଖ ଦୁର୍ଦ୍ଦଶା ଦେଖିଥିଲେ । କିନ୍ତୁ ଆମ ମନ୍ତ୍ରୀମଣ୍ଡଳର ସଭ୍ୟମାନଙ୍କର ସେ ଦାୟିତ୍ୱ ନାହିଁ । ସେତେବେଳେ ବିଶେଷକରି ପୁରୀ ଓ ଗଞ୍ଜାମ ଜିଲ୍ଲାରେ ଅବସ୍ଥା ସମ୍ଭାଳିବାକୁ ସରକାର ଅପାରଗ ହେଲେ । ଫଳରେ ଲୋକେ ବିନା କାରଣରେ କଷ୍ଟ ପାଇଲେ । ତା'ପରେ କଲେକ୍ଟର କହିଲେ "ମୋ ହାତରେ କ୍ଷମତା ଅଛି, କେବଳ 3ଦିନପାଇଁ ମୁଁ gratuitous relief ଦେଇପାରିବି ।" R.D.C. କହିଲେ 7ଦିନ ଦିଆଯିବ । ଆମ ଦଳରୁ ଆମେ ଦାବି କଲୁ ଲୋକଙ୍କୁ ଅନ୍ତତଃ 15 ଦିନ ପର୍ଯ୍ୟନ୍ତ ଏ ସୁବିଧା ଦିଆଯାଉ । କିନ୍ତୁ ଆପଣ ଶୁଣି ଆଶ୍ଚର୍ଯ୍ୟ ହେବେ 3 ଦିନ ମଧ୍ୟ ଠିକ୍ ଭାବରେ gratuitous relief ଦିଆଯାଇ ନାହିଁ । ମୁଁ ଜାଣେ ଗୋଟିଏ ଘରେ ଯାଇ ସେ ଘରେ adult କେତେଜଣ ପଚାରି, ସେ ଘରର ଜଣେ adultକୁ 290ଗ୍ରାମ ହିସାବରେ 3ଦିନର ଖାଦ୍ୟ ଦେଇ 3ଦିନର ସାହାଯ୍ୟ whole familyକୁ ଦିଆଗଲାବୋଲି କହିଲେ । ମୁଁ ଜାଣେ whole familyକୁ 3ଦିନ ପର୍ଯ୍ୟନ୍ତ ଦିଆଯାଇ ନାହିଁ । ଏ କଥା ସରକାରଙ୍କର ଦୃଷ୍ଟିକୁ ଆସିନି ନାହିଁ । ଏହି ଅବ୍ୟବସ୍ଥାକୁ ସଜାଡି ଦିଆଗଲା ନାହିଁ ।

ତା'ପରେ ଶୁଣି ଆଶ୍ଚର୍ଯ୍ୟ ହେବେ ଗଞ୍ଜାମ କଲେକ୍ଟର ଧାରାକୁଦ ଓ ବନକୋଟ ଅଞ୍ଚଳକୁ ସାହାଯ୍ୟ ପଠାଉଥିଲେ । କିନ୍ତୁ ସେତେବେଳେ ଅନ୍ୟ ଲୋକମାନେ ସାହାଯ୍ୟ ପାଇଲେ

ନାହିଁ ଆମର ସେଠାରେ non-official Relief Committee ଅଛି ସେଠି ଯାଇ ପହଞ୍ଚିଲେ । ସେମାନଙ୍କ ସାହାଯ୍ୟ ନ ମିଳିବା କଥା ଜିଲ୍ଲା କଲେକ୍ଟରଙ୍କୁ ପଚାରିବାରେ ସେ କହିଲେ ମୋର ଏଠି ସାହାଯ୍ୟ ପଠାଇବାର ଆପତ୍ତି ନାହିଁ । କିନ୍ତୁ ସରକାର କହୁଛନ୍ତି ଗଞ୍ଜାମ ବାଟେ ସାହାଯ୍ୟ ପଠାଇବା ଅନାବଶ୍ୟକ । ପୁରୀବାଟେ ସାହାଯ୍ୟ ପଠାଯାଇପାରିବ, କିନ୍ତୁ ପ୍ରାୟ 70ଦିନ ପର୍ଯ୍ୟନ୍ତ ପୁରୀବାଟେ ସାହାଯ୍ୟ କୃଷ୍ଣପ୍ରସାଦ ଓ ବଜ୍ରକୋଟକୁ ପଠାଯାଇ-ପାରିଲନାହିଁ । ସାହାଯ୍ୟ ଅଭାବରୁ ସେଇ ଲୋକମାନେ ହା ହୁତାଶହୋଇ ପଡିଲେ । ଆମ ବେସରକାରୀ କମିଟି ପକ୍ଷରୁ ଯାହା କେତେକ ସାହାଯ୍ୟ କରାଗଲା । ତାହା ସେମାନଙ୍କୁ ସନ୍ତୁଷ୍ଟ କରିପାରିଲ ନାହିଁ । ସେମାନେ ଖାଲି ହାତରେ ଫେରିଲେ । ପୁରୀ ରାସ୍ତାବାଟେ ସାହାଯ୍ୟ ପଠାଇବା କେତେ ... ର ସରକାର ଜାଣିଛନ୍ତି । ଆମେ ସେଇ ଲୋକଙ୍କୁ ପାଲୁର ବାଟେ ସାହାଯ୍ୟ ଦେଇପାରିଥାନ୍ତୁ ଏବଂ ସେମାନଙ୍କ ନିକଟରେ ଠିକ ସମୟରେ ସାହାଯ୍ୟ ପହଞ୍ଚି-ପାରିଥାନ୍ତା, ତାହା ନ ହେଲା । କାରଣ ସରକାର କହିଲେ ଗଞ୍ଜାମ ବାଟେ ସାହାଯ୍ୟ ପଠାଇବା ଅବଶ୍ୟକ ନାହିଁ । ଏ ଠାରୁ ଅଧିକ ଦୁଃଖର କଥା ଆଉ କ'ଣ ଅଛି ? କାଲି ମନ୍ତ୍ରୀ ସ୍ୱୀକାର କଲେ ... ବାଟେ ... ଭର୍ତ୍ତି କରି ରଖିଥିଲେ କିନ୍ତୁ ତା'ପରେ ଗତ 10,11,12,ତାରିଖ ତାଙ୍କୁ ... ହେବାରୁ ପଠାଇପାରିଲେ ନାହିଁ । ଅର୍ଥାତ ତା'ର ପୂର୍ବଦିନ ପର୍ଯ୍ୟନ୍ତ ସେଇ ରାସ୍ତାରେ ପଠାଇ ପାରି ନ ଥିଲେ । Bulk relief ଗଲାବେଳେ ଏହା ଯାଇଥିଲେ ... କଷ୍ଟରୁ କିଛି ଉଦ୍ଧାର ପାଇଥାନ୍ତେ, ତାହା ହୋଇପାରିଲା ନାହିଁ । ଏହା ହେଲା ଲୋକଙ୍କର ଅବସ୍ଥା, ସରକାର ସେ ସମୟରେ କ'ଣ କରୁଥିଲେ ? ମନ୍ତ୍ରୀମଣ୍ଡଳ ସଭ୍ୟମାନେ ବଡ଼ ... ଉପରେ ... ବୁଲୁଥିଲେ । ଏ ଉପରେ ଲୋକଙ୍କୁ ସାହାଯ୍ୟ ଦେବାରେ ସେମାନେ କେତେଦୂର ତତ୍ପର ହେବା କଥା ହୋଇପାରିଲେ ନାହିଁ । ଆମେ ଜାତୀୟ ସଜ ... ଏବଂ ... ରଇଲରାସ୍ତାର ଅବସ୍ଥା ସମ୍ପର୍କରେ କେନ୍ଦ୍ରସରକାରଙ୍କୁ ଜଣାଇ ତୁରନ୍ତ ସାହାଯ୍ୟ ଯେପରି ଆସିବ ତହିଁର ବ୍ୟବସ୍ଥା କଲୁନାହିଁ ।

ତା'ପରେ ଆମ ଗଞ୍ଜାମ ଜିଲ୍ଲା ରିଲିଫ କମିଟି ଏଠାରେ ମୁଖ୍ୟମନ୍ତ୍ରୀଙ୍କୁ ଭେଟି କହିଲୁ ତୁରନ୍ତ ଲୋକଙ୍କୁ ... ସାହାଯ୍ୟ ଦିଆଯାଉ ଏବଂ ଲୋକେ ଯେଉଁ ଅବସ୍ଥାରେ ଅଛନ୍ତି ଯେପରି ଶୀତ ... ପଡ଼ୁଛନ୍ତି ସେମାନଙ୍କୁ ତୁରନ୍ତ ସାହାଯ୍ୟ ମିଳିବା ଆବଶ୍ୟକ । ସେତେବେଳେ ଅବଶ୍ୟ ମୁଖ୍ୟମନ୍ତ୍ରୀ କହିଲେ ଆବଶ୍ୟକ ପଡ଼ିଲେ ଗୋଟିଏ ଅର୍ଡିନାନ୍ସ କରି କଣ୍ଟ୍ରାକ୍ଟରଙ୍କଠାରୁ ଟଙ୍କା ଆଣି ଦୁଃସ୍ଥ ଲୋକଙ୍କୁ ଦିଆଯିବ । କିନ୍ତୁ ତାହା ହୋଇପାରିଲା ନାହିଁ । ମୁଁ ଦୁଃଖର ସହିତ କହୁଛି ସରକାର ଜାଣନ୍ତି କେନ୍ଦ୍ର ଅନୁଧ୍ୟାନକାରୀ ଦଳ ଆସି ସମସ୍ତ ଦେଖି କ୍ଷତିର ହିସାବ କରି ... ଫେରିବେ ଏବଂ କେନ୍ଦ୍ର ସରକାରଙ୍କଠାରୁ ଆମ ସରକାର ତାହା ନିଷ୍ପତ୍ତି ପାଇବେ ସେତେ ... ଆଗରୁ କିଛି ଟଙ୍କା କଣ୍ଟ୍ରାକ୍ଟରରୁ ନେଇ କରିଥିଲେ

ଲୋକଙ୍କର ଦୁଃଖ କଷ୍ଟ କିଛି ଲାଘବ ହୋଇ ପାରୁଥାନ୍ତା, ତାହା କରିପାରିଲେ ନାହିଁ । କେନ୍ଦ୍ର ସରକାରଙ୍କ ଟଙ୍କା ଆସିବା ପର୍ଯ୍ୟନ୍ତ ସରକାର ଅପେକ୍ଷା କଲେ । ବର୍ତ୍ତମାନ ଲୋକଙ୍କୁ ଯାହା ଘରଭଙ୍ଗା ସାହାଯ୍ୟ ଦିଆଯାଉଛି ତାହା ଅତ୍ୟନ୍ତ ହାସ୍ୟାସ୍ପଦ । ତାହା ତୁଳନାରେ ପଡ଼ୋଶୀ ଆନ୍ଧ୍ର ପ୍ରଦେଶ ଯଥେଷ୍ଟ ଦେଉଛି । ଆମେ ଦେଉଛୁ 20 ଟଙ୍କା for partly damaged, 50 ଟଙ୍କା partly collapsed ଏବଂ 150 ଟଙ୍କା completely collapsed houseକୁ ଆଜି କାଲି ଜିନିଷପତ୍ରର ଦରଦାମ ଯେପରି ଗୋଟିଏ ଘର ସବୁ ଭାଙ୍ଗି ଯାଇଥିଲେ 100 ଟଙ୍କାରେ କିପରି ତାହା ତିଆରି ହେବ ମୁଁ ବୁଝି ପାରୁନାହିଁ । କାରଣ 150 ଟଙ୍କା ନିର୍ଦ୍ଦିଷ୍ଟ ଥିଲେ ମଧ୍ୟ ଲୋକଙ୍କୁ ଦେଲାବେଳକୁ ଟ100 ଦେଇଥାନ୍ତି । ଏହା ଆମ ରାଜ୍ୟ ସରକାରଙ୍କର ହାତର କଥା ! ଏହା ପରିବର୍ତ୍ତନ କରିବାକୁ କୁହାଗଲା । ତାହା ହୋଇପାରିଲା ନାହିଁ । ଆମକୁ କୁହାଯାଉଛି ଗୋଟିଏ fixed pattern ଅନୁସାରେ ସାହାଯ୍ୟ ଦିଆଯାଉଛି । ମୁଁ କହିବି ସେଇ pattern ଆମର ସରକାର କରିଛନ୍ତି । ବର୍ତ୍ତମାନର ଦରଦାମ ଦୃଷ୍ଟିରୁ ଆମେ ତାହା ବାହାରକୁ ଯିବାର ଅଧିକାର ଅଛି । ବର୍ତ୍ତମାନ ସୁଦ୍ଧା ଘରଭଙ୍ଗା ଋଣ ଦେବା ଆରମ୍ଭ ହୋଇନାହିଁ । କୁହାଯାଉଛି L.I.C. pattern ଅନୁସାରେ 7 ଏକରରୁ ଅଧିକ ଜମିଥିଲେ ଋଣ ପାଇବେ ନହେଲେ ନାହିଁ । କିନ୍ତୁ ସହର ଜାଗାମାନଙ୍କରେ କି ବ୍ୟବସ୍ଥା କରାଯିବ ସରକାର ସ୍ଥିର କରିବା ଉଚିତ । କାରଣ ବ୍ରହ୍ମପୁର ପରି ସହର ଯେଉଁଠି 3,000 ଘର ଭାଙ୍ଗିଛି ସେଠାରେ ଋଣ ପାଇଁ ଯେଉଁମାନେ ଦରଖାସ୍ତ କରିବେ ସେମାନଙ୍କ ପାଖରେ 7 ଏକର ଜମି ଯେ ଥିବ ତାହା ସମ୍ଭବ ନୁହେଁ । ସେମାନଙ୍କ ପାଇଁ ନିୟମ ପରିବର୍ତ୍ତନ କରିବା ଦରକାର । ନିଜର ଘର ଘର ବା ଜାଗା ଅଛି । ତା' ଉପରେ ଋଣ ଆଶାପାଇବ ଏଇପରି ନିୟମର ପରିବର୍ତ୍ତନ ନ ହେଲେ ବା ଖୋଲା ନ କଲେ ସେମାନେ ଋଣ ପାଇପାରିବେ ନାହିଁ । ଏଥିପ୍ରତି ତୁରନ୍ତ ଦୃଷ୍ଟି ଦେବା ଦରକାର ।

ଗତକାଲି ଆମର ଯେଉଁ ଲେବର କମିଟି ବୈଠକ ହୋଇଥିଲା ମୁଁ ଦୁଃଖର ସହିତ କହିବି ବାତ୍ୟା ଓ ବନ୍ୟା ଅଞ୍ଚଳର ଶ୍ରମିକମାନଙ୍କର ଦରମା ଓ ପରୀକ୍ଷା ଫସଲ ଗ୍ରହଣ ସମ୍ପର୍କରେ ଆମେ ସେଠି କୌଣସି ସିଦ୍ଧାନ୍ତରେ ଉପନୀତ ହୋଇପାରିଲୁ ନାହିଁ । କଳାହାଣ୍ଡି କରନ୍ତୁ ଗୋଟିଏ ଅଞ୍ଚଳରେ ଯେଉଁଠି ଶ୍ରମିକମାନେ ଅଛନ୍ତି, ସେମାନଙ୍କର ସର୍ବସ୍ୱ ଜମିରେ ଲୁଣାପାଣି ମାଡ଼ିଯିବା ହେତୁ ସେ ଜମିରୁ କିଛି ପାଇଲେ ନାହିଁ । ଆସନ୍ତା ବର୍ଷ ଧାନ ଫଳ ହେବା ପର୍ଯ୍ୟନ୍ତ ସେମାନେ କିପରି ଚଳିବେ ? ଏ ପରିସ୍ଥିତିରେ ତାଙ୍କର ପିଲାମାନଙ୍କ ସ୍କୁଲକୁ ପଠାଇବେ କି'ଣ ? ଏଠାକୁ ମାନବିକତା ପ୍ରଶ୍ନୋତ୍ତରର ରହିବା ଦରକାର । ବିଶେଷ କରି ଯେଉଁମାନେ ସରକାର ଗଢ଼ିଛନ୍ତି, କ୍ଷମତାରେ ଅଛନ୍ତି, ସେମାନଙ୍କର ପାଖରେ ଏଇ ମାନବିକତା ନ ରହିଲେ ଆମେ ବକ୍ତୃତା ଦେଇ ବା ଉପଦେଶ ଦେଇ କ'ଣ ବା କରିବୁ ? ନିଜର ଗୋଟିଏ

feeling ରଖିବା ଦରକାର । ବାତ୍ୟା ଓ ବନ୍ୟା ଅଞ୍ଚଳର ଛାତ୍ରମାନଙ୍କର ସ୍କୁଲ ଫିସ୍, ପରୀକ୍ଷାଫିସ୍ ଛାଡ଼ କରିବା କଥା ମୁଁ ଆଉ ଥରେ କଥା ଆଣିବୁ ଯାଇ ଜଣାଉଛି ହଷ୍ଟେଲ ଫିସ୍ ବାବଦରେ ମଧ୍ୟ ସେମାନଙ୍କ ପାଇଁ କିଛି ବ୍ୟବସ୍ଥା କରିବା କଥା କାରଣ, ସେମାନଙ୍କର ଅଭିଭାବକମାନେ ଆଉ ଅର୍ଥ ପଠାଇବା ଅବସ୍ଥାରେ ନାହାଁନ୍ତି ।

ଉପବାଚସ୍ପତି ମହୋଦୟ, ଆପଣ ଦେଖିବେ ଏଇ ବନ୍ୟା ଯୋଗୁଁ ବହୁତ ଜମିରେ ବାଲି ମାଡ଼ିଯାଇଛି, ବହୁ ପାନବରଜ ଯେଉଁଥିରୁ ପ୍ରତିବର୍ଷ ଲକ୍ଷ ଲକ୍ଷ ଟଙ୍କା କାରବାର ହୁଏ ଏବଂ ବାହାରୁ ପୋଷ୍ଟାଲ ମନିଅର୍ଡରରେ ବହୁ ଟଙ୍କା ଆସେ ସେ ସବୁ ନଷ୍ଟ ହୋଇଯାଇଛି । ଅନେକ ବୃକ୍ଷ ଉପରେ ଅସିକା ଚଳନ ଜୀବନ ନିର୍ଭର କରୁଥିଲା । ଚଳିତବର୍ଷ ଭଲ ଆମ୍ବ ଫଳ ହେବ ବୋଲି ଲୋକେ ଭାବିଥିଲେ । ଦୁଇ ଦୁଇ ଥର ବାତ୍ୟା ଯୋଗୁଁ ଆମ୍ବ ବୃକ୍ଷ ନଷ୍ଟ ହୋଇଯାଇଛି । କୃଷିଜୀବୀଙ୍କୁ ତୁରନ୍ତ ସାହାଯ୍ୟ ଦେବା ଦରକାର । ଯେଉଁମାନେ ନଡ଼ିଆ କଦଳୀ ବୃକ୍ଷ ଉପରେ ନିର୍ଭର କରୁଥିଲେ ବା ଯେଉଁମାନେ ପାନପତ୍ର ବା କରି, ବଗିଚା କରି ଜୀବିକା ନିର୍ବାହ କରୁଥିଲେ, ସେହି ଜାଗାମାନଙ୍କରେ ବାଲି ମାଡ଼ିଯାଇଛି କିମ୍ବା ଅତ୍ୟଧିକ ବର୍ଷା ଯୋଗୁଁ ଫସଲ ନଷ୍ଟ ହୋଇଯାଇଛି । ଏହି ଲୋକମାନଙ୍କୁ ତୁରନ୍ତ ଋଣ ମିଳିବା ଆବଶ୍ୟକ ।

ଆମ ସରକାରଙ୍କର ଜଳସେଚନ, ପଞ୍ଚାୟତ ବିଭାଗ ଏବଂ ଗ୍ରାମ୍ୟ ଇଞ୍ଜିନିୟରିଂ ସଂସ୍ଥା ଯେଉଁ ବନ୍ଧ ବାନ୍ଧ ଭାଙ୍ଗିଛି, ଏ ପର୍ଯ୍ୟନ୍ତ ତା'ର ମରାମତି କରିପାରିଲେ ନାହିଁ । ଅବଶ୍ୟ ରବି ଫସଲ କରିବା ପାଇଁ କୃଷିଜୀବୀଙ୍କୁ ଉତ୍ସାହିତ କରିବା ସୁନ୍ଦର କଥା । ତାହା କରିବା ସଙ୍ଗେ ସଙ୍ଗେ ଜଳସେଚନ ବ୍ୟବସ୍ଥା ନ କଲେ ଉତ୍ସାହ କାର୍ଯ୍ୟକାରୀ ହୋଇପାରିବ ନାହିଁ । ତେଣୁ ଯଥାଶୀଘ୍ର ବନ୍ଧବାନ୍ଧ ମରାମତି କରିବାରେ ପଦକ୍ଷେପ ନିଅନ୍ତୁ । ଗତବର୍ଷ ପାଣିପାଗ ଅନୁକୂଳ ଯୋଗୁଁ ଆମେ ଯେଉଁ ଅବସ୍ଥାରେ ପଡ଼ିଲୁ ଏବର୍ଷ ସେହିପରି ହେବାର ଆଶଙ୍କା ରହିଛି । ପିଇବାପାଣି ପାଇଁ ଥିବା ପୁଷ୍କରିଣୀ ଏବଂ ସବୁସବୁ ମରାମତି ନ କଲେ ଅବସ୍ଥା ଅସମ୍ଭାଳ ହେବ । R.E.O. and Irrigation ସଂସ୍ଥା ଏ ପର୍ଯ୍ୟନ୍ତ detailed estimate କଲେ ନାହିଁ । ବର୍ତ୍ତମାନ କୁହାଯାଉଛି 3 ଦିନ ଭିତରେ detailed plan and estimate କରି ପଠାଇଲେ ଆମେ କେନ୍ଦ୍ର ସରକାରଙ୍କ ପାଖକୁ ପଠାଇବୁ ଏବଂ ଟଙ୍କା ପାଇବୁ, ଏହା କ'ଣ ସମ୍ଭବ ?

Detailed estimate କରିବା 15ଦିନ ସମୟ ମିଳିଲା । ସେ ସମୟ ଭିତରେ ଏହା କରିପାରିଥାନ୍ତେ । ଯଦି ଆଜି କେନ୍ଦ୍ର ସରକାରଙ୍କୁ detailed estimate କରି ଟଙ୍କା ପାଇବାର ହିସାବ ଦେଇଥାନ୍ତେ । ତା'ହେଲେ ଆମେ ଯଥେଷ୍ଟ ଟଙ୍କା କେନ୍ଦ୍ରରୁ ପାଇ ପାରିଥାନ୍ତେ । ତାହା କରାଗଲା ନାହିଁ । ବର୍ତ୍ତମାନ ସରକାରଙ୍କ ପାଖରୁ ନିର୍ଦ୍ଦେଶ ଯାଉଛି ଯେ

1/2 ତାରିଖ ଭିତରେ କ୍ଷୟକ୍ଷତିର ହିସାବ ଦେଇଲି ଆମେ କେନ୍ଦ୍ର ସରକାରଙ୍କୁ ପଠାଇବୁ । ଏ କଥା କହିବା କେମିତି ସମ୍ଭବ ହେବ ? ସେମାନେ 24 ଘଣ୍ଟା ପରିଶ୍ରମ କଲେ ମଧ୍ୟ ଠିକଣାଠି ହିସାବ ଏ ସମୟ ମଧ୍ୟରେ ଦେବା ସମ୍ଭବ ନୁହେଁ । ସେତେବେଳେ ଯାହା କହିବା କଥା ସରକାରଙ୍କ ବିଭିନ୍ନ ବିଭାଗ ଏଥିପ୍ରତି ଦୃଷ୍ଟି ନ ଦେଉଥିବା ହେତୁ ଲୋକଙ୍କୁ ଘୋର ଅସୁବିଧାରେ ପଡ଼ିବାକୁ ହେଉଛି । ଯେଉଁ ସବୁ ଘରଦ୍ୱାର ସଡ଼କ ଭଙ୍ଗାରୁଜା ହୋଇ ଯାଇଛି ସେ ସବୁର ମରାମତି କେତେ ଦିନରେ ଯେ ହେବ ଜଣାଯାଉନାହିଁ । ପଞ୍ଚାୟତ ବିଭାଗରେ ଯେଉଁସବୁ ବ୍ଲକ ରାସ୍ତା ଅଛି ଓ କୂଅ ପୁଷ୍କରିଣୀ ଇତ୍ୟାଦି ଅଛି ସେ ସବୁର ମରାମତି ବା ପୁନନିର୍ମାଣ କଥା କେହି ବିଚାରକୁ ନେଉ ନାହାନ୍ତି । ଜଳସେଚନ ବିଭାଗ ଦାବୀ କଲେ ଯେ ଆମର ଏତିକି ଟଙ୍କା ଦରକାର । ସେ ଭଳି Roads and Buildings ବିଭାଗ ଦାବୀ କଲେ ଯେ ଆମର ଏତିକି ଟଙ୍କା ଦରକାର । ମୋର କହିବା କଥା ବ୍ଲକ୍ ଅଞ୍ଚଳରେ ଯାହା ସବୁ ନଷ୍ଟ ହୋଇଯାଇଛି ବିଶେଷ କରି ସଡ଼କ ଓ ଜଳାଶୟର ମରାମତି ପାଇଁ ଟଙ୍କାର ବ୍ୟବସ୍ଥା ଏପର୍ଯ୍ୟନ୍ତ ହେଲା ନାହିଁ । କାଲି ବିଭାଗୀୟ ମନ୍ତ୍ରୀ କହିଲେ ଯେ, ଆମକୁ 20 ଲକ୍ଷ ଟେଷ୍ଟ ରିଲିଫରେ ଦେବାକୁ ଥିଲା ସେ ଟଙ୍କାକୁ ଆଣି ଏଥିରେ ଖଟାଇବୁ । କିନ୍ତୁ ମୁଁ କହୁଛି ସେ 20 ଲକ୍ଷରେ କାମ ହୋଇ ପାରିବ ନାହିଁ । ଆଜି କଥା କଥାକେ କୁହାଯାଉଛି ଯେ, ଆମେ ଗ୍ରାମାଞ୍ଚଳର ଉନ୍ନତି କରିବୁ । ଯେଉଁ ଗ୍ରାମ ରାସ୍ତା ଥିଲା ତାହା ଭାଙ୍ଗିଛି । ଗ୍ରାମାଞ୍ଚଳ ପୁଷ୍କରିଣୀ ହିଡ଼ ଭାଙ୍ଗି ଯାଇଛି । ସେ ସବୁର ପୁନଃନିର୍ମାଣ ନ ହେଲେ ପଲ୍ଲୀଜୀବନ ଦୁର୍ବିସହ ହୋଇ ଉଠିବ । କିନ୍ତୁ ସେ କାମପାଇଁ 20 ଲକ୍ଷ ଯଥେଷ୍ଟ ହେବ ନାହିଁ । ସେ ଦିଗରେ ସରକାରଙ୍କୁ ଅଧିକ ଟଙ୍କା ଦେବାକୁ ହେବ । ବ୍ଲକ ଅଧୀନରେ ଥିବା ରାସ୍ତା ଓ ଜଳାଶୟ ଯେଉଁଥିରୁ କି ଲୋକେ ପାନୀୟ ଜଳ ନିଅନ୍ତି ସେଥିରେ ଆମକୁ ଅଧିକ ଖର୍ଚ୍ଚ କରିବାକୁ ପଡ଼ିବ ।

ଯେତିକି institution ଭାଙ୍ଗି ଯାଇଛି ତା'ର ହିସାବ ନିଜେ ସରକାର White Paperରେ ଦେଇଛନ୍ତି । 4 ହଜାର ପ୍ରାଥମିକ ଓ ଶହ ଶହ ଏମ. ଇ. ଓ ହାଇସ୍କୁଲ ଭାଙ୍ଗି ଯାଇଛି । ଏହାର ବାହାରେ 5ଟି ବେସରକାରୀ କଲେଜର ମଧ୍ୟ କ୍ଷତି ହୋଇଛି । 50ଟି ସଂସ୍କୃତ ଅନୁଷ୍ଠାନ ଭାଙ୍ଗି ଯାଇଛି । ଆପଣ ଦେଖିବେ ଅକ୍ଟୋବର 26/27 ତାରିଖରେ ବନ୍ୟା ଓ ବାତ୍ୟା ହେଲା । ଏ ଭିତରେ 1 ମାସରୁ ଅଧିକ ସମୟ ହୋଇଗଲାଣି କିନ୍ତୁ କୌଣସି ଗୋଟିଏ ସ୍କୁଲର ମରାମତି କାର୍ଯ୍ୟ ଏପର୍ଯ୍ୟନ୍ତ ଆରମ୍ଭ ହୋଇ ନାହିଁ । ପିଲାମାନଙ୍କର ପଢ଼ାପଢ଼ି 1 ମାସ କାଳ ଗଲା । ସେ ସବୁର ମରାମତି କାର୍ଯ୍ୟ କିଏ କରିବ ଓ ତାହା କେତେ ଦିନ ଧରି ଚାଲିବ ତାହା ଜଣାଯାଉନାହିଁ । ଏହି ବାତ୍ୟା ବନ୍ୟା ସମ୍ପର୍କରେ war footingରେ କାମ କରିବାପାଇଁ ଆମର ନୀତି ରହିଛି । କିନ୍ତୁ ଗୋଟିଏ ଅଞ୍ଚଳକୁ ଯିବାପାଇଁ ଯଦି 15 ଦିନ ଲାଗୁଛି ତେବେ war footingରେ କାମ

କରାଯାଉଛି ବୋଲି ଆମେ କ'ଣ ଧରି ନେବା ? ଏହା କ'ଣ war footingର କାମ ? ସ୍କୁଲଗୁଡ଼ିକ ମାସ ମାସ ଧରି ଚାଲୁ ନାହିଁ । ଖଣ୍ଡିଏ ଖଣ୍ଡିଏ ଘର ହୋଇଥିଲେ ପ୍ରାଥମିକ ସ୍କୁଲଗୁଡ଼ିକ ତହିଁରେ ଚାଲୁଥାନ୍ତା କିନ୍ତୁ ଅଧିକାଂଶ ତାହା ହୋଇ ପାରିଲା ନାହିଁ । ଆହୁରି ଗୋଟିଏ ଆଶ୍ଚର୍ଯ୍ୟ କଥା ଯେ ସ୍କୁଲ ଇନ୍‌ସପେକ୍ଟର ଯେତେବେଳେ ହିସାବ କରି କହିଲେ ଯେ ଶିକ୍ଷାନୁଷ୍ଠାନଗୁଡ଼ିକର ପୁନଃନିର୍ମାଣପାଇଁ ଏତିକି ଟଙ୍କା ଦରକାର ସେତେବେଳେ ତାଙ୍କୁ detailed estimate ମଗାଯାଉଛି । ପ୍ରତ୍ୟେକ ସ୍କୁଲର detailed ହିସାବପତ୍ର ଦେବାପାଇଁ କେତେ ସମୟ ଓ ଶ୍ରମ ଦରକାର ତାହାତ ସହଜେ ଅନୁମେୟ ତେବେ ସେ ତ ପୁଣି ଏହା କରିବାକୁ ଇଞ୍ଜିନିୟରମାନଙ୍କୁ ପଠାଇବେ । ତେଣୁ ଏଥିପାଇଁ ବହୁତ ସମୟ ଦରକାର ହେବ । ଯାହାକି ସମୟ ଗଲାଣି ପୁଣି ଯେତେ ଏପରି ସମୟ ଯାଏ ତା'ହେଲେ ଏଥିପାଇଁ ଅନେକ ସମୟ ଲାଗିବ ବୋଲି ମୋର ଆଶଙ୍କା ହେଉଛି । ଏଥିପାଇଁ ମୋର ଦାବି ହେଉଛି ଯେ institutional grant ଯାହା ଆସିଛି ତାକୁ L. P. ଓ U. P. ସ୍କୁଲର ଖର୍ଚ୍ଚ କରିବାପାଇଁ ବ୍ଲକ ହାତରେ ଛାଡ଼ି ଦିଆଯାଉ । ଏମ୍. ଇ. ଓ ଏଚ୍. ଇ. ସ୍କୁଲମାନଙ୍କର ବେସରକାରୀ ମ୍ୟାନେଜିଂ କମିଟି ଅଛନ୍ତି । ସେଥିପାଇଁ ଯାହା ଟଙ୍କା ଦିଆଯିବ ତାକୁ ସେମାନେ ସେମାନଙ୍କ ସ୍କୁଲରେ ଖର୍ଚ୍ଚ କରିବେ ।

ଏତ ଗଲା Educational Institution, ତା' ବାହାରେ ଅନେକ ଗ୍ରାମ-ମାନଙ୍କରେ ସରବତ ଟଙ୍କି, ଶିଶୁ ଭବନ ଓ କ୍ଲବ ଘର ଇତ୍ୟାଦି ରହିଛି । ସେଗୁଡ଼ିକ ମଧ୍ୟ ଭାଙ୍ଗି ଯାଇଛି । ଗାଁର ଲୋକମାନେ ସେ ସବୁଗୁଡ଼ିକୁ ବ୍ୟବହାର କରନ୍ତି । ବିଶେଷ କରି କ୍ଲବ ଘରଗୁଡ଼ିକରେ ଏକତ୍ରିତ ହୋଇ ସେମାନେ ନାନା କଥା ଆଲୋଚନା କରନ୍ତି ସେଥିପାଇଁ ସେଗୁଡ଼ିକୁ ସାହାଯ୍ୟ ଦେବା ଦରକାର କିନ୍ତୁ ଆଜିପର୍ଯ୍ୟନ୍ତ ସେ କଥା ସରକାରଙ୍କ ଦୃଷ୍ଟିକୁ ଆସି ନାହିଁ । ଏଭଳି ଅନୁଷ୍ଠାନଗୁଡ଼ିକୁ କେତେ ଟଙ୍କା ସାହାଯ୍ୟ ଦିଆଯିବ ତାହା ସରକାର ଚିନ୍ତା କରୁ ନାହାନ୍ତି । ତେଣୁ ଏପରି ଅନୁଷ୍ଠାନକୁ ସାହାଯ୍ୟ ପାଇଁ ଟଙ୍କା ବ୍ୟବସ୍ଥା କରନ୍ତୁ । ଏବେ ମଧ୍ୟ ସାହାଯ୍ୟ ଦେଲେ ସେମାନେ ପୁନର୍ନିର୍ମାଣ କରି ପାରିବେ । ତେଣୁ ସେ ଦିଗକୁ ସରକାର ଦୃଷ୍ଟି ଦିଅନ୍ତୁ ।

ସର୍ବୋପରି ମୋର କହିବା କଥା ଯେ ଯେଉଁ ଅଞ୍ଚଳରେ ଜମିରେ ପୁରାପୁରି ଲୁଣାପାଣି ମାଡ଼ିଯାଇଛି ବାଲେଶ୍ୱରର ଲେକା କୂଳରେ 3,500 ଏକର ଜମିରେ ଲୁଣାପାଣି ମାଡ଼ି ଯାଇଛି । ତା'ଛଡ଼ା ଆମ ଅଞ୍ଚଳରେ ଗୋଟିଏ ପାଟ ଅଛି । ସେଥିରେ 12 ହଜାର ଏକର ଜମି ଜଳମଗ୍ନ ହୋଇ ରହିଛି । ଫଳରେ ସେଠାକାର ଖନ୍ଦ ନଷ୍ଟ ହୋଇଗଲା ।

କେଣ୍ଡୁ ଏ ବର୍ଷର ହେବାକୁ ଥିବା ଗଛ ନଷ୍ଟ ହୋଇ ଯାଇଛି ଓ ଯେଉଁ ଅଞ୍ଚଳର ଲୁଣାପାଣି ମାଡ଼ିଯିବା ଦ୍ୱାରା ଜମିରୁ ଫସଲ ଅମଦାନୀ ହେବ ନାହିଁ ଓ ସେ ଚାଷୀମାନେ କିଛି ପାଇ ପାରିବେ ନାହିଁ । ସେମାନଙ୍କ ପାଇଁ ନିଶ୍ଚିତ ଭାବରେ କିଛି ବ୍ୟବସ୍ଥା କରିବାକୁ ହେବ । କାରଣ ଯେଉଁ ଜମିରେ ଲୁଣାପାଣି ମାଡ଼ିଛି ସେ ଜମିରେ ରବି ବା ଅନ୍ୟ ଫସଲ ହୋଇ ପାରିବ ନାହିଁ । ଏ ବର୍ଷ ସେମାନେ ଆଉ କିଛି କରି ପାରିବେ ନାହିଁ । ଆସନ୍ତା ଖରିଫ୍ ଫସଲ ହେବା ପର୍ଯ୍ୟନ୍ତ ତାଙ୍କୁ ସାହାଯ୍ୟ ଦେବାପାଇଁ ଯଦି କୌଣସି ଯୋଜନା କରା ନ ଯାଏ ତା'ହେଲେ ସେମାନେ ହାହାକାର କରିବେ । ମୁଁ ଜାଣେ ମତ୍ସ୍ୟଜୀବୀମାନଙ୍କ ପାଇଁ କୋ-ଅପରେଟିଭ ଜରିଆରେ ସେମାନଙ୍କର ଡଙ୍ଗା ଓ ଜାଲ ନଷ୍ଟ ହୋଇଛି ତାଙ୍କୁ ସାହାଯ୍ୟ ଦେବାକୁ ସରକାର ବ୍ୟବସ୍ଥା କରିଛନ୍ତି କିନ୍ତୁ ଆଜି ପର୍ଯ୍ୟନ୍ତ ସେମାନେ ତାହା ପାଇ ନାହାନ୍ତି । ସେମାନଙ୍କୁ ତୁରନ୍ତ ସାହାଯ୍ୟ ଦେଲେ ସେମାନେ ନୌକା, ଜାଲ ତିଆରି କରି ମାଛ ମାରି ଜୀବିକାର୍ଜନ କରିବେ । କିନ୍ତୁ ମୁଁ ଜାଣେ ଯେଉଁ ମତ୍ସ୍ୟଜୀବୀ କୋ-ଅପରେଟିଭ ସଂସ୍ଥାର ସଭ୍ୟ ନୁହଁନ୍ତି ତାଙ୍କୁ ସାହାଯ୍ୟ ଦେବାପାଇଁ ସରକାରଙ୍କ ପାଖରୁ ବ୍ୟବସ୍ଥା ନାହିଁ । ଅବଶ୍ୟ କୁହାଯାଇଛି ଯେ, ସେମାନେ କଲେକ୍‌ଟିଭ ସିକ୍ୟୁରିଟି ଦେଇ 4/5 ଜଣ ଏକାଠି ହୋଇ ସାହାଯ୍ୟ ନେଇ ପାରିବେ । ସେପରି ଦିଅନ୍ତୁ କିଛି ଆପତ୍ତି ନାହିଁ । କିନ୍ତୁ ଯାହା କହିବା କଥା ଶୀଘ୍ର କରନ୍ତୁ । ତା'ହେଲେ ସେମାନେ ଶୀଘ୍ର ମାଛମାରି ଜୀବିକାର୍ଜନ କରିବେ । ମାଛ ମାରିଲେ ସେମାନଙ୍କର ଆଉ ଅସୁବିଧା ହେବ ନାହିଁ । ଯେଉଁମାନଙ୍କର ଜମି ଏକମାତ୍ର ସମ୍ବଳ ଓ ତା'ଛଡ଼ା ଜୀବିକାର୍ଜନର ଆଉ ଉପାୟ ନାହିଁ ଓ ଯେଉଁ ଜମିରେ 7-8 ଦିନ ପାଣି ରହି ଗଛ ସମ୍ପୂର୍ଣ୍ଣ ନଷ୍ଟ ହୋଇଛି ସେମାନଙ୍କର ଆଉ ସମ୍ବଳ ନାହିଁ । ସେମାନଙ୍କୁ ତୁରନ୍ତ ସାହାଯ୍ୟର ବ୍ୟବସ୍ଥା କରିବା ଦରକାର । ବିଶେଷକରି ଆଦିବାସୀ ହରିଜନମାନେ ଏଥିରେ ସର୍ବସ୍ୱାନ୍ତ ହୋଇଛନ୍ତି । ଆମ୍ବ, ମହୁଲ ଇତ୍ୟାଦିରୁ କରୁଥିବା ଖାଦ୍ୟ ମଧ୍ୟ ବାତ୍ୟାରେ ନଷ୍ଟ ହୋଇଛି । ଯେଉଁ ମାଣ୍ଡିଆ, ଜହ୍ନା, ସୁଆଁ ଓ ମକ୍କା ଇତ୍ୟାଦି ଫସଲ ଥିଲା ତାହା ମଧ୍ୟ ନଷ୍ଟ ହୋଇଛି । ଅତଏବ ସେମାନଙ୍କ କଥା ସରକାର ସ୍ୱତନ୍ତ୍ରଭାବେ ବିଚାର କରିବା ଉଚିତ । ସେମାନଙ୍କୁ ସାହାଯ୍ୟ ନ ଦେଲେ ହେବ ନାହିଁ । ଶୀତ ଦିନପାଇଁ ତାଙ୍କୁ ଯେଉଁ ଲୁଗା, କମ୍ବଳ ସରକାର ସାହାଯ୍ୟ କରୁଛନ୍ତି ତାହା ଆହୁରି ବେଶୀ ହେବା ଦରକାର । ଆମେ ଦେଖିଛୁ ତାଙ୍କୁ ମାଣ୍ଡିଆ ସାହାଯ୍ୟ ଦେଲାବେଳେ ତାକୁ ରଖିବାପାଇଁ ଯୋଜନା ମଧ୍ୟ ସେମାନଙ୍କ ପାଖରେ ନ ଥିଲା । ତାଙ୍କର ଯେଉଁ ଅବସ୍ଥା ହୋଇଛି ଏ ବର୍ଷଟି ଗଲା, ଆସନ୍ତା ବର୍ଷପାଇଁ ସମସ୍ତ ବ୍ୟବସ୍ଥା କରିବା ଦରକାର । ଏ ବ୍ୟବସ୍ଥା କେବଳ ବେସରକାରୀ ସଂସ୍ଥା ହାତରେ ଛାଡ଼ିଦେଲେ ହେବ ନାହିଁ । ଆମର ରେଭିନ୍ୟୁ ବିଭାଗର ତହସିଲଦାର ପ୍ରଭୃତି ଅଫିସରଙ୍କ ଜରିଆରେ ଗରିବ ଲୋକଙ୍କୁ ସାହାଯ୍ୟ ଦେବାର ବ୍ୟବସ୍ଥା ହେଉ । ଗୋଟିଏ ବର୍ଷ

ସେମାନଙ୍କ ପାଇଁ ଏ ସାହାଯ୍ୟ ବ୍ୟବସ୍ଥା ହେଉ । ଅନ୍ତ ଗୋଟିଏ ଗଛ ପର୍ଯ୍ୟନ୍ତ ସାହାଯ୍ୟ ଦେବା ଦରକାର । ମୁଁ ସେମାନଙ୍କ ସହିତ କଥାବାର୍ତ୍ତା କରିଥିଲି । ସେମାନଙ୍କ ମତରେ ଗୋଟିଏ ଗଛ ପର୍ଯ୍ୟନ୍ତ ସାହାଯ୍ୟ ଦେଲେ ପରେ ଆଉ ଦରକାର ନାହିଁ । କିନ୍ତୁ ଆମେ ଚାହୁଁ ନାହୁଁ ଯେ ସରକାର ଖାଲି gratuitious relief ଦିଅନ୍ତୁ । ସେଠାରେ କିଛି ନା କିଛି କାମ ଆରମ୍ଭ କରନ୍ତୁ । ସେ ଲୋକଙ୍କ ହାତରେ କିଛି କାମ କରାଇ ସେମାନଙ୍କ ଦୈନିକ ମୂଲ ଦେବେ, ସେଠାରେ fair price shop କରିଆରେ ଉଚିତ୍ ମୂଲ୍ୟରେ ଖାଦ୍ୟ ଜିନିଷ ଯୋଗାଇ ଦେବେ, ତାହାହେଲେ ମୁଁ ଆଶା କରିବ ପାହାଡ଼ିଆ ଅଞ୍ଚଳର ଲୋକ ଏବଂ ଚିଲିକା କୂଳର ଲୋକ ଯେଉଁମାନେ ଜମିବାଡ଼ି ଉପରେ ନିର୍ଭର କରି ଚଳୁଥିଲେ ସେମାନଙ୍କୁ ଆମେ ବଞ୍ଚାଇ ପାରିବା । ତା'ନହେଲେ ସେମାନଙ୍କର ଅବସ୍ଥା ଅତ୍ୟନ୍ତ ଦୟନୀୟ ହୋଇ ପଡ଼ିବ ।

ତା'ପରେ ଆପଣ ଜାଣନ୍ତି ଏଥିରେ ବହୁ ଲୋକ ମରିଛନ୍ତି । ସରକାର ଶ୍ୱେତପତ୍ରରେ ଯେଉଁ ହିସାବ ଦେଇଛନ୍ତି ମୁଁ challenge କରୁଛି ଏହା ପୁରାପୁରି ଭୁଲ । ଯେତିକି ଘର ଭାଙ୍ଗିଛି ବୋଲି ସରକାର କହୁଛନ୍ତି ମୁଁ କହିବି ତା'ଠାରୁ ଦେଢ଼ଗୁଣ ଅଧିକା ଘର ଭାଙ୍ଗିଛି । ସରକାର ଗୋଟିଏ form ପଠାଇ ଥିଲେ । ସେହି form ପୂରଣ କରି ଲୋକଙ୍କୁ ସାହାଯ୍ୟ ଦିଆଯିବ । ଯେତିକି form ଯାଇଥିଲା ସେତିକି ସରିଗଲାଣି । ଆଉ ଅଧିକ form ମଗା ଯାଇଛି । କାଲି relief କମିଟିରେ ଜଣେ ମାନ୍ୟବର ସଭ୍ୟ ଅନୁରୋଧ କରିଥିଲେ ଯେ ଷଷ୍ଠସ୍ତରର ଠିକ ଖବର ଦିଅନ୍ତୁ । କେତେ ଘର ଭାଙ୍ଗିଛି, କେତେ ଗାଈଗୋରୁ ମରିଛନ୍ତି, କେତେ ଜମିରେ ଲୁଣିପାଣି ମାଡ଼ି ଜମି ଅକର୍ମଣ୍ୟ ହୋଇ ଯାଇଛି, କେତେ ଜମିରୁ ଉତ୍ପାଦନ କମିଯାଇ କେତେ economic loss ହୋଇଛି । ଆମର economic life କେତେ ପଛେଇ ଗଲା, ଏସବୁର ଗୋଟିଏ ଠିକ୍ ହିସାବ କରାଯାଉ । ତା'ପରେ ଏ ବାତ୍ୟା ବିଧ୍ୱସ୍ତ ଅଞ୍ଚଳର ଲୋକମାନଙ୍କର ଥଇଥାନ୍ ପାଇଁ ଯୋଜନା କରାଯାଉ । ତାହା ନ ହେଲେ ଡେରିରେ ସାହାଯ୍ୟ ଦେଇ ଯେଉଁ ଅନ୍ୟାୟ, ଯେଉଁ ପାପ କରିଛନ୍ତି ପୁଣି ଯଦି ସେହି ଡେରିରେ ସବୁକାମ ଚାଲିବ ତେବେ ଯଥା ସମୟରେ ଲୋକଙ୍କ ପାଖରେ ସାହାଯ୍ୟ ପହଞ୍ଚି ପାରିବ ନାହିଁ । ଲୋକଙ୍କର ଅସୁବିଧା ଆହୁରି ବଢ଼ିବ । ପାନବରଜ ଗୋଟିଏ ଗୋଟିଏ ଫସଲ, ଯେଉଁଥିରୁ ଉତ୍ପାଦନ ପାଇଁ ଗୋଟିଏ ବର୍ଷ ଦରକାର । ଆଜିଠାରୁ ଆମେ ଟଙ୍କା ନ ଦେଲେ ସେମାନେ କାମ ଆରମ୍ଭ କରି ପାରିବେ ନାହିଁ ।

ଯେତେ ବନ୍ଧ, ବାନ୍ଧ, ରାସ୍ତା ଭାଙ୍ଗି ଯାଇଛି ସେ ସବୁର ମରାମତି ଶୀଘ୍ର କରାଯାଉ । କେନ୍ଦ୍ର ସରକାରଙ୍କଠାରୁ ଗୋଟିଏ ନିର୍ଦ୍ଦେଶ ଆସିଛି ଯେ ମାର୍ଚ୍ଚ 27 ଭିତରେ ସବୁ କାମ ସଂପୂର୍ଣ୍ଣ ନ ହେଲେ ଟଙ୍କା ଫେରିଯିବ । ବାଘୁଆ bridge ମରାମତିପାଇଁ ଅନ୍ୟୂନ ବର୍ଷେ ସମୟ ଦରକାର । ଆଉ କେତେଗୁଡ଼ିଏ acquaduct ଭାଙ୍ଗିଛି, ଯେଉଁଥିପାଇଁ 3 ମାସ ସମୟ ଲାଗିବ । ଏମିତି ଯେତେ ବନ୍ଧବାନ୍ଧ ଭାଙ୍ଗିଛି 6 ମାସ ଭିତରେ ସେଗୁଡ଼ିକ କେତେବେଳେ ହୋଇ ପାରିବ ନାହିଁ । ଜାତୀୟ ରାଜପଥରେ ଯେଉଁ କ୍ଷତି ହୋଇଛି ତା' କ'ଣ କେବେ ମାର୍ଚ୍ଚ ଭିତରେ ସଂପୂର୍ଣ୍ଣ ହୋଇ ପାରିବ ? ସେଥିପାଇଁ ଆପଣ କେନ୍ଦ୍ରରେ ଜଣାଇ ଦେବାର କଥା ଯେ, ମାର୍ଚ୍ଚ ଭିତରେ ଯାହା ପାଇଁ ଆମେ ଚେଷ୍ଟା କରୁଛୁ । ଯଦି ନ ହେଲେ ଅଧିକ ସମୟ ଦିଆଯାଉ । ତା'ନହେଲେ ସବୁ ଅଧାଧୁରିଆ କାମ ରହିବ । ପୁଣି ଅଳ୍ପ ଦିନରେ ଭାଙ୍ଗି ପଡ଼ିବ ଏପରି ହାତରୁ ପାଣ୍ଠି ନ ରଖିଲେ ଆମକୁ ଶେଷରେ ଟଙ୍କା ଫେରାଇବାକୁ ପଡ଼ିବ ।

ସବୁଠାରୁ ବଡ଼ କଥା ହେଲା ଅନ୍ୟର ଦୁଃଖ ଦୁର୍ଦ୍ଦଶା ବୁଝିବାପାଇଁ ହୃଦୟ ଥିବା ଦରକାର । ଯେଉଁମାନେ ଆଜି ମନ୍ତ୍ରୀ ଆସନରେ ବସିଛନ୍ତି ମୁଁ ଅନୁଭବ କରୁଛି ସେମାନଙ୍କର ସେଭଳି ହୃଦୟ ନାହିଁ ।

ମୋର ଆଉ ବିଶେଷ କିଛି କହିବାର ନାହିଁ । ଆମେ ଯାହାସବୁ ଅନୁରୋଧ କରୁଛୁ ସରକାର ସେଥିପ୍ରତି ଦୃଷ୍ଟି ଦିଅନ୍ତୁ । ଆଜି କୃଷ୍ଣପ୍ରସାଦ ଅଞ୍ଚଳରୁ ଶହ ଶହ ଚାଷୀ ଆସିଥିଲେ ଆପଣ ସେତେବେଳେ chairରେ ଥିଲେ ସେମାନେ ଅନୁରୋଧ କରିଥିଲେ ମୁଖ୍ୟମନ୍ତ୍ରୀ ବା ଅନ୍ୟ କେହି cabinet ମନ୍ତ୍ରୀ ସେ ପାଖକୁ ଯାଇ ତାଙ୍କୁ 2/4 ପଦ କଥା କହିଥାନ୍ତେ । କହୁଛନ୍ତି ଉପମୁଖ୍ୟମନ୍ତ୍ରୀ ଯାଇଥିଲେ । ମୁଁ ଜାଣିପାରୁ ନାହିଁ ସବୁ ସମାଲୋଚନା ସରିବା ପରେ କାହିଁକି ଗଲେ ? ଆଗରୁ କାହିଁକି ନ ଗଲେ ? ସେଠାରେ ତ କିଛି violenceରେ ଆଶଙ୍କା ନ ଥିଲା ଆପଣଙ୍କ ଏ ଗୃହରେ ଉତ୍ତର ଦେଉଛନ୍ତି । ସେଠାରେ ସେମିତି କହିଥାନ୍ତେ । ବର୍ତ୍ତମାନର ଏହି ବିକ୍ଷୋଭ କିଛି ନୁହେଁ । ଯେଉଁମାନେ ମୃତାହତ ହୋଇଛନ୍ତି ସେମାନଙ୍କର, ଭୂତ ହଜାର ହଜାର ସଂଖ୍ୟାରେ ଆପଣମାନଙ୍କୁ ଘୋଡ଼ାଇବେ । ଆପଣମାନେ ଅସ୍ଵୀକାର କରିପାରିବେ କି ?

ପଲ୍ଲୀ ଗ୍ରାମ କଥା ଦରକାର ହେଲେ ମୁଁ ତାଙ୍କୁ ଦେବା ପାଇଁ ପ୍ରସ୍ତୁତ ଅଛି । ବର୍ତ୍ତମାନ ମୁଁ ବ୍ରହ୍ମପୁର ସହରର ଉଦାହରଣ ତାଙ୍କୁ ଦେଉଛି ।

## ବାତ୍ୟା ଓ ମରୁଡ଼ି ସଙ୍କଟରେ ଆଲୋଚନା (4-1-1972

ରାଜ୍ୟରେ ଯେଉଁ ଅବସ୍ଥା ସୃଷ୍ଟି ହୋଇଛି ଆମର ରାଜ୍ୟବାସୀ ଆଶା କରିଥିଲେ ସେ ବିଷୟରେ ରାଜ୍ୟପାଳଙ୍କ ଭାଷଣରେ କିଛି ଉଲ୍ଲେଖ ରହିବ, କିନ୍ତୁ ତା ରାଜ୍ୟପାଳଙ୍କ ଭାଷଣରେ ନାହିଁ । ଏ ଭାଷଣ ନିତାନ୍ତ ନୈରାଶ୍ୟଜନକ । ଏଥିରେ ସେ ବିଷୟରେ ଆଲୋକପାତର କୌଣସି ଉଲ୍ଲେଖ ନାହିଁ । ଏ ବିଷୟରେ ଏ ରାଜ୍ୟ ଆଉ କେତେଦିନ ଅନ୍ଧକାର ଭିତରେ ରହିବ ତା ଦେଖିବାକୁ ରହିଲା । ପ୍ରଥମ ହେଲା ପାକିସ୍ଥାନ ଆମ ଦେଶକୁ ଅଯଥାରେ ଆକ୍ରମଣ କଲା ସେ ସମ୍ବନ୍ଧରେ ଉଲ୍ଲେଖ ରହିଛି । ଆମର ଜବାନମାନେ ପ୍ରଭୃତ ସାହାସର ସହିତ ଧୈର୍ଯ୍ୟର ସହିତ, ଉନ୍ନତ ଧରଣର ରଣ କୌଶଳର ସହିତ, ଯୁଦ୍ଧ କରି ଯେ ଜୟଯୁକ୍ତ ହେଲେ ସେ ବିଷୟରେ ଏଥିରେ ଉଲ୍ଲେଖ ଅଛି । କିନ୍ତୁ ଯେଉଁମାନେ ଆମକୁ ବିରୋଧ କରିଛନ୍ତି ସାମ୍ରାଜ୍ୟବାଦୀ ଆମେରିକା ଯେପରି ଆମର ବିରୋଧ କଲା ଏବଂ ଉତ୍ତରପଡ଼ୀ ଚୀନ ଯେ ଆମର ବିରୋଧ କଲା ଏ ସମ୍ବନ୍ଧରେ ଏ ଭାଷଣରେ କିଛି ଉଲ୍ଲେଖ ନାହିଁ । ତା ସଙ୍ଗେ ସଙ୍ଗେ ଯେଉଁମାନେ ଆମ୍ଭମାନଙ୍କୁ ବନ୍ଧୁ ହିସାବରେ ସାହାଯ୍ୟ କଲେ ସେମାନଙ୍କ ବିଷୟରେ ମଧ୍ୟ ଏଥିରେ ଉଲ୍ଲେଖ ନାହିଁ । ମୁଁ ଭାବୁଛି ଏ ଭାଷଣରେ ଏ ସବୁ ବିଷୟରେ ଉଲ୍ଲେଖ ନ ଥିବା ଦୁଃଖଦାୟକ କାରଣ ଆମେମାନେ ଯାହାଙ୍କଠାରୁ ସାହାଯ୍ୟ ପାଇଛୁ ତାଙ୍କୁ ଯଦି ଧନ୍ୟବାଦ ନଦେଉ, ଏଥିରେ ଉଲ୍ଲେଖ ନରଖି ଆଉ ଯେଉଁମାନେ ଆମର ବିରୋଧ କଲେ ସେମାନଙ୍କ ବିଷୟରେ ଏଥିରେ ଯଦି ଉଲ୍ଲେଖ ନ ରଖୁ ତା ହେଲେ ଏଥିରେ ତ୍ରୁଟି ରହିଯିବ ବୋଲି ମୁଁ ଭାବୁଛି । କାରଣ ଆପଣ ଜାଣନ୍ତି ଯେଉଁ ଆମେରିକା ପୃଥିବୀରେ ଗଣତନ୍ତ୍ର ସୁରକ୍ଷା ନାମରେ, ସ୍ୱାଧୀନତାର ସୁରକ୍ଷା ନାମରେ ଡିମ୍ଭିମ ପିଟୁଥିଲେ ସେଇ ଦେଶ ପକ୍ଷରେ ଆମର ବିରୋଧ କରିବା ନିତାନ୍ତ ଗର୍ହିତ । ସେ ବିଷୟରେ କିନ୍ତୁ ଏଥିରେ ଉଲ୍ଲେଖ ନାହିଁ । ଯେଉଁ ବନ୍ଧୁରାଷ୍ଟ୍ର ଋଷ୍ ଆମକୁ ଏ ଯୁଦ୍ଧରେ ସାହାଯ୍ୟ କଲା, ସେ ବିଷୟରେ ଏଥିରେ ଉଲ୍ଲେଖ ନ ରହିବା ଉଚିତ୍ ନୁହେଁ । ତା'ପରେ ଏ ଭାଷଣରେ ଆମକୁ କୁହାଯାଇଛି ଜାଗ୍ରତ ହୋଇ ରହିବାକୁ ହେବ କାରଣ ବିପଦ ଦୂର ହୋଇନାହିଁ । ପ୍ରଧାନମନ୍ତ୍ରୀ ମଧ୍ୟ ତାଙ୍କ ଭାଷଣରେ ଏଇକଥା କହୁଛନ୍ତି । ଆମକୁ ସଦାସର୍ବଦା ସଜାଗହୋଇ ରହିବାକୁ ସେ କହୁଛନ୍ତି । କିନ୍ତୁ ଓଡ଼ିଶା ସରକାର ରାଜ୍ୟବାସୀଙ୍କୁ ସଜାଗ ହୋଇ ରହିବାପାଇଁ କି ବ୍ୟବସ୍ଥା କରିଛନ୍ତି ସେ ବିଷୟରେ ରାଜ୍ୟପାଳଙ୍କ ଭାଷଣରେ ଉଲ୍ଲେଖ ନାହିଁ । ଏପରିକି ଯେଉଁ ଯୁଦ୍ଧ 14 ଦିନ ଧରି ଲାଗିଲା ସେ ସମୟରେ ସିଭିଲ୍-ଡିଫେନ୍ସ ବାବଦରେ ରାଜ୍ୟ ସରକାର କି ବ୍ୟବସ୍ଥା କରିଥିଲେ ଏଥିରେ ତା'ର ଉଲ୍ଲେଖ ନାହିଁ । ଆମ ରାଜ୍ୟକୁ ସ୍ୱାବଲମ୍ବୀ ହେବାକୁ ବର୍ତ୍ତମାନ ବଡ଼ ସୁଯୋଗ ଆସିଛି । ତା'ର ବିନିଯୋଗ କରିବାକୁ ହେବ । ସେଥିପାଇଁ ଖାଦ୍ୟଶସ୍ୟ ଉତ୍ପାଦନ ବୃଦ୍ଧି କରିବାକୁ ହେବ

ଆହୁରି ଅଧିକ ଜମିରେ ଯେପରି ଚାଷ କରିବାକୁ ହେବ, ଅଧିକ ଜଳସେଚନର ବ୍ୟବସ୍ଥା କରିବାକୁ ହେବ ସେ ବିଷୟରେ ଏଥିରେ କିଛି ଉଲ୍ଲେଖ ନାହିଁ । ଯାହା ବା ଉଲ୍ଲେଖ ଅଛି ତା କାର୍ଯ୍ୟକାରୀ କରିବାରେ ମୁଁ ଉପଲବ୍ଧି କରୁଛି । ମୁଁ ଚାହୁଁଥିଲି ଓଡ଼ିଶାକୁ ସବୁଠାରୁ ବେଶି ସ୍ୱାବଲମ୍ବୀ କରିବାକୁ ହେବ । ଖାଦ୍ୟ ଉତ୍ପାଦନ ବୃଦ୍ଧି ଦିଗରେ ଓଡ଼ିଶା ଯେ ସବୁଠାରୁ ବେଶି ପ୍ରୟାସୀ ହେବ ସେ କଥା ରାଜ୍ୟପାଳ ଉଲ୍ଲେଖ କରିବେ । କେବଳ ତା କାର୍ଯ୍ୟରେ ପରିଣତ ହେବ ତା ସେ ଉଲ୍ଲେଖ କରିବେ କିନ୍ତୁ ସେ ବିଷୟରେ ଉଲ୍ଲେଖ ନ ଥିବା ଦୁଃଖଦାୟକ । ଆମର ବର୍ତ୍ତମାନ ଏ ଯେଉଁ ସମୟ ଓ ସୁବିଧା ଆସିଛି ଆମେ ଯଦି ତା'ର ସୁଯୋଗ ନ ନେଇ ଛାଡ଼ିଦେଉ ତା'ହେଲେ ଆମର ଜାତିର ପିତା ମହାତ୍ମା ଗାନ୍ଧୀ ଓ ପୂର୍ବତନ ପ୍ରଧାନମନ୍ତ୍ରୀ ସ୍ୱର୍ଗୀୟ ଲାଲବାହାଦୂର ଶାସ୍ତ୍ରୀ ଆମ ଦେଶକୁ ଖାଦ୍ୟଶସ୍ୟ ଦିଗରେ ସ୍ୱାବଲମ୍ବୀ କରିବା ପାଇଁ ଯାହା କହୁଥିଲେ ତାଙ୍କ କାର୍ଯ୍ୟକାରୀ କରିବାରେ ସୁଯୋଗ ନେଇପାରିବୁ ନାହିଁ । ସେଥିପାଇଁ ପ୍ରତ୍ୟେକ ଇଞ୍ଚ ଜାଗା ଓ ପ୍ରତ୍ୟେକ ବୁନ୍ଦ ଜଳର ବିନିଯୋଗ କରିବାକୁ ହେବ । କିନ୍ତୁ ଲୋକଙ୍କ ଭିତରେ ସେ ଉତ୍ସାହ, ସେ ଉଦ୍ଦୀପନା ଜାଗ୍ରତ କରିବା ପାଇଁ ଏଇ ସମୟ ଓ ସୁବିଧାର ସୁଯୋଗ ନେବା ପାଇଁ ରାଜ୍ୟପାଳଙ୍କ ଭାଷଣରେ କିଛି ଉଲ୍ଲେଖ ନାହିଁ । ବାଚସ୍ପତି ମହୋଦୟ, ଆପଣ ଜାଣନ୍ତି ଉଭୟ ଲୋକସଭା ଓ ରାଜ୍ୟ ସଭାରେ ସମ୍ବିଧାନ 24 ସଂଶୋଧନ ବିଲ୍ ପାସ୍ ହେଲା । ଏ ବିଲ୍ ସେଠାରେ ପାସ ହେବା ପରେ ପରେ ଆମେ ବିଭିନ୍ନ ରାଜନୈତିକ ଦଳ ଯେଉଁମାନେ ଆଜି ବିରୋଧ ଦଳ ହିସାବରେ ପରିଚିତ ସେମାନେ ସମସ୍ତେ ମୁଖ୍ୟମନ୍ତ୍ରୀଙ୍କୁ ବିଧାନସଭା ଡାକିବାପାଇଁ ଲେଖିଥିଲେ । ବିଧାନସଭା ଡାକି 24ତମ ସଂଶୋଧନ ବିଲ୍ ଆଲୋଚନା କରିବାର ଯେଉଁ ସୌଭାଗ୍ୟ ଏବଂ ତାକୁ ratify କରିବାପାଇଁ ଯେଉଁ ସୁଯୋଗ ଆମେ ପାଇଥିଲୁ ସେ ସୁଯୋଗ ଆମେ ହରାଇଲୁ । ଦୁଃଖର କଥା ଆଜି ମୁଖ୍ୟମନ୍ତ୍ରୀ ଏଠାରେ ନାହାନ୍ତି । ଆମେ ମୁଖ୍ୟମନ୍ତ୍ରୀଙ୍କ ପାଖରେ ଦାବି କରିଥିଲୁ ଏବଂ ମୁଖ୍ୟମନ୍ତ୍ରୀଙ୍କ ନିକଟକୁ ମଧ୍ୟ ଯାଇଥିଲୁ । ଏପରି ହୋଇଥିଲା ତାଙ୍କ ଦ୍ୱାରରେ ମଧ୍ୟ ଅନଶନ କରିବାକୁ ପ୍ରସ୍ତୁତ ଥିଲୁ । ମୁଖ୍ୟମନ୍ତ୍ରୀ ବିଧାନସଭା ଡକାଇବେ ବୋଲି କହିଥିଲେ । କିନ୍ତୁ ସେତେବେଳେ ବାତ୍ୟା ଓ ବନ୍ୟା ଆସିଗଲା । ସେ କାର୍ଯ୍ୟ କରିବାରେ ଆମେ ଲାଗିଗଲୁ । 24ତମ ସମ୍ବିଧାନ ସଂଶୋଧନ ବିଲ୍ ଆଲୋଚନା କରିବା ସୁଯୋଗ ଆମେ କାହିଁକି ନ ପାଇଲୁ ? ମୁଁ ସରକାରଙ୍କୁ ପଚାରିବାକୁ ଚାହେଁ, ଭାରତରେ ଅର୍ଦ୍ଧରୁ ଅଧିକ ରାଜ୍ୟ ଏହାକୁ ratify କରିବାର କଥା । ଆମେ ସେ ଆଲୋଚନାର ସୁଯୋଗ ନ ପାଇଲୁ କାହିଁକି ? ଆମ ବିଧାନସଭା ଯଦି ଡକାଯାଇଥାନ୍ତା ତାହାହେଲେ ଆମେ 24ତମ ସଂଶୋଧନ ବିଲ୍ ratify କରିପାରିଥାନ୍ତୁ । ଆଜି ଆମେ 25ତମ ସମ୍ବିଧାନ ଅଭିନ ratify କରିବାକୁ ଯାଉଛୁ । ଆମେ ନିବେଦନ ଆବେଦନ କରିଥିଲେ ମଧ୍ୟ ସରକାରୀ ଦଳ ସେ ମତ ଅବଲମ୍ବନ

କଲେ ନାହିଁ । ଦୁଃଖର କଥା ଏତେ ଦାବି ସତ୍ତ୍ୱେ, ଆବେଦନ ନିବେଦନ ସତ୍ତ୍ୱେ ସରକାରୀ ଦଳ ଚୁପ୍ ରହିଲେ । ଯଦିଓ ମୁଖ୍ୟମନ୍ତ୍ରୀ କହିଥିଲେ ବିଧାନ ସଭା ନିଶ୍ଚିତଭାବେ ଡକାଯିବ । 24ତମ ସମ୍ବିଧାନ ସଂଶୋଧନ ଆଇନ ଅନୁମୋଦନ କରାଯିବ ତଥାପି ତାହା ହୋଇପାରିଲା ନାହିଁ । ଏ ପ୍ରକୃତିର ଦୁଃଖଦାୟକ ପରିସ୍ଥିତି । ଏପରି କାର୍ଯ୍ୟ ଦ୍ୱାରା ସର୍ବଭାରତୀୟ କ୍ଷେତ୍ରରେ ଆମର ଯେଉଁ ସୁନାମ ରହିବା କଥା ସେ ସୁନାମରେ ଅଞ୍ଚ ଆସିଛି । ସେଥିପାଇଁ ମୁଁ ଅତ୍ୟନ୍ତ ଦୁଃଖ ପ୍ରକାଶ କରୁଛି ।

ବାଚସ୍ପତି ମହୋଦୟ, 29 ଅକ୍ଟୋବରରେ ଯେଉଁ ପ୍ରଳୟଙ୍କରୀ ଘୂର୍ଣ୍ଣିବାତ୍ୟା ହେଲା ଆଜି ସେ ପ୍ରସଙ୍ଗର ପ୍ରଥମ ପ୍ରଶ୍ନ ଆସିଥିଲା । ସେଥିରେ ପ୍ରାୟ 50 ମିନିଟ୍ କାଳ ସମୟ ନିଆଗଲା । ତଥାପି ମାନ୍ୟବର ସଭ୍ୟମାନଙ୍କର ଘୋର ଅସନ୍ତୁଷ୍ଟ ରହିଗଲା । ତାଙ୍କର ଯାହା ପ୍ରଶ୍ନ ଥିଲା ତାହା ଆଲୋଚନା ହୋଇପାରିଲା ନାହିଁ । ଆପଣ ଆଶ୍ୱାସନା ଦେଇ କହିଲେ ଏ ସମ୍ପର୍କରେ 3 ଦିନ ଆଲୋଚନା ହେବ । ସେଇଥିପାଇଁ ମାନ୍ୟବର ସଭ୍ୟମାନେ କିଛିଟା ଆଶ୍ୱସ୍ତ ହୋଇଛନ୍ତି । ଆପଣ ଜାଣନ୍ତି ଏ ଘଟଣା ଘଟିଲା ଅକ୍ଟୋବର ତା 29 ରିଖରେ, ତା'ପରେ 4 ଦିନ ବିତିଯାଇଥିଲା । ଓଡ଼ିଶାର ଯେଉଁ ଅଞ୍ଚଳରେ ବାତ୍ୟା, ବନ୍ୟାର ବିଭୀଷିକା ଦେଖା ଦେଇଥିଲା ଆମ ସରକାର ସେ ଅଞ୍ଚଳକୁ ପ୍ରବେଶ ସୁଦ୍ଧା କରିପାରି ନ ଥିଲେ । ସେ 4 ଦିନ ଭିତରେ କଏ ମରୁଛି । କିପରି ମରୁଛି ଇତ୍ୟାଦି ବିଷୟ ଜାଣିବାର କୌଣସି ଉପାୟ ନଥିଲା । ତା'ପରେ ଯେଉଁସବୁ ସାହାଯ୍ୟ ବା relief ଲୋକଙ୍କୁ ଦେବାର କଥା ସେଥିରେ ମଧ୍ୟ ଗୁରୁତର ତ୍ରୁଟି ଓ ଅବହେଳା ଦେଖା ଦେଇଛି । ଯେହେତୁ ଆପଣ କହିଲେ ଏ ସମ୍ପର୍କରେ 3 ଦିନ ଆଲୋଚନା ହେବ । ତେଣୁ ଏ ପ୍ରସଙ୍ଗରେ ମୁଁ ଆଉ ଅଧିକ ସମୟ ନେବି ନାହିଁ । ଅତି ସଂକ୍ଷେପରେ କହିବି, ଏ ସମ୍ପର୍କରେ ଆଜି ମାନ୍ୟବର ସଭ୍ୟମାନଙ୍କ ମନରେ ଅସନ୍ତୋଷ ରହିଯାଇଛି । ଗୋଟିଏ କଥା ଆପଣ ଲକ୍ଷ୍ୟ କରିଥିବେ ଏ ପକ୍ଷର ବନ୍ଧୁ ମାନ୍ୟବର ସଭ୍ୟ ପଚାରିଥିଲେ ରାଜନୈତିକ ଦୃଷ୍ଟିକୋଣରୁ relief ବଣ୍ଟନ କରାଯାଇଛି । ଏହାଠାରୁ ବଳି ଲଜ୍ଜାର କଥା କ'ଣ ହୋଇପାରେ ? ଯେତେବେଳେ ଗୋଟିଏ ଅଞ୍ଚଳର ଲୋକ ମରୁଛନ୍ତି, ହାହାକାର କରୁଛନ୍ତି ଖାଇବା ପାଇଁ ପାଉନାହାନ୍ତି ସେତେବେଳେ ଏମାନେ ଆମକୁ ସମର୍ଥନ କରିନଥିଲେ । ଆମ ଦଳର ଲୋକ ନୁହଁନ୍ତି ଏକଥା ଭାବି ତାଙ୍କୁ ସାହାଯ୍ୟ ନଦେଇ ଯେଉଁ ଅଞ୍ଚଳର ଲୋକେ ଭୋଟ ଦେଇଛନ୍ତି ତାଙ୍କୁ ଯଦି ସାହାଯ୍ୟ ବଣ୍ଟନ କରାଯାଏ ଏହାଠାରୁ ବଳି ଲଜ୍ଜାର କଥା କ'ଣ ହୋଇପାରେ ? ମନୁଷ୍ୟ ମରିଗଲା ବେଳେ ଏ ସଙ୍କୀର୍ଣ୍ଣ ରାଜନୈତିକ ଦୃଷ୍ଟିକୋଣରେ ପରିବର୍ତ୍ତନ ମଧ୍ୟ ହୋଇପାରିଲା ନାହିଁ । ଏ ସଙ୍କୀର୍ଣ୍ଣ ଦୃଷ୍ଟିକୋଣଯୋଗୁଁ ଆଜି ଲୋକଙ୍କ ଅବସ୍ଥା ଏପରି ହୋଇଛି । ଏପରି ସଙ୍କୀର୍ଣ୍ଣ ମନୋଭାବର ବଶବର୍ତ୍ତୀ ହୋଇ କେଉଁ ମନ୍ତ୍ରୀ କହିଲେ ଏବଂ କେଉଁ ଅଫିସର ଏପରି ହୀନକାର୍ଯ୍ୟ କରିଛନ୍ତି

ବନ୍ଦ ହେବାର କଥା । ଏ ସମ୍ପର୍କରେ ସେମାନଙ୍କୁ ବହୁ ଅଞ୍ଚଳରୁ ଖବର କଥା ଶୁଣିବାକୁ ମିଳୁଛି । ମାନ୍ୟବର ସଭ୍ୟମାନେ ତା'ର ଉଦାହରଣ ଦେବେ, ସେତେବେଳେ ଆପଣଙ୍କ ହୃଦ୍‌ବୋଧ ହେବ ଯେ ସେ ଅଞ୍ଚଳର ଲୋକଙ୍କ ମଧ୍ୟରେ ସାହାଯ୍ୟ ବଣ୍ଟନ ଏବଂ ଅନ୍ୟାନ୍ୟ କାର୍ଯ୍ୟରେ କପରି ଅବହେଳା କରାଯାଉଛି ଏବଂ କପରି ଦଳୀୟ ଦୃଷ୍ଟିକୋଣରୁ କାର୍ଯ୍ୟ କରାଯାଉଛି ।

ଆଜ ଘରଭଙ୍ଗା ଋଣ ଲୋକ ପାଉନାହାନ୍ତି । କୃଷି ଋଣ ପାଇଲେ ରବି ଫସଲ କରୁ କରିବ । ସେଥିପାଇଁ tube-well ମଧ୍ୟ ହେବ । ଏ tube-well କେଉଁଠି ହେବ ? ଆପଣ ଦେଖିବେ ଯେ କେତେକ ଅଞ୍ଚଳରେ ବହୁ ସଂଖ୍ୟାରେ tube-well କରାଯାଇଥିଲେ ମଧ୍ୟ ଆଉ କେତେକ ଅଞ୍ଚଳରେ flow irrigation ସୁବିଧା ନ ଥିଲେ ମଧ୍ୟ ସେଠାରେ tube-well ହୋଇପାରୁ ନାହିଁ । ଏ ବିଷୟରେ ଆପଣ ଦେଖିବେ ଘୋର ଅବହେଳା କରାଯାଉଛି ଏବଂ ଦଳୀୟ ଦୃଷ୍ଟିକୋଣରୁ କାର୍ଯ୍ୟ କରାଯାଉଛି । ବାତ୍ୟା ଓ ବନ୍ୟା ହେବାର ଆଜ କି ମାସ, ଦୁଇମାସ ଉପର ହେଲା । ତଥାପି ଲୋକଙ୍କୁ ଘରଭଙ୍ଗା ଋଣ ଦିଆ-ଯାଇ ପାରୁନାହିଁ । ବର୍ତ୍ତମାନ ଶୀତ ଓ କାକରରେ ଯାହାର ଘର ନାହିଁ ସେ ଲୋକ କପରି ଅବସ୍ଥାରେ ରହୁଥିବ, ଆପଣ ଅନୁମାନ କରନ୍ତୁ । ସେ ଅଞ୍ଚଳର ଲୋକଙ୍କୁ 7 ଦିନରୁ 15 ଦିନ ପାଇଁ relief ଦିଆଗଲା । ଏ relief ଦେବା ସମ୍ପର୍କରେ ବହୁ ବିଷୟ ଆମ କମିଟିରେ ଆଲୋଚିତ ହୋଇଥିଲା । ସେତେବେଳେ ସ୍ଥିର ହୋଇଥିଲା relief ବନ୍ଦ ହେବା ପରେ ପରେ ଏ ଅସହାୟ ଲୋକଙ୍କୁ କାମ ଯୋଗାଇ ଦିଆଯିବ । କିନ୍ତୁ relief ବନ୍ଦ ହେବାର ବହୁଦିନ ପରେ ସରକାର ସ୍ଥିର କଲେ ଯେ ପ୍ରତ୍ୟେକ ପଞ୍ଚାୟତକୁ test relief ପାଇଁ 4 ହଜାର ଟଙ୍କା ଦେବେ । ଆପଣ ଅନୁମାନ କରନ୍ତୁ ଗୋଟିଏ ପଞ୍ଚାୟତର ଜନ ସଂଖ୍ୟା କେତେ ଏବଂ ସେଥିରେ କେତେ ଲୋକ affected ହୋଇଛନ୍ତି ସେମାନଙ୍କୁ କାମ ଯୋଗାଇବା ପାଇଁ କେତେଦିନ ଯିବ । ମୁଁ କଦର୍ଷ୍ଟ ଖବରେ ପଚାରୁଛି ବାକୁ ଚାହେଁ ଏ ଲୋକମାନଙ୍କୁ କାମ ଧନ୍ଦା ଯୋଗାଇ ନ ଦେଲେ ସେମାନେ ବଞ୍ଚିବେ କପରି ? ସେ ଲୋକମାନଙ୍କର ଜମିରେ ଶସ୍ୟ ନାହିଁ । ଘରେ ବି ଧାନ ନାହିଁ ଯାହା କିଛି ଘରେ ଥିଲା ସେତକ ଯାଇଛି । ତେଣୁ ସେମାନଙ୍କୁ କାମ ଯୋଗାଇବା ଆମର କହାଠ ଦରକାର । ଯେପରି ସରକାର ମନେ କରୁଛନ୍ତି ଆପେ ଆପେ ସବୁ ହୋଇଯିବ । The time is the best healer ସମୟ ଚାଲିବାରେ ସବୁ ଠିକ୍ ହୋଇଯିବ । ଆପଣ ଅନୁମାନ କରନ୍ତୁ ଲୋକେ କପରି ଦୈନ୍ୟ ଅବସ୍ଥାରେ ରହୁଛନ୍ତି । ଲୋକେ କାମ ଧନ୍ଦା ନ ପାଇ ହାହା କାର କରୁଛନ୍ତି, ଖୁଦ ମଧ୍ୟ ଖାଇବାକୁ ପାଉ ନାହାନ୍ତି, ଆମେ କହିଲୁ retail dealer ମାନଙ୍କ ପାଖରେ ଖୁଦ ନାହିଁ । ତାହାହେଲେ ସରକାର fair price shop ସେଠାରେ ଖୋଲନ୍ତୁ । ତାହା-

ହେଲେ ଲୋକେ ବାମ୍ପଧ ଦର ଯାହା କରୁ ପଇସା ପାଇବେ fair price shopରୁ କିଣି ଜୀବନ ବଞ୍ଚାଇବେ, ସେ କଥା ମଧ୍ୟ ହେଲା ନାହିଁ । ବହୁ ଜାଗାରୁ ଖବର ଶୁଣା-ଯାଉଛୁ ଯେତେବେଳେ ନିହାତ ଦରକାର ଥିଲା ସେତେବେଳେ ହୋଇପାରିଲା ନାହିଁ । ସବୁଠାରୁ ଦୁଃଖର କଥା କୁହାଗଲା ଯେଉଁମାନେ ମରିଯାଇଛନ୍ତି ସେ ଯାଇଛନ୍ତି । କିନ୍ତୁ ସରକାର ନିର୍ଦ୍ଦିଷ୍ଟ ଖବର ସମସ୍ତ ଶକ୍ତି ଖଟାଇ ଦେଖିବେ ଏହାପରେ ଯେପରି ଅନାହାରରେ ମୃତ୍ୟୁ ନ ହୁଏ । କିନ୍ତୁ ଆମ କଥା ସରକାର ଶୁଣିଲେ ନାହିଁ । ଆଜି ବିଭିନ୍ନ ସଭ୍ୟଙ୍କଠାରୁ ଶୁଣିବାକୁ ମିଳୁଛି ସେ ଅଞ୍ଚଳରେ ଅନାହାର ମୃତ୍ୟୁ ବଢି ବଢି ଚାଲିଛି । ମୁଁ ଆଜି ସରକାରଙ୍କୁ ସାବଧାନ କରିଦେବାକୁ ଯାଉଛି 1942-43ରେ ଦୁର୍ଭିକ୍ଷକବଳିତ ଅଞ୍ଚଳ ବିଶେଷକରି ଆମ ଗଞ୍ଜାମ ଜିଲ୍ଲାରେ ଯେଉଁ ପରିସ୍ଥିତି ସୃଷ୍ଟି ହୋଇଥିଲା, ଯେଉଁ ଦୁର୍ଭିକ୍ଷ ହେଲା ସେଥିରେ ହଜାର ହଜାର ଲୋକ ମରିଗଲେ । ଆଜି ତା'ର ପଦଧ୍ୱନି ଶୁଣାଗଲାଣି । ଆଜି ଦେଖିବେ ପରିବାରର ଶେଷ ସମ୍ବଳ କଂସା, ବାସନ ତାହା ବିକ୍ରି ଚାଲିଛି । ସେଠାରେ ଯେଉଁ ପରିସ୍ଥିତି ଦେଖାଯାଉଛି ସେଠି ଦୁର୍ଭିକ୍ଷ ଆଶଙ୍କା କରାଯାଉଛି । ଏକଥା ସରକାରଙ୍କର ହୃଦ୍‌ବୋଧ ହୋଇଛି କି ନାହିଁ, ମନ୍ତ୍ରୀ ମହାଶୟଙ୍କର ହୃଦ୍‌ବୋଧ ହୋଇଛି କି ନାହିଁ ଆମେ ଜାଣିପାରୁନାହୁଁ । ସେ ଯେପରିଭାବରେ ଜବାବ ଦେଉଛନ୍ତି ସେଥିରୁ ଜଣାଯାଉଛି, ଯେପରି challenge ହେଉଛି ତାକୁ ସେ counter challenge କରୁଛନ୍ତି । ଏଇଟା ଅତ୍ୟନ୍ତ ଦୁଃଖଦାୟକ କଥା । ଏପରି counter challenge କରି ସେ କେବେଁ ଖସି ଯାଇପାରିବେ ନାହିଁ, ଜନତା ତା'ର ବିଚାର କରିବେ । ଆମେ ସାବଧାନ କରାଇ ଦେଉଛୁ ସେ ଯେପରିଭାବରେ ଲୋକଙ୍କ ପ୍ରତି ବ୍ୟବହାର କରୁଛନ୍ତି, ଲୋକଙ୍କର ଦୁଃଖ ଦୈନ୍ୟତାର ସୁବିଧା ନେଇ ଦଳୀୟ ଦୃଷ୍ଟିକୋଣରୁ ଯେଉଁ କାର୍ଯ୍ୟ କରୁଛନ୍ତି, ଏପରି ପରିସ୍ଥିତି ଉପୁଜିବ ଯେ ସେ କୌଣସି ସ୍ଥାନକୁ ଯାଇ ପାରିବେ ନାହିଁ । People's anger should have been diverted against you. କିନ୍ତୁ ସେତିକି ବୋଧ ଆମେ କରିପାରୁନାହୁଁ । ସେଥିପାଇଁ ଆପଣ କହୁଛନ୍ତି ଆପଣଙ୍କୁ ଜନତା ଦାୟୀ କରିବେ । ଯେଉଁ କାର୍ଯ୍ୟ ଆପଣମାନେ କରିଛନ୍ତି ସେଥିପାଇଁ ଇତିହାସରୁ କି ଜନତା ବିଚାରରୁ ଖସି ଯାଇପାରିବେ ନାହିଁ । ଯାହା କରିବା କଥା ଆପଣ ତାହା କରିନାହାନ୍ତି । ଟଙ୍କା ଦେବା ବିଷୟରେ ଅପେକ୍ଷା କର ବୋଲି କୁହାଗଲା । ଅର ଅର କରି 3/4 ଅର ଇସୁ କରାଗଲା । ଗୋଟିଏ ସାର୍କୁଲର ଆଜି ବାହାରିଛି ଓ 10 ଦିନପରେ ଆଉ ଗୋଟିଏ ସାର୍କୁଲର ବାହାରିଲା । ତାପରେ 15 ଦିନ ପରେ ପୂର୍ବ ସାର୍କୁଲରରେ ଥିବା ସର୍ତ୍ତକୁ ବଦଳି କରି ଆଉ ଗୋଟିଏ ସାର୍କୁଲର ବାହାରିଲା । ଏପରି ଭାବରେ ଯାହା ସାର୍କୁଲର ଇସୁ ହେଲା ତଦ୍ୱାରା ଲୋକଙ୍କର ଦୁଃଖଦୁର୍ଦ୍ଦଶା ସୀମା ରହିଲାନାହିଁ । ଯେଉଁ ଅଞ୍ଚଳରେ

ବାତ୍ୟା ବନ୍ୟା ପଡ଼ିଥିଲା ସେ ଅଞ୍ଚଳର ଲୋକଙ୍କର ଦୁଃଖଦୁର୍ଦ୍ଦଶା ଚରମ ସୀମାରେ ପହଞ୍ଚିଛି । ସରକାରୀ ସ୍ତରରେ ଓ ବେସରକାରୀ ସଂସ୍ଥା ଜରିଆରେ ଯେଉଁ ସାହାଯ୍ୟ ଲୋକଙ୍କୁ ଦିଆଗଲା ତାକୁ ରେସନାଲାଇଜ କରାଗଲା ନାହିଁ । ବିଭିନ୍ନ ଅଞ୍ଚଳରେ ବେସରକାରୀ ସାହାଯ୍ୟ ଓ ସରକାରୀ ସାହାଯ୍ୟ ସମାନଭାବରେ ବଣ୍ଟନ କରିବା ଲକ୍ଷ୍ୟ ସରକାରଙ୍କର ରହିଲାନାହିଁ । ସେଥିପାଇଁ କେତେକ ଜାଗାରେ ବହୁତ ସାହାଯ୍ୟ ଦିଆଗଲା କେବଳ ଅନ୍ୟ ଅଞ୍ଚଳରେ ଯଥା ଯୋଗ୍ୟ ସାହାଯ୍ୟ ପହଞ୍ଚିପାରିଲା ନାହିଁ । ନଳକୂପ କଥା ବିଚାର କରାଯାଉ । ଗୋଟିଏ ଜାଗାରେ ବହୁସଂଖ୍ୟକ ନଳକୂପ ଦିଆଯାଇଛି କିନ୍ତୁ ଯେଉଁଠି ଏହା ଦରକାର ହେଉଛି ସେଠି ହୋଇପାରୁନାହିଁ । ନିଜେ ମନ୍ତ୍ରୀ କହିଲେ ରାଜନଗର ଅଞ୍ଚଳରେ ଏହା ହେବ । ମୁଁ କହିଲି ସେଠି ହେବାପାଇଁ କିଏ ସ୍ଥିର କଲେ । ଯେଉଁଠି ଫ୍ଲୋ-ଇରିଗେସନ ନାହିଁ ଓ ଯେଉଁସବୁ ଅଞ୍ଚଳ ଆଫେକ୍ଟେଡ୍ ହୋଇଛି ସେସବୁ ଅଞ୍ଚଳରେ ଏହା ସବୁ ପ୍ରଥମେ ହେବା କଥା ଏସବୁ ଏପରି distribute ହେବା ଉଚିତ୍ ଯଦ୍ୱାରା affected ଜନସାଧାରଣ ଉପକୃତ ହେବେ । କିନ୍ତୁ ସେ ଦୃଷ୍ଟିଭଙ୍ଗୀ ରଖି ଏ ସରକାର କାମ କରୁନାହାନ୍ତି । ଗୋଟିଏ ଅଞ୍ଚଳର ଲୋକ ତାଙ୍କୁ ସାହାଯ୍ୟ କରିଥିଲେ ବୋଲି ସେ ଅଞ୍ଚଳରେ ଏହା ହେବ ବୋଲି କହିବା ଠିକ୍ ନୁହେଁ ।

## ସହରାଞ୍ଚଳ ସମ୍ପତ୍ତି ସର୍ବୋଚ୍ଚସୀମା ସଂକ୍ରାନ୍ତରେ ଆଲୋଚନା
( 26-9-1972 )

I beg to move the following Resolution, namely :—

"Whereas this Assembly considers that it is desirable to have a uniform law for fixation of ceiling on urban property and for all matters connected therewith.

And whereas fixation of ceiling on urban property is within the exclusive legislative competence of the State Legislature.

And whereas Parliament has no power to make laws for the States with respect to matters aforesaid except as provided in Articles 249 and 250 of the Constitution of India.

Now, therefore, in exercise of the powers conferred by clause (1) of Article 252 of the Constitution of India, this Assembly hereby resolves that the fixation of ceiling on urban property and all matters connected therewith or ancillary and incidental thereto should be regulated in the State of Orissa by Parliament by law."

ସଭାପତି ମହୋଦୟ, ଏହି ପ୍ରସ୍ତାବ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବ । ଆମ ଦେଶରେ ଭୂ-ସମ୍ପତ୍ତି ଓ ସହରାଞ୍ଚଳ ସମ୍ପତ୍ତିର ସୀମା ନିର୍ଣ୍ଣୟ ଏ ଦୁଇଟା ଅତି ଗୁରୁତ୍ୱପୂର୍ଣ୍ଣ ବିଷୟ । ଯେତେବେଳେ ସହରାଞ୍ଚଳ ସମ୍ପତ୍ତି ସୀମା ନିର୍ଦ୍ଧାରଣ କଥା ଉଠିଥିଲା, ସେତେବେଳେ କେନ୍ଦ୍ର ସରକାରଙ୍କ ପାଖକୁ ଗୋଟିଏ ଚିଠା ଆଇନ ଆସିଥିଲା । ସେଥିରେ ତତ୍କାଳୀନ ସରକାରଙ୍କ ମତାମତ ଲୋଡ଼ା ଯାଇଥିଲା । ପ୍ରଥମେ ଯେତେବେଳେ ସ୍ୱତନ୍ତ୍ର ଜନ କଂଗ୍ରେସ ମନ୍ତ୍ରୀମଣ୍ଡଳ ଥିଲା, ତା'ପରେ ଯେତେବେଳେ ଉତ୍କଳ କଂଗ୍ରେସ ଓ ସ୍ୱତନ୍ତ୍ର ଦଳ ମନ୍ତ୍ରୀମଣ୍ଡଳ ହୋଇଥିଲା ଏହି ଦୁଇଟି ମନ୍ତ୍ରୀମଣ୍ଡଳ ସମୟରେ ଦୁଇ ପ୍ରକାର ଜବାବ ଦିଆଯାଇଥିଲା । ପ୍ରଥମ ମନ୍ତ୍ରୀମଣ୍ଡଳ ସମୟରେ ପ୍ରଶ୍ନ ଉଠିଥିଲା କେନ୍ଦ୍ର ସରକାରଙ୍କୁ ଆଇନ କରିବାପାଇଁ ଅଧିକାର ଦେବା ନିମନ୍ତେ ରାଜ୍ୟସରକାର ଅନୁମତି ଦେବେ କି ? ତତ୍କାଳୀନ ମନ୍ତ୍ରୀମଣ୍ଡଳ ତାକୁ ମନା-କରିଦେଇ ଥିବେ । ସୀମା ସମ୍ପର୍କରେ କହିଥିଲେ ସେ ପ୍ରଶ୍ନ ଉଠୁନାହିଁ । ଇଷ୍ଟେଟ ଡିଉଟି ବସାଇବା ସମ୍ପର୍କରେ କେନ୍ଦ୍ର ସରକାର ଯେ ଚାହିଁଥିଲେ ତାକୁ ମନା କରିଦେଇଥିଲେ । ତା'ପରେ ଯେଉଁ ଉତ୍କଳ-ସ୍ୱତନ୍ତ୍ର ଦଳ ମନ୍ତ୍ରୀମଣ୍ଡଳ ହୋଇଥିଲା ସେତେବେଳେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଉତ୍ତର ଦେଇଥିଲେ ନୀତିଗତ ଭାବରେ ସହରାଞ୍ଚଳ ସମ୍ପତ୍ତିର ସୀମା ନିର୍ଣ୍ଣୟ କରିବା ସେ ସମର୍ଥନ କରୁଛନ୍ତି । ଏ ପ୍ରକାର ଜବାବ ସେ ଦେଇଥିଲେ । କିନ୍ତୁ ପାର୍ଲିଆମେଣ୍ଟ ଆଇନ କରିବେ କି ନାହିଁ ତା'ର ଉତ୍ତର ଦେଇ ନ ଥିଲେ । କେନ୍ଦ୍ର ସରକାର ଏଷ୍ଟେଟ ଡିଉଟି ଲେଭି କରିବେ କି ନା ତା'ର ମଧ୍ୟ ଉତ୍ତର ଦେଇ ନ ଥିଲେ । ତେଣୁ ଏ ଯେଉଁ ପ୍ରସ୍ତାବ ଆସିଛି ଏଥିରେ ସାରା ଦେଶପାଇଁ ସହରାଞ୍ଚଳ ସମ୍ପତ୍ତିର ସୀମା ନିର୍ଦ୍ଧାରଣ କରି ପାର୍ଲିଅମେଣ୍ଟକୁ ଆଇନ କରିବାକୁ ଅଧିକାର ଦିଆଯାଉଛି । ଏହାଫଳରେ ସାରା ଦେଶପାଇଁ ଗୋଟିଏ ପ୍ରକାର ଆଇନ ହେବ । ବିଭିନ୍ନ ରାଜ୍ୟରେ ବିଭିନ୍ନ ପ୍ରକାର ଆଇନ ହେଲେ ବଡ଼ ଅସୁବିଧା ହେବ । ଧରନ୍ତୁ ଦୁଇଟି ରାଜ୍ୟରେ ଜଣେ ଲୋକର ସହରାଞ୍ଚଳ ସମ୍ପତ୍ତି ଅଛି । ଗୋଟିଏ ରାଜ୍ୟ ଗୋଟିଏ ପ୍ରକାର ଆଇନ କରିବ । ଆଉ ଗୋଟିଏ ରାଜ୍ୟ ଆଉ ଗୋଟିଏ ପ୍ରକାର ଆଇନ କରିବ । ତେଣୁ ସମାନ ଭାବରେ ଏହା ହୋଇ ପାରିବ ନାହିଁ । ତେଣୁ ଏ ଅଧିକାର ପାର୍ଲିଅମେଣ୍ଟକୁ ଦିଆଯାଉଛି । ଏ ଅଧିକାର ସମ୍ପୂର୍ଣ୍ଣ ରାଜ୍ୟ ସରକାରଙ୍କର । ଏହି ଅସୁବିଧା

ଦୃଷ୍ଟିରୁ ଏ କ୍ଷମତା କେନ୍ଦ୍ର ସରକାରଙ୍କୁ ଦିଆଯାଉଛି । ତା ସଙ୍ଗେ ସଙ୍ଗେ ମୁଁ କହିଦେବାକୁ ଚାହୁଁଛି ଏ ସୀମା କେତେ ଟଙ୍କାରେ ରହିବ, 5 ଲକ୍ଷ ଟଙ୍କା ହେବ କି ତଦୂର୍ଦ୍ଧ୍ୱ ହେବ କେନ୍ଦ୍ର ସରକାର ଯାହା ସ୍ଥିର କରିବେ ଆମେ ତାହା ଗ୍ରହଣ କରିବା । ଏ ସମ୍ପର୍କରେ ଏଥିରେ କୌଣସି କଥା ନାହିଁ । ସମ୍ବିଧାନର 252 ଦଫା ଅନୁସାରେ ଏ କ୍ଷମତା ଆମେ କେନ୍ଦ୍ର ସରକାରଙ୍କୁ ଦେଉଛୁ । ଏତତ୍ ସମ୍ପର୍କୀୟ ଅନ୍ୟାନ୍ୟ ଯାହା କରିବା କଥା ତା ମଧ୍ୟ ଆମେ କେନ୍ଦ୍ର ସରକାରଙ୍କୁ କ୍ଷମତା ଦେଉଛୁ । ଏହି କ୍ଷମତା ପ୍ରକୃତରେ ରାଜ୍ୟ ସରକାରଙ୍କର । ତଥାପି ସାରା ଦେଶର ସୁବିଧା ଦୃଷ୍ଟିରୁ ଆମେ ଏ ଅଧିକାର କେନ୍ଦ୍ର ସରକାରଙ୍କୁ ଦେଉଛୁ । ସେହିପରି କୃଷି ଜମି ଉପରେ ଇଷ୍ଟେଟ ଡିଉଟି ବସାଇବାର କ୍ଷମତା ରାଜ୍ୟ ସରକାରଙ୍କର ସୁପରିଚାଳନା ଦୃଷ୍ଟିରୁ ତା ଆମେ ମଧ୍ୟ କେନ୍ଦ୍ର ସରକାରଙ୍କୁ ଦେଉଛୁ । ଏ ବିଷୟରେ ରାଜ୍ୟ ସରକାର ଆଇନ କଲେ ଅସୁବିଧା ଉପୁଜିବ । ତା ଦୂର କରିବାପାଇଁ ଆମେ ଏ କ୍ଷମତା କେନ୍ଦ୍ର ସରକାରଙ୍କୁ ଦେଉଛୁ । ମାଡ୍ରାସ, ଦିଲ୍ଲୀ, ବମ୍ବେ ପ୍ରଭୃତି ବଡ଼ ବଡ଼ ନଗରମାନଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । 10 ହଜାର ଜନସଂଖ୍ୟା ଥିବା ସହରଠାରୁ ଆରମ୍ଭ କରି ବଡ ବଡ ନଗର ପର୍ଯ୍ୟନ୍ତ ଏହାର ପରିସରଭୁକ୍ତ ହେବେ । ସେ ଅନୁସାରେ ଆଇନରେ କେନ୍ଦ୍ର ସରକାର ତାକୁ A. B. C. D. କରି classification କରିବେ ବା ଅନ୍ୟ କୌଣସି ବ୍ୟବସ୍ଥା କରିବେ ଯାହା ଫଳରେ ବମ୍ବେ, କଲିକତା, ଦିଲ୍ଲୀ ପ୍ରଭୃତି ବଡ ବଡ଼ ସହରର ଯାହାସବୁ price ଅଛି ସେ ଅନୁସାରେ ସେ ନିର୍ଣ୍ଣୟ କରାଯିବ । ତା'ଛଡା କଟକ, ଭୁବନେଶ୍ୱର, ପୁରୀ ଭଳି ସହରମାନଙ୍କ ପ୍ରତି ମଧ୍ୟ ଏହା ପ୍ରଯୁଜ୍ୟ କରାଯିବ । ବର୍ତ୍ତମାନ ସେ ସମ୍ପର୍କରେ ଚଟା ଆଇନ ଆମ ସମ୍ମୁଖରେ ନାହିଁ । ସେ ସମ୍ପର୍କରେ ଯେଉଁ ଚଟା ଆଇନ୍ ତିଆରି କରାଯିବ ସେଥିରେ ନିଶ୍ଚିତଭାବରେ ଏସବୁ ବିଷୟ ରହିବ ଏଥିରେ କୌଣସି ସନ୍ଦେହ କରିବାର କାରଣ ନାହିଁ । କେନ୍ଦ୍ର ସରକାର ଯାହା କରିବେ ସେ ସମ୍ପର୍କରେ ଆମର ମଧ୍ୟ ମତାମତ ଦେବାର ଅଧିକାର ଅଛି ଏବଂ ସେ ମତାମତ ଆମେ ନିଶ୍ଚିତଭାବରେ ଦେବୁ । ଏ ସମ୍ପର୍କରେ ଯେଉଁସବୁ ସନ୍ଦେହ ଉପୁଜୁଛି ସେ ସନ୍ଦେହ ଦୂର କରିବାପାଇଁ କେନ୍ଦ୍ର ସରକାର ଯେତେବେଳେ ଏ ସମ୍ପର୍କରେ ଆଇନ୍ ପ୍ରଣୟନ କରିବେ ଆମର ମତାମତ ଆମେ ଜଣାଇବୁ ।

ଯାହାର ଦୁଇଟି କିମ୍ବା ଦୁଇଟିରୁ ଅଧିକ ରାଜ୍ୟର ସହରାଞ୍ଚଳରେ ଘର ସମ୍ପତ୍ତି ଥିବ ତା'ପାଇଁ କ'ଣ କରାଯିବ ମୁଁ ତାର ସୂଚନା ଦେଉଛି । କେଉଁ ଲୋକର ଘର ସେପରି ଥିବ ତାଙ୍କୁ option ଦିଆଯିବ, କେଉଁ ରାଜ୍ୟରେ କେଉଁଠି ସେ ସମ୍ପତ୍ତି ରଖିବେ । ତାଙ୍କଠାରୁ ଶୁଣିବାପରେ ଯେଉଁଟା ସେ ରଖିବେ ତା'ଛଡ଼ା ଅନ୍ୟ ଉପରେ ନିକର ଧାର୍ଯ୍ୟ କରାଯିବ । ମାନେକର କଣକର ଘର ଏଠି ଅଛି ଏବଂ ତା'ର ଆଉ ଗୋଟିଏ ଘର ଇଚ୍ଛାପୂର୍ବକରେ ଅଛି

କମ୍ପା କାମଦେବପୁରରେ ରହୁଛି । ସେ ଘର ଉପରେ କାହାର ଅଧିକାର କରାଯିବ ବା ଟ୍ୟାକ୍ସ ଧାର୍ଯ୍ୟ କରାଯିବ ତାହା ଆଇନର ପରିସର ଭିତରେ ସହାନୁଭୂତିପୂର୍ଣ୍ଣ ଦୃଷ୍ଟିରୁ ତାହା କରାଯାଇପାରିବ ।

## ନିଶା ନିବାରଣ

ଆଜି ଅର୍ଥ ଓ ଅବକାଶ ବିଭାଗର ଖର୍ଚ୍ଚ ଦାବି ଉପରେ ବନ୍ଧୁ ମାନ୍ୟବର ସଭ୍ୟ ଭାଷଣ ଦେବା ସଙ୍ଗେ ସଙ୍ଗେ ପରାମର୍ଶ ଦେଇଛନ୍ତି ଏବଂ କେତେକ ସଭ୍ୟ ମଧ୍ୟ ଏହାର ସମାଲୋଚନା କରିଛନ୍ତି ମୁଁ ଏଥିପାଇଁ ପ୍ରଥମେ ସମସ୍ତଙ୍କୁ ଧନ୍ୟବାଦ ଦେଉଛି ।

ଏ ଆଲୋଚନା ଭିତରେ ପ୍ରଥମରେ ଦେଖାଯାଉଛି ଯେ, ଆମର ବନ୍ଧୁ ମାନ୍ୟବର ସଭ୍ୟ କେତେକ ବିଷୟ ଉପରେ ଏକ ପ୍ରକାର ମନ୍ତବ୍ୟ କରିଛନ୍ତି । ସେ ବିଷୟଗୁଡ଼ିକରୁ ଗୋଟିଏ ହେଲା ପେନ୍‌ସନ୍, ବହୁତ ସମାଲୋଚନା ହୋଇଛି । ସାର୍, ଆପଣ ଜାଣିଥିବେ ପେନ୍‌ସନ୍ ପେପର ପ୍ରସ୍ତୁତ ନ ହେଲେ ପେନ୍‌ସନ୍ ଦେବା ଅସୁବିଧା ହେଉଛି । ଅର୍ଥ ବିଭାଗରେ ପେନ୍‌ସନ୍ ପେପର ବହୁଦିନ ପଡ଼ିରହୁଛି । ଏହି ବିଭାଗକୁ ଆସିବା ପରେ ଯେଉଁ ତ୍ରୁଟି ଦେଖାଯାଉଛି ତାକୁ ସଂଶୋଧନ କରିବା ନିତାନ୍ତ ଆବଶ୍ୟକ ହେଉଛି । ମୁଁ କେତେକ ଦିନ ତଳେ ଘଟଣାରେ ନିଜେ ଜାଣିବାପାଇଁ ବୁଝିଲି କାହିଁକି ପେନ୍‌ସନ୍ ପେପର ଡେରି ହେଉଛି ଆପଣ ଆଶ୍ଚର୍ଯ୍ୟ ହେବେ ଜଣେ କର୍ମଚାରୀ ବିଭିନ୍ନ ଅଫିସରେ କାମ କରିଛି—ସର୍ଭିସ ରେଜିଷ୍ଟରରେ ଏଣ୍ଟ୍ରି ହେବାର କଥା, ସେ ଏଣ୍ଟ୍ରି ହୋଇନାହିଁ, ପ୍ରୋମୋସନ ପାଇଛି । ସେ କେତେବେଳେ ବଦଳି ହୋଇଛି । ଏ ସବୁ କିଛି ଏଣ୍ଟ୍ରି ହୋଇନାହିଁ ଏପରି ବହୁତ ତ୍ରୁଟି ରହୁଛି । ନିମ୍ନ ଅଫିସମାନଙ୍କରେ ତା' ଫଳରେ ପେନ୍‌ସନ୍ ପେପର ସମ୍ପୂର୍ଣ୍ଣ ହୋଇ ପାରୁନାହିଁ । କେବେ କେବେ ସର୍ଭିସ ରେଜିଷ୍ଟର ହଜିଯାଉଛି । ସେଥିପାଇଁ 4 ବର୍ଷ ତଳେ ଆମର ଗୋଟିଏ କଥା ସ୍ଥିର ହେଲା ଯେ 2ଟି ସର୍ଭିସ ରେଜିଷ୍ଟର ରହିବ । ଗୋଟିଏ କର୍ମଚାରୀଙ୍କ ପାଖରେ, ଆଉ ସେପରି ଗୋଟିଏ ଅଫିସରେ । ସେତେବେଳେ ଖୋଜା ଯାଉଛି ସର୍ଭିସ ବୁକ୍ ନାହିଁ, ପେନ୍‌ସନ୍ ତିଆରି ହୋଇ ପାରିବ ନାହିଁ । ସେ କ୍ଷେତ୍ରରେ ତା'ର ସୁବିଧାପାଇଁ ଦୁଇଟି ସର୍ଭିସ ରେଜିଷ୍ଟର ରହୁଛି । ଆଉ ଗୋଟିଏ ଅସୁବିଧା ହେଉଛି ଜଣେ ଚାକିରିରୁ ଅବସର ନେଲେ ଅନ୍ୟ ବିଭାଗକୁ ତାଙ୍କର କିଛି ଦେୟ ଅଛି କି ନାହିଁ ଜଣାଇବାପାଇଁ ବିଭିନ୍ନ ବିଭାଗକୁ ଚିଠି ଲେଖାଗଲେ ସେମାନେ ଉତ୍ତର ଦେବାରେ ବିଳମ୍ବ କରୁଛନ୍ତି, ତେଣୁ ଆମେ ସ୍ଥିର କରିଛୁ 6 ମାସ ଭିତରେ ଯଦି କୌଣସି ବିଭାଗ ଲିଖିତ ଭାବରେ ଉତ୍ତର ନ ଦିଅନ୍ତି ତେବେ ଧରି ନିଆଯିବ ଯେ ସେହି କର୍ମଚାରୀଙ୍କ ଉପରେ ସେ ବିଭାଗର କୌଣସି ଦେୟ

ନାହିଁ । ଏପରି ଅସୁବିଧା ଯେତେ ଦୂର କରିବା କଥା ତାହା ଦୂର କରିବାପାଇଁ ଉଦ୍ୟମ ହେଉଛି । ତଳ ସ୍ତରରେ ଅଫିସରମାନଙ୍କର ତ୍ରୁଟି ଯୋଗୁଁ ଯେଉଁଠି ପେନ୍‌ସନ୍ ପାଇବାରେ ଅସୁବିଧା ହେଉଛି, ସେଠି କଅଣ କରାଯିବ ଆମ ବିଭାଗ ବିଚାର କରୁଛୁ । ମୁଁ ଆଶା କରୁଛି ଆଉ ସେ ଅସୁବିଧା ହେବନାହିଁ । ଗଡଜାତ ମିଶ୍ରଣ ପରେ କେତେକ ଅସୁବିଧା ସୃଷ୍ଟି ହୋଇଛି । ଜମିଦାରୀ ଉଚ୍ଛେଦ ପରେ ତାଙ୍କର କେତେକ କର୍ମଚାରୀ ସରକାରକୁ ଆସିଗଲେ ତଦ୍ଦ୍ୱାରା ମଧ୍ୟ କେତେକ ଅସୁବିଧା ହେଉଅଛି । ବେତନ ହାର ସଂଶୋଧନ ଯେତେଥର ହୋଇଛି ସେ ପେନସନ୍‌ର ଅସୁବିଧା ହୋଇଛି । Ex-District Board କର୍ମଚାରୀମାନଙ୍କର ବହୁତ କିଛି ଅସୁବିଧା ହୋଇଛି । ଦୁର୍ଭାଗ୍ୟର କଥା ଆମେ ଜାଣିଛୁ ଯେ ଆମର କେତେକ ହାଇସ୍କୁଲ ଶିକ୍ଷକ ମରିଯାଇଛନ୍ତି ଅଥଚ ପେନ୍‌ସନ୍ କେସର ଫଇସଲ ହୋଇ ପାରିନାହିଁ । ଏପରି ପରିସ୍ଥିତି ଯେପରି ସୃଷ୍ଟି ନ ହୁଏ ଏବଂ ପେନ୍‌ସନ୍ ଯେପରି ଅଧିକ ସୁବିଧା ଓ ସହଜରେ ମିଳିପାରିବ ସେଥିପାଇଁ ଚେଷ୍ଟା କରାଯାଉଛି ।

ଦ୍ୱିତୀୟ କଥା ହେଲା ସ୍ୱାଧୀନ ସଂଗ୍ରାମୀଙ୍କ ପେନ୍‌ସନ୍ ସମ୍ପର୍କରେ କେତେକ ମାନ୍ୟବର ସଭ୍ୟ କହିଛନ୍ତି ଯେ ଦଳୀୟ ଦୃଷ୍ଟିକୋଣରୁ ଏସବୁ କରାଯାଉଛି । ଉପାଧ୍ୟକ୍ଷ ମହୋଦୟ, ସ୍ୱାଧୀନ ସଂଗ୍ରାମୀଙ୍କ ପେନ୍‌ସନ୍ ଠିକ କଲାବେଳେ କୌଣସି ଦଳଗତ ବିଚାର ନ ଥାଏ । ଯେଉଁଠାରେ କିଛି ଅସୁବିଧା ରହିଯାଉଛି ଧରନ୍ତୁ ଜଣେ ପାଇବାର ଯୋଗ୍ୟ ନୁହେଁ କୌଣସି କାରଣରୁ ସେ ପାଇଯାଇଛି, ପରେ ଜଣାପଡ଼ିଲେ ତାହା କାଟି ଦିଆଯାଉଛି । ସେହିଭଳି ଯେଉଁମାନେ ପେନ୍‌ସନ୍ ପାଉଥିଲେ ସେମାନଙ୍କ ପେନ୍‌ସନ୍ ବନ୍ଦ କରାଯାଇଛି । ନୟାଗଡ଼ କ୍ୟାମ୍ପ ଜେଲ ସମ୍ପର୍କରେ ଉଠାଇଥିଲେ ଯେ, ସମ୍ପୃକ୍ତ ବ୍ୟକ୍ତି ଯେଉଁ ସାର୍ଟିଫିକେଟ ଦେଇଥିଲେ ତାହା ଗ୍ରହଣଯୋଗ୍ୟ ନୁହେଁ । ଯେଉଁ ଅଫିସର ସାର୍ଟିଫିକେଟ୍ ଦେଇଥିଲେ ତାଙ୍କଠାରୁ ଆସିବା ନ ଥିଲା । ଯାହାହେଉ ସେ ପାଇଗଲେ । ଘଟଣା ଜଣାପଡ଼ିବାପରେ ତାଙ୍କ ପେନ୍‌ସନ୍ ବନ୍ଦ କରାଯାଇଛି । ଦୁର୍ଭାଗ୍ୟର କଥା ସେ ଲିଷ୍ଟ ଭିତରେ ଏଭଳି କେତେକ ଲୋକ ଅଛନ୍ତି, ଯେଉଁମାନେ ପାଇବାର ଯୋଗ୍ୟ । ଜେଲ ସର୍ଟିଫିକେଟ୍ ଅଛି । ମୋର ବିଶ୍ୱାସ ସରକାରଙ୍କ ସେ କାଗଜ ଦିବାପରେ ସେମାନେ ପାଇପାରିବେ କିନ୍ତୁ ଯେଉଁମାନେ କୌଣସି ଜେଲ ଭୋଗି ନାହାନ୍ତି ସେମାନେ ପାଇବେ ନାହିଁ । ଆମେ ପୁଣି ଥରେ ତଦନ୍ତ କରୁଛୁ । ରିପୋର୍ଟ ଆସିବା ପରେ ଯଦି କୌଣସି କ୍ୟାମ୍ପ ଜେଲ୍‌ରେ 6 ମାସ ଥିଲେ ବୋଲି ଜଣାଯିବ ତା'ହେଲେ ସେମାନେ

ପାଇବେ । ଏକ୍ସ. ଆଇ. ଏନ୍. ଏ ଲୋକଙ୍କର ପେନ୍‌ସନ ପ୍ରସଙ୍ଗରେ ମୁଁ ସେ ଦିନ କହିଥିଲି ଯେ ଆମର ପ୍ରାପ୍ତ 351 ଦରଖାସ୍ତ ଭିତରୁ ସରକାର 200 ଉପରେ ବାଛିବ ଜଣ ପେନ୍‌ସନ ଦେଇଥିଲେ କିନ୍ତୁ କମିଟିର କାର୍ଯ୍ୟକାଳ ପୂରିଯିବାରୁ ଅଛି 97 ଜଣଙ୍କର ଦରଖାସ୍ତ ବିଚାର ହୋଇପାରିନାହିଁ । ପୁଣି ଗଠିହେବ ନୂଆ କମିଟି ଏଣ ସେଗୁଡ଼ିକ ବିଚାର କରିବ । ଏ ମଧ୍ୟରେ ଭାରତ ସରକାର ଜଣାଇ ଦେଲେ ଯେ ଆଇ. ଏନ୍. ଏ. ଲୋକ କେନ୍ଦ୍ର ସରକାରଙ୍କଠାରୁ ପେନସନ ପାଇବେ । ବର୍ତ୍ତମାନ ସୁଦ୍ଧା ଆମ ରାଜ୍ୟର 4 ଜଣ ଏହି ପେନ୍‌ସନ ପାଉଛନ୍ତି । ଏମାନଙ୍କ ମଧ୍ୟ ବୁଝାଯାଉଛି 6 ମାସ ଜେଲ୍ ଦଣ୍ଡର ସାର୍ଟିଫିକେଟ୍ ଦେବାକୁ ହେବ । ଯଦି କୌଣସି ଜେଲ୍ କର୍ତ୍ତୃପକ୍ଷଙ୍କଠାରୁ ପାଇ ନ ପାରିବେ ତା'ହେଲେ Court Prison Certificate ଦେଲେ ମଧ୍ୟ ତାହା ଗୃହୀତ ହେବ । ଏ ସମ୍ପର୍କରେ ମୁଁ କମିଟିର Chairman Mr. Sahanawaz Khan ମହୋଦୟଙ୍କୁ ଲେଖିଥିଲି ଯେ ଶୀଘ୍ର କେନ୍ଦ୍ରକୁ ପଠାଇ ଦେବାପାଇଁ । ସେଥିପ୍ରତି ଦୃଷ୍ଟି ଦିଆଯାଉଛି । ବାକି ଯେଉଁ 97 ଜଣ ରହିଯାଇଛନ୍ତି ନୂଆ କମିଟି ହେଲେ ସେମାନଙ୍କ କଥା ବିଚାର କରିବେ । ନିଶା ନିବାରଣ ସମ୍ପର୍କରେ ଉଭୟ ପକ୍ଷରୁ ଯେପରି ମତ ପ୍ରକାଶ ପାଉଛି ତାହା ଆନନ୍ଦର କଥା, କେବଳ ଜଣେ ସଭ୍ୟ କହିଲେ ଏହା ସହଜ କଥା ନୁହେଁ । ଏଥିରେ ବହୁତ ଅସୁବିଧା ଅଛି । ଯେଉଁମାନେ ଫିଲାଟ୍ ସହିତ କହିଛନ୍ତି ଯେ, ଏହା ରହିବାଦ୍ୱାରା ଆଦିବାସୀ ଓ ଅନ୍ୟାନ୍ୟ ଗରିବ ଲୋକଙ୍କର ଆର୍ଥିକ ପରିସ୍ଥିତି ଖରାପ ହୋଇ ପଡୁଛି ସେମାନଙ୍କୁ ମୁଁ ଧନ୍ୟବାଦ ଦେଉଛି । ଆଉ ଜଣେ ସଭ୍ୟ କଂଗ୍ରେସର ପକ୍ଷ ରାଜକାଳୀନ କ'ଣ ହୋଇଥିଲା ଦର୍ଶାଇ ଦେଇଛନ୍ତି । ସଭ୍ୟମାନେ ଜାଣନ୍ତି ଏ ରାଜ୍ୟର ଆଂଶିକ ଭାବରେ ମାତ୍ର 5 ଟି ଜିଲ୍ଲାରେ ନିଶା ନିବାରଣ ହୋଇଥିଲା । 1968 ମସିହାରେ ସ୍ୱତନ୍ତ୍ର-ଜନକଂଗ୍ରେସ ସରକାର ତାକୁ ଉଠାଇଦେଇ Outstill liquor ବିକ୍ରୀ କରିବାପାଇଁ ବ୍ୟବସ୍ଥା କଲେ । Outstill ରେ ବହୁତ ଅସୁବିଧା ଅଛି । ସେଥିରେ କେତେକ ଜିନିଷ ମିଶାଇ ଦେଉଛନ୍ତି, ଯାହାକୁ ଖାଇଲେ ସ୍ୱାସ୍ଥ୍ୟ ପକ୍ଷରେ କ୍ଷତିକାରକ ହେଉଛି । ତାହା କଡ଼ାକଡ଼ି ଭାବରେ ଅନୁସନ୍ଧାନ ହେବାର କଥା । ଯେଉଁ Outstill ରେ ଚମ୍ପକ ମଦ ହେବ ବୋଲି ଆମୋନିଅମ ସଲ୍‌ଫେଟ୍ ପକାନ୍ତି, ତାକୁ ଖାଇବାଦ୍ୱାରା ଅଦ୍ଭୁତ ଖରାପ ହେଉଛି । ଏହି ପ୍ରସଙ୍ଗରେ ପରିଜା କମିଟି ରିପୋର୍ଟ ବାହାରିଛି । ମହାରାଷ୍ଟ୍ରରେ ନିଶା ନିବାରଣ ହୋଇଥିଲା । ମାନ୍ଦ୍ରାଜରେ ପ୍ରଥମେ ରାଜାଜୀ ସାଲେମ ଜିଲ୍ଲାରେ ଏହା ଆରମ୍ଭ କରିଥିଲେ କିନ୍ତୁ ମହାରାଷ୍ଟ୍ରରେ

ଏବଂ Boot liquor ବାହାରିଲା ଯାହା ଫଳରେ ସାମାଜିକ ଜୀବନ କଳୁଷିତ ଓ କଳଙ୍କିତ ହୋଇଗଲା । ସେମାନେ ଏହାକୁ ହଟାଇ ଦେବାପାଇଁ ବାଧ୍ୟ ହେଲେ । ପ୍ରଥମେ ସେମାନେ ଏହିଭଳି ଆଇନ କରିଥିଲେ ଯେ ମଦିଖିଆ ଲୋକର ମୁହଁରୁ ଗନ୍ଧ ପାଇଲେ ତାକୁ ଗିରଫ କରୁଥିଲେ । ଏହିଭଳି ଦଣ୍ଡବିଧାନ କରିବା ତାଙ୍କର ଅଧିକାର ଥିଲା । ଗୁଜରାଟରେ ଯେପରି ଭାବରେ ସ୍କିମ୍ ପୁଣି ବର୍ତ୍ତମାନ କହିବାପାଇଁ ଯାଉ ନାହିଁ ଏବଂ ତାମିଲନାଡୁରେ କାହିଁକି ଏ ବର୍ଷ ନିଶା ନିବାରଣ ହେଲା ତା'ର କାରଣ ଏଠାରେ ପ୍ରକାଶ କରିବାକୁ ଯାଉନାହିଁ । କେବଳ ଦେଖିବାକୁ ରହିଲା ଏହି ନିଶା ନିବାରଣ କେତେଦୂର କୃତକାର୍ଯ୍ୟ ହେଉଛି । ମୁଁ କହୁଥିଲି ଆମ ଅବକାରୀ ବଜେଟର ଶ୍ୱେତପତ୍ରରେ କୁହାଯାଉଛି ଯେ ଓଡ଼ିଶା କମିଟି Dr. Parija ଙ୍କ ଅଧ୍ୟକ୍ଷତାରେ ବସି ଯେଉଁ ରିପୋର୍ଟ ଦେଇଥିଲେ, ସେଥିରେ ସେ ସୁପାରିଶ କରିଛନ୍ତି, "Unless prohibition is enforced sincerely and rigidly throughout India it will do more harm than good as has been the case with the present scheme." ଓଡ଼ିଶାର ଯେଉଁସବୁ ଜିଲ୍ଲାରେ ଆଂଶିକ ନିଶା ନିବାରଣ ହୋଇଥିଲା କମିଟିର ସଭ୍ୟମାନେ ସେହି ଜିଲ୍ଲାମାନଙ୍କୁ ଯାଇ ଯେଉଁ ରିପୋର୍ଟ ଦେଇଛନ୍ତି ତା'ର ଗୋଟିଏ ଅଂଶ ପଢ଼ିଲି । ଯେଉଁଠି ସେମାନେ କହିଛନ୍ତି ସାରା ଭାରତବର୍ଷରେ ନିଶା ନିବାରଣ ନ ହେଲେ ଗୋଟିଏ ରାଜ୍ୟରେ ଏହା କାର୍ଯ୍ୟକାରୀ ହେବା ସୁବିଧାଜନକ ନୁହେଁ । ସେ କହିଛନ୍ତି "The Excise revenue is still a big source but with the introduction of prohibition throughout the State, the source willdry up and there may be more expense on the enforcement side because in place of the work now done by the Excise staff various new types of work will have to be performed, which will require financial assistance from Government." କେନ୍ଦ୍ରୀୟ କମିଟି ଓ ଅନ୍ୟାନ୍ୟ କମିଟିମାନେ ସୁପାରିଶ ଦର୍ଶାଇଛନ୍ତି ନୈତିକତା ଦୃଷ୍ଟିରୁ ନିଶା ନିବାରଣ ଜାରି କରିବା ଠିକ୍ ହେବ । ମୁଁ ଆପଣମାନଙ୍କ ସହିତ ଏକ ମତ । କିନ୍ତୁ ଏହାର ପ୍ରାକ୍ଟିକାଲ ସାଇଡ଼ ଦେଖିବାକୁ ହେବ । ଆମେ ଗୋଟିଏ କାର୍ଯ୍ୟ କରିବା ଯେଉଁଟା ଅନ୍ୟାନ୍ୟ ରାଜ୍ୟମାନେ ପରୀକ୍ଷାମୂଳକଭାବରେ କାର୍ଯ୍ୟକାରୀ କରି କୃତକାର୍ଯ୍ୟ ହୋଇ ନାହାନ୍ତି । ଆମେ ତାକୁ ନେଇ ଆରମ୍ଭ କଲେ ମୁଁ ଭାବୁଛି ଆମର ଯାହା ରାଜସ୍ୱ କ୍ଷତି ହେବ that is not a big

point ଅନେମ ଏଥିରୁ 5 କୋଟି ଟଙ୍କା ଆଦାୟ କରୁଛୁ । ଜଣେ ସଭ୍ୟ କହୁଛନ୍ତି ସେଥିରୁ କାହୁଁ ଟଙ୍କା କର୍ମଚାରୀଙ୍କ ପିଛା ଖର୍ଚ୍ଚ ହେଉଛି । ତାହା ଯାଇ ବାକୀ ଯେଉଁଟା ରହୁଛି ସେଇଟା କିଛି ବଡ଼ ନୁହେଁ । କିଣେ କେହି ସଭ୍ୟ ଆମକୁ ଯେପରି ଆକ୍ରମଣ କରିଛନ୍ତି ସେଥିରୁ ଜଣାଯାଉଛି ଯେ ଅନେମ ଆସିଲା ପରେ Outstill liquor ସବୁ ଆରମ୍ଭ ହେଲା । କେନ୍ଦ୍ର ପାର୍ଲିଆମେଣ୍ଟାରୀ କମିଟିର ସବ୍ କମିଟିର ସୁପାରିଶ ଅନୁସାରେ ଆମର ଆଦିବାସୀ ବହୁଳ ଅଞ୍ଚଳକୁ ଚଳିତ ବର୍ଷ ଅନେମ 78ଟି ଦୋକାନ ଉଠାଇ ଦେଇଛୁ ଏବଂ ଅନ୍ୟା ବର୍ଷ 40 ଟି ଉଠାଇବାପାଇଁ ସ୍ଥିର କରିଛୁ । ତାହା 4ଟି ଜିଲ୍ଲାରେ କାର୍ଯ୍ୟକାରୀ ହେବ । ଏହି ବର୍ଷ ମୁଁ ଗୋଟିଏ ପ୍ରସ୍ତାବ କରୁଛି, High Power Committee ଜାଣିବା ଦରକାର ଯେଉଁ ଯେଉଁ ଅଞ୍ଚଳରେ ମଦ ଉଠାଇ ଦିଆଯାଇଛି ତାହା ଉଠିଗଲା ପରେ ତା'ର impact କ'ଣ ହୋଇଛି । ଅନେମ ଦେଖିଛୁ ଯେଉଁ ପରିମାଣରେ ଲୋକେ ମଦ ବ୍ୟବହାର କରୁଥିଲେ ତାହା ଊଣା ହୋଇନାହିଁ । ଉଦାହରଣ ସ୍ୱରୂପ 1968ରେ କେତେବେଳେ ସରକାର prohidition ଉଠାଇ ଦେଲେ ବହୁତ ଟଙ୍କା ଆଦାୟ କଲେ ସେତେବେଳେ ଆମମାନଙ୍କ କଡ଼ା ସମାଲୋଚନା ହୋଇଥିଲା । ଅନେମ ଲକ୍ଷ୍ୟ କରୁଛୁ ଏହାଦ୍ୱାରା ଆଦିବାସୀମାନଙ୍କର Economic condition ruined ହୋଇ ଯାଉଛି । ମୁଁ ବି ନିଜେ ଅନୁଭବ କରୁଛି compact area ରେ ଉଠାଇଦେଲେ ତାହା ସଫଳ ହେବ । ଶରତ ଚନ୍ଦ୍ର ବଦ୍ୟାପୀଠ ପାଖରେ ଯେଉଁ ମଦଭାଟି ଅଛି, ତାକୁ ଉଠାଇବାପାଇଁ 1-4-1975ରୁ ଆଦେଶ ହୋଇଛି । ମାନ୍ୟବର ସଭ୍ୟମାନଙ୍କର ଅବଗତି ନିମନ୍ତେ ମୁଁ କହିଦେବାକୁ ଚାହେଁ ସରକାର ମଂଜୁରୀ ଦେଇନ୍ତି କିନ୍ତୁ କଲେକ୍ଟର ଲାଇସେନ୍ସ ଦିଅନ୍ତି । Excise Commissioner ଅନୁମୋଦନ କରନ୍ତି । ତେଣୁ ଖାଲି ଫାଇଲ ଅନୁମୋଦନପାଇଁ ସରକାରଙ୍କ ପାଖକୁ ଆସେ । ଯେହେତୁ ଏଠି ନୂଆକରି ଖୋଲାଗଲା ସେଥିପାଇଁ ସରକାରଙ୍କ ପାଖକୁ ଆସିଥିଲା । ତେବେ ମୁଁ ମାନ୍ୟବର ସଭ୍ୟଙ୍କୁ କହିଦେବାକୁ ଚାହେଁ 1975-76 ଅସିଯାଉଛି but I cannot assure the hon'ble member. ତାପରେ Sale Tax ସମ୍ବନ୍ଧରେ ମାନ୍ୟବର ସଭ୍ୟ ରାମପ୍ରସାଦ ମିଶ୍ର କହିଛନ୍ତି । ସେ ଏକ ନୀତିଗତ ପ୍ରଶ୍ନ ଉଠାଇଛନ୍ତି । ସେ କହୁଛନ୍ତି ଯେହେତୁ ଆମ ରାଜ୍ୟର ଏରିଆ କମ୍ । ଜନସଂଖ୍ୟା ହ୍ରାସ ହିସାବ ନ ଦେଇ ଆମର *per capita* income ମାନଦଣ୍ଡ ହେବା ଉଚିତ୍ । ମୁଁ ମାନ୍ୟବର ସଭ୍ୟଙ୍କ ଅବଗତି ନିମନ୍ତେ ଜଣାଇଦେବାକୁ ଚାହେଁ

financeର plan ସହିତ କୌଣସି ସମ୍ପର୍କ ନାହିଁ । Planning Commission ଭଣାଶ ଦେଖନ୍ତି କପର ପ୍ଲାନରେ ଅଧିକ ଟଙ୍କା ଆସିବ । ଏଥିରେ 2ଟି କଥା ଅଛି । ଗୋଟିଏ ହେଉଛି plan side, ଆଉ ଗୋଟିଏ ହେଉଛି non-plan side. National Development Councilରେ ସବୁ ରାଜ୍ୟର ମୁଖ୍ୟମନ୍ତ୍ରୀ ସଭ୍ୟ ଅଛନ୍ତି । N. D. C. ମିଟିଙ୍ଗରେ plan side କଥା ବିଚାର ହୁଏ । କାହାକୁ ଭିତ୍ତି କରି ଟଙ୍କା ଦିଆଯିବ, ସେଠି ଏହା ସ୍ଥିର ହୁଏ । N. D. C.ରେ ଯେଉଁ ନୀତି ଅବଲମ୍ବନ କଲେ ଆମେ ଅଧିକା ପାଇବୁ ଆମେ ବରାବର ସେହି ନୀତି ଅବଲମ୍ବନ କରି ଦାବି କରିଆସୁଛୁ । ଆମେ ତାକୁ ପର୍ଯ୍ୟ କରୁଛୁ ଏବଂ ନିଶ୍ଚିତ ଭାବରେ ଭବିଷ୍ୟତରେ ପାଇବୁ ଏଥିରେ ସନ୍ଦେହ ନାହିଁ । Financially Institutionରୁ extra Budgetary Finance ଆଣିବା କଥା କୁହାଯାଉଛି ସେଥି ଗତ ବର୍ଷ ଏହା ଥିଲା 50 ଲକ୍ଷ, ଏ ବର୍ଷ 20 କୋଟି ଅର୍ଥ ଉଠାଇବେ ଏ ଗୋଟିଏ ଅସମ୍ଭବ କଥା । ଆମେ ସେ ଦିଗରେ ଯେତିକି ଉଦ୍ୟମ କରୁଛୁ ପଞ୍ଚବାର୍ଷିକ ଯୋଜନାରେ ତା'ଠାରୁ ଅଧିକ ଉଦ୍ୟମ କରି non-Budgetary Finance from Financially Institution ପାଇବା ଦିଗରେ ନିଶ୍ଚିତ ଭାବରେ ବ୍ୟବସ୍ଥା କରୁଛୁ ଏବଂ ବଡ଼ ବଡ଼ କର୍ପୋରେସନ୍‌ମାନଙ୍କର ଯେଉଁ ଆବଶ୍ୟକତା ଅଛି ତାହା ପୂରଣ ଲାଗି ଏ ଦିଗରେ ଯଥାଶକ୍ତି ଉଦ୍ୟମ ହେବ । କାରଣ ଆମେ ଜାଣୁ କେନ୍ଦ୍ର ସରକାର ଏ ଦିଗରେ ଆମକୁ ସାହାଯ୍ୟ ଦେଇ ପାରିବେ ନାହିଁ । ଆମ ନିଜ Financeରୁ ମଧ୍ୟ ଆମେ ସାହାଯ୍ୟ ପାଇ ପାରିବୁ ନାହିଁ । So the only way is to get finance from the Financially Institution. ଏ ଦିଗରେ କ'ଣ କରାଯିବ ମୁଁ କିଛି ଦିନ ତଳେ ଚିନ୍ତାରେ ପଡ଼ିଯାଇଥିଲି । Financially institutionମାନେ ଯଥେଷ୍ଟ finance ଦେଉ ନାହାନ୍ତି । ଆମର Small Industrialistମାନେ, ଯେଉଁମାନେ Bankରୁ finance ଆଣିବାକୁ ଯାଉଛନ୍ତି ସେମାନେ ଅଭିଯୋଗ କରୁଛନ୍ତି ବ୍ୟାଙ୍କ ବହୁତ ଦିନ ପର୍ଯ୍ୟନ୍ତ ଦଉଡ଼ାଉଛନ୍ତି । ପରିଶେଷରେ ସେମାନେ ଆବଶ୍ୟକମତେ ଟଙ୍କା ପାଉ ନାହାନ୍ତି । ଏ ସବୁ ଦୂର କରିବା ପାଇଁ ବଡ଼ ବଡ଼ Financially Institutionର Directorମାନଙ୍କୁ ଡାକି ତାଙ୍କ ସହିତ କଥାବାର୍ତ୍ତା କରି ଯେପରି ଏ ଦିଗରେ ଆମର Industrialistମାନେ ତଥା କର୍ପୋରେସନ୍ ଓ ଅନ୍ୟ ସରକାରୀ ସଂସ୍ଥାମାନେ ସୁବିଧାରେ ପାଇବେ, ନିଶ୍ଚିତ ଭାବରେ ସେ ଦିଗରେ ଆଲୋଚନା କରାଯାଉଛି ।

Multi point sales tax ଓ single point sales tax କଥା ମାନ୍ୟବର ସଭ୍ୟ କହିଛନ୍ତି, ଏ ଦିଗରେ ସେ ଚିନ୍ତା ମଧ୍ୟ କରିଛନ୍ତି । ଆମର 9ଟି ରାଜ୍ୟରେ single-

point tax ଅଛି, ଯେ ଅବଶ୍ୟ ସେଥିପାଇଁ ସ୍ୱତ୍ୱ କୋର୍ଟ ସେଠାରେ multipoint tax ଅଛି, କିନ୍ତୁ ଆସାମ, ହରିଆନା, ପଶ୍ଚିମବଙ୍ଗ, ମଧ୍ୟପ୍ରଦେଶ, ପଞ୍ଜାବ, ରାଜସ୍ଥାନ, ଜାମ୍ମୁ ଓ କାଶ୍ମୀର ପ୍ରଭୃତି ୨ଟି ରାଜ୍ୟରେ single point tax ଅଛି । ଆନ୍ଧ୍ରପ୍ରଦେଶ, ସେଠିଠି multi point tax ଥିଲା, ବର୍ତ୍ତମାନ ସେମାନେ progressively changing over from multi point to single point. Multi point tax କେରଳ, ମହୀଶୂର ଏବଂ ତାମିଲନାଡୁରେ ଅଛି । ମହାରାଷ୍ଟ୍ର ଏବଂ ଗୁଜରାଟରେ double-point tax ଅଛି । Conditions vary from state to state. ମାନ୍ୟବର ସଭ୍ୟ ଜାଣିଛନ୍ତି ଆମର manufacturing goods ବହୁତ କମ । ମାନ୍ୟବର ସଭ୍ୟମାନେ ଜାଣନ୍ତି sales tax ଅଦାୟ କରିବାର 3ଟି stage ଅଛି । ଗୋଟିଏ ହେଉଛି manufacture ଆଉ ଗୋଟିଏ wholesaler ଏବଂ ତୃତୀୟଟି retailer. Manufacturerମାନେ sales taxର ଗୋଟିଏ point ହେବେ । କିନ୍ତୁ ଆମେ ରାଜ୍ୟରେ manufacturing goodsକମ ଥିବା ହେତୁ ଆମେ କେବଳ wholesaler ଓ retailer ଏହି ଦୁଇଟି pointକୁ ନେଉଛୁ । West Bengal ରେ multipoint sales tax ଥିଲା, ସେମାନେ ଏହା ଜାଣିବା ପରେ ତାକୁ single point କରୁଛନ୍ତି;ତାହିଁକି ନା ଯେଉଁଠି manufacture ହେଉଛି ସେଠାରେ ଗୋଟିଏ pointରେ ସେମାନେ ନେଇଗଲେ tax evasionର କୌଣସି ପ୍ରଶ୍ନ ନାହିଁ । Retail levelରେ କଲେକ୍ସନକୁ ବି ସମାଲୋଚନା ହେଉଛି । ଆପଣ ଜାଣିଥିବେ ବହୁତ Business Firm ସେମାନେ Progressive Registration କରନ୍ତି । ସେ କ୍ଷେତ୍ରରେ ଆମର ବହୁତ ଟଙ୍କା loss ହେଉଛି । ଆମର ଅନ୍ୟାନ୍ୟ ଯେଉଁସବୁ ତ୍ରୁଟି ଯାହା ମାନ୍ୟବର ସଭ୍ୟମାନେ ଦେଖାଇଛନ୍ତି ସେସବୁ ଦୂର କରିବା ପାଇଁ ଆଗେ ଏହି ଅଧିବେଶନରେ ପ୍ରଚଳିତ sales tax ଆଇନରେ କିଛି ପରିବର୍ତ୍ତନ କରିବାକୁ ଯାଉଛୁ । ଯେଉଁସବୁ amendment ଆସିବ ସେ amendment ସବୁ ଆମେ ଗ୍ରହଣ କରିଗଲେ ଅନେକ ଅସୁବିଧା ଦୂର ହେବ । ଉଦାହରଣ ସ୍ୱରୂପ, ଆମେ ଜଣକୁ ଧରିଛୁ, ତାକୁ ଦଣ୍ଡ ଦେଇ ପାରିଲୁ ନାହିଁ କିମ୍ବା income-taxରେ ଯେପରି ବ୍ୟବସ୍ଥା ଅଛି ଯେ ସେମାନେ ତାଙ୍କ property attach କରିବେ ଏବଂ ଯାହା realise ହେବାର କଥା ତାହା ସେଠାରେ ସେ କରିଦେବେ । ସେହିପରି sales tax ଆଇନରେ ଆମେ ବି କେତେକ ବ୍ୟବସ୍ଥା ରଖିଛୁଁ ଯେଉଁଥିରେ କି ଆମେ ତା'ଠାରୁ କିଛି ନା କିଛି ପାଇପାରିବୁ । ସେମିତି ବର୍ତ୍ତମାନ ସାର୍ଟିଫିକେଟ ପାଓ୍ୱାର ଆମର ନାହିଁ । ଆମେ ସାର୍ଟିଫିକେଟ କୋର୍ଟକୁ ଦେଉଛୁଁ ଏବଂ Public Demand Recovery Act ଅନୁସାରେ ତାହା ଆଦାୟ କରିବା କଥା ସେମାନେ କରନ୍ତି ଏବଂ ମାନ୍ୟବର

ସଭ୍ୟମାନେ ଜାଣିଥିବେ ତ୍ରେଭର୍ଣ୍ଣ 4 ପରସେଣ୍ଟ ରିକଭରି ହୁଏ । ସେ ଅଧିକାର ଆମ ଡିପାର୍ଟମେଣ୍ଟ ଲୋକଙ୍କ ପାଖରେ ରହିଲେ ଆମେ ଟଙ୍କା ଅଦାୟ କରିପାରିବୁ । ଆମେ ସେ ଆଇନରେ ଯେଉଁ ପରିବର୍ତ୍ତନ ଆଣିବାକୁ ଯାଉଛୁ ସେଥିରେ ସେ ବ୍ୟବସ୍ଥା ଅଛି ।

M.M.T.C. ଉପରେ ମଧ୍ୟ ଟ୍ୟାକସ ଲାଗୁ ହୁଏ । ସେ ସମ୍ପର୍କରେ ଆମେ High-Courtରେ ଯେଉଁ 2ଟି କେସ୍ କରିଛୁ High Court କେତିକ caseରେ ଏବଂ Supreme Court ଅନ୍ୟ କେତିକ caseରେ ମତ ଦେଇଥିଲେ ମଧ୍ୟ ସେମାନେ ଟ୍ୟାକ୍ସ ଦେବାକୁ ବାଧ୍ୟ । ତଥାପି ସେମାନେ ପୁଣି courtକୁ ଯାଇଛନ୍ତି । ମୋର ବିଶ୍ୱାସ court judgementପରେ ସେ ଆମକୁ ଯାହା ଦେବାର କଥା ଦେବେ । M.M.T.C. ଯେତେ ଯାହା export କରୁଛନ୍ତି ତା ଉପରେ regularly sales tax ଧାର୍ଯ୍ୟ ହୁଏ ଏବଂ ତାହା ଗଡ଼ ଗଡ଼ ଆସୁଛି । କାରଣ କୋର୍ଟରେ ତାକୁ ଅଟକାଇଛନ୍ତି । ମୋର ବିଶ୍ୱାସ M.M.T.C. ଏଥିରୁ ଖସି ପାରିବ ନାହିଁ । କୁହାଯାଉଛି ଯେ କାଚ ଚୁଡ଼ି (bangles) ଉପରେ sales tax ଅଛି । କୁହାଯାଇଛି 5ଟି ରାଜ୍ୟରେ ନାହିଁ । କିନ୍ତୁ ଅନ୍ୟାନ୍ୟ ରାଜ୍ୟରେ ଅଛି, ଆମର ବି ଅଛି । ସେ କ’ଣ କହୁଛି glassware ଉପରେ କାଚ ନିର୍ମିତ ପଦାର୍ଥ ଉପରେ 8 ପରସେଣ୍ଟ Sale Tax ଅଦାୟ କରାଯାଉଛି । ତା’ଭିତରେ ଚୁଡ଼ି ଆସିଯାଉଛି । ସେ କଥା ଆମେ ବିଚାର କରି ଦେଖିବୁ ।

ସେହିପରି edible oils ସମ୍ପର୍କରେ ମଧ୍ୟ ଉତ୍ତାଅଧିକ ରହିଯାଇଛି । ବାଦାମ ତେଲ, ରାଶି ତେଲ ଓ ସୋରିଷ ତେଲ ଏହା ଭିତରେ Sale Taxର ଫରକ ଅଛି । ତାକୁ ଆମେ ଦୂର କରିବାକୁ ଚାହୁଁଛୁ । ଯାହା ଫରକ ଅଛି ତାକୁ କିପରି ଦୂର କରାଯାଇପାରିବ, nationalise କରାଯିବ, କି ସମରୂପ କରାଯିବ ତାହା ବିଷୟ ପରୀକ୍ଷା କରୁଛନ୍ତି । ଯାହା ଅସୁବିଧା ଅଛି ତାହା ନିକଟରେ ଦୂର ହୋଇଯିବ ।

ଜଗତସିଂହପୁର ନଗରର ମାନ୍ୟବର ସଭ୍ୟ ସେ ଅଞ୍ଚଳ ମଧ୍ୟ ନେଇ ପ୍ରଶ୍ନ କରିଛନ୍ତି । ସେ ସମ୍ପର୍କରେ ମୁଁ ଅଧିକ ସମୟ ନେବି ନାହିଁ । କାରଣ ସେ ତାଙ୍କ ଭାଷଣରେ କହିଥିଲେ ବହୁତ ସମୟ ନେବେ ନାହିଁ । ଧନେଇ ପ୍ରକଳ୍ପରେ ଯାହା ଆଗେ ହୋଇଥିଲା ଆପଣ ଅବଗତ ହେବେ, ଧନେଇ ଇରିଗେସନ ପ୍ରୋଜେକ୍ଟ ତା 8 ନଭେମ୍ବର 1955ରେ originally sanctioned ହୋଇଥିଲା । ଟଙ୍କା ଥିଲା 16·55 ଲକ୍ଷ । Ayacut ଥିଲା 5,502 ଏକର ।

Ayacut ଯେତେବେଳେ ବୃଦ୍ଧି ହେଲା 9,500 ଏକର ସେତେବେଳେ 1959ରେ ଟଙ୍କା ବଢ଼ିଲା 16·55ରୁ 32·97 ଲକ୍ଷ। ତା'ପରେ Administrative approval ଦିଆଗଲା ତା 8-6-1968ରିଖରେ। Second revise estimate ହେଲା 1,259,200.

ଏଇଟା ଆମର ସେକଣ୍ଡ ପର୍ଯ୍ୟାୟର ହେବ, ସେକଣ୍ଡ ଷ୍ଟେଜରେ ଏହା ଅଛି। ଫର୍ଷ୍ଟ ଷ୍ଟେଜରେ ଏହାର ପ୍ରକୃତରେ 6 ହଜାର ଏକର ଆୟୁକଟ ଏରିଆ ବଢ଼ିବ with an expenditure of 72 lakhs. ଏ ଦୁଇଟିକୁ ମିଶାଇଦେଲେ ଆମେ ଗୋଟିଏ ପ୍ରୋଜେକ୍ଟ ହିସାବରେ ଗଣି ପାରିବୁ ନାହିଁ। କାରଣ ଫର୍ଷ୍ଟ ଷ୍ଟେଜରେ ଯେଉଁଥିପାଇଁ 1955ରୁ ସାଙ୍କସନ୍ ହୋଇଅଛି ଗତବର୍ଷ ତାହା ମଧ୍ୟ ସମ୍ପୂର୍ଣ୍ଣ ହୋଇନାହିଁ। ତା'ର ଏଷ୍ଟିମେଟ କ୍ରମଶଃ ବଢ଼ି ବଢ଼ି ଯାଇଛି। ସେକଣ୍ଡ ରିଭାଇଜରେ 1 କୋଟି 32 ଲକ୍ଷ ହୋଇ-ଥିଲା। ଲେଟେଷ୍ଟ 1 କୋଟି 77 ଲକ୍ଷ ହେଲା। ଏହାକୁ ଆମେ ଯଦି କଣ୍ଟିନ୍ୟୁଡ୍ ଓ୍ୱାର୍କ ହିସାବରେ ନେଇଯିବା 20 ଲକ୍ଷ ଟଙ୍କା ଦେଇଦେବା ସେତେବେଳେ 20 ଲକ୍ଷ ଏଥିପାଇଁ ଆବଶ୍ୟକ ନ ଥିଲା। କାରଣ ଏନେଇ ଇନ୍‌କମ୍ପ୍ଲିଟ୍ ପରେ ସ୍ୱାକୁ କମ୍ପ୍ଲିଟ୍ କରିବାକୁ ପଡ଼ିବ। ସେଥି 20 ଲକ୍ଷ ଆବଶ୍ୟକତା ନ ଥିଲା। ଧନେଇ ସେକଣ୍ଡ ପାର୍ଟରେ ଯାହା ତାକୁ ମିଶାଇ ଦେଇ ଏହା ଏକସଟେନସନ୍ କାମ ବୋଲି ଯଦି କୁହାଯାଏ ତାହା ଠିକ ହେବ ନାହିଁ।

### ଘୋଡ଼ାହାଡ଼ ଧନେଇ ଜଳସେଚନ ଯୋଜନା

This is a very good project. This is a viable project and profitable project. 1955ରେ 16 ଲକ୍ଷ ଏଷ୍ଟିମେଟ୍ କରାଯାଇଥିଲା। ସେଇଟା ବଢ଼ି ବଢ଼ି ଅସି ସେକଣ୍ଡ ରିଭାଇଜ ଫେଜ ଆଉ ଷ୍ଟେଜ ଆସିଗଲା; ସେଥିରେ କିଛି ଅଲଟରେସନ୍ କରିଥିଲେ 6 ହଜାର ଅଧିକ ଆୟୁକଟ ଏରିଆ ହେବ। ଫାଷ୍ଟଷ୍ଟେଜର ଯାହା ଏଷ୍ଟିମେଟ୍ ହୋଇଥିଲା after third rivised estimate ସେ କାମ ସେତିକିରେ କମ୍ପ୍ଲିଟ୍ କରିବା ସମ୍ଭବ ହେଲା ନାହିଁ। ଆଉ 6 ଲକ୍ଷ ଦରକାର ହେଲା। ସେତେବେଳେ 5 ଲକ୍ଷ ଦିଆଗଲା କମ୍ପ୍ଲିଟ୍ କରିବାପାଇଁ କିନ୍ତୁ ତାହା ହେଲା ନାହିଁ। ଆଉ ଟାଇମ୍ ରିଭାଇଜଡ ହେଲାରେ ଟଙ୍କା ଦିଆଗଲା to complete The project.

it is not stage 2nd, It is for stage 1. ସେଥିକଣ୍ଡାଷ ରିସାଇଜଡ୍ ଏଷ୍ଟିମେଟ୍ ହେଲାପରେ ଯେଉଁ ଟଙ୍କା ରହିଲା ସେ ଓ୍ୱାର୍କ କମ୍ପ୍ଲିଟ୍ କରିବାପାଇଁ ଟଙ୍କା ଦିଆଗଲା। ମାନ୍ୟବର ସଭ୍ୟମାନଙ୍କ ମନରେ ଯେଉଁ ସବୁ ସନ୍ଦେହ

ହୋଇ ସେ ସମ୍ପର୍କରେ ପ୍ରଶ୍ନ ଉଠାଇଛନ୍ତି ମୁଁ ସେ ସମ୍ପର୍କରେ କହିଦେବାକୁ ଚାହୁଁଛି। କୋଟିଏ ହେଲା ଓ୍ୱାର୍କଚାର୍ଜ କର୍ମଚାରୀ। ଆପଣ ଜାଣିଥିବେ ଗଭର୍ଣ୍ଣମେଣ୍ଟର ଡାକ୍ତର ପାର୍ଟରେ ଯେଉଁ ଓ୍ୱାର୍କଚାର୍ଜ କର୍ମଚାରୀ କାମ କରୁଛନ୍ତି ସେମାନେ ଯେଉଁ ସ୍କେଲ ଅଫ୍ ପେ ପାଉଛନ୍ତି ସେହି ସ୍କେଲ ସେମାନଙ୍କୁ ଦିଆଯାଇଛି। ଭିନ୍ନ ଡିପାର୍ଟମେଣ୍ଟରେ ଯେଉଁ ଓ୍ୱାର୍କଚାର୍ଜ କର୍ମଚାରୀ ଅଛନ୍ତି ତାଙ୍କର କୋଟିଏ ତାଲିକା କରି ଗ୍ରାଉଣ୍ଡ ପେ ସ୍କେଲ ଫିକ୍ସ କରି ସେ କଥା ଫାଇନାନ୍ସ ଡିପାର୍ଟମେଣ୍ଟକୁ ପଠାଇବା ନିମନ୍ତେ ସେମାନଙ୍କୁ କୁହାଯାଇଛି। ଏକଥା ଅକ୍ଟୋବର 1974ରୁ ସେମାନଙ୍କୁ ମିଳିବ ଦିଆଗଲାଣି। କିନ୍ତୁ ଦୁଃଖର କଥା, ଭିନ୍ନ ବିଭାଗରୁ ଏପର୍ଯ୍ୟନ୍ତ କିଛି ଆସିନାହିଁ। ମାନ୍ୟବର ସଭ୍ୟମାନେ କହୁଛନ୍ତି ଯେ ଫାଇନାନ୍ସ ଡିପାର୍ଟମେଣ୍ଟ ବିଭିନ୍ନ ଡିପାର୍ଟମେଣ୍ଟରୁ ଖବର ଆଣି କନ୍‌ସଲିଡେଟ୍ କରି, ଜେନେରାଲାଇଜ୍ କରି ସେମାନଙ୍କୁ ଦେଇଥାନ୍ତେ। ସେ ଭିନ୍ନ କଥା। ଇତିମଧ୍ୟରେ କେତେକ ବିଭାଗ ନେଇ ଗଲେଣି। ଆଉ କେତେକ ବିଭାଗର ଆସିବାରେ ବାକି ଅଛି। ଆଶା କରାଯାଉଛି ନିକଟରେ ଆସିବ। D. A. ସମ୍ପର୍କରେ ମୁଁ କହେ ଚିନ୍ତା କରୁଛୁ କେନ୍ଦ୍ର ଯେଉଁ ହାରରେ D. A. ଦେଉଛି ସେ ଅନୁସାରେ ଦିଆଯାଇ ପାରିବ କିମ୍ବା କେଉଁ ହାରରେ ଦିଆଯିବ ସେ କଥା ବିଚାରାଧୀନ ଅଛି। ନିକଟରେ ସେ ସମ୍ପର୍କରେ ସରକାରଙ୍କର ସିଦ୍ଧାନ୍ତ ଜଣାଇ ଦିଆଯିବ। ଏ ସମ୍ପର୍କରେ ଆଉ କହିବା ଦରକାର ନାହିଁ।

### ପେନସନ ସମ୍ପର୍କରେ

ଏ ଯେଉଁ ପେନ୍‌ସନ୍ କଥା କହିଲେ ଯେଉଁମାନେ ଅଲରେଡି ପେନ୍‌ସନ୍ ପାଉଛନ୍ତି ସେମାନଙ୍କର ଟ 40, ଟ50 ହେଲା କିନ୍ତୁ ବର୍ତ୍ତମାନ ମିନିମମ ଗ୍ରାଚ୍ୟୁଇଟି ଯେଉଁମାନଙ୍କର ଟ 200 ମିନିମମ ଗ୍ରାଚ୍ୟୁଇଟି ଦେବାକୁ ହେଉଛି ସେମାନେ ପାଇବେ about 82 rupees more. ଯେଉଁମାନେ ଗ୍ରାଚ୍ୟୁଇଟିବେଳକୁ ଟ250 ଙ୍କା ପେନ୍‌ସନ୍ ପାଉଥିବେ ସେମାନେ hundred rupees and odd ଅଧିକା ପାଇବେ।

ଟ40 ରୁ 50 ବଢ଼ିବାଟା, ଆଗରୁ ଯେଉଁମାନେ ପେନସନ୍ ପାଇଛନ୍ତି। କିନ୍ତୁ ରୁଲସ୍ ପରିବର୍ତ୍ତନ ପରେ ଯେଉଁମାନେ ପେନ୍‌ସନ୍ ପାଇବେ ସେମାନେ ଅନ୍ୟ ରେଟ୍‌ରେ ପାଇବେ। It is also question of number. Large number of pensioners get Rs. 40. We will have to look to the financial aspect.

ଉପାଧ୍ୟକ୍ଷ ମହୋଦୟ, ଓଡ଼ିଶା ବିଧାନସଭାର ସଭ୍ୟମାନଙ୍କପାଇଁ ପେନସନ ବ୍ୟବସ୍ଥା କରିବାପାଇଁ ଏହି Bill ଅଣାଯାଇଛି । ଆପଣମାନେ ଜାଣନ୍ତି 1950 January 26 ତାରିଖ ଦିନ ଆମର ସମ୍ବିଧାନ ଗୃହୀତ ହେଲା । ସମ୍ବିଧାନ ଅନୁଯାୟୀ ସାଧାରଣ ନିର୍ବାଚନ ପ୍ରଥାରେ ନିର୍ବାଚନ ହେଲା । ସେହିଦିନଠାରୁ ଆଜିଯାଏ ଯେଉଁ ସଭ୍ୟମାନେ ଧାରାବାହିକଭାବରେ 5 ବର୍ଷ ପର୍ଯ୍ୟନ୍ତ ସଭ୍ୟ ହୋଇ ରହିଛନ୍ତି ବା ମଝିରେ ଯଦି ସେମାନଙ୍କର break ଥାଏ ତାହାହେଲେ ମଧ୍ୟ ଯଦି 5 ବର୍ଷ ପର୍ଯ୍ୟନ୍ତ ଜଣେ ସଭ୍ୟ ହିସାବରେ ଥିବେ, ସେ ପେନସନ ପାଇବାକୁ ହକଦାର ହେବେ ବୋଲି ଏଥିରେ ବ୍ୟବସ୍ଥା ରହିଛି । ଏହିପରି ଭାବରେ ଯେଉଁମାନେ 5 ବର୍ଷ କାଳ ସମ୍ପୂର୍ଣ୍ଣ କରିଥିବେ ସେମାନେ 250 ଟଙ୍କା କରି ପେନସନ ପାଇବେ । ଯେଉଁମାନେ ପାଞ୍ଚ ବର୍ଷରୁ ଅଧିକ ଏ ଗୃହରେ ସଭ୍ୟ ହିସାବରେ ଅଛନ୍ତି, ସେମାନେ ଟ 250 ଙ୍କା pension ପାଇବେ । ପାଞ୍ଚ ବର୍ଷରୁ ଅଧିକା ପ୍ରତିବର୍ଷ ପାଇଁ ଟ 25ଙ୍କା ଅଧିକା ପାଇବେ । କିନ୍ତୁ ସର୍ବଶେଷ limit ରଖାଯାଇଛି ଟ 350 ଙ୍କା । ନଅ (9) ବର୍ଷରୁ ଅଧିକ ସଭ୍ୟ ହୋଇ ରହିଥିଲେ ବି ଟ 100 ଙ୍କା କେବଳ ଅଧିକା ପାଇବେ । ଆପଣ ଜାଣିଥିବେ Parliament ସଭ୍ୟମାନଙ୍କପାଇଁ ଗତଥର' pension ବ୍ୟବସ୍ଥା ହୋଇଯାଇଛି । କେରଳ, ମଧ୍ୟପ୍ରଦେଶ ଇତ୍ୟାଦି କେତେକ ରାଜ୍ୟରେ ତାଙ୍କ ସଭ୍ୟମାନଙ୍କ ପାଇଁ ଏହି pension ବ୍ୟବସ୍ଥା କରାଯାଇଛି । ଆମର ବି ଏଠି ସେହି ଅନୁରୂପ pension ଦେବାପାଇଁ ଏ Billରେ ବ୍ୟବସ୍ଥା କରାଯାଇଛି । ମୁଁ ଆଶାକରୁଛି ଏ Billକୁ ଏକମତରେ ଗ୍ରହଣ କରିବେ ।

ଉପାଧ୍ୟକ୍ଷ ମହୋଦୟ, ଏଯେଉଁ on-Account Budget ଉପସ୍ଥାପିତ କରାଯାଇଛି ଏବଂ ତା' ଉପରେ ଆଲୋଚନା ହୋଇଛି ଏହି ଆଲୋଚନାରେ ଗୃହର କେତେଜଣ ମାନ୍ୟବର ସଭ୍ୟ ଅଂଶ ଗ୍ରହଣ କରିଛନ୍ତି । ସେମାନେ ଆଲୋଚନା ପ୍ରସଙ୍ଗରେ କେତେକ ମୂଲ୍ୟବାନ ପରାମର୍ଶ ଦେଇଛନ୍ତି । କେତେକ ମାନ୍ୟବର ସଭ୍ୟ ନିଜ ନିଜ ଅଞ୍ଚଳର ଅଭାବ ଅସୁବିଧା ସମ୍ପର୍କରେ ମଧ୍ୟ ମନ୍ତବ୍ୟ ଦେଇଛନ୍ତି । ଆଲୋଚନା କରିବାକୁ ଯାଇ ଜୟପୁରର ମାନ୍ୟବର ସଭ୍ୟ କହିଛନ୍ତି ଯେ National *per cipata* income ଓ State *per capita* income ଏ ଉଭୟ ଭିତରେ ଯେଉଁ ତାରତମ୍ୟ ରହିଛି ତାକୁ କମାଇବାପାଇଁ ଉଦ୍ୟମ ହେଉଥିଲା କିନ୍ତୁ କମିବା ପରିବର୍ତ୍ତେ ତାହା ବଢ଼ି ବଢ଼ି ଯାଇଛି । ଜାତୀୟ ମୁଣ୍ଡପିଛା ଆୟ ଏବଂ ରାଜ୍ୟର ମୁଣ୍ଡପିଛା ଆୟ ଏ ଉଭୟ କ୍ଷେତ୍ରରେ ଯେଉଁ ତାରତମ୍ୟ ରହିଛି ତାହା ଉପାଧ୍ୟକ୍ଷ ମହୋଦୟ, ଏ ଯେଉଁ bill ଅଣତ

ନିଷ୍ପଯାଉଛୁ ଏହି ସ୍କୀମ ଆରମ୍ଭରେ 11 ଜଣ ସଦସ୍ୟଙ୍କର ଗୋଟିଏ ଅଂଶ ସମ୍ବନ୍ଧରେ ଅନେକ ସୁପରାମର୍ଶ ଦେଇଛନ୍ତି । ମୋର କହିବା କଥା, ଉତ୍ତରପ୍ରଦେଶ ପ୍ରଥମରେ ଏପରି ଏକ bill ଆଗତ କରାଯାଇଛି । ଏହା ପୂର୍ବରୁ ପାର୍ଲିଆମେଣ୍ଟରେ ଓ ପରେ ବହୁତ ରାଜ୍ୟରେ 8ଟି ବିଧାନସଭାର ଅନୁରୂପ bill ଆଗତ ହୋଇ pass ହୋଇଛି । ଆମେ ଏ ବିଷୟରେ ଖୁବ୍ ପରେ ପଡ଼ିଛୁ । ପାର୍ଲିଆମେଣ୍ଟରେ ଓ ଅନ୍ୟାନ୍ୟ ବିଧାନସଭାରେ ଯେଉଁ bill pass ହୋଇଛି ସେଥିରେ ସେମାନେ 5 ବର୍ଷ ରଖିଛନ୍ତି । ମୁଁ ଏଠାରେ କେବଳ ଗୋଟିଏ କଥା କହିବାକୁ ଚାହେଁ: ଯଦି କୌଣସି ସଭ୍ୟ continuously 5 ବର୍ଷ ନ ରହିଲେ ମଧ୍ୟ ଯଦି ବିଭିନ୍ନ ସମୟରେ 5 ବର୍ଷ ରହିଥାଆନ୍ତି ତା'ହେଲେ ତାଙ୍କୁ ମଧ୍ୟ ହିସାବକୁ ନିଆଯିବ । ଉଦାହରଣ ସ୍ୱରୂପ, ଜଣେ ସଭ୍ୟ ଏ ଗୃହରେ 3 ବର୍ଷ ସଭ୍ୟ ହିସାବରେ କାମ କରିଛନ୍ତି । ଗୃହ dissolve ହୋଇଗଲା । ତା'ପରେ ଅନ୍ୟ ବର୍ଷ ସେ ନିର୍ବାଚନରେ ଆସିପାରିଲେ ନାହିଁ । କିନ୍ତୁ ତୃତୀୟ ଥର ସେ ନିର୍ବାଚିତ ହୋଇ ଆସିଲେ । ସେତେବେଳେ ସେ ଗୃହରେ 3 ବର୍ଷ କାର୍ଯ୍ୟ କଲେ । ତାଙ୍କୁ ମଧ୍ୟ ଗ୍ରହଣ କରାଯାଉଛି । Continuous 5 ବର୍ଷ ନ ହୋଇ ମଝିରେ break ଥିଲେ ମଧ୍ୟ ଯଦି ସିଏ 5 ବର୍ଷ ହୋଇଯାଉଛି ସେ ପେନ୍‌ସନ୍ ପାଇବେ । ପାର୍ଲିଆମେଣ୍ଟରେ ଯଦିଓ ଏପରି ବ୍ୟବସ୍ଥା ନାହିଁ । ଆପଣଙ୍କର ମନେଥିବ ପାର୍ଲିଆମେଣ୍ଟର ନେପେଟିକାଲ ଏକ୍ସ ବିଲ୍ ବିଚାର ହୋଇଥିଲା ସେତେବେଳେ ମେମ୍ବରମାନଙ୍କର ସଭ୍ୟ ପଦ ଗଣିଲେ ସେ 5 ବର୍ଷ ନହେଁ ଯଦି ଜଣେ ଗୃହରେ oath ନେଇଛି ତେବେ ହେଉ ବା ଦୁଇଦିନ ହେଉ ସେ ପେନ୍‌ସନ ପାଇବାପାଇଁ ହକଦାର ହେବେ । ଏଥିରେ ମତାମତ ପାର୍ଲିଆମେଣ୍ଟରେ କେତେକ ସଭ୍ୟ ଉପସ୍ଥାପିତ କରିଥିଲେ । କିନ୍ତୁ ପରେ ସେମାନେ ସମସ୍ତେ ଏକ ମତ ହୋଇ 5 ବର୍ଷ ରଖିଲେ । ମୁଁ ଭାବୁଛି ଆମେ ଏହିପରି ଭାବରେ ଆରମ୍ଭ କରିବା । ଆମ ପରେ ଯେଉଁ ଚଳନ୍ତାଶୀଳ ବ୍ୟକ୍ତିମାନେ ଆସିବେ ଯଦି ଏହାର ପରିବର୍ତ୍ତନ କରିବା ଉଚିତ ବୋଲି ଭାବିବେ ସେମାନେ ପରିବର୍ତ୍ତନ କରିବେ କିନ୍ତୁ ଆମେ ଏଇଟିକୁ ଏହିରୂପେ ପାଶ୍ କରିବା ଠିକ୍ ହେବ ବୋଲି ମୁଁ ଭାବୁଛି ।

ଶ୍ରୀ ବିନାୟକ ଆଚାର୍ଯ୍ୟ (ମୁଖ୍ୟମନ୍ତ୍ରୀ): M. L. A's Welfare Fund ବୋଲି ଗୋଟିଏ ଫଣ୍ଡ ରହୁ । ଆମେ ଯେଉଁ ଗାଳିବ ପାଉଛୁ ତା'ର 1 per cent ସେ ଫାଣ୍ଡରେ ରଖିବା । ସେ ଟଙ୍କା ବ୍ୟାଙ୍କରେ fixed deposit

ହୋଇ ରହିବ । ସେଥିରୁ ଯେଉଁ ସୁଧ ମିଳିବ ଯେଉଁମାନେ ଅତି ସାମାନ୍ୟଭାବରେ ଜୀବନଯାପନ କରୁଛନ୍ତି ତାଙ୍କୁ ଦିଆଯିବ । ଏ ଗୋଟିଏ ଅତି ଉପାଦେୟ ପ୍ରସ୍ତାବ ।

ତା'ପରେ ଏମ୍. ଏଲ୍. ଏ. ମାନଙ୍କ କ୍ୱାର୍ଟର୍ସ—ମୋର ମନେ ହେଉଛି ଗୋଟିଏ କମିଟିରେ ସ୍ଥିର ହୋଇଥିଲା, ଯେଉଁ ଏମ୍. ଏଲ୍. ଏ. ମାନେ ଭୁବନେଶ୍ୱର ଆସୁଛନ୍ତି ତାଙ୍କ ପାଇଁ ଏହିଭଳି ସ୍ଥିର ହୋଇଥିଲା । ଆଜିମ ଯେ କଥା ସ୍ଥିର କରିବା । ଗୋଟିଏ ଘର ନେବା, ଏମ୍. ଏଲ୍. ଏ. ମାନେ ଆସିଲେ ରହିବେ । ମୁଁ ଶୁଣୁଛି ଏହିଭଳି ଗୋଟିଏ ସ୍ଥିର ହୋଇଥିଲା । ତାହା ନ ହୋଇ ପାରୁଛି ଆମେ ସମସ୍ତେ ଉଦ୍ୟମ କରିବା, କାରଣ ଆମର Ex-M. L. A. ମାନେ ଏଠାକୁ ଆସିଲେ ଅସୁବିଧା ଭୋଗ କରୁଛନ୍ତି । ସେମାନେ ଏ ଗୃହରେ ଥିଲେ । ଲୋକଙ୍କ ସେବା କରି ଆସିଛନ୍ତି । ଅନ୍ତତଃ ଏ ସୁବିଧା ସେମାନଙ୍କୁ ଦେବା ଆବଶ୍ୟକ ବୋଲି ମନେ ହେଉଛି । ଏହିଭଳି ଅନ୍ୟାନ୍ୟ ସୁବିଧା ଆମେ ବସି ବିଚାର କରିବା । ମଧ୍ୟପ୍ରଦେଶ, କେରଳରେ ଯେଉଁ ବିଲ୍ ପାସ୍ ହୋଇଛି ସେମାନେ ମଧ୍ୟ 5 ବର୍ଷ ରଖିଛନ୍ତି । ତେଣୁ ମୁଁ ଅନୁରୋଧ କରିବି ଏହାକୁ ଏପରି ଭାବରେ ଗ୍ରହଣ କରିଯିବା ଏବଂ ପରେ ଏହାର ଅନ୍ୟାନ୍ୟ ବ୍ୟବସ୍ଥା ଦେଖିବା ।

ମାନ୍ୟବର ସଦସ୍ୟମାନଙ୍କୁ ପୁରସ୍କାରରେ କହୁ ଦେବାପାଇଁ ସୁଚେଷ୍ଟେ ସେ, ରାଜନୈତିକ କାରଣ ଯାହା କହୁଛନ୍ତି ଏଥିରେ କୌଣସି ରାଜନୀତି ନାହିଁ । କେବଳ ମାନବିକତା ଦୃଷ୍ଟିରୁ ହୋଇଛି । ଅନ୍ୟ ଗୋଟିଏ ଦୃଷ୍ଟିକୋଣ ହେଉଛି ଯେଉଁମାନେ ଜୀବନର ଏତେ ବର୍ଷ ଜନତାର ସେବା କରିଆସିଛନ୍ତି ବିଧାନ ସଭା ଛାଡ଼ିବା ପରେ ସେମାନେ ଯେପରି ଭଲଭାବରେ ଚଳିବେ ଓ ଜନତାର ସେବା କରିବେ ସେଥିପାଇଁ ଏ ସୁବିଧା ତାଙ୍କପାଇଁ କରାଯାଉଛି । ଏଥିରେ ଅନ୍ୟ କୌଣସି କାରଣ ନାହିଁ । ମୁଁ ଅନୁରୋଧ କରିବି ଏହାକୁ ଏପରିଭାବରେ ଗ୍ରହଣ କରାଯାଉ । ପରେ ଯେଉଁ ପରିବର୍ତ୍ତନ କରିବା ଦରକାର ସେ କଥା ସେଲେକ୍ଟ କମିଟିରେ ବିଚାର କରିବା ।

* * * *

## ସରକାରଙ୍କ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ସମ୍ପର୍କରେ

12-12-1968

ଆଜି ଏ ଗୃହରେ ଆସିଥିବା ଅନାସ୍ଥା ପ୍ରସ୍ତାବକୁ ମୁଁ ସମର୍ଥନ କରୁଛି । ଦୀର୍ଘ ଦେଢବର୍ଷ ଭିତରେ ଏ ସରକାର ଯାହା କିଛି କରିସାରିଲେଣି ତାଙ୍କୁ ଆଉ ଅଧିକ ସମୟ ଦେବା ଅର୍ଥ

ଏ ରାଜ୍ୟ ରସାତଳକୁ ଗିବ । ସବୁଠାରୁ ଦୁଃଖଦାୟକ କଥା ହେଉଛି ଯେ ଆମର ମୁଖ୍ୟମନ୍ତ୍ରୀ ଅନେକ ସମୟରେ ଏ ଗୃହରେ ବହୁ ଅସତ୍ୟ ତଥ୍ୟ ପରିବେଷଣ କରନ୍ତି ଓ ଏପରି କରି ସେ ଗୋଟିଏ ଭୁଲ ପରମ୍ପରା ସୃଷ୍ଟି କରିଛନ୍ତି । ଗତକାଲି ଏ ଗୃହରେ କଟକ ସମ୍ବନ୍ଧରେ ଆଲୋଚନା କଲାବେଳେ ସେ କହିଲେ ଯେ "ଓଡ଼ିଶାକୁ ବଞ୍ଚାଅ" ଆନ୍ଦୋଳନ କଟକରେ ଯାହା ହେଲା ତା'ର ଗୋଟିଏ ଅଂଶ । ମୁଁ ଆଜି ଦାବି କରୁଛି, ମୁଖ୍ୟମନ୍ତ୍ରୀଙ୍କ ପାଖରେ ଏପରି କି ବିଷୟବସ୍ତୁ ବା information ଅଛି ଯାହା ଉପରେ ଭିତ୍ତିକରି ସେ କହିଲେ ଯେଉଁଟା ତା'ର ଗୋଟିଏ ଅଙ୍ଗ । ଗତ ଚେନ୍ନ ସ୍ୱତନ୍ତ୍ରର ସରକାରଙ୍କ ସମ୍ମୁଖରେ demonstration ହେଉଛି । ଏଥିପୂର୍ବର ଆମର ବିରୋଧୀ ଦଳରେ ଯେଉଁ ବିଭିନ୍ନ ଦଳମାନେ ଅଛନ୍ତି ସେମାନେ ମଧ୍ୟ demonstration କରିଥିଲେ । ଆମ କଂଗ୍ରେସ ଧାରାରେ ସେମିତି ଗୋଟିଏ demonstration ହୋଇଥିଲା ସରକାରଙ୍କୁ ଧକ୍କା ଦେବା କିମ୍ବା ଅନ୍ୟ କୌଣସି ଅସାଧୁ କାର୍ଯ୍ୟ କରିବା ଏ କଥା ମୁଁ କିଛି ନ ଥିଲି । ସ୍ୱାକୁ କେବେ ତାଙ୍କୁ ଯୋଡ଼ିବାର କାରଣ କ'ଣ ? ସେଥିପାଇଁ ଦାବି କରୁଛି ତାଙ୍କ ପାଖରେ କି ଖବର ଅଛି ଯାହାକୁ ଭିତ୍ତିକରି ସେ ଏ କଥା କହିଲେ । ଆଜି ଦେଶବାସୀଙ୍କୁ ସେ ଯେ ଏପରି ଗୋଟିଏ untrue statement ଦେଇଛନ୍ତି ତାକୁ ସଂଶୋଧନ କରିବା ଦରକାର ।

ସରକାରଙ୍କର ଯେତେ ବିଭାଗ ଅଛି ସବୁ ବିଭାଗରେ ଆଜି ଦୁର୍ନୀତି, ଅନାଚାର, ବାଛବିଚାର ପ୍ରଶ୍ରୟମାନେ ରହିଛି ଓ ଏ ଗୋଟିଏ ଦୁର୍ନୀତି ପରାୟଣ ସରକାରରେ ପରିଣତ ହୋଇଛି । ମୁଁ ଶିକ୍ଷା ସମ୍ପର୍କରେ କିଛି କହୁଛି । ଶିକ୍ଷା କ୍ଷେତ୍ରରେ ଗୋଟିଏ ନୀତି ଅବଲମ୍ବନ କରାଯାଇଛି ଯେ ସହଶିକ୍ଷା ପ୍ରବର୍ତ୍ତିତ ହେବ ସେଥିପାଇଁ M. E. School କୁ ଯେପରି ଭାବରେ ଉଠାଇ ଦିଆହେଲା; ଆଜି ତାହା ସବୁ ଗଳି M. E. School ରେ ଅବ୍ୟବସ୍ଥା ଦେଖାଦେଉଛି । ଯେଉଁମାନେ ସେଥିରୁ ଅଲଗା ହେଲେ ସେମାନଙ୍କପାଇଁ ଅନ୍ୟ କେଉଁଠି ନିଯୁକ୍ତି ନାହିଁ । ଯେଉଁ M. E. School upgraded କରାଯାଇ High School କୁ ପରିଣତ କରାଗଲା ତା'ର strength କେତେ ଏ କଥା ବିଚାରକୁ ନିଆଯାଉନାହିଁ । Strength କମ୍ ଥିଲେବି upgraded କରାଯାଇଛି ଅଥଚ ଅତ୍ୟନ୍ତ Strength ଦେଖିଥିଲେ ମଧ୍ୟ upgraded କରାଯାଇ ନାହିଁ । ବର୍ତ୍ତମାନ ଶିକ୍ଷା କ୍ଷେତ୍ରରେ କୌଣସି ନିୟମ ବୋଲି କିଛି ନାହିଁ । ଏଥିପୂର୍ବର ଆମ ସରକାର ଏ ରାଜ୍ୟର ସେମାନଙ୍କ

ଛାତ୍ରମାନଙ୍କୁ ମେରିଟକମ୍‌ନିଡ୍‌ scholarship ଦେଉଥିଲେ କିନ୍ତୁ ଏ ସରକାର ଆସିବା ପରେ ସେ scholarship ସବୁ କାଟି ଦେଲେ, ଯାହା ଫଳରେ ଏ ରାଜ୍ୟର ଗରିବ ମେଧାବୀ ଛାତ୍ରମାନେ ଯେଉଁମାନେ ପଢ଼ିବାର ସୁଯୋଗ ପାଇଥାନ୍ତେ ଓ ରାଜ୍ୟର ଉନ୍ନତିପାଇଁ ନିୟୋଜିତ ହୋଇଥାନ୍ତେ ସେମାନଙ୍କୁ ସୁଯୋଗ ମିଳିଲା ନାହିଁ ଓ ରାଜ୍ୟର ମେଧାବୀ ଛାତ୍ରମାନେ ଆଉ ଅଧିକ ବିଦ୍ୟାର୍ଜନ କରିବାରୁ ବଞ୍ଚିତ ହେଲେ ।

ଆଉ ମଧ୍ୟ ଆପଣ ଦେଖିବେ ଆମର ଯେଉଁ ବିଶ୍ୱବିଦ୍ୟାଳୟ ହେଲା ତନ୍ମଧ୍ୟରୁ ବରହମ୍ପୁର ଗୋଟିଏ । ଏହି ବିଶ୍ୱବିଦ୍ୟାଳୟର ଗୃହ ନିର୍ମାଣ ଲାଗି ଯାହା ଦେବାର କଥା କିନ୍ତୁ ଏ ପର୍ଯ୍ୟନ୍ତ ସରକାରଙ୍କର ଜମି ଖଜଣା ଛାଡ଼ ଦେଲେ । ଖଜଣା ବାବଦରେ ଯେଉଁ ଅର୍ଥ ହେଉଥିଲା ତା'ର ଅଧା ଖର୍ଚ୍ଚ ହେଉଥିଲା । ଖଜଣା ପରିବର୍ତ୍ତେ cess ବୃଦ୍ଧି କରିବାକୁ ଯେଉଁ ନୀତି ଧରିଛନ୍ତି ସେଥିରେ ବ୍ୟାପକ ଅସନ୍ତୋଷ ଲୋକଙ୍କ ମନରେ ହୋଇଛି । ଅତିରିକ୍ତ ଜଳକର ନ ଦେବାପାଇଁ ଆନ୍ଦୋଳନ ହେଲା । ଆନ୍ଦୋଳନ ଫଳରେ ଏ ସରକାର ତାକୁ ବାତିଲ କରିଦେଲେ । ଲୋକଙ୍କ ଆନ୍ଦୋଳନ ଭିତ୍ତିରେ ଯେଉଁ ନିଷ୍ପତ୍ତି ଗ୍ରହଣ କରାଗଲା ତାହା କିପରି କାର୍ଯ୍ୟକାରୀ କରାଯାଇଛି ଦେଖନ୍ତୁ । ଆଇନ ପରିବର୍ତ୍ତିତ ହେଲା, ନିୟମ ପ୍ରଣୟନ ହୋଇନାହିଁ, ନିୟମରେ ନିର୍ଦ୍ଦିଷ୍ଟ ହେବାକୁ ଥିବା ସର୍ତ୍ତ ଅନୁସାରେ ଲୋକେ ଦସ୍ତଖତ ଦେଲେ ଜଳ ପାଇବେ । ସେ ସର୍ତ୍ତ ସମ୍ପର୍କରେ କୌଣସି ନିଷ୍ପତ୍ତି ଏ ଯାଏ ହୋଇପାରି ନାହିଁ । ଅନେକ କହିଲେ ନିୟମର ସର୍ତ୍ତ ନିର୍ଦ୍ଧାରଣ ନ ହେଉଣୁ ଲୋକଙ୍କଠାରୁ ତାହାଙ୍କ ସାଦା କାଗଜରେ ଦସ୍ତଖତ ନେବ, ବର୍ତ୍ତମାନ ଲୋକଙ୍କୁ ପାଣି ଦିଅ, 2/4 ମାସ ପରେ ଲୋକମାନେ ନିୟମ ଅନୁସାରେ ଯାହା ସର୍ତ୍ତ ପୂରଣ କରିବାର କରିବେ । କିନ୍ତୁ ତାହା କରାଗଲା ନାହିଁ । ଯାହାଫଳରେ ଲକ୍ଷ ଲକ୍ଷ ଏକର ଜମିରେ ଫସଲ ଗତବର୍ଷ ନଷ୍ଟ ହେଲା । ବର୍ତ୍ତମାନ 8 ବର୍ଷ ପରେ ବାକିଆ ଜଳକର ନ ଦେଲେ ପାଣି ଦିଆଯିବ ନାହିଁ ବୋଲି ନୋଟିସ ଦିଆଯାଇଛି । ବର୍ତ୍ତମାନ ସମଗ୍ର ରାଜ୍ୟରେ ବଢ଼ି, ମରୁଡ଼ି ଯୋଗୁ 7 କୋଟି ଟଙ୍କାର ଫସଲ ନଷ୍ଟ ହୋଇଛି ବୋଲି ସରକାର ନିଜେ କହୁଛନ୍ତି । ଏପରି ଅବସ୍ଥାରେ ବାକିଆ ଜଳକର ଯାହା ବନ୍ଦ କରିବାର ଲୋକେ ଆନ୍ଦୋଳନ କରିଥିଲେ ଏବଂ ସରକାର ଯାହା ଅନ୍ୟାୟ ବୋଲି ସ୍ୱୀକାର କଲେ ସେଇ ବାକି ବାଧ୍ୟତାମୂଳକ ଜଳକର ନ ଦେଲେ ପାଣି ବନ୍ଦ କରିଦେବେ ଯାହାଫଳରେ ବର୍ତ୍ତମାନ ଲକ୍ଷ ଲକ୍ଷ ଏକର ଜମିରେ ଖାରିଫ ଫସଲ କ୍ଷତିଗ୍ରସ୍ତ ହେବାର ସମ୍ଭାବନା ଅଛି । ଏହି ଯେଉଁ ନୀତି କଂଗ୍ରେସ

ସରକାର ଏ ଭୁଲ୍ ନୀତି ଅନୁସରଣ କରି ଆସୁଥିଲେ, ବର୍ତ୍ତମାନ ତା'ଠାରୁ ଆହୁରି ଅଧିକ ଦୂର ଅଗ୍ରସର ହେବାପାଇଁ ଏ ସରକାର ବର୍ତ୍ତମାନ ଉଦ୍ୟମ କରୁଛନ୍ତି ।

* * * *

ଆଉମଧ୍ୟ ଆପଣ ଦେଖିଥିବେ ଏମିତ ଯେଉଁ ବିଶ୍ୱବିଦ୍ୟାଳୟ ହେଲା ତାହାଥିଲୁ ବରହମପୁର ଠାରେ । ଏହି ବିଶ୍ୱବିଦ୍ୟାଳୟର ଗୃହ ନିର୍ମାଣ ନିମନ୍ତେ ଯାହା ହେବାର କଥା କିନ୍ତୁ ଏପର୍ଯ୍ୟନ୍ତ ସରକାରଙ୍କର ଜମି ହସ୍ତାନ୍ତରିତ ହୋଇ ପାରିନାହିଁ । ଫଳରେ ବିଶ୍ୱବିଦ୍ୟାଳୟର ଗୃହ ନିର୍ମାଣ କାର୍ଯ୍ୟ ହୋଇନାହିଁ । ଶିକ୍ଷାପାଇଁ ଯେଉଁ ସରକାର କୁମ୍ଭୀର କାନ୍ଦଣା କାନ୍ଦୁଛନ୍ତି, ସେହି ସରକାର ବିଶ୍ୱବିଦ୍ୟାଳୟର ଗୃହ ନିର୍ମାଣ ଓ ଅନ୍ୟାନ୍ୟ କଥା କରି ପାରିନାହାନ୍ତି । କେବଳ ସେତିକି ନୁହେଁ ବ୍ରହ୍ମପୁରରେ ଗୋଟିଏ B. Ed. College ହେବପାଇଁ ବହୁ ଅନୁରୋଧ ହେଉଛି କିନ୍ତୁ ତାହା ଆଜିପର୍ଯ୍ୟନ୍ତ ହୋଇପାରିଲାନାହିଁ । ଅଥଚ ବଲାଙ୍ଗିରରେ ଗୋଟିଏ B. Ed. College ହେଉ ମୁଁ ମନା କରୁନାହିଁ, ବଲାଙ୍ଗିରରେ ହେଉ ଓ ଅନ୍ୟ ଯେଉଁଠି ଆବଶ୍ୟକତା ଅଛି ହେଉ କିନ୍ତୁ ବ୍ରହ୍ମପୁର ଭଳି ସ୍ଥାନରେ ଗୋଟିଏ B. Ed. College ର ଆବଶ୍ୟକତା ଅଛି ଯାହାକି ଆଜିସୁଦ୍ଧା ହୋଇ ପାରିଲାନାହିଁ ।

Transport ସମ୍ପର୍କରେ ସରକାର ଯେଉଁ ନୀତି ଅବଲମ୍ବନ କରିଛନ୍ତି ମୁଁ ତାର ଅର୍ଥ କିଛି ବୁଝି ପାରୁନାହିଁ nationalisation ବା denationalisation ଯାହା ସେମାନେ ଅବଲମ୍ବନ କରିବାକୁ ଯାଉଛନ୍ତି ତାହା ଯଦି ଯୋଜିତ ହୁଅନ୍ତା ତାହେଲେ ଆମେ ଜାଣି ପାରନ୍ତୁ ସରକାରଙ୍କର ନୀତି କଣ । ଲୁଚ୍ଛା ଲୁଚ୍ଛି ଲୋକଙ୍କ ଅଜାଣତରେ କେତେଗୁଡ଼ିଏ routeକୁ nationalise ଆଉ କେତେଗୁଡ଼ିଏ routeକୁ denationalise କରିବାର ଅର୍ଥ କିଛି ଜଣାଯାଉନାହିଁ ।

Retrenchment ଓ unemployment ଆମ ପ୍ରଦେଶରେ ଅପ୍ରତିହତ ବ୍ୟାପକ ଆକାର ଧାରଣ କଲାଣି । ଆମ ସରକାର ଏସବୁ ଉପରେ କୌଣସି ପଦକ୍ଷେପ ନେଉ ନାହାଁନ୍ତି । ଯାହା ଫଳରେ ଅନେକ ଶିକ୍ଷିତ ଯୁବକମାନେ................

## ସରକାରଙ୍କ ମନୋମୁଖୀ ଶାସନ ବିଷୟରେ ଆଲୋଚନା

27-6-1968

ପ୍ରଥମେ ମୁଁ ମାନ୍ୟବର ବାସୁଦେବପୁରର ସଭ୍ୟଙ୍କୁ ଉତ୍ତର ଦେବି । ସେ ତ ଆମର ଗୁରୁଜନ ସ୍ଥାନୀୟ । ରାଜନୀତିରେ ପ୍ରବୀଣ । ସେ ଯେଉଁ ନୂତନ ତଥ୍ୟ ବ୍ୟକ୍ତ କରିଛନ୍ତି ସେଥିରୁ ଜଣାପଡୁଛି କେବଳ ଏକ ପ୍ରବୀଣ ରାଜନୀତିଜ୍ଞ ହିସାବରେ ନୁହେଁ ଏକ ଉଦ୍‌ବାସୀ ହିସାବରେ ବିରୁଦ୍ଧ ଦଳର ଅନ୍ତରର କଥାକୁ ଜାଣି ପାରିଛନ୍ତି । ତେଣୁ ସେ କହୁଁ କହୁଁ କହି ଦେଇଛନ୍ତି ବିରୁଦ୍ଧ ଦଳପକ୍ଷରୁ ଯେଉଁ ଅନାସ୍ଥା ପ୍ରସ୍ତାବ ଆଗତ ହୋଇଛି ସେଥିରେ ଆନ୍ତରିକତା ନାହିଁ । ମୁଁ ତାଙ୍କୁ କେବଳ ଗୋଟିଏ କଥା ପଚାରୁଛି ସେ ତାଙ୍କ ହୃଦୟରେ ହାତ ଦେଇ କହନ୍ତୁ । ଏଇ 16 ମାସ ଭିତରେ ଏଇ ମିଳିତ ସରକାର ଯେପରି ମନମୁଖୀ ଶାସନ ଚଳାଇଛନ୍ତି ଜନସାଧାରଣ ଉପରେ ସେଥିରେ ସନ୍ତୁଷ୍ଟ ହୋଇଛନ୍ତି କି ନା ? ସେ ଏହା ନିଜ ହୃଦୟରେ ହାତ ଦେଇ କହନ୍ତୁ । ସେ ଏହା ନିଜେ ଅନୁଭବ କରୁଛନ୍ତି କି ନା ? ସେ ନିଜେ ଏଇ ଶାସନରେ ସନ୍ତୁଷ୍ଟ କି ନା ସେ କହନ୍ତୁ । ବାଚସ୍ପତି ମହୋଦୟ, ତା ୮-୩-୧୯୬୭ରିଖ ହେଉଛି ଆମ ରାଜ୍ୟର ଇତିହାସରେ ଏକ କଳଙ୍କମୟ ଦିବସ ଯେଉଁ ଦିନ କି ଏଇ ନୂତନ ମିଳିତ ମନ୍ତ୍ରୀମଣ୍ଡଳ ଗଠିତ ହେଲା । ଜଣେ ସାମନ୍ତବାଦୀ ମହାରାଜା ମୁଖ୍ୟମନ୍ତ୍ରୀ ହେଲେ । ଭାରତ ବର୍ଷରେ ଅନ୍ୟ କୌଣସି ରାଜ୍ୟରେ ଏପରି ହୋଇ ନାହିଁ । ସ୍ୱତନ୍ତ୍ର ଦଳର ନେତୃତ୍ୱରେ ଶାସନ ଗଠନ ହୋଇନାହିଁ । କେବଳ ତାହା ଏଇ ସ୍ଥାନରେ ସମ୍ଭବ ହୋଇପାରିଲା । କେବଳ ସେତିକି ନୁହେଁ । ଯେଉଁ ରାଜା ମହାରାଜାଙ୍କ ବିରୁଦ୍ଧରେ ବହୁବର୍ଷ ଧରି ଯେଉଁ ଆନ୍ଦୋଳନ ଚାଲିଥିଲା, ଜନସାଧାରଣ ଯେଉଁ ରାଜା ମହାରାଜାଙ୍କୁ ଗାଦିଚ୍ୟୁତ କରିଥିଲେ, କ୍ଷମତାଚ୍ୟୁତ କରିଥିଲେ ସେମାନଙ୍କ ଭିତରୁ ଜଣେ ଆଜି ମୁଖ୍ୟମନ୍ତ୍ରୀ ହୋଇଛନ୍ତି । ଅନ୍ୟ ଏକ ଦଳ ସେଥିରେ ଯୋଗ ଦେଇଛି । ଯେଉଁ ଦଳର ନେତା ଏଇ ରାଜା ମହାରାଜାଙ୍କ ବିରୁଦ୍ଧରେ ଅନେକ ଆନ୍ଦୋଳନ କରିଥିଲେ । ଯେଉଁ ଦିନ ରାଜନୀତିଜ୍ଞ "Beginning of the end" ବୋଲି ଏକ ବହି ରାଜା ମହାରାଜାମାନଙ୍କ କ୍ଷମତାଚ୍ୟୁତ ସମ୍ପର୍କରେ ଲେଖିଥିଲେ ତାଙ୍କର ନେତୃତ୍ୱରେ ଆଜି ଏକ ଦଳ ଏଇ ରାଜା ମହାରାଜାଙ୍କ ସହାୟତା କରି ରାଜା ମହାରାଜାଙ୍କ ଭିତରୁ ଜଣଙ୍କୁ ଆଣି ମୁଖ୍ୟମନ୍ତ୍ରୀ ପଦରେ ବସାଇଛନ୍ତି । ଖାଲି ସେତିକି ନୁହେଁ ଆଉ ଜଣେ ବରେଣ୍ୟ ନେତା ଯେକି ଗଡଜାତର

ପ୍ରଜା ଆନ୍ଦୋଳନରେ ନେତୃତ୍ୱ ନେଉଥିଲେ ସେଥିପାଇଁ ଆତ୍ମୋତ୍ସର୍ଗ କରିଥିଲେ, ରାଜା ମହାରାଜାଙ୍କୁ ଗାଦିଚ୍ୟୁତ କରିବା ପାଇଁ ଦୁଃଖ କଷ୍ଟ ସହିଥିଲେ, ଜନସାଧାରଣଙ୍କୁ ନେତୃତ୍ୱ ଦେଇଥିଲେ ସେ ଆଜି ଏଇ ରାଜା ମହାରାଜା ଶାସିତ ଗୋଷ୍ଠୀର କବଳରେ ଉପମୁଖ୍ୟମନ୍ତ୍ରୀ ଭାବରେ ବସିଛନ୍ତି । ରାଜା ମହାରାଜାଙ୍କର ବାହୁଚ୍ଛାୟା ତଳେ ଆଶ୍ରୟ କରି ରହିଛନ୍ତି । ଜନତାର ଯେଉଁ ଯେଉଁ ଆଶା ଆକାଂକ୍ଷା ଥିଲା ଏ ଶାସନ କାଳରେ ଆମର ଦୁଃଖ କଷ୍ଟ ଦୂର ହେବ ତା' ହୋଇପାରିଲା ନାହିଁ । କେବଳ ଜନତାର ସେ ଆଶା ଆକାଂକ୍ଷା ଅପୂର୍ଣ୍ଣ ରହିଲା ତା ନୁହେଁ । ବିରୋଧୀ ଦଳ ଆଶା ପ୍ରକାଶ କରିଥିଲେ ନୂତନ ସରକାର ଆସିଲେ ଆମର ଆଶା ଆକାଂକ୍ଷା ପୂରଣ କରିବେ, ଦୁଃଖ ଦୁର୍ଦ୍ଦଶା ଦୈନ୍ୟ ଦୂର କରିବେ । ସେ ଆଶା ତାଙ୍କର ଆଜି ନିରାଶାରେ ପରିଣତ ହୋଇଛି । ବାଚସ୍ପତି ମହୋଦୟ, ଏହି ରାଜା ରାଜୁଡ଼ା ସରକାରର 16 ମାସର ଶାସନରେ ଯାହା ହୋଇଛି ରାଜ୍ୟ ଯେପରି ଛାରଖାର ହୋଇଛି ଏ ସରକାର ଯଦି ଆଉ କେତେ ଦିନ ଗାଦିନସୀନ ହୋଇ ରହନ୍ତି ତା' ହେଲେ ଆମ ରାଜ୍ୟର ଶାସନ ଅଚଳାବସ୍ଥା ହେବ, ଏଥିରେ ସନ୍ଦେହ ନାହିଁ । ଏହି ରାଜା ରାଜୁଡ଼ା ସରକାର ଯେଉଁ ଦିନଠାରୁ ଶାସନ କଳକୁ ଆସିଲେ ସେହି ଦିନଠାରୁ ଶ୍ରମିକଙ୍କ ପାଇଁ କାମ ନାହିଁ । ଲୋକ ବେକାର ହୋଇ ଚାରିଆଡ଼େ ଛନେଇ ବୁଲୁଛି । ହନ୍ମସ୍ତନ ବାମର ତଣ୍ଟି ଚିପା ଯାଉଛି । ସ୍କୁଲ କଲେଜରେ ସ୍ଥାନ ନାହିଁ । ଚାରିଆଡ଼େ ଭୋକିଲର ଆର୍ତ୍ତନାଦ ଓ ହାହାକାର । ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ଅସନ୍ତୋଷ । ଏପରି କଳଙ୍କମୟ ଶାସନ ଆଉ କେବେ ଦେଖା ନ ଥିଲା । ଆଉ କେତେ କାଳ ଏ ସାମନ୍ତବାଦୀ ସରକାରଙ୍କୁ ଲୋକେ ବରଦାସ୍ତ କରି ରହିବେ । ଏ ସରକାର ଏଇ 16 ମାସ ଭିତରେ ଜାଣି ଜାଣି ଏ ରାଜ୍ୟର ସମ୍ବଳକୁ କମାଇ ଦେଇଛି । ଆମ ରାଜ୍ୟ ବର୍ତ୍ତମାନ ଏପରି ସମ୍ବଳହୀନ ହୋଇଛି ଯେ ସାମାନ୍ୟ କ୍ଷୁଦ୍ର ଜଳସେଚନ ଯୋଜନାଟିଏ କରିବାକୁ ତାଙ୍କ ହାତରେ ମାତ୍ର 2/3 ହଜାର ଟଙ୍କା ନାହିଁ । ଚାଷୀଙ୍କୁ ଋଣ ଦେବାକୁ ଟଙ୍କା ନାହିଁ । ଜାଣି ଜାଣି ଏ ସରକାର ଏ ରାଜ୍ୟର ଆର୍ଥିକ ସମ୍ବଳକୁ କମାଇ ଦେଇଛି । ମୁଖ୍ୟମନ୍ତ୍ରୀ ହିସାବରେ କହନ୍ତି ସେ ଜଣେ ବାସ୍ତବବାଦୀ ରାଜନୀତିଜ୍ଞ । ଅବଶ୍ୟ ଖଜଣା ଛାଡ଼ ଏକ ପ୍ରଗତିଶୀଳ measure; କିନ୍ତୁ ମୁଖ୍ୟମନ୍ତ୍ରୀ କହନ୍ତୁ ଦେଖି ଆମ ରାଜ୍ୟରେ ଯେତେବେଳେ ଆର୍ଥିକ ସଙ୍କଟ ପଡ଼ିଛି କେଉଁ ବାସ୍ତବବାଦ ରାଜନୈତିକ ଦୃଷ୍ଟି-କୋଣରୁ ସେ ଖଜଣା ଛାଡ଼କରି ପ୍ରାୟ $3\frac{1}{2}$ କୋଟି ଟଙ୍କା ରାଜସ୍ୱ ହରାଇଲେ । କେବଳ ସେତିକି ନୁହେଁ ପଞ୍ଚାୟତ ଟିକସରୁ ଯେଉଁ ଅର୍ଥ ରାଜକୋଷକୁ ଆସୁଥିଲା ତାକୁ ହରାଇଲେ । କେନ୍ଦୁପତ୍ର ଠିକାର ଲୁଟର କଥା କହିଲେ ସେ ପଦାରେ ପଡ଼ିଯିବ । ପଞ୍ଚାୟତ ଟିକସରୁ 1/2 କୋଟି ଟଙ୍କା ରାଜସ୍ୱ ହେଉଥିଲା । କେନ୍ଦୁପତ୍ରର ଠିକାରେ ପ୍ରାୟ ଏକ କୋଟି ଟଙ୍କା ବରବାଦ ହୋଇଛି । ଆମେ ଏହାପରେ କେନ୍ଦ୍ରରୁ 5 କୋଟି ଟଙ୍କା matching grant ହରାଇଲୁ । ଆମେ 5 ବର୍ଷରେ 50 କୋଟି ଟଙ୍କା ପାଉଥାନ୍ତୁ ।

ଆଜ ତା' ହୋଇପାରିନାହିଁ । ଏ ସରକାର ନିର୍ମଳ ଶାସନ ନାମରେ ଯେଉଁ ଡ୍ରମ ବଜାଉଥିଲେ ତା' ଗାଁ ଗାଁରେ ଓହ୍ଳସନରେ ପରିଣତ ହେଲାଣି । ଲୋକେ ହାସ୍ୟ କରିବାକୁ ଲାଗିଲେଣି ନିର୍ମଳ ଶାସନର, ଅଉ ନିର୍ମଳତା ନାହିଁ । 16 ମାସ ଭିତରେ ଏହା ନିର୍ମଳ ହେବାକୁ ବସିଲାଣି । ମୁଁ ଏଇ ନିର୍ମଳ ଶାସନ କିପରି ଅନିର୍ମଳ ହୋଇଛି ତା'ର କେତେକ ନମୁନା ଦେବି । ଝୁନ୍ ଝୁନ୍ ଓ୍ୟାଲାଙ୍କୁ ଦୂର କରିବା ପାଇଁ ଯେଉଁ ଜମି ପଟ୍ଟା ଦିଆଗଲା, ଯେଉଁମାନଙ୍କର ଘର ଦ୍ୱାର ନାହିଁ ସେମାନଙ୍କ ବର୍ଷ ବର୍ଷ ଧରି ଏଥିପାଇଁ ଦରଖାସ୍ତ କରିଥିଲେ । ସେମାନଙ୍କୁ ଏ ଜମି ଦିଆ ନ ଯାଇ ରାତାରାତି କାରବାର କରି ଝୁନ୍ ଝୁନ୍ ଓ୍ୟାଲାଙ୍କୁ ଯେ ଏ ଜମି ଦିଆଗଲା ଏହାର ଭିତର ଉଦ୍ଦେଶ୍ୟ ଆପଣମାନେ ସହଜରେ ଅନୁମାନ କରିବେ । ଏହା କୃଷିମନ୍ତ୍ରୀ ଜାଣିଥିବେ । ଆଗେ କୁହାଯାଉଥିଲା କେନ୍ଦୁପତ୍ରର ଓଡ଼ିଶା ରାଜନୀତି ଚାଲିଛି । କିନ୍ତୁ ଏ ସରକାର ଅମଳରେ ଏ ରାଜନୀତିର ଗଭର୍ଣ୍ଣି କେନ୍ଦୁପତ୍ର ଠିକା ଦିଆଗଲେ ତା' ଆପଣମାନେ ଜାଣନ୍ତି । ଯେଉଁମାନଙ୍କୁ ଦିଆଗଲା ସେମାନେ ହେଉଛନ୍ତି ସ୍ୱତନ୍ତ୍ର ଦଳର ପୃଷ୍ଠପୋଷକ । ସେମାନଙ୍କୁ ଜାଣି ଶୁଣି ଦିଆଗଲା । କୃଷ୍ଣକାନ୍ତ ମିଶ୍ରଙ୍କୁ ସମ୍ବଲପୁର ଜୋନର 14 ନମ୍ବର ୟୁନିଟ ଦିଆଗଲା । ହେଉପରି ଅତାବିରା ପଞ୍ଚାୟତ ସମିତିର ଚେୟାରମ୍ୟାନ ଧୀରେନ୍ଦ୍ରଙ୍କୁ ଦିଆଗଲା । ଉପି ମିଶ୍ରଙ୍କୁ ଦିଆଗଲା, ଯେ ବନମାଳୀ ବାବୁଙ୍କ ବନ୍ଧୁଙ୍କର କେଶିକର ଦ୍ୱାରା ତାଙ୍କୁ ଠିକା ଦିଆଗଲା । କେନ୍ଦୁପତ୍ର ଠିକାରେ ଅଜସ୍ର ଟଙ୍କା ଆମଦାନି ହେଲା । ଏଇ ସଲସୁତ୍ରର ଠିକାରେ ନିଜଦଳ ଲୋକଙ୍କୁ ଠିକା ଦେଲେ । ଉପମୁଖ୍ୟମନ୍ତ୍ରୀ ଚୌଧୁରୀ ଭୁଲ ନିର୍ମଳ ଶାସନ ନାମରେ ଡ୍ରମ ବଜାଉଥିଲେ । ଘଣ୍ଟା ଘଣ୍ଟା ଧରି ନିର୍ମଳ ଶାସନ ଉପରେ ଅବତାରଣା କରୁଥିଲେ । ଆଜ 16 ମାସ ପରେ ସେ ଶାସନର ନିର୍ମଳତା ଗଲା କୁଆଡେ ? ସେହିଙ୍କ ଭିତର ଦେଖିଲେ ଜଣାପିବ ଯେ ନିର୍ମଳତା ଅନିର୍ମଳତାରେ ପରିଣତ ହୋଇଛି । ଏ ସରକାର ଅମଳରେ ସରକାରୀ କର୍ମଚାରୀମାନେ ଏପରି ରାଜନୀତିଜ୍ଞଦଳଙ୍କ ଦ୍ୱାରା ପ୍ରଭାବିତ ହେଲେଣି ଯେ ବଲାଙ୍ଗିର ଜିଲ୍ଲାର ଜଣେ ମାଜିଷ୍ଟ୍ରେଟ ବଡ଼ଜାତ ଗୋଟିଏ ମିଟିଙ୍ଗରେ କହୁ କହୁ କହି ପକାଇଲେ "What the Congress Government could not do in 20 years this Government could do in one year and four months." ଜଣେ ସରକାରୀ କର୍ମଚାରୀଙ୍କ ମୁଖରୁ ଏପରି ମନ୍ତବ୍ୟ ବାହାରିବାଠାରୁ ଆଉ କ'ଣ ଦୁଃଖଦାୟକ ବିଷୟ ହୋଇପାରେ ? ମୁଁ ଜାଣେ ଏଇପରି ଜଣେ B. D. O. ବଲାଙ୍ଗିରରୁ ବଦଳି ହୋଇଯାଇ ଛତ୍ରପୁରରେ ଅଛନ୍ତି । ସେ ନାନା କଥା ପ୍ରଚାର କରୁଛନ୍ତି । ବୋଲାଙ୍ଗିରର ମାନ୍ୟବର ସଭ୍ୟ ଯାହା କହିଲେ ଆପଣ ଯେଉଁ ଅଫିସର

ଯଠାଉଛନ୍ତି ତାଙ୍କ ଜରିଆରେ ସଙ୍ଗଠନ କରିବା, ଦଳକୁ ସୁଦୃଢ଼ କରିବା ସବ ଇଚ୍ଛା ତା'ହାଲେ ମୁଁ କହିବି ଏ ଶାସନ ଅଧିକ ଦିନ ତିଷ୍ଠିବ ନାହିଁ । କାରଣ ସେପରି ଶାସନ କରିଯାଇ ନାହିଁ କି ଲୋକଙ୍କୁ ଆକୃଷ୍ଟ କରିବାପାଇଁ ଚେଷ୍ଟା ପନ୍ଥା ନୁହେଁ । ବର୍ତ୍ତମାନରେ ନେପାଳ ରାଜାଙ୍କର ବିମାନ କଣିବା ପଛରେ ବହୁତ ରହସ୍ୟ ରହିଛି । ଉକ୍ତ ବିମାନ କେଟବେର୍ଡ ଡଲାର କାହାଁକି ତାକୁ କିଣିଲେ, କାହିଁକି କେନ୍ଦ୍ରର ମାଗିଲେ ନାହିଁ । ଦର କପରି ଧାର୍ଯ୍ୟ ହେଲା ଏ ସବୁ ଜାଣିବାର ବାଟ ନାହିଁ । ଏଥିରେ କ ହାତସଫେଇ ଅଛି ତାହା ଦେଶବାସୀ ବୁଝନ୍ତୁ ।

ଏ ରାଜ୍ୟରେ ଶାନ୍ତିଶୃଙ୍ଖଳା ରକ୍ଷା ସମ୍ପର୍କରେ ମୁଁ କୋଟିଏ ପ୍ରଶ୍ନ ପଚାରିଥିଲି ଯେ ଏ 16 ମାସ ଭିତରେ କେତେଥର ଶ୍ରମିକ ଅଶାନ୍ତି ଘଟିଛି । ମାନ୍ୟବର ଶ୍ରମ ମନ୍ତ୍ରୀ କହିଲେ, ଶ୍ରମିକ ଅଶାନ୍ତି ବହୁତ ଥର ଘଟିଛି । ଆମର ମୁଖ୍ୟମନ୍ତ୍ରୀ କହୁଛନ୍ତି ଆମ ରାଜ୍ୟରେ ଶାନ୍ତି ବିରାଜୁଛି । ମୁଁ ବେଳେବେଳେ ଭାବେ ଏଇ ରାଜ୍ୟରେ ଶାସନର ଶାନ୍ତି ଅଛି । ଯେଉଁ ଦିନଠାରୁ ଏ ସରକାର କ୍ଷମତାକୁ ଆସିଲେ ସେହିଦିନଠାରୁ ଏପରି ଚାଲିଛି । ମୋର ବିଶ୍ୱାସ ଦେଶର ଶାସକ ବା ରାଜା ଯେଉଁ ପାପ କରନ୍ତି ସେଇ ପାପ ଦେଶବାସୀଙ୍କ ଉପରେ ପଡ଼େ । ଏମାନେ ଶାସନକୁ ଆସିବା ପରେ ନାହିଁ ନ ଥିବା ବନ୍ୟା ଅଭୂତପୂର୍ବ ବାତ୍ୟା ଏବଂ ପରେ ପରେ ମରୁଡ଼ି ଦେଖା ଦେଲା । ଏଇ ମରୁଡ଼ି ସମୁଦାୟ 13ଟି ଜିଲ୍ଲାରୁ 11ଟି ଜିଲ୍ଲାରେ ବ୍ୟାପିଛି । ଆମର ଗ୍ରାମବାସୀ ନିରକ୍ଷର ଲୋକେ କହୁଛନ୍ତି ଏ ସରକାର ଯେଉଁସବୁ ଅନ୍ୟାୟ କଲେ ସେଇ ପାପର ଫଳସ୍ୱରୂପ ଦେଶବାସୀ ଏହା ଭୋଗ କରୁଛନ୍ତି । ଆପଣ ଦେଖିବେ ଏଇ ସମସ୍ତ ଭିତରେ ଅପରାଧ ସଂଖ୍ୟା ବଢ଼ିଚାଲିଛି । ପୋଲିସ detection କାର୍ଯ୍ୟ ବହୁ ପରିମାଣରେ କମିଛି, ତା'ର କାରଣ ପୋଲିସର ପ୍ରତ୍ୟେକ କଥାକୁ ଘଣ୍ଟ ଘୋଡ଼ାଇବା ପୋଲିସ ରିପୋର୍ଟକୁ ସତ ବୋଲି ମାନିବା, ଏମାନଙ୍କର କାର୍ଯ୍ୟ ହୋଇଛି । ଏଦ୍ୱାରା ପୋଲିସ ବିଭାଗର ଦକ୍ଷତା ବଢ଼ିବ ନାହିଁ । ପୋଲିସ ଦେଉଥିବା କୃତ୍ରିମ ଓ ଅସତ୍ୟ ରିପୋର୍ଟକୁ ସତ ବୋଲି କହି protection ଦେବା ଦ୍ୱାରା ଦକ୍ଷତା କେବେ ବଢ଼ େନାହିଁ । ସେଇ ହେତୁ ଆମର ଏଠାରେ ଚାଲିଛି ଜଙ୍ଗଲି ଶାସନ, ଲାଠିର ଶାସନ । ତା'ର ଉଦାହରଣ ହେଉଛି ବ୍ରଜରାଜନଗର, ରାଜଗାଙ୍ଗପୁର ଓ ଜଲେଶ୍ୱର । ଅଡ଼ ଶ୍ରେଣୀର ଲୋକଙ୍କର ପେଟ ପୋଡ଼ୁଛି । ଦୁଃଖୀ ଲୋକଙ୍କର voice muzzling କରିବାପାଇଁ ଚେଷ୍ଟା ହେଉଛି ଜଙ୍ଗଲି ସାହାଯ୍ୟରେ । ଆମର ଏଠାରେ ସମବେଦନା ନାହିଁ । ସହାନୁଭୂତ ଆସୁନାହିଁ । ଦିନ ଦିନ ଧରି ଶ୍ରେଣୀର ରହିଲେ କପର କଷ୍ଟ ହୁଏ ସେ ଯେଉଁ ଉଦର ଜ୍ୱାଳା ତା'ର କବେଶ୍ରୀ ହୋଇ ସେ କ'ଣ ନା କ'ଣ କରିବସେ । ତାକୁ ଧରି ଆଇନ୍ ଶୃଙ୍ଖଳା ନାମରେ ଜଙ୍ଗଲିର ଆଶ୍ରୟ ନେଲେ ଶାସନ ହୋଇ ପାରିବ

ନାହିଁ । ଏହା ହେବ ସବୁଠାରୁ ଦୁର୍ଭାଗ୍ୟର କଥା । ବାସୁଦେବପୁରର ମାନ୍ୟବର ସଭ୍ୟ ପୃଥ୍ବୀର ବହୁ ଦେଶ ବୁଲିଛନ୍ତି, ସେ ଜାଣନ୍ତି, କେଉଁଠି ଏଭଳି ଶାସନ ଚାଲିନାହିଁ । ଫ୍ରାନ୍ସରେ ଏହେତେବଡ଼ ଧର୍ମଘଟ ହେଲ । ସେଠା ସରକାର ନଳଗୁଳର ଆଶ୍ରୟ ନେଇ କେତେ ଲୋକ ମାରିଛନ୍ତି ଆମେ ତ ଜାଣୁ ଦେଖିନୁ ।

ମାନ୍ୟବର ରାଜସ୍ୱ ମନ୍ତ୍ରୀ କହିଲେ ଆମେ କେନ୍ଦ୍ର ସରକାରଙ୍କଠାରୁ 5 କୋଟି ଟଙ୍କା ସାହାଯ୍ୟ ପାଇଲୁ; କିନ୍ତୁ ବହାରରେ ସେମାନେ ଚେଷ୍ଟାକରି 65 କୋଟି ଟଙ୍କା ଆଣିପାରିଥିଲ ।

ସେମାନେ ସେଠା ଲୋକଙ୍କର ଦୁର୍ଦ୍ଦଶା ଦେଖାଇ ଦିଲ୍ଲୀର ହୃଦବୋଧ କରାଇ ଏତେ ଟଙ୍କା ଆଣି ପାରିବା କାରଣ ହେଲ ସମସ୍ତେ ମିଳିମିଶି କାମ କରିଥିଲେ । ଆମର ଏ ବିପଦରେ ଲୋକଙ୍କୁ ଠିକ୍ ସମୟରେ ସାହାଯ୍ୟ ଦେଇପାରିଲୁ ନାହିଁ । ପାଣିଯୋଗାଣ ଯୋଗାଇ ପାରିଲୁ ନାହିଁ । ସବୁଠାରୁ ଦୁଃଖ ଲଜ୍ଜା ଓ ଅପମାନର କଥା ଚଳିତବର୍ଷ ଗ୍ରୀଷ୍ମ ଋତୁରେ ବହୁ ଅଞ୍ଚଳର ଗ୍ରାମବାସୀ ପାଣିଯ ଜଳର ସୁବିଧା ପାଇପାରିଲେ ନାହିଁ । ସେଥିପାଇଁ ଘରର ସ୍ତ୍ରୀଲୋକ ମାଇଲ ମାଇଲ ବାଟ ମାଠିଆ କାଖରେ ଧରି ପାଣି ଆଣିବାକୁ ଗଲେ । ବହୁ ଆଗରୁ ସରକାରଙ୍କୁ ଚେତାବନୀ ଦିଆହୋଇଥିଲେ ମଧ୍ୟ ଶୁଣିଲେ ନାହିଁ । ଗତ 3 ମାସ ଲୋକେ ବହୁ ଦୁଃଖ କଷ୍ଟ ଭୋଗିଲେ । ତା'ର ପ୍ରଭାବ ନିଶ୍ଚୟ ଏ ସରକାର ଉପରେ ପଡ଼ିବ ଏବଂ ଏଇ ସରକାର ବେଶୀଦିନ ରହିପାରିବ ନାହିଁ ।

ତା'ପରେ ଶିଳ୍ପ ନୀତି ଓଡ଼ିଶାରେ ସ୍ୱତନ୍ତ୍ର ଦଳର ନୀତି ପରୀକ୍ଷା ହେଉଛି । ଦୁର୍ଭାଗ୍ୟର କଥା ଆମ ରାଜ୍ୟ ସ୍ୱତନ୍ତ୍ର ଦଳର ଗୋଟିଏ experimetal ground, ଶିଳ୍ପ କ୍ଷେତ୍ରରେ, ଶ୍ରମ କ୍ଷେତ୍ରରେ ପରୀକ୍ଷା ଚାଲିଛି । ଅତି ଲଜ୍ଜାର କଥା, ସେଉଁ ଜନକଂଗ୍ରେସ ଦଳ ଦିନେ କଂଗ୍ରେସରେ ଥାଇ ଗଣତାନ୍ତ୍ରିକ ସମାଜବାଦ ନୀତିକୁ ଗ୍ରହଣ କରିଥିଲେ ଏବଂ ତା'ରି ଉପରେ ବକ୍ତୃତାକରି ଆସିଥିଲେ ସେମାନେ ଆଜି ଏ ଶାସନରେ ସ୍ୱତନ୍ତ୍ର ଦଳର ସଭ୍ୟ ହିସାବରେ ରହି ସେପରି ପ୍ରତି କଥାରେ ତା' ସହିତ ରାଜି ହେଉଛନ୍ତି, କି ବିରୋଧ କରୁନାହାନ୍ତି, ସେଥିପାଇଁ ଆମ ଦେଶର ଗୋଟିଏ ସ୍ୱତନ୍ତ୍ର ନୀତି ଚାଲିଛି । Shenoyଙ୍କ Master Plan ଏ ରାଜ୍ୟରେ ଚାଲିଛି । ତାଙ୍କର ଅନ୍ୟ ଉପାୟ ନାହିଁ । ସ୍ୱତନ୍ତ୍ର ଦଳର ମତବାଦ କାର୍ଯ୍ୟକାରୀ ହେବ, ସେଥିରେ ନୀରବତା ଅବଲମ୍ବନ କରିବା ଛଡ଼ା ଗତି ନାହିଁ । ଏବେ ମହାତ୍ମାଗାନ୍ଧିଙ୍କ ଜନ୍ମ ଶତବାର୍ଷିକ ପାଳନ ହେଉଛି । ଗାନ୍ଧିଜୀଙ୍କ ତିନୋଟି ଆଦର୍ଶର କଥା—ନିଶାନିବାରଣ, ଗ୍ରାମସ୍ୱରାଜ୍ୟ ଏବଂ ଖଦୀ । ଏହି 3ଟି ଯାକ ବାଦ ଦିଆଯାଇଛି । ଏ

ସରକାର ରାଜସ୍ୱ ଓ ଅନ୍ୟାନ୍ୟ ଟିକସ ବୃଦ୍ଧି କରିଦେଲେ ଲୋକପ୍ରିୟତା ଅର୍ଜନ କରିବାପାଇଁ । ଏବଂ ତାକୁ ଭରଣା କରିବାପାଇଁ ନିଶା ପ୍ରସାରଣ କରିଚାଲିଛନ୍ତି । ଆମର ଅବକାରୀ ମନ୍ତ୍ରୀ ନିଜକୁ ଜଣେ ଗାନ୍ଧୀବାଦୀ ବୋଲାଇବା ମୋତେ ସବୁବେଳେ ଦୁଃଖ ଲାଗେ । ତାଙ୍କ ଅମଳରେ ଏ କାର୍ଯ୍ୟ କିପରି ହେଲା । ବାଲେଶ୍ୱରର ମାନ୍ୟବର ସଭ୍ୟ କହିଲେ ସେଠାରେ ଦୁଇଟି ଦୋକାନ ଅଛି; କିନ୍ତୁ 400 ଘରୋଇ ଦୋକାନ ଖୋଲା ସରିଲାଣି ଖାଲି ସେତିକି ନୁହେଁ, ସୋଡ଼ା ବୋତଲରେ ଠିପି ମୁଦା ବୋତଲ ପାନ ଦୋକାନରେ ମିଳୁଛି । ଏ ସରକାର କହିଥିଲେ ଗୁପ୍ତ କାରବାର ବନ୍ଦ ହୋଇଯିବ । ତା' ପରିବର୍ତ୍ତେ ଲୋକେ ଅଧିକ ମଦ ଖାଉଛନ୍ତି । ନିଶା ପ୍ରସାର ହେବାର ଲାଗିଛି । ଯେଉଁମାନେ କେବେ ମଦ ଖାଇ ନ ଥିଲେ ସରକାରୀ ମଦ ଖାଇବେ ବୋଲି ସେଠାରେ ଯାଇ ଲୁବ୍ଧ ହେଉଛନ୍ତି ଏବଂ ଅଧିକ ସଂଖ୍ୟାରେ ଖାଇବାରେ ଅଭ୍ୟସ୍ତ ହେଲେଣି ।

ବାଚସ୍ପତି ମହୋଦୟ, ଏ ଯେଉଁ ମାସ transfer ହେଉଛି ଏତଦ୍ୱାରା ସରକାର ନିଜେ ଅନୁମାନ କରିପାରୁଥିବେ ଯାହାକିଛି ମଆର ଦକ୍ଷତା ଅଛି ତାହା ଚାଲିଯାଉଛି । କାରଣ ସମସ୍ତେ ଆତଙ୍କିତ ହୋଇଅଛନ୍ତି ଆଜି ଏଠାରେ ଅଛନ୍ତି ତ, କାଲି ଆଉ କୁଆଡ଼କୁ ଯିବାକୁ ହେବ । 5,000 ଟଙ୍କା ଖର୍ଚ୍ଚ କଲେ ଗୋଟିଏ କ୍ଷୁଦ୍ର ଜଳଯୋଜନା କାର୍ଯ୍ୟକାରୀ ହୋଇପାରନ୍ତା । ସେଥିପାଇଁ ସମ୍ବଳ ନାହିଁ ବୋଲି କହୁଛନ୍ତି । ବର୍ତ୍ତମାନ ଏ ଯେଉଁ transfer ପ୍ରହସନ ଚାଲିଛି ଏଥିରେ କେତେ ଯେ ବ୍ୟୟ ନ ହେଉଛି ତାହା କିଏ କହିବ । ଏ ସରକାର ଦୁର୍ନୀତିଗ୍ରସ୍ତ ଲୋକଙ୍କୁ ବାହୁଛାୟା ତଳେ ରଖି ଅଧିକରୁ ଅଧିକ ଭଲ ସ୍ଥାନ ଦେଇ ଅନ୍ୟ ସାଧୁ ସଚ୍ଚୋଟ ଲୋକଙ୍କ ଉପରେ କାର୍ଯ୍ୟାନୁଷ୍ଠାନ କରା-ଯାଉଛି । ଏ କ୍ଷେତ୍ର ନୁହେଁ । କରବର ମୁଁ ଦେଖି ଆସୁଛି Honesty is punished and dishonesty is rewarded. ଏହାହିଁ ଯଦି ନୀତି ହୁଏ ଏବଂ ଅସାଧୁ ପ୍ରକୃତିର ଲୋକଙ୍କୁ ବାହୁଛାୟା ତଳେ ରଖିବାପାଇଁ ବିଭିନ୍ନ ଜିଲ୍ଲାକୁ ପଠାଯାଏ ତା'ହେଲେ ଏହାଦ୍ୱାରା ଯାହା ଅପବ୍ୟୟ ହେବ ସେଥିରେ ଶାସନ ଭୁଷୁଡ଼ି ପଡ଼ିବ ।

ପରିଶେଷରେ ମୁଁ କହିବି ଏ ସରକାର writing on the wall ଦେଖନ୍ତୁ । ସରକାରଙ୍କ ପାଖରେ ଯେଉଁମାନେ ଅଛନ୍ତି let them lead the writing on the wall. ଏ ଶାସନ ବେଶୀଦିନ ରହିପାରିବ ନାହିଁ । ଯେତେ ଯାହା କହିଲେ ମଧ୍ୟ ଲୋକଙ୍କ ଭିତରକୁ ଆପଣମାନେ ଓର ଯାଉନାହାନ୍ତି । ତା'ନହେଲେ ଏବେ ଯେଉଁ ଦୁଇଟି demonstration ଆସିଥିଲା ନିଶ୍ଚୟ ତାଙ୍କ ପାଖକୁ ଯାଇଥାନ୍ତେ କିମ୍ବା ବିରୋଧୀଦଳର ନେତାଙ୍କୁ ସାଙ୍ଗରେ ନେଇ ଯାଇ-ପାରିଥାନ୍ତେ । ସେଥିପାଇଁ ମୁଁ କହୁଛି ଏ ସରକାର ବେଶିଦିନ ତିଷ୍ଠିବ ନାହିଁ । ଆମର

ମୁଖ୍ୟମନ୍ତ୍ରୀ, ଆମର ମହାରାଜାଙ୍କ ରାଜ ସାହାସ ଅଛି ଲୋକଙ୍କର ଅଭାବ ଅସୁବିଧା ବୁଝିବାକୁ ଚେଷ୍ଟା କରୁଛନ୍ତି ତା'ହେଲେ ସେ ନିଜେ ଯେଉଁ ଭତ୍ତା ଓ ସୁବିଧା ପାଉଛନ୍ତି ତାକୁ ଛାଡ଼ି ଦିଅନ୍ତୁ, ନିଜକୁ ଜଣେ ସାଧାରଣ ହିସାବରେ ବୁଝନ୍ତୁ, ଲୋକଙ୍କ ଭିତରେ କାମ କରିବାକୁ ଆସିଥିନ୍ତୁ । ତେବେ ଜଣାପଡ଼ିବ ଯେ ତାଙ୍କର ସତ୍‌ସାହାସ ଅଛି; ସେ ଲୋକଙ୍କପାଇଁ କାନ୍ଦୁଛନ୍ତି, ସେଥିପାଇଁ ସେ ଏତକ ତ୍ୟାଗ କରିବାକୁ ମୁଁ କହିବି । ଅଧିକ ମୁଁ କେଶୀ କହିବାକୁ ଯାଉନାହିଁ । କେବଳ ଏତକ ନିବେଦନ କରିବି ଯେ ବିରୁଦ୍ଧ ଦଳର ଯେଉଁ ଏକତା ଦେଖା ଦେଇଛି ସେଥିରେ ଆଶାକରିବା ଯେ ଏ ସରକାର ଆଉ ବେଶୀଦିନ ତିଷ୍ଠିବ ନାହିଁ ଓ ତା'ର ପତନ ନିଶ୍ଚିତଭାବରେ ଅନିବାର୍ଯ୍ୟ ।

## ସରକାରଙ୍କ ବିରୁଦ୍ଧରେ ଅନାସ୍ଥା ପ୍ରସ୍ତାବ ସମ୍ପର୍କରେ (15-9-1970)

ଏ ଗୃହରେ ଏ ଯେଉଁ ଅନାସ୍ଥା ପ୍ରସ୍ତାବ ଆଗତ ହୋଇଛି ମୁଁ ତାକୁ ସମର୍ଥନ କରୁଛି। ଗତ 4 ବର୍ଷ ହେଲା ଏ ରାଜ୍ୟରେ ଯେପରି ଶାସନ ଚାଲିଛି ତା'ର ଗୋଟିଏ ମାତ୍ର ନମୁନା ମୁଁ ଦେଉଛି । ଗତ କାଲିର ଗୋଟିଏ ଘଟଣା ମୁଁ କହିବାକୁ ଯାଉଛି । ଏ ରାଜ୍ୟରେ କେତେକ ଛାତ୍ର ତାଙ୍କର କେତେକ ଦାବୀ ଓ ଅଭିଯୋଗ ଜଣାଇବାକୁ ଆସିଥିଲେ । ହଠାତ ଏତେ ସଂଖ୍ୟକ O. M. P. Force ଦେଖିବାକୁ ମିଳିଲା, ମନେହେଲା ଯେପରି କ'ଣ ହେଲା ଗୋଟିଏ ଯୁଦ୍ଧ କ୍ଷେତ୍ର ବା କୌଣସି ବାହାର ଶତ୍ରୁ ଆକ୍ରମଣ କରିବାକୁ ଆସିଛି । ସେଥିପାଇଁ ଏତେ ସଂଖ୍ୟକ O. M. P. Force ଧାଡ଼ିବାନ୍ଧି ଠିଆ ହୋଇଛନ୍ତି । କିନ୍ତୁ ସେଭଳି କୌଣସି ଶତ୍ରୁ ଆସିବାର ନାହିଁ । ପରେ ଶୁଣିଲି କେବଳ କେତେକ ଛାତ୍ର ସେମାନଙ୍କର ଦାବୀ ଜଣାଇବାପାଇଁ ଆସିଥିଲେ । ଯେଉଁମାନେ ପେଟପାଟଣା ପାଇଁ ଆଜି ହାହାକାର କରୁଛନ୍ତି, ଯେଉଁମାନେ ନିଜର ଅଭାବ ଦୂର କରିବାପାଇଁ ମନ୍ତ୍ରୀମାନଙ୍କ ପାଖକୁ ଅଭିଯୋଗ କରିବାକୁ ଆସନ୍ତି, ପୋଲିସ ସାହାଯ୍ୟରେ ଆଜି ତାଙ୍କର ସାମନା କରାଯାଉଛି । ଲାଠି ଗୁଳି ଓ ଲାଠିରେ ସାମନା କରାଯାଉଛି । ଛାତ୍ରମାନେ କ'ଣ ଦାବୀ କରୁଥିଲେ ? ଆଜିପର୍ଯ୍ୟନ୍ତ ସେମାନଙ୍କ ବିରୁଦ୍ଧରେ case ଚାଲିଛି । ସ୍କୁଲ କଲେଜ ଛାଡ଼ିଲା ପରେ ମଧ୍ୟ ନିଜ ଘରୁ ସେମାନଙ୍କୁ କୋର୍ଟ କଚେରୀକୁ ଦଉଡ଼ିବାକୁ ପଡ଼ୁଛି । ଏହି caseଗୁଡ଼ିକ ପ୍ରତ୍ୟାହାର କରିବାକୁ ସେମାନେ ଦାବୀ କରୁଥିଲେ । ଗଞ୍ଜାମ, ବାଲେଶ୍ୱର ଏବଂ ଅନ୍ୟାନ୍ୟ ସ୍ଥାନରେ ଏହି ଭଳି ହୋଇଛି । ଏହି caseଗୁଡ଼ିକ ପ୍ରତ୍ୟାହାର କରିବାକୁ କହିଲେ ମଧ୍ୟ କିଛି ହେଲାନାହିଁ । ଏହିଭଳି ସେମାନେ କେତେକ ନ୍ୟାଯ୍ୟଦାବୀ କରିବାକୁ ଆସିଥିଲେ । କିନ୍ତୁ ସେମାନଙ୍କପାଇଁ O. M. P. Force ଥିଲା । ଆଜି ନକ୍‌ସାଲ-ପନ୍ଥୀମାନଙ୍କ ବିରୁଦ୍ଧରେ ସରକାର ଯେଉଁ ସବୁ କାର୍ଯ୍ୟାନୁଷ୍ଠାନ କରୁଛନ୍ତି ମୁଁ କେବଳ ସେ ସମ୍ପର୍କରେ ଗୋଟିଏ କଥା କହିବି । ନକ୍‌ସାଲପନ୍ଥୀ ଦମନ ନାଆଁରେ ବହୁ ଆଦିବାସୀ, ଯେଉଁମାନେ କି ଏଥିରେ ମୋଟେ ଅଭିଯୁକ୍ତ ହୋଇନାହାନ୍ତି କିମ୍ବା ଏଥିରେ ସେମାନଙ୍କର କୌଣସି

ହୋଉ ନାହିଁ, ଯେଉଁମାନେ ଅତି ନିରୀହ, ସେହିପରି ଲୋକମାନଙ୍କୁ ଧରି ନିଆଯାଉଛି । ସେମାନଙ୍କୁ torture କରାଯାଉଛି, ଆମର ପ୍ରଧାନ ସଭ୍ୟର ମାନ୍ୟବର ସଭ୍ୟ ଶ୍ରୀ ବିରଜା ପ୍ରସାଦ ଗୁପ୍ତ ଯାଇଥିଲେ । ସେ ସ୍ୱଚକ୍ଷୁରେ ଦେଖି ଆସିଛନ୍ତି, ନିରୀହ ଆଦିବାସୀମାନଙ୍କ ଉପରେ କିଭଳି ଅତ୍ୟାଚାର ହେଉଛି । ଯେଉଁ ନକ୍ସାଲପନ୍ଥୀମାନେ ପ୍ରକୃତ ଦୋଷୀ, ସେମାନଙ୍କ ବିରୁଦ୍ଧରେ କଡ଼ାକଡ଼ି କାର୍ଯ୍ୟାନୁଷ୍ଠାନ କରାଯାଉ; କିନ୍ତୁ କଡ଼ାକଡ଼ି କାର୍ଯ୍ୟାନୁଷ୍ଠାନ କରିବା ନାଆଁରେ ନିରୀହ ଆଦିବାସୀ ହେଉଁମାନେ ଏଥିରେ କୌଣସି ପ୍ରକାର ସଂପୃକ୍ତ ନୁହଁନ୍ତି, ସେମାନଙ୍କୁ ଯେପରିଭାବରେ ଶୋଷଣ ପୋଷଣ ମାଡ଼ ଦିଆଯାଉଛି, ତାହା ଅତି ଦୁଃଖଦାୟକ । କେବଳ Force ସାହାଯ୍ୟରେ, ଆଇନ ଶୃଙ୍ଖଳା ରକ୍ଷା କରିବାପାଇଁ ଯଦି ଚେଷ୍ଟା କରୁଥାନ୍ତି ତା'ହେଲେ ଯାହା ଫଳର ପାଉନାହିଁ, ପ୍ରଫାଲ୍ଗା ପାଉନାହିଁ, ଏଠାରେ ସ୍ୱତନ୍ତ୍ର ଦଳର ଯେଉଁ ସରକାର ଅଛି, ସେ କେବେ ପାଇବନାହିଁ । ସେଥିପାଇଁ ଲୋକଙ୍କର କ'ଣ ଅଭାବ ଅଭିଯୋଗ ଅଛି, ସେ ସବୁ ଶୁଣିବା କଥା; କିନ୍ତୁ ନିଜେ ଗଣତାନ୍ତ୍ରିକ ସରକାର ବୋଲି କହି ଭୁଲୁଛନ୍ତି; କିନ୍ତୁ ତାହାନୁହେଁ । ଶିକ୍ଷକମାନେ ବିକ୍ଷୋଭ କରିଥିଲେ, ଆନ୍ଦୋଳନ କରିଥିଲେ, ସେମାନଙ୍କୁ ପ୍ରତିଶ୍ରୁତି ଦିଆଯାଇଥିଲା, ଅଥଚ ସେ ପ୍ରତିଶ୍ରୁତି ଆଜିଯାଏ ପୂରଣ ହୋଇନାହିଁ । ସେହିପରି ଯେଉଁମାନେ ନମିପାଇଁ ଆନ୍ଦୋଳନ କରୁଛନ୍ତି, ସେମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରାଯାଉଛି । ମୁଁ ତ ଯାହା ଦେଖୁଛି, ଏ ସରକାର ଯଦି ଆଉ ଅଧିକ କାଳ ରହେ ତାହାହେଲେ ନକ୍ସାଲପନ୍ଥୀ ତ ଆପେ ଉଦ୍‌ଭବ ହୋଇଯିବେ, ସରକାର ତାଙ୍କୁ ରୋକିବେ କ'ଣ ? ଏ ପ୍ରତିକ୍ରିୟାଶୀଳ ସରକାର ସାଢେ ତିନି ବର୍ଷରୁ 4 ବର୍ଷ ହେଲା, ଯେପରିଭାବରେ ଶାସନ ଚଳାଉଛନ୍ତି ସେଥିରେ ଲୋକଙ୍କର କୌଣସି ମୌଳିକ ସମସ୍ୟା ସମାଧାନ ହୋଇନାହିଁ । 21 ଦଫା କାର୍ଯ୍ୟକ୍ରମ ଏମାନେ ଗଢିଥିଲେ କୌଣସି ଗୋଟିଏ ଏପର୍ଯ୍ୟନ୍ତ ହୋଇନାହିଁ, ଏ ଯେଉଁ ଭୂସଂସ୍କାର କଥା କହୁଛନ୍ତି ସେ ବି ହୋଇନାହିଁ, ଖଜଣା ଛାଡ଼ କଥା ଯାହା କହୁଛନ୍ତି ତା ବି ସମ୍ପୂର୍ଣ୍ଣରୂପେ ହୋଇନାହିଁ । ଖଜଣା ଛାଡ଼ ଫଳରେ କାହାର ଉପକାର ହେଲା, ସେ ବିଷୟରେ ବହୁ ଆଲୋଚନା ହୋଇସାରିଛି । ତେଣୁ ସେ ପ୍ରସଙ୍ଗରେ ମୁଁ ଆଉ ଅଧିକ କିଛି କହିବାକୁ ଯାଉନାହିଁ । ଆମର କହିବାର କଥା, ଆଦିବାସୀମାନଙ୍କର ଯେଉଁ ସମସ୍ୟା, ସେ ସମସ୍ୟାର ସମାଧାନ ଦିଗରେ ସରକାର ଯଦି ଉଦ୍ୟମ ନ କରନ୍ତି କେବଳ ଗୁଳିଚାଳନା ଓ ଲାଠିମାଡ଼ ଦ୍ୱାରା ଦମନ କରିବାକୁ ଉଦ୍ୟମ କରନ୍ତି, କୌଣସି ଦିନ ଦମନ କରିପାରିବେ ନାହିଁ । ଏହା ଦ୍ୱାରା ବୁଝାଯିବ ସରକାର ହଠାତ ଏ ରାଜ୍ୟକୁ ଏକ Police Stateରେ ପରିଣତ ନ କରି ଲୋକଙ୍କର ଅଭାବ ଅଭିଯୋଗ କଥା ନିଶ୍ଚିତ ଭାବରେ ବୁଝିବାକୁ ହେବ, କିନ୍ତୁ ବର୍ତ୍ତମାନ ସରକାର ଦଳର ମୁଖ୍ୟ ଅଂଶୀଦାର ସ୍ୱତନ୍ତ୍ର ଦଳର ଯାହା ଚରିତ୍ର, ସ୍ୱତନ୍ତ୍ର ଦଳର ନେତୃତ୍ୱ ଯେପରି ଅଛି ଏବଂ ଲୋକଙ୍କ ସହିତ ତାଙ୍କର ଯେପରି ସମ୍ପର୍କ, ଲୋକଙ୍କର ଅଭାବ ଏବଂ ଲୋକଙ୍କର ଅଭିଯୋଗର ସମ୍ପୂର୍ଣ୍ଣ ଲୀନ

ହେବାପାଇ ସେମାନେ ଆବଶ୍ୟକ ମନେ କରନ୍ତି ନାହିଁ, ଏଇଟା ତାଙ୍କର ନୀତି । ଆଜ ଆମର ଯିଏ ମୁଖ୍ୟମନ୍ତ୍ରୀ ଅଛନ୍ତି, ସାଧାରଣ ଲୋକ ଯେଉଁମାନେ ନିମ୍ନ ସ୍ତରରେ ଅଛନ୍ତି, ଯେଉଁମାନେ ଦଳିତ, ନିଷ୍ପେଷିତ, ସେମାନଙ୍କର ଦୁଃଖ, ଦୈନ୍ୟ ଓ ସେମାନଙ୍କର ଯେଉଁ ହାହାକାର ରହିଛି ତାକୁ ଅନୁଭବ କରିବା ବା ଉପଲବ୍ଧି କରିବାର ସୁଯୋଗ ଜୀବନରେ କେବେ ପାଇ ନାହାନ୍ତି, ଆଜ ଉପଲବ୍ଧି କରିବେ କିପରି ? ସେହି ଦୃଷ୍ଟିରୁ ସରକାର ଗତ ସାଢ଼େ 3 ବର୍ଷ ହେଲା ଶାସନ କରି କେବଳ ନିଜର ଅପାରଗତା ପ୍ରଦର୍ଶନ କରିଛନ୍ତି । ଯେତେବେଳେ ସରକାର ଆସିଲେ ଲୋକେ ଆଶା କରିଥିଲେ, ନିର୍ମଳ ଶାସନ ହେବ, ତାଙ୍କର ଯେଉଁ 3 ଦଫା ସମ୍ବଳିତ କାର୍ଯ୍ୟକ୍ରମ ତହିଁର ପ୍ରଥମ 2ଟି ଦଫା ହେଉଛି, ନିର୍ମଳ ଶାସନ ଏ ରାଜ୍ୟରେ ପ୍ରତିଷ୍ଠିତ ହେବ ଏବଂ ଯେତେ ଅନିର୍ମଳତା ଏ ରାଜ୍ୟରେ ଥିଲା ତାକୁ ଦୂର କରିବା ପାଇଁ ପ୍ରତିଶ୍ରୁତି ଦେଇ ଏ ସରକାର ଆସିଲେ, ଉପମୁଖ୍ୟ ମନ୍ତ୍ରୀ ରାଜ୍ୟ ସାରା ବୁଲି ଡିଣ୍ଡିମ ପିଟିଲେ, ଦୁର୍ନୀତିକୁ ନିର୍ମୂଳ କରିବା ଲାଗି 4ବର୍ଷ ଭିତରେ ଦେଖାଗଲା ଯେ ଦୁର୍ନୀତି ଦୂର କରିବେ କ'ଣ, ଦୁର୍ନୀତିର ଚେର ଏ ସରକାର ଓ ଶାସନ କଳର ଅଙ୍ଗେ ଅଙ୍ଗେ ମାଡିଗଲା । ଶାସନ କଳର ଦୁର୍ନୀତି ସମ୍ପର୍କରେ ଆମ୍ଭର ମାନ୍ୟବର ସଭ୍ୟ V.L.W. ମାନଙ୍କର ନିଯୁକ୍ତି, ଡାକ୍ତର ଓ engineerମାନଙ୍କ ନିଯୁକ୍ତି ଓ transferରେ ଟଙ୍କା ପଇସା କାରବାର ଯେପରି ଭାବରେ ଚାଲିଛି, ବଜାର ହାଟରେ ସେକଥା ଆଲୋଚନା ହେଉଛି । ଏ ଗୋଟିଏ ସରକାର ଯେଉଁ ସରକାରରେ ନିଯୁକ୍ତି ଓ transferରେ ଅବାଧ ଟଙ୍କା ପଇସା କାରବାର ଚାଲିଛି ।

ତା'ପରେ ବଇରିଙ୍କାର ମାନ୍ୟବର ସଭ୍ୟ ଯାହା କହିଲେ ମୁଁ ତା'ର ପୁନରୁକ୍ତି କରିବାକୁ ଚାହୁଁନାହିଁ । ଶାଳମଞ୍ଜି କାରବାର, କେନ୍ଦୁପତ୍ର କାରବାର, Bus routeକୁ de-nationalise କରି କେଉଁ ଭାବରେ private partyକୁ ଦିଆଯାଉଛି ଏବଂ ସେଥିରେ କେଉଁ ଭଳି ରାଜନୈତିକ ଫାଇଦା ଉଠାଯାଉଛି, ସେଥିରେ ଦୁର୍ନୀତି ଏ ରାଜ୍ୟର ଦୂର ହେବ କ'ଣ, ଦୁର୍ନୀତି ବଢ଼ି ବଢ଼ି ଯାଉଛି । ଏ ସରକାର ଦୁର୍ନୀତିର ଖଣି, ଦୁର୍ନୀତି ଉପରେ ଏ ସରକାର ପ୍ରତିଷ୍ଠିତ ହୋଇଛି । ଦେଖାଯାଉଛି ଏ ସରକାର ଦୁର୍ନୀତି କରି ନିଜର ପାର୍ଟି ବୃଦ୍ଧି କରି, ନିଜର ସ୍ୱାର୍ଥ ସାଧନ କରି ନିର୍ବାଚନରେ ଜୟଯୁକ୍ତ ହେବାପାଇଁ ଉଦ୍ୟମ କରୁଛି ।

ଅଧ୍ୟକ୍ଷ ମହାଶୟ, ମୋ ପୂର୍ବରୁ ଆମ ଦଳ ନିର୍ବାଚନ ବିରୋଧୀଦଳର ନେତା, ଖାନ୍ନା କମିଶନ ପ୍ରସଙ୍ଗରେ ଓ ମୁଧୋଲକରଙ୍କର ରିପୋର୍ଟ ପ୍ରସଙ୍ଗରେ ଆଲୋଚନା କରିଥିଲେ । ଅନେକ ମାନ୍ୟବର ସଭ୍ୟ କହିଛନ୍ତି, ଆଜିପର୍ଯ୍ୟନ୍ତ ଖାନ୍ନା କମିଶନର ରିପୋର୍ଟ ଉପରେ follow up action ହେଲନାହିଁ । କେବଳ ସେତିକି ନୁହେଁ, ସେମାନେ ଆଶଙ୍କା ପ୍ରକାଶ କରିଛନ୍ତି,

ଯେ ଆମର ମୁଖ୍ୟମନ୍ତ୍ରୀଙ୍କ ତାଙ୍କ ଦଳର ନେତାଙ୍କ ଭିତରେ ଭିତର କାରବାର ଓ ଷଡ଼ଯନ୍ତ୍ର ଚାଲିଥିବା ହେତୁ follow up action କାର୍ଯ୍ୟକାରୀ ହୋଇପାରିଲା ନାହିଁ । ମାସକ ଭିତରେ follow up action ହେବ ବୋଲି ମୁଖ୍ୟମନ୍ତ୍ରୀ ଗୃହରେ ପ୍ରତିଶ୍ରୁତି ଦେଇଥିଲେ କିନ୍ତୁ 4 ମାସ ପରେ ମଧ୍ୟ ଏଥିରେ କୌଣସି କାର୍ଯ୍ୟାନୁଷ୍ଠାନ ହେଲାନାହିଁ । ମୁଁ ଜାଣେ investigation chargeରେ କିଏ ଅଛନ୍ତି ଏବଂ ତାଙ୍କର ବନ୍ଧୁବାନ୍ଧବଙ୍କୁ ପ୍ରୋତ୍ସାହିତ କରିବାପାଇଁ କିପରି ଭିତର ଚେଷ୍ଟା କରୁଛନ୍ତି । ଏହା ପଛରେ ଅଦେଖା ହାତ କିପରି କାମ କରୁଛି ମୁଁ ଜାଣେ । ମୁଖ୍ୟମନ୍ତ୍ରୀ ରାଜନୈତିକ ଫାଇଦା ଉଠାଇବାପାଇଁ ଏହିପରି ସ୍ତରରେ follow up actionକୁ ପକାଇ ରଖିଛନ୍ତି । ରାଜନୈତିକ ଫାଇଦା ଉଠାଇବାପାଇଁ ଯେପରି ଖାନ୍ନା କମିଶନ ନିଯୁକ୍ତ ସମ୍ବନ୍ଧରେ ହୋଇଥିଲା, ସେ ରିପୋର୍ଟ ଉପରେ follow up action ନେବା ସମ୍ବନ୍ଧରେ ସେହିପରି ଫାଇଦା ସେ ଉଠାଉଛନ୍ତି । ଶୁଣାଯାଉଛି ଭିତରେ ହାତ ମିଳାମିଳି ହୋଇଛି । ମିନୁମାସାନି ଏଠାକୁ ଆସିଥିଲେ ଏବଂ ସ୍ୱତନ୍ତ୍ର ଦଳର ଅନ୍ୟମାନେ ଯେତେବେଳେ ଏଠାକୁ ଆସିଥିଲେ ସେତେବେଳେ ଏମାନଙ୍କ ଭିତରେ ହାତ ମିଳାମିଳି ହୋଇ ମୁଖ୍ୟମନ୍ତ୍ରୀ ଓ ତାଙ୍କ ଭିତରେ ଭିତର କାରବାର ଚାଲିଛି ।

ସେ ପ୍ରତିଶ୍ରୁତି ଅନୁସାରେ follow up action କାର୍ଯ୍ୟକାରୀ ହେଉ । ମୁଧଲିକର ରିପୋର୍ଟ କଥା ମଧ୍ୟ ଏଠି କୁହାଯାଉଛି । କେବଳ ଡକ୍ଟର ମହତାବଙ୍କ କଥା ନୁହେଁ, ମନ୍ତ୍ରୀମଣ୍ଡଳର ଯେଉଁମାନଙ୍କ ନାମ ତହିଁରେ ଅଛି, ଯେଉଁମାନେ lack of information ଯୋଗୁଁ ଖସିଯାଇଛନ୍ତି, ସେମାନଙ୍କର ଯଦି ସତ୍ସାହସ ଅଛି, ମୁଖ୍ୟମନ୍ତ୍ରୀଙ୍କୁ ସେମାନେ କହନ୍ତୁ, ଆମ ବିରୁଦ୍ଧରେ ଗୋଟିଏ କମିଶନ ହେଉ, ଆମ ବିରୁଦ୍ଧରେ ଯେଉଁ charges ଅଛି ତା'ର ବିଚାର ହେଉ । ମୁଖ୍ୟମନ୍ତ୍ରୀ ଏବଂ ପୂର୍ବତନ ମନ୍ତ୍ରୀ, ଯେଉଁମାନେ ଅଛନ୍ତି, ଯେଉଁମାନଙ୍କ ନାମ ମୁଧଲିକରଙ୍କ ରିପୋର୍ଟରେ ଅଛି, ଯେଉଁମାନେ ଅଭିଯୁକ୍ତ ହୋଇଥିଲେ ମଧ୍ୟ କେବଳ lack of information ଯୋଗୁଁ ଖସିଯାଇଛନ୍ତି, ସମସ୍ତଙ୍କ ବିରୁଦ୍ଧରେ କମିଶନ ବସୁ । ଆଜି ଯଦି ରାଜ୍ୟରେ ଦୁର୍ନୀତି ଦୂର କରିବାକୁ ଚାହିଁ, ନିର୍ମଳ ଶାସନ ପ୍ରତିଷ୍ଠା କରିବାକୁ ଚାହିଁ ତା' ହେଲେ ଯେଉଁ ମନ୍ତ୍ରୀମାନେ ମନ୍ତ୍ରୀତ୍ୱ ଲାଭ କରିବା ପରେ ଫାଇଦା ଉଠାଇଛନ୍ତି ବୋଲି ଅଭିଯୋଗ ହୋଇଛି, ସେମାନେ ଆଗଭର ହୋଇ ଆସି କହନ୍ତୁ ତାଙ୍କ ବିରୁଦ୍ଧରେ କମିଶନ ବସୁ ।

ବାଚସ୍ପତି ମହୋଦୟ, ଏ ପ୍ରସଙ୍ଗରେ ମୁଁ ସ୍ମୃତି କହିବ ଯେ, ଆପଣ ଜାଣନ୍ତି, ସାରା ଭାରତରେ ଓଡ଼ିଶା Rural Electrification ଦିଗରେ ସମସ୍ତଙ୍କ ପଛରେ ପଡ଼ିଛି । ପାଶ୍ଚାତ୍ୟ ଦେଶମାନେ ଆଣବିକ୍ ageରେ progress କରୁଥିଲାବେଳେ ; ଆମେ Electric ଯୁଗରେ ମଧ୍ୟ ରହିଛୁ; ଏବଂ ସେଥିରେ ମଧ୍ୟ ଓଡ଼ିଶା ତା'ର ପଡ଼ୋଶୀ ସବୁ ରାଜ୍ୟଙ୍କ ତୁଳନାରେ ବହୁ ପଛରେ ପଡ଼ିଛି । ବିଦ୍ୟୁତ୍‌ଶକ୍ତି ଗାଁ ଗହଳରେ ଦେଖି ପାରୁନାହୁଁ । ଯେଉଁ ଗାଁରେ ଲୋକେ ରହୁଛନ୍ତି ସେମାନେ ବି ସୁବିଧା ପାଉନାହାନ୍ତି । ଗାଁକୁ ବିଦ୍ୟୁତ୍ ଶକ୍ତି ଦେବା ପୂର୍ବରୁ ପ୍ରଥମେ ପ୍ରଶ୍ନ ହେଉଛି ତା'ର ବିନିଯୋଗ ସେମାନେ କିପରି କରିବେ । କେତୋଟି ହଲର ବସିବ ? କେତେ ଲୋକ ବିଦ୍ୟୁତ୍‌ଶକ୍ତି ବ୍ୟବହାର କରିବେ, ଏହା ସ୍ଥିର ହେଲାପରେ ବିଦ୍ୟୁତ୍ ଶକ୍ତି ଯୋଗାଇବା ପ୍ରଶ୍ନ ବିଚାର କରାଯିବ । ବିଦ୍ୟୁତ୍‌ଶକ୍ତି Industry ମୂଳରେ, ଆମ ଦେଶର ଶିଳ୍ପକ୍ଷେତ୍ରରେ ଉନ୍ନତ କରିବାକୁ ହେଲେ ବିଦ୍ୟୁତ୍‌ଶକ୍ତି ନିତାନ୍ତ ପ୍ରୟୋଜନ । ଏ ସନ୍ଦର୍ଭରେ ଆସନ୍ତା ପଞ୍ଚ-ବାର୍ଷିକ ଯୋଜନାରେ କେତେ ଟଙ୍କା ରଖାଯାଇଛି ବୋଲି ପ୍ରଶ୍ନ ହେବାରୁ ମୁଖ୍ୟମନ୍ତ୍ରୀ ତା'ର ସନ୍ତୋଷଜନକ ଉତ୍ତର ଦେଇ ପାରିଲେନାହିଁ । ଆମେ ବୁଝୁଥିଲୁ ଏଥିପାଇଁ ଅଧିକ ଟଙ୍କା ବିନିଯୋଗ ହେବା ଦରକାର । ଶିଳ୍ପର ଉନ୍ନତି ମୂଳରେ ବିଦ୍ୟୁତ୍‌ଶକ୍ତି ରହିଛି । ଆମେ ରାଜ୍ୟର ଉନ୍ନତିପାଇଁ ଚେଷ୍ଟା କରିବା ଅର୍ଥ ବିଦ୍ୟୁତ୍‌ଶକ୍ତି ଅଧିକ ପରିମାଣରେ ପ୍ରତ୍ୟେକ ପଞ୍ଚାୟତର ଅଞ୍ଚଳକୁ ଯୋଗାଇଦେବା ଦରକାର; କିନ୍ତୁ ତାହା ଏ ସରକାର କରିପାରିଲେନାହିଁ । ତା'ପରେ ବେକାର ସମସ୍ୟା ଦିଗରେ ଆମେ ଯାହା ଆଶା କରୁଥିଲୁ ତାହା ଏ ସରକାର କରିପାରିଲେନାହିଁ । ବରଂ ଶାସନ ଗାଦିକୁ ଆସିଲାପରେ ଛଟେଇ ଯେପରି ଯୁବକରେ କରିଛନ୍ତି ଏବଂ ସେମାନଙ୍କୁ କାମଯୋଗାଇବାରେ ଯେପରି ବିଫଳ ହୋଇଛନ୍ତି, ତାହା ଉଦ୍‌ବେଗଜନକ । ବେକାର ଶିକ୍ଷିତ ଯୁବକଙ୍କୁ ଚାକିରି ଯୋଗାଇବାପାଇଁ କ'ଣ ବ୍ୟବସ୍ଥା କରାଯାଉଛି ବୋଲି ଯେଉଁ ପ୍ରଶ୍ନ ହୋଇଥିଲା, ସେଥିରେ କହିଥିଲେ ଏଥିପାଇଁ Employment Orientation Scheme ଅଛି । କିନ୍ତୁ ଦେଖାଗଲା ୪ର୍ଥ ପଞ୍ଚବାର୍ଷିକ ଯୋଜନାରେ ସେପରି କୌଣସି ସ୍କିମ୍ ନାହିଁ । ଆପଣ ଦେଖିବେ ଓଭରସିଅରମାନେ 1967ରୁ ପାଶ କରି ଘରେ ବସିଛନ୍ତି । ଇଂଜିନିଅରମାନେ ପାଶକରି ଘରେ ବସି ହା-ହାକାର କରୁଛନ୍ତି । ବି. ଏ., ଏମ୍.ଏ. ପାଶ କରି ଲୋକେ ହା-ହାକାର କରୁଛନ୍ତି । ସେମାନଙ୍କ ନିଯୁକ୍ତିପାଇଁ କୌଣସି ବ୍ୟବସ୍ଥା ନାହିଁ । ମା ବାପାମାନେ ଆଶା କରିଥିଲେ ତାଙ୍କ ପିଲାମାନେ ପାଠପଢି ଅସି ରୋଜଗାର କରିବେ । କିନ୍ତୁ ସେମାନେ କିଏ ଆଶା କରିନଥିଲେ ଇଂଜିନିଅର ପଢି ଅସି ବେକାର ହୋଇ ବସିବେ । ଏହା ଏକ ଲଜ୍ଜାର କଥା । Technical ଲୋକଙ୍କୁ ନିଯୁକ୍ତି ଦେବାପାଇଁ କୌଣସି ଯୋଜନା ନାହିଁ ସେ ଦୃଷ୍ଟିରୁ ଆମେ ଦେଖୁଛୁ ଦେଶରେ ଯେଉଁ Naxalite ଆନ୍ଦୋଳନ ଚାଲିଛି ସେଥିରେ ଏଇ prospectus ଯୁବକମାନେ ବାହାରି ଶିଳ୍ପ ଆଗରେ ରୁଚି ଦେଖାଉଛନ୍ତି । କେଣରେ ଯଦି ଏପରି ଅବସ୍ଥା ରହିବ ତାଙ୍କୁ କେହି ଭବାଇ ଦେଇ ପାରିବେନାହିଁ ।

ଉପାଧ୍ୟକ୍ଷ ମହାଶୟ, ଆମର କୃଷି ମନ୍ତ୍ରୀ କହୁଥାଇ କହୁଛନ୍ତି ସାର ଯୋଗାଇଦେଲେ, ଭଲ ବିହନ ଯୋଗାଇ ଦେଲେ, ଜଳସେଚନ ହେଲେ କୃଷିର ଉନ୍ନତି ହୋଇପାରିବ। କିନ୍ତୁ ତାଙ୍କ ପାଇଁ ଜଳସେଚନ ଯେଉଁଠା କି ଅତ୍ୟନ୍ତ ପ୍ରୟୋଜନୀୟ ଅନେକ ତାଙ୍କର କୌଣସି ବ୍ୟବସ୍ଥା ନାହିଁ । ଯଦି ମଧ୍ୟମ ଜଳସେଚନ ଯୋଜନା ନ କରିପାରିଲେ କ୍ଷୁଦ୍ର ଜଳସେଚନ କରି ଯେଉଁ ଅଞ୍ଚଳ perinial drought affected area ସେଠି ଲୋକଙ୍କୁ ଜଳ-ଯୋଗାଇଦେବା ଉଚିତ । ସରକାର କହୁଛନ୍ତି ଏଥିପାଇଁ କେତେ ଟଙ୍କା ଖର୍ଚ୍ଚ ହୋଇଛି କେତେକ ଟଙ୍କାର କଟ କରି ପାରୁ ନାହିଁ । ଗଞ୍ଜାମ ଓ ମୟୂରଭଞ୍ଜ ଜିଲ୍ଲାର କେତୋଟି ପକେଟ ଅଛି, ଯେଉଁଠିକି ପ୍ରତିବର୍ଷ drought ହେଉଛି । ଯଦି ଆମେ ସେଠି ମଧ୍ୟମ ଧରଣର ଜଳସେଚନ ଦେଇପାରି ନାହିଁ, ସେଠି କ୍ଷୁଦ୍ର ଜଳସେଚନ ଯୋଜନା କରି ଏ ଉତ୍କଟ ଅବସ୍ଥାରୁ ଲୋକଙ୍କୁ ବଞ୍ଚାଇ ପାରିବୁ । ସେଥିରୁ ଅଞ୍ଚଳର ହଜାର ହଜାର ଏକର ଜମିରେ ବର୍ଷ ବର୍ଷ ଧରି ଫସଲ ନଷ୍ଟ ହେଉଛି । ସେମାନଙ୍କୁ ଆମେ ସାହାଯ୍ୟ କରିବା ପଛରେ ଥାଉ, ସେମାନେ ଲୋନ୍ ଉତ୍ପାଦ ସାହା ନେଇଛନ୍ତି ତାକୁ ନିର୍ମମ ଭାବରେ ଆଦାୟ କରାଯାଉଛି । ବର୍ତ୍ତମାନ ସମୟ ଅଳ୍ପ । ମୁଁ ସବୁ କହିପାରୁ ନାହିଁ । ସେ ସବୁ କହିବ । ଏ ସବୁ ଦୁଃଖରୁ ଏ ସରକାର ଏ ଦେଶକୁ ଶାସନ କରିବାପାଇଁ ନୈତିକ ଅଧିକାର ହରାଇଛି । ସେଥିପାଇଁ ମୁଁ ଏ ଅନାସ୍ଥା ପ୍ରସ୍ତାବକୁ ସର୍ବାନ୍ତକରଣରେ ସମର୍ଥନ କରୁଛି ।

———

## ଦକ୍ଷିଣ ପୂର୍ବ ରେଳପଥର ପ୍ରଧାନ କାର୍ଯ୍ୟାଳୟକୁ ଓଡ଼ିଶା ଆଣିବା ସଂପର୍କରେ

(6-4-1972)

ମୁଖ୍ୟମନ୍ତ୍ରୀ ଏ ଗୃହରେ ଯେଉଁ ପ୍ରସ୍ତାବ ଆଣିଛନ୍ତି ମୁଁ ସେହି ପ୍ରସ୍ତାବକୁ ସମର୍ଥନ ଜଣାଉଛି । ସରକାରୀ ଦଳ ଓ ବିରୋଧୀ ଦଳର ନେତୃବୃନ୍ଦ ଏକାଠି ବସି ଏ ପ୍ରସ୍ତାବ ହୋଇଛି ଏବଂ ମୁଁ ଆଶା କରୁଛି ଯେ ଏ ଗୃହର ସମସ୍ତେ ଏ ପ୍ରସ୍ତାବକୁ ସମର୍ଥନ କରିବେ ଏବଂ ଏ ପ୍ରସ୍ତାବ ଯେପରି ଭାବରେ ହୋଇଛି ଏଥିରୁ କେହି ଦଳୀୟ ସ୍ୱାର୍ଥସାଧନ ପାଇଁ ଚେଷ୍ଟା କରିବେ ନାହିଁ । କାରଣ ଆପଣ

ଜାଣିଥିବେ ଯଦିଓ 1952 ମସିହାରେ ଏ ସମ୍ପର୍କରେ ପାର୍ଲିଆମେଣ୍ଟରେ ପ୍ରଶ୍ନ ଉତ୍ଥାପିତ ହୋଇଥିଲା ତଥାପି ହେଡ୍‌କ୍ୱାର୍ଟର୍ସ ଘୁଞ୍ଚାଇବାପାଇଁ କୌଣସି ଗୋଟିଏ ଦୃଢ଼ପଦକ୍ଷେପ ନେଇ କାର୍ଯ୍ୟକରିବା ଦିଗରେ ଉଦ୍ୟମ ସେତେବେଳେ ହୋଇ ନ ଥିଲା । ପାର୍ଲିଆମେଣ୍ଟରେ ପ୍ରଶ୍ନ ପଚରା ଯାଇଥିଲା, ସରକାରୀ ଉତ୍ତର ମିଳିଲା । କିନ୍ତୁ ତା'ପରେ ଆଉ କୌଣସି ଉଦ୍ୟମ ହୋଇ ନ ଥିଲା । ଆଜି ପ୍ରଥମଥର ପାଇଁ ଆମେ ଉଦ୍ୟମ କରୁଥାଇଁ । ଦକ୍ଷିଣ ପୂର୍ବ ରେଲୱେର ପ୍ରଧାନ କାର୍ଯ୍ୟାଳୟ ଯାହା କଲିକତାରେ ଅଛି ତାକୁ ଓଡ଼ିଶାକୁ ଆଣିବାପାଇଁ ଆମେ ଓଡ଼ିଶାବାସୀ ଉଦ୍ୟମ କରୁଥାଇଁ ଓ ଆଜି ଆମେ ସମସ୍ତେ ଦଳମତ ନିର୍ବିଶେଷରେ ପ୍ରସ୍ତାବ ପାସ୍ କରିବାକୁ ଯାଉଛୁ । ସେଥିପାଇଁ ମୁଖ୍ୟମନ୍ତ୍ରୀ ପ୍ରସ୍ତାବ ଆଗତ କରି ତାଙ୍କ ଭାଷଣରେ ଯାହାସବୁ କଥା କହିଗଲେ ମୁଁ ତାକୁ ମଧ୍ୟ ସମର୍ଥନ କରୁଛି ଏବଂ ଯେଉଁ କାରଣ ଏଥିରେ ସବୁ ଦିଆଯାଇଛି ଦକ୍ଷିଣ ପୂର୍ବ ରେଲୱେ systemର ଓଡ଼ିଶା ଗୋଟିଏ କେନ୍ଦ୍ରସ୍ଥଳୀ ଏବଂ ଓଡ଼ିଶା ଭିତରେ ଯଦିଓ ସେ systemର ଶତକଡ଼ା 50ରୁ ଅଧିକ mileage ଯାଇ ନାହିଁ ତଥାପି ଅନ୍ୟାନ୍ୟ ରାଜ୍ୟ ଭିତରେ ସେ railwayର ଯେତେ ମାଇଲ ଯାଇଛି ଓଡ଼ିଶା ସେ ସବୁଠାରୁ ଅଧିକ ଯାଇଛି ଏବଂ ଆମେ ପ୍ରଥମ ସ୍ଥାନ ଅଧିକାର କରିଛୁ ଏବଂ ଆମ ତଳକୁ ମଧ୍ୟ ପ୍ରଦେଶ ହେଉଛି mileage ଦୃଷ୍ଟିରୁ, income ଦୃଷ୍ଟିରୁ ଏବଂ railway systemର ଓଡ଼ିଶା କେନ୍ଦ୍ରସ୍ଥଳୀ ହୋଇଥିବା ଦୃଷ୍ଟିରୁ Railway Headquarters ଓଡ଼ିଶାକୁ ଆଣିବାକୁ ହେବ ଏବଂ ଏଥିପାଇଁ ଆଜି ଆମେ ଉଚିତ ଦାବି କରୁଛୁ । ଏ ଦାବୀ ଯଦିଓ ଆହୁରି ବହୁ ଆଗରୁ ଥିଲା ତଥାପି ଆମେ ସମସ୍ତେ ରାଜନୈତିକ ଦଳ, ଦଳମତ ନିର୍ବିଶେଷରେ ଏଥିପାଇଁ କାର୍ଯ୍ୟ କରିବାକୁ ହେବ । ଆମ ମୁଖ୍ୟମନ୍ତ୍ରୀ ତାଙ୍କ ଭାଷଣରେ ଏ କଥା ମଧ୍ୟ କହିଛନ୍ତି ଯେ ଏ ସଂପର୍କରେ ସେ Railway ମନ୍ତ୍ରୀଙ୍କ ସଙ୍ଗେ କ'ଣ କଥାବାର୍ତ୍ତା କରିଥିଲେ ଏବଂ Railway ବୋର୍ଡ଼ର ତତ୍କାଳୀନ ଚେୟାରମ୍ୟାନ୍ ଗାଙ୍ଗୁଲି ମଧ୍ୟ ଉପସ୍ଥିତ ଥିଲେ । ଯଦିଓ କଥାବାର୍ତ୍ତା ସନ୍ତୋଷଜନକ ହୋଇଥିଲା ତଥାପି ଏ ଦିଗରେ କୌଣସି କାର୍ଯ୍ୟାନୁଷ୍ଠାନ ହୋଇପାରି ନ ଥିଲା । ମାନ୍ୟବର ମୁଖ୍ୟମନ୍ତ୍ରୀ କଥାବାର୍ତ୍ତା ପ୍ରସଙ୍ଗରେ ଏ କଥା କହିଥିଲେ ଯେ ତତ୍କାଳୀନ Railway ମନ୍ତ୍ରୀ ସହାନୁଭୂତି ସହିତ ତାଙ୍କ କଥା ଶୁଣିଲେ ଏବଂ ଏ କଥା ମଧ୍ୟ କହିଥିଲେ ଯେ ଏ ରାଜ୍ୟର ଯେଉଁ ଦାବି ହେଉଛି ତାହା ଉଚିତ ଦାବି । ଆଜି ଆମେ କେବଳ ଏ ପ୍ରସ୍ତାବ ଯେ ପାସ୍ କରିବା ତାହା ନୁହେଁ । ଏଥିପାଇଁ ମଧ୍ୟ ଏମିତି ଗୋଟିଏ ବାତାବରଣ ସୃଷ୍ଟି କରିବାକୁ ପଡ଼ିବ ଯେ ଆମେ ଯେଉଁ ଦାବି ଏ ଗୃହରେ ଉପସ୍ଥାପିତ କରୁଛୁ ଏଇଟା ହେଉଛି ଜନତାର ଦାବି, ଏଇଟା ହେଉଛି ଓଡ଼ିଶାବାସୀଙ୍କର ଦାବି । ଏଥିପାଇଁ ସେହିପରି ବାୟୁମଣ୍ଡଳ ସୃଷ୍ଟି କରିବାକୁ ପଡ଼ିବ । ସେ ଦିଗରେ ଆମେ ସମସ୍ତେ କାର୍ଯ୍ୟ କରିବା, ମୋର ଆଶା ଦଳମତ ନିର୍ବିଶେଷରେ କୌଣସି ରାଜନୈତିକ ଅଭିସନ୍ଧି ନ ରଖି ଆମେ ଯଦି ଦାବି ଉପସ୍ଥାପିତ କରିବା ତାହାହେଲେ କେନ୍ଦ୍ର ସରକାର ନିଶ୍ଚିତ ଭାବରେ ଆମର ଦାବି ଉପଲବ୍ଧି କରିବେ ଓ ଆମର ଦାବି ପୂରଣ କରିବେ ।

# 1970-71 ବାର୍ଷିକ ବଜେଟ ଅଟକଳ ଉପରେ ଆଲୋଚନା

(3-3-1970)

ବାଚସ୍ପତି ମହୋଦୟ, ମୁଖ୍ୟମନ୍ତ୍ରୀ 1970-71 ବର୍ଷପାଇଁ ଅର୍ଥକ ବିବରଣୀ ଉପସ୍ଥାପିତ କରିବାକୁ ଯାଇ କହୁଛନ୍ତି ଭାରତୀୟ ଜାତୀୟ କଂଗ୍ରେସର ବିଭାଜନ ହୋଇଥିବା ଭାରତର ରାଜନୀତିକ ଇତିହାସରେ ଏ ବର୍ଷଟି ଯୁଗାନ୍ତକାରୀ ହୋଇଛି । ସେ ପୁଣି କହୁଛନ୍ତି ଯେଉଁ କଂଗ୍ରେସ ଏ ପର୍ଯ୍ୟନ୍ତ ଓଡ଼ିଶାରେ ପ୍ରଭାବଶାଳୀ ହେଉଥିଲା ମଧ୍ୟ ଦେଶରେ ସର୍ବପ୍ରଧାନ ପ୍ରଭାବଶାଳୀ ରାଜନୀତିକ ଶକ୍ତି ହିସାବରେ ରହି ଆସିଥିଲା ତା'ର ବିଭାଜନ ସଙ୍ଗେ ସଙ୍ଗେ ଏକ ନୂତନ ଯୁଗର ଅଭ୍ୟୁଦୟ ଘଟିଛି । ସେ ଆଶା କରିଛନ୍ତି ଗଣତନ୍ତ୍ର ଓ ଧର୍ମନିରପେକ୍ଷତାର ନୀତି ବହୁଁ ପରିମାଣରେ ଜୟଯୁକ୍ତ ହେବ । ମୁଁ ତାଙ୍କ ସଙ୍ଗେ ଏକମତ, କିନ୍ତୁ ସେ ଏକଥା ଭୁଲି ଯାଉଛନ୍ତି ଗଣତନ୍ତ୍ର ଓ ଧର୍ମନିରପେକ୍ଷତା ସଙ୍ଗେ ସଙ୍ଗେ ଗଣତାନ୍ତ୍ରିକ ସମାଜବାଦ ମଧ୍ୟ ତ୍ୱରାନ୍ୱିତ ହେବ । ଗଣତାନ୍ତ୍ରିକ ସମାଜବାଦ ଆଜି ପର୍ଯ୍ୟନ୍ତ ଢେର ପଛେଇ ଯାଇଥିଲା । ତା ତ୍ୱରାନ୍ୱିତ ହେଉଛି । ସେ ଏଇ ମୁଖ୍ୟ ବିଷୟଟି ଉ-କ୍ଷେପ କରିବାକୁ ଭୁଲି ଯାଇଛନ୍ତି । ଏ ଯେଉଁ ବଜେଟ୍ ଉପସ୍ଥାପିତ କରାଯାଇଛି ତା ନୈରାଶ୍ୟଜନକ । ଏଥିରେ ଓଡ଼ିଶାର ଜନସାଧାରଣଙ୍କର ଆଶା ଆକାଂକ୍ଷା ପୂରଣ ହୋଇ ନାହିଁ । ଗତ 3 ବର୍ଷ ଧରି ଏହିପରି ନୈରାଶ୍ୟଜନକ ବଜେଟ୍ ଉପସ୍ଥାପିତ କରାଯାଉଛି । ଏ ବର୍ଷର ବଜେଟ୍ ବି ଜନସାଧାରଣଙ୍କର ସେହି ଆଶା ଆକାଂକ୍ଷା ପୂରଣ କରିବାରେ ମୋଟେ ସହାୟକ ନୁହେଁ । ବାସ୍ତବତା ପ୍ରତି ଦୃଷ୍ଟି ନିକ୍ଷେପକରି ଏ ବଜେଟ୍ ତିଆରି ହୋଇନାହିଁ । ତେଣୁ ଏ ବଜେଟ୍ ଆମ ରାଜ୍ୟର ଅନଗ୍ରସରତା ବା ଆମ ରାଜ୍ୟ ଯେ ଅର୍ଥନୀତି କ୍ଷେତ୍ରରେ ପଛୁଆ ଅବସ୍ଥାରେ ପଡ଼ିଛି ଏହାଦ୍ୱାରା ତା ଦୂର ହୋଇପାରିବ ନାହିଁ । ଏଇ ବଜେଟ୍‌ରେ ଭାରତ ସ୍ୱତନ୍ତ୍ର ଦଳୀୟ ନୀତି ନିହିତ ଅଛି । ସ୍ୱତନ୍ତ୍ରର ନେତାମାନଙ୍କର ଅର୍ଥନୈତିକ ଆଦର୍ଶ ଏଥିରେ ନିହିତ ଅଛି । ଏ ସରକାର ସେଇ ନୀତି କଡ଼ାକଡ଼ି ପାଳନ କରି ଆସୁଛନ୍ତି । ଏ ବର୍ଷ ମଧ୍ୟ ସେଇ ନୀତି ଅନୁସରଣ କରିଛନ୍ତି । ସେଥିପାଇଁ ଆମର ଜନସାଧାରଣ ବିଶେଷ କରି ମଧ୍ୟବିତ୍ତ ଓ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ଲୋକେ ଯେ ଆଶା କରିଥିଲେ ତାଙ୍କର ଅର୍ଥନୈତିକ ଉନ୍ନତି ହେବ ସେ ଆଶା ବଡ଼ମୁନା ହୋଇଛି ।

ମୁଖ୍ୟମନ୍ତ୍ରୀ ଓଡ଼ିଶାବାସୀଙ୍କର ହାରାହାରି ମୁଣ୍ଡପିଛା ଆୟ ସର୍ବଭାରତୀୟ ମୁଣ୍ଡପିଛା ଆୟ ସହିତ ତୁଳନା କରିଛନ୍ତି । ସେ କହିଛନ୍ତି ସର୍ବଭାରତୀୟ ସ୍ତରରେ ଆମକୁ ପହଞ୍ଚିବାକୁ ହେଲେ 4ର୍ଥ ପଞ୍ଚବାର୍ଷିକ ଯୋଜନା କାଳରେ ଆମକୁ 13,‌_0 କୋଟି ଟଙ୍କା ଖର୍ଚ୍ଚ କରିବାକୁ ହେବ । କିନ୍ତୁ ଏ ଆୟ ଟଙ୍କା ଯୋଗାଇ ପାରିବେ ନାହିଁ । ତେଣୁ ବର୍ତ୍ତମାନ ଯେଉଁ ବ୍ୟବଧାନ ଅଛି ସର୍ବଭାରତୀୟ ମୁଣ୍ଡପିଛା ଆୟ ଓ ଓଡ଼ିଶାର ମୁଣ୍ଡପିଛା ଆୟ ଭିତରେ ଯେଉଁ ବ୍ୟବଧାନ

ଅଛୁ ଯେପରି ତା ଆଉ ଅଧିକ ନ ବଢେ ସେଥି ଦୃଷ୍ଟିରୁ ଯଦି ବିଚାର କରାଯିବ ତା' ହେଲେ 750 କୋଟି ଟଙ୍କା 4ର୍ଥ ପଞ୍ଚବାର୍ଷିକ ଯୋଜନା କାଳରେ ଖର୍ଚ୍ଚ କରିବାକୁ ପଡ଼ିବ । ଏଥିରେ ରାଜ୍ୟ ଯୋଜନା ଅଛି । କେନ୍ଦ୍ରୀୟ ଯୋଜନା ଅଛି । ବେସରକାରୀ ଉଦ୍ୟୋଗ ଅଛି । ଏ ସବୁଟାକୁ ମିଶାଇ ଏ ଟଙ୍କା ଖର୍ଚ୍ଚ କରିବାକୁ ହେବ । ସେ କହୁଛନ୍ତି ଓଡ଼ିଶାରେ 4ର୍ଥ ପଞ୍ଚବାର୍ଷିକ ଯୋଜନାରେ ଅନ୍ତତଃ 265 କୋଟି ଟଙ୍କାର ଖର୍ଚ୍ଚ ଆବଶ୍ୟକ ହେଉଛି । ତା ସଙ୍ଗେ ସଙ୍ଗେ ସେ କହୁଛନ୍ତି କେନ୍ଦ୍ରରୁ 160 କୋଟି ଟଙ୍କା ଋଣ ବା ଅନ୍ୟାନ୍ୟ ବାବଦରେ ଯାହା ମିଳୁଛି ଏ ସବୁ ମିଶାଇ 223 କୋଟି ଟଙ୍କାର ସମ୍ବଳ ମିଳିବାର ଆଶା କରାଯାଏ । ତେବେନମ୍ବ 265 କୋଟି ଟଙ୍କା ଆବଶ୍ୟକ ହେବ ବୋଲି ସେ କହୁଛନ୍ତି । କିନ୍ତୁ 223 କୋଟି ଟଙ୍କା ସମ୍ବଳ ମିଳିବାରେ ଆଶା ଦେଖାଯାଏ ବୋଲି ସେ କହୁଛନ୍ତି । ଏଥିରୁ ଆପଣ ଲକ୍ଷ୍ୟ କରିବେ ଅନ୍ତତଃ ଆମର ଯେଉଁ ବ୍ୟବଧାନ ଥିଲା ତାକୁ ସେହିପରି ରଖିବାକୁ ଯେ ଉଦ୍ୟମ ହେଉଛି, ସେଥିରେ ତା କେତେଦୂର ହାସଲ ହୋଇ ପାରିବ । ଏଇ ବ୍ୟବଧାନକୁ ଦୂର କରିବାପାଇଁ ଆମ ବଜେଟରେ ଟଙ୍କା ବ୍ୟବସ୍ଥା ହୋଇପାରୁ ନାହିଁ । ଆମ ସମାଜର ନିମ୍ନ ଶ୍ରେଣୀର ଲୋକ ଶତକଡ଼ା ମାସକୁ ମୋଟେ ଟ 1 ଖର୍ଚ୍ଚ କରନ୍ତି । ତା ଉପର ଶ୍ରେଣୀର ଲୋକ ଶତକଡ଼ା ମାସକୁ ଟ 15 ଖର୍ଚ୍ଚ କରନ୍ତି । ସେଥିରେ ଏ ସମାଜର ଅଭ୍ୟୁଦୟ ବା ବିକାଶ କିପରି ହେବ । ଏ ବଜେଟରେ ସେପରି କିଛି ଯୋଜନା ନାହିଁ । ସେଥିପାଇଁ ମୁଁ ଆଗରୁ କହିଥିଲି ଏ ବଜେଟ ନୈରାଶ୍ୟଜନକ । ଜନସାଧାରଣଙ୍କର ଯେଉଁ ଲକ୍ଷ୍ୟ, କାମ୍ୟ ଆଶା, ଓ ଆକାଂକ୍ଷା ଥିଲା ତା ଏଇ ବଜେଟଦ୍ୱାରା ପୂରଣ ହୋଇପାରିବ ନାହିଁ । * * *

ଏହା ଗୋଟିଏ ଅସାଧାରଣ ନିଅଣ୍ଟିଆ ବଜେଟ । ଆପଣ ଜାଣନ୍ତି ଚଳିତ ବର୍ଷ ବଜେଟରେ 25 ଲକ୍ଷ ଟଙ୍କା ବଳକା ହେବା ଅଟକଳ ହୋଇଥିଲା । କିନ୍ତୁ ନିଅଣ୍ଟ ପରିମାଣ ବଢ଼ି ବଢ଼ି 32 କୋଟି 9 ଲକ୍ଷ ଟଙ୍କା ହେବା ବାସ୍ତବିକ ଅସାଧାରଣ କଥା ଅଟକଳ କରାଯାଇଥିଲା ଯେ ଆମର 25 ଲକ୍ଷ ଟଙ୍କା ବଳକା ହେବ । କିନ୍ତୁ ବଳକା ତ ଗଲା, ଆମର ଅଟକଳରେ କେଉଁଠି ତ୍ରୁଟି ରହିଲା ଯେ ବର୍ଷ ଶେଷ ଆଡ଼କୁ ଦେଖାଯାଉଛି 32 କୋଟି 9 ଲକ୍ଷ ଟଙ୍କା ନିଅଣ୍ଟ । 1970-71 ବଜେଟରେ ମୁଖ୍ୟମନ୍ତ୍ରୀ କହିଛନ୍ତି ଯେ 1970-71 ମସିହାରେ ସମଗ୍ର ରାଜସ୍ୱ ନିଅଣ୍ଟ 17·10 କୋଟି ଟଙ୍କା ହେବ । ସେ ପୁଣି କହିଛନ୍ତି ଯେ capital accountରେ 28·03 କୋଟି ଟଙ୍କା ହେବାର ଅଟକଳ କରାଯାଇଛି । କିନ୍ତୁ public account କ୍ଷେତ୍ରରେ 8·10 କୋଟି ଟଙ୍କା ବଳକା ରହିବା ସମ୍ଭାବନା ଅଛି ବୋଲି ମଧ୍ୟ ସେ ସୂଚାଇଛନ୍ତି । ଏଇ ଯେଉଁ ନିଅଣ୍ଟ ବଢ଼ି ଯାଉଛି ତାକୁ ଭରଣା କରିବାପାଇଁ 6·02 କୋଟି ଟଙ୍କାର

ଅଧିକ ରାଜସ୍ୱ ବ୍ୟବସ୍ଥା ହୋଇଛି ଏପରି ବାଜେଟରେ 1970-71 ମସିହା ମଧ୍ୟରେ ରାଜ୍ୟ ସରକାରଙ୍କର ଦେଣ ନେଣ ସର୍ବମୋଟ 37·30 କୋଟି ଟଙ୍କା ନିଅଣ୍ଟ ପଡ଼ିବାର କଳ୍ପନା ରହିଛି । ଏହା ମଧ୍ୟ ଭାରତ ସରକାରଙ୍କଠାରୁ 32·50 କୋଟି ଟଙ୍କା ବିଶେଷ ସାହାଯ୍ୟ ମିଳିବ ବୋଲି ଧରି ନିଆଯାଇ ଏ ଅଟକଳ କରାଯାଇଛି ଯେ ଆମର ନିଅଣ୍ଟ ହେବ 37·30 କୋଟି ଟଙ୍କା । ଏଠି ଯେଉଁ ବ୍ୟବସ୍ଥା ହୋଇଛି ଏହା ଅତି ବିପଦଜନକ କାରଣ ଭାରତ ସରକାର 32·50 କୋଟି ଟଙ୍କା ଦେବେ ବୋଲି ଧରି ନିଆଯାଇ ଏଠି ଯେଉଁ ବ୍ୟବସ୍ଥା ହୋଇଛି ମୁଁ ଜାଣିବାକୁ ଚାହେଁ ଭାରତ ସରକାର ଏଥିପାଇଁ ରାଜି ଅଛନ୍ତି କି ବା କେଉଁ ଆକାରରେ ବା ଅନ୍ୟ କୌଣସି ଆକାରରେ ଏ ଟଙ୍କା ଦେବାକୁ ରାଜି ହୋଇଛନ୍ତି କି ? କେବଳ ସେତିକି ନୁହେଁ, ଆମର royalty ବାବଦରେ ସେହିପରି କୁହାଯାଇଛି ଯେ, ଆମର ଲୁହା ପଥର ଓ କୋଇଲାର royalty ହାର ସଂଶୋଧନ କରାଯାଇଛି । ଏ ଦୁଇଟି ଖଣିଜ ପଦାର୍ଥ ସମ୍ପର୍କରେ କେନ୍ଦ୍ର ସରକାରଙ୍କ ଉପରେ ଆମ ସରକାର ବରାବର ଦାବି କରୁଛନ୍ତି । ସେ ଆଶା କରୁଛନ୍ତି ଯେ 1970-71 ମସିହାରେ କେନ୍ଦ୍ର ସରକାର ଏ royalty ହାର ପରିବର୍ତ୍ତନ କରିବେ ଓ ସଂଶୋଧନ କରିବେ । ଏହା ଯଦି ନ ହୁଏ ସେ ନିଜେ ଆଶଙ୍କା କରୁଛନ୍ତି ଯେ 35 କୋଟିରୁ ଅଧିକ ସମ୍ବଳ ସଂଗ୍ରହ କରିବାପାଇଁ 4ର୍ଥ ଯୋଜନାରେ ଯେଉଁ ବ୍ୟବସ୍ଥା ହୋଇଛି ତାହା ହୋଇପାରିବ ନାହିଁ । 1970-71 ମସିହାରେ ଏ ବାବଦରେ 90 ଲକ୍ଷ ଟଙ୍କା ଅଧିକ ରାଜସ୍ୱ ହେବ ବୋଲି ଅଟକଳରେ ମିଶା ଯାଇଛି, କିନ୍ତୁ କେନ୍ଦ୍ର ସରକାର ଲୁହାପଥର ଓ କୋଇଲା ଉପରେ royalty ହାର ବଢ଼ାଇବା ପାଇଁ ଯଦି ହଠାତ୍ ରାଜି ନ ହୁଅନ୍ତି ତା'ହେଲେ 90 ଲକ୍ଷ ଟଙ୍କା ନିଅଣ୍ଟ ପଡ଼ିବ । ଏଣୁ ଯଦି ଦେଖିବେ ଏଠି ଯେଉଁ 6·02 କୋଟି ଟଙ୍କା ଅଧିକ ରାଜସ୍ୱ ନେବାର ବ୍ୟବସ୍ଥା କରିଛନ୍ତି ତାକୁ ବାଦ ଦେଲେ ଆହୁରି 30·87 କୋଟି ଟଙ୍କା ନିଅଣ୍ଟ ପରିମାଣ ରହୁଛି । କିନ୍ତୁ ମୁଖ୍ୟମନ୍ତ୍ରୀ କେବଳ 13ଟି ସୂତ୍ରରୁ ଅଧିକ 6·02 କୋଟି ଟଙ୍କା ଆଦାୟ କରିବାପାଇଁ ପ୍ରସ୍ତାବ ଦେଇଛନ୍ତି । ମୋର କାହିଁକି ଆଶଙ୍କା ହେଉଛି ଏ ସୂତ୍ରରୁ ଆସନ୍ତା ବର୍ଷ 6·02 କୋଟି ଟଙ୍କା ଅଧିକ ରାଜସ୍ୱ ଆଦାୟ ହୋଇପାରିବ ନାହିଁ ବରଂ ମୁଁ କହିବି ଏହାଠାରୁ ଢେର ଅଧିକ ଟଙ୍କା ଅରଣ୍ୟଜାତ ସମ୍ପଦରୁ ସଂଗ୍ରହ କରି ପାରନ୍ତା ଯଦି ସେ ଅନ୍ୟାନ୍ୟ ବାବଦ ଆଦାୟ ବଢ଼ାଇବାକୁ ଚେଷ୍ଟା କରନ୍ତେ । ଉଦାହରଣ ସ୍ୱରୂପ ଆମ ଜଙ୍ଗଲରୁ କେଉଁଠି ଆୟ ହେଉଛି ମୁଁ ଜାଣେ ନାହିଁ । କିନ୍ତୁ କେନ୍ଦୁପତ୍ର open tenderରେ ଦିଆଗଲେ ଢେର ଅଧିକ ଟଙ୍କା ମିଳନ୍ତା । ଗତବର୍ଷ ଓ ଚଳିତ ବର୍ଷମାନଙ୍କରେ ଯେଉଁ ଅଧିକ ଟଙ୍କା ସରକାର ରାଜସ୍ୱ ବାବଦ ପାଇଥାନ୍ତେ negotiated settlement କରି ତାହା ହରାଇ ବସିଲେ । ସୁପ୍ରିମ କୋର୍ଟ ମଧ୍ୟ

ତାଙ୍କ ସମୟରେ ସେଇ କଥା ସ୍ଥିର ଥିଲେ । ଏ ବର୍ଷ open tender system କଲେ ଅଧିକ ଆୟ ପାଇ ପାରନ୍ତି । ଏହା ସାଙ୍ଗକୁ ଜଙ୍ଗଲ ସମ୍ପଦ ରକ୍ଷଣାବେକ୍ଷଣ ଠିକ୍ ରୂପେ ହେଲେ ଅଧିକ ଟଙ୍କା ଆଦାୟ କରି ପାରନ୍ତି ।

କୃଷି ଆୟକର ବାବଦରେ ଅଧିକ ଆୟ ଆମେ କରିପାରିଥାନ୍ତି । କିନ୍ତୁ ଏ ପର୍ଯ୍ୟନ୍ତ କୃଷି ଆୟ କରର slab ଠିକ ହୋଇପାରିଲା ନାହିଁ । ଫଳରେ ଆମେ ଅଧିକ ଟଙ୍କା ଆଦାୟ କରିପାରୁ ନାହିଁ । କେନ୍ଦ୍ର ରାଜ୍ୟ ସରକାର ବର୍ତ୍ତମାନ ହାର ସଂଶୋଧନ କରୁଛନ୍ତି । ଏହାଦ୍ୱାରା ଗରିବ ସାଧାରଣଙ୍କ ଉପରେ ଅଧିକ ବୋଝ ପଡ଼ିବ, କାରଣ ଏବେ ଧାନ, ମୁଗ, କାଙ୍କଣି କାଠ ଓ ଗୁଣ୍ଡି ଯାହାକି ସାଧାରଣ ଲୋକ ବ୍ୟବହାର କରୁଛନ୍ତି, ଲେବକରର ସେଥିରେ ବ୍ୟବହାର୍ଯ୍ୟ ଜିନିଷ ତାଙ୍କ ଉପରେ ଲାଗି କରି ଦିଆଯାଉଛି । ଏହା ତଳ ଶ୍ରେଣୀ ଲୋକଙ୍କ କଷ୍ଟ ବଢ଼ାଉଛି । ଏହାବାଦ ଯାତ୍ରୀ ଭଡ଼ା ଉପରେ ଟିକସ ବଢ଼ୁଛି । ସାଧାରଣତଃ ବସ୍‌ଯାତ୍ରୀ କହିଲେ ମଧ୍ୟବିତ୍ତ ଓ ତଳ ଶ୍ରେଣୀ ଗରିବ ଲୋକ ଯାତାୟାତ କରନ୍ତି । ସେମାନଙ୍କ ଉପରେ ଯେ ଟିକସ ବସିଲେ ଯଥେଷ୍ଟ କଷ୍ଟଦାୟକ ହେବ । ଗରିବ ଲୋକଙ୍କଠାରୁ ଟିକସ ଆଦାୟ କରି କାଥଣ୍ଡ ପୂରଣ କରିବା ଅପେକ୍ଷା କେନ୍ଦୁପତ୍ର ବା ଜଙ୍ଗଲର ଅନ୍ୟ ସମ୍ପତ୍ତିରୁ ଅଧିକ ଆଦାୟ ହୋଇ ପାରନ୍ତା ।

ଭୂ-ରାଜସ୍ୱ ଛାଡ଼ ସମ୍ପର୍କରେ ବହୁତ ଥର ଆଲୋଚନା ହୋଇଛି ସେଥିପାଇଁ ପୁନରାବୃତ୍ତି କରିବା ଇଚ୍ଛା ମୋର ନାହିଁ । 10 ବା 7 ଏକର ପର୍ଯ୍ୟନ୍ତ ଭୂ-ରାଜସ୍ୱ ଛାଡ଼ ଦେଇ ତା'ଠାରୁ ଅଧିକ ଜମି ଯାହାର ଅଛି ତାହା କ୍ରମବର୍ଦ୍ଧିଷ୍ଣୁ ହାରରେ ଟିକସ ଛାଡ଼ କରାଯାଇଥିଲେ ଆମେ ଯେଉଁ କ୍ଷତି ହେଉଛି ସେତିକି କମ୍ବା ତା'ଠାରୁ ଅଧିକ ପାଇ ପାରିଥାନ୍ତୁ, ତାହା ହୋଇଥିଲେ ଆମର ଅର୍ଥ ଏ ବାର୍ଥିକ ନୀତିରେ ହୁଏତ ପଡ଼ୁଥା ନାହିଁ ନଥାନ୍ତା ।

ଏହାପରେ ମୁଁ royalty କଥା କହିବି । ବାସ୍ତବରେ royalty ଯେପରି ଭଲରେ ଆଦାୟ ହେବ ଦେଖିବା ଦରକାର । ଖଣି ପଟ୍ଟାଦାରମାନେ ଭରିବ ଲୋକ ନୁହନ୍ତି ଯେ ଅସୁବିଧା ହେବ । ସେମାନଙ୍କ ପାଖରେ ଲକ୍ଷ ଲକ୍ଷ ଟଙ୍କା ରହୁଥିବା ହେତୁ ସରକାରଙ୍କର ଅସୁବିଧା ହେଉଛି । ତାଙ୍କ ସହିତ ବୋଲିଶି negotiated settlement କରି ବିନା କାରଣରେ ତାଙ୍କୁ ଅଧିକ ଟଙ୍କା ମାଫ ଦେବା ଅନ୍ୟାୟ କଥା ।

ଉପାଧ୍ୟକ୍ଷ ମହାଶୟ, ଅପର ସେଦିନ ଉପସ୍ଥିତ ଥିଲେ । ଖଣି royalty ସମ୍ପର୍କୀୟ ପ୍ରଶ୍ନୋତ୍ତର ଆପଣ ଶୁଣିଥିବେ, Negotiated settlement କରି ଅଧିକ ଟଙ୍କା ସେମାନଙ୍କୁ ଛାଡ଼ ଦେବା ଫଳରେ ଆମର ଯେଉଁ ରାଜସ୍ୱ ଆସିଥାନ୍ତା ସେ ପାଇବ ନାହିଁ । ଏହାପରେ ଯେଉଁଠି ରାଜସ୍ୱ ବଢ଼ିବା କଥା ସେଥିପ୍ରତି ଦୃଷ୍ଟି ନଦେଇ ଟିକସ ବଢ଼ାଇବା ଦ୍ୱାରା ସାଧାରଣ, ଗରିବ, ମଧ୍ୟବିତ୍ତ ଓ ତଳଶ୍ରେଣୀ ଲୋକଙ୍କ କାରଣ [illegible]

ବସାଇବା ଅନୁଚିତ । କିନ୍ତୁ ଆମ ସରକାରଙ୍କର ନୀତି ଯାହା ଆମେ ଦେଖି ଦେଖି ଆସିଛୁ ସେଥିରେ ନୂଆ ଟିକସ ବଢ଼ୁଛି ଟିକସ ଭାର କେବଳ ମଧ୍ୟବିତ୍ତ ଶ୍ରେଣୀଙ୍କ ଉପରେ ପଡ଼ୁଛି । ଯାତ୍ରୀ ଭଡ଼ା ଉପରେ ବସୁଥିବା ଟିକସ ଗାଡ଼ିରେ ଯାଉଥିବା ବା ଟାକ୍ସି କରି ଯାଉଥିବା ଲୋକଙ୍କ ଉପରେ ପଡ଼ୁ ନାହିଁ । * * *

ପେଟ୍ରୋଲ ଅଛି କିନ୍ତୁ ଯାତ୍ରୀ ଭଡ଼ା ଉପରେ ଟିକସ ଯେ ଦେବାକୁ ପଡ଼ୁଛି ଏହା ଲୋକଙ୍କୁ କଷ୍ଟ ବାଧୁଛି । * * *

ବର୍ତ୍ତମାନ ଆମର ଋଣ ପରିଶୋଧ ସମ୍ପର୍କରେ ମୁଁ କହିବି । ଏ ରାଜ୍ୟର ଋଣ ପରିସ୍ଥିତି ବିଷୟ ଉପରକୁ ନଜର ପକାଇଲେ ଦେଖିବେ ଯେ 1969 ଏପ୍ରିଲ ପହିଲାରେ ବାକିଥିବା ଋଣ ଥିଲା ଟ. 4,16,71·64 ଲକ୍ଷ । 1970 ଏପ୍ରିଲ ପହିଲାରେ ବାକିଥିବା ଅଙ୍କଟା ହେଉଛି ଟ. 4,46,04·88 ଲକ୍ଷ ଓ 1971 ଏପ୍ରିଲ ପହିଲାରେ ବାକିଥିବା ଅଙ୍କଟା ହେଉଛି ଟ. 4,42,17·06 ଲକ୍ଷ । ଶାସନ କଳକୁ ଆସିବା ପୂର୍ବରୁ ଆମର ମୁଖ୍ୟମନ୍ତ୍ରୀଙ୍କ ଦଳ ଓ ତାଙ୍କ ସହିତ ଯେଉଁ ଦଳ ମିଶିଛନ୍ତି ସେମାନେ କହୁଥିଲେ ଯେ ଓଡ଼ିଶାର ଋଣ ବହୁତ ହୋଇଗଲାଣି, ଏ ଋଣ କିପରି ସୁଝାଯିବ ତା'ର କିଛି ବ୍ୟବସ୍ଥା ହେଉ ନାହିଁ ଓ ଏ ରାଜ୍ୟର ଆର୍ଥିକ ପରିସ୍ଥିତି ସୁଧାରିବା ପାଇଁ ସେ ଦିଗରେ କିଛି ବ୍ୟବସ୍ଥା କରାଯାଉ ନାହିଁ କିନ୍ତୁ ଏମାନେ ଆସିଲା ପରେ ଆମେ ଦେଖୁଛୁ ଯେ ଏ ରାଜ୍ୟର ଆର୍ଥିକ ପରିସ୍ଥିତି ସୁଧାରିବା ପାଇଁ କିଛି କରାଯାଉ ନାହିଁ । ଏ ଋଣ କମିବା ପରିବର୍ତ୍ତେ ଆପଣ ଦେଖୁଥିବେ କିପରି ଏହା ବଢ଼ି ବଢ଼ି ଚାଲିଛି । ଏମାନେ ନିଜେ ଯେଉଁ ପ୍ରତିଶ୍ରୁତି ଦେଇଥିଲେ ତାକୁ ମଧ୍ୟ ଏମାନେ ରକ୍ଷା କରିପାରି ନାହାଁନ୍ତି । ନିର୍ବାଚନ ଇସ୍ତାହାରରେ ଆମର ମୁଖ୍ୟମନ୍ତ୍ରୀ ଯେଉଁ 21ଦଫା ପ୍ରତିଶ୍ରୁତି ଦେଇଥିଲେ ସେଥିପ୍ରତି ଆପଣ ଦୃଷ୍ଟି ଦିଅନ୍ତୁ । ତା ଭିତରୁ କେତୋଟି ପାଳନ କରିଛନ୍ତି ବିଚାର କରାଯାଉ । ଗୋଟିଏ କମିଶନ ନିଯୁକ୍ତି ଓ ଭୂ-ରାଜସ୍ୱ ଛାଡ଼ ଏ ଦୁଇଟି କେବଳ କରାଯାଇଛି । ଏହା ପଛରେ ରାଜନୈତିକ ଦୃଷ୍ଟିକୋଣ ରହିଛି । ଭୂ-ରାଜସ୍ୱକୁ ଛାଡ଼ କରି ନିଜ ରାଜ୍ୟର ସମ୍ବଳକୁ ବରବାଦ କରିଛନ୍ତି । ଏହି 2ଟିକୁ ଛାଡ଼ିଦେଲେ ସେ 21ଦଫା ଭିତରୁ ଆଉ କୌଣସି ଦଫାକୁ କାର୍ଯ୍ୟକାରୀ କରାଯାଇଛି କି ? ଏବେ ସମୟରେ କୁହାଯାଉଛି ଯେ 21 ଦଫା ପ୍ରତିଶ୍ରୁତିକୁ ପର୍ଯ୍ୟାୟକ୍ରମେ ପାଳନ କରାଯାଉଛି, କିନ୍ତୁ ଇତିମଧ୍ୟରେ 3 ବର୍ଷ ବିତି ଯାଇଥିଲେ ମଧ୍ୟ ଯାହା ନିର୍ବାଚନ ପ୍ରତିଶ୍ରୁତି ଏମାନେ ଦେଇଥିଲେ ତାକୁ ଏପର୍ଯ୍ୟନ୍ତ ପୂରଣ କରିପାରି ନାହାଁନ୍ତି । ଅନ୍ୟ ଯେଉଁ କଥା ବା କହିଛନ୍ତି କୌଣସିଥିରେ କିଛି ଉନ୍ନତି ହୋଇନାହିଁ । ଶିକ୍ଷା କଥା, ଶିଳ୍ପ କଥା, କୃଷି କଥା ଓ ରାଜ୍ୟର ଅର୍ଥନୈତିକ ଉନ୍ନତି କଥା ବିଚାର କଲେ ଜଣାପଡ଼ିବ ଯେ ପୂର୍ବେ ଯେଉଁ ପରିସ୍ଥିତି ଥିଲା ଆଜି ମଧ୍ୟ ସେହି ପରିସ୍ଥିତି ରହିଛି ।

ତା'ପରେ ଆପଣ ଦେଖିବେ ଦରମା କମିଶନ କଥା ସରକାର କହୁଛନ୍ତି । ଯେଉଁ ଦରମା କମିଶନ ବସାଯାଇଥିଲା ସେମାନେ ଯେଉଁ report ଦେଇଛନ୍ତି ତାକୁ କାର୍ଯ୍ୟକାରୀ କରିବାକୁ ସରକାର ଯାଉଛନ୍ତି ଓ ତାକୁ କାର୍ଯ୍ୟକାରୀ କରିବା ସକାଶେ ଆମର କେତେକ ଟଙ୍କା

ଆବଶ୍ୟକ ତାହା ବଜେଟରେ କରାଯାଉଛି ବୋଲି ସେ କହୁଛନ୍ତି । ଆପଣ ଜାଣନ୍ତି, ଯେଉଁ report ଦରମା କମିଶନ ଦେଇଛନ୍ତି ସେଥିରେ ବହୁତ ବିଭ୍ରାଟ ଘଟିଛି । ପ୍ରତି ବିଭାଗରୁ କିଛି ନା କିଛି ଅଭିଯୋଗ ଆସୁଛି । ଯାହା ସାଧାରଣତଃ ଦେଖାଯାଉଛି Secretariat, Heads of Departments ଓ District heads ମାନଙ୍କର ଯାହା ମୌଳିକ ଅସୁବିଧା ରହୁଛି ତାକୁ ଛାଡ଼ି ଦେଲେ ଅନ୍ୟ କେତେକ ଦୃଷ୍ଟାନ୍ତ ପ୍ରତି ମୁଁ ଆପଣଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଚାହେଁ । ସେ କେବଳ Cadre Cadre ଭିତରେ ନୁହେଁ, ଦରମାହାର ଭିତରେ ମଧ୍ୟ ତାରତମ୍ୟ ରହୁଛି । ସମାନ Cadre ରେ pay scale ଓ ମହଙ୍ଗା ଭତ୍ତାରେ ଯେଉଁ ଅନ୍ତର ରହୁଛି ସେଇ କଥାନେଇ cabinet sub-committee ପାଖରେ ବହୁତ ବିଭାଗରୁ ଅଭିଯୋଗ ପଡ଼ୁଛି । ମୁଁ ଜାଣେ ନାହିଁ cabinet sub-committee ସେ ସମ୍ପର୍କରେ କ'ଣ ବିଚାର କରିଛନ୍ତି । କିନ୍ତୁ ମୋ ପାଖକୁ ଯେତକ ଆସିଥିଲା ମୁଁ ସେଥିରୁ ବୁଝିଛି ଯେ ଯୁକ୍ତିମୂଳକ କାରଣ ସେ ସବୁଥିରେ ଅଛି । କେବଳ, ସେମାନଙ୍କର ଦରମାହାର ବଢ଼ାଇବା କଥା । Sub-committee କ'ଣ ମତ ଦେଇଛନ୍ତି ମୁଁ ଜାଣେ ନାହିଁ । ତେବେ ସେସବୁ ପୁଣି cabinetକୁ ଯିବ ଓ ସେଥିରେ ବିଚାର ହେବ । ମୁଁ ସେହି ହେତୁରୁ ଗତକାଲି କହୁଥିଲି ଯେ Heads of Departmentରେ ଯେଉଁମାନେ କାମ କରୁଛନ୍ତି ସେମାନଙ୍କର ଦରମାଗତ ତାରତମ୍ୟ ରହୁଛି । ମୁଁ କହୁଛି କାହିଁକି ସେ ତାରତମ୍ୟ ରହିବ । କେତେକ Heads of Department ଅଛି ଯେଉଁଗୁଡ଼ିକ composite office ହୋଇ Secretariat ସ୍ୱତନ୍ତ୍ର ଭଳିଆ କାର୍ଯ୍ୟ କରୁଛନ୍ତି । ଆଉ କେତେଗୁଡ଼ିଏ ବିଭାଗ ଅଛି ଯେଉଁମାନେ କି composite office ଭଳିଆ କାମ କରୁ ନାହିଁ । ମୋର କହିବାର କଥା ଯେ ଯେଉଁସବୁ office ମାନଙ୍କରେ nature of the work ଓ work load ଏକା ଓ composite office ଭଳିଆ ଯେଉଁମାନେ କାମ କରୁଛନ୍ତି ଓ ଯେଉଁସବୁ Heads of Departmentର କର୍ମଚାରୀମାନେ ଏକା load ର ଓ ଏକା natureର କାମ କରୁଛନ୍ତି, ସେ କର୍ମଚାରୀମାନଙ୍କ ମଧ୍ୟରେ ଦରମା ଓ ଭତ୍ତାରେ କାହିଁକି ତାରତମ୍ୟ ରହିବ ମୁଁ ବୁଝିପାରୁ ନାହିଁ । ବିହାର, ବଙ୍ଗଳା ଓ ଅନ୍ୟାନ୍ୟ ରାଜ୍ୟମାନଙ୍କରେ ଦରମାହାର ଯେଉଁଭଳି ହୋଇଛି ଆମ ରାଜ୍ୟରେ ମଧ୍ୟ ସେଭଳି କରିବା ଉଚିତ । ବିହାରରେ ଯାହା ହୋଇଛି ଯେତେଦୂର ପାରୁପାଏ ସେମାନେ Cadre ସଂଖ୍ୟାକୁ କମାଇବାକୁ ଚେଷ୍ଟା କରିଛନ୍ତି । Nature of work ଓ work-load ସମାନ ଥିଲେ ତାକୁ ଏକ Cadre କରିବା କଥା । ଏପରି ହେଲେ Cadro କମାଇ ଦିଆଯିବ । ତାହା ନକରି ପ୍ରତ୍ୟେକକୁ ଗୋଟିଏ ଗୋଟିଏ ଭିନ୍ନ Cadre ଓ ଅଲଗା ଅଲଗା ଦରମାହାର ସ୍ଥିରୀକୃତ କରିଦେବାଫଳରେ କର୍ମଚାରୀମାନଙ୍କ ମଧ୍ୟରେ heart burning ହେଉଛି । ଏ Cadreକୁ ଯେତେଦୂର କମେଇବା କଥା ତାକୁ କମାଇବା ଆମର sub-committeeର କର୍ତ୍ତବ୍ୟ ଥିଲା । ମାତ୍ର ତାହା ହୋଇ ନାହିଁ ।

ସେଥିରେ କଅଣ anomaly ରହୁଛୁ ଆମର ଜାଣିବାର ଉପାୟ ନାହିଁ । ମୋର କହିବାର କଥା policy ହିସାବରେ ସେମାନଙ୍କ ଯେଉଁ ବର୍ଦ୍ଧିତ ଦରମା ଦିଆଯିବ ବର୍ତ୍ତମାନ ତା ନ ଦାଇ ତା 1-4-1969 ଠାରୁ ଦିଆଯାଉ । ତା ନ ହେଲେ ଗୋଟିଏ ଅନ୍ୟାୟ କାର୍ଯ୍ୟ ହେବ, ସେଥିପାଇଁ ସରକାର କୌଣସି explanation ଦେଇପାରିବେ ନାହିଁ । ସେ ସମ୍ପର୍କରେ ମୋର ଆଉ ଗୋଟିଏ କଥା କହିବାର ଅଛି । ସରକାର କହୁଛନ୍ତି କର୍ମଚାରୀମାନଙ୍କର ପୁରାତନ ଦରମାହାର ଓ ନୂତନ ଦରମାହାର ମଧ୍ୟରେ ଯେଉଁ ପ୍ରଭେଦ ହେବ ସେ ବାବଦ ସମସ୍ତ ବକେୟା ପ୍ରାପ୍ୟ ନଗଦ ଟଙ୍କା ଆକାରରେ ନ ଦେଇ ସେମାନଙ୍କ ଭବିଷ୍ୟନିଧିରେ ଜମା ଦିଆଯିବ । ଆଜି କର୍ମଚାରୀମାନଙ୍କର ଅବସ୍ଥା ଯାହା, ସେମାନେ ଆଶା କରୁଥିଲେ ଏହି ଫଳରେ ସେମାନେ ଯାହା କିଛି ଟଙ୍କା ପାଇବେ, ନିଜର ଧାର ଉଧାର ବା ଋଣ ପରିଶୋଧ କରିଥାନ୍ତେ । ଆମର ସ୍ୱଳ୍ପ ବେତନଭୋଗୀ କର୍ମଚାରୀମାନଙ୍କର ଦୈନନ୍ଦିନ ଜୀବନଯାତ୍ରା ଅତ୍ୟନ୍ତ ଦୁର୍ବିସହ ହୋଇ ଉଠିଲାଣି । ସରକାର ସମସ୍ତ ବକେୟା ଦେୟ ଭବିଷ୍ୟନିଧିରେ ଜମା ନ ଦେଇ ଶତକଡ଼ା 50 ଭାଗ ଜମା ରଖନ୍ତୁ, ଏବଂ ଅବଶିଷ୍ଟ 50 ଭାଗ ନଗଦ ଆକାରରେ ଦିଅନ୍ତୁ । ତା'ହେଲେ କର୍ମଚାରୀଙ୍କ ଭିତରେ ଯେଉଁ ଅସନ୍ତୋଷ ଉପୁଜୁଛି ତାହା ଦୂର ହେବ ।

କୃଷି କ୍ଷେତ୍ରରେ ଉତ୍ପାଦନ ବୃଦ୍ଧି ପାଇଁ କିଛି ବ୍ୟବସ୍ଥା ହେଉଛି ବୋଲି ସରକାର କହୁଛନ୍ତି । ଉପାଧ୍ୟକ୍ଷ ମହାଶୟ, ଆପଣ ଜାଣନ୍ତି ଆମ ରାଜ୍ୟର ମୋଟ ଆୟର ଶତକଡ଼ା 60 ଭାଗ କୃଷିରୁ ଆସେ ଏବଂ କୃଷି କାର୍ଯ୍ୟରେ ଶତକଡ଼ା 75 ଜଣ ଲୋକ ନିୟୋଜିତ ଅଛନ୍ତି । ତେଣୁ ରାଜ୍ୟର ଜାତୀୟ ଆୟ ବଢାଇବାପାଇଁ ହେଲେ ନିଶ୍ଚିତଭାବରେ କୃଷପ୍ରତି ଦୃଷ୍ଟି ଦେବାକୁ ହେବ । ରାଉରକେଲା ଇସ୍ପାତ ବା ସୁନାବେଡା ମିଗ୍‌ପରି କେତେକ କାରଖାନା ବସାଇ ଦେଲେ ଓଡ଼ିଶାର ଜାତୀୟ ଆୟ ବଢ଼ିଯିବ, ଏ ଭାବନା ଭୁଲ । ଅବଶ୍ୟ ବେକାରୀ ସମସ୍ୟାର କିଛିତ ସମାଧାନ ହୋଇପାରେ । କିନ୍ତୁ ତଦ୍ୱାରା କୃଷିରେ ନିର୍ଭର କରୁଥିବା ଶତକଡ଼ା 75 ଚାଷୀଙ୍କର ହିତସାଧନ ହୋଇପାରିବ ନାହିଁ । 2ଟି କାରଣରୁ କୃଷିକୁ ପ୍ରାଧାନ୍ୟ ଦେବା କଥା । ଗୋଟିଏ ହେଲା—ରାଜ୍ୟର ନଅଣ୍ଟିଆ ଖାଦ୍ୟ ପରିସ୍ଥିତି ସୁଧାରିବା ଏବଂ ଦ୍ୱିତୀୟଟି ହେଲା ଚାଷୀଙ୍କର ମୁଣ୍ଡପିଛା ଆୟ ବଢାଇବା । କୁହାଯାଉଛି ଏ ଦେଶରେ ସବୁଜ ବିପ୍ଳବ ଚାଲିଛି । ମୋର କାଣିବାର କଥା ସବୁଜ ବିପ୍ଳବପାଇଁ ଆମର ଲକ୍ଷ୍ୟ କେତେ ଏବଂ କେତେଦୂର ଆମେ ସେ ଲକ୍ଷ୍ୟ ସ୍ଥଳରେ ପହଞ୍ଚି ପାରିଛୁ । ଏଭଳି target ନ ରଖିଲେ ଆମେ ଆମର ଲକ୍ଷ୍ୟରେ ପହଞ୍ଚି ପାରିବା ନାହିଁ । ଭୂ-ସଂସ୍କାର ଗୋଟିଏ ଅତି ମୌଳିକ ସମସ୍ୟା ଯାହାର ସମାଧାନ ଏ ଯାଏଁ ହୋଇ ପାରିଲା ନାହିଁ । ସରକାର କୈଫିୟତ ଦେଉଛନ୍ତି କି ସୁପ୍ରିମ୍ କୋର୍ଟରେ ଭୂସଂସ୍କାର ଆଇନର କେତେଗୁଡ଼ିଏ ଧାରା ବିଚାରାଧୀନ ଅଛି

ଏବଂ ସେସବୁ ବସ୍ତୁର ନ ସରଲେ କିଛି ହୋଇପାରିବ ନାହିଁ । ମୁଁ ଦେଖୁଛି ସରକାରଙ୍କର ସେ ଦିଗରେ ଆଗ୍ରହ ନାହିଁ । ମୁଖ୍ୟମନ୍ତ୍ରୀ ସମ୍ମିଳନୀରେ ମଧ୍ୟସତ୍ୱାଧିକାରୀ ଲୋପ କରିବାପାଇଁ ଏବଂ ଜଟିଳ ଜମିଜମା ସମସ୍ୟା ଦୂର କରିବାପାଇଁ ପ୍ରଧାନମନ୍ତ୍ରୀ ପରାମର୍ଶ ଦେଇଥିଲେ । ମୁଁ ଜାଣେନି ଆମ ରାଜ୍ୟ ସରକାର ସେ ଦିଗରେ କି ପଦକ୍ଷେପ ନେଇଛନ୍ତି । ଏହି ଭୂ-ସମସ୍ୟାରୁ ବହୁ ଜଟିଳ ସମସ୍ୟା ସୃଷ୍ଟି ହେଉଛି । ବିଶେଷକରି ଆଦିବାସୀ ଅଞ୍ଚଳରେ । ଆଦିବାସୀମାନଙ୍କ ଭିତରେ ଆଜି ଚେତନା ଜାଗ୍ରତ ହୋଇଛି । ମଣିଷଭଳି ବଞ୍ଚି ରହିବାର ଦାବି ସାବ୍ୟସ୍ତ କରିବାକୁ ସେମାନେ ଯାଉଛନ୍ତି । ତାଙ୍କର ଦାବି ପୂରଣ କରିବା ପ୍ରଗ-ତିଶୀଳ ସରକାରର କର୍ତ୍ତବ୍ୟ । ଯେଉଁମାନେ ଆଜି ପର୍ଯ୍ୟନ୍ତ ଦଳିତ ଓ ନିଷ୍ପେଷିତ ହୋଇଥିଲେ ଯୁଗ ଯୁଗ ନିଷ୍ପେଷଣରେ ଖାଦ୍ୟ ହୋଇଥିଲେ, ସେମାନଙ୍କର ଦାବି ପୂରଣ କରିବା ପ୍ରତି ସଭ୍ୟ ସରକାରଙ୍କର କର୍ତ୍ତବ୍ୟ । ସେମାନଙ୍କୁ ଅସଭ୍ୟ ଏବଂ ଅମଣିଷ କରି ରଖିବା ଉଚିତ୍ ନୁହେଁ । ମୁଁ କେବଳ ସେହିମାନଙ୍କପାଇଁ କହୁନାହିଁ, ଯେଉଁମାନେ ଜମିହୀନ ଚାଷୀ, ଯେଉଁମାନେ landless labourer, ସେମାନଙ୍କପାଇଁ ଭୂ-ସମସ୍ୟା ସମାଧାନ ନ ହେଲେ ଆମର ଉତ୍ପାଦନ ବୃଦ୍ଧି ହେବ ନାହିଁ ।

ଉପାଧ୍ୟକ୍ଷ ମହାଶୟ, ଦେଶରେ ବୁଝିବା କି ନିକଟରେ ବୁଝିବା ଯେଉଁମାନେ ସରକାରୀ ଦଳରେ ବସିଛନ୍ତି ସେମାନେ ଜାଣନ୍ତି । ଏ 3 ବର୍ଷ ଭିତରେ ସେମାନେ ସେ ଦିଗରେ ଯଦି ଗୋଟିଏ ପଦକ୍ଷେପ ନେଇ ଥାଆନ୍ତେ ମୁଁ ବୁଝିଥାନ୍ତି ସେମାନଙ୍କର ଶ୍ରଦ୍ଧା ଅଛି । ଢେଙ୍କାନାଳର ମାନ୍ୟବର ସଭ୍ୟଙ୍କୁ ମୁଁ ପଚାରୁଛି ସେ ତାଙ୍କ ଦଳର ନେତାଙ୍କୁ ପଚାରନ୍ତୁ ଏଦିଗରେ 3 ବର୍ଷ ଭିତରେ କ'ଣ କାମ ହୋଇଛି ? ଜଳସେଚନର ବ୍ୟବସ୍ଥା ନ କରି ଉନ୍ନତ ବିହନ ଯୋଗାଇବା, ଉନ୍ନତ ଯନ୍ତ୍ରପାତି ଯୋଗାଇବା ଏସବୁ ଦ୍ୱାରା କୃଷିର ଉନ୍ନତି ଆପେ ଆପେ ହୋଇଯିବ, ଏହା ଅବାସ୍ତବ କଥା । ଯେଉଁମାନେ ଜମିରେ ଖଟୁଛନ୍ତି, ସେମାନଙ୍କୁ ଜଳସେଚନ ଯୋଗାଇ ଦେବାକୁ ହେବ । କେତେଗୁଡ଼ିଏ ମଧ୍ୟମ ଜଳସେଚନ ଯୋଜନା ଆଜିକୁ 15 ବର୍ଷଧରି ଚାଲିଛି । ଘୋଡାହାଡ଼, ବାହୁଦା ବହୁବର୍ଷ ହେଲା ଚାଲିଥିଲେ ମଧ୍ୟ ସମ୍ପୂର୍ଣ୍ଣ ହୋଇ ନାହିଁ । ରାଜ୍ୟପାଳଙ୍କ ଭାଷଣ ଉପରେ ମୁଁ କହିଥିଲି ଏସବୁ ଯୋଜନା ଯେତେ ଶୀଘ୍ର ସମ୍ପୂର୍ଣ୍ଣ ହେବ ଚାଷୀମାନେ ସେତିକି ଶୀଘ୍ର ଜଳ ପାଇବେ । ପୋଡ଼ୁ ଅଞ୍ଚଳ ଲୋକେ ଜଳ ପାଇଲେ ଖାଦ୍ୟ ଉତ୍ପାଦନ ବଢ଼ିବ ଏବଂ ଚାଷୀଙ୍କର ଆୟ ବଢ଼ିବ । ଛୋଟଜଳସେଚନ ଯୋଜନା ମଧ୍ୟ ଖାମଖିଆଲି ଚାଲିଛି । କେତେଗୁଡ଼ିଏ ଅସମ୍ପୂର୍ଣ୍ଣ Lift Irrigation ଯୋଜନା ଅଛି । ସେହିପରି Minor Irrigation, ଓଡ଼ିଶାରେ ବହୁତ ଅଞ୍ଚଳ ଅଛି ଯେଉଁଠାରେ flow irrigation ସୁବିଧା ନାହିଁ । ସେ ଅଞ୍ଚଳରେ ପୋଡ଼ୁ ହେଉଛି । ସେ ଅଞ୍ଚଳରେ lift irrigation ସୁବିଧା କଲେ ପୋଡୁରୁ ରକ୍ଷା ମିଳିବ ଏବଂ ଉତ୍ପାଦନ ବଢ଼ିବ । ଏଥିପାଇଁ ଏହାକୁ

ତାହାଦ୍ୱାରା ଅନ୍ତତଃ ସେଠି ଲୋକେ ଏକାଠି ହେବେ ଏବଂ ତା'ର ଉନ୍ନତ ପ୍ରଧାନ ହୋଇପାରିବ । ଏହି ଦୃଷ୍ଟିରୁ ଆମେ ଗୋଟିଏ Co-operative Training College ସେଠାରେ ରଖିଥିଲୁ । ତାଙ୍କୁ ମଧ୍ୟ ସେଠାରୁ ସ୍ଥାନାନ୍ତରିତ କରି ଦିଆଗଲା । ସେତେବେଳେ ଗାଡ଼ି ସେଠାକୁ ଚେୟାର ଟେବୁଲ୍ ଆଣିବାକୁ ଗଲା ସେତେବେଳେ ବୁଝାଗଲା ଯେ ଏସବୁ ବାଉଁସ'ହା ଖାଁଙ୍କ ମିଟିଂ ପାଇଁ ନିଆଯାଉଛି । ଏହିପରିସ୍ଥିତିରେ ସେଠାରେ ଯାହାସବୁ ଆସବାବପତ୍ର ସବୁ ଥିଲା ତାଙ୍କୁ ଉଠାଇ ନିଆଗଲା ଯେ ଏ ଟ୍ରେନିଂ କଲେଜ ଏଠାରୁ ହଟି ଯାଉଛି । ଆପଣମାନେ ଯଦି ନ ଯିବେ ତାହାହେଲେ ବରଖାସ୍ତ ହେବେ । ଆପଣ ଜାଣନ୍ତି ଏଥିପାଇଁ ଟଙ୍କା ଦେଉଛି National Co-operative Union ଏବଂ ସେହି National Co-operative Unionକୁ ନ ପଚାରି ଏବଂ Concerned Boardର ବିଚାର କରି କୌଣସି ପ୍ରସ୍ତାବ ଗ୍ରହଣ କରିବା ପୂର୍ବରୁ କୌଣସି ଜଣେ ବ୍ୟକ୍ତି ଯିଏ କି ନିଜକୁ State Co-operative Unionର ସଭାପତି ବୋଲି କହୁଛନ୍ତି, ତାଙ୍କର ନିର୍ଦ୍ଦେଶକ୍ରମେ ଏ କାର୍ଯ୍ୟ ହେଉଛି । ଏହା ବଡ଼ ଆଶ୍ଚର୍ଯ୍ୟର କଥା । ଅଫିସରମାନେ ମଧ୍ୟ ଏ ସରକାରର ଅଦ୍ଭୁତ ଦେଲଭଳି କାର୍ଯ୍ୟ କରିଛନ୍ତି । ସେମାନେ ଭୁଲି ଯାଉଛନ୍ତି ଯେ in a Democracy, civil service must be aloof from politics. ଗଣତନ୍ତ୍ରରେ ଦଳ ଯିବ ଓ ଦଳ ଆସିବ । ଏ ଯେଉଁ ଦଳ ଶାସନ କଳରେ ଅଛନ୍ତି ସବୁଦିନେ ଏ ଦଳ ଶାସନ କଳରେ ରହିବ ନାହିଁ । ଅମର ଯେଉଁମାନେ Serviceରେ ଅଛନ୍ତି ସେମାନେ ଯଦି ଏ କଥା ଭୁଲିଯିବେ ଏବଂ ଆଜ୍ଞାଧୀନମାନେ ଶାସନ କଳରେ ଅଛନ୍ତି ସେମାନଙ୍କର ସ୍ୱାର୍ଥ ପୂରଣ କରିବାପାଇଁ ଯଦି ଏମାନେ ଚେଷ୍ଟିତ ହେବେ ତାହାହେଲେ democracy function କରିପାରିବ ନାହିଁ । ମୁଁ ଆପଣଙ୍କୁ କେବଳ ଗୋଟିଏ ଉଦାହରଣ ଦେଲି । ଏହିପରି କାର୍ଯ୍ୟ ଯଦି ହେବ ତାହାହେଲେ ଆମର democracy ରହିବ ନାହିଁ ଏବଂ ଆମର ଆନ୍ଦୋଳନ ମୂଳରେ କୁଠାରଘାତ ହେବ । ଯେଉଁ ସମବାୟ ଆନ୍ଦୋଳନ ଉପରେ ଆମେ ଏତେ ଭରସା କରୁଛୁ, ଏପରି କାର୍ଯ୍ୟ ଦ୍ୱାରା ତାହା ମୂଳରୁ ଧ୍ୱଂସ ପାଇବ ।

ଉପାଧ୍ୟକ୍ଷ ମହୋଦୟ, ପରିବହନ ଓ ଯୋଗାଯୋଗ କଥା କେବଳ ଉଲ୍ଲେଖ କରାଯାଇଛି । ଏଥିପାଇଁ କେତେ ଟଙ୍କା ମଧ୍ୟ ବ୍ୟବସ୍ଥା ହୋଇଛି । କଟକଠାରୁ ପାରାଦୀପ ପର୍ଯ୍ୟନ୍ତ ରେଳ ରାସ୍ତା ହେଉଛି । ଏହା ସୁଖର କଥା । ତା'ଛଡା ଆମର ଅନ୍ୟ ଗୋଟିଏ ରେଳ ରାସ୍ତା ସର୍ଭେ ମଧ୍ୟ ହେଉଛି । ଏହା ବି ଆନନ୍ଦର କଥା । କିନ୍ତୁ ଗୋଟିଏ ଦୁଃଖର କଥା ରହିଗଲା ଯେ ଗୋପାଳପୁରଠାରୁ ଗୋଟିଏ ରେଳ ରାସ୍ତା ପଡ଼ିବାପାଇଁ ବହୁ ଅଞ୍ଚଳକୁ ପରିକଳ୍ପନା ହୋଇଥିଲା । ଗୋପାଳପୁର, ଫୁଲବାଣୀ, ଭଞ୍ଜନଗର ଭଳି ଯେଉଁ ଅଞ୍ଚଳରେ ରେଳ ରାସ୍ତାର ସୁବିଧା ନାହିଁ ସେ ଅଞ୍ଚଳରେ ରେଳ ରାସ୍ତା ପଡ଼ିବା ଦ୍ୱାରା, ବୌଦ୍ଧ-ଫୁଲବାଣୀ

ଏବଂ ଗଞ୍ଜାମର ଜଗନ୍ନାଥ ପ୍ରସାଦ, ଭଞ୍ଜନଗର ଇତ୍ୟାଦି ସ୍ଥାନରୁ ବନଜାତ ଦ୍ରବ୍ୟ ଅମେ ସହଜରେ ବାହାରକୁ ରପ୍ତାନି କରିପାରିବା । ଏ ଯୋଜନା କଥା ମୋଟେ ଉଲ୍ଲେଖ ନାହିଁ । ଆପଣ ଜାଣନ୍ତି ଗୋପାଳପୁରରେ ଗୋଟିଏ କ୍ଷୁଦ୍ର ବନ୍ଦର ହେବାର ପ୍ରସ୍ତାବ ଅଛି । ଏହା ଗୋପାଳପୁରରେ ହେବ କି ଶୁନ୍ଦବାଲିରେ ହେବ ତାହା ବର୍ତ୍ତମାନ ପର୍ଯ୍ୟନ୍ତ ସ୍ଥିର ହୋଇନାହିଁ । ମୋର ମତ ଗୋପାଳପୁରରେ ବନ୍ଦର ହେବା ଦ୍ୱାରା ସେ ସ୍ଥାନର ଗୁରୁତ୍ୱ ବଢିବ । ସେହି ଦୃଷ୍ଟିରୁ ଆମର ଏବେବି ରେଲ ଲାଇନ କଥା କେନ୍ଦ୍ର କରି ଯୋଜନା ହେବାକଥା ଏବଂ ଏ ବିଷୟରେ ଭାରତ ସରକାରଙ୍କ ସଙ୍ଗେ ଲଢିବା କଥା । ଉଭୟ କାର୍ଯ୍ୟ ଏକ ସଙ୍ଗରେ ହୋଇପାରିଥାନ୍ତା । ଆମେ ପଛେଇଗଲେ । ଯଦିଓ ଗୋପାଳପୁରଠାରୁ ବୌଦ୍ଧ-ଫୁଲବାଣୀ ପର୍ଯ୍ୟନ୍ତ ରେଲ ରାସ୍ତା ପକାଇବାପାଇଁ ଆଗରୁ ଦାବି ହୋଇଛି ତଥାପି ଏ ବିଷୟ ଚିତ୍ରଟିର ସହିତ ବିଚାରକୁ ନଆଗଲା ନାହିଁ । ସେ ଯାହା ହେଉ ଦେରି ହେଲେ ମଧ୍ୟ ଅମେ ଯଦି ଏହି ଯୋଜନାକୁ କେନ୍ଦ୍ର ସରକାରଙ୍କଠାରେ ଉପସ୍ଥାପନ କରିବା ଏବଂ ଏହାର ଗୁରୁତ୍ୱ ବୁଝାଇବା ତାହାହେଲେ ମୋର ଦୃଢ଼ ଧାରଣା ଏହାକୁ କାର୍ଯ୍ୟକାରୀ କରିବାକୁ ଅନ୍ତତଃପକ୍ଷେ ସର୍ଭେ କରିବାକୁ କେନ୍ଦ୍ର ସରକାର ଆଦେଶ ଦେବେ । ମୋର ଅନୁରୋଧ ମୁଖ୍ୟମନ୍ତ୍ରୀ ନିଜେ ଏହାକୁ take up କରନ୍ତୁ ଏବଂ କେନ୍ଦ୍ରକୁ ଲେଖନ୍ତୁ ।

× × ×

ପରିବହନ ଓ ଯୋଗାଯୋଗ କଥା କହୁଥିଲି । ଏ ଦୁଇଟି ହେଉଛି ଆମର ଅର୍ଥନୈତିକ ଆଧାରର ପନ୍ଥା । ବର୍ତ୍ତମାନ ଯାହା ଦେଖାଯାଉଛି, ପୁରୁଣା ବସ୍‌ଗୁଡ଼ିକୁ ବାହାର କରି ନୂଆ ନୂଆ ବସ୍ ଚଲାଇଲେ ଆମର ଆୟ ବଢିବ । ସରକାର ବର୍ତ୍ତମାନ ଦେଖୁଛନ୍ତି କେତେକ routeରେ କ୍ଷତି ହେଉଛି । ସେଥିପାଇଁ ସେ routeମାନଙ୍କରୁ ସରକାରୀ ବସ୍ ଉଠାଇଦେବାପାଇଁ ସରକାର କହୁଛନ୍ତି । ଏହି କ୍ଷତି ହେବାର 2ଟି କାରଣ ଅଛି । ଗୋଟିଏ ହେଉଛି leakage, ଏ leakage ପାଇଁ ଏ ଅନୁଷ୍ଠାନରେ ଯେ top most officer ଏବଂ ଯାହାକୁ ଆମେ depute କରି ପଠାଉଛୁଁ ସେ ଦାୟୀ । ଏହି commercial concernକୁ ଆମେ ଅଭିଜ୍ଞ ଅଫିସରମାନଙ୍କୁ depute କରି ପଠାଉଛୁ । ତାଙ୍କର ଚରିତ୍ର ଓ ଦକ୍ଷତା କଥା ବିଚାରକୁ ନ ନେଇ ଆମେ ଯାହାକୁ ପାରୁଛୁଁ ତାକୁ ପଠାଉଛୁ । ମୋତେ ଜଣେ କହିଲେ ଯେ ଯାହାଙ୍କ ସମୟରେ କ୍ଷତି ହେଉଛି ତାକୁ transfer କରି ଦେଲେ ଭଲ ହେବ । ମୁଁ କହିଲି transfer କଲେ ସମାଧାନ ହେବ ନାହିଁ । There must be regular charge-sheet against him. ସେ କେଉଁ କେଉଁ କାର୍ଯ୍ୟ କରିଛନ୍ତି ଏବଂ ଯାହା ଫଳରେ କ୍ଷତି ହେଲା ସେ କଥା ତାଙ୍କୁ ଜଣାଇ ନ ଦେଲେ commercial concern

ମାନଙ୍କର ସବୁବେଳେ କ୍ଷତି ହେଉଥିବ । ସେଥିପାଇଁ ମୋର କହିବାର କଥା ଯେ ଏ commercial concern ମାନଙ୍କପାଇଁ ଗୋଟିଏ separate cadre ତିଆରି କରିବାକୁ ହେବ । ସେମାନଙ୍କର Conduct Rule, Service Condition ଏବଂ Scale of pay ଅଲଗା ହେବ । ଏହିପରିଭାବରେ ବ୍ୟବସ୍ଥା ହେଲେ ଆମେ commercial concernକୁ ପରିଚାଳନା କରିବାପାଇଁ ଯୋଗ୍ୟ ଲୋକ ପାଇବୁ ଏବଂ commercial concernଗୁଡ଼ିକ ଲାଭଜନକ ହେବ । ଏବେ O. R. T. ଓ S. T. C.ର କେତେକ route denationalise କରିବା କଥା କୁହାଯାଉଛି । ଅନେକ ସମସ୍ତଙ୍କର କର୍ମଚାରୀମାନଙ୍କ ମନରେ ଆଶଙ୍କା ହେଉଛି ଯେ 10/15 ବର୍ଷ ଚାକିରି କଲାପରେ ବି ସେମାନଙ୍କର ଚାକିରି ଚାଲିଯାଇପାରେ । ସେହି routeରେ କ୍ଷତି ହେବା ଯୋଗୁଁ denationalise କରାଯାଉଛି । କଣ୍ଟ୍ରାକ୍ଟ କ୍ୟାରେଜମାନଙ୍କୁ ଅବିଚାରିତଭାବରେ ଲାଇସେନ୍ସ ଦେବାଦ୍ୱାରା କମ୍ପିଟେସନ ହେଉଛି ଏବଂ ଫଳରେ ଆମର କ୍ଷତି ହେଉଛି । ଅବଶ୍ୟ ମୁଖ୍ୟମନ୍ତ୍ରୀ କହିଲେ ଯେ ଆମର ଯାତ୍ରୀମାନଙ୍କର ବ୍ୟବସ୍ଥା କରିବାପାଇଁ ଏହା କରିବାକୁ ପଡ଼ୁଛି । ମୁଖ୍ୟମନ୍ତ୍ରୀ ତାଙ୍କ ଭାଷଣରେ କହିଛନ୍ତି ଆମେ 20 ଲକ୍ଷ ଟଙ୍କା ଆଣିବୁ, ନୂତନ ବସ୍ ଯୋଗାଇବୁ । ନୂତନ ବସ୍ ଯୋଗାଇବା ଦ୍ୱାରା ଏହି ସମସ୍ୟାର ଲାଭ ହେବ । Contract carriage ଦେବା ଦ୍ୱାରା ଆମର ଯେଉଁ ଅଦାୟ ହେଉଛି ସେଇଟା ଯେପରି ଅଦାୟ ନ ହେବ ତା'ର ବ୍ୟବସ୍ଥା ସେମାନେ କରୁଛନ୍ତି । ଏହି Contract Carriage କଥା ମାନ୍ୟବର ସଭ୍ୟମାନେ ଜାଣନ୍ତି । ଯେଉଁଠି 20 ଜଣ ଯାତ୍ରୀ ଯିବେ ସେଠି ସେମାନେ seven seator ଲାଇସେନ୍ସ ନେଉଛନ୍ତି । ଯାହା ଫଳରେ passenger tax ଯାହା ଆଦାୟ ହେବାର କଥା ସେଇଟା ହୋଇପାରୁ ନାହିଁ । ଅନ୍ୟ ଭାବରେ 7ଟି ପାସେଞ୍ଜର ସ୍ଥାନରେ 14 ଠାରୁ 21 ପର୍ଯ୍ୟନ୍ତ ପାସେଞ୍ଜର ନେଉଛନ୍ତି । ଏଥିପ୍ରତି ଦୃଷ୍ଟି ଦେବା ନିତାନ୍ତ ଦରକାର ।

ସବୁଠାରୁ ଦୁଃଖଦାୟକ କଥା ହେଉଛି ସମାଜ ସେବା ଭଳିଆ ଅନୁଷ୍ଠାନମାନଙ୍କୁ ଅତି କମ୍ ଟଙ୍କା ଦେବାର ବ୍ୟବସ୍ଥା କରାହେଉଛି । ଏହି ସମାଜ ସେବା ଭିତରେ ଅଛି ସାଧାରଣ ଶିକ୍ଷା, ସାଂସ୍କୃତିକ କାର୍ଯ୍ୟକ୍ରମ, ବୈଷୟିକ ଶିକ୍ଷା, ସ୍ୱାସ୍ଥ୍ୟ, ଜଳଯୋଗାଣ, ସହର ଉନ୍ନୟନ, ଅନୁନ୍ନତ ଶ୍ରେଣୀମାନଙ୍କର କଲ୍ୟାଣ, ସମାଜ ମଙ୍ଗଳ, ଶ୍ରମିକ କଲ୍ୟାଣ, କାରିଗରୀ ତାଲିମ ଏବଂ ଅନ୍ୟାନ୍ୟ ଛୋଟିଏ ଛୋଟିଏ ପ୍ରଧାନ ପ୍ରଧାନ ବିଷୟ । କିନ୍ତୁ ଏଥିପାଇଁ ରଖା ହୋଇଛି 599·37 ଲକ୍ଷ ଟଙ୍କା, ଖାଲି 6 କୋଟି । ମୋର କହିବା କଥା ଏହି ସବୁପାଇଁ ଯେଉଁ ଦାବି ରହିଛି ସେଥିପାଇଁ ଅଧିକ ଟଙ୍କା ବ୍ୟବସ୍ଥା କରିବା ଦରକାର । ଆଜି ଏସବୁ ଭିତରେ ନୀତି କରିବାର ଅବସ୍ଥା ନାହିଁ । କେତେ ସରକାର ଜାଣିବା କଥା ।

ଏଗୁଡ଼ିକ ସବୁ ହେଉଛି ଆମର National building କାର୍ଯ୍ୟ । ସେଥିପାଇଁ ଅଧିକ ଟଙ୍କା ବ୍ୟବସ୍ଥା କରିବା ଦରକାର ଥିଲା । ଶିକ୍ଷା ବିଷୟରେ ଆପଣ ଜାଣନ୍ତି କୋଠାରି କମିଶନ ଯାହା କହିଛନ୍ତି ତା'ର ଦୁଇଟି ଧାଡ଼ି ମୁଁ ଏଠି ଉଦ୍ଧାର କରୁଛି—

"The destiny of India is now being shaped in her classrooms......In a world based on science and technology, it is education that determines the level of prosperity, welfare and security of the people".

ପୁଣି ଅନ୍ୟ ଉଦ୍ଦେଶ୍ୟରେ କହିଛନ୍ତି –

"But education can not be considered in isolation or planned in a vacum. It has to be used as a powerful instrument of social, economic and political change ."

ଏହିଭଳି ଶିକ୍ଷାର ଗୁରୁତ୍ୱପୂର୍ଣ୍ଣ ଭୂମିକା ଅଛି । ସେଥିପାଇଁ ତାହା କାର୍ଯ୍ୟକାରୀ ହେବ ସେ ଦୃଷ୍ଟିରୁ ଶିକ୍ଷାର ଲକ୍ଷ୍ୟ ବଦଳାଇବାକୁ ହେବ । ବହୁ [illegible] କଥା ଆଜି ଆମେ ଦେଖିବାକୁ ପାଉଛୁ ବେକାର ସମସ୍ୟା ବଢ଼ି ବଢ଼ି ଯାଉଛି । ଆଜି କାଲିକରୁ ଯେଉଁମାନେ ଅପୁଛନ୍ତି ସେମାନଙ୍କର ଚାକିରି ଛଡ଼ା ଅନ୍ୟ କୌଣସି ଲକ୍ଷ୍ୟ ରହୁ ନାହିଁ । ଯେଉଁମାନେ ସ୍କୁଲ କଲେଜରେ ପାଠ ପଢ଼ନ୍ତି ସେମାନଙ୍କ ଉଦ୍ଦେଶ୍ୟ ହେଲା ଚାକିରି କରିବା । ଇଂରେଜ ଶାସନର ପରିବର୍ତ୍ତନ କରି ଏହାର ଆଭିମୁଖ୍ୟ ବଦଳାଇବାପାଇଁ ଯେଉଁ ଦରକାର ହେଉଛି ତା'ର କେବଳ patch work କରାଯାଉଛି । କିନ୍ତୁ ସେଥିର କୌଣସି ଗୋଟିଏ ଗାଡ଼ ସ୍ଥିର କରିପାରୁ ନାହାନ୍ତି । ପୂର୍ବର ଜଣେ ଶିକ୍ଷା ମନ୍ତ୍ରୀ [illegible] Agricultural bias ଅର୍ଥାତ୍ କୃଷି ଭିତ୍ତିରେ ଶିକ୍ଷା ଦେବାକୁ କହିଥିଲେ । କିନ୍ତୁ କ'ଣ ହେଲା କେଜାଣି ତାହା କାର୍ଯ୍ୟକାରୀ ହେଲ ନାହିଁ । [illegible] ଆମର [illegible] ଅନ୍ତ-ପର୍ଯ୍ୟନ୍ତ ତାହା ହେଲ ନାହିଁ । ଏହି old system ଚାଲିଛି । କୋଠାରୀ କମିଶନଙ୍କ ସୁପାରିଶକୁ ସମ୍ପୂର୍ଣ୍ଣଭାବେ କାର୍ଯ୍ୟକାରୀ କରିବାର [illegible] [illegible] ନ ପାରେ । କିନ୍ତୁ ତାକୁ [illegible] କାର୍ଯ୍ୟକାରୀ କରାଯିବ ସେଥିପାଇଁ ଗୋଟିଏ High Level Committee educationist ମାନଙ୍କୁ ନେଇ ଗଠନ କରାଯାଉ । ତାହାହେଲେ ସେମାନେ recommend କରିବେ ରାଜ୍ୟ ସରକାର ସମ୍ବଳକୁ ନେଇ କେଉଁ କେଉଁ ବିଷୟ କାର୍ଯ୍ୟକାରୀ କରାଯିବ । ଏହା ଦେଖ ଆଗ, [illegible] ଆମେ [illegible] ଏହାକୁ ପରିବର୍ତ୍ତନ କରିପାରିବା । Primary stage ରୁ ପରିବର୍ତ୍ତନ କରି [illegible] । କିନ୍ତୁ [illegible] ନାହିଁ । କେବଳ କୁହାଯାଇଛି ଆମ ହାତରେ ପ୍ରାଥମିକ

ଶିକ୍ଷକ ରଖିବୁ, 6ଟି ନୂଆ ହାଇସ୍କୁଲ କରିବୁ, କଲେଜମାନଙ୍କପାଇଁ University Grant Commission ଙ୍କ ଦେଉ ନ ଥିଲେ ଆମେ ତାଙ୍କୁ ଡାକି ଆଣି ସାହାଯ୍ୟ ଦେବାର ବ୍ୟବସ୍ଥା କରିବୁ । This will not solve the problem. ଆମର ଆବଶ୍ୟକତା ଦୃଷ୍ଟିରୁ ହଜାରେ ଶିକ୍ଷକ ନିଯୁକ୍ତ କରୁ ନାହେଁ । ମୁଁ ଗଭର୍ଣ୍ଣରଙ୍କ ଭାଷଣରେ କହିଥିଲି ଆମର Compulsory Primary Education କରିବାର ଯେଉଁ ବ୍ୟବସ୍ଥା ତାହା ଆଜି ସୁଦ୍ଧା ହୋଇ ନାହିଁ । ଏହା ରାଜ୍ୟ ସାରା ହୋଇ ନ ପାରିଲେ ବି 3/4ଟି ସବ୍‌ଡିଭିଜନର experiment କରି ପାରିଥାନ୍ତେ । ତାହା ହୋଇ ପାରିଲା ନାହିଁ । ଇଂରେଜ ସରକାର ଅମଳରେ ପାରଳାଖେମୁଣ୍ଡି ଟାଉନରେ ଆମେ Compulsory Primary Educationର ବ୍ୟବସ୍ଥା କରିଥିଲେ । ମୁଁ ସେତେବେଳେ ସେ କଲେଜର ଛାତ୍ର ଥିଲି । କିନ୍ତୁ ଦୁଃଖର କଥା ଆମେ ଏତେ ବର୍ଷ ହେଲା ସ୍ୱାଧୀନ ହୋଇଥିଲେ ସୁଦ୍ଧା ସେ ବିଷୟରେ କୌଣସି ଚିନ୍ତା ବା କଳ୍ପନା କରି ନାହୁଁ । କେତୋଟି ସବ୍‌ଡିଭିଜନର experiment basisରେ ମଧ୍ୟ ଏ ବ୍ୟବସ୍ଥା ହୋଇ ପାରିଲା ନାହିଁ । ଆପଣ ଦେଖିବେ କେନ୍ଦ୍ରର କେତେକ ଶିକ୍ଷାନୁଷ୍ଠାନ ଆମର ଏଠି ଅଛି । ଉଦାହରଣ ସ୍ୱରୂପ ସୈନିକ ସ୍କୁଲ । ସେଠାରେ ଯେଉଁ ଅବ୍ୟବସ୍ଥା ସେ ବିଷୟରେ ବହୁତ ଆଲୋଚନା ହୋଇଛି । ଏହା ଅତି କେନ୍ଦ୍ରୀୟ ସ୍କୁଲ । ଏହି ଅନୁଷ୍ଠାନକୁ ଯେଉଁ ବାହାରର ଲୋକେ ଆସୁଛନ୍ତି ସେଠି ସ୍ଥାନୀୟ ଲୋକ ସେପରି ନ ରହିବେ ତା'ର ବ୍ୟବସ୍ଥା କରୁଛନ୍ତି । ଯେଉଁ ସ୍ଥାନୀୟ ଲୋକ ଅଛନ୍ତି ତାଙ୍କୁ ବାହାର କରିବାକୁ ବ୍ୟବସ୍ଥା କରୁଛନ୍ତି । ଗଲା 3 ବର୍ଷ ହେଲା ଏହି ଅଭିଯୋଗ ହେଉଛି ଏବଂ ସରକାରଙ୍କୁ ଅନୁରୋଧ କରାହେଉଛି ଏ ଅବ୍ୟବସ୍ଥାକୁ ଦୂରକରିବାପାଇଁ କିଛି ବ୍ୟବସ୍ଥା କରନ୍ତୁ । କିନ୍ତୁ ସେ କଥା ହୋଇପାରୁନାହିଁ ।

ସରକାର emplopment ବିଷୟରେ ବିବରଣ କହୁଛନ୍ତି ଯେ ଆମେ ଏ ଦିଗରେ ଚେଷ୍ଟା କରୁଛୁ । ଆମର Emyloyment Exchange ଏ ଦିଗରେ ସାହାଯ୍ୟ କରୁଛନ୍ତି । ଏଥିପାଇଁ ବି ବିଭିନ୍ନ Industry ସ୍ଥାପନ କରିବାରେ ଚେଷ୍ଟା କରୁଛନ୍ତି । ଏଥିପାଇଁ Industrialist ମାନଙ୍କୁ ସରକାର ଡାକିଥିଲେ । ସଭା ସମ୍ପନ୍ନ କରିଥିଲେ । କୁହାଯାଉଛି ଉତ୍ସାହପୂର୍ଣ୍ଣ ଚଳିଆସୁଛି । ଆଶା କରାହେଉଛି ଶିଳ୍ପ ପ୍ରତିଷ୍ଠା ହୋଇ-ପାରିବ । କିନ୍ତୁ 3 ବର୍ଷ ହେଲା ଯେଉଁସବୁ ଉଦ୍ୟମ ହୋଇଥିଲା ତାହା କାର୍ଯ୍ୟକାରୀ ହୋଇ ନାହିଁ । ଏହି ସବୁ ଶିଳ୍ପ କେବେ ହେବ ମୁଁ ଜାଣିପାରୁ ନାହିଁ । ଏପରି ଶିଳ୍ପ ପ୍ରତିଷ୍ଠା ହୋଇଲେ ବେକାର ସମସ୍ୟା ଦୂର ହେବ । ବର୍ତ୍ତମାନ ଆମ ରାଜ୍ୟରେ କେନ୍ଦ୍ର ସଂସ୍ଥା ସୁନା-ବେଡା, ରାଉରକେଲା କାର୍ଯ୍ୟକାରୀ ହେଉଛି । ସେହି କେନ୍ଦ୍ରୀୟ ସଂସ୍ଥାମାନଙ୍କରେ ସ୍ଥାନୀୟ ଲୋକମାନଙ୍କର ନିଯୁକ୍ତି ଅତି ଜରୁରୀ, ଏ କଥା ବହୁବାର ଆଲୋଚିତ ହେଲାଣି, କିନ୍ତୁ ତାହା ବିଶେଷ କାର୍ଯ୍ୟକାରୀ ହୋଇପାରୁ ନାହିଁ । ଯେଉଁ ସରକାରଙ୍କର regional basisରେ ଯେଉଁସବୁ ସଂସ୍ଥାହେଉଛି ତା'ର ଉଦ୍ଦେଶ୍ୟ ହେଲା ଯେଉଁ ଅଞ୍ଚଳରେ ଏହା

ସ୍ଥାପନ ହେଉଛି ସେ ଅଞ୍ଚଳର ଲୋକ ଯେପରି ନିଯୁକ୍ତି ପାଇବେ, ତାହାହେଲେ ସେ ଅଞ୍ଚଳର ସ୍ୱାର୍ଥ ସାଧିତ ହେବ । କେବଳ ସର୍ବଭାରତୀୟ ସ୍ତରରେ ନିଯୁକ୍ତିଦେବା ତା'ର ଉଦ୍ଦେଶ୍ୟ ନୁହେଁ । ଭୁବନେଶ୍ୱର ଏବଂ ଅନ୍ୟାନ୍ୟସ୍ଥାନ ଯେଉଁଠି କେନ୍ଦ୍ର ସଂସ୍ଥା ଅଛି ଦୁର୍ଭାଗ୍ୟବଶତଃ ସେଠାରେ ଆମେ ଦେଖିବାକୁ ପାଉଛୁ, ଆମ ଲୋକେ ନିଯୁକ୍ତି ପାଉ ନାହାନ୍ତି । ଏଥିପାଇଁ ଆମ ସରକାର ଟିକିଏ ଦୃଷ୍ଟି ଦେବାକୁ ହେବ ଏବଂ ବିଗୁର କରିବାକୁ ହେବ ଏଇ ସଂସ୍ଥାମାନଙ୍କରେ ଓଡ଼ିଶାବାସୀ ଯେପରି ପରଦେଶୀ ନ ହୁଅନ୍ତି ।

ଆମର ଏଇ ସମାଜ ସେବା ତଳେ ଚକିତ୍ସା ଓ Hospital କଥା ଆସୁଛି । Paying Bed କଥା ବହୁବାର କେବଳ ଆଲୋଚିତ ହୋଇଛି ତାହା ନୁହେଁ, ପତ୍ର ପତ୍ରିକାରେ ସମାଲୋଚିତ ମଧ୍ୟ ହୋଇଛି । କିନ୍ତୁ ସରକାର ତାକୁ ଉଠାଉ ନାହାନ୍ତି । ମୁଁ ଆଉ ଅଧିକ ଏ ବିଷୟରେ କହିବି ନାହିଁ । ଗତଥର ଏ ବିଷୟରେ ଯଥେଷ୍ଟ ଆଲୋଚନା ହୋଇଥିଲା । ଏହାକୁ ତୁରନ୍ତ ଉଠାଇ ଦେବା ଦରକାର, ଆମ ରୋଗୀମାନଙ୍କ ସ୍ୱାର୍ଥ ଦୃଷ୍ଟିରୁ । ଆପଣ ଜାଣିଥିବେ ଅନେକ ସମୟରେ ଅଭିଯୋଗ ହେଉଛି ଯେ ଆମ Hospital ମାନଙ୍କରେ ସ୍ଥାନ ନ ଥିବା ହେତୁ ବହୁ ରୋଗୀ ଫେରି ଚାଲିଯାଉଛନ୍ତି, ଯେଉଁ ରୋଗୀମାନେ ନିଃସ୍ୱ, ଗରିବ, ଯେଉଁମାନେ Private Practiceର ବ୍ୟବସ୍ଥା କରିପାରିବେ ନାହିଁ, ସେମାନେ ଯେତେବେଳେ ଡାକ୍ତରଖାନାକୁ ଆସୁଛନ୍ତି ସ୍ଥାନ ନାହିଁ । ତେଣୁ ଫେରିଯିବାକୁ ବାଧ୍ୟ ହେଉଛନ୍ତି । ଏମାନଙ୍କ ସ୍ୱାର୍ଥ ଦୃଷ୍ଟିରୁ Paying Bed ଉଠାଇ ଦେବାର କଥା । ବହୁ Hospitalରେ ଯେଉଁଠିକି ଗୋଟିଏ ବିଭାଗରେ 12ଟି Paying Bed ଅଛି, ସେଥିରୁ 2/3ଟି ସ୍ଥାନ ପୂରଣ ହେଉଥିବ ବାକି ଖାଲି ପଡ଼ିଥିବାର ଦେଖାଯାଉଛି । ଏଣେ ରୋଗୀ ବାରଣ୍ଡାରେ ଶୋଇଥିବେ । ଅନେକ ସମୟରେ Hospital Staff ମାନଙ୍କର ଗୋଟିଏ ଅଭିଯୋଗ ହେଉଛି ଯେ ଔଷଧପତ୍ର ଯଥେଷ୍ଟ ପରିମାଣରେ ନାହିଁ । କେବଳ କି First-Aid ପାଇଁ bandage, cotton ଇତ୍ୟାଦି ଯେଉଁଗୁଡ଼ାକ ନିହାତି ପ୍ରତ୍ୟେକ hospitalରେ ରହିବାର କଥା, ତାହା ମଧ୍ୟ ଅଭାବ ପଡ଼ୁଯାଉଛି, ଅନ୍ୟାନ୍ୟ Medicine କଥା ଛାଡ଼ନ୍ତୁ । ଯଦି ଆମେ hospital ରଖୁଛୁ, ସେଠାରେ ଯଦି ଉପଯୁକ୍ତ ଔଷଧ ଯଥେଷ୍ଟ ପରିମାଣରେ ନ ରହିବ, ବର୍ଷ ଅଧାରୁ ସରି ଯାଉଥିବ, ଯିଏ ରୋଗୀ ଆସୁଥିବେ ତାଙ୍କୁ Prescription ଦେଇଦିବ ଯେ ବଜାରରୁ କିଣି ଆଣିଲେ ହେବ ତା'ହେଲେ hospital ରଖିବାର ଉଦ୍ଦେଶ୍ୟ କ'ଣ ? ଆମକୁ ଦୃଷ୍ଟି ଦେବାକୁ ହେବ ଯେପରି ଆମ hospitalରେ ଯଥେଷ୍ଟ ପରିମାଣରେ ଔଷଧ ବଣ୍ଟନ ପାଇଁ ଦିଆଯାଏ ।

ଆଉ ଗୋଟିଏ ଦୁଃଖଦାୟକ ହେଉଛି, ଆମର Medical College ର Post-Graduate studies. ଏଥିପାଇଁ ଗୋଟିଏ କମିଟି ଅଛି । ସେ କମିଟିରେ ଆମର

ଓଣ୍ଡ Medical College ର Principal ଅଛନ୍ତି । ସେମାନେ ନିୟମ ସ୍ଥିର କରିବେ, ସେହି ନିୟମ ଅନୁସାରେ କେତେ mark ରଖିଲେ ପିଲା Post-Graduate study କରିବାକୁ ଯିବେ । ଦୁଃଖର କଥା ସରକାର ସେଥିରେ ହସ୍ତକ୍ଷେପ କରୁଛନ୍ତି କରୁ ସରକାର dictate କରୁଛନ୍ତି 57%mark ରଖିଥିଲେ Post-Graduate study କରିପାରିବେ । ମୁଁ ଶୁଣି ଆଶ୍ଚର୍ଯ୍ୟ ହେଲି what business the Government has got here ? ମୁଁ ତାଙ୍କୁ ପଚାରିଥିଲି, why 57% ? Why not 55% or 56% ? ବର୍ତ୍ତମାନ ଏହି ବର୍ଷ ଆମର ତିନୋଟି collegeରୁ ଯେଉଁ M. B., B. S. ପିଲା ପାସ୍ କରିଛନ୍ତି, ସେମାନଙ୍କୁ Post-Graduate ଶ୍ରେଣୀରେ ନେବାପାଇଁ ନିୟମ ପ୍ରଣୟନ ସରକାର କରିବେ, ଏଇଟା ବଡ ଆଶ୍ଚର୍ଯ୍ୟର କଥା । ଆପଣ ଜାଣିଥିବେ ଗତ 2 ବର୍ଷ ତଳେ College Admission ନେଇ ଖୁବ ଗଣ୍ଡଗୋଳ ହୋଇଥିଲା । ଆମର ଜଣେକ ମନ୍ତ୍ରୀଙ୍କ ହସ୍ତକ୍ଷେପ ଯୋଗୁଁ, ଏସବୁ ଛୋଟ ଛୋଟ କଥାରେ ସରକାର କାହିଁକି ହସ୍ତକ୍ଷେପ କରିବେ ? କୌଣସି ଗୋଟିଏ କମିଟି studentପାଇଁ ସରକାର ଯଦି ଏଭଳି କରିବେ ତାହେଲେ ଅବସ୍ଥା ବଡ଼ ଦୁଃଖଦାୟକ ହେବ । ଯେଉଁମାନେ ସେଇ କମିଟିରେ ରହୁଛନ୍ତି, ସେମାନଙ୍କର ମନୋଭାବ ସରକାରଙ୍କ ପ୍ରତି ବଡ ଖରାପ ହେଉଛି । ସରକାରଙ୍କର ଅନାବଶ୍ୟକ ହସ୍ତକ୍ଷେପ ଯେଉଁଠି ଦରକାର ନାହିଁ, ସେଠାରେ ଏଭଳି ହସ୍ତକ୍ଷେପ ନ କରନ୍ତୁ ଏହା ମୋର ଅନୁରୋଧ ।

ତାପରେ ଶିଳ୍ପ ସମ୍ପର୍କରେ ବହୁତ କଥା କୁହାହୋଇଛି, ମୁଁ ଖାଲି ଗୋଟିଏ କଥା ଶୁଣିବାକୁ ଚାହୁଁଛି ଆମ ସରକାରଙ୍କ ଶିଳ୍ପ ନୀତି କ'ଣ ? ତାଙ୍କର ନୀତିଟା ସ୍ପଷ୍ଟ ଭାବରେ ଯଦି ସେ ବର୍ଣ୍ଣନା କରନ୍ତେ ଆମେ ଜାଣି ପାରନ୍ତୁ ସରକାରଙ୍କର କର୍ତ୍ତବ୍ୟର ସୀମା ଏତେ ଯାଏ ଅଛି । ତା'ଠାରୁ ଅଧିକ ହେଲେ ବ୍ୟକ୍ତି ବିଶେଷ କରିବେ । ସରକାର କରିବେ ବା ବ୍ୟକ୍ତି ବିଶେଷ କିଏ କିଭଳି ଭାବରେ ଶିଳ୍ପ ସ୍ଥାପନ କରିବେ ତାହାକୁ Industrial Policy of the Government କୁହାଯାଏ, ସରକାର ସ୍ପଷ୍ଟ ଭାବରେ ତାହା ଘୋଷଣା କରିବା ଉଚିତ । କାରଣ ଅନେକ ସମୟରେ କୁହାଯାଉଛି ବାହାରୁ ଆମେ ଶିଳ୍ପପତିମାନଙ୍କୁ ଡାକୁଛୁ, ନିମନ୍ତ୍ରଣ କରୁଛୁ, ଏଠି ଶିଳ୍ପ ସ୍ଥାପନ କରିବା ପାଇଁ । ନିଜେ ସରକାର ତାହା କରିପାରିବେ କି ନାହିଁ ସେକଥା ଚିନ୍ତା କରିଛନ୍ତି କି ? କାରଣ ସରକାର ଯେଉଁ ଗୁଡ଼ିକ କରି ପାରିବା ସମ୍ଭବ ସେଥିପାଇଁ ବାହାରୁ ଶିଳ୍ପପତିମାନଙ୍କୁ ଡାକି ଆଣିବାଟା ଉଚିତ୍ ନୁହେଁ । ସେଥିପାଇଁ clear-cut policy ସରକାରଙ୍କର ରହିବା ଉଚିତ । ସେହିପରି ମଧ୍ୟମ ଧରଣର ଶିଳ୍ପ ଓ କ୍ଷୁଦ୍ର ଶିଳ୍ପ ସ୍ଥାପନ କରିବାରେ ମଧ୍ୟ ସରକାର ଅଧିକ ଧ୍ୟାନ ଦେବା ଉଚିତ । ସେଇପରି ପଞ୍ଚାୟତ Industry କଥା କୁହାଯାଇଛି, ସେଥିପାଇଁ Evaluation କମିଟି ବସିଛି ସେଇଟି କେଉଁ ସରକାର ହେଉଛି ତାକୁ ଉଠାଇ ଦେବେ

ମୋର କହିବାର କଥା, ଏଥିରେ ଯେଉଁ ତ୍ରୁଟି ଅଛି ତାକୁ ଦୂରକରି ଯେପରି ତାହା ଲାଭଜନକ ଭାବରେ ଚାଲିବ, ତା'ର ବ୍ୟବସ୍ଥା କରିବା ଦରକାର । Distribution of these Industries ଯାହାକୁ decentralise କୁହାଯାଏ ତାହା କରାଯିବା ଉଚିତ । ପ୍ରତ୍ୟେକ ଅଞ୍ଚଳରେ ସ୍ଥାନୀୟ ଗୁରୁତ୍ୱ ଦୃଷ୍ଟିରୁ କେଉଁଠି କ'ଣ କୁଟୀର ଶିଳ୍ପ ଗଢ଼ିହୋଇ ପାରିବ ସେ ଉପରେ ସରକାର ସାହାଯ୍ୟ କରିବା କଥା । ସରକାର ଖାଲି ଯୋଜନା କରି ଦେବେ ଯେଉଁମାନେ କୁଟୀର ଶିଳ୍ପ ସ୍ଥାପନ କରିବାକୁ ଚାହିଁବେ ସେମାନେ କେବଳ Bankରୁ ଟଙ୍କା ଆଣି ଯାହା କିଛି କରିବେ, ସରକାରଙ୍କର କୌଣସି ଦାୟିତ୍ୱ ବା କର୍ତ୍ତବ୍ୟ ରହିବ ନାହିଁ, ତା'ହେଲେ ଦୁଃଖର ସେଇଟା ଲାଭଜନକ ହୋଇ ନ ପାରେ । କାରଣ ସମସ୍ତେ ତ ସେ ବିଷୟରେ ଦକ୍ଷ ନୁହଁନ୍ତି । Even commonness ଯେଉଁମାନେ ଶିଳ୍ପ କରିବାକୁ ଇଚ୍ଛୁକ ସେମାନଙ୍କୁ ସରକାର ଏ ଉପରେ ସାହାଯ୍ୟ କରନ୍ତୁ, ତା'ହେଲେ ବହୁ ଲୋକ ସେଥିପ୍ରତି ଆକୃଷ୍ଟ ହେବେ ଏବଂ Selfemployment ବା ନିଜେ ନିଜେ ନିଯୁକ୍ତି ପାଇବା ପାଇଁ ସେମାନେ ଯଥେଷ୍ଟ ସୁବିଧା ପାଇବେ ।

ମୋର ଅଧିକ ବିଶେଷ କିଛି କହିବାର ନାହିଁ । କେବଳ ଶ୍ରୀମନ୍ଦିର ପରିଚାଳନା ସମ୍ପର୍କରେ ମୋର ଗୋଟିଏ କଥା କହିବାର ଅଛି । ଆପଣ ନିଜେ ଜାଣିଥିବେ ଏଇ ଯେଉଁ ପରିଚାଳନା ବିଭ୍ରାଟ ହେଉଛି ଏ ବିଭ୍ରାଟରୁ ପରିଚାଳନାକୁ ମୁକ୍ତ କରିବା ଉଚିତ । କାରଣ ଶ୍ରୀମନ୍ଦିର ଆମ ଓଡ଼ିଶାରେ କେବଳ ନୁହେଁ ସମଗ୍ର ହିନ୍ଦୁ ଜଗତର ଗର୍ବ । ସେଠାରେ ଯଦି କୌଣସି ଅସୁବିଧା ବା ପରିଚାଳନାଗତ ବିଭ୍ରାଟ ହେଲେ ତାହା ଓଡ଼ିଶାବାସୀଙ୍କୁ ସବୁଠୁ ବେଶି ବାଧିବ । ଓଡ଼ିଶା ବାହାରେ ତା'ର ଯେଉଁ ବଦନାମି ହେଉଛି ସେ ବଦନାମି ଆମ ଉପରକୁ ଆସୁଛି ଏବଂ ଦୁଃଖ ଓ ଲଜ୍ଜାରେ ଆମକୁ ମୁଣ୍ଡ ନଇଁବାକୁ ପଡୁଛି । ତେଣୁ ବର୍ତ୍ତମାନ ଶ୍ରୀମନ୍ଦିରରେ ଯେଉଁ ପରିଚାଳନାଗତ ତ୍ରୁଟି ଦେଖାଯାଉଛି, ତାକୁ ଦୂର କରିବା ପାଇଁ ସରକାର ଚେଷ୍ଟିତ ହେବା ଦରକାର । ଆମର ଯେଉଁ ମନ୍ତ୍ରୀ ମହୋଦୟ ଏହା ଦାୟିତ୍ୱରେ ଅଛନ୍ତି ତାଙ୍କ ପାଖକୁ ପରିଚାଳନାରେ ଯାହା ତ୍ରୁଟି ହେଉଛି ସେ ସମ୍ପର୍କରେ କହିବାର ଆମର delegation ଯାଇଥିଲେ, ମନ୍ତ୍ରୀ ମହୋଦୟ ତାଙ୍କଠାରୁ ଶୁଣିଲେ ଅଥଚ ସେ ଉପରେ ପ୍ରତିକାରର କୌଣସି ବ୍ୟବସ୍ଥା ହେଲା ନାହିଁ । ମୁଁ କେବଳ ଗୋଟିଏ ମାତ୍ର ଉଦାହରଣ ଆପଣଙ୍କୁ ଦେଇ ମୋର ବକ୍ତବ୍ୟ ଶେଷ କରିବି । ଆପଣ ଜାଣନ୍ତି Management ପକ୍ଷରୁ ବିଭିନ୍ନ ଦେଶର ବିଭିନ୍ନ ବ୍ୟକ୍ତିଙ୍କ ପାଖକୁ ବଙ୍ଗଳା ହିନ୍ଦୀ, ତେଲୁଗୁ, ଇଂରାଜୀ ଏହିପରି ବିଭିନ୍ନ ଭାଷାରେ appeal ଯାଇଛି ଯେ 900·00 ଟଙ୍କା ପଠାଇଲେ ତମ ନାମ ଏଠାରେ ଲେଖାଯିବ । ଟ 1,000·00 ଠାରୁ ଟ 10,000·00 ପଠାଇଲେ ତୁମ ନାମ ମାଦଳା ପାଞ୍ଜିରେ ରହିବ, ଏହିପରି କୁହାଯାଇ donation ପାଇଁ ଆମର appeal କରାଯାଇଛି, ଟଙ୍କା ଆସୁଛି ଅଥଚ ସେ ଟଙ୍କାର ହିସାବ ମିଳୁନାହିଁ । ସେ ଟଙ୍କାର ହିସାବ

ଦେବାପାଇଁ କହିଲେ ହିସାବ କେହି ଉପସ୍ଥାପିତ କରିବାକୁ ପ୍ରସ୍ତୁତ ହୁଅନ୍ତି । ତେଣୁ ସାଧାରଣରେ ସନ୍ଦେହ ଜାତ ହେଉଛି । କେବଳ ସେବକ ନୁହେଁ, ଯେଉଁମାନେ ଶ୍ରୀମନ୍ଦିରକୁ ଆସନ୍ତି, କିଛି donate କରିବାକୁ ଇଚ୍ଛା କରନ୍ତି, ସେମାନଙ୍କଠାରୁ donation ଲଗାଯାଉଛି । ସେଥିରେ ତାଙ୍କର ଦସ୍ତଖତ ଥିବ, Administrator ଦସ୍ତଖତ ଥିବ ଏବଂ Agentଙ୍କର ଦସ୍ତଖତ ମଧ୍ୟ ରହିବ, ****

ଚେୟାରମ୍ୟାନ ମହୋଦୟ, ଏ ବ୍ୟବସ୍ଥା ସମ୍ବନ୍ଧରେ ମୁଖ୍ୟମନ୍ତ୍ରୀ 1971-72 ମସିହାର ଯେଉଁ ବଜେଟ୍ ଉପସ୍ଥାପିତ କଲେ ତାହା ମୁଁ ବହୁତ ନୈରାଶ୍ୟଜନକ । କାରଣ 4 ବର୍ଷ ସ୍ୱତନ୍ତ୍ର ଓ ଜନକଂଗ୍ରେସ ମିଳିତ ସରକାରର ଶାସନ ପରେ ଲୋକେ ଆଶା କରିଥିଲେ ଓ ରାଜ୍ୟରେ ଗୋଟିଏ ପ୍ରଗତିଶୀଳ ସରକାର ପ୍ରତିଷ୍ଠିତ ହେବ । ଏହି 4 ବର୍ଷରେ ଓଡ଼ିଶାର ଅର୍ଥନୀତି ଯେପରି ଭାବରେ ଅଗ୍ରଗତି ଧାରା ନ ଥିଲା ତାକୁ ଆଗକୁ ନେବ । କିନ୍ତୁ ସେହି ଆଶା ନିରାଶାରେ ପରିଣତ ହୋଇଛି । କାରଣ ଆପଣ ଦେଖିବେ ଗତ ବର୍ଷ ଏ ମନ୍ତ୍ରୀଙ୍କର ତତ୍‌କାଳୀନ ଯେଉଁ ବଜେଟ୍ ଉପସ୍ଥାପିତ ହୋଇଥିଲା ସେହି ବଜେଟ୍ ସହିତ ଏହି ବର୍ଷ 1971-72 ବଜେଟ୍‌କୁ ଯଦି ତୁଳନା କରିଯିବ ତାହାହେଲେ ମନେ ହେବ ଯେପରି କି ଏଇଟା ତା'ର ଗୋଟିଏ continuation । ସେଥିରେ ଯେଉଁ ଗତ ଥିଲା ଯେଉଁ ଅର୍ଥନୈତିକ ବ୍ୟବସ୍ଥାସବୁ ଥିଲା ଏଥିରେ ଅନୁରୂପ ତାହାହିଁ ଅଛି । ମୁଁ ସେତେବେଳେ କହିଥିଲି ତେଣୁ ଦଳର ଅର୍ଥମନ୍ତ୍ରୀଙ୍କ Mr. Sarai ଓଡ଼ିଶା ପାଇଁ ଯେଉଁ ଅର୍ଥନୈତିକ ବ୍ୟବସ୍ଥା ସ୍ଥିର କରିଥିଲେ ତାକୁ guide line କରି ସେତେବେଳର ମୁଖ୍ୟମନ୍ତ୍ରୀ ଯେପରି ଭାବରେ ବଜେଟ୍ କରିଥିଲେ ଆଜି ମଧ୍ୟ ଯେଉଁ ବଜେଟ୍ ଉପସ୍ଥାପିତ ହୋଇଛି ସେଥିରେ କିଛି ଫରକ ନାହିଁ । କେବଳ ଗୋଟିଏ କଥା ଦୁଃଖ ଲାଗୁଛି । ସେତେବେଳେ ସ୍ୱତନ୍ତ୍ର ଦଳ ତୁଳ ଓ ସ୍ୱତନ୍ତ୍ରଦଳ ଜନକଂଗ୍ରେସ ସହିତ ଯୋଡ଼ି ହୋଇଥିଲା । ଅଜି ସ୍ୱତନ୍ତ୍ର ଦଳହିଁ ଉତ୍କଳ କଂଗ୍ରେସ ଯୋଡ଼ି ହୋଇଅଛି । ସେମାନେ ନିର୍ବାଚନ ବେଳେ ବହୁ କଥା କହିଥିଲେ । ଲୋକଙ୍କ ମନରେ ବହୁ ଆଶା ସୃଷ୍ଟି କରିଥିଲେ । ବିଶେଷ କରି ବେକାର ଯୁବକମାନେ ଆଶା କରିଥିଲେ ଏଇ ସରକାର କିଛି କରିବ ବୋଲି । ଏଇ ବଜେଟ୍ ଦେଖିଲା ପରେ ସେମାନଙ୍କ ଆଶା ନିଶ୍ଚିତ ଭାବରେ ମଉଳିଯିବ ।

ଆପଣ ଦେଖିବେ Chairman ମହୋଦୟ, ଏ ବଜେଟ୍‌ରେ ଯାହାସବୁ ଅଛି ସେଥିରେ ଆମ ରାଜ୍ୟର ଅନଗ୍ରସରତା ଦୂର ହୋଇ ପାରିବ ନାହିଁ । ଅନଗ୍ରସରତ ଦୂର କରିବା ପାଇଁ ଏଥିରେ ପଦକ୍ଷେପ ନିଆଯାଇଛି ଏହା ମଧ୍ୟ କୁହାଯାଇ ପାରିବ ନାହିଁ । ଆମର ଆଶଙ୍କା ହେଉଛି ଓଡ଼ିଶାର ଅର୍ଥନୀତି ସ୍ଥାଣୁ ହୋଇ ରହିଯିବ । ଆପଣ ଦେଖିବେ

ଏହି ଅଭିଭାଷଣରେ ଓଡ଼ିଶାର ଆୟ 1968-69 ମସିହାରେ 505 କୋଟି ଥିଲା ବେଳେ, 1969-70 ମସିହାରେ ତାହା 520 କୋଟି ଟଙ୍କାକୁ ବୃଦ୍ଧି ପାଇଛି । ସର୍ବ-ଭାରତୀୟ ସ୍ତରରେ ହାରାହାରି ବିକାଶର ଏହା ହେଉଛି ପ୍ରାୟ ଅଧା । ସେହି 1969-70 ରେ ଅବଶ୍ୟ ଆମେ ଆଗେଇଛୁ । କିନ୍ତୁ ସର୍ବଭାରତୀୟ ହାରାହାରିର ଏହା ହେଉଛି ଅଧା । ସେହିପରି 1969-70 ମସିହାରେ ଓଡ଼ିଶାର ମୁଣ୍ଡପିଛା ଆୟ ମାତ୍ର ଶତକଡ଼ା 1 ଭାଗ ବୃଦ୍ଧି ପାଇଥିବା ବେଳେ ସାରା ଦେଶରେ ଏହାର ବୃଦ୍ଧି ହାର ଶତକଡ଼ା 2·9 ହୋଇଥିଲା । କେବଳ ତାହା ନୁହେଁ, ଆମର ମୂଲ୍ୟସୂଚୀ ସର୍ବଭାରତୀୟ ସ୍ତରଠାରୁ ଅଧିକ 1969-70 ରେ 6 ମାସର ସର୍ବଭାରତୀୟ ଶ୍ରମିକମାନଙ୍କର ହାରାହାରି ଖାଉଟି ମୂଲ୍ୟସୂଚୀ 224 ରୁ ବୃଦ୍ଧି ପାଇଥିଲା । କିନ୍ତୁ ଆମର 248 ରୁ 258 କୁ ବୃଦ୍ଧି ପାଇଥିଲା । ଏହି ପରିପ୍ରେକ୍ଷୀରେ ଆପଣ ଦେଖିବେ ତାରତମ୍ୟ ଦୂର କରିବାକୁ ହେଲେ ଏହି ଯେଉଁ ତାରତମ୍ୟ ରହିଛି ତାକୁ ହ୍ରାସ କରିବାକୁ ହେବ । ଦେଶର ଅନ୍ୟାନ୍ୟ ଅଞ୍ଚଳ ତୁଳନାରେ ଆମର ଅର୍ଥନୀତିର ଅଭିବୃଦ୍ଧି ଦ୍ରୁତ କରିବାକୁ ହେବ । ମୁଁ ଦେଖିବାକୁ ଚାହୁଁଛି ବଜେଟ୍‌ରେ ଏ ଯେଉଁ ବ୍ୟବସ୍ଥା କରାଯାଇଛି ଏହା ଓଡ଼ିଶା ଅର୍ଥନୀତିକୁ ଦ୍ରୁତ ଉନ୍ନତ କରିବାରେ ସମ୍ଭବ ହୋଇ ପାରିବ କି ନୁହେଁ ।

ନିଜେ ମୁଖ୍ୟମନ୍ତ୍ରୀ ସ୍ୱୀକାର କରିଛନ୍ତି, ସର୍ବଭାରତୀୟ ସ୍ତରରେ ଆମେ ବହୁତ ପଛରେ ଅଛୁ । ମୁଣ୍ଡପିଛା ଆୟ ଦୃଷ୍ଟିରୁ, ଓଡ଼ିଶାର ଆୟ ଦୃଷ୍ଟିରୁ ଦେଖିଲେ ସର୍ବଭାରତୀୟ ସ୍ତରରୁ ସବୁଠାରୁ ତଳେ ଅଛୁ । ତେଣୁ ସର୍ବଭାରତୀୟ ସ୍ତର ସହିତ ସମକକ୍ଷ ହେବାକୁ ଯେପରି ଅର୍ଥନୈତିକ ବ୍ୟବସ୍ଥା କରିବା କଥା ତାହା ହୋଇପାରିନାହିଁ । ଗତ 2/3ଟି ବଜେଟ୍‌ରେ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଏପରି କୌଣସି ବ୍ୟବସ୍ଥା ଖଞ୍ଜି ନଥିଲେ । ଯଦ୍ଦ୍ୱାରା କି ଆମେ ଅର୍ଥନୈତିକ ଅନଗ୍ରସର ଅତିକ୍ରମ କରି ଅର୍ଥନୀତି କ୍ଷେତ୍ରରେ ଆଗେଇ ଯିବୁ । ଆପଣ ଦେଖିବେ, ସେଇ ଢଙ୍ଗରେ ଆମର ରାଜ୍ୟପାଳ ଯାହା କହିଥିଲେ ଟିକିଏ ଉତ୍ସାହପ୍ରଦ ହୋଇଥିଲା । ରାଜ୍ୟପାଳ ତାଙ୍କ ଭାଷଣ ପ୍ରସଙ୍ଗରେ କହିଥିଲେ 4ର୍ଥ ପଞ୍ଚବାର୍ଷିକ ଯୋଜନା ପାଇଁ ଯେଉଁ ଅର୍ଥ ବିନିଯୋଗ କରାଯିବ ବୋଲି ପରିକଳ୍ପିତ ହୋଇଛି ତାହାଦ୍ୱାରା ଯୋଜନାକାଳର ଶେଷ ବେଳକୁ ମୁଣ୍ଡପିଛା ଆୟର ତାରତମ୍ୟ ବୃଦ୍ଧି ପାଇବ । ଯଦି 1973-74 ମସିହା ସୁଦ୍ଧା ରାଜ୍ୟର ମୁଣ୍ଡପିଛା ଆୟକୁ ସର୍ବଭାରତୀୟ ସ୍ତର ସହିତ ଆମକୁ ସମାନ କରିବାକୁ ପଡ଼େ, ତେବେ ରାଜ୍ୟ ଯୋଜନାରେ 5 ଶହ କୋଟି ଟଙ୍କା ବିନିଯୋଗ କରାଯିବା ଏକାନ୍ତ ଆବଶ୍ୟକ । ଏହି ପ୍ରସଙ୍ଗରେ Dr. Lokanathan ତାଙ୍କର ପ୍ରଣୀତ ରାଜ୍ୟର ସାମାଜିକ ତଥା ଅର୍ଥନୈତିକ ଅନୁଧ୍ୟାନ ସମ୍ପର୍କୀୟ ରିପୋର୍ଟରେ ଏହି ରାଜ୍ୟକୁ ଅନ୍ୟାନ୍ୟ ରାଜ୍ୟର ଉନ୍ନୟନ ସ୍ତରକୁ ଆଣିବାକୁ ହେଲେ ଅନ୍ତତଃ 14 ଶହ କୋଟି ଟଙ୍କା ବିନିଯୋଗ କରିବାପାଇଁ ଯେଉଁ ସୁପାରିଶ କରିଛନ୍ତି, 14 ଶହ କୋଟି ଟଙ୍କା ଲଗାଣ ହେବା ସମ୍ଭବ ନୁହେଁ । ଅନ୍ତତଃ ତା'ର ଅଧା ଲଗାଣ କରିବାର ବ୍ୟବସ୍ଥା ଏଥିରେ ନାହିଁ ।

ସେଥିପାଇଁ ଓଡ଼ିଶାବାସୀ ଯେଉଁ ଆଶାପୋଷଣ କରିଥିଲେ ସେଥିରେ ସେମାନେ ନିଶ୍ଚିତ ଭାବରେ ନିରାଶ ହେବେ । Chairman ମହୋଦୟ, ଏ ବଜେଟ୍‌ରେ Revenue Account ଓ ଅନ୍ୟାନ୍ୟ ଯୋଜନା ବାବଦ ଆୟ 123·23 କୋଟି, ବ୍ୟୟ 137·84 କୋଟି । ତେଣୁ ଅଣଯୋଜନା ରାଜସ୍ୱ ନିଅଣ୍ଟ 14·61 କୋଟି ଟଙ୍କା । ସେହିପରି Revenue Account ର ଆୟ ହେଉଛି 18·73 କୋଟି, ବ୍ୟୟ ହେଉଛି 24·13 କୋଟି । ନିଅଣ୍ଟ ହେଲା 5·40 କୋଟି । ମୋଟ ନିଅଣ୍ଟ ହେଲା 20·01 କୋଟି ।

ଏ ନିଅଣ୍ଟ ସମ୍ପର୍କରେ ମୁଖ୍ୟମନ୍ତ୍ରୀ ତାଙ୍କ ଅଭିଭାଷଣରେ କହିଛନ୍ତି ମୁଁ ପୂର୍ବରୁ ଉଲ୍ଲେଖ କରିଛି ଏ ରାଜ୍ୟର ଅଣଯୋଜନା ହିସାବରେ ବହୁତ ବେଶୀ ନିଅଣ୍ଟ ରହୁଛି ଏବଂ କେବଳ ମାତ୍ର କେନ୍ଦ୍ର ସରକାରଙ୍କ ସ୍ୱତନ୍ତ୍ର ଋଣ ବଳରେ ଆମେ ଏହାର ସମ୍ମୁଖୀନ ହୋଇ ପାରିବା । କେନ୍ଦ୍ର ସରକାରଙ୍କ ସ୍ୱତନ୍ତ୍ର ଋଣ ଛଡ଼ା ଅନ୍ୟ କୌଣସି ବ୍ୟବସ୍ଥା କରି ପାରିବା ନାହିଁ । ଆମ ରାଜ୍ୟର ରକ୍ଷଣାବେକ୍ଷଣ ଖର୍ଚ୍ଚ ସେଥିରୁ କମ୍ ରଖାଯିବ । ଏହି ପରିସ୍ଥିତି ଆମର ଲାଗି ରହିଛି । ଏହା ଫଳରେ ରାଜ୍ୟର ଯୋଜନା ବ୍ୟୟ ବାବଦରେ ସୀମିତ ରଖିବାକୁ ପଡୁଛି । ଯୋଜନାରେ ଯେଉଁ ଆୟ କରିଥାଆନ୍ତି, ରେଭିନ୍ୟୁ ଆକାଉଣ୍ଟରେ ଏତେ ନିଅଣ୍ଟ ବଢ଼ିଯିବା ଯୋଗୁଁ ହିଁ ଏ ତ ଆମେ ଯେଉଁ ଟଙ୍କା କେନ୍ଦ୍ରରୁ ଆଣୁଛୁ, ନିଅଣ୍ଟ ଋଣ ପାଉଛୁ, ସେହି ନିଅଣ୍ଟ ଭରଣା କରିବାପାଇଁ ଆମେ ବଳାଯାଇ ପାଉଛୁ । ତେଣୁ ଯୋଜନା କାମରେ ଅଧିକ ଟଙ୍କା ଖଟାଇବା ପାଇଁ ଆମ ପାଖରେ ସମ୍ବଳ ରହୁ ନାହିଁ । ରେଭିନ୍ୟୁ ଏକାଉଣ୍ଟରେ ପ୍ରତିବର୍ଷ ନିଅଣ୍ଟ ବଢ଼ି ବଢ଼ି ଚାଲିଛି । ପୂର୍ବ ବର୍ଷ ବଜେଟ୍ ଯଦି ଦେଖିବା ଏହା କିପରି ବଢ଼ି ବଢ଼ି ଯାଉଛି ଦେଖିବା । ଏଇ ଋଣ ଏ ବର୍ଷ 20·01 କୋଟି ଟଙ୍କା ହୋଇଛି । Capital Account ରେ ଅଣଯୋଜନା କ୍ଷେତ୍ରରେ ଆୟ 20·07, ବ୍ୟୟ 39·54, ନିଅଣ୍ଟ ହେଲା 19·47 କୋଟି । Capital ଯୋଜନା ବାବଦ ଆୟ 24·99 କୋଟି, ବ୍ୟୟ 32·75 କୋଟି । ନିଅଣ୍ଟ ହେଲା 7·76 କୋଟି ଟଙ୍କା । Capital ର ମୋଟ ନିଅଣ୍ଟ ହେଲା 27·23 କୋଟି । ଏ ଦୁଇ Accountରେ ନିଅଣ୍ଟ ହେଲା 34·08 କୋଟି । ଯୋଜନା ବାବଦ ନିଅଣ୍ଟ ହେଲା 13·16 କୋଟି । ଯୋଜନା ନିଅଣ୍ଟ ପ୍ରାୟ 3 ଗୁଣ ହୋଇଛି ।

ଏହି ଅର୍ଥନୈତିକ ପରିସ୍ଥିତି ଦୃଷ୍ଟିରୁ ଆମେ ଯଦି ଅନଗ୍ରସରତାକୁ ଦୂର କରିବାକୁ ଚାହୁଁ ଏବଂ Revoune Account gapକୁ ଯଦି ଆମେ ପୂରଣ ନକରୁ ତାହାହେଲେ ଅନଗ୍ରସରତାକୁ ଦୂର କରି ପାରିବୁ ନାହିଁ । ତାହା ନହେଲେ ଆମେ ଯେଉଁଠୁ ଯାହା ଆଣୁଥିବା ତାହା ଭରଣା କରିବାରେ ଯାଉଥିବା । ଏହିପରି Public Accounts ରେ ବଳକା ହେଉଛି 8·98 କୋଟି । ନିଅଣ୍ଟ ହେଲା 38·26 କୋଟି । ଏଥିରୁ ସରକାର

ହୁସାବ କରି ଦେଖୁଛନ୍ତି 34·29 କୋଟି ଟଙ୍କା ଆମକୁ ବିଭିନ୍ନ ବାବଦରୁ ମିଳିବ ବୋଲି 1·95 କୋଟି କେନ୍ଦ୍ର ସରକାରଙ୍କଠାରୁ ଅଂଶ ବାବଦରେ ରାଜ୍ୟ ସରକାର ପାଇବେ । ଗତ ବର୍ଷ ହିସାବ ଅନୁସାରେ 24·36 କୋଟି ରାଜ୍ୟ ସରକାରଙ୍କୁ ଦେବାପାଇଁ କଥାବାର୍ତ୍ତା ଆଗରୁ ହୋଇଛି । ଏହି କଥାବାର୍ତ୍ତା ଯାହା ହୋଇଥିଲା ସେ ଅନୁଯାୟୀ 38 କୋଟି ଭରଣା ହେବ ନାହିଁ । କେବଳ 24·36 କୋଟି ଟଙ୍କା ହେବ । ସରକାର ଆଶା କରୁଛନ୍ତି ରାଜ୍ୟ ସରକାରଙ୍କ ଅତିରିକ୍ତ ସମ୍ବଳ ସଂଗ୍ରହରେ 7·98 କୋଟି ଟଙ୍କା ପାଇବେ । ଏହିପରି ଭାବରେ 34·29 କୋଟି ଟଙ୍କା ବିଭିନ୍ନ ବାବଦରେ ମିଳିବ ବୋଲି ଧରି ନିଆଯାଇଛି । ଅଧିକ କେନ୍ଦ୍ର ସରକାର ଯେଉଁ ଅତିରିକ୍ତ ସମ୍ବଳ ସଂଗ୍ରହ କରିବେ ସେଥିରୁ ଓଡ଼ିଶା ଯେଉଁ ଅଂଶ ପାଇବେ ସେହି ଅଂଶ 1·7 କୋଟି ଟଙ୍କା ମିଳିଲାପରେ ଆମର ସର୍ବମୋଟ ନିଅଣ୍ଟ ପରିମାଣ ହେବ 2 କୋଟି ଟଙ୍କା । ସେ କହିଛନ୍ତି "ଅର୍ଥ ମନ୍ତ୍ରଣାଳୟ ଓ ଯୋଜନା କମିଶନଙ୍କ ସହିତ ହୋଇଥିବା ଆଲୋଚନାକୁ ଲକ୍ଷ୍ୟ କରି 1971-72 ମସିହା ପାଇଁ 24·36 କୋଟି ଟଙ୍କାର ଅଣଯୋଜନା ନିଅଣ୍ଟ ରହିବ ବୋଲି ଅଟକଳ କରାଯାଇଥିଲା । ଏହି ପରିମାଣରେ ବିଶେଷ ସାହାଯ୍ୟ ମିଳିବ ବୋଲି ଧରିନିଆଯାଇ ବ୍ୟବସ୍ଥା କରାଯାଇଛି ।" ଏ ସମସ୍ତ ଧରିନିଆଯାଇ ବ୍ୟବସ୍ଥା କରିଥିବା ଯୋଗୁ ନିଅଣ୍ଟ 2 କୋଟିକୁ ଆସିଛି । ତା' ନହେଲେ ତାହା କଣ ପାଇବେ ତାକୁ ସଠିକ୍ ଭାବରେ କହି ପାରିବେ ନାହିଁ । ତାକୁ ଧରିଲେ ଆମର ନିଅଣ୍ଟ କେତେ ହେବ ଆମେ ଜାଣିପାରିଲୁ ନାହିଁ ।

ଚେୟାରମ୍ୟାନ ମହୋଦୟ, ଆମେ ସେଥିପାଇଁ ଲୋକଙ୍କଠାରୁ ଯେଉଁ ସମ୍ବଳ ସଂଗ୍ରହ କରୁଛୁ ତାହା ଦେଖିବେ ତାର ବାହାନାରେ ବିକ୍ରୀ କର ବଢ଼ାଇ ଦେଇ କହିଲୁ ଅନ୍ୟାନ୍ୟ ରାଜ୍ୟ ସହିତ ସମାନ ରଖିବା ପାଇଁ 12%କୁ ବଢାଇ ଦେଲୁ । ସେଇପରି ଅନ୍ୟାନ୍ୟ ଭାବରେ ଟିକସ ବଢ଼ିଛି । କାରଣ ଟିକସ ଆକାରରେ ଏ ଯେଉଁ ଟଙ୍କା ଆଦାୟ କରିବୁ ତାହା ଲୋକଙ୍କ ମଙ୍ଗଳ ସକାଶେ କରିବୁ । ନିଅଣ୍ଟ ଭରଣା କରିବାପାଇଁ ଏହା ବ୍ୟବହୃତ ହେବ । କିନ୍ତୁ ଲୋକଙ୍କପାଇଁ ଯୋଜନା ବାବଦରେ କୌଣସି ଖର୍ଚ୍ଚ ହୋଇପାରୁ ନାହିଁ । କାରଣ ସେ ଟଙ୍କା ଏଥିପାଇଁ ଲାଗିପାରିବ ନାହିଁ । ତେଣୁ ଲୋକଙ୍କଠାରୁ ଆମେ ଯେଉଁ ଟିକସ ସଂଗ୍ରହ କରୁଛୁ ସେମାନଙ୍କ ପ୍ରତ୍ୟକ୍ଷ କଲ୍ୟାଣ ସେଥିରୁ ହୋଇ ପାରିବ ନାହିଁ ।

ଚେୟାରମ୍ୟାନ ମହୋଦୟ, ମୁଁ ପ୍ରଥମେ ଆମର ଶାସନକଳ ସମ୍ପର୍କରେ କିଛି କହିବାକୁ ଯାଉଛି । ଯଦିଓ ଆମ ବଜେଟରେ ସେ ବିଷୟରେ କିଛି ଉଲ୍ଲେଖ ନାହିଁ । ଆପଣ ଜାଣନ୍ତି ଆମର ଏଇ ଶାସନକଳ, British bureaucracy ବୋଲି ଯାହାକୁ ଆମେ କହୁ ଏହା ବୃଟିଶ ଶାସନ ଅମଳରୁ ଚାଲି ଆସିଛି । ଏ ଲୋହିଏ ଶାସନକଳ ଯାହା କି ବର୍ତ୍ତମାନ ଦାୟିତ୍ୱକୁ ବୁଝାଇବା ପାଇଁ ଅପାରଗ । ଏହା ପରୀକ୍ଷା ତ ହୋଇ ସାରିଲାଣି । ଯେଉଁଥିପାଇଁ ଶାସନକଳ

ଉଦ୍ଦିଷ୍ଟ ଥିଲା ସେ ଲକ୍ଷ୍ୟ ତ ବଦଳିଯିବା ଉପରେ । ସେଇ ଶାସନକଳ ବର୍ତ୍ତମାନ କାର୍ଯ୍ୟ କରୁଛି । ଏଇ ପ୍ରକାର ଶାସନ ପଦ୍ଧତି ଯେଉଁ ଇଂଲଣ୍ଡର ଆରମ୍ଭ ହୋଇଥିଲା, ସେଇ ସ୍ଥାନରେ ସେମାନେ ଏହାର ଅନାବଶ୍ୟକତା ଅନୁଭବ କରି ଗୋଟିଏ କମିଟି ଗଠନ କରିଥିଲେ । ଉକ୍ତ କମିଟି ରିପୋର୍ଟ ଗୃହୀତ ହୋଇ ଯେଉଁଠି ଏଇ bureaucracy ଆରମ୍ଭ ହୋଇଥିଲା, ତାହା ଲୋପ ହୋଇଗଲାଣି । କିନ୍ତୁ ଆମ ଦେଶର ବରାବର ତାହା ଚାଲିଛି । ଯଦିଓ ଏ ସମ୍ପର୍କରେ ହନୁମନ୍ତୟାଙ୍କ ଅଧିନାୟକତ୍ୱରେ ବସିଥିବା କମିଟି ରିପୋର୍ଟ ଆମ ସରକାରଙ୍କର ହସ୍ତଗତ ହୋଇ ସାରିଲାଣି ଏବଂ ସେ ରିପୋର୍ଟ 19 ଖଣ୍ଡ volume ଲୁଆଡେ ହୋଇଛି । ଉକ୍ତ ରିପୋର୍ଟ ଆସିଲା ପରେ ସରକାର ସେ ଦାଗରେ କୌଣସି କାର୍ଯ୍ୟାନୁଷ୍ଠାନ କରି ନାହାନ୍ତି । ମୁଁ ଦୁଃଖର ସହିତ କହିବି, ମୁଁ ଶୁଣିବାକୁ ପାଇଛି ସେ ରିପୋର୍ଟ ଆସିଲା ପରେ ତାକୁ ବନ୍ଧାବାନ୍ଧ ପକାଇ ଦେଇଛନ୍ତି । ଯୋଜନା କାର୍ଯ୍ୟକାରୀ କରିବାପାଇଁ ଏବଂ ଆମର ଅର୍ଥନୈତିକ ଉନ୍ନତିରେ ପରିବର୍ତ୍ତନ କରିବାପାଇଁ ଯେଉଁ ରିପୋର୍ଟରେ ଯାହା ଲିଖିତ ଅଛି, ଆମେ ତାକୁ କାର୍ଯ୍ୟକାରୀ କରୁନାହୁଁ । ସୁତରାଂ ମୁଁ ଆଶାକରେ ଏଠାର ସରକାର ସେଥିପ୍ରତି ଦୃଷ୍ଟି ଦେବେ । କାରଣ ଏହା ଅତି ଗୁରୁତ୍ୱପୂର୍ଣ୍ଣ କଥା । କାରଣ ଆମେ ଶାସନକଳର ସଂସ୍କାର କରି ନ ପାରିଲେ ବା ବୈପ୍ଳବିକ ପରିବର୍ତ୍ତନ ନକଲେ ଆମର ଯୋଜନା କାର୍ଯ୍ୟକାରୀ ହୋଇପାରିବ ନାହିଁ ।

ଗୋଟିଏ ଏକଛତ୍ର ଶାସନତନ୍ତ୍ରରେ କାର୍ଯ୍ୟ ଯେତେ ସୁବିଧା ଓ ସହଜରେ ହୋଇପାରିବ ଏକ ଗଣତନ୍ତ୍ର ଶାସନ ଭିତରେ ଯୋଜନା କାର୍ଯ୍ୟକାରୀ କରିବା ସହଜ ନୁହେଁ । ସେଇପରି ଆପଣ ଦେଖୁଥିବେ ଶିକ୍ଷା ପଦ୍ଧତିର ପରିବର୍ତ୍ତନ ସମ୍ପର୍କରେ ଅଳ୍ପଦିନତଳେ ଆମ ପ୍ରଧାନ ମନ୍ତ୍ରୀ କହିଛନ୍ତି ଶିକ୍ଷା ଓ ଶାସନ କ୍ଷେତ୍ରରେ ବୈପ୍ଳବିକ ପରିବର୍ତ୍ତନ ଆବଶ୍ୟକ । ବହୁଦିନ ଆଗରୁ ଏହା ହେବାର ଥିଲା, ହୋଇ ନାହିଁ । ବର୍ତ୍ତମାନ ମଧ୍ୟ ସମୟ ଗଡ଼ିଯାଇ ନାହିଁ । ତାହା ପରିବର୍ତ୍ତନ କରିବା ପାଇଁ ଶାସନ ସଂସ୍କାର ରିପୋର୍ଟ ଅଛି । ଶିକ୍ଷା କ୍ଷେତ୍ରରେ ମଧ୍ୟ ସେଇପରି ବୈପ୍ଳବିକ ପରିବର୍ତ୍ତନ ନ ଆସିଲେ ଆମେ ବେକାର ସମସ୍ୟା ଦୂର କରିବାପାଇଁ ଯେତେ ଚେଷ୍ଟା କଲେ ମଧ୍ୟ ପାରିବୁ ନାହିଁ । ଏ କ୍ଷେତ୍ରରେ ଚେଷ୍ଟା overdue ହୋଇଗଲାଣି । ଆଜି ଆମ ଆଗରେ କୋଠାରୀ କମିଶନ ରିପୋର୍ଟ ଅଛି । 2/3 ବର୍ଷ ହେଲା ଏ ରିପୋର୍ଟ ସରକାରଙ୍କ ପାଖକୁ ଆସିଲାଣି । ସେଥିରୁ କେତେକ କାର୍ଯ୍ୟକାରୀ କରିବା କଥା ତାହା ହୋଇପାରୁ ନାହିଁ । ଆଜି ଦେଶରେ ବୈଜ୍ଞାନିକ ଏବଂ ବୈଷୟିକ ଶିକ୍ଷା ଦେବାପାଇଁ ଯେଉଁ ପୃଷ୍ଠଭୂମି ଦରକାର, ସେଥିପ୍ରତି ଦୃଷ୍ଟି ଦେଉନାହାନ୍ତି । Scientific education ପାଇଁ ଆମେ UNICEFରୁ ସାହାଯ୍ୟ ପାଉଛୁ । ଏପରିକି ପ୍ରାଥମିକ ସ୍ତରରେ ଶିକ୍ଷା ପାଇଁ ସାହାଯ୍ୟ କରିବା କଥା । ଯଦିଓ ଲେଖାଅଛୁ Class 3 ରୁ 7 ପର୍ଯ୍ୟନ୍ତ ପାଠ୍ୟକ୍ରମ ନୂଆକରି ରଚନା କରିବୁ, ତଥାପି ତାହା କରିପାରି ନାହୁଁ ।

ଏହି ପ୍ରସଙ୍ଗରେ ମୁଁ କହିବ ପ୍ରବର୍ତ୍ତନ ସରକାର ଘୋଷଣା କରିଥିଲେ ସପ୍ତମ ଶ୍ରେଣୀ ହେବ ପ୍ରାଥମିକ ଶିକ୍ଷାର ଶେଷ ଶ୍ରେଣୀ । ତା'ହେଲେ ଅବୈତନିକ ଶିକ୍ଷା ନିଶ୍ଚୟ ହେବାର କଥା । It goes without saying. ଏ ସରକାର ତାହା ମଧ୍ୟ କଲେ ନାହିଁ । ମୋର ଦୃଢ଼ଧାରଣା କୋଠାରୀ କମିଶନ ରିପୋର୍ଟ କାର୍ଯ୍ୟକାରୀ କରିବାପାଇଁ ଚେଷ୍ଟା ନ କଲେ ଆମର ଶିକ୍ଷାପଦ୍ଧତି ଆମୂଳ ପରିବର୍ତ୍ତନ କରିବା ସହଜ ହେବ ନାହିଁ । ଅନେକ ସମୟରେ ଶିକ୍ଷା ବିଭାଗ ପରିଚାଳନା ଦାୟିତ୍ୱରେ ଥିବା ଲୋକ ଉପଯୁକ୍ତ ହୋଇ ନାହାନ୍ତି । କେବଳ Patch work କରି ଦେଇ ଯେଉଁଠି ଆବଶ୍ୟକ ପଡ଼ୁଛି ସେଠି ସାମାନ୍ୟ ପରିବର୍ତ୍ତନ କରିବା ଛଡ଼ା ଆଉ କିଛି ହେଉ ନାହିଁ । Let the sleeping dog lie ଅର୍ଥାତ୍ ତାକୁ ଉଠାଇଲେ ଆଉ କ'ଣ ସମସ୍ୟା ଉପୁଜିବ ସେଥିପାଇଁ ବିଶେଷ କିଛି କରୁ ନାହାନ୍ତି । ଆଜି ବୈଜ୍ଞାନିକ ଶିକ୍ଷାର ଉନ୍ନତ କଥା କୁଆଡ଼େ ଗଲାଣି । ଏ ଦିଗରେ ବିଭିନ୍ନ ଦେଶ ଯେପରି ଆଗେଇ ଲେଣି ଆମେ ଯେ କେତେ ପଛରେ ପଡ଼ିଛୁ ତାଙ୍କର ସମକକ୍ଷ ହେବା ପାଇଁ ଆମର ଉଦ୍ୟମ ନାହିଁ ।

ମୁଖ୍ୟମନ୍ତ୍ରୀ ତାଙ୍କର ବଜେଟ ଭାଷଣରେ କହିଛନ୍ତି ଯେ ସଂସ୍କୃତ ଶିକ୍ଷା ଏବଂ ଯୋଗାଭ୍ୟାସ ଏ ଦୁଇଟି ମଧ୍ୟ ପାଠ୍ୟକ୍ରମରେ ରହିବ । ବର୍ତ୍ତମାନ ଚାଲିଥିବା ଶିକ୍ଷା ପଦ୍ଧତି ଆମେ ଶେଷପର୍ଯ୍ୟନ୍ତ ନେଇ ପାରୁ ନାହୁଁ । ପୁଣି ନୂଆ ନୂଆ କଥା ତା' ଭିତରେ ରଖି କାର୍ଯ୍ୟକାରୀ କରିବା କେତେଦୂର ସମ୍ଭବ, ବିଚାର କରିବା କଥା । Basic ଶିକ୍ଷା ଆମର ଉପଯୋଗୀ ନୁହଁ ବୋଲି ଆମେ ତାକୁ experiment କରି ଛାଡ଼ିଦେଲୁ । ପୁଣି post-basic ଶିକ୍ଷା ହେବ ବୋଲି କଳ୍ପନା ରହିଛି । କାହିଁକି ଆମେ ଏହା ଉପରେ ଜୋର ଦେଉଛୁ ଏଥିରେ କୌଣସି clarity ନାହିଁ । ଯାହା ବି ଅଛି ଠିକ୍ ଭାବରେ କାର୍ଯ୍ୟକାରୀ କରିପାରୁ ନାହୁଁ । ଆମ ରାଜ୍ୟର ଯୋଜନାର ଲକ୍ଷ୍ୟ କ'ଣ ? ମନ୍ତ୍ରୀ ମହୋଦୟ କହିଛନ୍ତି 4ର୍ଥ ଯୋଜନାର 3ୟ ବର୍ଷ ଚାଲିଛି ଏବଂ ଏହି ଯୋଜନା ବାର୍ଷିକ ଯୋଜନା ହିସାବରେ ଆମେ କାର୍ଯ୍ୟକାରୀ କରିଚାଲିଛୁ । ତାହା ଠିକ । କିନ୍ତୁ ବାର୍ଷିକ ଯୋଜନାର ଅର୍ଥ କ'ଣ ? ଆମର ଯେଉଁ ଯୋଜନା ଏବଂ ସମନ୍ୱୟ ବିଭାଗ ଅଛି କେଉଁ ଲକ୍ଷ୍ୟ ଧାର୍ଯ୍ୟ କରିଛନ୍ତି ବା ସରକାର, କେଉଁ ଲକ୍ଷ୍ୟ ରଖିଛନ୍ତି, ଏ ବଜେଟରେ କେତେ ହଜାର ବା ଲକ୍ଷ ବେକାରଙ୍କୁ ଚାକିରି ଦେବୁ । ଏତେ ଲକ୍ଷ ଏକର ଜମି ଆଣି ଭୂମିହୀନଙ୍କୁ ବଣ୍ଟନ କରିବୁ, ଏତେ ହଜାର ପରିବାର ଆଦିବାସୀ ଓ ହରିଜନଙ୍କ ପାଖରୁ ଆସିଛି ତାକୁ ବନ୍ଧ କରି କୁଟୀର ଶିଳ୍ପ ଇତ୍ୟାଦି ଚାରିଆଡ଼େ ବଢ଼ାଇବୁ । ଏତେ ଗାଁକୁ କେବଳ ବିଜୁଳି ଦେବୁ । ତା'ସାଙ୍ଗରେ ଆନୁସଂଗିକ ଶିଳ୍ପ କେଉଁଠି କ'ଣ ହେବ ତା'ର ବ୍ୟବସ୍ଥା କରିବୁ । ଏସବୁ ଲକ୍ଷ୍ୟ ଥିଲାପରି ଜଣା ପଡ଼ୁନାହିଁ । ସେଥିପାଇଁ ଆମର man-power ସ୍ଥିର କଲାବେଳେ ଯୋଜନା ସମନ୍ୱୟ ବିଭାଗ ଏବଂ ଶିକ୍ଷା ବିଭାଗ ଏ ଦୁହିଙ୍କ ସହଯୋଗରେ କେବଳ ହୋଇ ପାରିବ । ମୁଁ ଜାଣି ପାରୁନି ଯୋଜନା ସମନ୍ୱୟ ବିଭାଗ ଶିକ୍ଷା ବିଭାଗର ସହାୟତା ନେଇଛନ୍ତି କି ନାହିଁ ।

ସଭାପତି ମହାଶୟ, ଆପଣ ଜାଣନ୍ତି ଆମର ଶତକଡ଼ା 80 ଭାଗ ଲୋକ କୃଷି ଉପରେ ନିର୍ଭର କରନ୍ତି ତେଣୁ କୃଷିର ଉନ୍ନତି ନ ହେଲେ ଏବଂ ଆମର ଭୂ-ସମସ୍ୟା ସମାଧାନ ନ ହେଲେ ଏ 80 ଭାଗ ଲୋକଙ୍କର ଉନ୍ନତି ସାଧନ ହୋଇପାରିବ ନାହିଁ । ଆଜି ସବୁଜବିପ୍ଳବ କଥା କୁହାଯାଉଛି । ସାର ଯୋଗାଣ, ଯନ୍ତ୍ରପାତି ଯୋଗାଣ କଥା କୁହାଯାଉଛି । ଏସବୁ ସାଙ୍ଗକୁ ମୂଳ କଥା ଜଳସେଚନ ପ୍ରତି ଯଥେଷ୍ଟ ଗୁରୁତ୍ୱ ଦିଆଯାଉ ନାହିଁ । ଆମେ ଯଦି ଉଠାଜଳସେଚନ ଯୋଜନା କାର୍ଯ୍ୟକାରୀ କରି ଚାଷୀକୁ ପାଣି ଯୋଗାଇ ପାରନ୍ତୁ ତାହାହେଲେ ସହଜରେ ଚାଷୀ 2ଟି ଫସଲ କରିପାରନ୍ତା ଏବଂ ତାହାର ଆୟ ନିଶ୍ଚିତ ଭାବରେ ବଢନ୍ତା । Rural sectorରେ ଯେଉଁମାନେ ଛୋଟ ଛୋଟ ଚାଷୀ ଗାଁ ଗହଳରେ ଅଛନ୍ତି ସେମାନଙ୍କ ଆୟ ବଢିଲେ ସେମାନଙ୍କ ବଞ୍ଚିବାର ମାନ ମଧ୍ୟ ବୃଦ୍ଧି ପାଇବ । ସେଥିପ୍ରତି ଆମକୁ ବିଶେଷ ଭାବରେ ଦୃଷ୍ଟି ଦେବାକୁ ହେବ । ଅଧିକ ଟଙ୍କା ଏଥିରେ ବିନିଯୋଗ ନ କଲେ ଏ କାମ ହୋଇପାରିବ ନାହିଁ ।

ମୁଖ୍ୟମନ୍ତ୍ରୀ ତାଙ୍କ ଭାଷଣରେ କହିଛନ୍ତି ପୁରାତନ ବନ୍ଧ ଓ ପୋଖରୀଗୁଡ଼ିକର ଉଦ୍ଧାର କରାଯିବ । ତା'ଭିତରକୁ ପାଣି ଯିବାପାଇଁ ଯେଉଁ ବାଟ ଅଛି ସେ ବାଟ ପୋତିହୋଇ ଗଲାଣି । ତାକୁ ସଫା କରାଯିବ । ତା'ଫଳରେ ଗାଡ଼ିଆ ପୋଖରୀରେ ପାଣି ରହିବ ଏବଂ ଖରିଫ ଓ ରବି ଫସଲକୁ ପାଣି ଯୋଗାଇ ଦିଆଯାଇ ପାରିବ । ବର୍ଷା ହେଲେ ଜମିକୁ ପାଣି ଯାଇପାରିବ । ତେଣୁ ଖରଚ ପାଇଁ ଦରକାର ନାହିଁ । ରବି ଫସଲକୁ ସାହାଯ୍ୟ କରିପାରିବ ବୋଲି ସେ କହୁଛନ୍ତି । ଏହା ଛଡ଼ା ଅନେକ କ୍ଷୁଦ୍ର ଜଳସେଚନ ଯୋଜନାରେ ଗଠନ କରାଯିବାକୁ ହେବ । ମଧ୍ୟମ ଓ ବୃହତ ଯୋଜନାରେ ବହୁତ ଟଙ୍କା ଖର୍ଚ୍ଚ ହୋଇଛି । କିନ୍ତୁ ଗାଁ ଗହଳରେ ଚାଷର ଉନ୍ନତିପାଇଁ କ୍ଷୁଦ୍ର ଜଳସେଚନ ଯୋଜନା ବହୁଳ ପରିମାଣରେ କାର୍ଯ୍ୟକାରୀ କରିବା କଥା । ଉଠାଜଳସେଚନ ଯୋଜନା ପ୍ରତି ଆମେ ଯଥେଷ୍ଟ ଦୃଷ୍ଟି ଦେଇ ପାରୁ ନାହୁଁ । ବିଭାଗୀୟ ମନ୍ତ୍ରୀ ଅବଶ୍ୟ କହିଛନ୍ତି 3,000 ଗ୍ରାମକୁ ବିଦ୍ୟୁତ ଶକ୍ତି ଦିଆଯିବା ସଙ୍ଗେ ସଙ୍ଗେ ଯେଉଁଠାରେ ଉଠାଜଳସେଚନ ହୋଇପାରିବ ସେଠାରେ ନିଶ୍ଚିତଭାବରେ ଉଠାଜଳସେଚନ ଦିଆଯିବ ବୋଲି ମୁଁ ଆଶା କରିବି । ଖାଲି ବିଜୁଳି ଆଲୁଅ ଲୋକଙ୍କୁ ଉନ୍ନତିପଥରେ ନେଇପାରିବ ନାହିଁ । ବିଜୁଳି ଆଲୁଅକୁ କିପରି ବିନିଯୋଗ କରାଯାଇପାରିବ ତାହା ଲୋକଙ୍କୁ ଦେଖାଇ ଦେବାକୁ ହେବ । ମୁଁ ଚାହୁଁଛି, ବିଜୁଳି ଶକ୍ତି ସାହାଯ୍ୟରେ ଉଠାଜଳସେଚନ ଯୋଗାଇବା ଦିଗରେ ସରକାର ପଦକ୍ଷେପ ନେବେ ।

Chairman Sir, ଭୂ-ସଂସ୍କାର ବିଷୟରେ ଆପଣ ଗତ 3ଟି ବଜେଟ ଭାଷଣ ପଢିଛନ୍ତି, ସେଥିରେ ଯାହା ଥିଲା ଏଥିରେ ଅବିକଳ ହୋଇଅଛି । ଭୂ-ସଂସ୍କାର ଆଇନର 4ର୍ଥ ପରିଚ୍ଛେଦ କାର୍ଯ୍ୟକାରୀ ନ କରିବାପାଇଁ ହାଇକୋର୍ଟ ଦେଇଥିବା ରହିତାଦେଶ

ଛଡ଼ାଇନେବାପାଇଁ ସରକାର ସୁପ୍ରିମ କୋର୍ଟରେ ଆବେଦନ କରିଛନ୍ତି । ଏ ମୁହୂର୍ତ୍ତରେ ଆମେ 2/3 ବର୍ଷ ଧରି ଧାନ କରିଆସିଛୁ । ମୁଁ ଜାଣେନା ଆଉ କେତେ ବର୍ଷ ଏଥିପାଇଁ ଲାଗିବ । ସେତେବେଳେ ଆମେ ଯେଉଁ ଭୂ-ସଂସ୍କାର ଆଇନ କରିଥିଲେ ବର୍ତ୍ତମାନର ପରିବର୍ତ୍ତିତ ପରିସ୍ଥିତିରେ ମୁଁ ଭାବୁଛି ସେ ଆଇନର ପରିବର୍ତ୍ତନ ଦରକାର । ଆମେ ସିଲିଙ୍ଗ ଧାର୍ଯ୍ୟ କରିଛେ 20 ଏକର । ନିର୍ବାଚନବେଳେ ଆମେ ପ୍ରତିଶ୍ରୁତି ଦେଇଛୁ 15 ଏକରକୁ କମାଇବାପାଇଁ । ତା'ଛଡ଼ା ବାଡ଼ି ବଗିଚା ସୁବିଧା ଥିଲା, ଯନ୍ତ୍ରପାତି ଚାଷ କରିବାପାଇଁ ଜମି ଦେବାର ବ୍ୟବସ୍ଥା ଥିଲା, ତାକୁ ମଧ୍ୟ କାଟକୁଟ କରିବାକୁ ହେବ । ଅଧିକ ଜମିହୀନ କୃଷକଙ୍କୁ ଜମି ଦେବାକୁ ହେଲେ ସିଲିଙ୍ଗ ଲିମିଟ କମିବାକୁ ହେବ । ଦୁଃଖର କଥା ଏତେଦିନ ବିତି ଯାଇଥିଲେ ମଧ୍ୟ ସେ ଆଇନ କାର୍ଯ୍ୟକାରୀ ହୋଇପାରି ନାହିଁ ।

ଚେୟାରମ୍ୟାନ ମହୋଦୟ, ଉତ୍କଳ କଂଗ୍ରେସ ସଭ୍ୟମାନେ ଏଠାରେ ବସିଛନ୍ତି, ସେମାନେ ବହୁତ କଥା କହୁଥିଲେ ଶିଳ୍ପ ଲଗାଇ ଦେବାପାଇଁ । ବେକାର ଇଞ୍ଜିନିୟର, ଓଭରସିଅରମାନଙ୍କୁ କର୍ମସଂସ୍ଥାନ କରିବାପାଇଁ ବହୁତ କଥା ସେମାନେ କହୁଥିଲେ । ମୁଁ ସେ ସଭ୍ୟମାନଙ୍କୁ ନିବେଦନ କରିବି ସେମାନେ ନିର୍ବାଚନରେ ସେହି କଥା କହି ଏଠାକୁ ଆସିଛନ୍ତି ଏ ବର୍ଷକ ଧରି ତାହାର କଣ ଦେଖାନ୍ତୁ ସେ ପ୍ରତିଶ୍ରୁତି ପାଳନ କରିବାପାଇଁ ଏଥିରେ କ'ଣ ଅଛି ? ସେ ଯାହା କହୁଥିଲେ ତାହା ଆଜି ଫମ୍ପା ଆବାଜରେ ପରିଣତ ହୋଇଛି ।

କର୍ମସଂସ୍ଥାନ ଦିଗରେ ଏ ବଜେଟ ସମ୍ପୂର୍ଣ୍ଣ ବିଫଳ ହୋଇଛି । କର୍ମସଂସ୍ଥାନ ବିଷୟରେ କେବଳ ବେକାରୁତ୍ୱ ଏବଂ ବଡ଼ ବଡ଼ କଥା ଚର୍ବିତ ଚର୍ବଣ ହୋଇ ରହିଛି । ଗତ ବଜେଟରେ ଯାହା ଥିଲା, ଏଥିରେ ତାହାହିଁ ଅଛି । ଆମର ଶିଳ୍ପର ଉନ୍ନତି, କୃଷିର ଉନ୍ନତି, ତା' ସାଙ୍ଗକୁ ବେକାର ସମସ୍ୟା ସମାଧାନ । ଏଥିପାଇଁ ଯଦି ଆମେ ସଠିକ ପଦକ୍ଷେପ ନ ନେଉ ଆମର ଯୋଜନା କାର୍ଯ୍ୟକାରୀ ହୋଇପାରିବ ନାହିଁ । ଓଡ଼ିଶାର ଅନଗ୍ରସରତା ଦୂର କରିବାକୁ ହେଲେ, ଆଞ୍ଚଳିକ ବୈଷମ୍ୟ ଦୂରକରିବାକୁ ହେଲେ, ଏଥିପ୍ରତି ବିଶେଷ ଦୃଷ୍ଟି ଦେବାକୁ ହେବ । ସରକାରୀ ଦଳର ଲୋକେ ଏହା ବୁଝୁଥିଲେ ମଧ୍ୟ ସେଥିର କୌଣସି ବ୍ୟବସ୍ଥା ନାହିଁ । 4ର୍ଥ ଯୋଜନା ଶେଷରେ ଆମେ ଅନ୍ୟାନ୍ୟ ରାଜ୍ୟ ସହିତ ସମକକ୍ଷ ହୋଇପାରିବା ନାହିଁ ବରଂ ଅନ୍ୟ ରାଜ୍ୟ ସହିତ ତୁଳନା କରିଲେ ଗ୍ୟାପ ଏତେ ବଢ଼ିଯାଇଛି ଯେ ଆମେ ସେମାନଙ୍କ ସହିତ କେବେହେଲେ ମିଶିପାରିବା ନାହିଁ ।

ଗୋଟିଏ କଥା କହି ମୋର ଭାଷଣ ଶେଷ କରିବି । ସେକ୍ରେଟାରିଏଟ ଓ ବିଭାଗୀୟ ମୁଖ୍ୟ ଅଫିସ ଓ କଲେକ୍ଟରେଟ ଇତ୍ୟାଦିରେ ଯେଉଁ କର୍ମଚାରୀମାନେ ଅଛନ୍ତି ସେମାନଙ୍କ ପ୍ରତି ଲକ୍ଷ୍ୟ ଯଦି କରି ନ ଯାଏ ତାହା ବଡ଼ ଦୁର୍ଭାଗ୍ୟଜନକ କଥା ହେବ । ଗତ 35 ବର୍ଷ ଧରି ଏ କାର୍ଯ୍ୟ ଅନେକ ସ୍ଥାନରେ ହୋଇ ପାରି ନାହିଁ । ଯେଉଁଥିପାଇଁ କର୍ମଚାରୀମାନେ ବହୁତ ଅସୁବିଧାର

ସମ୍ପୂର୍ଣ୍ଣହୀନ ହୋଇଛନ୍ତି । ମୁଖ୍ୟମନ୍ତ୍ରୀ କହିଥିଲେ ଗତ 4/5 ବର୍ଷ ହେଲା ଦୈ କଥା ଗଡ଼ ଗଡ଼ ଆସିଛି । ମୁଁ ଭାବୁଛି ସରକାର ଯଦି ସେ କାମ କରିବାପାଇଁ ଦୃଢ଼ ପଦକ୍ଷେପ ନେବେ ତାହା କାର୍ଯ୍ୟକ୍ଷମ ହୋଇ ପାରିବ ।

Retirement age ସାଧାରଣ ଓଡ଼ିଶାରେ ଆଲୋଚନା ଆସି ପଡ଼ିଛି । କେନ୍ଦ୍ର କର୍ମଚାରୀମାନେ 58 ବର୍ଷ ବୟସରେ retire କରୁଥିବାବେଳେ ଆମ ସରକାରୀ କର୍ମଚାରୀମାନେ 55ରେ retire କରିବେ, ଆଜିକାର ବୈଜ୍ଞାନିକ ଯୁଗରେ ଯେତେବେଳେ ମଣିଷର ଆୟୁଷ ବଢ଼ିଛି, କର୍ମଚାରୀଙ୍କୁ 55 ବୟସରେ retire କରାଉଛନ୍ତି ଏଥିରେ ନୂଆ ବେକାରୀ ସୃଷ୍ଟି ହେଉଛି, ସେଥିରେ ଏମାନଙ୍କ ଜୀବନ ବଡ଼ ଦୁର୍ବିସହ ହୋଇ ପଡ଼ୁଛି । ସରକାର ଏହାର ପୁନର୍ବିଚାର କରିବେ ବୋଲି ଆଶା ।

## ସାଧାରଣ ଆଲୋଚନା 1972-73 ବଜେଟ ସମ୍ପର୍କରେ

(3-3-72)

ମୁଖ୍ୟମନ୍ତ୍ରୀ 1972-73 ମସିହାର ଯେଉଁ Budget ଉପସ୍ଥାପନ କରିଛନ୍ତି ତାହା ଅତ୍ୟନ୍ତ ନୈରାଶ୍ୟଜନକ । ଦୁର୍ଭାଗ୍ୟକ୍ରମେ ଗତବର୍ଷ ପ୍ରଳୟଙ୍କରୀ ବାତ୍ୟା, ବନ୍ୟା ଏବଂ ମରୁଡ଼ି ପରେ ପରେ ଏହି ଅଞ୍ଚଳର ଲୋକେ ଆଶା କରିଥିଲେ ଏ Budgetରେ ସେମାନଙ୍କପାଇଁ କିଛି ଆର୍ଥିକ ବ୍ୟବସ୍ଥା ହୋଇଥିବ, ଯଦ୍ୱାରା ସେମାନେ ତା ଫଳରେ ଉପକୃତ ହେବେ । କିନ୍ତୁ ତା ହୋଇନାହିଁ ।

ତା'ପରେ ଆପଣ ଦେଖିବେ ଓଡ଼ିଶା ଲୋକଙ୍କର ଜୀବନଧାରଣ ମାନ ଦେଶର ଅବଶିଷ୍ଟ ଅନ୍ୟ ଲୋକଙ୍କର ଜୀବନଧାରଣ ମାନ ମଧ୍ୟରେ ଯେଉଁ ତାରତମ୍ୟ ଅଛି, ତାହା କେବଳ ଅତ୍ୟଧିକ ହୋଇଛି ତାହା ନୁହେଁ, ତାହା କ୍ରମେ ବଢ଼ିବାରେ ଲାଗିଛି ବୋଲି ଆମର ମୁଖ୍ୟମନ୍ତ୍ରୀ ସ୍ୱୀକାର କରିଛନ୍ତି । କେଣ୍ଡି ଓଡ଼ିଶାବାସୀଙ୍କର ଜୀବନଧାରଣ ମାନ ଭାରତର ଅନ୍ୟାନ୍ୟ ପ୍ରଦେଶ ଲୋକଙ୍କର ଜୀବନଧାରଣ ମାନ ମଧ୍ୟରେ ଯାହା ତାରତମ୍ୟ ରହିଛି ତାହା ଅତ୍ୟଧିକ ହୋଇଛି । ଗତବର୍ଷ Budget Reportରେ ଏହି କଥା ପ୍ରକାଶ ପାଇଛି । 1964-65 ମସିହାରୁ ଆଜିପର୍ଯ୍ୟନ୍ତ ଆପଣ ଦେଖିବେ ମୁଣ୍ଡପିଛା ଆୟର ତାରତମ୍ୟ ମଧ୍ୟ ବଢ଼ୁଛି । ଓଡ଼ିଶାବାସୀଙ୍କର ମୁଣ୍ଡପିଛା ଆୟ ଯେତେ ତାହା ତୁଳନାରେ ଭାରତବର୍ଷର ହାରାହାରି ମୁଣ୍ଡପିଛା ଆୟର ତାରତମ୍ୟ ପ୍ରତିବର୍ଷ ବଢ଼ି ବଢ଼ି ଯାଉଛି । ଏହି ଅନଗ୍ରସରତାର ପୃଷ୍ଠଭୂମିରେ ଆମେ Budgetକୁ ଆଲୋଚନା କରିବା କଥା । ମୁଖ୍ୟମନ୍ତ୍ରୀ ସ୍ୱୀକାର କରିଛନ୍ତି ଯେ ଜନସାଧାରଣ ସ୍ୱାର୍ଥକୁ ଲକ୍ଷ୍ୟ ରଖି କାର୍ଯ୍ୟ କରାଯାଉଅଛି । କୃଷି ଓ ଶିଳ୍ପକୁ ଅଗ୍ରାଧିକାର ଦିଆଯାଉଛି । ଶିଳ୍ପ ଓ କୃଷି ଉତ୍ପାଦନ ଉପରେ ବୃଦ୍ଧି ପାଇବ ଓ ଆମେ ଦେଶରେ ସ୍ୱାବଲମ୍ବନଶୀଳତା ହାସଲ କରିବା ଏଥିପ୍ରତି ଦୃଷ୍ଟି ଦିଆଯାଉଛି ।

ଏପରି କଲେ ଆମର ଆର୍ଥିକସ୍ଥିତି ସୁଦୃଢ଼ ହେବ ବୋଲି ବୁଝାଯାଉଛି । ପ୍ରତ୍ୟେକଥର Budgetରେ ଏହି କଥା କୁହାଯାଉଛି । ଗତଥର ଏହି କଥା କୁହାଯାଇଥିଲା । ସମାଜବାଦ ପ୍ରତିଷ୍ଠା କରିବାକୁ ମଧ୍ୟ ଘୋଷଣା କରାଯାଉଛି । ଆମ ଏହି ଓଡ଼ିଶାରେ ସମାଜବାଦ ପ୍ରତିଷ୍ଠା କରାଯାଉଛି ବୋଲି ମୁଖ୍ୟମନ୍ତ୍ରୀ ମଧ୍ୟ କହୁଛନ୍ତି । ଆପଣ ଦେଖିବେ ଭୂ-ସଂସ୍କାର ସମ୍ବନ୍ଧରେ ତାଙ୍କ Budget ଭାଷଣର ନବମ ପୃଷ୍ଠାର ପଞ୍ଚମ ପାରାଗ୍ରାଫ୍‌ରେ ସେ କହୁଛନ୍ତି "ସମାଜବାଦ ପ୍ରତିଷ୍ଠା ନିମନ୍ତେ ଆମ ରାଜ୍ୟ ବଦ୍ଧପରିକର ହୋଇଥିବାରୁ ଭୂ-ସଂସ୍କାର ଏ ଦିଗରେ ଏକ ନିର୍ଦ୍ଦିଷ୍ଟ ପଦକ୍ଷେପ ।" ସମାଜବାଦ ପ୍ରତିଷ୍ଠା ନିମନ୍ତେ ଆମ ରାଜ୍ୟ ବଦ୍ଧପରିକର ହୋଇଥିବା ସ୍ଥଳେ ଏହି Budgetରେ ସମାଜବାଦ ପ୍ରତିଷ୍ଠା ନିମନ୍ତେ କି କି ପନ୍ଥା ଗ୍ରହଣ କରାଯାଇଛି, କି କି ବ୍ୟବସ୍ଥା କରାଯାଇଛି ତାହା ବିଚାର କରିବା କଥା । ଏଥିରେ କେବଳ ଭୂ-ସଂସ୍କାର ଛଡ଼ା ଅନ୍ୟାନ୍ୟ ବିଭାଗରେ କି କି ବ୍ୟବସ୍ଥା କରାଯାଇଛି କିଛି ବୁଝାଯାଉ ନାହିଁ । ଭୂ-ସଂସ୍କାର କଥା ଯାହା କୁହାଯାଉଛି ସଭାପତି ମହାଶୟ, ଆପଣ ଦେଖିବେ ଏ ଭୂ-ସଂସ୍କାର ଆଇନ ୧୯୬୨ ମସିହାରେ ପାସ୍ ହୋଇଥିଲା । ଏ ଭିତରେ ଦଶ ବର୍ଷ ବିତିଗଲାଣି । ସାରା ଦେଶରେ ଏହା ଭିତରେ ବହୁ ପରିବର୍ତ୍ତନ ସଂଘଟିତ ହେଲାଣି । ଏପରି ଅବସ୍ଥାରେ ଆମେ ସେହି ପୁରାତନ ଭୂ-ସଂସ୍କାର ଆଇନକୁ କାର୍ଯ୍ୟକାରୀ କରିବାକୁ ଯାଉଛୁ । Consolidation of holdings ଏବଂ ଭୂ-ସଂସ୍କାର ଆଇନ୍ ଏ ଉଭୟକୁ ଏକାଠି କରାଯାଉ । ଏକାଠି କରି କାର୍ଯ୍ୟ କଲୁ କରୁ ପ୍ରାୟ ଦଶ ବର୍ଷ ଲାଗିଯିବ । ଭୂ-ସଂସ୍କାର ଆଇନକୁ ଅଧିକ ପ୍ରଗତିଶୀଳ କରିବାର କିଛି ବ୍ୟବସ୍ଥା ନ କରି ଠିକ୍ ଯାହା ଆଇନ୍‌ରେ ଅଛି ତାକୁ ଯଦି କାର୍ଯ୍ୟକାରୀ କରାଯାଏ ତାହାହେଲେ ଆମେ ଯାହା ଆଶା କରୁଥିଲୁ କିଛି ଉଦ୍‌ବୃତ୍ତ ଜମି ମିଳିବ ତାକୁ ଭୂମିହୀନ ଲୋକଙ୍କ ମଧ୍ୟରେ ବଣ୍ଟନ କରାଯିବ । ଆମର ସେ ଆଶା ନୈରାଶ୍ୟରେ ପରିଣତ ହେବ । କାରଣ Ceiling ସମ୍ପର୍କରେ ଯାହା କରାଯାଇଛି ତାକୁ ଯଦି କାର୍ଯ୍ୟକାରୀ କରାଯାଏ ତାହାହେଲେ ଉଦ୍‌ବୃତ୍ତ ଜମି ବାହାରିବା ପ୍ରଶ୍ନ ଉଠୁନାହିଁ । ସେ ଦୃଷ୍ଟିରୁ ମୁଁ ସ୍ପଷ୍ଟ ମତ ଦେବି ଯେ Ceiling ଯାହା ଅଛି ତାକୁ ଯଦି କମାଇ ଦିଆଯାଏ ତାହାହେଲେ ଆମକୁ ଏତେ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ନ୍ତା ନାହିଁ ।

ସଭାପତି ମହୋଦୟ, ଓଡ଼ିଶାର ଆର୍ଥିକ ଅବସ୍ଥା ସମ୍ପର୍କରେ ମୁଖ୍ୟମନ୍ତ୍ରୀ ଗୋଟିଏ ଚିତ୍ର ଦେଇଛନ୍ତି । ଆମର ଆର୍ଥିକ ଅବସ୍ଥା ଯେ ସ୍ୱଚ୍ଛଳ ନୁହେଁ ଏହା ସର୍ବବାଦୀ ସମ୍ମତ । ଆମର ଆର୍ଥିକ ଅବସ୍ଥା ଯେତେବେଳେ ଏପରିଭାବରେ ନୈରାଶ୍ୟଜନକ ସେତେବେଳେ ଉପମନ୍ତ୍ରୀ ନେବାର କ'ଣ ଆବଶ୍ୟକତା ଥିଲା । ଉପମନ୍ତ୍ରୀମାନଙ୍କୁ ଆମେ ବାହିଁକି ନିଯୁକ୍ତ କଲୁଁ । ମନ୍ତ୍ରୀ, ଉପମନ୍ତ୍ରୀ ମିଶି ଯେ ଓଡ଼ିଶାରେ ଛବିଶ ଜଣ ହେଲେ ଏହା ଓଡ଼ିଶା ଇତିହାସରେ ଏକ ନୂଆ କଥା ହୋଇଛି । ଅଧିକ ଆଶଙ୍କା ହେଉଛି ଯେ ଆହୁରି କେତେଜଣଙ୍କୁ ନିଆଯିବାର

ବ୍ୟବସ୍ଥା ହେଉଛି । ମନ୍ତ୍ରୀ, ଉପମନ୍ତ୍ରୀ ସଂଖ୍ୟା ଊଣେଇଶ ପର୍ଯ୍ୟନ୍ତ ହେବ ବୋଲି ଶୁଣାଯାଉଛି । ଏହି କୋଳିସନମାନ ମନ୍ତ୍ରୀମଣ୍ଡଳୀକୁ ରକ୍ଷା କରିବାପାଇଁ ଏହି ସେଇ ପନ୍ଥା ଗ୍ରହଣ କରାଯାଉଛି ସେଥିରେ ଓଡ଼ିଶାର ବହୁତ ଟଙ୍କା ଏହି ବାବଦରେ ଖର୍ଚ୍ଚ ହେବ । ଆପଣ ଜାଣନ୍ତି ଏ ଉପମନ୍ତ୍ରୀଙ୍କର କେବଳ ଦରମା କଥା ନୁହେଁ ଅନ୍ୟାନ୍ୟ ବହୁତ ବ୍ୟବସ୍ଥା ତାଙ୍କପାଇଁ କରିବା କଥା ଅଛି ସେଥିରେ ବହୁତ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିବ । ତେଣୁ ଓଡ଼ିଶାର ଏ ଆର୍ଥିକ ସଙ୍କଟ ବେଳେ ଏ ସରକାର କାହିଁକି ଏହା କଲେ ତାହା ବୁଝାଯାଉନାହିଁ ।

ତା'ପରେ ବ୍ୟୟ ସଙ୍କୋଚ କରିବା କଥା ଏଥିରେ କିଛି କୁହାଯାଇ ନାହିଁ । Economic discipline ଯେତେବେଳେ କୁହାଯାଉଛି ଯେଉଁ ଯେଉଁ ଅଂଗରେ ବ୍ୟୟ ସଙ୍କୋଚ କରିବା କଥା ସେ ସମ୍ବନ୍ଧରେ ମୋଟେ କିଛି କୁହାଯାଇ ନାହିଁ । ଯୁଦ୍ଧ ସମୟରେ ଖଣ୍ଡେ ଦୁଇଖଣ୍ଡ ଗାଡ଼ି କିଣାହୋଇ ରହିଛି । ସେ ଗାଡ଼ିକୁ Secretariatରେ କିଏ ବ୍ୟବହାର କରିବ । ଏପରି ଭାବରେ ତ ସବୁ ପଇସା ଖର୍ଚ୍ଚ କରାଯାଉଛି ଲୋକଙ୍କପାଇଁ ଖର୍ଚ୍ଚ କରିବାପାଇଁ କହିଲାବେଳେ କୁହାଯାଉଛି ଅର୍ଥର ଅଭାବ ଯୋଗୁଁ ଏ କାର୍ଯ୍ୟ ହୋଇପାରିବ ନାହିଁ । ମୁଁ ଭାବିଥିଲି ମୁଖ୍ୟମନ୍ତ୍ରୀ ବ୍ୟୟ ସଙ୍କୋଚ କରିବା କଥାପ୍ରତି ଦୃଷ୍ଟି ଦେବେ । ସେ ନିଜେ ହେଉଛନ୍ତି ସେଇ ବିଭାଗର କର୍ତ୍ତା । ସେ ବ୍ୟୟ ସଙ୍କୋଚ କରିବାକୁ ଚେଷ୍ଟା କରିବା କଥା, ଆପଣମାନେ ସମସ୍ତେ ପାର୍ଶ୍ୱ ସ୍ପୃଷ୍ଟ ଲୋକ । କିନ୍ତୁ ଦୁଃଖର କଥା ବ୍ୟୟ ସଙ୍କୋଚ କରିବାପାଇଁ ଏଥିରେ କିଛି ଦିଆଯାଇନାହିଁ ।

ତା'ପରେ ଦେଖିବେ ଗତବର୍ଷ Budget ଆଲୋଚନା ସମ୍ପର୍କରେ କୁହାଯାଇଥିଲା ଯେ ଆମର ଅଣଯୋଜନା ରାଜସ୍ୱ ଆୟ ଓ ବ୍ୟୟ ଭିତରେ ତାରତମ୍ୟ ଯାହା ବଢ଼ି ବଢ଼ି ଯାଉଛି ତାହା ଆମ ପକ୍ଷରେ ଏକ ବଡ଼ ବିପଦ ସଙ୍ଗଠିତ ହେଉଛି । ଗତବର୍ଷ ଆଲୋଚନାପରେ ଶୁଣାଯାଉଥିଲା ଯେ ସରକାର ଏ ଦିଗରେ ତତ୍ପର ହେବେ । 1972-73 ମସିହା Budget ଦେଖିଲେ ଆପଣ ଜାଣିପାରିବେ ଆମ ରାଜ୍ୟର ଅଣଯୋଜନା ରାଜସ୍ୱ 127·73 କୋଟି ହେଉଥିଲାବେଳେ ଖର୍ଚ୍ଚ ହେଉଛି 146·61 କୋଟି । ତେଣୁ ଅଣଯୋଜନା ନିଅଣ୍ଟ ପରିମାଣ ହେଉଛି 18·84 କୋଟି । ଏଥିରୁ ଦେଖିବେ ନିଅଣ୍ଟ ପରିମାଣ ପ୍ରତିବର୍ଷ ବଢ଼ି ବଢ଼ି ଚାଲିଛି ଓ ଏହି ନିଅଣ୍ଟ ପୂରଣ କରିବାପାଇଁ ଆମକୁ loan କରିବାକୁ ପଡ଼ୁଛି ଓ ଅନ୍ୟାନ୍ୟ ବାବଦରୁ ଆମକୁ ଟଙ୍କା ଏ ବାବଦକୁ ଦେବାକୁ ପଡ଼ୁଛି । ଯେଉଁ ଟଙ୍କା ଦେଶର ଉନ୍ନୟନ କାର୍ଯ୍ୟପାଇଁ ଖର୍ଚ୍ଚ କରିବାକୁ ଦରକାର ହେଉଛି, ସେଥିରୁ କିଛି ଅଂଶ ଆଣି ଏହି ନିଅଣ୍ଟକୁ ଭରଣ କରିବାକୁ ପଡ଼ୁଛି । ବର୍ଷ ବର୍ଷ ଧରି ଏହା ହେଉଛି । ପ୍ରତିବର୍ଷ ଏହା ହେଉଛି । ତେଣୁ ଯେଉଁ କାର୍ଯ୍ୟ ହେବ ବୋଲି ଆମେ ଆଶା କରୁଛୁଁ ତାହା ପ୍ରତିବର୍ଷ ସଙ୍କୁଚିତ ହୋଇଯାଉଛି ।

ତେଣୁ ସଙ୍କୁଚିତ ହେବବୋଲି ଯାହା ଆଶା କରୁଛୁଁ, ଏହି ନଅଣ୍ଡ ସଙ୍କୁଚିତ ହେବା ପରିବର୍ତ୍ତେ ଯାହା ବଢ଼ି ବଢ଼ି ଯାଉଛି ତଦ୍ୱାରା ଏକ ସଙ୍କଟଜନକ ପରିସ୍ଥିତି ସୃଷ୍ଟି ହେବ । ଯଦି ଏ ଦିଗରେ ସରକାର ସଚେତନ ନ ହେବେ ତାହାହେଲେ ଆମେ ଘୋର ଅସୁବିଧାର ସମ୍ମୁଖୀନ ହେବା ।

ସଭାପତି ମହାଶୟ, ଆପଣ ଦେଖିବେ ସରକାର ଯେଉଁ ଚନ୍ଦ ଦେଇଛନ୍ତି ଏବଂ ବିଭିନ୍ନ ବିଭାଗରେ ଉନ୍ନତିକର କାର୍ଯ୍ୟପାଇଁ ଯାହା କିଛି ପ୍ରସ୍ତାବ ଦେଇଛନ୍ତି ସେ ପ୍ରସ୍ତାବ କେତେଦୂର କାର୍ଯ୍ୟକାରୀ ହେଉଛି ତାହା ଦେଖିବାକୁ ହେବ । ଆଜି ବ୍ୟୟ ବରାଦପାଇଁ ଯେଉଁ ଟଙ୍କା ମଗା ଯାଉଛି ସେ ଟଙ୍କା ବିଷୟ ଆଲୋଚନା କଲାବେଳେ ମନରେ ସନ୍ଦେହ ହେଉଛି । ଆଜି ସରକାର ସମ୍ପୂର୍ଣ୍ଣ ଦୁର୍ନୀତିଗ୍ରସ୍ତ ହୋଇପଡ଼ୁଛି । ରିଲିଫ୍ ବିଷୟରେ ଲୋକଙ୍କୁ ବୁଝାଗଲେ ଆପଣ ଦେଖିବେ ସେଥିରେ ଯେଉଁ କାରସାଦି ହୋଇଛି ଅନ୍ୟାନ୍ୟ ସବୁ କ୍ଷେତ୍ରରେ ସେହିଭଳି ଦୁର୍ନୀତି କଥା ଦେଖାଯାଉଛି ।

କୁହାଯାଉଛି ଯେ ଆଜି ପ୍ରତ୍ୟେକ ମନ୍ତ୍ରୀ ଏହି ରାଜ୍ୟରେ ଜଣେ ଜଣେ ଜମିଦାର । ପୂର୍ବର ଜମିଦାରମାନେ ଯେପରି ଶୋଷଣ କରୁଥିଲେ ଆଜି ମନ୍ତ୍ରୀମାନେ ନିଜ ନିଜ ବିଭାଗକୁ ଜମିଦାରୀ ରୂପେ ସେପରି ଶୋଷଣ କରୁଛନ୍ତି । ଦୁର୍ନୀତି ଏପରି ସ୍ତରକୁ ମାଡ଼ିଯାଇଛି ତାକୁ ଦୂର କରିବା କଠିନ ବ୍ୟାପାର । ପୂର୍ବତନ ସ୍ୱତନ୍ତ୍ର ଜନକଂଗ୍ରେସ ମନ୍ତ୍ରୀମଣ୍ଡଳରେ ସେମାନେ କିଛିହେଲେ ଉଦ୍ୟମ କରିଥିଲେ ଯଦିଓ ପାରିଲେ ନାହିଁ । କିନ୍ତୁ ଏ ମନ୍ତ୍ରୀମଣ୍ଡଳ ସେ ଦିଗରେ କିଛି ଉଦ୍ୟମ କରିନାହାନ୍ତି । କାରଣ ସେମାନେ ନିଜେ ସେଥିରେ ସମ୍ପୃକ୍ତ ।

ଅଭ୍ୟନ୍ତରୀଣ ସମ୍ବଳ ସଂଗ୍ରହ କରିବା କଥା କୁହାଯାଇଛି ଏବଂ 10 କୋଟିରୁ ଅଧିକ ଟଙ୍କା ନୂଆ ଟିକସ ଆକାରରେ ଆଦାୟ କରିବା ପ୍ରସ୍ତାବ ଅଛି । କିନ୍ତୁ ଯେଉଁଥିରୁ ଅଧିକ ସମ୍ବଳ ଆଦାୟ କରିପାରିଥାନ୍ତେ ସେଇ ଦିଗ ପ୍ରତି କଥା ବିଚାର କରନ୍ତୁ । ଏ ଗୃହରେ ବହୁବାର ଆଲୋଚନା ହୋଇସାରିଛି ଯେ କେନ୍ଦୁପତ୍ର lease holder ମାନଙ୍କୁ ବର୍ଷେ ଅଧିକ ସମୟ ଦିଆଯିବା ଦ୍ୱାରା ଯେଉଁ ଟଙ୍କା ସେମାନେ ପାଇଲେ ବୋଲି ଅଭିଯୋଗ ହେଉଛି ଏବଂ କେବଳ ଅଭିଯୋଗ ନୁହେଁ ସ୍ୱୟଂ ପବିତ୍ରମୋହନ ପ୍ରଧାନଙ୍କ ଭଳି ପୂର୍ବତନ ଉପ ମୁଖ୍ୟମନ୍ତ୍ରୀ ଏହାର ଉପରେ କମିଶନ ନିଯୁକ୍ତିପାଇଁ ଦାବି କରୁଛନ୍ତି । ଏହି କମିଶନ ନିଯୁକ୍ତିପାଇଁ ଆମେ ମଧ୍ୟ ଏ ଗୃହରେ ବାରମ୍ବାର ଦାବି କରିଥିଲୁ । ସରକାର ତାକୁ ବିଚାରକୁ ନେଲେନାହିଁ । ମୋର ବ୍ୟକ୍ତିଗତ ମତ ଏବଂ ବିଜୁ ପଟ୍ଟନାୟକ ମଧ୍ୟ ସେଇକଥା କହିଥିଲେ ଯେ lease holderମାନଙ୍କୁ ବର୍ଷେ ଅଧିକ ସମୟ ଦେଇଦେବାଦ୍ୱାରା ଓଡ଼ିଶା ରାଜକୋଷର 3 କୋଟି ଟଙ୍କା କ୍ଷତି ହେଲା । ଏହା ମୋ ନିଜ କଥା ନୁହେଁ । ସ୍ୱୟଂ ବିଜୁ ପଟ୍ଟନାୟକ

ଏହା କହୁଛନ୍ତି । ଆମେ ଗୋଟିଏ tender ଠାରୁ ଆଉ ଗୋଟିଏ tender ଅଧିକ କରିଥାନ୍ତି ପ୍ରାୟ 3 କୋଟିରୁ ଅଧିକା ଆମେ ପାଇଥାନ୍ତେ ଏବଂ ସେ ଟଙ୍କାରେ ଆମର ଉନ୍ନୟନ କାର୍ଯ୍ୟକ୍ରମ ହୋଇପାରିଥାନ୍ତା । ତାହା ହେଲ ନାହିଁ । ସେଠାରେ ବୃହଦାୟତନ ଜଣ ନା ତାକୁ ସମୀକରଣ କରାଯିବ । Nationalisation କରାଯିବ । ଆଜି ଏହି ପ୍ରସଙ୍ଗରେ ମୁଁ ଦାବି କରୁଛି ଏତେ ଅଭିଯୋଗ ହେଉଥିବାବେଳେ ଗୋଟିଏ କମିଶନ ନିଯୁକ୍ତ ହେବା ଉଚିତ୍ ।

× × × × × ×

ଶ୍ରୀ ବନମାଳୀ ଆଚାର୍ଯ୍ୟ : ସେଥିପାଇଁ ଆମେ କହୁଥିଲୁ ଏ programme କଣ ଏବଂ ଆମକୁ ଜଣାଇ ଦିଆଯାନ୍ତୁ କାହିଁକି ? ପୁଣି କେନ୍ଦ୍ରର ଶିଳ୍ପ ମନ୍ତ୍ରୀ ଏଥିରେ ସଂପୃକ୍ତ ଅଛନ୍ତି ବୋଲି ଅଭିଯୋଗ ହେଉଛି । ଜଙ୍ଗଲ ମନ୍ତ୍ରୀ ଓ ଶିଳ୍ପ ମନ୍ତ୍ରୀ ଉଭୟଙ୍କ ଘର ଉପରେ ଏହି ନାମ ଶିଳ୍ପ ମନ୍ତ୍ରୀଙ୍କ ଘରେ ହୋଇଛି । ଏହା ଖୋଲା ଅଭିଯୋଗ । ଏଥିରେ ଲୁଚ ଛପା କିଛି ନାହିଁ । ତେଣୁ ଏ ସେଇ Commission of enquiry କଥା କହିଠାରୁ ଶିଳ୍ପ ମନ୍ତ୍ରୀ ନିଜେ ଆଗଭର ହୋଇ ଏହା କାର୍ଯ୍ୟକାରୀ କରିବା ଉଚିତ । ତା'ହେଲେ ସମସ୍ତ ରାଜ୍ୟ ଏବଂ ଏ ଦେଶ ଜାଣିବେ ଶିଳ୍ପ ମନ୍ତ୍ରୀ ସେଥିରେ ସଂପୃକ୍ତ । ସେ ଏଥିରୁ ମୁକ୍ତ ରହିଛନ୍ତି । ତେଣୁ ମୁଁ ପୁନର୍ବାର ଦାବି କରୁଛି ଗୋଟିଏ ତଦନ୍ତ କମିଶନ ନିଯୁକ୍ତ କରାଯାଉ । ଯଦିଓ ତଦନ୍ତ ହୋଇଗଲେ ସେ ଦୋଷମୁକ୍ତ ହେବେ ଏବଂ ସାରା ଓଡ଼ିଶା ମଧ୍ୟ ବୁଝିବ ସେ ଏଥିରେ ସଂପୃକ୍ତ ନାହାନ୍ତି । ମୁଁ ଆଶାକରେ ଏହି କରିବାରେ ସେ ପଶ୍ଚାତ୍‌ପଦ ହେବେ ନାହିଁ ।

× × × × × ×

କେବଳ ମୂଳ ଯେଉଁଠି ରହିଛି where the shoe pinches ? ସେଥିପାଇଁ ତାଙ୍କ ଦ୍ୱାରା ଯେ ଶୋଷଣ ହେଉଛି ସେଥିରୁ ମୁକ୍ତିଲାଭ ପାଇବେ ନାହିଁ । Till you come and say a commission of enquiry ହେଉ । ବାହାରେ ସେତେବେଳେ କହୁଥିଲ ମଧ୍ୟ ସେଥିରୁ କିଛି ପାଇବା ନାହିଁ । ସେହିପରି ଏ ଗୃହରେ cromeore ସମ୍ପର୍କରେ ଅଭିଯୋଗ ହେଲା ବାହାର ଫାର୍ମ ସଙ୍ଗେ ଯାହା କଥା ହୋଇ ଦେଇ ଦିଆଗଲେ ସେ ବାବଦ ରାଜକୋଷକୁ ଅଧିକ ଟଙ୍କା ଆସିପାରିଥାନ୍ତା । ଭବିଷ୍ୟତରେ ସେହିପରି ଚୁକ୍ତିରେ ଆବଦ୍ଧ ହେଲେ ଆମର ବହୁତ କ୍ଷତି ହେବ । ତେଣୁ ସରକାର ସାବଧାନତାର ସହିତ ଏ ବିଷୟ ଏଣିକି ବିଚାର କରିବେ । ଆମ୍ଭମାନଙ୍କ ଦେଶମାନଙ୍କ ଆମଠାରୁ ore ଗ୍ରହଣ କଲେ ସେମାନଙ୍କ ସଙ୍ଗେ ପ୍ରଚଳିତ ବଜାର ଦର ହିସାବରେ ଚୁକ୍ତି କରି ଦେବାକୁ ହେବ । ତା'ହେଲେ ଏଥିରେ କିଛି ରହସ୍ୟ ରହୁଛି ବୋଲି ମନରେ ସନ୍ଦେହ ଉଠୁଛି ।

ତା'ପରେ ବାଲୁ ଓ ବନ୍ୟା ଅଞ୍ଚଳର କଥା କହିବା ଆବଶ୍ୟକ ହେବ । ଏ ସମ୍ପର୍କରେ ଆନ୍ଦୋଳନ ହୋଇଛି, କିପରି ସେମାନେ ମନରେ ଅସନ୍ତୋଷ ବଢ଼ି ଚାଲିଛି, ଆପଣ ଜାଣନ୍ତି କିଛି ଦିନ ତଳେ ଗୋବିନ୍ଦପୁରରେ ମାନ୍ୟବର ସଭ୍ୟ ଅନଶନ କରିଥିଲେ । ତା'ର

କାରଣ ମଧ୍ୟ ସମସ୍ତଙ୍କୁ ଜଣାଇଛନ୍ତି । ଘରଭଙ୍ଗା ସାହାଯ୍ୟ, ତଗାବି ଋଣ ବଳଦ କିଣା ଋଣ ଦେବାରେ ଯେପରି ବ୍ୟାପକ ଦୁର୍ନୀତି ଘଟିଛି କୌଣସି ଉଚ୍ଚପଦସ୍ଥ କର୍ମକର୍ତ୍ତାଙ୍କ ଜରିଆରେ ଅନୁସନ୍ଧାନ କରିବା ପାଇଁ ସେ ଦାବି କରିଥିଲେ । ଏପରିକି ସାମ୍ପ୍ରତିକ ବାତ୍ୟା ଓ ବନ୍ୟା ପ୍ରପୀଡ଼ିତ ଅଞ୍ଚଳର ଲୋକମାନଙ୍କ ତରଫରୁ ଏ ଅଭିଯୋଗ ହେଉଛି । ଏହି ଅଭିଯୋଗ କଟକ ଜିଲ୍ଲାର ଧର୍ମ-ଶାଳା ଅଞ୍ଚଳକୁ ମୁଁ ଯାଇ ଶୁଣି ଆସିଛି । ସେଠାରେ ଫର୍ମ ପାଇବାପାଇଁ 2 ଟଙ୍କା ଦେବାକୁ ହେଉଛି । ଜଣେ ଲୋକଙ୍କୁ 25 ବା 30 ଟଙ୍କା ଋଣ ମିଳିବ । ସେ ଯଦି ପାଞ୍ଚଥର ତହସିଲଦାର ଅଫିସକୁ ଆସିବ ତା'ର ଦିବା ଆସିବା ଓ ଖାଇବା ଖର୍ଚ୍ଚ ବାବଦରେ ହୁଏତ ଟ 15— 20ଙ୍କା ଖର୍ଚ୍ଚ ହୋଇଯିବ । ଆଉ ଗଲାବେଳକୁ ଟ 5 ଙ୍କା ଋଣ ଧରି ଯିବ । ବଳଦ କିଣା ଋଣ ବାବଦ ଦରଖାସ୍ତ ବହୁ ଦିନ ଧରି ପଡ଼ି ରହିଛି । ସୁକିନ୍ଦା ବ୍ଲକର S. D. O. କୁଆଡ଼େ ନିର୍ଦ୍ଦେଶ ଦେଇଛନ୍ତି ଉତ୍କଳ କଂଗ୍ରେସ ଦଳର ସରପଞ୍ଚମାନେ ଯେଉଁ 5 ଜଣଙ୍କ ନାମ ସୁପାରିଶ କରିବେ ସେମାନଙ୍କୁ ଦିଆଯିବ । ନିର୍ଦ୍ଦିଷ୍ଟ ଭାବରେ ଗୋଟିଏ ରାଜନୈତିକ ଦଳ ଓ ସଙ୍କୋଚ ଦଳର ସରପଞ୍ଚଙ୍କ ସୁପାରିଶ ଅନୁସାରେ କିପରି କାମ ଚାଲିବ ମୁଁ ବୁଝି ପାରୁନାହିଁ । ଗୋଟିଏ general circular ହୋଇଥାନ୍ତା । ସମିତି Chairman ବା ସରପଞ୍ଚମାନେ ତାଙ୍କୁ ବୁଝାସୁଝା କରି ସୁପାରିଶ କରନ୍ତେ ତାହା ହେଲା ନାହିଁ । ଏପରି ବହୁତ ଉଦାହରଣ ଅଛି । ମୁଁ ଆପଣଙ୍କର ସମୟ ନେବାକୁ ଚାହୁଁନାହିଁ । ଦୁର୍ନୀତି ପୂର୍ଣ୍ଣ ମାତ୍ରାରେ କାମ କରୁଛି । ତାହା ସାଙ୍ଗକୁ ଦଳୀୟ ମନୋଭାବ ମଧ୍ୟ ପୂର୍ଣ୍ଣ ମାତ୍ରାରେ କାମ କରୁଛି । ଦୁଃଖର କଥା ଅଫିସରମାନଙ୍କୁ ମଧ୍ୟ ସେହିପରି କାମରେ ବ୍ୟବହାର କରାଯାଉଛି । ଅଫିସରମାନେ ଏମାନଙ୍କର ଇଙ୍ଗିତରେ ଦଳଗତ ଦୃଷ୍ଟିକୋଣରୁ କାମ କରୁଛନ୍ତି । ଗଣତନ୍ତ୍ର ପ୍ରତି ଏହା ଘୋର ବିପଦ । Civil Services ଯଦି ଏପରି ଦଳଗତ ମନୋଭାବ ନେଇ କାମ କରିବେ, ତାହାହେଲେ ଆମେ ବହୁ ଅସୁବିଧାର ସମ୍ମୁଖୀନ ହେବୁ । ଏଇଟା ହେଉଛି relief matter, ମରିଯାଉଥିବା ଲୋକଙ୍କୁ ସାହାଯ୍ୟ ଦେଲାବେଳେ ଦଳଗତ ଦୃଷ୍ଟିକୋଣ କିପରି ରହୁଛି ମୁଁ ବୁଝିପାରୁ ନାହିଁ । ସେଥିପାଇଁ ସେଦିନ ଏ ସରକାରଙ୍କ ପାଖରେ ଆବେଦନ କରିବାପାଇଁ ଜନତା ଅସିଥିଲେ । ମୁଁ ଜାନୁଆରୀ 6 ତାରିଖ ଘଟଣାକୁ refer କରୁଛି । ସେମାନେ ସରକାରକୁ ଭାଙ୍ଗିବାପାଇଁ ଆସି ନଥିଲେ । ଆସିଥିଲେ ଆବେଦନ ଜଣାଇବାପାଇଁ । ମୁଖ୍ୟମନ୍ତ୍ରୀ ସେ ଆବେଦନ ଗ୍ରହଣ କରିବାର ଥିଲା । ଅଥ ତରବରରେ ଏମାନେ ଅତ୍ୟନ୍ତ ଅନ୍ୟାୟ କାର୍ଯ୍ୟ କଲେ । ମୁଁ ତା' ଭିତରକୁ ଯାଉନାହିଁ । ଯାହା ହେଲେ ଓଡ଼ିଶା ଇତିହାସରେ ତା'ର ପଟାନ୍ତର ନାହିଁ । ଆଜି ମଧ୍ୟ ବିଭିନ୍ନ ଅଞ୍ଚଳ ଅବସ୍ଥା ଦେଖନ୍ତୁ । ମୟୂରଭଞ୍ଜର ଠାକୁରମୁଣ୍ଡା ଅଞ୍ଚଳ କାଳ ମୁଳକର ପ୍ରଭାବ ଏସ ବର୍ଷପୂର୍ବରେ ଥିଲା । ଚଉଦଟି ଗାଁରୁ 22 ଜଣ ଲୋକ ମଲେଣି । ଏଣିକି ଆହୁରି ମରିବେ । ଆମର ଚିନ୍ତାମଣି ପାଣିଗ୍ରାହୀ ଏବଂ କୁମାର ମାଝୀ ସେ ଅଞ୍ଚଳକୁ ଯାଇଥିଲେ । ସେମାନେ ଦେଖିଥିଲେ କେତେ ଅସ୍ଥି କଙ୍କାଳସାର ହେଲେଣି । ତାହା ଗୋଟିଏ ଆଦିବାସୀ ବହୁଳ ଅଞ୍ଚଳ । କାହାର ଦୃଷ୍ଟି ସେଠାକୁ ପଡ଼ୁନାହିଁ । ଅନାହାର ମୃତ୍ୟୁ ହେଉଛି ।

ଭଲଷ୍ୟରେ ମଧ୍ୟ ହେବ । ତାକୁ ଆଜି ଧ୍ୱଳ ହେବ ନାହିଁ । ବାଲେଶ୍ୱର, ବୃନ୍ଦାବନ, ଝଣ୍ଡୁଡ଼ି, ବାସୁଦେବପୁର ବ୍ଲକ, ଢେଙ୍କାନାଳର ଗନ୍ଧଆ, ମୟୂରଭଞ୍ଜର କରଞ୍ଜିଆ, ଖଇଲା ପ୍ରଭୃତି ଯାଗାର ଅବସ୍ଥା ଅସହ୍ୟ ହେଲଣି । ଗତ ବିଧାନ ସଭାରେ ଆମେ ସରକାରଙ୍କୁ କହିଥିଲୁ, ଯଦି ଆପଣ ଏବେଠାରୁ ପ୍ରତିକାର ନ କରନ୍ତି ନିଶ୍ଚିତ ଭାବରେ ଦୁର୍ଭିକ୍ଷ ହେବ । ମୁଁ କହିଥିଲି 1942-43ରେ ଉପକୂଳ ଅଞ୍ଚଳରେ ଯେଉଁପରି ଦୁର୍ଭିକ୍ଷ ହୋଇଥିଲା, ଏବେ ବାତ୍ୟା ବନ୍ୟାଗ୍ରସ୍ତ ଅଞ୍ଚଳରେ ସେହିପରି ଅବସ୍ଥା ହେଉଛି । ସରକାରଙ୍କ ନିଦ୍ରା ଆଜି ପର୍ଯ୍ୟନ୍ତ ଭଙ୍ଗ ହେଲା ନାହିଁ । ଅନାହାର ମୃତ୍ୟୁ ହେଲା । ତାକୁ ଘୋଡ଼ାଇବାପାଇଁ ଚେଷ୍ଟା ଚାଲିଛି । ଦୁଃଖର କଥା ଅଫିସରମାନେ ମଧ୍ୟ ଅନାହାର ମୃତ୍ୟୁ ନ କହି ନାନା ଆଳରେ ତାକୁ avoid କରୁଛନ୍ତି । ଅନାହାର ମୃତ୍ୟୁ ହୋଇଥିଲେ ରାଜସ୍ୱ ମନ୍ତ୍ରୀଙ୍କୁ ଆମେ ଫାଶୀ ଦେଇ ନ ଥାନ୍ତୁ । ଆମର କହିବା କଥା ଆଗରୁ ସାବଧାନ ନ ହେଲେ ଅବସ୍ଥା ଶୋଚନୀୟ ହେବ । ଲୋକଙ୍କୁ କାମ ଯୋଗାଇବା, fare price shop ଖୋଲିବା, ଏହିସବୁ ନ କଲେ ଲୋକେ ବଞ୍ଚିବେ ନାହିଁ । ବହୁ ଅଞ୍ଚଳରେ ବିଶେଷତଃ କଟକ, ବାଲେଶ୍ୱର, ମୟୂରଭଞ୍ଜ, ଢେଙ୍କାନାଳ ଏହିସବୁ ଜିଲ୍ଲାର ଅବସ୍ଥା ସାଙ୍ଘାତିକ ହେଉଛି । ସରକାର ସଜାଗ ରହନ୍ତୁ । Crash Programme ସହିତ ଅନ୍ୟାନ୍ୟ scheme ଗୁଡ଼ିକ co-relate କରି ଲୋକଙ୍କୁ କାମ ଯୋଗାଇ ଦିଆଯାଉ । Fare price shop ଖୋଲାଯାଉ । ଦୁର୍ଭିକ୍ଷର ପଦଧ୍ୱନି ସେ ଅଞ୍ଚଳରେ ଶୁଣାଗଲଣି । କୋରାପୁଟ ଗୋଟିଏ ଜିଲ୍ଲା । ମୋର ଜଣେ ଅଫିସର ବନ୍ଧୁ କହିଲେ ସେଭଳି ଜିଲ୍ଲା ସାରା ଭାରତବର୍ଷରେ ନଥିବ । ଏଠି ଖଣିଜ ସମ୍ପଦ ଅଛି, ଏଠି ଜଳ ସମ୍ପଦ ଅଛି, ଯାହାଦ୍ୱାରା ସେ ଜିଲ୍ଲାକୁ ସ୍ୱର୍ଗରେ ପରିଣତ କରି ହୁଅନ୍ତା । ଅଥଚ ସେ ଜିଲ୍ଲାପାଇଁ ଆମେ କରୁଛୁ କ'ଣ ? ଆଜିର ଶିଳ୍ପ ମନ୍ତ୍ରୀ ଗୁରୁବର୍ଷ ଧରି ମୁଖ୍ୟମନ୍ତ୍ରୀ ଥିଲେ । ସେ ଅଞ୍ଚଳକୁ ଦୃଷ୍ଟି ଦିଆ ନ ଗଲା କାହିଁକି ? ପାଡୁଆ, ବନ୍ଧୁଗାଁ, ନାରାୟଣପାଟନ ବ୍ଲକ ଆନ୍ଧ୍ର ସୀମାକୁ ଲାଗିଛି । ସେଠାରେ roadର ବ୍ୟବସ୍ଥା ନାହିଁ, ସ୍କୁଲ ଘର ନାହିଁ, ଚିକିତ୍ସା ବ୍ୟବସ୍ଥା ନାହିଁ । ସ୍ୱାଧୀନତାର ଏତେ ବର୍ଷ ପରେ ବି ସେ ଅଞ୍ଚଳ ଲୋକେ ଆଗଭଳି ଅସନ୍ତୋଷ ହୋଇ ରହିଛନ୍ତି । ବନ୍ଧୁଗାଁ ଅଞ୍ଚଳରେ ଧୂଆଁପତ୍ର, ହଳଦୀ, ଇତ୍ୟାଦି ବହୁତ cash crop ହେଉଛି । ସେଠାରେ road ନାହିଁ । ଖାଲି ପଥର spread ହୋଇଛି । ସେଠାକୁ ଗାଡ଼ି ଆସୁନାହିଁ । State Transport bus ସେଠାକୁ ବର୍ଷକୁ 3 ମାସ ଆସୁଛି । ଆଲ୍‌ମୋଣ୍ଡା ଅଞ୍ଚଳ ମଧ୍ୟ ଗୋଟିଏ ସୀମାନ୍ତ ଅଞ୍ଚଳ । ସେଠାକୁ bus ଯାଉନାହିଁ । ଲୋକେ ତାଙ୍କର ଜିନିଷପତ୍ର ପଠାଇବାକୁ ଟଙ୍କାଏ ଜାଗାରେ 5,10 ଟଙ୍କା ଖର୍ଚ୍ଚ କରୁଛନ୍ତି । ସୀମା ଆରପଟେ ପିଚ୍ ରାସ୍ତା ଓ ଅନ୍ୟାନ୍ୟ ବ୍ୟବସ୍ଥା ଅଛି । ଗୋଟିଏ ଛୋଟ ନଦୀ ଅଛି, ତାହା ଉପରେ bridge କରିଦେଲେ ଏମାନଙ୍କର cash crop ବାହାରକୁ ପଠାହୋଇ ପାରନ୍ତା, ସେଠିକି ମଧ୍ୟ

ସୁବିଧା ନାହିଁ । Private truck ଆସିଲେ, ସେ ନିଶ୍ଚୟ ଅଧିକ ଟଙ୍କା ନେବ । କୋରାପୁଟ ଭଳି ଜିଲ୍ଲାର ଉନ୍ନତିପାଇଁ ଯଦି ଆମେ କିଛି ନ କରୁ, ତାହାହେଲେ ଅତ୍ୟନ୍ତ ଦୁର୍ଭାଗ୍ୟଜନକ ହେବ । ପାଞ୍ଚ ବର୍ଷ ଲୋକେ ଆମକୁ କହିବେ ଯଦି ଆପଣ ଆମକୁ କୌଣସି ସୁବିଧା ନ ଦେବେ, ତେବେ ଆମେ ସୀମା ଟପି ଅନ୍ୟପାଖକୁ ଚାଲି ଯିବୁ । ଏଠାରେ ମରିବୁ ନାହିଁ କି ? ବର୍ଷା ଦିନରେ ସେ ନଦୀ ର ବହୁତ ପାଣି ଆସିଯାଏ । ମନ୍ତ୍ରୀ କହିଲେ ଆମକୁ ଦୁଇଟି ବୋଟ ଦିଅ । ୧୨,000ଙ୍କାର ବୋଟ୍ ପାଇଛୁ । ସେ ବୋଟରେ ହାତୀ ଯିବା ନାହିଁ, ମଣିଷ ଯାଇ ପାରିବେ ନାହିଁ, ଅଣାଏ ପାଣି ନ ହେଲେ କୁଳକୁ ଆସିପାରିବ ନାହିଁ । ସେମାନଙ୍କର ଅବସ୍ଥା ଦେଖି ଆମକୁ ବଡ଼ ଦୁଃଖ ଲାଗିଲା । ସେମାନେ ଯଦି କୁହନ୍ତି ଆମର ଅନ୍ୟ ଉପାୟ ନାହିଁ, ଆମେ ଅରଣ୍ୟକୁ ଚାଲିଯିବୁ, ତେବେ ଆମର କିଛି କହିବାର ନାହିଁ । ଆମେ ସେବର୍ଷ ତାଙ୍କୁ ପ୍ରତିଶ୍ରୁତି ଦେଲୁ ଯେ ସରକାର ସବୁ କାମ କରିଦେବେ । ଲୋକଙ୍କର ଏଭଳି ଅଭାବ, ଅସୁବିଧା, ଦୈନ୍ୟ ଭିତରୁ ହିଁ ନକସଲାଇଟ grow କରୁଛନ୍ତି ଆମେ କେବଳ ପୋଲିସ ଲଗାଇ physical force ଦ୍ୱାରା ତାକୁ ଦବାଇ ପାରିବା ନାହିଁ, ଯଦି ଆମେ ତାଙ୍କର ଅର୍ଥନୈତିକ ଅବସ୍ଥାର ଉନ୍ନତି ନ କରୁ । ଆମର ୫ଟି ଜିଲ୍ଲା backward ବୋଲି କୁହାଯାଉଛି । ଏହି ଅଞ୍ଚଳର ଉନ୍ନତି ନ କଲେ ଅବସ୍ଥା ସାଙ୍ଘାତିକ ହେବ । ସେଠାରେ ଯଦି ବିଦ୍ରୋହର ନିଆଁ ଜଳି ଉଠିବ, ତାକୁ ଲିଭାଇବା କଷ୍ଟକର ହୋଇ ଉଠିବ ।

Irrigation ସେଠା ସରକାର ଦେଉଛନ୍ତି, ଆମେ ଦୃଷ୍ଟି ଦେଉନୁ । ଓଡ଼ିଶାରେ ଦୁଆରେ ଯେବେ ଲୋକେ ଭାବୁଛନ୍ତି ଆମର କିଛି ଦରକାର ନାହିଁ, କେବଳ ପାଣି ଯୋଗାଇ ଦିଅନ୍ତୁ । ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ପାଖ ଲୋଚିପ ଅଞ୍ଚଳର ଲୋକେ କହିଲେ ଯେ ଆମର ସ୍କୁଲ ଦରକାର ନାହିଁ । ସେହିଭଳି କଥା । Hospital, School ଯଦି ନ ହେବ, ଅଭାବ ଜଳସେଚନ ଯୋଜନା କାର୍ଯ୍ୟ କର । ଯେଉଁଗୁଡ଼ିକ perennially drought affected area ସେଠାରେ ଅନୁସନ୍ଧାନ କରି ଜଳସେଚନର ସୁବିଧାସୁଯୋଗ ଦେବା କଥା । ତାହା ହୋଇ ପାରୁନାହିଁ ଆପଣ ଦେଖିବେ ଯେ irrigation ବିଷୟରେ ସରକାରଙ୍କର କୌଣସି ଗତି ନାହିଁ । କେତେ Medium Irrigation Project ବର୍ତ୍ତମାନ ଅସମ୍ପୂର୍ଣ୍ଣ ଅବସ୍ଥାରେ ଅଛି । ଉଦାହରଣ ସ୍ୱରୂପ ଗୋହିରାଟିକିରି ଓ ବାହୁଦା project ଅସମ୍ପୂର୍ଣ୍ଣ ଅଛି । କେବେ ସମ୍ପୂର୍ଣ୍ଣ ହେବ ତାହା ସେମାନେ କହିପାରିବେ ନାହିଁ । ସେଥିପାଇଁ ଆମେ ପ୍ରତି ବର୍ଷ ଅର୍ଥର ବ୍ୟବସ୍ଥା କରି ନ ପାରିବା ହେତୁ ସେଠାରେ ଯେଉଁ କର୍ମଚାରୀମାନେ ଅଛନ୍ତି ସେମାନେ ବହୁତ ସମୟ idle ହୋଇ ରହୁଛନ୍ତି । ସେମାନେ କହୁଛନ୍ତି ଆମେ କ'ଣ କରିବୁ ଟଙ୍କା ଯୋଗାଇଲେ ଆମେ କାମ ଶେଷ କରିଦେବୁ । ପୁରୀର ଯେପରି ମାର୍କଣ୍ଡେଶ୍ୱର ଭଣ୍ଡାର ପ୍ରତ୍ୟେକ ମୁଣ୍ଡରୁ ଅଧା ଅଧା ଖିଅର କରି ଛାଡ଼ିଦିଏ, ସେହିପରି ସବୁରେ କାମ

ହେଉଛି । ବାଲ୍ଡୁଆ projectରେ ପ୍ରଥମେ 5ଟି diversion weir ହେବାର ଥିଲା, 4ଟି diversion weir ହେଲା । ଶେଷଟି କଲ୍‌ଭେଲକୁ ଆମ ମୁଣ୍ଡରୁ ବାହାରିଲା ଯେ reservoir ନହେଲେ ହେବ ନାହିଁ । ଶେଷ diversion weir ଟି କରିଥିଲେ ଅନ୍ତତଃ 5 ହଜାର ଏକର ଜମିରେ ଜଳର ବ୍ୟବସ୍ଥା ହୋଇ ପାରଥାନ୍ତା । ଦୁଃଖର କଥା ତାହା ହେଲା ନାହିଁ । ଆମ ଅଞ୍ଚଳରେ ଖାଲି reservoir ଦେଖା ଯାଉଛି । ଗୋଡାହାଡ଼ project 15 ବର୍ଷ ହେଲା ଶେଷ ହୋଇପାରୁ ନାହିଁ । ତଥାପି ଆମେ ନୂଆ ନୂଆ Medium Irrigation Project ନେଉଛୁ । ସେହିପରି third planରୁ ଆମର 91ଟି Minor Irrigation Project ଗାଡ଼ି ଆସୁଛି । ସେ ସବୁ ସମ୍ପୂର୍ଣ୍ଣ କରିବା ପରିବର୍ତ୍ତେ ବର୍ତ୍ତମାନ ଆଉ 52ଟି ନୂତନ ଯୋଜନା ହାତକୁ ନିଆଯାଉଛି, ଏହା କାହିଁକି ହେଲା ମୁଁ ବୁଝିପାରୁନି । ବୋଧହୁଏ ନିର୍ବାଚନକୁ ଅଭିପ୍ରାୟରେ ରଖି ସେସବୁ ଅଞ୍ଚଳରେ ଶୁଭ ଦିଆଯାଉଛି, ଅନେକ ଯୋଜନା ନିଜ ଦଳୀୟ ଲୋକଙ୍କ ଅଞ୍ଚଳରେ କରିବାକୁ ବାଧ୍ୟ ହେଉଛନ୍ତି । ଆପଣ ଦେଖିବେ ବର୍ତ୍ତମାନ ନିର୍ବାଚନ ହେବାରୁ ମନ୍ତ୍ରୀମାନେ ବିଶେଷ କରି R.E.O. ବିଭାଗ ମନ୍ତ୍ରୀ ଖୁବ ତତ୍ପର । ସେ ବର୍ତ୍ତମାନ ଶୁଭ ଦେବା କାର୍ଯ୍ୟରେ ବଡ଼ ବ୍ୟସ୍ତ । Road, ନୂଆ ଇତ୍ୟାଦିରେ ଖାଲି ଶୁଭ ଦେଇ ଦେଇ ଯାଉଛନ୍ତି । ସେ ନିଜେ କହୁଛନ୍ତି ଯେ ମୁଁ ଗଞ୍ଜାମ ଜିଲ୍ଲାର ମନ୍ତ୍ରୀ ମୁଁ ଗଞ୍ଜାମ ଜିଲ୍ଲାର କାମ କରିବି । ମୁଁ ଯେଉଁଠିକି ଶୁଭ ଦେଉଛି, ତାକୁ ମୁଁ କେବଳ ସମ୍ପୂର୍ଣ୍ଣ କରିବି, ଆଉ କିଏ ତାହା କରିପାରିବେ ନାହିଁ । ଯେଉଁଠି ଶୁଭ ଦେଇଛନ୍ତି ସେଠାରେ ଗୋଟିଏ marble ପ୍ରସ୍ତରର ଲେଖା ରହୁଛି ଯେ ଏହି କାର୍ଯ୍ୟର ଶୁଭ ଶ୍ରୀ ବୃନ୍ଦାବନ ନାୟକଙ୍କ ଦ୍ୱାରା ଦିଆଗଲା । 3/4 ମାସ ପରେ କାମ ଶେଷ ହେଲେ ସେଠାରେ ଆଉ ଗୋଟିଏ ମାର୍ବଲ ପ୍ରସ୍ତର ରହିବ ଯେଉଁଥିରେ ଲେଖାଥିବ ଶ୍ରୀ ବୃନ୍ଦାବନ ନାୟକ ଏହାକୁ ଉଦ୍‌ଘାଟନ କଲେ । ଖ୍ରୀଷ୍ଟିୟାନମାନଙ୍କର କବରଖାନାରେ ଯେପରି ମାର୍ବଲ ପ୍ରସ୍ତର ଥାଏ ସେହିପରି ଗ୍ରାମାଞ୍ଚଳର ମାର୍ବଲ ପ୍ରସ୍ତର ସବୁ ସେହିପରି ଦେଖାଯିବ । ସେ ନିଜେ କହୁଛନ୍ତି ଯେ ମୁଁ ନ ଥିଲେ ଏ କାର୍ଯ୍ୟକୁ କେହି ସମ୍ପୂର୍ଣ୍ଣ କରିପାରିବେ ନାହିଁ । କଥାରେ ଅଛି "କେ ଜାଣି କାହାର ଆଜ ମୃତ୍ୟୁକାଳ ହୋଇଯିବ ଉପସ୍ଥିତ" ଭଗବାନ ତାହା ନ କରନ୍ତୁ । ଆମର ଭୟ ତା'ହେଲେ ଏ ସବୁ କାମ ଅସମ୍ପୂର୍ଣ୍ଣ ରହିଯିବ ଏବଂ ଆମେ ଅସୁବିଧାରେ ପଡ଼ିଯିବୁ । ସେ ନିଜେ କହନ୍ତି ମହତାବଙ୍କ ମନ୍ତ୍ରିମଣ୍ଡଳ ସମୟରୁ ସେ ଯେତେ କାର୍ଯ୍ୟର ଶୁଭ ଦେଇଛନ୍ତି ବର୍ତ୍ତମାନ ମନ୍ତ୍ରୀ ହେଲା ପରେ ସେସବୁ ସମ୍ପୂର୍ଣ୍ଣ କରିବେ ।

ଚେୟାରମ୍ୟାନ ମହୋଦୟ, irrigation ସମ୍ପର୍କରେ ମୋର ଶେଷ କଥା କହିବାର ଅଛି । ଏ ବାବଦରେ ଆମର ଅଧିକ ଟଙ୍କା ଖର୍ଚ୍ଚ କରିବା ଉଚିତ । ଆମର ଅନେକ ଅର୍ଥର perennially drought affected area ଗତ 5/6 ବର୍ଷ ହେଲା drought ହେବା ଫଳରେ ସେ ଅଞ୍ଚଳରେ ଲୋକେ ଖାଇବାକୁ ପାଉନାହାନ୍ତି । ଆମର engineering

ବୃହତ ସେହି ଅଞ୍ଚଳମାନଙ୍କରେ କିଛି ବ୍ୟବସ୍ଥା କରିବୁ । ସେଇଠାରେ କିଛି ଦୂରରେ ନଦୀ ବହିଯାଉଛି ସେଠାରେ tube-well ହୋଇପାରନ୍ତା । ତଥାପି ଆମେ lift irrigation କରିବାକୁ ଯାଉଛୁ । ସେଥିଲାଗି electrification ଦରକାର । ସରକାର କହିଦେଲେ ଯେ ଗଲାତ ଆର୍ଥିକବର୍ଷ ର ଆମେ 3,500 ଗ୍ରାମରେ ବିଦ୍ୟୁତକରଣ କରିବୁ । ତା' ଶୁଣି ଆମେ ଆନନ୍ଦିତ ହେଲୁ । ଏପରି ହେଲେ ଆର ବର୍ଷକୁ ଦୁଏତ 7 ହଜାର ଗାଁରେ ବିଦ୍ୟୁତକରଣ ହେବ ଏବଂ 5/7 ବର୍ଷ ଭିତରେ ଆମେ ହରିଆନା ଭଳି ସମଗ୍ର ରାଜ୍ୟରେ ବିଦ୍ୟୁତକରଣ କରିଦେବୁ । କିନ୍ତୁ performance ଦେଖିଲା ବେଳକୁ ମାତ୍ର 600 ଗ୍ରାମରେ ବିଦ୍ୟୁତ-କରଣ ହୋଇଛି । କାହିଁ 5 ହଜାର କାହିଁ 600 । ଅବଶ୍ୟ କହିଲେ ଯେ ଆମର ଭୁଲ ହେଲା । ଗମ୍ବ ମିଳିନ ନାହିଁ । କାଗଜର ଲୋକ ମିଳିଲେ ନାହିଁ । କୁହନ୍ତି ଜଣାପଡ଼ିଥାନ୍ତା ଯଦି କହିଥାନ୍ତେ ... ଆମେ 2,500 ଗ୍ରାମ ଚାଲୁ ଅନ୍ଧାରରେ ରହିଛୁ । ଆମ ଯୋଜନା ବୋର୍ଡ଼ର ଜଣେ ଅଧ୍ୟକ୍ଷ ଅଛନ୍ତି ଯେ ଓଡ଼ିଶାକୁ କଲିକତା, ବମ୍ବେ, ମାଡ୍ରାସ ଭଳି କରିଦେବେ ବୋଲି କହୁଛନ୍ତି । ସେ କେତେବେଳେ କ'ଣ କହୁଛନ୍ତି ତାକୁ note କରିବା କଥା । କାରଣ ସେ ଜଣେ ମହାମାନବ ଭଳି କହୁଛନ୍ତି । 91ଟି ପୁରୁଣା irrigation project ରହିଛି । ତଥାପି ଅଭ 52ଟିର ଶୁଭ ଦଆରମ୍ଭି । ଏ ବିଷୟରେ ସରକାର ସାବଧାନ ହେବା କଥା । ଏଥିପାଇଁ Engineers, Overseers, workers ଏବଂ ଅନ୍ୟାନ୍ୟ କ'ଣ ଦରକାର ତା'ର ବ୍ୟବସ୍ଥା କରିବା କଥା । ଏ କାର୍ଯ୍ୟଗୁଡ଼ିକ କିପରି ଶୀଘ୍ର ହୋଇପାରିବ ସେ ବିଷୟରେ ଚେଷ୍ଟା କରିବା ଦରକାର । ବାଲିମେଳା project ବିଷୟରେ ଆପଣ ଦେଖିବେ ଯେ ଆନ୍ଧ୍ର ସହିତ ଆମର ଚୁକ୍ତି ହୋଇଛି, ସେ ଅଧା ଖର୍ଚ୍ଚ ବହନ କରିବେ ଓ ଆମେ ଅଧା ଖର୍ଚ୍ଚ ବହନ କରିବୁ । କିନ୍ତୁ ଠିକ୍ ସମୟରେ ସେ କାମ ନ ସରିବା ହେତୁ expenditure ବଢ଼ି ବଢ଼ି ଯାଉଛି । ବର୍ତ୍ତମାନ expenditureର 50 per cent ସେମାନେ ଦେବେ କି ନାହିଁ ଦେଖିବା କଥା । ତାହା ନହେଲେ ଫାଇଦା ସେମାନେ ଉଠାଇବେ ଓ expenditureର ବଳିଷ୍ଠ ବୋଝ ଆମେ ବହନ କରିବୁ ।

ସଭାପତି ମହୋଦୟ, ସ୍ୱାସ୍ଥ୍ୟ ବିଭାଗ ବିଷୟରେ କହିବା ପାଇଁ ଆପଣଙ୍କୁ ଅଧିକ ସମୟ ମାଗିବା କଥା । ଏ ବିଭାଗର ଦାୟିତ୍ୱରେ ଜଣେ ମହାମାନ୍ୟବର ବ୍ୟକ୍ତି ଅଛନ୍ତି । ଗତଥର ବିଧାନ ସଭାରେ କହିଥିଲେ ଯେ ଯେହେତୁ ଔଷଧ ଅଭାବ ପଡ଼ୁଛି ଏହି ବର୍ଷଠାରୁ ଅର୍ଥାତ 1971-72 ବର୍ଷଠାରୁ 3 ଗୁଣା ଔଷଧ ଆମେ ପଠାଇବୁ । ପ୍ରତ୍ୟେକ dispensary ଏପରିକି rural dispensary ଓ primary health centre ସେତେ ଅଛି ସବୁଠାକୁ 3 ଗୁଣ ଔଷଧ ପଠାଇବୁ । କିନ୍ତୁ ଗତ ଡିସେମ୍ବର ଜାନୁଆରୀରେ ମୁଁ ପଚାରିଥିଲି କେତେ ଔଷଧ ପାଉଛ, ସେ କହିଲେ 3 ଭାଗରୁ ଭାଗେ ପାଉଛୁ । ତା'ପରେ ସାଧାରଣ ସେତିକି ମିଳିବା କଥା ତାହିଁର 3 ଭାଗରୁ ଭାଗେ

ଔଷଧ ମିଳୁଛି । ତା'ହେଲେ ଏ ସେଇ ବଡାର କଥା ଯେ ଆମେ 3 ଗୁଣ ଔଷଧ ଦେଉ ଯେ ସେଇଟା ବୁଝିହେଉ ନାହିଁ । ଆଉ expenditure on establishment କେତେ ଓ expenditure on medicine କେତେ । ସ୍ୱାସ୍ଥ୍ୟ ବଜେଟ ଉପରେ ଦେଖ ଯେ proportion କେତେ । ଆମେ ଡାକ୍ତର ନିଯୁକ୍ତ କଲୁ କମ୍ପାଉଣ୍ଡର ନିଯୁକ୍ତ କଲୁ ଓ ଅନ୍ୟମାନଙ୍କୁ ନିଯୁକ୍ତ ଦେଲୁ ଲୋକଙ୍କ ସେବାପାଇଁ । କିନ୍ତୁ ଲୋକଙ୍କ ପାଇଁ ଔଷଧ ବ୍ୟବସ୍ଥା କରିପାରୁ ନାହୁଁ । ଆଜି ଲୋକେ ସ୍ୱରାଜରେ ବ୍ୟସ୍ତ ହୋଇଗଲେଣି । ଲୋକେ କହୁଛନ୍ତି ଡାକ୍ତରଖାନାକୁ ଗଲେ କ'ଣ ଟିକେ ନାଲି ପାଣି ଦେଇ ଦେଉଛନ୍ତି ସେଥିରେ କ'ଣ ରୋଗ ଭଲ ହେବ । ସେଥିପାଇଁ ଆମେ ଦାବି କରିଥିଲୁ ଔଷଧ ଟିକେ ବଢ଼ାଇବା ପାଇଁ । କିନ୍ତୁ ତାହା ହେଲା ନାହିଁ । ତା'ପରେ ଏ ସରକାରରେ ଏତେ ଦୁର୍ନୀତି ଯେ ତାର କିଛି ସୀମା ନାହିଁ । ଏ ସରକାରରେ ସବୁଠି ଶାସକ ତାଙ୍କର ଦଳ କାମ ଚାଲିଛି । ସବୁଠି ଉତ୍କଳ କଂଗ୍ରେସ ଦଳର ସେବା ଚାଲିଛି । Hospital open ହେବ, dispensary open ହେବ, କେଉଁଠି ନା ତାଙ୍କର ଅଞ୍ଚଳରେ । ତାଙ୍କର ଦଳର ଜଣେ ଲୋକଘରେ dispensary ଆରମ୍ଭ ହେବ । ପରାମର୍ଶ ଦେବେ କିଏ ସେ ନା ତାଙ୍କର ଉତ୍କଳ କଂଗ୍ରେସ ଦଳର ଲୋକେ । Invitation କିଏ କରିବେ ନା ସେହି ଲୋକ ସମସ୍ତଙ୍କୁ invite କରିବେ ।

× × ×

ଆପଣ ଦେଖିବେ Doctor post ଏତେ ଦିନ ହେଲା ଖାଲି ପଡ଼ିଥିଲା 270 ଜଣ ଡାକ୍ତରଙ୍କ ସମ୍ପର୍କରେ P. S. C.ର recommendation ଆସିଲା । କିନ୍ତୁ recommendation ଆସିବାର 20 ଦିନ ପର୍ଯ୍ୟନ୍ତ ଏବର ମୁଁ ଶୁଣିଛି ନିଯୁକ୍ତ ହୋଇ ନାହିଁ । ମୁଁ ଶୁଣିଲି ଯେ ବୁଝିବେ କହିଲେ ଏଇଁ list ଆସିଛି ସେଥିରୁ 70 ଜଣଙ୍କୁ ନିଯୁକ୍ତ ଦେବେ ଓ ଅନ୍ୟମାନଙ୍କୁ *Ad hoc* ନିଯୁକ୍ତିଦେବେ । *Ad hoc* ନିଯୁକ୍ତି କଥା ବୁଝିହେଉଛି । 270 ଜଣଙ୍କୁ P. S. C. recommend କରିଛନ୍ତି । ସମସ୍ତଙ୍କୁ ନିଯୁକ୍ତି ଦେବାରେ ଅସୁବିଧା କାହିଁ କି ସୃଷ୍ଟି କରୁଛନ୍ତି । ଆହୁରି ଶୁଣିଲି ଆସନ୍ତା ... ଶ୍ରେଣୀ କର୍ମଚାରୀ ମାନଙ୍କ ନିଯୁକ୍ତି ତାଙ୍କ ଇଚ୍ଛା ହାତରେ ହେବ । C. D. M. O. ମାନେ Class III ଓ Class IV employee ମାନଙ୍କୁ ନିଯୁକ୍ତି ଦେଉଥିଲେ । ଏବେ ସେକ୍ରେଟାରିଙ୍କୁ କହି circular କରିଛନ୍ତି ଯେ ସେ ନିଯୁକ୍ତି ଭୁବନେଶ୍ୱରରେ ହେବ । Director ଗୋଟିଏ କମିଟି ନିଯୁକ୍ତ କରିବେ । ସେ କମିଟି ଏହା କରିବ । ବଡ ସୁନ୍ଦର କଥା ମନ୍ତ୍ରୀମାନେ ତାଙ୍କ ନିଜ ଅଞ୍ଚଳ ଲୋକମାନଙ୍କ ନିଯୁକ୍ତି ପାଇବେ । ଗୋଟିଏ list complete ହୋଇ ସାରିଥିଲା ନିଯୁକ୍ତି କେବଳ ବାକିଥିଲା । ହଠାତ ସେ କାମ ବାନ୍ଦ କରାଗଲା ଯେହେତୁ ସେ ତାଲିକା ବ ... । ନିଜର ଲୋକଙ୍କୁ ନିଯୁକ୍ତି ଦେବାପାଇଁ ଏ ସବୁ ଯେଉଁ କଥା ହେଉଛି ... ହୁଏ ସ୍ତିର ...

ବଉତ ଅସିବ୍ରଜ ଦୁଧ ପିଇଲେ ସଂସାର ଯାକ ଅନ୍ଧାର, କେହି ଜାଣିନେବ ନାହିଁ କରୁ ସମସ୍ତେ ଜାଣିଛନ୍ତି । ସ୍ୱାସ୍ଥ୍ୟ ବିଭାଗର ଏହିପରି ଚାଲୁଛି । It is most stinking and nauseating. ଯଦି ସେ ସ୍ୱରୂପାନ୍ତ ଯେ ଏପରି ଭାବରେ କାର୍ଯ୍ୟ କଲେ ସ୍ୱାସ୍ଥ୍ୟ ବିଭାଗର ଉନ୍ନତ କରି ପାରିବେ, ତାହା କଦାପି ହୋଇ ପାରିବ ନାହିଁ । ଏ ଗୋଟିଏ ବିଭାଗ ଯାହା ଉପରେ ଆମେ ଖୁବ ଦୃଷ୍ଟି ଦେବା କଥା, ସେ ବିଭାଗର ଅଳ ଅବସ୍ଥା ଏଇଆ ।

ଶିକ୍ଷା କଥା କହୁ ନ କହିବା ବରଂ ଭଲ । ଏଥିରେ କେବଳ କୁହାଯାଉଛି 2 ହଜାର ପ୍ରାଥମିକ ଶିକ୍ଷକ ନିଯୁକ୍ତ ପାଇବେ । 2 ଟି ଟେକ୍ନିକ୍ Institute ଖୋଲାହେବ ଓ physics ପାଇଁ ଭୁବନେଶ୍ୱରରେ ଏକ ଅନୁଷ୍ଠାନ ଖୋଲା ହେବ । ଏହାଠାରୁ ଆଉ କହୁ ନାହିଁ । ଶିକ୍ଷା ନୀତି ନିର୍ଦ୍ଧାରଣ ପୂର୍ବରୁ ସେ professional ଓ occupational base education ଏ ସବୁ କୁଆଡ଼େ ଗଲା । ଦୁର୍ନୀତି ଏପରି ସ୍ୱଚ୍ଛନ୍ଦରେ ଚାଲୁଛି । ଯପଣ ନିଜେ ଜାଣିଥିବେ ଆମେ ଭୁକ୍ତଭୋଗୀ । ଜଣେ Inpector of Schools ଅଛନ୍ତି ରଜତ କର ସେ ଜ ମନ୍ତ୍ରୀଙ୍କର ଭାଇ । ଆମେ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଆସିଲୁ । ବହୁତ facts ଦେଲୁ । ଗୋଟିଏ ଗୋଟିଏ instance ପାଇଁ proof ଦେବାକୁ ପଡ଼ିଲା । 2 ଘଣ୍ଟା 2½ ଘଣ୍ଟା ଆଲୋଚନା କଲୁ ପରେ ମଧ୍ୟ ଅଳ ମୁଖ୍ୟମନ୍ତ୍ରୀ ନାହିଁ । ସେ ମହାମାନ୍ୟବର ସେଠାରେ party କାମ ସୁନ୍ଦର ଭାବରେ କରି ପାରୁଛନ୍ତି । ଜଣେ ଅଫିସର ଏଭଳି କାମ କରି ଯାଉଛନ୍ତି । ଶିକ୍ଷା ବିଭାଗ ନୀରବ । ମୁଖ୍ୟମନ୍ତ୍ରୀ ଅସହାୟ ଅବସ୍ଥାରେ ଦେଖୁଛନ୍ତି । ଦୁର୍ନୀତି ଚାଲିଛି ଖୋଲା ସେ ନ ଜାଣିଛନ୍ତି ! ଅଥଚ ସେ କିଛି କରିପାରୁ ନାହାନ୍ତି । ବହୁ ଦିନ ଆଗରୁ ସେପରି ଅଫିସରଙ୍କୁ suspend କରିବା କଥା । ଗତଥର ଶିକ୍ଷା ମନ୍ତ୍ରୀ ଆମକୁ ଜବାବ ଦେଲେ ଯେ departmentally enquiry ହେବ । ମୁଁ ଶିକ୍ଷା ମନ୍ତ୍ରୀଙ୍କୁ ଅଳ କହୁଛି ସେ ଯଦି ସ୍ୱହାନ୍ତି 2 ଘଣ୍ଟା ସମୟ ମୋତେ ଦଅନ୍ତୁ । ମୁଁ ଗୋଟି ଗୋଟି କରି କହେଁ ଘଟଣା ତାଙ୍କ ଆଗରେ କହିବି । ଗତଥର ସେ କହିଥିଲେ ଯେ D. P. I. ଙ୍କ ଜରିଆରେ କେବଳ ଆମେ enquiry କରାଇ ଦେଉଛୁ । ମୁଁ ସେତେବେଳେ କହିଥିଲି D. P. I. ଜରିଆରେ enquiry କଲେ କ’ଣ ହେବ ।

## ବଜେଟ ଭାଷଣ

3. 6. 74

ଶ୍ରୀ ବିନାୟକ ଆଚାର୍ଯ୍ୟ (ମନ୍ତ୍ରୀ) : ମହାଶୟ,—ଏହି ମହନୀୟ ଗୃହ ସମକ୍ଷରେ 1974-75 ମସିହା ପାଇଁ ରାଜ୍ୟ ସରକାରଙ୍କ ବଜେଟ ଅଟକଳ ଉପସ୍ଥାପନ କରିବା ପୂର୍ବରୁ ମୁଁ ମାନ୍ୟବର ସଭ୍ୟମାନଙ୍କୁ ହାର୍ଦ୍ଦିକ ସ୍ୱାଗତ ଜଣାଉଛି । 1973 ଆର୍ଥିକ ବର୍ଷ

ଅତିବାହିତ ହେବା ସଙ୍ଗେ ସଙ୍ଗେ ଉନ୍ନୟନ କାର୍ଯ୍ୟକ୍ରମର ପାଞ୍ଚଟି ବର୍ଷ ଆନୁସଙ୍ଗିକ ସମସ୍ତ ଦୁଃଖ କଷ୍ଟ ସହ ଶେଷ ହୋଇଛି ଏବଂ 1974-75 ମସିହାରେ ପଞ୍ଚମ ପଞ୍ଚବାର୍ଷିକ ଯୋଜନା ଆରମ୍ଭ ହୋଇଛି । ସାମ୍ବିଧାନିକ ତଥା ସମାଜବାଦୀ ଗଣତନ୍ତ୍ରର ପରିସର ମଧ୍ୟରେ ଏକ ସମୃଦ୍ଧିଶାଳୀ ସମାଜ ଗଠନ କରିବାପାଇଁ ଆମର ଯେଉଁ ବହୁ ଆକାଂକ୍ଷିତ ଲକ୍ଷ୍ୟ ରହିଛି, ସେହି ଲକ୍ଷ୍ୟର ନିକଟତର ହେବା ପାଇଁ ଆମକୁ ଆଗାମୀ ପାଞ୍ଚବର୍ଷ କାଳ ଅଧିକ କଠିନ, ନିରବଚ୍ଛିନ୍ନ ଓ କଷ୍ଟକର ଉଦ୍ୟମ କରିବାକୁ ପଡ଼ିବ ।

2. ଇତିପୂର୍ବରୁ ଗତ ମାର୍ଚ୍ଚ ମାସରେ ଏହି ଗୃହର ଏକ ସ୍ୱଳ୍ପକାଳୀନ ଅଧିବେଶନରେ 1974-75 ମସିହାପାଇଁ ମଧ୍ୟବର୍ତ୍ତୀକାଳୀନ ବ୍ୟବସ୍ଥା ସ୍ୱରୂପ ଏକ କାମଚଳା ବଜେଟ ଉପସ୍ଥାପିତ କରାଯାଇ ତାହା ଗୃହୀତ ହୋଇଥିଲା । କେତେକାଂଶରେ ସଂଶୋଧିତ ଓ ପରିବର୍ତ୍ତିତ କରାଯାଇ ସମଗ୍ର ଆର୍ଥିକ ବର୍ଷପାଇଁ ବର୍ତ୍ତମାନ ଏକ ବଜେଟ ମାନ୍ୟବର ସଭ୍ୟମାନଙ୍କ ବିବେଚନା ନିମନ୍ତେ ଉପସ୍ଥାପିତ କରାଯାଇଛି । 1974-75 ମସିହା ବଜେଟ ଅଟକଳର ପୃଷ୍ଠଭୂମି ସଂପର୍କରେ ସମ୍ୟକ୍ ଧାରଣା ଦେବା ଉଦ୍ଦେଶ୍ୟରେ ପୂର୍ବରୁ ରହିଥିବା ଆର୍ଥିକ ଅବସ୍ଥାର ରୂପରେଖ ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଆମର ଲକ୍ଷ୍ୟ ତଥା ନୀତିଗତ ଉଦ୍ଦେଶ୍ୟ ସାଧନ କରିବାପାଇଁ ସମ୍ବଳ ସଂଗ୍ରହ ଓ ଅନ୍ୟାନ୍ୟ ଦୃଷ୍ଟି କୋଣରୁ ଆମକୁ କିଭଳି ଉଦ୍ୟମ କରିବାକୁ ହେବ, ସେ ବିଷୟରେ ମୁଁ ସଂକ୍ଷିପ୍ତ ସୂଚନା ଦେବାକୁ ଚାହେଁ । କିଛିକାଳ ଧରି, ବିଶେଷତଃ ବିଗତ ଦୁଇବର୍ଷ ମଧ୍ୟରେ ଦେଶର ଅର୍ଥନୀତି କ୍ଷେତ୍ରରେ ଦେଖାଦେଇଥିବା ଗୁରୁତର ସଂକଟ ତଥା ଦୁଃସହ ପରିସ୍ଥିତି ନିମନ୍ତେ ଆପଣମାନେ ସମସ୍ତେ ଯେଉଁଭଳି ଉଦ୍‌ବେଗ ପ୍ରକାଶ କରୁଛନ୍ତି ମୁଁ ମଧ୍ୟ ସେହିଭଳି ଉଦ୍‌ବିଗ୍ନ । ବାଙ୍ଗଲାଦେଶ ମୁକ୍ତି ସଂଗ୍ରାମର ପରିଣାମ, କ୍ରମାଗତ ବ୍ୟାପକ ମରୁଡ଼ି ଯୋଗୁଁ ଖାଦ୍ୟଶସ୍ୟ ଉତ୍ପାଦନ ତଥା ଶିଳ୍ପକ୍ଷେତ୍ରରେ ସୃଷ୍ଟି ହୋଇଥିବା ବାଧାବିଘ୍ନ ଏବଂ ଆମ ଦେଶର କେତେକ ଶ୍ରେଣୀର ଲୋକଙ୍କର ଜିନିଷପତ୍ର ମହଜୁଦ୍ କରି ରଖିବା ଓ ଅତ୍ୟଧିକ ଲାଭ ଉଠାଇବା ମନୋବୃତ୍ତି ତଥା ଅନ୍ୟାନ୍ୟ ଅସାଧୁ କାର୍ଯ୍ୟକଳାପ ଫଳରେ ଜାତୀୟ ଜୀବନର ପ୍ରତ୍ୟେକ ସ୍ତରରେ ଦେଖା ଦେଇଥିବା ଅଭାବ ଓ ନୈରାଶ୍ୟର ବାତାବରଣ, ଏ ସବୁ କବଳରୁ ଦେଶ ଏପର୍ଯ୍ୟନ୍ତ ସଂପୂର୍ଣ୍ଣ ରୂପେ ମୁକ୍ତ ହୋଇ ପାରିଛି ବୋଲି ମନେ ହୁଏ ନାହିଁ । ବର୍ତ୍ତମାନର ଅର୍ଥନୈତିକ ଦୁଃସ୍ଥିତିର ଏକ ଜ୍ୱଳନ୍ତ ଲକ୍ଷଣ ହେଉଛି, ଦରଦାମ ବୃଦ୍ଧି । ସମାଜର ଦୁର୍ବଳତର ଶ୍ରେଣୀର ଲୋକେ ଏହି ଦରଦାମ ବୃଦ୍ଧି ଫଳରେ ଦାରୁଣ ଦୁଃଖକଷ୍ଟର ସମ୍ମୁଖୀନ ହୋଇଛନ୍ତି, ଜିନିଷପତ୍ରର ପାଇକାରୀ ମୂଲ୍ୟସୂଚୀ କ୍ରମାଗତଭାବେ ବଢ଼ିବାରେ ଲାଗିଛି । 1973 ଡିସେମ୍ବର ମାସର ପାଇକାରୀ ମୂଲ୍ୟସୂଚୀ ପୂର୍ବବର୍ଷ ଡିସେମ୍ବର ମାସର ମୂଲ୍ୟସୂଚୀ

ତୁଳନାରେ ଶତକଡ଼ା 26 ଭାଗ ବୃଦ୍ଧି ପାଇଥିଲା । 1972 ଡ଼ିସେମ୍ବର ମାସ ସୁଦ୍ଧା 12 ମାସର ବ୍ୟବହାର ସର୍ବଭାରତୀୟ ଖାଉଟି ମୂଲ୍ୟସୂଚୀ 202 ଥିବା ସ୍ଥଳେ 1973 ଡ଼ିସେମ୍ବର ମାସ ସୁଦ୍ଧା ତାହା 236 ପର୍ଯ୍ୟନ୍ତ ବଢ଼ି ଯାଇଥିଲା । ପ୍ରଚୁର ପରିମାଣରେ ମୁଦ୍ରା ଯୋଗାଣ ହେଉଛି ଏହି ଅଭୂତପୂର୍ବ ମୁଦ୍ରାସ୍ଫୀତି ଜନିତ ପରିସ୍ଥିତିର ଅନ୍ୟତମ କାରଣ । 1973 ନଭେମ୍ବର ମାସରେ ପ୍ରକାଶିତ ରିଜର୍ଭ ବ୍ୟାଙ୍କ ଅଫ ଇଣ୍ଡିଆର ବୁଲେଟିନ୍‌ରେ ଦିଆଯାଇଥିବା ତଥ୍ୟ ଅନୁସାରେ 1972 ନଭେମ୍ବର 30 ତାରିଖ ସୁଦ୍ଧା ଶେଷ ହୋଇଥିବା ବର୍ଷ ମଧ୍ୟରେ ଏଭଳି ମୁଦ୍ରାର ପରିମାଣ 961 କୋଟି ଟଙ୍କା ଥିବା ସ୍ଥଳେ 1973 ନଭେମ୍ବର 30 ତାରିଖ ସୁଦ୍ଧା ଶେଷ ହୋଇଥିବା ବର୍ଷ ମଧ୍ୟରେ ତାହାର ପରିମାଣ 1,507 କୋଟି ଟଙ୍କାକୁ ବୃଦ୍ଧି ପାଇଥିଲା । ଏଥି ସଙ୍ଗେ ସଙ୍ଗେ ବିଭିନ୍ନ କ୍ଷେତ୍ରରେ ବିଶୃଙ୍ଖଳା ଓ ଅପାରଗତା ଏବଂ ସାମାନ୍ୟତମ ପ୍ରରୋଚନାରେ ବନ୍ଦ୍ ଓ ବାଧାବିଘ୍ନ ସୃଷ୍ଟି କରିବାପାଇଁ ଆମର ପ୍ରବଣତା ମଧ୍ୟ ଏହି ପରିସ୍ଥିତି ନିମନ୍ତେ ସମାନ ଭାବରେ ଦାୟୀ । ଦେଶର ଅସ୍ଥିର ଦରଦାମ ପରିସ୍ଥିତି ସଂପର୍କରେ ଭାରତର ରାଷ୍ଟ୍ରପତି ଯଥାର୍ଥରେ କହିଛନ୍ତି ". . . . . . . .ଦରଦାମ ବୃଦ୍ଧି ଜନସାଧାରଣଙ୍କ ସ୍ୱାଭାବିକ ଜୀବନକୁ ବିଭିନ୍ନ ଭାବରେ ବ୍ୟାହତ କରିଛି ଏବଂ ଅଭୂତପୂର୍ବ ଦୁଃଖକଷ୍ଟର କାରଣ ହୋଇଛି" । ମୁଦ୍ରାସ୍ଫୀତିକୁ ପ୍ରତିରୋଧ କରିବାର ଅସ୍ତ୍ର କେନ୍ଦ୍ର ସରକାରଙ୍କ ହାତରେ ରହିଛି । ଇତି ମଧ୍ୟରେ ମୁଦ୍ରାସ୍ଫୀତି ରୋଧ କରିବା ପାଇଁ ଅର୍ଥନୀତି କ୍ଷେତ୍ରରେ ବହୁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଛି । କିନ୍ତୁ ବର୍ତ୍ତମାନ ଅବସ୍ଥାରେ ମୁଁ କେବଳ ଏତିକି କହିପାରେ ଯେ ଯଥେଷ୍ଟ ଭାବେ ନ ହେଲେ ସୁଦ୍ଧା ପୁଙ୍ଖାନୁପୁଙ୍ଖ ଭାବେ ଏହି ଆହ୍ୱାନକୁ ଆମେ ମୁକାବିଲା କରିପାରିଛୁ । ଅର୍ଥନୀତିର ବର୍ତ୍ତମାନ ପରିପ୍ରେକ୍ଷୀରେ ବହୁ ବିଷୟ କାର୍ଯ୍ୟକାରୀ ହେବାକୁ ବାକି ରହିଥିଲେ ସୁଦ୍ଧା ନୈରାଶ୍ୟବାଦୀ ଭବିଷ୍ୟତ ବକ୍ତାମାନଙ୍କର ଭବିଷ୍ୟତବାଣୀ ଭଳି ଅର୍ଥନୀତି ଭାଙ୍ଗି ପଡ଼ିନାହିଁ କିମ୍ବା ଅଚଳ ହୋଇ ଯାଇନାହିଁ । ସାହସ ଓ ଦୃଢ଼ ମନୋବଳ ଦ୍ୱାରା ଏହି ସଙ୍କଟଜନକ ପରିସ୍ଥିତିର ସମ୍ମୁଖୀନ ହୋଇଥିବାରୁ ଆମର ଜନସାଧାରଣଙ୍କୁ ଏବଂ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱରେ ଆମର ଦକ୍ଷ ନେତୃବୃନ୍ଦ ଅତ୍ୟନ୍ତ ଜଟିଳ ଓ ସମସ୍ୟାସଙ୍କୁଳ ପରିସ୍ଥିତି ମଧ୍ୟରେ ଦେଶକୁ ପରିଚାଳିତ କରିଥିବାରୁ ସେମାନଙ୍କୁ ମୁଁ ଏହି ଅବସରରେ ଅଭିନନ୍ଦନ ଜଣାଉଛି । ଆମ ଆଗରେ ବିରାଟ ଦାୟିତ୍ୱ ରହିଛି ଏବଂ ଅର୍ଥନୀତି କ୍ଷେତ୍ରରେ ଦେଖାଦେଇଥିବା ସମସ୍ୟାଗୁଡ଼ିକୁ ସହଜ ଉପାୟରେ କୌଣସି ମନ୍ତ୍ରୀ ବଳରେ ସମାଧାନ କରିଦେବା ସମ୍ଭବ ନୁହେଁ । କିନ୍ତୁ ଯେପରି ଦକ୍ଷତା ସହକାରେ ରେଳ କର୍ମଚାରୀମାନଙ୍କର ଧର୍ମଘଟର ମୁକାବିଲା କରାଗଲା ତାହା ଜାତୀୟ ଅର୍ଥନୀତିକୁ କାର୍ଯ୍ୟକ୍ଷମ କରିବାପାଇଁ ଆବଶ୍ୟକୀୟ ଶୃଙ୍ଖଳା ରକ୍ଷା ଦିଗରେ ସରକାରଙ୍କ ସାମର୍ଥ୍ୟ ଓ ଦୃଢ଼ତା ସଂପର୍କରେ ଜନସାଧାରଣଙ୍କ ମନରେ ଆସ୍ଥା ପୁନଃସ୍ଥାପିତ କରିଛି ।

3. ଜାତୀୟ ଅର୍ଥନୀତି ସହିତ ଜଡ଼ିତ ବିଭିନ୍ନ ସମସ୍ୟାଠାରୁ ଆମ ରାଜ୍ୟ ସ୍ୱତନ୍ତ୍ରତଃ ଦୂରେଇ ରହି ପାରିବ ନାହିଁ । 1971 ମସିହା ବାତ୍ୟା ଓ ତା' ପରର ପରେ ବ୍ୟାପକ ମରୁଡି ଓ ବନ୍ୟା ଆଦିର ବିଧ୍ୱଂସୀ ଆଘାତ ଜନିତ କ୍ଷୟକ୍ଷତି ପୂରଣ କରିବା ଅବସ୍ଥାକୁ ଆସିବା ପୂର୍ବରୁ ମଧ୍ୟ ଏହି ସମସ୍ୟାଗୁଡ଼ିକର ଛାୟା ରାଜ୍ୟର ଅର୍ଥନୀତିକୁ ଗ୍ରାସ କରି ରହିଥିଲା । ଦରଦାମ ବୃଦ୍ଧିଜନିତ ଦୁର୍ଦ୍ଦଶା ଲାଘବ କରିବା ଉଦ୍ଦେଶ୍ୟରେ ଆମ ରାଜ୍ୟରେ ଅନେକଗୁଡ଼ିଏ ବ୍ୟବସ୍ଥା ଗ୍ରହଣ କରା ଯାଇଥିଲା । ଅତ୍ୟାବଶ୍ୟକ ଜିନିଷପତ୍ରର ସୁଷମ ବଣ୍ଟନ ବ୍ୟବସ୍ଥାକୁ ଦୃଢ଼ କରିବା ଉଦ୍ଦେଶ୍ୟରେ ସର୍ବାଧିକ ପରିମାଣର ଧାନ ଚାଉଳ ସଂଗ୍ରହ, ବହୁ ସଂଖ୍ୟକ ଖୁଚୁରା ଦୋକାନ ଜରିଆରେ ଅତ୍ୟାବଶ୍ୟକ ଓ ନିୟନ୍ତ୍ରିତ ସାମଗ୍ରୀ ଯୋଗାଣ, କେତେକ ଗୁରୁତ୍ୱପୂର୍ଣ୍ଣ ଅଞ୍ଚଳରେ ପତ୍ରକାର୍ଡ ବ୍ୟବସ୍ଥା ପ୍ରଚଳନ ଓ କ୍ରମେ କ୍ରମେ ଏହିଭଳି ବ୍ୟବସ୍ଥା ଅନ୍ୟ ଅଞ୍ଚଳରେ ପ୍ରବର୍ତ୍ତନ ଭଳି ବ୍ୟବସ୍ଥାମାନ ଗ୍ରହଣ କରାଯାଇଛି ।

4. ଚତୁର୍ଥ ଯୋଜନା ଶେଷ ବେଳକୁ ସର୍ବଭାରତୀୟ ସ୍ତରରେ ହାରାହାରି ମୁଣ୍ଡପିଛା ଆୟ 1960-61 ମୂଲ୍ୟ ଅନୁଯାୟୀ ଟ. 388 ହୋଇଥିବା ବେଳେ ରାଜ୍ୟର ମୁଣ୍ଡପିଛା ଆୟ ଟ 267 ହୋଇଥିବାର ସମ୍ଭାବନା । ପଞ୍ଚମ ଯୋଜନା ପ୍ରାରମ୍ଭରେ ରାଜ୍ୟର ଆୟ 614 କୋଟି ଟଙ୍କା ହେବ ବୋଲି ଅନୁମାନ କରାଯାଇଛି । ମାତ୍ର ଆମ ରାଜ୍ୟର ମୋଟ ବାଇଶ ନିୟୁତ ଲୋକଙ୍କ ମଧ୍ୟରୁ ଚଉଦ ନିୟୁତ ଲୋକ ଅତ୍ୟନ୍ତ ଦୁଃସ୍ଥ ଅବସ୍ଥାରେ ଦାରିଦ୍ର୍ୟ ସୀମାରେଖା ତଳେ ଜୀବନଯାପନ କରୁଛନ୍ତି । ଚତୁର୍ଥ ଯୋଜନା କାଳରେ ଆମ ଅର୍ଥନୀତିରେ ଯେଉଁ ପରିମାଣର ପୁଞ୍ଜି ବିନିଯୋଗ କରାଯାଇଛି ତାହା ଫଳରେ ମୋଟାମୋଟି ଭାବେ ହୁଏତ କେତେକ କ୍ଷେତ୍ରରେ ଉପକାର ସାଧିତ ହୋଇପାରେ । ମାତ୍ର ତୃତୀୟ ଯୋଜନାପାଇଁ 225 କୋଟି ଟଙ୍କାର ବ୍ୟୟ ବରାଦ ରଖା ଯାଇଥିଲା ବେଳେ ଚତୁର୍ଥ ଯୋଜନାରେ ସାମାନ୍ୟ ଅଧିକ ଅର୍ଥାତ୍ 252 କୋଟି ଟଙ୍କା ବ୍ୟୟ ବରାଦ ହୋଇଥିବାରୁ ରାଜ୍ୟର ଅର୍ଥନୀତି କ୍ଷେତ୍ରରେ ଦେଖାଦେଇଥିବା ସ୍ଥାଣୁତ୍ୱ ଓ ବିକାଶର ମନ୍ଥର ଗତିରେ ବିଶେଷ ଉଲ୍ଲେଖଯୋଗ୍ୟ ଅଗ୍ରଗତି ଘଟିବାର ସମ୍ଭାବନା କମ୍ । ଏହା ସ୍ପଷ୍ଟଭାବେ ସ୍ୱୀକାର୍ଯ୍ୟ ଯେ ପରବର୍ତ୍ତୀ ଯୋଜନା ସମୟରେ ଓ ବିଶେଷକରି ଚତୁର୍ଥ ଯୋଜନା କାଳରେ ଆମ ରାଜ୍ୟରେ ଯାହା କିଛି କରାଯାଇଛି ତାହା ରାଜ୍ୟର ଦରିଦ୍ର ଓ ନିଷ୍ପେଷିତ ଜନସାଧାରଣଙ୍କୁ ଉତ୍କଟ ଦାରିଦ୍ର୍ୟ ଓ ଅଜ୍ଞତା କବଳରୁ ଉଦ୍ଧାର କରିବା ଦିଗରେ ଯଥେଷ୍ଟ କମ୍ ହୋଇଛି । ଏହା ଉପଲବ୍ଧି କରି ପଞ୍ଚମ ଯୋଜନା ପାଇଁ ଆମର ସାମାଜିକ ତଥା ଅର୍ଥନୈତିକ ବିକାଶ ସାଧନର ଆଭିମୁଖ୍ୟ ସ୍ଥିର କରାଯାଇଛି । ଯାହାକି ପଞ୍ଚମ ଯୋଜନାର ଚଠାରେ ପ୍ରତିଫଳିତ

ହୋଇଛି । ରାଜ୍ୟର ଅର୍ଥନୀତିରେ ଦେଖାଦେଇଥିବା ବୈଷମ୍ୟ ଓ ବିକୃତିକୁ ସଂଶୋଧନ କରିବା ସଙ୍ଗେ ସଙ୍ଗେ ନ୍ୟାୟୋଚିତ ବିକାଶର ମୌଳିକ ଲକ୍ଷ୍ୟ ହାସଲ ଉଦ୍ଦେଶ୍ୟରେ ଅଗ୍ରାଧିକାରଗୁଡ଼ିକର ପୁନଃ ନିର୍ଦ୍ଧାରଣ କରାଯିବା ଆବଶ୍ୟକ । ମାତ୍ର ଆମେ ଅର୍ଥନୀତି କ୍ଷେତ୍ରରେ ଅଧିକରୁ ଅଧିକ ପୁଞ୍ଜି ବିନିଯୋଗ ସମସ୍ତ ଉଦ୍ୟମ ନ କଲା ପର୍ଯ୍ୟନ୍ତ ସେ ସମ୍ପର୍କରେ ଚିନ୍ତାକଲେ କୌଣସି ଲାଭ ହେବ ନାହିଁ । ଆମ ରାଜ୍ୟର ପଞ୍ଚବାର୍ଷିକ ଯୋଜନାରେ ଅର୍ଥନୀତିର ଉନ୍ନତ କ୍ଷେତ୍ରରେ ଅଧିକତର ବ୍ୟୟ ବରାଦ କରାଯିବ ବୋଲି ଆଶା କରାଯାଉଛି । ଏହାଫଳରେ କିଛିକାଳ ମଧ୍ୟରେ ଯୋଗାଣ ଏବଂ ବୃଦ୍ଧିହାରକୁ ଅଧିକ ପରିମାଣରେ ସମତୁଲ କରାଯାଇ ପାରିବ ଏବଂ ବିକାଶର ବେଗକୁ କ୍ଷିପ୍ରତର କରାଯାଇ ପାରିବ । ଆଗାମୀ କିଛି କାଳ ପର୍ଯ୍ୟନ୍ତ ଆମର ଅର୍ଥନୀତି କ୍ଷେତ୍ରରେ ପୁଞ୍ଜି ବିନିଯୋଗ ସତ୍ତ୍ୱେ ଆମେ ଯେଉଁଠାରେ ଅଛୁ ପ୍ରାୟ ସେହିଠାରେ ରହିଥିବୁ, ମାତ୍ର ଏହି ପରିବର୍ତ୍ତନ ଦୂର ନ ହେବାର କୌଣସି କାରଣ ମୁଁ ଦେଖି ପାରୁନାହିଁ । ବର୍ତ୍ତମାନପାଇଁ ରାଜ୍ୟର ପଞ୍ଚମ ଯୋଜନାର ଆକାର 567·01 କୋଟି ଟଙ୍କାରେ ଧାର୍ଯ୍ୟ କରାଯାଇଛି । ଏହା ଚତୁର୍ଥ ଯୋଜନା ବ୍ୟୟ ବରାଦର ଦୁଇ ଗୁଣରୁ ଅଧିକ । ଏହା ବାହାରେ କେନ୍ଦ୍ରୀୟ ଯୋଜନା ଓ କେନ୍ଦ୍ର ସରକାରଙ୍କ ଦ୍ୱାରା ସାହାଯ୍ୟପ୍ରାପ୍ତ ଯୋଜନା ଦ୍ୱାରା ପୁଞ୍ଜି ବିନିଯୋଗ, ବେସରକାରୀ କ୍ଷେତ୍ରର ପୁଞ୍ଜି ବିନିଯୋଗ ଏବଂ ଅନ୍ୟାନ୍ୟ ଅର୍ଥ ଯୋଗାଣକାରୀ ସଂସ୍ଥାମାନଙ୍କ ପ୍ରଭାବ କାରଣରୁ ଯୋଜନାର ଆକାର ଆହୁରି ଅଧିକ ବଢ଼ିବାର ସମ୍ଭାବନା ରହିଛି । ପଞ୍ଚମ ଯୋଜନାର ପ୍ରଥମ ବର୍ଷରେ 71·40 କୋଟି ଟଙ୍କାର ବ୍ୟୟବରାଦ କରାଯାଇଛି । ଏଥି ମଧ୍ୟରୁ 59·72 କୋଟି ଟଙ୍କା ରାଜ୍ୟ ସରକାରଙ୍କ ନିଜ ଯୋଜନାପାଇଁ ଉଦ୍ଦିଷ୍ଟ ଏବଂ ଅବଶିଷ୍ଟ 11·78 କୋଟି ଟଙ୍କା ଓଡ଼ିଶା ରାଜ୍ୟ ବିଦ୍ୟୁତ ବୋର୍ଡ ଏବେ ନବ ଗଠିତ ଓଡ଼ିଶା ରାଜ୍ୟ ସଡ଼କ ପରିବହନ କର୍ପୋରେସନର ପରିକଳ୍ପନା ବାବଦରେ ବରାଦ କରାଯାଇଛି । 567·01 କୋଟି ଟଙ୍କାର ରାଜ୍ୟ ଯୋଜନା କାର୍ଯ୍ୟକାରୀ କରିବାପାଇଁ 5 ବର୍ଷ ମଧ୍ୟରେ ଆମକୁ 75 କୋଟି ଟଙ୍କାର ଅତିରିକ୍ତ ସମ୍ବଳ ସଂଗ୍ରହ କରିବାକୁ ହେବ ଏବଂ 1974-75 ମସିହାରେ 8·56 କୋଟି ଟଙ୍କାର ଅତିରିକ୍ତ ସମ୍ବଳ ଉଠାଇବାକୁ ଯୋଜନା କମିଶନ ପରାମର୍ଶ ଦେଇଛନ୍ତି । 1974-75 ମସିହାର 59·62 କୋଟି ଟଙ୍କାର ରାଜ୍ୟ ଯୋଜନାପାଇଁ ନିମ୍ନ ଲିଖିତ ମତେ ସମ୍ବଳ ବ୍ୟବସ୍ଥା କରିବାକୁ ହେବ :—

| | |
|---|---|
| (କ) କେନ୍ଦ୍ରୀୟ ସାହାଯ୍ୟ | 32·70 କୋଟି ଟଙ୍କା |
| (ଖ) ଚୁକ୍ତିବଦ୍ଧ ଋଣ | 2·60 କୋଟି ଟଙ୍କା |
| (ଗ) ଚଳିତ ରାଜସ୍ୱର ଅବଶିଷ୍ଟ | 8·57 କୋଟି ଟଙ୍କା |
| (ଘ) ରାଜ୍ୟ ସରକାରଙ୍କ ଅତିରିକ୍ତ ସମ୍ବଳ ସଂଗ୍ରହ | 8·56 କୋଟି ଟଙ୍କା |
| (ଙ) ଋଣଯୋଜନା ମୂଳଧନର ଅବଶିଷ୍ଟ | 14·32 କୋଟି ଟଙ୍କା |

5. ଆମ ଅର୍ଥନୀତିରେ ଅଧିକରୁ ଅଧିକ ପୁଞ୍ଜି ବିନିଯୋଗ ଫଳରେ ଆମର ପୁଞ୍ଜିଭୂତ ଦାରିଦ୍ର୍ୟ ଏବଂ ଅନଗ୍ରସରତାର ସ୍ଥାୟୀ ସମାଧାନ ହୋଇ ପାରିବ ବୋଲି ମୁଁ ପୂର୍ବରୁ କହିଛି । ପ୍ରତିକ୍ରିୟାଶୀଳ ଏବଂ ରକ୍ଷଣଶୀଳ ଶକ୍ତିର କବଳରୁ ମୁକ୍ତ ରହିବାକୁ ହେଲେ ଆମକୁ ବିକାଶମୂଳକ କାର୍ଯ୍ୟକ୍ରମର ଗତିକୁ ତ୍ୱରାନ୍ୱିତ କରିବାକୁ ପଡ଼ିବ ଓ ଦାରିଦ୍ର୍ୟ ବିରୁଦ୍ଧରେ ପ୍ରତ୍ୟକ୍ଷ ସଂଗ୍ରାମ କରିବାକୁ ପଡ଼ିବ । ଷଷ୍ଠ ଅର୍ଥ କମିଶନଙ୍କ ସୁପାରିସ ବାଧ୍ୟରେ 1974-75 ଆର୍ଥିକ ବର୍ଷରେ ଆମେ 8 କୋଟି 56 ଲକ୍ଷ ଟଙ୍କାରୁ ଆହୁରି ଅଧିକ ସମ୍ବଳ ସଂଗ୍ରହ କରିପାରିଥାନ୍ତୁ । ସମୁଦାୟ ଚତୁର୍ଥ ଯୋଜନା କାଳରେ ଆମେ ଏକ ଋଣଯୋଜନା ସ୍ୱତନ୍ତ୍ର ସାହାଯ୍ୟପ୍ରାପ୍ତ ରାଜ୍ୟ ହିସାବରେ ପରିଗଣିତ ହୋଇଥିଲୁ ଏବଂ ଆମ ଅଣଯୋଜନା ଖର୍ଚ୍ଚ ବାବଦରୁ କେନ୍ଦ୍ର ସରକାରଙ୍କଠାରୁ ଋଣ କରି କାର୍ଯ୍ୟ ଚଳାଇଥିଲୁ । ଫଳରେ ଆମେ ଅଧିକ ଋଣ ଦେୟ ସ୍ତରରେ ଜର୍ଜରିତ ହୋଇପଡ଼ିଲୁ । ଷଷ୍ଠ ଅର୍ଥ କମିଶନ 1974 ରୁ 1979 ସମୟ ମଧ୍ୟରେ ରାଜ୍ୟ ପାଇଁ 567·01 କୋଟି ଟଙ୍କା ଦେବାପାଇଁ ସୁପାରିସ କରିଥିବା ବେଳେ ପଞ୍ଚମ ଅର୍ଥ କମିଶନଙ୍କ ସୁପାରିସ ଥିଲା ମାତ୍ର 2,87·33 କୋଟି ଟଙ୍କା । କମିଶନଙ୍କ ଋଣ ଛାଡ଼ ଯୋଜନା ଫଳରେ 31-3-1974 ବେଳକୁ କେନ୍ଦ୍ରୀୟ ଋଣ ବାବଦରେ ଅନୁଦାନ ମାତ୍ର 52·99 କୋଟି ଟଙ୍କା ପରିଶୋଧ କରିବାକୁ ପଡ଼ିଲା । ଅନ୍ୟଥା ଆମକୁ 287·37 କୋଟି ଦେବାକୁ ପଡ଼ିଥାନ୍ତା । ନୂତନ ବ୍ୟବସ୍ଥାମତେ ଆମକୁ ଏହି 5 ବର୍ଷ ମଧ୍ୟରେ ଦେବାକୁ ପଡ଼ିବ । କମିଶନ ଯେପରି ଭାବରେ ରାଜ୍ୟର ଆର୍ଥିକ ପରିସ୍ଥିତି ବାସ୍ତବ ଦୃଷ୍ଟି-କୋଣରୁ ଯଥାର୍ଥଭାବେ ବିଚାର କରିଛନ୍ତି ତାହା ବାସ୍ତବିକ ପ୍ରଶଂସନୀୟ । କିନ୍ତୁ ମୋର ଆଶଙ୍କା ହୁଏ ଯେ ରାଜ୍ୟର ଅର୍ଥନୀତିକୁ ସମତୁଲ କରିବାପାଇଁ କମିଶନ ଯେଉଁ ପ୍ରୟାସ କରିଛନ୍ତି ତାହା ସମ୍ପୂର୍ଣ୍ଣ ବ୍ୟର୍ଥ ହୋଇ ଯାଇପାରେ । କାରଣ ଜୀବନ ଧାରଣର ମାନ ବୃଦ୍ଧି ଯାଇଥିବା ଦୃଷ୍ଟିରୁ ରାଜ୍ୟ ସରକାରୀ କର୍ମଚାରୀଙ୍କୁ ଯେଉଁ ବର୍ଦ୍ଧିତ ହାରରେ ମହଙ୍ଗା ଭତ୍ତା ଦିଆଯିବ ତାହା ଫଳରେ କମିଶନଙ୍କ ସୁପାରିସର ଉପଯୁକ୍ତ ମୂଲ୍ୟ ରହିବ ନାହିଁ । ଭାରତ ସରକାର ସେମାନଙ୍କ କର୍ମଚାରୀଙ୍କୁ ଜୀବନ ଧାରଣ ମୂଲ୍ୟ ସୂଚୀର ପ୍ରତି 8 ପଏଣ୍ଟ ବୃଦ୍ଧିରେ ମହଙ୍ଗା ଭତ୍ତା ଦେବାପାଇଁ ସ୍ଥିର କରିଛନ୍ତି । ତୃତୀୟ କେନ୍ଦ୍ର ଦରମା କମିଶନ ମହଙ୍ଗା ଭତ୍ତା ଦେବାପାଇଁ ଯେଉଁ ସୂତ୍ର ସ୍ଥିର କରିଥିଲେ, ତାହା ଚଳାଇବାର ଏହା ଅଧିକ ଲାଭ-ଜନକ । ରାଜ୍ୟ ସରକାରୀ କର୍ମଚାରୀଙ୍କ ଆୟ ଉପରେ ଏହାର ପ୍ରଭାବ ପଡ଼ିବା ସ୍ୱାଭାବିକ । ଦରବୃଦ୍ଧି ଫଳରେ ରାଜକୋଷ ସମୃଦ୍ଧ ହେବାର ଆଶା ଥିଲେ ମଧ୍ୟ ଓଡ଼ିଶା ଭଳି ଏକ ରାଜ୍ୟପକ୍ଷରେ ସେଭଳି ସମ୍ଭାବନା ଆଦୌ ନାହିଁ । କାରଣ ଦାରିଦ୍ର୍ୟ ହେତୁ ଏଠାରେ ବ୍ୟୟ ହାର (consumption level) ଅତି ନିମ୍ନ ସ୍ତରରେ ରହିଛି ଏବଂ ହୁ ହୁ ହୋଇ ଦର ବୃଦ୍ଧି ପାଉଥିବାରୁ ଏହା ଆହୁରି ତଳକୁ ଖସିଯିବାର ସମ୍ଭାବନା ରହିଛି । ଚଳିତ ଆର୍ଥିକ ବର୍ଷର ତୃତୀୟ ଭାଗର ଶେଷ ବେଳକୁ ରାଜ୍ୟର ଅଣଯୋଜନା ସମ୍ବଳ ଉପରେ ଅଧିକ ଚାପ ପଡ଼

ବଜେଟ ଆଦ୍ଧବ ହେବଣି ନଅଣ୍ଟିଅା ହୋଇଗଲେ ସେଥିରେ ମୁଁ କଶି୍ତ ହେବ ନାହିଁ । କେନ୍ଦ୍ର ସରକାର ଏହି ନଅଣ୍ଟ ଅବସ୍ଥାକୁ ସମ୍ଭାଳ ନେବାପାଇଁ ଚେଷ୍ଟା କରିପାରନ୍ତି ଏବଂ ବଜ୍ଜୋର ସହିତ ଅର୍ଥିକ ଶବକ୍ଷିତ ଚଳାଇ ନେଇପାରନ୍ତି । କିନ୍ତୁ ଯେପର୍ଯ୍ୟନ୍ତ କୌଣସି ସ୍ଥାନରେ ରହୁଥିବା ରାଜ୍ୟ ସରକାରୀ କର୍ମଚାରୀ ଏବଂ କେନ୍ଦ୍ରୀୟ ସରକାରୀ କର୍ମଚାରୀଙ୍କ ଆୟରେ ତାରତମ୍ୟ ରହିଛି, ସେ ପର୍ଯ୍ୟନ୍ତ ହରିଭଜନା ଓ ଗଣ୍ଡଗୋଳକୁ ଏଡ଼ାଇ ଦେଇ ହେବନାହିଁ । ଆମର ଇଚ୍ଛା ବଧୁଳ ହେଲେ ହେଁ ଜବନ ନାହିଁ ଅତ୍ୟନ୍ତ ବ୍ୟୟସାପେକ୍ଷ ହୋଇଥିବାରୁ ରାଜ୍ୟ ସରକାରଙ୍କୁ ପାଣ୍ଠି ର ବ୍ୟବସ୍ଥା କରିବାକୁ ହେବ । ଏହି ପରିପ୍ରେକ୍ଷରେ ଆମର ପଡ଼ୋଶୀ ରାଜ୍ୟ ପଶ୍ଚିମବଙ୍ଗ ମଜ୍‌ଦ, ଆସ୍ତ ଏବଂ ଜନସ୍ୱପକ୍ଷର ଏର ଉପରେ ଜାତୀୟ ସ୍ତରରେ ଏକ ନୀତ ଧାର୍ଯ୍ୟ କରିବା ଦରକାର ବୋଲି ହଦ୍‌ବେଗ ପ୍ରକାଶ କରିଛି ସେଥିରେ ମୁଁ ସହମତ ହେଉଛି । ଏଣୁ ରାଜ୍ୟର ପ୍ରଚଳିତ ନଳସ୍ୱର ଯୋଜନା ବାବଦ ସମ୍ବଳପାଇଁ ସାହାଯ୍ୟ ଦିଆଯାଇ ପାରିବ ବୋଲି ଆଶାକରିବା ନିରର୍ଥକ ।

6 . ମାନ୍ୟବର ସଭ୍ୟମାନେ ହୃଦୟଙ୍ଗମ କରିବେ ଯେ ପରିସ୍ଥିତିର ରୂପ ଅତ୍ୟନ୍ତ ସୁସ୍ପଷ୍ଟ । ଆଶାନୁରୂପ ଆକାର ପ୍ରକାରର କୌଣସି ଯୋଜନା ପ୍ରସ୍ତୁତ କରିବାକୁ ହେଲେ ଏବଂ 1974-1975 ଆର୍ଥିକ ବର୍ଷରେ 59·62 କୋଟି ଟଙ୍କା ବିନିଯୋଗ କରିବାର କାର୍ଯ୍ୟକ୍ରମ ରକ୍ଷିବାକୁ ଗଲେ ଯାହାକି ଆମର ଆବଶ୍ୟକତାକୁ ସମ୍ପୂର୍ଣ୍ଣରୂପେ ପୂରଣ କରିପାରିବ ନାହିଁ; ସେତେବେଳେ ଚଳିତ ଆର୍ଥିକ ବର୍ଷରେ 8·56 କୋଟି ଟଙ୍କାର ଅତିରିକ୍ତ ସମ୍ବଳ ଯୁଟାଇବା ବ୍ୟତୀତ ଆମ ପକ୍ଷରେ ଅନ୍ୟ ପନ୍ଥା ନାହିଁ ।

7 . ଗତ 1970 ମସିହାରେ ଜନ୍ମାରୁ ଉଠାଇ ଦିଆଯାଇଥିବା ଭୂ-ରାଜସ୍ୱ ପ୍ରଥା ପୁନଃ ପ୍ରବର୍ତ୍ତନ କରାଯିବାପାଇଁ ମୁଁ ପ୍ରସ୍ତାବ କରୁଛି । ମାତ୍ର ଆମ ପରିକଳ୍ପନା ଅନୁଯାୟୀ 2 ଏକର କିମ୍ବା ତା'ଠାରୁ କମ୍ ଜମିଥିବା କୃଷକମାନଙ୍କୁ ଭୂ-ରାଜସ୍ୱ ଦେବାକୁ ପଡ଼ିବ ନାହିଁ । ଏ ବାବଦରୁ ବାର୍ଷିକ ଆୟ ଦେଢ଼ କୋଟି ଟଙ୍କା ହେବ ବୋଲି ଆଶା କରାଯାଏ । ମାନ୍ୟବର ସଭ୍ୟମାନେ ହୃଦୟଙ୍ଗମ କରିବା ଆବଶ୍ୟକ ଯେ କୃଷିର ଉନ୍ନତିପାଇଁ ଗ୍ରାମାଞ୍ଚଳରେ ବିପୁଳ ପରିମାଣରେ ଅର୍ଥ ବିନିଯୋଗ କରାଯାଉଛି । ଏହାଫଳରେ ବିନିଯୋଗ ହେଉଥିବା ଅର୍ଥ ଯୋଗୁ ଯେଉଁ କୃଷକମାନେ ଉପକୃତ ହେଉଛନ୍ତି, ସେମାନେ ସେମାନଙ୍କଠାରୁ ଅଧିକ ଦୁଃଖ କଷ୍ଟ ଭୋଗକରୁଥିବା ଲୋକମାନଙ୍କ ଅବସ୍ଥାର ଉନ୍ନତିପାଇଁ ସରକାରଙ୍କୁ ସାହାଯ୍ୟ କରିବା ଆବଶ୍ୟକ ।

7·1 ଖଜଣା ଉପରେ ଦେବାକୁ ପଡ଼ୁଥିବା ମୌଳିକ ଜଳକର ବାଧ୍ୟତାମୂଳକ କରାଯିବା-ପାଇଁ ପ୍ରସ୍ତାବ ରହିଛି । ଏତଦ୍‌ବ୍ୟତୀତ ଉକ୍ତ ଜଳକରର ହାର ମଧ୍ୟ ସଂଶୋଧନ କରାଯିବ । ଏହି ବ୍ୟବସ୍ଥା ଫଳରେ ବାର୍ଷିକ ଅତିରିକ୍ତ ଆୟ 0·25 କୋଟି ଟଙ୍କା ହେବ ।

7·2. ଅଧିକ ସୁବିଧା ଉପଭୋଗ କରୁଥିବା ରାଜ୍ୟର ଅଳ୍ପ କେତେକ ବ୍ୟକ୍ତିଙ୍କ ପକ୍ଷରେ ବିଦେଶୀ ସୁରା ଏକ 'ଉତ୍ତେଜନାପ୍ରଦ ବ୍ୟବହାର୍ଯ୍ୟ ପଦାର୍ଥ' । ତେଣୁ ବିଦେଶୀ ସୁରା ଉପରେ ଏକ "ସୌଖୀନ କର" ବସାଇବା ନିମନ୍ତେ ମୁଁ ପ୍ରସ୍ତାବ ଆଗତ କରୁଛି । ଏହା ଫଳରେ ଚଳିତ ବର୍ଷ 15 ଲକ୍ଷ ଟଙ୍କା ଅଧିକ ରାଜସ୍ୱ ଆଦାୟ ହେବ ।

7·3. ଅତ୍ୟାବଶ୍ୟକ ହୋଇ ନଥିବା ଦ୍ରବ୍ୟ ଉପରେ ବର୍ତ୍ତମାନ ଶତକଡ଼ା 7 ହାରରେ ବିକ୍ରି କର ବସାଯାଇଛି । ଏଧରଣର ଜିନିଷ ଉପରେ ବିକ୍ରୟ ଉପରେ ଶତକଡ଼ା 10 ଟିକସ ଧାର୍ଯ୍ୟ କରିବାକୁ ମୁଁ ପ୍ରସ୍ତାବ ଦେଉଛି । ଏ ବାବଦରେ 1974-75ରେ 2 କୋଟି ଟଙ୍କା ଅଧିକ ରାଜସ୍ୱ ଆଦାୟ ହେବାର ସମ୍ଭାବନା ରହିଛି ।

7·4. ଚଳିତବର୍ଷ କେତେକ କ୍ଷେତ୍ରରେ ବିଦ୍ୟୁତ୍ ଶୁଳ୍କ ବଢ଼ାଇବା ନିମନ୍ତେ ମଧ୍ୟ ମୁଁ ପ୍ରସ୍ତାବ ଆଗତ କରୁଛି । ଏହାଫଳରେ ଚଳିତ ବର୍ଷ ପ୍ରାୟ 77 ଲକ୍ଷ ଟଙ୍କା ଅତିରିକ୍ତ ରାଜସ୍ୱ ଆଦାୟ ହୋଇପାରିବ ।

7·5. ବେସରକାରୀ ମୋଟରଗାଡ଼ି, ମୋଟର ସାଇକେଲ, ସ୍କୁଟର ସମେତ ବ୍ୟକ୍ତିଗତ ଉଦ୍ଦେଶ୍ୟରେ ଲାଗିଥିବା ସମସ୍ତ ପ୍ରକାରର ଗାଡ଼ିମୋଟରଙ୍କ ଉପରେ ଟିକସ ହାର ବୃଦ୍ଧି କରିବା ନିମନ୍ତେ ମଧ୍ୟ ପ୍ରସ୍ତାବ ରହିଛି । ମାଲଭଡ଼ାହାର ବିଶେଷ ବଢ଼ିଯାଇଥିବା ଦୃଷ୍ଟିରୁ ଟିକସ ହାରବୃଦ୍ଧି କରିବାର ଯଥାର୍ଥତା ରହିଛି । ଟିକସବୃଦ୍ଧି ସତ୍ତ୍ୱେ ଅନେକ କ୍ଷେତ୍ରରେ ଗାଡ଼ି ଉପରେ ଆମ ଟିକସହାର ପଡ଼ୋଶୀ ରାଜ୍ୟ ଟିକସ ହାର ତୁଳନାରେ କମ୍ ହେବ । ଏ ବ୍ୟବସ୍ଥା ଫଳରେ ପୂରା ଗୋଟିଏ ବର୍ଷରେ 80 ଲକ୍ଷ ଟଙ୍କା ଅଧିକ ହେବ ବୋଲି ଆଶା କରାଯାଏ ।

7·6. ବର୍ତ୍ତମାନ ପ୍ରମୋଦକର ଉପରେ କୌଣସି ସରଚାର୍ଜ ବସିନାହିଁ । ଆମୋଦ ପ୍ରମୋଦ ପାଇଁ ଯେଉଁ ପ୍ରବେଶିକା ଟିକେଟ୍‌ର ବ୍ୟବସ୍ଥା ରହିଛି, ସେଥିରେ 1ଟଙ୍କାରୁ କମ୍ ମୂଲ୍ୟର ଟିକେଟ୍ ଉପରେ 10 ପଇସା ଓ 1ଟଙ୍କାରୁ ଉର୍ଦ୍ଧ୍ୱ ମୂଲ୍ୟର ଟିକେଟ୍ ଉପରେ 15 ପଇସା ସରଚାର୍ଜ ଧାର୍ଯ୍ୟ କରିବାକୁ ମୁଁ ମନସ୍ଥ କରିଛି । ଚଳିତ ବର୍ଷ ଏହି ବାବଦରେ ଅଧିକ 10 ଲକ୍ଷ ଟଙ୍କା ରାଜସ୍ୱ ମିଳିବ । ଏହି ସରଚାର୍ଜ ଫଳରେ ଆମୋଦ ପ୍ରମୋଦ ବାବଦ ଖର୍ଚ୍ଚ କିଛିଟା ବଢ଼ିଯାଇପାରେ । କିନ୍ତୁ ମୁଁ ନିଶ୍ଚିତ ଯେ ରାଜ୍ୟର ବିକାଶମୂଳକ ଯୋଜନାର କାର୍ଯ୍ୟକାରିତା ଦୃଷ୍ଟିରୁ ବୃହତ୍ତର ସ୍ୱାର୍ଥ ପ୍ରତି ଲକ୍ଷ୍ୟ ରଖି ଚଳଚ୍ଚିତ୍ର ଦେଖିବାକୁ ଯାଉଥିବା ଲୋକମାନେ ଏହି ଶୁଳ୍କ ଦେବାପାଇଁ ଆପତ୍ତି କରିବେ ନାହିଁ ।

7·7. 1958 ମସିହାରେ ଦଶମିକ ମୁଦ୍ରା ପ୍ରବର୍ତ୍ତିତ ପରଠାରୁ କୋର୍ଟ ଫି ହାର ଅପରିବର୍ତ୍ତିତ ରହିଛି । କେତେକ କ୍ଷେତ୍ରରେ ଉକ୍ତ କୋର୍ଟ ଫି ହାର ବୃଦ୍ଧି କରିବାପାଇଁ ମୁଁ ପ୍ରସ୍ତାବ ଆଗତ କରୁଛି, ଯାହା ଫଳରେ ବାର୍ଷିକ 95 ଲକ୍ଷ ଟଙ୍କା ଅତିରିକ୍ତ ଆୟ ମିଳିପାରିବ ।

7·8. ବାଣିଜ୍ୟର ରପ୍ତାନି ହାରରେ ସଂଶୋଧନ, କ୍ଷୁଦ୍ର ଜଙ୍ଗଲଜାତ ଦ୍ରବ୍ୟର ରପ୍ତାନି ହାର ବୃଦ୍ଧି ରପ୍ତାନିମାନେ ଦେଉଥିବା ରପ୍ତାନି ହାରର ସଂଶୋଧନ, କେନ୍ଦୁପତ୍ର ବ୍ୟବସାୟରୁ ସର୍ବାଧିକ ଅର୍ଥ ପ୍ରାପ୍ତି ନେଇ ଗୁରୁତ୍ୱପୂର୍ଣ୍ଣ ବ୍ୟବସ୍ଥା ଚଳିତବର୍ଷ ଗ୍ରହଣ କରାଯିବ, ଯାହା ଫଳରେ କି ଜଙ୍ଗଲ ରାଜସ୍ୱରୁ ଚଳିତବର୍ଷ ଅଧିକ 2 କୋଟି ଟଙ୍କା ମିଳିପାରିବ ।

7·9. 1974-75ରେ ଯୋଜନା କାର୍ଯ୍ୟକ୍ରମରେ ଅର୍ଥ ବିନିଯୋଗପାଇଁ ରାଜ୍ୟ-ସରକାର ଖାଦ୍ୟଶସ୍ୟ ସଂଗ୍ରହ ବାବଦରେ 20 ଲକ୍ଷ ଟଙ୍କା ବୋନସ ପାଇବେ ।

8. ପୂର୍ବବର୍ଣ୍ଣିତ ଆର୍ଥିକ ପ୍ରସ୍ତାବ ସଂକ୍ରାନ୍ତ ଅବଶ୍ୟକୀୟ ଅଭିନୟତ ଓ ଅନ୍ୟାନ୍ୟ ବ୍ୟବସ୍ଥା ଚଳିତ ଅଧିବେଶନରେ ସମ୍ପୃକ୍ତ ସରକାରୀ ବିଭାଗମାନଙ୍କ ଦ୍ୱାରା ଆଗତ କରାଯିବ ଏବଂ ଏହାଫଳରେ ଅତିରିକ୍ତ ସମ୍ବଳ ସଂଗ୍ରହ କରିବା ନିମନ୍ତେ 8 କୋଟି 56 ଲକ୍ଷ ଟଙ୍କା ଧାର୍ଯ୍ୟ କରାଯାଇଥିବା ସ୍ଥଳେ ପ୍ରାପ୍ୟ 7 କୋଟି 82 ଲକ୍ଷ ଟଙ୍କା ମିଳିପାରିବ ଓ 74 ଲକ୍ଷ ଟଙ୍କା ନିଅଣ୍ଟ ପଡ଼ିବ ।

9. ମାନ୍ୟବର ସଭ୍ୟମାନେ ଅବଗତ ଅଛନ୍ତି ଯେ, 1974-75 ବର୍ଷପାଇଁ ଆଲୋଚ୍ୟ ବଜେଟ୍‌ରେ ରାଜ୍ୟ ଯୋଜନା ବାବଦରେ 59 କୋଟି 62 ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି । ଯୋଜନାପାଇଁ 57 କୋଟି 71 ଲକ୍ଷ ଟଙ୍କା ସମ୍ବଳ ସଂଗ୍ରହ କରିପାରିବାଭଳି ଦେଖାଯାଉଛି ଏବଂ ଏହା ଫଳରେ ଏକ କୋଟି 91 ଲକ୍ଷ ଟଙ୍କା ନିଅଣ୍ଟ ପଡ଼ିବ ବୋଲି ଜଣାଯାଉଛି । ଏପରି ଘଟିବାର କାରଣ ହେଲା ଯେ ଅତିରିକ୍ତ ଟିକସ ଆଦାୟ ବାବଦରୁ ପ୍ରାପ୍ୟ 74 ଲକ୍ଷ ଟଙ୍କା ନିଅଣ୍ଟ ପଡ଼ୁଛି ଏବଂ ଅଣଯୋଜନା ବାବଦ ବଜେଟ୍‌ର ଅମର 14 କୋଟି 32 ଲକ୍ଷ ଟଙ୍କା ଆବଶ୍ୟକ ହେଉଥିବା ସ୍ଥଳେ 13 କୋଟି 15 ଲକ୍ଷ ଟଙ୍କାରୁ ଅଧିକ ସଂଗ୍ରହ କରିବାର ସମ୍ଭାବନା ନାହିଁ । ଏହି ନିଅଣ୍ଟିଆ ପରିସ୍ଥିତିକୁ ସୁଧାରିବା ନିମନ୍ତେ ସରକାରୀସ୍ତରରେ ବ୍ୟୟ ସଂକୋଚ କରାଯିବ । ବ୍ୟୟ ସଂକୋଚର ପରିସର ସୀମାବଦ୍ଧ ହୋଇଥିବାରୁ ବଳେଯାଇ ଟିକସ ଓ ଋଣ ଅସୁଲ ତ୍ୱରାନ୍ୱିତ କରାଯିବାପାଇଁ ଉଦ୍ୟମ ହେବ । ସମ୍ବଳ ସଂଗ୍ରହ ଆଶାନୁରୂପେ ନ ହେଲେ ଯୋଜନାକୁ ଅବ୍ୟାହତ ରଖିବା ଉଦ୍ଦେଶ୍ୟରେ ଅଧିକ ଟିକସ ବସାଇବାପାଇଁ ମୁଁ ପୁଣି ଆପଣଙ୍କ ସପକ୍ଷରେ ପ୍ରସ୍ତାବ ଆଣିପାରେ । ଅବଶ୍ୟ ବିରୋଧୀ ଦଳରେ ଥିବା ମୋର ମାନ୍ୟଗଣ୍ୟ ବନ୍ଧୁମାନେ ଭାରତ ସମ୍ବିଧାନର ବ୍ୟବସ୍ଥାମତେ ରାଜ୍ୟ ତାଲିକାଭୁକ୍ତ ସୂତ୍ରରେ ଅତିରିକ୍ତ ସମ୍ବଳ ସଂଗ୍ରହପାଇଁ କୌଣସି ଚିନ୍ତା କରିଥିଲେ ତାହା ପ୍ରକାଶ କରିପାରନ୍ତି । ମୁଁ ଏଠାରେ ଉଲ୍ଲେଖ କରିପାରେ ଯେ ଯୋଜନା କାର୍ଯ୍ୟକ୍ରମ ନିମନ୍ତେ ସମ୍ବଳ ସଂଗ୍ରହ କରିବାପାଇଁ ଅଣଉତ୍ପାଦକ ବ୍ୟୟ ବନ୍ଦ କରିବା ଉଚିତ୍ ବୋଲି

ବହୁ ସମସ୍ୟାର ଦାବୀ ହେଉଛି । ରାଜ୍ୟର ଅଣଯୋଜନା ବାବଦ ଖର୍ଚ୍ଚକୁ ସାଧାରଣତଃ ଅଣଉତ୍ପାଦକ ବ୍ୟୟ ରୂପେ ଶ୍ରେଣୀଭୁକ୍ତ କରାଯାଇଥାଏ । ଏହି ଶ୍ରେଣୀର ବ୍ୟୟ ପ୍ରତ୍ୟେକ ବର୍ଷ ବୃଦ୍ଧି ପାଇବାରେ ଲାଗିଛି, ମାତ୍ର ସରକାରୀ କାର୍ଯ୍ୟକଳାପର ବ୍ୟାପକତା ଦୃଷ୍ଟିରୁ ଓ ଉନ୍ନୟନମୂଳକ ଯୋଜନାଗୁଡ଼ିକର ଆକାର ପ୍ରକାର ବୃଦ୍ଧି ପାଇ ଯାଉଥିବାରୁ ଏଭଳି ବ୍ୟୟ ବୃଦ୍ଧି ପାଇବା ସ୍ୱାଭାବିକ । ମଜୁରି, ବେତନ, ମହଙ୍ଗାଭତ୍ତା ଆଦିର ସ୍ୱାଭାବିକ ବୃଦ୍ଧି ସଙ୍ଗେ ସଙ୍ଗେ ସମାପ୍ତ ହୋଇଥିବା ପରିକଳ୍ପନାଗୁଡ଼ିକର ରକ୍ଷଣାବେକ୍ଷଣ ବାବଦରେ ଅଧିକ ବ୍ୟୟ କରିବାକୁ ପଡ଼ୁଥିବାରୁ ଅଣଯୋଜନା ବ୍ୟୟ ବୃଦ୍ଧି ପାଉଛି । ପୂର୍ବରୁ ବର୍ଣ୍ଣନା କରାଯାଇଛି ଯେ ରାଜ୍ୟର ଅଣଯୋଜନା ବାବଦ ସମ୍ବଳ ଓ ବ୍ୟୟ ମଧ୍ୟରେ ପାର୍ଥକ୍ୟ ରହିଆସୁଛି । ଅଣଯୋଜନା ବାବଦରେ ଯେକୌଣସି ନୂତନ ବ୍ୟୟ ସବୁବେଳେ ବିଶେଷଜ୍ଞଙ୍କ ଦ୍ୱାରା ପରୀକ୍ଷା କରାଯାଇଥାଏ । ବହୁ ବର୍ଷର ଆର୍ଥିକ ସଙ୍କଟ ଓ ବ୍ୟୟ ସଂକୋଚ ବ୍ୟବସ୍ଥା ପରେ ଷଷ୍ଠ ଅର୍ଥ କମିଶନଙ୍କ ସୁପାରିଶ ଆମ ମନରେ ଆନନ୍ଦ ସଞ୍ଚାର କରିଥିଲା, ମାତ୍ର ଯାହା ଜଣାପଡ଼ୁଛି ସମ୍ବଳ ତୁଳନାରେ ଆମର ଆବଶ୍ୟକତା ବହୁତ ବେଶି । ଷଷ୍ଠ ଅର୍ଥ କମିଶନଙ୍କ ସୁପାରିଶର ସାରାଂଶ ଓ ରାଜ୍ୟର ଆର୍ଥିକ ପରିସ୍ଥିତି ଉପରେ ଏହାର ପ୍ରଭାବ ସମ୍ପର୍କରେ ମାନ୍ୟବର ସଦସ୍ୟମାନଙ୍କୁ ଅବଗତ କରାଇବା ନିମନ୍ତେ ତାହା ସ୍ୱତନ୍ତ୍ରଭାବେ ଦିଆଯାଇଛି ।

10. ରାଜ୍ୟର ପଞ୍ଚମ ପଞ୍ଚବାର୍ଷିକ ଯୋଜନାର ପ୍ରସ୍ତାବିତ ବ୍ୟୟ ଅଟକଳ 567·01 କୋଟି ଟଙ୍କା ମଧ୍ୟରୁ ସର୍ବନିମ୍ନ ଆବଶ୍ୟକତା କାର୍ଯ୍ୟକ୍ରମ ବାବଦରେ 149·38 କୋଟି ଟଙ୍କା ବରାଦ ରହିଛି । ସମାଜର ଦୁର୍ବଳ ଗୋଷ୍ଠୀଙ୍କ ଅବସ୍ଥାର ଉନ୍ନତି କରିବା ଉଦ୍ଦେଶ୍ୟରେ ଏହା ଏକ ନୂତନ ପଦକ୍ଷେପ । ଗରିବ ଓ ଦରିଦ୍ର ଶ୍ରେଣୀର ଲୋକମାନଙ୍କପାଇଁ ଶିକ୍ଷା, ସ୍ୱାସ୍ଥ୍ୟ, ପାନୀୟଜଳ, ରାସ୍ତାଘାଟ, ବିଦ୍ୟୁତ୍, ବାସଗୃହ ଓ ପୁଷ୍ଟିକର ଖାଦ୍ୟଭଳି କେତେକ ସୁବିଧା ଯୋଗାଇବାରେ ବ୍ୟବସ୍ଥା କରିବାପାଇଁ ଏହା ଉଦ୍ଦିଷ୍ଟ । ପଞ୍ଚମ ଯୋଜନାର ପ୍ରଥମ ବର୍ଷର ବିନିଯୋଗ କରାଯାଇଥିବା ସର୍ବମୋଟ 71.40 କୋଟି ଟଙ୍କା ମଧ୍ୟରୁ 13.21 କୋଟି ଟଙ୍କା ଅର୍ଥାତ୍ ଯୋଜନା ବ୍ୟୟର ଶତକଡ଼ା 18 ଭାଗରୁ ଅଧିକ ଅର୍ଥ ଏହି ସର୍ବନିମ୍ନ ଆବଶ୍ୟକତା କାର୍ଯ୍ୟକ୍ରମପାଇଁ ଉଦ୍ଦିଷ୍ଟ । ମୁଁ ଏଠାରେ ଉଲ୍ଲେଖ କରିବାକୁ ଚାହେଁ ଯେ, 1974-75 ମସିହାରେ ଦୁଇଲକ୍ଷ ଏକର ଜମି ଭୂମିହୀନ ଲୋକଙ୍କ ମଧ୍ୟରେ ବଣ୍ଟନ କରାଯିବ ଏବଂ ଏହି ଲୋକମାନଙ୍କୁ ଚାଷ କରିବାପାଇଁ ବହୁ ପ୍ରକାର ସୁବିଧା ସୁଯୋଗ ଯୋଗାଇଦେଇ ସେମାନଙ୍କ ଆୟର ପନ୍ଥା ଏବଂ ଜୀବନଧାରଣ ମାନରେ ଉନ୍ନତି ଘଟାଇବାକୁ ପଡ଼ିବ । ଚଳିତ ବର୍ଷ ଯୋଜନାରେ ଆଦିବାସୀ ଓ ହରିଜନମାନଙ୍କ ଉନ୍ନତିପାଇଁ ଅଧିକ ପରିମାଣର ବ୍ୟୟ

ବରାଦ କରାଯାଇଛି । ଆମ ରାଜ୍ୟର ଆଦିବାସୀ, ହରିଜନଙ୍କ ସଂଖ୍ୟା ହେଉଛି ସମଗ୍ର ଜନସଂଖ୍ୟାର ଶତକଡା 38·2 ଭାଗ । ଏହି କାର୍ଯ୍ୟକ୍ରମରୁ ମିଳୁଥିବା ସୁବିଧାସୁଯୋଗ ବ୍ୟତୀତ ସର୍ବନିମ୍ନ ଆବଶ୍ୟକତା କାର୍ଯ୍ୟକ୍ରମ ଅନୁଯାୟୀ ଏମାନେ ମଧ୍ୟ ଉପକୃତ ହେବେ । ଗରିବ ଓ ଅନୁନ୍ନତ ଶ୍ରେଣୀର ଲୋକମାନଙ୍କର ଜୀବନଧାରଣ ମାନ ଉନ୍ନତ କରିବା ଉପରେ ସର୍ବାଧିକ ଗୁରୁତ୍ୱ ଦିଆଯାଉଥିବାରୁ ଆମର ଯୋଜନା ଆହୁରି ବଡ ଆକାରର ହୁଅନ୍ତା ବୋଲି ମୁଁ ବି ଚାହୁଁଛି । ଚଳିତ ବର୍ଷର ସର୍ବନିମ୍ନ ଆବଶ୍ୟକତା କାର୍ଯ୍ୟକ୍ରମ ଅନୁଯାୟୀ ପ୍ରାଥମିକ ଶିକ୍ଷା ବାବଦରେ 2·50 କୋଟି ଟଙ୍କା ସ୍ୱାସ୍ଥ୍ୟ, ପାନୀୟ ଜଳ ଓ ପୁଷ୍ଟିକର ଖାଦ୍ୟ ବାବଦରେ 4·06 କୋଟି ଟଙ୍କା, ଗ୍ରାମାଞ୍ଚଳରେ ରାସ୍ତାଘାଟର ପ୍ରସାର ଓ ଗ୍ରାମ୍ୟ ବିଦ୍ୟୁତିକରଣ ବାବଦରେ 6·20 କୋଟି ଟଙ୍କା ଏବଂ ବାସଗୃହ ନିର୍ମାଣ ବାବଦରେ 0·45 କୋଟି ଟଙ୍କା ବରାଦ କରାଯାଇଛି । ବାସଗୃହ ପାଇଁ ଉଦ୍ଦିଷ୍ଟ ଟ0·45 କୋଟି ଟଙ୍କା ମଧ୍ୟରୁ ଭୂମିହୀନ ଶ୍ରମିକମାନଙ୍କୁ ଘରଡିହ ଯୋଗାଇଦେବା ବାବଦରେ 0·40 କୋଟି ଟଙ୍କା ବିନିଯୋଗ କରାଯିବ ।

11. ମୁଁ ବର୍ତ୍ତମାନ 1974-75 ମସିହା ବଜେଟ ଅଟକଳର ମୁଖ୍ୟ ବିଷୟଗୁଡ଼ିକ ସଂପର୍କରେ ଆଲୋଚନା କରିବାକୁ ଯାଉଛି । 1972-73 ମସିହାର ଗ୍ୟାରେଣ୍ଟି ଯୁକ୍ତ ସରକାରୀ ଋଣ ହିସାବ କରାଗଲାବେଳେ 21·27 କୋଟି ଟଙ୍କା ନିଅଣ୍ଟ ଦର୍ଶାଯାଇଥିଲା । ମାତ୍ର 1972-73 ମସିହାରେ ରାଜ୍ୟ ସରକାରଙ୍କ ହିସାବ ନିକାଶ କରାଗଲାବେଳେ 16·13 କୋଟି ଟଙ୍କାର ଟ୍ରେଜେରୀ ବିଲ ଏବଂ 5·40 କୋଟି ଟଙ୍କାର କାମଚଳା ଅଗ୍ରୀମ ହିସାବକୁ ନିଆଯାଇ ପାରି ନ ଥିବାରୁ ଏଭଳି ନିଅଣ୍ଟ ଦର୍ଶାଯାଇଥିଲା । ଏହିସବୁ ଟ୍ରେଜେରୀ ବିଲ୍ ଓ କାମଚଳା ଅଗ୍ରୀମ ଭରଣା କରାଯିବା ପରେ ନିଅଣ୍ଟ ପରିଚ୍ଛିତ ପୁରାପୁରି ଭରଣା କରାଯାଇ 0·36 କୋଟି ଟଙ୍କା ବଳକା ରହିଥିଲା । ଏହି ରାଜ୍ୟର 1972-73 ବଜେଟ ହିସାବରେ ଦର୍ଶାଯାଇଥିଲେ ମଧ୍ୟ କୌଣସି ଓଭରଡ୍ରାଫ୍ଟ ହୋଇ ନ ଥିଲା । 1973-74 ମସିହାର ବଜେଟ ହିସାବରେ 2·04 କୋଟି ଟଙ୍କା ନିଅଣ୍ଟ ପଡ଼ିବ ବୋଲି ଅଟକଳ କରାଯାଇଥିଲା । ମାତ୍ର ସଂଶୋଧିତ ଅଟକଳ ଅନୁଯାୟୀ ଉକ୍ତ ବର୍ଷର ଆୟ ବ୍ୟୟ ପରେ ବର୍ଷ ଶେଷରେ 0·59 କୋଟି ଟଙ୍କା ବଳକା ରହିବ ବୋଲି ଅନୁମାନ କରାଯାଇଛି, ଯାହାକି 1974-75 ବର୍ଷର ପ୍ରାରମ୍ଭିକ ଜମା ରୂପେ ପରିଗଣିତ ହେବ ।

12. 1974-75 ମସିହା ପାଇଁ ରାଜସ୍ୱ ବଜେଟରେ 231·44 କୋଟି ଟଙ୍କା ବ୍ୟୟ, 230·07 କୋଟି ଟଙ୍କା ଆୟ ହେବ ବୋଲି ହିସାବ କରାଯାଇଛି । ଏହି ଫଳରେ ନିଅଣ୍ଟ ପରିମାଣ 1·37 କୋଟି ଟଙ୍କା ହେବ । ରାଜସ୍ୱ ବଜେଟରେ ଯେଉଁସବୁ ବ୍ୟୟ ସଂପର୍କୀୟ ପ୍ରସ୍ତାବ ହୋଇଛି, ସେଗୁଡ଼ିକ ମଧ୍ୟରୁ କେତେକ ହେଲା ଯୋଜନା ବାବଦରେ 36·38 କୋଟି ଟଙ୍କା, ବେସରକାରୀ ମାଧ୍ୟମିକ ସ୍କୁଲ ଶିକ୍ଷକମାନଙ୍କ ବାବଦ

ସମସ୍ତ ଖର୍ଚ୍ଚ ଚତୁର୍ଥ ଦରମା କମିଶନଙ୍କ ସୁପାରିଶ କାର୍ଯ୍ୟକାରୀ କରିବାପାଇଁ ମୋଟାମୋଟିଭାବେ 10 କୋଟି ଟଙ୍କାର ବ୍ୟବସ୍ଥା, ସ୍ୱତନ୍ତ୍ରଭାବରେ ଶିକ୍ଷକମାନଙ୍କ ଦରମା ସମୀକରଣ ବାବଦ ବ୍ୟୟ ଏଥି ମଧ୍ୟରେ ଅନ୍ତର୍ଭୁକ୍ତ । ପୋଲିସ, ଜେଲ୍ ଓ ବିଚାର ବିଭାଗର ଉନ୍ନତିପାଇଁ ଷଷ୍ଠ ଅର୍ଥ କମିଶନଙ୍କ ସୁପାରିଶ ମତେ ଗ୍ରାଣ୍ଟ ବାବଦରେ 0·9 କୋଟି ଟଙ୍କା ହାସପାତାଲ ଓ ଡାକ୍ତରଖାନାମାନଙ୍କରେ ରୋଗୀଙ୍କପାଇଁ ଖାଦ୍ୟପେୟ ଓ ଔଷଧ ଖର୍ଚ୍ଚ ବାବଦରେ ଅଧିକ ଅର୍ଥ ବ୍ୟବସ୍ଥା ଏବଂ ରାସ୍ତାଘାଟ ଓ ଅନ୍ୟାନ୍ୟ ସରକାରୀ ସମ୍ପତ୍ତିର ରକ୍ଷଣାବେକ୍ଷଣ ଲାଗି ଅଧିକ ପରିମାଣରେ ଅର୍ଥ ବ୍ୟବସ୍ଥା । ଷଷ୍ଠ ଅର୍ଥ କମିଶନର ସୁପାରିଶ ଅନୁଯାୟୀ ଗ୍ରାଣ୍ଟ-ଇନ-ଏଡ୍ ବାବଦରେ ମଂଜୁର ହୋଇଥିବା 56·97 କୋଟି ଟଙ୍କା ରାଜସ୍ୱ ବାବଦ ଆୟ କ୍ଷେତ୍ରରେ ଏକ ଉଲ୍ଲେଖଯୋଗ୍ୟ ଘଟଣା । 1973-74 ମସିହାରେ ଏ ବାବଦରେ 17·37 କୋଟି ଟଙ୍କା ମିଳିଥିବା ସ୍ଥଳେ ଚଳିତ ବର୍ଷ ଗ୍ରାଣ୍ଟ-ଇନ୍-ଏଡ୍‌ର ପରିମାଣ 3 ଗୁଣରୁ ଅଧିକ ହୋଇଛି ।

13. 1974-75 ମସିହା ପାଇଁ ରାଜ୍ୟର କ୍ୟାପିଟାଲ ବଜେଟ୍‌ର ମୋଟ ଆୟ 286·27 କୋଟି ଏବଂ ମୋଟ ବ୍ୟୟ 286·80 କୋଟି ଟଙ୍କା ହେବ ବୋଲି ବ୍ୟବସ୍ଥା ରଖାଯାଇଛି । ଏହାଫଳରେ ଏ ବର୍ଷ ଆର୍ଥିକ ନେଣ ଦେଣ କ୍ଷେତ୍ରରେ 0·53 କୋଟି ଟଙ୍କା ନିଅଣ୍ଟ ପଡ଼ିବ । କେନ୍ଦ୍ର ସରକାରରୁ ମୋଟାମୋଟି ଋଣ ବାବଦରେ 14·30 କୋଟି ଟଙ୍କା, ମୋଟାମୋଟି ଚକ୍ରବୃଦ୍ଧି ଋଣ ବାବଦରେ 2·60 କୋଟି ଟଙ୍କା ଏବଂ ସ୍ୱଳ୍ପ ସଞ୍ଚୟ ସଂଗୃହୀତ ମୋଟ ଅଦାୟ 9·27 କୋଟି ଟଙ୍କା 1974-75 ମସିହା କ୍ୟାପିଟାଲ ଆୟର ଅନ୍ତର୍ଭୁକ୍ତ ଖୁଚୁରା ଦୋକାନମାନଙ୍କ ନିକଟରେ ଜମା ରହିବ ଏବଂ ଅଧିକ ସୁଧରେ ମୋଟା ଋଣ ଯୋଗାଇ ଦେବା ଫଳରେ 1974-75 ମସିହାରେ ରାଜ୍ୟର କ୍ୟାପିଟାଲ ଆକାଉଣ୍ଟରେ 0·33 କୋଟି ଟଙ୍କା କ୍ଷତି ହେବ ।

1974-75 ମସିହାପାଇଁ ରାଜ୍ୟର ମୋଟାମୋଟି ବଜେଟ ବ୍ୟବସ୍ଥା ନିମ୍ନରେ ଦିଆଗଲା:—

| ଆୟ | ବ୍ୟୟ |
| --- | --- |
| 516·33 କୋଟି ଟଙ୍କା | 518·24 କୋଟି ଟଙ୍କା |

ପ୍ରାରମ୍ଭିକ ଜମା ରୂପେ ଥିବା 0·59 କୋଟି ଟଙ୍କା ମୋଟାମୋଟି ସବୁର ନିଅଣ୍ଟ ପଡ଼ୁଥିବା 1·91 କୋଟି ଟଙ୍କାର କିଛି ଅଂଶ ଭରଣା କରି ପାରିବ ଏବଂ ବର୍ଷ ଶେଷରେ ମୋଟ ନିଅଣ୍ଟର ପରିମାଣ 1·32 କୋଟି ଟଙ୍କା ହେବାର ସମ୍ଭାବନା ରହିଛି । ଏହି ବଜେଟ ଉପସ୍ଥାପିତ ହେବା ପରେ ରାଜ୍ୟର ଋଣ ପରିମାଣ 664·88 କୋଟି ଟଙ୍କାକୁ ବୃଦ୍ଧି ପାଇବ । ଏଥି ସହିତ ସନ୍ନିବିଷ୍ଟ ବିବରଣୀରେ ରାଜ୍ୟର ଋଣ ପରିସ୍ଥିତିର ସୂଚନା ଦିଆଯାଇଛି ।

14. 1974-75 ମସିହାରେ ରାଜ୍ୟ ଯୋଜନାପାଇଁ ବ୍ୟବସ୍ଥା କରାଯାଇଥିବା 59·62 କୋଟି ଟଙ୍କା ମଧ୍ୟରୁ କେଉଁ କେଉଁ କ୍ଷେତ୍ର ନିମନ୍ତେ କେତେ ଟଙ୍କା ବ୍ୟବସ୍ଥା କରାଯାଇଛି, ତା'ର ସୂଚନା ନିମ୍ନରେ ଦିଆଗଲା:—

(ଲକ୍ଷ ଟଙ୍କା ହିସାବରେ)

| | |
|---|---|
| କ୍ଷୁଦ୍ର ଜଳସେଚନ ଯୋଜନା ସମେତ କୃଷି କାର୍ଯ୍ୟକ୍ରମ | 10,85·25 |
| ସମବାୟ, ଗୋଷ୍ଠୀ ଉନ୍ନୟନ | 2,68·00 |
| ବନ୍ୟା ନିୟନ୍ତ୍ରଣ ସମେତ ଜଳସେଚନ | 12,70·00 |
| ଓଡ଼ିଶା ରାଜ୍ୟ ବିଦ୍ୟୁତ୍ ବୋର୍ଡ ବ୍ୟତୀତ ବିଦ୍ୟୁତଶକ୍ତି | 10,90·00 |
| ଶିଳ୍ପ ଓ ଖଣି | 3,10·03 |
| ପର୍ଯ୍ୟଟନ ସମେତ, କିନ୍ତୁ ଓଡ଼ିଶା ରାଜ୍ୟ ପରିବହନ କର୍ପୋରେସନ ବ୍ୟତୀତ ପରିବହନ ଓ ଯୋଗାଯୋଗ । | 4,41·00 |
| ସମାଜ ସେବା | 13,38·13 |
| ବିବିଧ | 1,89·50 |
| ମୋଟ | 59,61·91 ବା 59·62 କୋଟି ଟଙ୍କା |

ସର୍ବନିମ୍ନ ଆବଶ୍ୟକତା ପରିଧି କାର୍ଯ୍ୟକ୍ରମ ସଂପର୍କରେ ମୁଁ ସୂଚନା ଦେଉଅଛି ଏହାକୁ ଯୋଜନାର ମୂଳପିଣ୍ଡ ବୋଲି କୁହାଯାଇପାରେ ।

## କୃଷି

15. କୃଷି ଓ ଆନୁଷଙ୍ଗିକ କାର୍ଯ୍ୟ ଏ ରାଜ୍ୟର ଅର୍ଥନୀତିକୁ ନିୟନ୍ତ୍ରିତ କରିଥାଏ । ରାଜ୍ୟର ଆୟର ପ୍ରାୟ ଶତକଡ଼ା 60 ଭାଗ କୃଷିରୁ ମିଳିଥାଏ ଏବଂ ଏହାଦ୍ୱାରା ରାଜ୍ୟର ଶ୍ରମଜୀବୀ ଲୋକସଂଖ୍ୟାର ତିନି-ଚତୁର୍ଥାଂଶ ଲୋକଙ୍କର କର୍ମସଂସ୍ଥାନ ହୋଇଥାଏ । ଧାରାବାହିକଭାବେ ବନ୍ୟା, ମରୁଡ଼ି ଓ ବାତ୍ୟା ଆଦିର ପ୍ରକୋପ ଫଳରେ ଫସଲ ହାନି ଘଟିଅଛି । ଏ କ୍ଷେତ୍ରର ଉତ୍ପାଦିକା ଶକ୍ତି ଦେଶର ଅନ୍ୟାନ୍ୟ ବହୁ ଅଞ୍ଚଳର ଉତ୍ପାଦିକା ଶକ୍ତି ତୁଳନାରେ ଅପେକ୍ଷାକୃତ କମ । ଆବଶ୍ୟକତା ତୁଳନାରେ ଜଳସେଚନ

ସୁବିଧାର ଅଭାବ, ଗ୍ରାମ୍ୟ ଋଣ ଯୋଗାଣ ବ୍ୟବସ୍ଥାର ଅଭାବ, ସ୍ୱଳ୍ପଜମିଗୁଡ଼ିକ ଖଣ୍ଡ ଖଣ୍ଡ ହୋଇଯିବା ଏବଂ କୃଷିକାର୍ଯ୍ୟ ପାଇଁ ଆବଶ୍ୟକୀୟ ସାମଗ୍ରୀ ଆଦିର ଅଭାବ ଏହାର କାରଣ । ଅଧିକ ଜମିରେ ବହୁ ଫସଲ ପ୍ରବର୍ତ୍ତନ କରି, ଅଧିକ ଅମଳକ୍ଷମ ଫସଲ ବୃଦ୍ଧି କରି, ଅଧିକ ଜମିରେ ଚାଷ ଆରମ୍ଭ କରି, ସାର, ବିହନ, ଶସ୍ୟ ସଂରକ୍ଷଣ ସାମଗ୍ରୀ ଇତ୍ୟାଦି ଅତ୍ୟାବଶ୍ୟକ କୃଷି ସାମଗ୍ରୀ ଯୋଗାଇ, ଜଳସେଚନ ଓ ଆନୁଷ୍ଠାନିକ ସୂତ୍ରରୁ ଉତ୍ପାଦନ ନିମନ୍ତେ ଋଣର ବ୍ୟବସ୍ଥା କରି ଏବଂ ଆଧୁନିକ କୃଷି-ପ୍ରଣାଳୀକୁ ଜନପ୍ରିୟ କରାଇ ସରକାର କୃଷି ଉତ୍ପାଦନ ଓ ଉନ୍ନୟନ ପ୍ରତି ସର୍ବାଧିକ ଗୁରୁତ୍ୱ ଆରୋପ କରୁଛନ୍ତି । ଚତୁର୍ଥ ଯୋଜନା କାଳରେ ଖାଦ୍ୟଶସ୍ୟ ଉତ୍ପାଦନର ଲକ୍ଷ୍ୟ 54 ଲକ୍ଷ ଟନ୍ ରହିଥିବା ସ୍ଥଳେ ଚଳିତ ବର୍ଷର ଲକ୍ଷ୍ୟ 57 ଲକ୍ଷ ଟନ୍‌କୁ ଧାର୍ଯ୍ୟ କରାଯାଇଛି । ପୂର୍ବ ବର୍ଷର ଲକ୍ଷ୍ୟ ଯେଉଁ ପରିମାଣରେ ହାସଲ କରାଯାଇ ପାରିବ ବୋଲି ଆଶା କରାଯାଉଛି, ଚଳିତ ବର୍ଷପାଇଁ ତୈଳବୀଜ, ଆଖୁ (ଗୁଡ଼), ଝୋଟ ଇତ୍ୟାଦି ଉତ୍ପାଦନ କ୍ଷେତ୍ରରେ ତାହା ଅପେକ୍ଷା ଅଧିକତର ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । 1973-74 ମସିହାରେ 7·42 ଲକ୍ଷ ହେକ୍‌ଟର ଜମିରେ ଅଧିକ ଅମଳକ୍ଷମ ଫସଲ କରାଯାଇଥିବା ସ୍ଥଳେ ଚଳିତ ବର୍ଷ 9·36 ଲକ୍ଷ ହେକ୍‌ଟର ଜମିରେ ଏହି ଫସଲ କରିବା ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ସମବାୟ ସଂସ୍ଥାଗୁଡ଼ିକ ଜରିଆରେ ଖୁଚୁରା ଦୋକାନମାନଙ୍କରୁ ସାର ବଣ୍ଟନ କରାଯିବ । ସମବାୟ ସଂସ୍ଥାଗୁଡ଼ିକୁ ଏ ଦିଗରେ ସେମାନଙ୍କର ଦାୟିତ୍ୱ ତୁଲାଇବା ନିମନ୍ତେ ଦୁଇ କୋଟି ଟଙ୍କା ଦିଆଯାଇଛି । କ୍ଷୁଦ୍ର ଚାଷୀ ଏବଂ ଦୁର୍ବଳତର ଶ୍ରେଣୀର କୃଷିଜୀବୀମାନଙ୍କ ସୁବିଧାପାଇଁ ସମବାୟ ଋଣ ବ୍ୟବସ୍ଥା ତଥା ତତ୍‌ସଂପୃକ୍ତ ଅର୍ଥବିନିଯୋଗ ଗାଢ଼ କ୍ଷେତ୍ରରେ ଉତ୍ପାଦନ ବୃଦ୍ଧିକୁ ସାହାଯ୍ୟ କଲା ଭଳି ଋଣ ଯୋଗାଇବା ଉପରେ ଗୁରୁତ୍ୱ ଦିଆଯାଇଛି । ଉନ୍ନତ କିସମର ବିହନ ବଣ୍ଟନ କରିବାପାଇଁ ଏକ ବଡ଼ ଧରଣର କାର୍ଯ୍ୟକ୍ରମ ପ୍ରସ୍ତୁତ କରାଯାଇଛି ଏବଂ ଏଥିପାଇଁ ଏକ କୋଟି ଟଙ୍କାର ବ୍ୟବସ୍ଥା ରଖାଯାଇଛି । ବଲାଙ୍ଗୀର, କଟକ, ଢେଙ୍କାନାଳ, ଗଞ୍ଜାମ ଓ କେନ୍ଦୁଝର ଜିଲ୍ଲାମାନଙ୍କରେ କ୍ଷୁଦ୍ର ଚାଷୀ ଉନ୍ନୟନ ସଂସ୍ଥା ଏବଂ ଅତି କ୍ଷୁଦ୍ର ଚାଷୀ ଓ କୃଷି ଶ୍ରମିକ ସଂସ୍ଥାଗୁଡ଼ିକ କାର୍ଯ୍ୟ କରୁଛନ୍ତି । ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳରେ ଛୋଟ ଛୋଟ ଚାଷୀମାନଙ୍କ ମଧ୍ୟରେ ଉନ୍ନତ କୃଷି-ପ୍ରଣାଳୀ ପ୍ରବର୍ତ୍ତନ କରିବା ଏବଂ ସେମାନଙ୍କୁ ଜଳସେଚନ, ଗୌଣ ଜୀବିକା ଓ ଫସଲ ଇତ୍ୟାଦି ଯୋଗାଇ ଦେବା ହେଉଛି ଏହି ପରିକଳ୍ପନାଗୁଡ଼ିକର ଲକ୍ଷ୍ୟ । ଏ ପର୍ଯ୍ୟନ୍ତ ଏହି ପରିକଳ୍ପନାରେ 3 କୋଟି ଟଙ୍କା ଖର୍ଚ୍ଚ କରାଯାଇଛି ଏବଂ ଏହାଦ୍ୱାରା 76,000 ରୁ ଅଧିକ ଛୋଟ ଛୋଟ ଚାଷୀ ଉପକୃତ ହୋଇଛନ୍ତି । ଏହିଭଳି ଆଉ ଦୁଇଟି ସଂସ୍ଥା ପୁରୀ ଓ ସମ୍ବଲପୁର ଜିଲ୍ଲାରେ ଆରମ୍ଭ କରାଯିବାର ପ୍ରସ୍ତାବ ରହିଛି । କଳାହାଣ୍ଡି ଓ ଫୁଲବାଣୀ ଜିଲ୍ଲାରେ ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳ କାର୍ଯ୍ୟକ୍ରମ ବ୍ଲକ୍

ରହିଛି । ଚତୁର୍ଥ ଯୋଜନା କାଳରେ ଏହି ଦୁଇଟି ଜିଲ୍ଲାପାଇଁ କେନ୍ଦ୍ର ସରକାରଙ୍କ ପକ୍ଷରୁ 3·11 କୋଟି ଟଙ୍କା ଯୋଗାଇ ଦିଆଯାଇଛି । ପଞ୍ଚମ ଯୋଜନା କାଳରେ କଳାହାଣ୍ଡି ଓ ଫୁଲବାଣୀ ଜିଲ୍ଲାପାଇଁ ଭାରତ ସରକାର 205 କୋଟି ଟଙ୍କା ଯୋଗାଇ ଦେବାର ପ୍ରସ୍ତାବ ରହିଛି । ଏ ବର୍ଷ ମାଧ୍ୟମିକ ବିଦ୍ୟାଳୟଗୁଡ଼ିକରେ କୃଷି ସଂପର୍କୀୟ ପାଠ୍ୟକ୍ରମର ଏକ ନୂଆ ପରିକଳ୍ପନା ପ୍ରବର୍ତ୍ତନ କରିବାର ପ୍ରସ୍ତାବ ରହିଛି । ଛାତ୍ରମାନଙ୍କୁ କୃଷି ସଂପର୍କୀୟ ଶିକ୍ଷା ଦେବା ଏହି ପରିକଳ୍ପନାର ଲକ୍ଷ୍ୟ । ଏହାଫଳରେ ଛାତ୍ରମାନେ ପରବର୍ତ୍ତୀ କାଳରେ ନିଜ ନିଜକୁ କୃଷିକ୍ଷେତ୍ରରେ ନିୟୋଜିତ କରି ପ୍ରଗତିଶୀଳ କୃଷକରେ ପରିଣତ ହୋଇ ପାରିବେ । କଦଳୀ, କାଜୁବାଦାମ, ସପୁରି, ପଣସ ଓ ନଡ଼ିଆ ଗଛ ଇତ୍ୟାଦି ଫଳମୂଳ ଓ ପନିପରିବା ଚାଷର ବ୍ୟାପକ ପ୍ରସାର କରିବା କୃଷି କାର୍ଯ୍ୟକ୍ରମର ଏକ ନୂତନ ବୈଶିଷ୍ଟ୍ୟ । ଟୋକ ଚାଷର ବିକାଶକୁ ବ୍ୟାପକତର କରିବାକୁ ହେବ ଓ ସେଥିପାଇଁ କେନ୍ଦ୍ରୀୟ ଯୋଜନା ଅନୁଯାୟୀ 20 ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି । ରାଜ୍ୟର ଭୂ-ତଳ ଜଳସଂପଦର ବିକାଶ ନିମନ୍ତେ କେନ୍ଦ୍ରୀୟ ସମବାୟ ଭୂ-ବନ୍ଧକ ବ୍ୟାଙ୍କ ଆବଶ୍ୟକୀୟ ଋଣ ଯୋଗାଇଦେବା ପାଇଁ ଏକ ବଡ଼ ଧରଣର ପରିକଳ୍ପନା ହାତକୁ ନେଇଛନ୍ତି । ଚଳିତ ବର୍ଷ ନିମନ୍ତେ ସମବାୟ ଋଣ ବ୍ୟବସ୍ଥାରେ ସ୍ୱଳ୍ପ ଓ ମଧ୍ୟମ ମିଆଦୀ ଋଣ ପରିକଳ୍ପନା ଅନୁଯାୟୀ 20 କୋଟି ଟଙ୍କା ବିନିଯୋଗ କରିବାର ଲକ୍ଷ୍ୟ ରଖାଯାଇଛି । ଯେଉଁ ଯେଉଁ ସ୍ଥାନଗୁଡ଼ିକରେ ସମବାୟ ଆନ୍ଦୋଳନ ବିଶେଷ ଦୁର୍ବଳ ହୋଇ ରହିଛି ସେହିସବୁ ସ୍ଥାନମାନଙ୍କରେ କୃଷକ ସେବା ସମିତି ପ୍ରତିଷ୍ଠା କରିବାର ପ୍ରସ୍ତାବ ରହିଛି । କୋରାପୁଟ ଜିଲାର ରାୟଗଡ଼ା ସବ୍‌ଡିଭିଜନରେ ଏହି ସମିତି ଖୋଲାଗଲେ ଷ୍ଟେଟ୍ ବ୍ୟାଙ୍କ ଏହି ସମିତିକୁ ଆର୍ଥିକ ସାହାଯ୍ୟ ଯୋଗାଇ ଦେବେ ବୋଲି ରାଜି ହୋଇଛନ୍ତି । 1973-74 ମସିହାରେ କୃଷି ନିମନ୍ତେ 6·81 କୋଟି ଟଙ୍କା ରଖାଯାଇଥିବା ସ୍ଥଳେ ଚଳିତବର୍ଷ ବଜେଟରେ ଏଥି ନିମନ୍ତେ 8·45 କୋଟି ଟଙ୍କାର ବ୍ୟବସ୍ଥା କରାଯାଇଛି ।

## ଜଳସେଚନ

16. ଅଧିକ କୃଷି ଉତ୍ପାଦନ ନିମନ୍ତେ ଜଳସେଚନ ବ୍ୟବସ୍ଥାର ସଂପ୍ରସାରଣ ବିଶେଷ ଉଲ୍ଲେଖଯୋଗ୍ୟ । ବୃହତ୍ ଓ ମଧ୍ୟମ ଧରଣର ଜଳସେଚନ ପରିକଳ୍ପନାଗୁଡ଼ିକ ସାହାଯ୍ୟରେ ଅଦ୍ୟାବଧି ସୃଷ୍ଟି କରାଯାଇଥିବା ସମବର୍ଦ୍ଧିଷ୍ଣୁ ଜଳସେଚନ ସୁବିଧାସୁଯୋଗ ମାଧ୍ୟମରେ ପ୍ରାୟ 8·70 ଲକ୍ଷ ହେକ୍ଟର ଚାଷଜମିକୁ ଜଳସେଚିତ କରାଯାଇପାରିବ । ତ୍ରିକୋଣଭୂମି ଜଳସେଚନ ପରିକଳ୍ପନା ସମେତ କାର୍ଯ୍ୟକାରୀ ହେଉଥିବା ଜଳସେଚନ

ପରିକଳ୍ପନା, ରାଜ୍ୟର ଯେଉଁସବୁ ଅନୁନ୍ନତ ଜିଲ୍ଲାରେ ଜଳସେଚନର ସୁବିଧା ସୁଯୋଗ ନାହିଁ ସେ ଜିଲ୍ଲାମାନଙ୍କରେ ନୂତନ ପରିକଳ୍ପନା ଆରମ୍ଭ କରିବା ଏବଂ ଜଳସେଚନ ସୁବିଧା ସୁଯୋଗର ସଂପ୍ରସାରଣ କରିବା ଉଦ୍ଦେଶ୍ୟରେ ବିଭିନ୍ନ ଜିଲ୍ଲାରେ ନୂତନ ପରିକଳ୍ପନା କାର୍ଯ୍ୟକାରୀ କରିବା ସଂପର୍କରେ ଅନୁସନ୍ଧାନ ଚଳାଇବା ଉପରେ ବିଶେଷ ଗୁରୁତ୍ୱଦେବା ପଞ୍ଚମ ପଞ୍ଚବାର୍ଷିକ ଯୋଜନାର ପ୍ରଧାନ ଲକ୍ଷ୍ୟ । ପଞ୍ଚମ ଯୋଜନାର ପ୍ରଥମ ବର୍ଷ ମଧ୍ୟରେ 4 ଗୋଟି ବୃହତ୍ ଧରଣର ଜଳସେଚନ ପରିକଳ୍ପନା ଓ 19ଟି ମଧ୍ୟମ ଧରଣର ଜଳସେଚନ ପରିକଳ୍ପନା କାର୍ଯ୍ୟକାରୀ ହେବା ସଙ୍ଗେ ସଙ୍ଗେ ଗଞ୍ଜାମ, କେନ୍ଦୁଝର, ମୟୂରଭଞ୍ଜ, ଫୁଲବାଣୀ ଓ ସମ୍ବଲପୁର ଜିଲ୍ଲାରେ 6 ଗୋଟି ନୂଆ ମଧ୍ୟମ ଧରଣର ଜଳସେଚନ ପରିକଳ୍ପନା ଆରମ୍ଭ କରାଯିବ । ଚତୁର୍ଥ ପଞ୍ଚବାର୍ଷିକ ଯୋଜନାର ପ୍ରଥମ ଚାରି ବର୍ଷ ମଧ୍ୟରେ କ୍ଷୁଦ୍ର ଜଳସେଚନ ପରିକଳ୍ପନା ବାବଦରେ 9,44·41 ଲକ୍ଷ ଟଙ୍କା ବିନିଯୋଗ କରାଯାଇଥିଲା ଓ ଉକ୍ତ ପରିକଳ୍ପନା ସାହାଯ୍ୟରେ 24,140 ହେକ୍ଟର କୃଷିଜମିପାଇଁ ଜଳସେଚନର ସୁବିଧା ସୁଯୋଗ ଯୋଗାଇ ଦିଆଯାଇଥିଲା । 1973-74 ମସିହା ମଧ୍ୟରେ 644 ଲକ୍ଷ ଟଙ୍କା ବ୍ୟୟରେ କ୍ଷୁଦ୍ର ଜଳସେଚନ ପରିକଳ୍ପନାର ଆୟୁକଟ ଦ୍ୱାରା 35,800 ହେକ୍ଟର କୃଷିଜମିପାଇଁ ଜଳସେଚନର ସୁବିଧା ସୁଯୋଗ ଯୋଗାଇ ଦିଆଯାଇଥିବାର ଆଶା କରାଯାଉଛି । ପଞ୍ଚମ ଯୋଜନାରେ 17 କୋଟି ଟଙ୍କା ବ୍ୟୟରେ କ୍ଷୁଦ୍ର ଜଳସେଚନ ପରିକଳ୍ପନାର ଆୟୁକଟ ଦ୍ୱାରା ଆହୁରି 45 ହଜାର ହେକ୍ଟର କୃଷିଜମିକୁ ଜଳ ସେଚନର ସୁବିଧା ସୁଯୋଗ ଯୋଗାଇ ଦେବାର ପ୍ରସ୍ତାବ ରହିଛି । ଚଳିତ ବର୍ଷ ନିମନ୍ତେ 8,000 ହେକ୍ଟର କୃଷିଜମିକୁ ଜଳସେଚନର ସୁବିଧା ସୁଯୋଗ ଯୋଗାଇଦେବା ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ଓ ସେଥିପାଇଁ 197 ଲକ୍ଷ ଟଙ୍କା ଖର୍ଚ୍ଚ କରାଯିବା ନିମନ୍ତେ ପ୍ରସ୍ତାବ ରହିଛି । ଅର୍ଥ ଲଗାଣକାରୀ ସଂସ୍ଥାଗୁଡ଼ିକର ସାହାଯ୍ୟରେ କାର୍ଯ୍ୟକାରୀ ହେଉଥିବା ପରିକଳ୍ପନାଗୁଡ଼ିକୁ ଶେଷ କରିବା ନିମନ୍ତେ ଏବଂ ନୂତନ ପରିକଳ୍ପନା ଆରମ୍ଭ କରିବା ସକାଶେ 1973 ମସିହା ଅକ୍ଟୋବର ମାସ 1 ତାରିଖଠାରୁ ଉଠା ଜଳସେଚନ କର୍ପୋରେସନ୍ ଗଠନ କରାଯାଇଛି । ଚଳିତ ବର୍ଷ 1,173ଟି ନୂତନ ପରିକଳ୍ପନା କାର୍ଯ୍ୟକାରୀ କରି 94 ହଜାର ଏକର କୃଷିଜମିକୁ ଜଳସେଚନର ସୁବିଧା ସୁଯୋଗ ଯୋଗାଇଦେବା ସକାଶେ କୃଷି ଫାଇନାନ୍ସ କର୍ପୋରେସନଠାରୁ 30 କୋଟି ଟଙ୍କା ଋଣ ଆକାରରେ ଆର୍ଥିକ ସାହାଯ୍ୟ ପାଇବା ପାଇଁ ଉଠା ଜଳସେଚନ କର୍ପୋରେସନ ଆଶା କରୁଛି । ଗତ ଦୁଇ ବର୍ଷ ମଧ୍ୟରେ ବିଭିନ୍ନ ଅର୍ଥ ଲଗାଣକାରୀ ସଂସ୍ଥାମାନଙ୍କର ଅର୍ଥ ସାହାଯ୍ୟରେ 6 ହଜାରରୁ ଅଧିକ କୂଅ ଖୋଳା ଯାଇଛି । ଚଳିତ ବର୍ଷ 8 କୋଟି ଟଙ୍କାର ଆନୁଷ୍ଠାନିକ ଋଣ ନେଇ 20 ହଜାର କୂଅ ଖୋଳାଯିବାର ପ୍ରସ୍ତାବ ବ୍ୟବସାୟିକ ବ୍ୟାଙ୍କଗୁଡ଼ିକ ବିଚାରାଧୀନ ରହିଛି ।

## ମୃତ୍ତିକା ସଂରକ୍ଷଣ

17. ରାଜ୍ୟର 9ଟି ପାହାଡ଼ିଆ ଜିଲ୍ଲାରେ ମୃତ୍ତିକାକ୍ଷୟ ହେଉଛି ଏକ ଜଟିଳ ସମସ୍ୟା । ଅଦ୍ୟାବଧି 55 ହଜାର ହେକ୍ଟର ଜମିରେ 280 କିଲୋମିଟର ଦୀର୍ଘ ଡ଼ାଇଭର୍ସନ ଷ୍ଟେନେଲ୍ ସଂମେତ ଆଢ଼ିବନ୍ଧର ବ୍ୟବସ୍ଥା କରାଯାଇଛି ଏବଂ ପ୍ରାୟ 36 ହଜାର ହେକ୍ଟର ଜମି ଚାଷୋପଯୋଗୀ ହୋଇପାରିଛି । ବ୍ୟାପକ ମୃତ୍ତିକା ସଂରକ୍ଷଣ ବ୍ୟବସ୍ଥା ଅନୁଯାୟୀ ବିଭିନ୍ନ ଜଳ-ବିଭାଜିକା ତଥା ଅନ୍ୟାନ୍ୟ ଅଞ୍ଚଳରେ 30,800 ହେକ୍ଟର ଜମିକୁ ଚାଷୋପଯୋଗୀ କରିବା ପ୍ରକାରେ ଚଳିତବର୍ଷ ନିମନ୍ତେ କାର୍ଯ୍ୟକ୍ରମ ରଖାଯାଇଛି ।

## ଭୂ-ସଂସ୍କାର

18. ଭୂ-ସଂସ୍କାର ବ୍ୟବସ୍ଥାଗୁଡ଼ିକର ଲକ୍ଷ ହେଉଛି ବୃହତ୍ତର ସାମାଜିକ ନ୍ୟାୟ ପ୍ରତିଷ୍ଠା ଏବଂ ଅଧିକ କୃଷି ଉତ୍ପାଦନ । 1973 ମସିହାର ଓଡ଼ିଶା ଭୂ-ସଂସ୍କାର (ସଂଶୋଧନ) ଆଇନ 1973 ଅକ୍ଟୋବର 2 ତାରିଖଠାରୁ କାର୍ଯ୍ୟକାରୀ କରାଯାଇଛି । ଜମିର ସର୍ବୋଚ୍ଚ ସୀମା ହ୍ରାସ କରିବା ଓ ସରକାରଙ୍କର ହାତକୁ ଆସୁଥିବା ଉଦ୍‌ବୃତ୍ତ ଜମି ସମାଜର ଦୁର୍ବଳ ଶ୍ରେଣୀର ଲୋକଙ୍କ ମଧ୍ୟରେ ବଣ୍ଟନ କରିବାପାଇଁ ଏହି ଆଇନରେ ବ୍ୟବସ୍ଥା ରହିଛି । 1974 ମସିହା ଓଡ଼ିଶା ଭୂ-ସଂସ୍କାର (ସଂଶୋଧନ) ଅର୍ଡ଼ିନାନ୍‌ସ ଅନୁଯାୟୀ ସମ୍ପ୍ରତି ଉକ୍ତ ଆଇନକୁ ସଂଶୋଧନ କରାଯାଇଅଛି । ଉକ୍ତ ସଂଶୋଧିତ ଆଇନର ବ୍ୟବସ୍ଥାଗୁଡ଼ିକୁ ସ୍ପଷ୍ଟ ଓ ସନ୍ଦେହ ମୁକ୍ତ କରିବା ନିମନ୍ତେ 1974 ମସିହା ଅପ୍ରେଲ ମାସ 13 ତାରିଖଠାରୁ ଏହି ଅର୍ଡ଼ିନାନ୍‌ସ ପ୍ରବର୍ତ୍ତନ କରାଯାଇଛି । ଭୂ-ସଂସ୍କାର ବ୍ୟବସ୍ଥାଗୁଡ଼ିକୁ ଶୀଘ୍ର କାର୍ଯ୍ୟକାରୀ କରିବା ନିମନ୍ତେ ପଦକ୍ଷେପ ନିଆଯାଇଛି । ଚକବନ୍ଦୀ ଅଛି ଏକ ଗୁରୁତ୍ୱପୂର୍ଣ୍ଣ କୃଷି ସଂସ୍କାର । ରାଜ୍ୟର ଯେଉଁ ଅଞ୍ଚଳରେ ଚାଷ ଜମି ବିଶେଷଭାବେ ଟୁକୁରା ଟୁକୁରା ହୋଇଛି, କେବଳ ସେହିକେତେକ ବଛା ବଛା ଅଞ୍ଚଳରେ ଚକବନ୍ଦୀ କାର୍ଯ୍ୟ ହାତକୁ ନିଆଯାଇଛି । 1972 ମସିହାର ଓଡ଼ିଶା ଚକବନ୍ଦୀ ଜମି ବିଭକ୍ତିକରଣ ନିରୋଧ ଆଇନର 3(1) ଧାରା ଅନୁସାରେ କଟକ, ପୁରୀ, ବାଲେଶ୍ୱର, ମୟୂରଭଞ୍ଜ, ଢେଙ୍କାନାଳ ଓ ଗଞ୍ଜାମ ଜିଲ୍ଲାର 10ଟି ଥାନା ଅନ୍ତର୍ଗତ 1,293ଟି ଗ୍ରାମ ସମ୍ପର୍କରେ ଆଇନ୍ ଅନୁଯାୟୀ ବିଜ୍ଞପ୍ତି ପ୍ରକାଶ କରାଯାଇଛି । ଉକ୍ତ ପରିକଳ୍ପନାକୁ କାର୍ଯ୍ୟକାରୀ କରିବା ନିମନ୍ତେ ଯୋଜନା ଅଧୀନରେ 48 ଲକ୍ଷ ଟଙ୍କା ଓ ଅଣ-ଯୋଜନା ଅଧୀନରେ 35 ଲକ୍ଷ ଟଙ୍କା ସମେତ ସର୍ବମୋଟ 83 ଲକ୍ଷ ଟଙ୍କାର ବ୍ୟୟ ବରାଦ କରାଯାଇଛି ।

## ପଶୁପାଳନ ଓ ମତ୍ସ୍ୟ ଚାଷ

19. ପଞ୍ଚମ ଯୋଜନାରେ ପଶୁପାଳନ କାର୍ଯ୍ୟକ୍ରମ ଅନୁଯାୟୀ ପଶୁପାଳନ, ଡେଆରି ଓ କୁକ୍କୁଡ଼ା ପାଳନର ପ୍ରସାର ଉପରେ ଅଧିକ ଗୁରୁତ୍ୱ ଦିଆଯାଉଛି । ଚତୁର୍ଥ ଯୋଜନାରେ ଏଥି ନିମନ୍ତେ 440 ଲକ୍ଷ ଟଙ୍କାର ବ୍ୟୟ ବରାଦ ରଖାଯାଇଥିବା ସ୍ଥଳେ ପଞ୍ଚମ ଯୋଜନାରେ 568 ଲକ୍ଷ ଟଙ୍କା ରଖା ଯାଉଛି । ଚଳିତ ବର୍ଷର ଯୋଜନାରେ ଏ ବାବଦରେ 70 ଲକ୍ଷ ଟଙ୍କା ଧାର୍ଯ୍ୟ କରାଯାଇଛି । ବିଭିନ୍ନ ଜିଲ୍ଲାରେ ଦୁଗ୍ଧ ଯୋଗାଣ ପରିକଳ୍ପନାମାନ କାର୍ଯ୍ୟକାରୀ ହେଉଛି ଏବଂ ଚଳିତ ବର୍ଷ ପାରାଦ୍ୱୀପ, ଅନୁଗୋଳ, ପୁରୀ ଓ ରାଜପୁର-ଗେଡ଼ ପ୍ରଭୃତି ସ୍ଥାନରେ ଏହି ପରିକଳ୍ପନା ସମ୍ପ୍ରସାରିତ କରିବାପାଇଁ ପ୍ରସ୍ତାବ ରହିଛି । ସ୍ୱଳ୍ପ ମୂଲ୍ୟରେ ବହନ ଯୋଗାଇ ଦେଇ ଉନ୍ନତ ପଶୁ ଖାଦ୍ୟ ଚାଷ କରିବା ନିମନ୍ତେ ପ୍ରୋତ୍ସାହିତ କରାଯାଉଛି । ପଞ୍ଚମ ଯୋଜନାରେ ରୋଗ ଶାନ୍ତି ଆଦି ପଶୁମାନଙ୍କ ସ୍ୱାସ୍ଥ୍ୟର ସୁରକ୍ଷା ଉପରେ ବିଶେଷ ଧ୍ୟାନ ଦିଆଯିବ ।

ମତ୍ସ୍ୟ ଉତ୍ପାଦନ ବୃଦ୍ଧି ସଙ୍ଗେ ସଙ୍ଗେ ମତ୍ସ୍ୟଜୀବୀମାନଙ୍କର ସାମାଜିକ ତଥା ଅର୍ଥନୈତିକ ଅବସ୍ଥାର ବିକାଶ ନିମନ୍ତେ ମତ୍ସ୍ୟ ଚାଷ ସର୍ବକାଳୀୟ ଯୋଜନା କାର୍ଯ୍ୟକ୍ରମରେ ଲକ୍ଷ୍ୟ ରଖାଯାଇଛି । ମଧୁର ମାଛ ଚାଷ ନିମନ୍ତେ ପୂର୍ବ ଯୋଜନାଗୁଡ଼ିକରେ ବହୁସଂଖ୍ୟକ ମାଛ ଚାଷ ଫାର୍ମ ନିର୍ମାଣ କରାଯାଇଥିଲା । କିନ୍ତୁ ଫାର୍ମ ବନ୍ଧଗୁଡ଼ାଗୁଡ଼ିକ ବସିଯିବାରୁ ଓ ସେଗୁଡ଼ିକ ପୋତି ହୋଇଯିବାରୁ ଉକ୍ତ ଫାର୍ମଗୁଡ଼ିକ ଅକାମୀ ହୋଇ ପଡ଼ିଲା । ଚଳିତ ବର୍ଷ 4·62 ଲକ୍ଷ ଟଙ୍କା ବ୍ୟୟରେ ବଲାଙ୍ଗୀର ଜିଲ୍ଲାର ସୋନପୁରସ୍ଥିତ ମାଛ ଚାଷ ଫାର୍ମର ଉନ୍ନତି ବିଧାନ କରାଯିବ । ଆଦିବାସୀ ଉନ୍ନୟନ ସଂସ୍ଥା କାର୍ଯ୍ୟକ୍ରମ ଅନୁଯାୟୀ କୋରାପୁଟ ଜିଲ୍ଲାର ଦଣ୍ଡକାରଣ୍ୟରେ 22·73 ଏକର ପାଟ ଜମିକୁ ଆବାଦ କରାଯାଇଥିଲା । ସେଗୁଡ଼ିକରେ ମାଛ ଚାଷ କରାଗଲେ ସ୍ଥାନୀୟ ଆଦିବାସୀ ପରିବାରଗୁଡ଼ିକର ଅର୍ଥନୈତିକ ଅବସ୍ଥାର ବିକାଶ ଉଦ୍ଦେଶ୍ୟରେ ସାହାଯ୍ୟ କରିବ । କିନ୍ତୁ ମାଛ ଧରିବାପାଇଁ 49ଟି ଯନ୍ତ୍ରଚାଳିତ କାଠ ଡଙ୍ଗା ବ୍ୟବହୃତ ହେଉଛି । ଏ ବର୍ଷ ଆଉ 6 ଟି ମାଛଧରା ଡ଼ଙ୍ଗା ତିଆରି ହେଉଛି । ବାଲେଶ୍ୱର ଜିଲ୍ଲାର ଚାନ୍ଦିପୁର, ଅଠରଆଁ, କୀର୍ତ୍ତିନିଆ, କଟକ ଜିଲ୍ଲାର ହଁସୁଆ, ପୁରୀ ଜିଲ୍ଲାର ଅସ୍ତରଙ୍ଗ ଓ ଗଞ୍ଜାମ ଜିଲ୍ଲାର ଋଷିକୁଲ୍ୟା ନଦୀ ମୁହାଣ ଆଦି ସ୍ଥାନଗୁଡ଼ିକରେ ମାଛ ଧରିବାପାଇଁ ଜେଟି ଓ ସ୍ଲିପୱେ ନିର୍ମାଣ ନିମନ୍ତେ ବଜେଟରେ 10 ଲକ୍ଷ ଟଙ୍କାର ବ୍ୟୟ ବରାଦ କରାଯାଇଛି । ଏହା ସମ୍ପୂର୍ଣ୍ଣଭାବେ କେନ୍ଦ୍ର ସରକାରଙ୍କ ସହାୟତାରେ କାର୍ଯ୍ୟକାରୀ କରାଯିବ । ଭାରତ ସରକାର ପାରାଦ୍ୱୀପଠାରେ ସମୁଦ୍ର ଉପକୂଳରେ ଏକ ମାଛ ଧରିବା କେନ୍ଦ୍ର ସ୍ଥାପନ କରିଛନ୍ତି । ବୈଷୟିକ କର୍ମଚାରୀଙ୍କ ଚାହିଦା ପୂରଣ ନିମନ୍ତେ

ମତ୍ସ୍ୟ ବିଭାଗର ଅଫିସର ତଥା ଶିକ୍ଷାର୍ଥୀମାନଙ୍କୁ ତାଲିମ ଦିଆଯାଉଛି । ଚଳିତ ବର୍ଷ ମଧ୍ୟରେ ମାତ୍ର ଏଥି ନିମନ୍ତେ ସମ୍ବଲପୁର ଓ ଜୟପୁରଠାରେ ଦୁଇଟି ତାଲିମ କେନ୍ଦ୍ର ସ୍ଥାପନ କରାଯାଇଛି । ଚଳିତ ବର୍ଷର ଯୋଜନାରେ ଏଥିନିମନ୍ତେ 43·25 ଲକ୍ଷ ଟଙ୍କାର ବ୍ୟୟ ବରାଦ କରାଯାଇଛି ।

## ଜଙ୍ଗଲ

20. ଜଙ୍ଗଲ ଉନ୍ନୟନ କ୍ଷେତ୍ରରେ ପଞ୍ଚମ ଯୋଜନାରେ ଜଙ୍ଗଲଗୁଡ଼ିକର ଏକୀକରଣ ଓ ବୈଜ୍ଞାନିକ ପ୍ରଣାଳୀରେ ସେଗୁଡ଼ିକର ପରିଚାଳନା, ଅନାବାଦ ଜମିର ବନୀକରଣ ଆବଶ୍ୟକତା ଅନୁଯାୟୀ ମୂଲ୍ୟବାନ ଗଛ ନ ଥିବା ଜଙ୍ଗଲରେ ମୂଲ୍ୟବାନ ଗଛ ଲଗାଇ ଜଙ୍ଗଲଗୁଡ଼ିକର ଅଭିବୃଦ୍ଧି ଘଟାଇବା, ଜଙ୍ଗଲଗୁଡ଼ିକର ସଦୁପଯୋଗ ନିମନ୍ତେ ଯାତାୟାତ ବ୍ୟବସ୍ଥାର ଉନ୍ନତି ବିଧାନ ସଙ୍ଗେ ସଙ୍ଗେ ବୃକ୍ଷଲତା ଓ ଜୀବଜନ୍ତୁଗୁଡ଼ିକର ବୈଜ୍ଞାନିକ ଅନୁଧ୍ୟାନପାଇଁ ଜୀବଜନ୍ତୁମାନଙ୍କର ସଂରକ୍ଷଣ ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଛି । ଏ ବାବଦରେ ଚତୁର୍ଥ ଯୋଜନାରେ 3·25 କୋଟି ଟଙ୍କା ରଖାଯାଇଥିବା ସ୍ଥଳେ ପଞ୍ଚମ ଯୋଜନାରେ ଏଥିପାଇଁ ପ୍ରାୟ ଦୁଇଗୁଣ ଅର୍ଥ ବ୍ୟବସ୍ଥା ରଖାଯାଇଛି । ଚଳିତବର୍ଷ ନିମନ୍ତେ ଏ ବାବଦରେ ରାଜ୍ୟସ୍ତରରେ 90 ଲକ୍ଷ ଟଙ୍କା ଓ କେନ୍ଦ୍ରୀୟସ୍ତରରେ 46·50 ଲକ୍ଷ ଟଙ୍କା ରଖାଯାଇଛି । 29·2 ହଜାର ହେକ୍ଟର ଜମିରେ ଶୀଘ୍ର ବଢ଼ୁଥିବା ଏବଂ ଶିଳ୍ପ ଓ ବ୍ୟବସାୟ କ୍ଷେତ୍ରରେ ବ୍ୟବହାର ନିମନ୍ତେ ଲାଭଜନକ ଭିତ୍ତିରେ ବୃକ୍ଷରୋପଣ କରାଯାଇଥିବାସ୍ଥଳେ ଏଥିପାଇଁ ପଞ୍ଚମ ଯୋଜନାରେ 56 ହଜାର ହେକ୍ଟର ଜମିରେ ଏହିପରି ବୃକ୍ଷରୋପଣ ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଏ ଉପରେ ଚଳିତ ବର୍ଷର ଲକ୍ଷ୍ୟ ହେଉଛି 8 ହଜାର ଏକର । କଟକ, ପୁରୀ ଏବଂ ବାଲେଶ୍ୱର ଜିଲ୍ଲାର ଉପକୂଳବର୍ତ୍ତୀ ଅଞ୍ଚଳରେ ଏକ ଆଶ୍ରୟରେଖା ସୃଷ୍ଟି କରି ବାତ୍ୟା ପ୍ରାଦୁର୍ଭାବରୁ ସେ ଅଞ୍ଚଳକୁ ରକ୍ଷା କରିବା ନିମନ୍ତେ ଏହି ଅଞ୍ଚଳରେ ଏକ ବନୀକରଣ ପରିକଳ୍ପନା ହାତକୁ ନିଆଯାଇଛି ଓ 1973 ମସିହା ଡିସେମ୍ବର ମାସ ଶେଷ ସୁଦ୍ଧା 2·739 ଏକର ଜମିରେ ଜଙ୍ଗଲ ସୃଷ୍ଟି ନିମନ୍ତେ ବୃକ୍ଷରୋପଣ କରାଯାଇଛି ।

ରାଜ୍ୟ ସରକାର ବଭରୀପ୍ରସ୍ତୁତିରେ ଓଡ଼ିଶା ଜଙ୍ଗଲ କର୍ପୋରେସନ ସହିତ ମିଳିତ ଉଦ୍ୟମରେ 1973 ମସିହା ଜାନୁଆରି ପହିଲଠାରୁ କେନ୍ଦୁପତ୍ର ବ୍ୟବସାୟ ହାତକୁ ନେଇଛନ୍ତି । ଅଦ୍ୟାବଧି 2·60 ଲକ୍ଷ କୁଇଣ୍ଟାଲ କେନ୍ଦୁପତ୍ର ସାଗ କରାଯାଇ ବସ୍ତାରେ ଭର୍ତ୍ତି କରାଯାଇଛି ଏବଂ ସେଥିମଧ୍ୟରୁ 2·22 ଲକ୍ଷ କୁଇଣ୍ଟାଲ କେନ୍ଦୁପତ୍ର ଓଡ଼ିଶା ଜଙ୍ଗଲ କର୍ପୋରେସନ ବିକ୍ରୟ କରି ସେ ମୋଟ 6 କୋଟି ଟଙ୍କା ପାଇଛନ୍ତି । ସରକାର ଗତବର୍ଷ ଏ ବାବଦରେ ଶୁଳ୍କ ଆକାରରେ 3 କୋଟି ଟଙ୍କା ପାଇଛନ୍ତି । ଉକ୍ତ କର୍ପୋରେସନ ଶ୍ରୀଲଙ୍କାକୁ କେନ୍ଦୁପତ୍ର ରପ୍ତାନି କରି ବୈଦେଶିକ ମୁଦ୍ରା ଅର୍ଜନ କରୁଛି । ବ୍ୟବସାୟିକ

ଭିତ୍ତିରେ ଶାଳ ମଞ୍ଜିରୁ ତେଲ ବାହାର କରିବା ଦିଗରେ ସମଗ୍ର ଦେଶରେ ଆମ ରାଜ୍ୟ ହେଉଛି ପ୍ରଥମ । ଶାଳମଞ୍ଜି ସଂଗ୍ରହ କରିବା ନିମନ୍ତେ ପଟ୍ଟା ଦିଆଯାଇଛି ଓ ଏକ ଲିମିଟେଡ୍ କମ୍ପାନୀ ଦ୍ୱାରା ରାଇରଙ୍ଗପୁରଠାରେ ଶାଳ ମଞ୍ଜିରୁ ତେଲ ନିଷ୍କାସନ ନିମନ୍ତେ ଏକ କାରଖାନା ସ୍ଥାପନ କରାଯାଇଛି । ଓଡ଼ିଶା ଜଙ୍ଗଲ କରପୋରେସନ ଯଥାଶୀଘ୍ର ଏକ ଶାଳ ତେଲ ନିଷ୍କାସନ କାରଖାନା ସ୍ଥାପନ କରିବାପାଇଁ ଯୋଜନା କରୁଛନ୍ତି । ଉକ୍ତ କରପୋରେସନ ଜାପାନକୁ କାଠ ରପ୍ତାନି କରିବାପାଇଁ ମଧ୍ୟ ଚୁକ୍ତିବଦ୍ଧ ହୋଇଛନ୍ତି ।

21. ସମସ୍ତ ବିକାଶ ତଥା ଉନ୍ନୟନ କାର୍ଯ୍ୟକ୍ରମର ମୌଳିକ ଆବଶ୍ୟକତା ହେଉଛି ବିଦ୍ୟୁତ୍ ଶକ୍ତି । ରାଜ୍ୟରେ ବର୍ତ୍ତମାନ ଚାଲିଥିବା ବିଦ୍ୟୁତ୍ ପରିକଳ୍ପନା ରହିଛି ଯେଉଁସବୁର ଉତ୍ପାଦନ କ୍ଷମତା 674 ମେଗାୱାଟ୍ । ଏହାଛଡ଼ା ବାଲିମେଳା ବିଦ୍ୟୁତ୍ ପରିକଳ୍ପନାର ଆଉ ଅଧିକ 3ଟି ୟୁନିଟ୍ ଚଳିତ ଆର୍ଥିକ ବର୍ଷ ମଧ୍ୟରେ କାର୍ଯ୍ୟକାରୀ କରିବାପାଇଁ ସ୍ଥିର କରାଯାଇଛି । ଏହି 3ଟି ୟୁନିଟରୁ 180 ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦିତ ହୋଇପାରିବ । ଏହିଭଳି ଚଳିତ ବର୍ଷ ଶେଷବେଳକୁ ରାଜ୍ୟରେ ବିଦ୍ୟୁତ୍ ଶକ୍ତିର ମୋଟ ଉତ୍ପାଦନ ସାମର୍ଥ୍ୟ 854 ମେଗାୱାଟ୍ ହେବ । ଅଷ୍ଟମ ବାର୍ଷିକ ଇଲେକ୍ଟ୍ରିକ ପାୱାର ସର୍ଭେରୁ ଜଣାଯାଏ ଯେ, ଓଡ଼ିଶାରେ 1974-1975 ବର୍ଷପାଇଁ ସର୍ବୋଚ୍ଚ ବିଦ୍ୟୁତ୍ ଚାହିଦା 597 ମେଗାୱାଟ୍ ହେବ । ଏଥିରୁ ଦେଖାଯିବ ଯେ, ଚଳିତ ବର୍ଷ ମଧ୍ୟରେ ରାଜ୍ୟରେ ବିଦ୍ୟୁତ୍ ଶକ୍ତିର ଅଭାବ ପରିଲକ୍ଷିତ ହେବନାହିଁ । ବାଲିମେଳା—ତାଳଚେର ବିଦ୍ୟୁତ ସରବରାହ ଲାଇନ୍‌ର କାର୍ଯ୍ୟ ସମ୍ପୂର୍ଣ୍ଣ ନ ହୋଇଥିବା ଯୋଗୁଁ ବାଲିମେଳା ବିଦ୍ୟୁତ୍ କେନ୍ଦ୍ରର 160 ମେଗାୱାଟ୍ ଶକ୍ତି ସମ୍ପନ୍ନ ଦୁଇଟି ୟୁନିଟ୍‌ରୁ ଉତ୍ପାଦିତ ବିଦ୍ୟୁତ୍ ଶକ୍ତି ଆନ୍ଧ୍ର ପ୍ରଦେଶକୁ ବିକ୍ରି କରାଯାଉଛି । ଉକ୍ତ ସରବରାହ ଲାଇନ୍‌ର କାର୍ଯ୍ୟ 1974 ଜୁଲାଇ ଶେଷ ବେଳକୁ ସମ୍ପୂର୍ଣ୍ଣ ହେବାର ଧାର୍ଯ୍ୟ କରାଯାଇଛି ଏବଂ ଏହାପରେ ତାଳଚେର-ହୀରାକୁଦ ଗ୍ରିଡପାଇଁ ବାଲିମେଳା ବିଦ୍ୟୁତ୍ କେନ୍ଦ୍ରରୁ ବିଦ୍ୟୁତ୍ ଶକ୍ତି ମିଳି ପାରିବ । 1973-1974 ଶେଷ ସୁଦ୍ଧା 1,007 ପଲ୍ଲୀଗୁଡ଼ିକୁ ମିଶାଇ ସର୍ବମୋଟ 9,637 ଗ୍ରାମକୁ ବିଦ୍ୟୁତ୍ ଶକ୍ତି ଯୋଗାଇ ଦିଆଯାଇଛି । ଆମର ସଙ୍କୁଚିତ ସମ୍ବଳ ସତ୍ତ୍ୱେ ଚଳିତ ବର୍ଷ 2,000 ଗ୍ରାମକୁ ବିଦ୍ୟୁତ ଶକ୍ତି ଯୋଗାଇ ଦେବାର କାର୍ଯ୍ୟକ୍ରମ ରହିଛି । 220 ମେଗାୱାଟ୍ ଶକ୍ତି ସମ୍ପନ୍ନ ତାଳଚେର ତାପଜବିଦ୍ୟୁତ୍ ସମ୍ପ୍ରସାରଣ ପରିକଳ୍ପନାର ଏବଂ 100 ମେଗାୱାଟ୍ ଶକ୍ତି ସମ୍ପନ୍ନ ରେଙ୍ଗାଲି ବିଦ୍ୟୁତ୍ ପରିକଳ୍ପନା ପ୍ରାରମ୍ଭିକ କାର୍ଯ୍ୟ ଚଳିତ ଆର୍ଥିକ ବର୍ଷ ମଧ୍ୟରେ ହାତକୁ ନିଆଯିବ । ଉପର କୋଲାବ ଯୋଜନାପାଇଁ ଯୋଜନା କମିଶନଙ୍କଠାରୁ ମଞ୍ଜୁରି ପାଇବା ନିମନ୍ତେ ଉଦ୍ୟମ କରାଯାଉଛି । ଉପର ଇନ୍ଦ୍ରାବତୀ (ପ୍ରଥମ ପର୍ଯ୍ୟାୟ) ପାଇଁ ପ୍ରୋଜେକ୍ଟ ରିପୋର୍ଟ ବର୍ତ୍ତମାନ ପ୍ରସ୍ତୁତ କରାଯାଉଛି । ତାଳଚେର ନିକଟରେ 1,000 ମେଗାୱାଟ୍ ଉତ୍ପାଦନ ସାମର୍ଥ୍ୟ ତାପଜ ବିଦ୍ୟୁତ୍ କେନ୍ଦ୍ର ସ୍ଥାପନ ପ୍ରକାଶ ସମ୍ଭାବ୍ୟ ବିବରଣୀ ପ୍ରସ୍ତୁତ ହୋଇ

କେନ୍ଦ୍ର ଜଳ ଓ ବିଦ୍ୟୁତ୍ କମିଶନଙ୍କ ନିକଟକୁ ପଠାଯାଉଛି । ଉକ୍ତ ଯୋଜନାର ସବିଶେଷ ଅନୁସନ୍ଧାନ କାର୍ଯ୍ୟ ଆଗେଇ ଚାଲିଛି । ପଞ୍ଚମ ଯୋଜନା କାଳରେ ନିମ୍ନଲିଖିତ ଯୋଜନାଗୁଡ଼ିକର ଅନୁସନ୍ଧାନ କାର୍ଯ୍ୟ ହାତକୁ ନେବାପାଇଁ ପ୍ରସ୍ତାବ ଅଛି:-

1. ଭୀମକୁଣ୍ଡ ଜଳ ବିଦ୍ୟୁତ୍ ପରିକଳ୍ପନା
2. ତଳେଇକୋଲବ ଯୋଜନା
3. ଜଳମାଛକୁଣ୍ଡ ଯୋଜନା
4. ବୃନ୍ଦାବନଙ୍କ ଜଳ ବିଦ୍ୟୁତ ପରିକଳ୍ପନା ।
5. ଉପରୋକ୍ତ ବିଦ୍ୟୁତ୍ ପରିକଳ୍ପନାଗୁଡିକ ନିମନ୍ତେ ସରବରାହ ଲାଇନ

22. ରାଜ୍ୟରେ ଦ୍ରୁତ ଶିଳ୍ପ ବିକାଶ ନିମନ୍ତେ ଶିଳ୍ପୋଦ୍ୟୋଗୀମାନଙ୍କୁ ବିଭିନ୍ନ ସୁବିଧା ସୁଯୋଗ ଯୋଗାଇଦେବା ହେଉଛି ରାଜ୍ୟ ଶିଳ୍ପନୀତିର ଉଦ୍ଦେଶ୍ୟ । ରାଜ୍ୟର ଆଠଟି ଜିଲ୍ଲାକୁ ଅନଗ୍ରସର ଜିଲ୍ଲା ବୋଲି ଘୋଷଣା କରାଯାଇଛି, ଯାହାଫଳରେ ଅର୍ଥ ଲଗାଣକାରୀ ସଂସ୍ଥାମାନଙ୍କ ନିକଟରେ ସେମାନେ ରିହାତି ପାଇବାକୁ ହକ୍‌ଦାର ହେବେ । ସେଥିମଧ୍ୟରୁ ଛଅଟି ଯଥା—ମୟୂରଭଂଜ, କଳାହାଣ୍ଡି, ବଲାଙ୍ଗୀର, ଢେଙ୍କାନାଳ, କେନ୍ଦୁଝର ଓ କୋରାପୁଟ ବିଶେଷଭାବେ ଅନୁନ୍ନତ ବୋଲି ଘୋଷଣା କରାଯାଇଛି । ଯେଉଁ ଶିଳ୍ପୋଦ୍ୟୋଗୀ-ମାନେ 1973 ମାର୍ଚ୍ଚ 1 ତାରିଖ ପୂର୍ବରୁ ଏସବୁ ଜାଗାରେ ଶିଳ୍ପ ସ୍ଥାପନ କରିଛନ୍ତି ସେମାନେ ସ୍ଥାୟୀ ମୂଳଧନ ଆକାରରେ ଖଟାଇଥିବା ଅର୍ଥ ଉପରେ ଶତକଡ଼ା 10 ଭାଗ ରିହାତି ଏବଂ ଉକ୍ତ ତାରିଖପରେ ସ୍ଥାପିତ ହୋଇଥିବା ଶିଳ୍ପର ସ୍ଥାୟୀ ମୂଳଧନ ଉପରେ ଶତକଡ଼ା 15 ଭାଗ ରିହାତି ପାଇବା ଲାଗି ଯୋଗ୍ୟ ବିବେଚିତ ହେବେ । ରାଜ୍ୟର ଆଦିବାସୀ ଅଞ୍ଚଳରେ ଏ ସବୁ ପରିକଳ୍ପନା କାର୍ଯ୍ୟକାରୀ କରିବା ନିମନ୍ତେ ଆବଶ୍ୟକୀୟ ଅର୍ଥ ନିର୍ଦ୍ଦିଷ୍ଟଭାବରେ ବ୍ୟବସ୍ଥା କରାଯାଇଛି ।

ବୃହତ୍ ଓ ମଧ୍ୟମ ଶିଳ୍ପ କ୍ଷେତ୍ରରେ 1974-1975 ମଧ୍ୟରେ ଗୋଟିଏ ଟାୟାର ଓ ଟିଉବ କାରଖାନା ଗୋଟିଏ କଂକ୍ରିଟ ପ୍ଲାଷ୍ଟ କାରଖାନା ସ୍ଥାପନ ନିମନ୍ତେ ବ୍ୟବସ୍ଥା କରାଯାଇଛି । ଜାତୀୟ କୃଷି ସମବାୟ ବିକ୍ରୟ ସଂଘର ସହଯୋଗରେ ଧାନମଣ୍ଡଳରେ ଶିଳ୍ପ ଉନ୍ନୟନ କର୍ପୋରେସନଙ୍କ ଦ୍ଵାରା ଗୋଟିଏ ଷ୍ଟୋରେଜ ମଧ୍ୟ ଚେଷ୍ଟା କରାଯାଉଛି । ମିଳିତ ଉଦ୍ୟୋଗରେ ଗୋଟିଏ କାଗଜ କଳ ପ୍ରତିଷ୍ଠା କରିବା ବିଷୟ ମଧ୍ୟ ସରକାର ଚିନ୍ତା କରୁଛନ୍ତି । ଶିଳ୍ପୋଦ୍ୟୋଗୀମାନେ ରାଜ୍ୟରେ ଶିଳ୍ପ ସ୍ଥାପନ ଲାଗି ଯେପରି ସମର୍ଥ ହୋଇ ପାରିବେ ସେଥି ନିମନ୍ତେ ଶିଳ୍ପ ଉନ୍ନୟନ ଓ ବିନିଯୋଗ କର୍ପୋରେସନ୍, ଶିଳ୍ପ ଉନ୍ନୟନ କର୍ପୋରେସନ୍, ଓଡ଼ିଶା ରାଜ୍ୟ ଅର୍ଥ କର୍ପୋରେସନ୍ ଓ ଓଡ଼ିଶା କ୍ଷୁଦ୍ର ଶିଳ୍ପ କର୍ପୋରେସନ୍ ସକ୍ରିୟ ସହାୟତା ଦେଉଛନ୍ତି । ଓଡ଼ିଶା କ୍ଷୁଦ୍ର ଶିଳ୍ପ କର୍ପୋରେସନ୍

ଭୁବନେଶ୍ୱରଠାରେ ଗୋଟିଏ ଟେଲିଭିଜନ ଉତ୍ପାଦନ କେନ୍ଦ୍ର ସ୍ଥାପନ କରିଛନ୍ତି ଓ ଏଥିରୁ ଉତ୍ପାଦନ ଆରମ୍ଭ ହେଲାଣି । ଏହି କର୍ପୋରେସନ୍ ସିଡ଼ ମନି ଯୋଗାଇବା ଏବଂ କ୍ଷୁଦ୍ର ଶିଳ୍ପଜାତ ପଦାର୍ଥଗୁଡ଼ିକର ବିକ୍ରି ବ୍ୟବସ୍ଥା କରିବା ଦ୍ୱାରା ଶିଳ୍ପୋଦ୍ୟୋଗୀମାନଙ୍କୁ ସାହାଯ୍ୟ କରିବେ ।

ପଞ୍ଚମ ପଞ୍ଚବାର୍ଷିକ ଯୋଜନା କାଳରେ କେନ୍ଦ୍ରୀୟସ୍ତରରେ କେତେକ ଶିଳ୍ପ ସଂସ୍ଥା ସ୍ଥାପନ ହେବାର ସମ୍ଭାବନା ରହିଛି । ସେଗୁଡ଼ିକ ହେଲା, ରାଉରକେଲା ଇସ୍ପାତ କାରଖାନା ଓ ତାଳଚେର ସାର କାରଖାନାର ସମ୍ପ୍ରସାରଣ, ତାଳଚେରଠାରେ ଏକ କୋଇଲା ଓ କ୍ଷାରଜଳ ପ୍ଲାଣ୍ଟ, ପାରାଦ୍ୱୀପ ସାରକାରଖାନା, ସୁକିନ୍ଦା ନିକେଲ କାରଖାନା, ରାଇରଙ୍ଗପୁର ଫେରୋ-ଭାନାଡ଼ିୟମ କାରଖାନା ଏବଂ ଗୋପାଳପୁରଠାରେ ଇଣ୍ଡିଆନ୍ ରେୟାରଆର୍ଥଙ୍କ 3ଟି ୟୁନିଟ୍ । ରାଜ୍ୟରେ କ୍ଷୁଦ୍ର ଶିଳ୍ପର ବିକାଶକୁ ତ୍ୱରାନ୍ୱିତ କରିବାପାଇଁ ଶିଳ୍ପାଞ୍ଚଳର ସମ୍ପ୍ରସାରଣ କରାଯାଉଛି । ବୃହତ୍ ଓ ମଧ୍ୟମ ଶିଳ୍ପ ପ୍ରତିଷ୍ଠାପାଇଁ କେତେକ ଅଞ୍ଚଳକୁ ପ୍ରସ୍ତୁତ କରାଯାଉଛି । ହସ୍ତତନ୍ତ, କଳତନ୍ତ, ରେଶମ, ହସ୍ତଶିଳ୍ପ ଓ କଳାଶିଳ୍ପରେ ଯେଉଁ ସବୁ କାରିଗର ନିଯୁକ୍ତ ରହିଛନ୍ତି ସେମାନଙ୍କୁ ବୈଷୟିକ ଓ ବିକ୍ରି ସୁବିଧା ସୁଯୋଗ ଯୋଗାଇ ଦେବାପାଇଁ ପ୍ରସ୍ତାବ ରହିଛି ।

## ଖଣି

23. ରାଜ୍ୟର ଖଣି ଅଞ୍ଚଳରେ ପ୍ରାୟ 70,000ରୁ 80,000 ପର୍ଯ୍ୟନ୍ତ ଲୋକ ନିଯୁକ୍ତ ଅଛନ୍ତି ଏବଂ ଏସବୁ ଖଣିରୁ ବାର୍ଷିକ ପ୍ରାୟ 13 ନିୟୁତ ଟନ ଖଣିଜ ଦ୍ରବ୍ୟ ଉତ୍ପାଦିତ ହୋଇଥାଏ । କଟକର ସୁକିନ୍ଦା ଅଞ୍ଚଳରେ ଏକ ନିକେଲ ନିଷ୍କାସନ କାରଖାନା ସ୍ଥାପନ କରାଯାଉଛି । ପଞ୍ଚମ ଯୋଜନା କାଳରେ ଏକ ଫେରୋ-ଭାନାଡ଼ିୟମ ପ୍ଲାଣ୍ଟ ସ୍ଥାପିତ ହେବାର ଆଶା । ସର୍ଗିପାଲି ସୀସା କାରଖାନାର ପ୍ରକଳ୍ପ ରିପୋର୍ଟ ପ୍ରସ୍ତୁତ ହେଉଛି । ପ୍ରସ୍ତାବିତ ବାଂଶପାଣି ଯଶପୁର ରେଳ ଲାଇନ୍ ପାଇଁ ଏକ ସର୍ବଶେଷ ଖର୍ଚ୍ଚ ସମ୍ବନ୍ଧୀୟ ସର୍ଭେ କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଛି ଏବଂ ଚୂଡ଼ାନ୍ତ ରିପୋର୍ଟର ପ୍ରକାଶନକୁ ଅପେକ୍ଷା କରାଯାଉଛି । ଉକ୍ତ ରେଳ ପଥ ରାଜ୍ୟର ଖଣିଜ ଭୂମିର ବିକାଶ କ୍ଷେତ୍ରରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିବ ।

## ରାସ୍ତା ଓ ପରିବହନ

24. ଚଳିତ ବର୍ଷର ଯୋଜନାରେ ରାସ୍ତା ଉନ୍ନୟନ କାର୍ଯ୍ୟକ୍ରମପାଇଁ 100 ଲକ୍ଷ ଓ ସର୍ବନିମ୍ନ ଆବଶ୍ୟକତା କାର୍ଯ୍ୟକ୍ରମପାଇଁ 150 ଲକ୍ଷ ଟଙ୍କାର ଅର୍ଥ ବ୍ୟବସ୍ଥା କରାଯାଇଛି । ଭାରତ ସରକାର ଆନ୍ତଃ-ରାଜ୍ୟ ସଡ଼କ ଓ ଅର୍ଥନୈତିକ ଦୃଷ୍ଟିକୋଣରୁ ଗୁରୁତ୍ୱପୂର୍ଣ୍ଣ ତାହାର ପରିକଳ୍ପନା ଅନୁଯାୟୀ ପୁନର୍ଗଠନ ରଖା ଯାଇ ଉପରେ ପୋଲ ନିର୍ମାଣ କରିବା ଉଦ୍ଦେଶ୍ୟରେ

74 ଲକ୍ଷ ଟଙ୍କା ଋଣ ଆକାରରେ ମଞ୍ଜୁର କରିଛନ୍ତି । ଏହି ପୋଲ ନିର୍ମାଣ ବାବଦରେ ହେଉଥିବା ଟଙ୍କା ଖର୍ଚ୍ଚ ହେବ ତାହା ଓଡ଼ିଶା ସରକାର ଓ ପଶ୍ଚିମବଙ୍ଗ ସରକାର ସମାନଭାବରେ ବହନ କରିବେ । ରାସ୍ତାପରିବହନର ବିକାଶ ଓ ଜନସାଧାରଣଙ୍କୁ ଅଧିକ ସୁବିଧା ସୁଯୋଗ ଯୋଗାଇଦେବା ସଙ୍ଗେ ସଙ୍ଗେ ପରିବହନ ବ୍ୟବସ୍ଥାକୁ ଦକ୍ଷତା ସମ୍ପନ୍ନ କରିବା ଉଦ୍ଦେଶ୍ୟରେ ରାଜ୍ୟ ସରକାର ରାଜ୍ୟପରିବହନ ସଂସ୍ଥା ପରିବର୍ତ୍ତେ ଓଡ଼ିଶା ରାଜ୍ୟ ସଡ଼କ ପରିବହନ କର୍ପୋରେସନ 1974 ମଇ ପହିଲାଠାରୁ ଗଠନ କରିଛନ୍ତି । ଏହା ଫଳରେ ଏହି ନୂତନ କର୍ପୋରେସନ ବିଭିନ୍ନ ଅନୁଷ୍ଠାନିକ ଅର୍ଥ ସଂଗ୍ରହକରି ନିଜର ପରିବହନ ବ୍ୟବସ୍ଥା ସମ୍ପ୍ରସାରଣ କରିବା ଦିଗରେ ଅଧିକ ସୁବିଧା ସୁଯୋଗ ପାଇବେ । ଉକ୍ତ କର୍ପୋରେସନ୍ 1974 ମଇ 15 ତାରିଖ ଦିନ ରାଜ୍ୟ ପରିବହନ ସଂସ୍ଥାଠାରୁ ସମସ୍ତ ଆସ୍ତି ଓ ଦାୟିତ୍ୱ ହାତକୁ ନେଇଛନ୍ତି ।

## ସ୍ୱାସ୍ଥ୍ୟ ଓ ଜଳ ଯୋଗାଣ

25. ପ୍ରାରମ୍ଭିକ ସ୍ୱାସ୍ଥ୍ୟ କେନ୍ଦ୍ର ଜରିଆରେ ଗ୍ରାମାଞ୍ଚଳରେ ଡାକ୍ତରୀ ସେବାକୁ ସୁଦୃଢ଼ କରିବାପାଇଁ ଚଳିତ ବର୍ଷ ମଧ୍ୟରେ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମକୁ ସଂଗଠିତ କରାଯାଇଛି । ରାଜ୍ୟର ସବୁ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରରେ ଡାକ୍ତର ଅବସ୍ଥାପିତ ହୋଇଛନ୍ତି । ସମ୍ପ୍ରତି ପ୍ରତ୍ୟେକ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରକୁ ଔଷଧପାଇଁ ବାର୍ଷିକ 5 ହଜାର ଟଙ୍କା ଦିଆଯାଉଥିବା ସ୍ଥଳେ ତାହାକୁ ବୃଦ୍ଧି କରାଯାଇ 12 ହଜାର ଟଙ୍କାର ବ୍ୟବସ୍ଥା କରାଯାଇଛି । ପ୍ରତ୍ୟେକ ଉପ ସ୍ୱାସ୍ଥ୍ୟକେନ୍ଦ୍ର ପାଇଁ ପୃଥକ ଭାବେ ଔଷଧ ସକାଶେ ବାର୍ଷିକ 2 ହଜାର ଟଙ୍କା ଦିଆଯିବ । ମୋଟ 52·30 ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ଅଠରଗୋଟି ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରକୁ 30 ଟି ଶଯ୍ୟା ବିଶିଷ୍ଟ ଗ୍ରାମ୍ୟ ହାସପାତାଳକୁ ଉନ୍ନୀତ କରିବାପାଇଁ ପ୍ରସ୍ତାବ ରଖାଯାଇଛି । ଆଉ ଅଧିକ 5 ଗୋଟି ଜିଲ୍ଲା ସଦର ମହକୁମା ହାସପାତାଳମାନଙ୍କରେ ବିଶେଷଜ୍ଞ ସେବାର ବ୍ୟବସ୍ଥାକରି ଡାକ୍ତରୀ ଚିକିତ୍ସାର ସୁବିଧା ଓ ଆନୁଷଙ୍ଗିକ ସୁଯୋଗକୁ ସୁଦୃଢ଼ କରାଯାଉଛି । ଭାରତୀୟ ପଦ୍ଧତି ଔଷଧର ବିକାଶ ନିମନ୍ତେ ଆୟୁର୍ବେଦିକମାନଙ୍କର ସ୍ନାତକୋତ୍ତର ଶିକ୍ଷାର ସୁବିଧା ସୁଯୋଗ ଯୋଗାଇ ଦେବା ସଙ୍ଗେ ସଙ୍ଗେ ହୋମିଓପାଥି ଫାର୍ମାସୀରେ ତାଲିମ ଦେବା ସକାଶେ କେତେକ କାର୍ଯ୍ୟକ୍ରମର ପ୍ରସ୍ତାବ ରହିଛି । ଖାଦ୍ୟ ପଦାର୍ଥର ଅପମିଶ୍ରଣ ଓ ଅନ୍ୟାନ୍ୟ ଅପକର୍ମର ପ୍ରତିରୋଧ ନିମନ୍ତେ ଔଷଧ ନିୟନ୍ତ୍ରଣ ସଂସ୍ଥା ଅଧୀନରେ ମଫସଲପାଇଁ ବହୁସଂଖ୍ୟକ ଖାଦ୍ୟ ଇନସପେକ୍ଟରଙ୍କୁ ନିଯୁକ୍ତି ଦିଆଯାଉଛି । କେନ୍ଦ୍ର ସରକାରଙ୍କ ପୂର୍ଣ୍ଣ ସହାୟତାରେ ଜାତୀୟ ମ୍ୟାଲେରିଆ ନିରାକରଣ କାର୍ଯ୍ୟକ୍ରମ, ଜାତୀୟ ବସନ୍ତ ନିରାକରଣ କାର୍ଯ୍ୟକ୍ରମ ଓ କୁଷ୍ଠ ନିୟନ୍ତ୍ରଣ କାର୍ଯ୍ୟକ୍ରମକୁ ପୂର୍ବଭଳି ଚାଲୁ ରଖାଯିବ । ପରିବାର ନିଯୋଜନ କାର୍ଯ୍ୟକ୍ରମର ଗତି ପୂର୍ବ ଭଳି ଅବ୍ୟାହତ ରହିବ । ଡାକ୍ତରୀ

କଳ୍ପପାଇଁ 1973-74 ମସିହାରେ 875 ଲକ୍ଷ ଟଙ୍କା ରଖାଯାଇଥିବା ସ୍ଥଳେ ଚଳିତବର୍ଷ ସକାଶେ 953 ଲକ୍ଷ ଟଙ୍କାର ଅର୍ଥ ବ୍ୟବସ୍ଥା କରାଯାଇଛି । କେନ୍ଦ୍ରୀୟ ଯୋଜନା ରୂପେ କାର୍ଯ୍ୟକାରୀ ହେଉଥିବା ପରିବାର ନିୟୋଜନ କାର୍ଯ୍ୟକ୍ରମପାଇଁ 1973-74 ମସିହା ସଂଶୋଧିତ ବଜେଟ ଅଟକଳରେ 2,06'55 ଲକ୍ଷ ଟଙ୍କା ରଖାଯାଇଥିବା ସ୍ଥଳେ ଚଳିତ ବର୍ଷପାଇଁ 312'97 ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି । ସର୍ବନିମ୍ନ ଆବଶ୍ୟକତା କାର୍ଯ୍ୟକ୍ରମର ଏକ ଅଂଶ ରୂପେ ଓଡ଼ିଶାର ଗ୍ରାମାଞ୍ଚଳରେ ଜଳଯୋଗାଣ କାର୍ଯ୍ୟକ୍ରମ ହାତକୁ ନିଆଯିବ । ରାଜ୍ୟରେ ଥିବା 47 ହଜାର ଗ୍ରାମ ମଧ୍ୟରୁ 10,295 ଗୋଟି ଗ୍ରାମକୁ ସମସ୍ୟାବହୁଳ ଗ୍ରାମରୂପେ ଚିହ୍ନଟ କରାଯାଇଛି । ଏହାବ୍ୟତୀତ 1,592 ଟି ଗ୍ରାମକୁ ଚିହ୍ନଟ କରାଯାଇ ସେ ସବୁ ଗ୍ରାମରେ ଜଳଯୋଗାଣ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରାଯାଇଛି । ପଞ୍ଚମ ଯୋଜନା କାଳରେ 8,320 ଗୋଟି ଗ୍ରାମରେ ପାଇପ ଜଳ ଯୋଗାଣ ପରିକଳ୍ପନା ଓ ନଳକୂପ ସ୍ଥାପନ କାର୍ଯ୍ୟକ୍ରମ ସମ୍ପ୍ରସାରିତ କରିବାପାଇଁ ପ୍ରସ୍ତାବ ରଖାଯାଇଛି । ଚଳିତବର୍ଷ ଯୋଜନା କାର୍ଯ୍ୟକ୍ରମରେ 73 ଲକ୍ଷ ଟଙ୍କା ବ୍ୟୟ ଅଟକଳରେ 593 ଗୋଟି ଗ୍ରାମରେ 788 ଗୋଟି ନଳକୂପ ବସାଇବାପାଇଁ ବ୍ୟବସ୍ଥା କରାଯାଇଛି । ପଞ୍ଚମ ଯୋଜନା କାଳରେ କାର୍ଯ୍ୟକାରୀ ହେବାକୁ ଥିବା 20 ଗୋଟି ପୌର ଜଳଯୋଗାଣ ପରିକଳ୍ପନା ମଧ୍ୟରୁ 4 ଗୋଟି ଚଳିତ ବର୍ଷ ମଧ୍ୟରେ 59 ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ସମ୍ପୂର୍ଣ୍ଣ ହେବ ବୋଲି ପ୍ରସ୍ତାବ ରଖାଯାଇଛି ଓ ଏହି ଟଙ୍କା ମ୍ୟୁନିସିପାଲିଟିଗୁଡ଼ିକ ମାରଫତରେ ଖର୍ଚ୍ଚ ହେବ ।

## ଗୋଷ୍ଠୀ ଉନ୍ନୟନ ଓ ଅନୁନ୍ନତଶ୍ରେଣୀଙ୍କ କଲ୍ୟାଣ

26. ପଞ୍ଚମ ଯୋଜନାର ବ୍ୟବସ୍ଥା ଅନୁଯାୟୀ ଗ୍ରାମଗୋଷ୍ଠୀ ଉନ୍ନୟନ ବ୍ଲକଗୁଡ଼ିକରେ ପାନୀୟ ଜଳଯୋଗାଣ ଯୋଜନା, ପ୍ରାଥମିକ ବିଦ୍ୟାଳୟର କୋଠାବାଡ଼ି ନିର୍ମାଣ ଓ ବିକାଶ ଖାଦ୍ୟ ଯୋଗାଣ ସମେତ ସମନ୍ୱିତ ଶିଶୁ କଲ୍ୟାଣ କାର୍ଯ୍ୟକ୍ରମ ଭଳି କେତେକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକ୍ରମ ପୂର୍ବଭଳି ଚାଲୁ ରଖାଯିବ । ସର୍ବନିମ୍ନ ଆବଶ୍ୟକତା କାର୍ଯ୍ୟକ୍ରମ ଅନୁଯାୟୀ 6 ବର୍ଷ ବୟସସୀମା ମଧ୍ୟରେ ସ୍କୁଲକୁ ଯାଇ ନ ଥିବା ଶିଶୁ ଗର୍ଭବତୀ ମହିଳା ଓ ପ୍ରସୂତୀମାନଙ୍କୁ ପରିପୂରକ ଖାଦ୍ୟ ଯୋଗାଇ ଦେବା ଉଦ୍ଦେଶ୍ୟରେ ସ୍ୱତନ୍ତ୍ର ପୁଷ୍ଟି କାର୍ଯ୍ୟକ୍ରମ ମଧ୍ୟ ହାତକୁ ନିଆଯାଇଛି । ଚଳିତବର୍ଷ ଏହି ଯୋଜନାକୁ କାର୍ଯ୍ୟକାରୀ କରିବାପାଇଁ 150 ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି ଏବଂ ଏହା ଫଳରେ 3'70 ଲକ୍ଷରୁ ଅଧିକ ବ୍ୟକ୍ତି ଉପକୃତ ହେବେ । ଫଳ ଉଦ୍ୟାନ, ମାଛ ଚାଷ, କୁକୁଡ଼ା ଚାଷ, ପ୍ରଭୃତି କ୍ଷେତ୍ରରେ ବିକାଶମୂଳକ କାର୍ଯ୍ୟକ୍ରମ ପ୍ରତି ଲକ୍ଷ୍ୟ ରଖି ପ୍ରୟୋଗାତ୍ମକ ପୁଷ୍ଟି କାର୍ଯ୍ୟକ୍ରମପାଇଁ 6·48 ଲକ୍ଷ ଟଙ୍କା ବିନିଯୋଗ କରାଯିବ ଓ ଏଥିନିମନ୍ତେ ସବୁ ଟଙ୍କା କେନ୍ଦ୍ରରୁ ମିଳିବ । ଆଦିବାସୀମାନଙ୍କର ଉନ୍ନତି ବିଧାନ ଅଭିପ୍ରାୟରେ

ରାଜ୍ୟରେ କାର୍ଯ୍ୟକାରୀ ହେଉଥିବା 75 ଗୋଟି ଆଦିବାସୀ ଉନ୍ନୟନ ବ୍ଲକ ପରିଷ୍କାରଣ ନିମନ୍ତେ 119 ଲକ୍ଷ ଟଙ୍କାର ବ୍ୟବସ୍ଥା ମଧ୍ୟ କରାଯାଇଛି ଓ ଏ ସବୁ କାର୍ଯ୍ୟପାଇଁ ପୂରାପୂରି କେନ୍ଦ୍ରୀୟ ସାହାଯ୍ୟ ମିଳିବ । ଅସମ୍ପୂର୍ଣ୍ଣ ହୋଇ ରହିଥିବା କୂପଗୁଡ଼ିକର କାମ ସମ୍ପୂର୍ଣ୍ଣ କରିବାପାଇଁ 10 ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି ଓ ଏ ବାବଦ ଅର୍ଥ ସାହାଯ୍ୟ ଆକାରରେ ପଞ୍ଚାୟତ ସମିତିଗୁଡ଼ିକୁ ଦିଆଯିବ । ଗ୍ରାମପଞ୍ଚାୟତଗୁଡ଼ିକୁ ସକ୍ରିୟ କରିବା ପାଇଁ ପ୍ରସ୍ତାବ ରଖାଯାଇଛି । ପଞ୍ଚମ ଯୋଜନାରେ ଗ୍ରାମ ପଞ୍ଚାୟତପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତ କରିବାର ପ୍ରଧାନ ଉଦ୍ଦେଶ୍ୟ ହେଲା ସେମାନଙ୍କର ସମ୍ବଳ ବୃଦ୍ଧି କରିବା ଓ ସେମାନଙ୍କୁ ଆତ୍ମନିର୍ଭରଶୀଳ କରିବା ।

ଓଡ଼ିଶାରେ ବହୁ ଜନଜାତି ସମ୍ପ୍ରଦାୟ ଓ ତଫସିଲଭୁକ୍ତ ଜାତିର ଲୋକ ରହିଛନ୍ତି । ସେମାନଙ୍କ ସଂଖ୍ୟା ଯଥାକ୍ରମେ ରାଜ୍ୟର ମୋଟ ଲୋକସଂଖ୍ୟାର ଶତକଡ଼ା 23·11 ଓ 15·18 ଭାଗ । ଶିକ୍ଷା, ଅର୍ଥନୈତିକ ବିକାଶ, ସ୍ୱାସ୍ଥ୍ୟ ଓ ବାସଗୃହ କ୍ଷେତ୍ରରେ ସେମାନଙ୍କର ଦୁଃଖ ଦୁର୍ଦ୍ଦଶା ମୋଚନ କରିବା ଅଭିପ୍ରାୟରେ ଆମେ ଅନବରତ ଉଦ୍ୟମ କରିଆସୁଛୁ । 1973 ଅପ୍ରେଲ ପହିଲା ଦିନ ରାଜ୍ୟ ସରକାରରେ ଥିବା ମୋଟ କର୍ମଚାରୀମାନଙ୍କ ମଧ୍ୟରେ ଶତକଡ଼ା ଯେତିକି ସଂଖ୍ୟକ ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ସମ୍ପ୍ରଦାୟର କର୍ମଚାରୀ ହେଉଥିବେ ସେମାନଙ୍କ ଅନୁପାତ ହିସାବକୁ ନେଇ ପଦୋନ୍ନତି କ୍ଷେତ୍ରରେ ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ସମ୍ପ୍ରଦାୟର କର୍ମଚାରୀମାନଙ୍କପାଇଁ ସ୍ଥାନ ସଂରକ୍ଷଣ କରିବା ନିମନ୍ତେ ସରକାର ନିଷ୍ପତ୍ତି ନେଇଛନ୍ତି । ଏହି ସ୍ଥାନ ସଂରକ୍ଷଣ ତଫସିଲଭୁକ୍ତ ସଂପ୍ରଦାୟର ପ୍ରାର୍ଥୀଙ୍କ ନିମନ୍ତେ ଶତକଡ଼ା 24 ଓ ତଫସିଲଭୁକ୍ତ ଜାତିର ପ୍ରାର୍ଥୀଙ୍କ ନିମନ୍ତେ ଶତକଡ଼ା 16 ରଖାଯାଇଛି । ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ସଂପ୍ରଦାୟଙ୍କ ସଂପର୍କରେ ପ୍ରାରମ୍ଭିକ ନିଯୁକ୍ତିନେଇ ରୋଷ୍ଟର ପଦ୍ଧତି ପାଳନ କରିବା, ସଂରକ୍ଷିତ ସ୍ଥାନକୁ ଅସଂରକ୍ଷିତ ସ୍ଥାନରେ ପରିଣତ କରିବା ଏବଂ ସଂରକ୍ଷିତ ବ୍ୟକ୍ତିଙ୍କୁ ଆଗବର୍ଷକୁ ନେବା ତଥା ଖାଲି ରହିଥିବା ପଦଗୁଡ଼ିକ ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ସଂପ୍ରଦାୟଙ୍କ ମଧ୍ୟରେ ଅଦଳ ବଦଳ କରିବା ସଂପର୍କରେ ନୀତି ଧାର୍ଯ୍ୟ କରାଯାଇଛି । ରାଜ୍ୟସ୍ତରୀୟ ଯୋଜନାରେ ଅନୁନ୍ନତ ଶ୍ରେଣୀର ଉନ୍ନତି ବିଧାନ ନିମନ୍ତେ 1974-75 ବର୍ଷପାଇଁ ଅଣଯୋଜନା ଖର୍ଚ୍ଚ ବାବଦରେ ରଖାଯାଇଥିବା 415·05 ଲକ୍ଷ ଟଙ୍କା ବାହାରେ ଯୋଜନା ବାବଦରେ ଅଧିକ ଅଧିକ 100 ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି । ଏତଦ୍‌ବ୍ୟତୀତ କେନ୍ଦ୍ରୀୟସ୍ତରରେ ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ସଂପ୍ରଦାୟଙ୍କ ଉନ୍ନତି ବିଧାନ ନିମନ୍ତେ 696 ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି । ଏଥି ମଧ୍ୟରୁ 5 ଗୋଟି ସମନ୍ୱିତ ଉନ୍ନୟନ ଯୋଜନାରେ ଓ 2 ଟି ପରୀକ୍ଷାମୂଳକ ଯୋଜନାରେ 3 କୋଟି ଟଙ୍କା ଖର୍ଚ୍ଚ ହେବ । ପରବର୍ତ୍ତୀ ଦଶ ବର୍ଷ ଭିତରେ ଅଭିବୃଦ୍ଧିମୂଳକ ପରିକଳ୍ପନାମାନ ଗ୍ରହଣ କରି ଅଗିନ୍ଦେଶାଧିକ ଗ୍ରାମ,

ସମନ୍ୱିତ ବାସଗୃହ ନିର୍ମାଣ ନିମନ୍ତେ ଉପଜାତି ଓ ଅନୁସୂଚିତ ଜାତି ଓ ଉପଜାତି ସଂପ୍ରଦାୟର ଲୋକମାନଙ୍କୁ 35 ଲକ୍ଷ ଟଙ୍କା ସାହାଯ୍ୟ ଆକାରରେ ଦିଆଯିବ । ଓଡ଼ିଶା ରାଜ୍ୟ ଆଦିବାସୀ ଉନ୍ନୟନ ସମବାୟ ସମିତି ଆଦିବାସୀମାନଙ୍କୁ ସେମାନଙ୍କର ଦୈନନ୍ଦିନ ଆବଶ୍ୟକ ଦ୍ରବ୍ୟ ଯୋଗାଇ ଦେବା ସଙ୍ଗେ ସଙ୍ଗେ ଉଚିତ ମୂଲ୍ୟରେ ସେମାନଙ୍କଠାରୁ ବଳକା ପଦାର୍ଥ ସଂଗ୍ରହ କରିଥାଏ । କେବଳ ମଦ କିଣିବା ବ୍ୟତୀତ ଉକ୍ତ ସମବାୟ ସମିତି ଆଦିବାସୀମାନଙ୍କୁ ସବୁ ପ୍ରକାରର କାମପାଇଁ ବିନା ସୁଧରେ ଋଣ ଦେଇଥାଏ ।

## ଶିକ୍ଷା, ସାଂସ୍କୃତିକ ବ୍ୟାପାର ଓ ପର୍ଯ୍ୟଟନ

27. ବିଗତ ଯୋଜନାକାଳ ମଧ୍ୟରେ ଶିକ୍ଷାର ପ୍ରତ୍ୟେକ ସ୍ତରରେ ବିଶେଷ ଉନ୍ନତି ଘଟିଥିଲେହେଁ ଜାତୀୟ ସ୍ତରରେ ତୁଳନା କଲେ ଆମ ରାଜ୍ୟ ଅନଗ୍ରସର ଅବସ୍ଥାରେ ରହିଛି । 500 ଟି ନୂଆ ପ୍ରାଥମିକ ସ୍କୁଲ ଖୋଲିବା ଏବଂ 1,500 ଟି ନିମ୍ନ ପ୍ରାଥମିକ ସ୍କୁଲକୁ ଉଚ୍ଚ ପ୍ରାଥମିକ ସ୍କୁଲରେ ପରିଣତ କରିବା ଉଦ୍ଦେଶ୍ୟରେ 1974-75 ମଧ୍ୟରେ ପ୍ରାଥମିକ ସ୍କୁଲ ଶିକ୍ଷକଙ୍କ ସଂଖ୍ୟା ଅଧିକ 2,000 ବଢ଼ିବ ବୋଲି ପ୍ରସ୍ତାବ ରହିଛି । ଚଳିତ ବର୍ଷ 750 ଗୋଟି ମାଧ୍ୟମିକ ସ୍କୁଲ, ବିଶେଷତଃ ଅନଗ୍ରସର ଓ ଆଦିବାସୀ ବହୁଳ ଅଞ୍ଚଳରେ ଖୋଲି ଯିବାର ପ୍ରସ୍ତାବ ଅଛି । ଅନଗ୍ରସର ଜିଲ୍ଲାଗୁଡ଼ିକର ଛାତ୍ରଛାତ୍ରୀମାନଙ୍କର ସଂଖ୍ୟା ବୃଦ୍ଧି କରିବା ନିମନ୍ତେ ପ୍ରାଥମିକ ଓ ମାଧ୍ୟମିକ ସ୍କୁଲରେ ନାମ ଲେଖାଇଥିବା ଅଧିକାଂଶ ପିଲାଙ୍କ ଭିତରୁ ଶତକଡ଼ା 50 ଭାଗ ପିଲାଙ୍କୁ ମାଗଣାରେ ପଢ଼ା ବହି ଯୋଗାଇ ଦେବା, ସ୍କୁଲରେ ନୂଆକରି ନାମ ଲେଖାଇଥିବା ଝିଅମାନଙ୍କ ମଧ୍ୟରୁ ଶତକଡ଼ା 50 ଭାଗ ଝିଅଙ୍କୁ ମାଗଣାରେ ସ୍କୁଲ ପୋଷାକ ଯୋଗାଇ ଦେବା, ଆଦିବାସୀ ଓ ହରିଜନ ଶ୍ରେଣୀର 3,000 ବାଳକାଙ୍କୁ ଦୈନନ୍ଦିନ ହାଜରାପାଇଁ ପ୍ରୋତ୍ସାହନ ବୃତ୍ତି ପ୍ରଦାନ, ଅନୁନ୍ନତ ଅଞ୍ଚଳରେ 200 ଟି ମଧ୍ୟ ଇଂରାଜୀ ସ୍କୁଲରେ ପାଠ୍ୟ ପୁସ୍ତକ ବ୍ୟାଙ୍କ ଖୋଲିବା ଭଳି ବ୍ୟବସ୍ଥାମାନ ପ୍ରବର୍ତ୍ତନ କରାଯିବ । ମାଧ୍ୟମିକ ଶିକ୍ଷା କ୍ଷେତ୍ରରେ ସମାଜର ଦୁର୍ବଳ ଏବଂ ଅବହେଳିତ ଗୋଷ୍ଠୀର ଛାତ୍ରଛାତ୍ରୀଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ଘଟାଇବା ଦିଗରେ ଅନେକ ସ୍ୱତନ୍ତ୍ର ପରିକଳ୍ପନା କାର୍ଯ୍ୟକାରୀ କରାଯାଉଛି । ଉଚ୍ଚ ଶିକ୍ଷା ଉପରେ ଗୁରୁତ୍ୱ ଦେବା ଫଳରେ ପଞ୍ଚମ ଯୋଜନାରେ ଶିକ୍ଷାରମାନ ବୃଦ୍ଧି ଦିଗରେ ସହାୟକ ହେବ । ଉଚ୍ଚତର ଶିକ୍ଷା କେବଳ ପୁସ୍ତକଗତ ଜ୍ଞାନ ନ ହୋଇ ବୃତ୍ତିଗତ ହେବା-ପାଇଁ ପ୍ରସ୍ତାବ ରଖାଯାଇଛି ଏବଂ ଏହି ଉଦ୍ଦେଶ୍ୟରେ ଉଭୟ ସରକାରୀ ତଥା ବେସରକାରୀ କଲେଜର ଇଣ୍ଟରମିଡ଼ିଏଟ ଓ ଡିଗ୍ରୀ ସ୍ତରରେ କେତେକ କର୍ମଭିମୁଖୀ ଓ ଫଳପ୍ରଦ ପାଠ୍ୟକ୍ରମ ପ୍ରବର୍ତ୍ତନ କରାଯିବାର ପ୍ରସ୍ତାବ ମଧ୍ୟ ରହିଛି । ସହନ୍ଦମ୍ଭ ଆବଶ୍ୟକତା କାର୍ଯ୍ୟକ୍ରମର ସହାୟକ ହେବାପାଇଁ ଗବେଷଣା ସକାଶେ ରାଜ୍ୟ ଶିକ୍ଷା ପ୍ରତିଷ୍ଠାନକୁ ସଂପ୍ରସାରଣ କରାଯାଇଛି ଓ ବିଭିନ୍ନ ପାଠ୍ୟକ୍ରମର ମାନ ବୃଦ୍ଧି କରାଯାଉଛି ।

ସଂଗ୍ରହାଳୟ, ପ୍ରାଚୀନ ଲେଖାଗାର, ପ୍ରତ୍ନତତ୍ତ୍ୱ, ନୃତ୍ୟ, ନାଟକ, ସଂଗୀତ, କଳା, ସାହିତ୍ୟ ଏବଂ କ୍ରୀଡା ଜଗତ, ପ୍ରଭୃତିର ବିକାଶ ସାଂସ୍କୃତିକ ବିଭାଗ ଦ୍ୱାରା କରାଯାଉଥାଏ । ପଞ୍ଚମ ଯୋଜନାରେ ଏହି ସବୁର ବିକାଶପାଇଁ ବିଭିନ୍ନ ପରିକଳ୍ପନା କାର୍ଯ୍ୟକାରୀ କରିବା ନିମନ୍ତେ 123·50 ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି । ପ୍ରଚଳିତ ଯୋଜନାଗୁଡ଼ିକର ସଂପ୍ରସାରଣ ସମଗ୍ର କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ । ଚଳିତବର୍ଷ ଏହି ଯୋଜନା ବାବଦରେ 19·72 ଲକ୍ଷ ଟଙ୍କା ରଖାଯାଇଛି । ଭୁବନେଶ୍ୱର ନୂଆ ରାଜଧାନୀରେ ଗୋଟିଏ ଷ୍ଟାଡ଼ିୟମର ଆବଶ୍ୟକତା ବହୁ ଦିନରୁ ଉପଲବ୍ଧି କରାଯାଉଛି ଏବଂ ଏଥିପାଇଁ ବଜେଟ୍‌ରେ ଏକ ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି । ପଞ୍ଚମ ଯୋଜନା କାଳରେ ପର୍ଯ୍ୟଟନ କ୍ଷେତ୍ରରେ ମୁଖ୍ୟତଃ ବର୍ତ୍ତମାନ ରହିଥିବା ସୁବିଧା ସୁଯୋଗର ସଂପ୍ରସାରଣ କରିଯିବା ଭିତ୍ତିଭୂମିର ବିକାଶ ନିମନ୍ତେ ଅର୍ଥ ଲଗାଣକାରୀ ସଂସ୍ଥାକୁ ଆକୃଷ୍ଟ କରିବାପାଇଁ 2 କୋଟି ଟଙ୍କା ମୂଳଧନରେ ଏକ ପର୍ଯ୍ୟଟନ ଉନ୍ନୟନ କର୍ପୋରେସନ ଗଠନ କରିବା ବିଷୟ ବିଚାରାଧୀନ ଅଛି । ଚଳିତ ବର୍ଷ 5 ଲକ୍ଷ ଟଙ୍କା ବ୍ୟୟରେ ବର୍ତ୍ତମାନର ପର୍ଯ୍ୟଟନ କେନ୍ଦ୍ରଗୁଡ଼ିକର ସଂପ୍ରସାରଣ, 1 ଲକ୍ଷ ଟଙ୍କା ବ୍ୟୟରେ ପର୍ଯ୍ୟଟନ ଉପଯୋଗୀ ସ୍ଥାନଗୁଡ଼ିକର ବିକାଶ ନିମନ୍ତେ ସର୍ଭେ ଓ ଅନୁସଂଧାନ କାର୍ଯ୍ୟ କରିଯିବାର ଯୋଜନା ରହିଛି । ରାଜ୍ୟ ଯୋଜନା ଆନୁକୂଲ୍ୟରେ ଚଳିତ ବର୍ଷ କେନ୍ଦ୍ରିକ ପର୍ଯ୍ୟଟନ ଯୋଜନା କାର୍ଯ୍ୟକାରୀ କରିଯିବା ନିମନ୍ତେ 5·20 ଲକ୍ଷ ଟଙ୍କା ବ୍ୟବସ୍ଥା କରିବାର ପ୍ରସ୍ତାବ ରହିଛି । ପର୍ଯ୍ୟଟନ କାର୍ଯ୍ୟକ୍ରମ ଓ କଳା ଏବଂ ସଂସ୍କୃତିକ ବିକାଶ ଭିତରେ ସମନ୍ୱୟ ସ୍ଥାପନ କରିବା ଉଦ୍ଦେଶ୍ୟରେ ପର୍ଯ୍ୟଟନ ଓ ସାଂସ୍କୃତିକ ବ୍ୟାପାର ନାମରେ ଏକ ନୂତନ ବିଭାଗ 1973 ମସିହା ନଭେମ୍ବର ମାସରେ ଗଠିତ ହୋଇଥିଲା । ପଞ୍ଚମ ପଞ୍ଚବାର୍ଷିକ ଯୋଜନା କାଳର ଓଡ଼ିଶାରେ ଓଡ଼ିଆ ଚଳଚିତ୍ର ନିର୍ମାଣ କାର୍ଯ୍ୟକୁ ଉତ୍ସାହିତ କରିବାପାଇଁ ଏବଂ ଅନେକଗୁଡ଼ିଏ ପ୍ରେକ୍ଷାଳୟ ନିର୍ମାଣ କରିବାପାଇଁ ଏକ ଚଳଚିତ୍ର ଉନ୍ନୟନ କର୍ପୋରେସନ ଗଢ଼ା ଯାଇପାରେ ।

## ଶ୍ରମ, ନିଯୁକ୍ତି ଓ ଗୃହନିର୍ମାଣ

28. ଶ୍ରମିକଙ୍କ ଶ୍ରେଣୀର ସ୍ୱାର୍ଥସାଧନ ନିମନ୍ତେ ବହୁସଂଖ୍ୟକ ସାମାଜିକ ତଥା ବୈଧାନିକ ବ୍ୟବସ୍ଥାମାନ ଗ୍ରହଣ କରାଯାଇଛି । ପଞ୍ଚମ ଯୋଜନାରେ ଶ୍ରମିକ ଆଇନ ଦୃଢୀକରଣ ଓ ବଏଲର ଆଇନ କାର୍ଯ୍ୟକାରୀ କାର୍ଯ୍ୟ କରିବାକୁ ଆନୁଷଙ୍ଗିକ ବ୍ୟବସ୍ଥା ନିମନ୍ତେ 33 ଲକ୍ଷ ଟଙ୍କା ବ୍ୟୟ କରିବାର ପ୍ରସ୍ତାବ ରହିଛି । ଉପଯୁକ୍ତ କାର୍ଯ୍ୟକ୍ରମଗୁଡ଼ିକ ଜରିଆରେ କର୍ମନିଯୁକ୍ତି ବ୍ୟବସ୍ଥା କରିବା ହେଉଛି ଯୋଜନାର ଏକ ପ୍ରଧାନ ଲକ୍ଷ୍ୟ । ଗ୍ରାମାଞ୍ଚଳଗୁଡ଼ିକରେ ବେକାର ସମସ୍ୟାର ଦୂରୀକରଣ ନିମନ୍ତେ 4ର୍ଥ ଯୋଜନାରେ ବ୍ୟାପକ ଶ୍ରମବହୁଳ କାର୍ଯ୍ୟ ଉପରେ ଗୁରୁତ୍ୱ ଆରୋପ କରାଯାଇଥିଲା । ପଞ୍ଚମ ଯୋଜନାରେ ମଧ୍ୟ

କୃଷି ଏବଂ ତତ୍ସଂପର୍କୀୟ କାର୍ଯ୍ୟକ୍ରମ, ଯଥା—କ୍ଷୁଦ୍ର ଜଳସେଚନ ବ୍ୟବସ୍ଥାର ବିକାଶ, ମୃତ୍ତିକା ସଂରକ୍ଷଣ, ଦୁଗ୍ଧ ଉତ୍ପାଦନ, ପଶୁପାଳନ, ଜଙ୍ଗଲର ବିକାଶ, ମତ୍ସ୍ୟ ଚାଷ ପ୍ରଭୃତି ଅନ୍ୟାନ୍ୟ ବିଷୟଗୁଡ଼ିକ ଉପରେ ଗୁରୁତ୍ୱ ଆରୋପ କରାଯାଉଛି । ଏହା ଫଳରେ ଗାଁ ଗହଳରେ ନିଯୁକ୍ତିର ସୁବିଧାସୁଯୋଗ ସୃଷ୍ଟି କରାଯାଇପାରିବ । କେନ୍ଦ୍ର ସରକାରଙ୍କଦ୍ୱାରା ଗତବର୍ଷ ଆରମ୍ଭ କରାଯାଇଥିବା ପରିକଳ୍ପିତ କର୍ମ ଯୋଜନା ଆନୁକୂଲ୍ୟରେ 110 ଲକ୍ଷ ଟଙ୍କାର ବ୍ୟବସ୍ଥା ଚଳିତ ବର୍ଷ ବଜେଟରେ ରଖାଯାଇଛି । ମାଟ୍ରିକ ଶିକ୍ଷକମାନଙ୍କ ସି. ଟି. ପାଠ୍ୟକ୍ରମ ତାଲିମଦେବା ନିମନ୍ତେ ଯେଉଁ ଯୋଜନା ରହିଛି ତାହା ଚାଲୁରଖିବାପାଇଁ ଉକ୍ତ ଅର୍ଥ ବିନିଯୋଗ ହେବ । ଏତଦ୍ବ୍ୟତୀତ ସ୍ଥାୟୀ ଚାକିରିରେ ନିଯୁକ୍ତି ପାଇବା ପୂର୍ବରୁ ସାମାଜିକ ଶିକ୍ଷା ସାଙ୍ଗଠିକା ଓ ଗ୍ରାମ ସେବକ ଓ ଗ୍ରାମ ସେବିକା ପ୍ରଭୃତି 700 ଜଣଙ୍କୁ ଶିକ୍ଷିତ ବେକାରଙ୍କପାଇଁ ହୋଇଥିବା ଖାସ ଯୋଜନା ଆନୁକୂଲ୍ୟରେ ତାଲିମ ଦିଆଯାଉଛି ।

ଜୀବନବୀମା କର୍ପୋରେସନଙ୍କଠାରୁ ଋଣ ଆଣି ଗ୍ରାମ୍ୟ ଗୃହନିର୍ମାଣ ଯୋଜନା, ସ୍ୱଳ୍ପ ଆୟକାରୀ ବାସଗୃହ ଯୋଜନା, ମଧ୍ୟମ ଆୟକାରୀ ବାସଗୃହ ଯୋଜନା, ଭଡ଼ା ଉଦ୍ଦେଶ୍ୟରେ ଗୃହ ଯୋଜନା ଏବଂ ଶିଳ୍ପାଞ୍ଚଳ ଗୃହ ଯୋଜନା ପ୍ରଭୃତି ବିଭିନ୍ନ ବାସଗୃହ ଯୋଜନା କାର୍ଯ୍ୟକାରୀ କରାଯାଉଛି । ଗ୍ରାମାଞ୍ଚଳ ବାସଗୃହ ନିର୍ମାଣ ଯୋଜନାକୁ ଅଗ୍ରାଧିକାର ଦିଆଯାଇଛି ଏବଂ ଏଥିରେ ଜଣେ ଋଣଗ୍ରହୀତାଙ୍କୁ ସର୍ବାଧିକ 4,000 ଟଙ୍କା ଋଣ ଦେବାର ବ୍ୟବସ୍ଥା ରହିଛି । ବିଶେଷକରି ବାତ୍ୟା, ଅଗ୍ନି ଏବଂ ଅନ୍ୟାନ୍ୟ ଦୁର୍ବିପାକଗ୍ରସ୍ତ ଗ୍ରାମମାନଙ୍କୁ ବିଶେଷ ପ୍ରାଧାନ୍ୟ ଦିଆଯାଉଛି । ଅନ୍ୟାନ୍ୟ ବାସଗୃହ ଯୋଜନା ନିମନ୍ତେ ଚଳିତ ବର୍ଷ 67 ଲକ୍ଷ 23 ହଜାର ଟଙ୍କାର ବ୍ୟବସ୍ଥା କରାଯାଇଛି । ଓଡ଼ିଶା ରାଜ୍ୟ ସମବାୟ ଗୃହ ନିର୍ମାଣ କର୍ପୋରେସନ, ଓଡ଼ିଶା ରାଜ୍ୟ ଗୃହ ନିର୍ମାଣ ବୋର୍ଡ଼ ଜିଲ୍ଲାପାଳ ଓ ଇଷ୍ଟେଟ ଡିରେକ୍ଟରଙ୍କୁ ଉକ୍ତ ଟଙ୍କା ଋଣ ଆକାରରେ ଯୋଗାଇ ଦେଇ ଗୃହ ନିର୍ମାଣ ଯୋଜନାକୁ କାର୍ଯ୍ୟକାରୀ କରାଯାଉଛି । ରାଜ୍ୟ ସରକାରୀ କର୍ମଚାରୀ ଓ ବେସରକାରୀ ଲୋକମାନଙ୍କ ରହିବା ନିମନ୍ତେ ବାସଗୃହ ନିର୍ମାଣ ଯୋଜନାକୁ ଆର୍ଥିକ ସାହାଯ୍ୟ ଦେବାପାଇଁ ଭାରତ ସରକାରଙ୍କର ଏକ ସଂସ୍ଥା, ବାସଗୃହ ଓ ନଗର ଉନ୍ନୟନ କର୍ପୋରେସନଙ୍କ ସହ କଥାବାର୍ତ୍ତା ଚାଲିଛି ।

## ସ୍ୱଳ୍ପ ସଞ୍ଚୟ

29. ସ୍ୱଳ୍ପ ସଞ୍ଚୟ ବାବଦରେ 1973-74 ମସିହାରେ ଆମର ନିଟ୍ ସଂଗ୍ରହ ଲକ୍ଷ୍ୟ 6 କୋଟି ଟଙ୍କା ଥିବାସ୍ଥଳେ 10·35 କୋଟି ଟଙ୍କା ସଂଗୃହୀତ ହୋଇଥିଲା । ପଞ୍ଚମ ଯୋଜନା କାଳରେ ସ୍ୱଳ୍ପ ସଞ୍ଚୟ ଜରିଆରେ 100 କୋଟି ଟଙ୍କା ସଂଗ୍ରହ କରିବାର

ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ଏବଂ ତନ୍ମଧ୍ୟରୁ 1974-75 ମସିହାରେ 1·8 କୋଟି ଟଙ୍କା ସଂଗ୍ରହ କରାଯିବ । ସ୍ୱଳ୍ପ ସଞ୍ଚୟ ସଂଗ୍ରହକୁ ବଢ଼ାଇବା ନିମନ୍ତେ ସଞ୍ଚୟ ବଢ଼ିବାର ସମ୍ଭାବନା ଥିବା ସବ୍‌ଡିଭିଜନ ଓ ପ୍ରଧାନ ପ୍ରଧାନ ବ୍ଲକମାନଙ୍କରେ ସ୍ୱଳ୍ପ ସଞ୍ଚୟ ଅଫିସରମାନଙ୍କୁ ନିଯୁକ୍ତ କରାଯାଉଛି । ସ୍ୱଳ୍ପ ସଞ୍ଚୟ ଜରିଆରେ ଅଧିକ ଅର୍ଥ ସଂଗ୍ରହ ନିମନ୍ତେ ମୁଁ ମାନ୍ୟବର ସଭ୍ୟମାନଙ୍କର ସହଯୋଗ ଲୋଡ଼ୁଛି. କାରଣ ଏହା ଫଳରେ ଆମ ଯୋଜନାର ଆକାର ପରିବର୍ତ୍ତିତ ହୋଇପାରିବ ।

## ଖାଦ୍ୟ ପଦାର୍ଥ ଓ ଅତ୍ୟାବଶ୍ୟକ ସାମଗ୍ରୀ

30. ଖାଦ୍ୟଶସ୍ୟ ସଂଗ୍ରହ ଆଂଶିକ ଭାବରେ ଯୋଗାଣ ବିଭାଗ ଜରିଆରେ ଏବଂ ଆଂଶିକ ଭାବରେ ଭାରତର ଖାଦ୍ୟ କରପୋରେସନ୍ ଓ ଓଡ଼ିଶା ରାଜ୍ୟ ସମବାୟ ବିକ୍ରି ସମିତି ଜରିଆରେ କରାଯାଉଛି । ଏ ସମ୍ପର୍କରେ ଅନ୍ୟୂନ 2·5 ନିୟୁତ ଟନ ଚାଉଳ ସଂଗ୍ରହକରି ସାଧାରଣ ବଣ୍ଟନ ସଂସ୍ଥାକୁ ଯୋଗାଇ ଦେବା ନିମନ୍ତେ ଲକ୍ଷ୍ୟ ରଖି ଆମେ ଉଦ୍ୟମ କରୁଛୁ । କିରାସିନ, ବନସ୍ପତି ଏବଂ ଶିଶୁ ଖାଦ୍ୟ ପ୍ରଭୃତି ଅତ୍ୟାବଶ୍ୟକ ଦ୍ରବ୍ୟର ସୁଷମ ବଣ୍ଟନ ନିମନ୍ତେ ସରକାର ମଧ୍ୟ ନିର୍ଦ୍ଦେଶ ଦେଇଛନ୍ତି । ସିମେଣ୍ଟ, ମଟର ଟାୟାର, ଟ୍ୟୁବ ପ୍ରଭୃତି ଦ୍ରବ୍ୟଗୁଡ଼ିକର ବଣ୍ଟନ ମଧ୍ୟ ନିୟନ୍ତ୍ରିତ କରାଯାଉଛି । ରାଜ୍ୟ ଖାଉଟି ସମବାୟ ସଂଘକୁ ରାଜ୍ୟର ଷ୍ଟାଣ୍ଡାର୍ଡ ଲୁଗାର ଏକ ମାତ୍ର ବିକ୍ରେତା ରୂପେ ନିଯୁକ୍ତ କରାଯାଇଛି ।

## ରିଲିଫ

31. ବନ୍ୟା, ମରୁଡ଼ି ଓ ବାତ୍ୟା ଆମର ଚିର ସହଚର ଏବଂ ଏହା ଫଳରେ ବ୍ୟାପକ କ୍ଷତି ଘଟିବା ସଙ୍ଗେ ସଙ୍ଗେ ଆମର ଅର୍ଥନୀତି ବିପର୍ଯ୍ୟସ୍ତ ହେଉଛି । କେତେକ ଉପକୂଳବର୍ତ୍ତୀ ଜିଲ୍ଲା ବର୍ଷକର ଏକାଧିକବାର ବାତ୍ୟାର ସମ୍ମୁଖୀନ ହେଉଛନ୍ତି । ଅତୀତରେ ରିଲିଫ କାର୍ଯ୍ୟକ୍ରମ ନିମନ୍ତେ ବହୁଳ ପରିମାଣ ଅର୍ଥ ବ୍ୟୟ ହୋଇଛି ଯାହା ଫଳରେ ଆମର ଅର୍ଥନୀତି ଦୁର୍ବଳ ହୋଇପଡ଼ିଛି । ଏଭଳି ଦୁଃସମୟକୁ ଏଡ଼ାଇ ଦିବା ନିମନ୍ତେ ଏକ ଅନୁମୋଦିତ ବ୍ୟବସ୍ଥାନୁଯାୟୀ ଗତ ବର୍ଷ ଶେଷ ସୁଦ୍ଧା ଗ୍ରାଣ୍ଟ ଏବଂ ଋଣ ଭାବରେ କେନ୍ଦ୍ରୀୟ ସାହାଯ୍ୟ ମିଳିଥିଲା । କିନ୍ତୁ 1-4-1974ଠାରୁ ଷଷ୍ଠ ଅର୍ଥ କମିଶନଙ୍କ ସୁପାରିଶ ଅନୁଯାୟୀ ବ୍ୟବସ୍ଥା କରାଯାଇଥିବା 3 କୋଟି 58 ଲକ୍ଷ ଟଙ୍କାରେ ରାଜ୍ୟ ସରକାରଙ୍କୁ ଏ ପ୍ରକାର ପରିସ୍ଥିତିର ମୁକାବିଲା କରିବାକୁ ପଡ଼ିବ । କେନ୍ଦ୍ରୀୟ ଅନୁଧ୍ୟାନକାରୀ ଦଳ ଓ କେନ୍ଦ୍ରୀୟ ସାହାଯ୍ୟ ବ୍ୟବସ୍ଥା ବନ୍ଦ ହୋଇଯାଇଛି । ବର୍ଷକ ଭିତରେ ଉକ୍ତ 3·58 କୋଟି ଟଙ୍କା ବାହାରେ ଯଦି ଅଧିକ ଆବଶ୍ୟକ ହୁଏ

ସେତେବେଳେ ଆସନ୍ତା ବର୍ଷର ଯୋଜନା ଓ ଅର୍ଥଯୋଜନା ସମ୍ପର୍କରେ ଘୋଷଣା କରାଯିବ । ଏଣିକି ଶିଳ୍ପ କାର୍ଯ୍ୟକ୍ରମପାଇଁ ଆମ ଉପରେ କେତେ ଗୁରୁ ଭାର ପଡ଼ିବ ତାହା ମାନ୍ୟବର ସଭ୍ୟମାନେ ହୃଦୟଙ୍ଗମ କରିପାରିବେ ବୋଲି ଆଶା କରୁଛି ।

32. ଆପଣମାନେ ଲକ୍ଷ୍ୟ କରିଥିବେ ଯେ 1974-75 ମସିହାର ବଜେଟ୍ ତା'ର ପରମ୍ପରାଗତ ଆକାର ପ୍ରକାରରୁ ସମ୍ପୂର୍ଣ୍ଣ ଭିନ୍ନ ଏବଂ ବିଭିନ୍ନ ବଜେଟ ଓ ଆକାଉଣ୍ଟର ଶ୍ରେଣୀ ବିଭାଗ ସଂଶୋଧିତ ପ୍ରଣାଳୀରେ ଦର୍ଶାଯାଇଛି । ବହୁ ବର୍ଷ ପୂର୍ବେ ସରକାରଙ୍କର ସ୍ୱୀକୃତ କାର୍ଯ୍ୟକ୍ରମ ଦର୍ଶାଇବା ନିମନ୍ତେ ତଥା ଖର୍ଚ୍ଚ ଓ ବିନିଯୋଗ ଉପରେ ନିୟନ୍ତ୍ରଣ ରଖିବାପାଇଁ ବଜେଟର ପୂର୍ବ ଢାଞ୍ଚା ତିଆରି ହୋଇଥିଲା । ପାରମ୍ପରିକ ଢାଞ୍ଚାରେ ଯେଉଁ ଆନୁଷ୍ଠାନିକ ଓ ଉଦ୍ଦେଶ୍ୟମୂଳକ ବଜେଟ ତିଆରି କରାଯାଉଥିଲା ତହିଁରେ କେବଳ କର୍ମଚାରୀମାନଙ୍କ ବେତନ ଏବଂ ଅନ୍ୟାନ୍ୟ ଖର୍ଚ୍ଚ ଦର୍ଶାଯାଉଥିଲା । କିନ୍ତୁ ଏହି ଖର୍ଚ୍ଚଦ୍ୱାରା କି ଉଦ୍ଦେଶ୍ୟ ସାଧିତ ହେବ ତାହା ଦର୍ଶାଯାଉ ନ ଥିଲା । କାର୍ଯ୍ୟକ୍ରମର ସୁପରିକଳ୍ପନା ପ୍ରକାଶ କରିବା ପ୍ରବୃତ୍ତି ଗ୍ରହଣ କରିବା ଦିଗରେ ପାରମ୍ପରିକ ବଜେଟଦ୍ୱାରା ବିଶେଷ ସାହାଯ୍ୟ ମିଳୁ ନ ଥିଲା । ସରକାରୀ କାର୍ଯ୍ୟକଳାପ ଇତି ମଧ୍ୟରେ ବିଭିନ୍ନ ଦିଗରେ ବହୁ ପରିମାଣରେ ପ୍ରସାର ଲାଭ କରିଛି । ସରକାରୀ କାର୍ଯ୍ୟକ୍ରମଗୁଡ଼ିକୁ ପୁଙ୍ଖାନୁପୁଙ୍ଖ ଭାବରେ ଅନୁଧ୍ୟାନରେ ନିର୍ଦ୍ଧାରଣ ତଥା ସମୀକ୍ଷା କରିବା ନିମନ୍ତେ ସଂଶୋଧିତ ବଜେଟରେ ଉଭୟ ବଜେଟ ଓ ଯୋଜନାର ବିଭିନ୍ନ ଖର୍ଚ୍ଚ ମଧ୍ୟରେ ଅଧିକ ସମନ୍ୱୟ ରକ୍ଷାକରିବାପାଇଁ ଚେଷ୍ଟା କରାଯାଇଛି । ବିଭାଗୀୟ କାର୍ଯ୍ୟକାରିତା ଭିତ୍ତିକ ବିଭିନ୍ନ ଆକାଉଣ୍ଟର ନୂତନ ନାମକରଣ କରାଯାଇଛି । ଏହା ଫଳରେ ସମସ୍ତ ବିଭାଗର ସାମୁଦାୟିକ କାର୍ଯ୍ୟକ୍ରମ ଉପରେ ଏକ ଆଭାସ ମିଳିପାରିବ । ସଂଶୋଧିତ ଶ୍ରେଣୀ ବିଭାଗ ଅନୁଯାୟୀ 1974-75 ବଜେଟ ନୂଆ ଢାଞ୍ଚାରେ ପ୍ରସ୍ତୁତ କରାଯାଇଛି ଏବଂ ଏହା ଏକ ପାଞ୍ଚ ସୋପାନ ଢାଞ୍ଚା ଉପରେ ପ୍ରତିଷ୍ଠିତ ଯଥା—ବିଭାଗ, କାର୍ଯ୍ୟ, କର୍ମସୂଚୀ, କାର୍ଯ୍ୟକଳାପ ଓ ଖର୍ଚ୍ଚର ଉଦ୍ଦେଶ୍ୟ । ଏହି ଅବସରରେ ନୂତନ ଢାଞ୍ଚାର ବଜେଟ ଉପସ୍ଥାପନ କରିବା ସଙ୍ଗେ ସଙ୍ଗେ ଏହି ବଜେଟ ଓ ଆକାଉଣ୍ଟକୁ ନୂତନ ରୂପରେଖ ଦେଇଥିବାରେ ଓଡ଼ିଶାର ଆକାଉଣ୍ଟାଣ୍ଟ ଜେନେରାଲ ଏବଂ ତାଙ୍କର ଡେପୁଟିମାନେ ସହଯୋଗ କରିଥିବାରୁ ସେମାନଙ୍କପ୍ରତି ମୁଁ ମୋର କୃତଜ୍ଞତା ଜ୍ଞାପନ କରୁଛି ।

33. କେତେକ ଗୁରୁତ୍ୱପୂର୍ଣ୍ଣ ଘଟଣାବଳୀ ଓ ପ୍ରଗତି ସଂପର୍କରେ ମୁଁ ଏ ଗୃହକୁ ଅବଗତ କରାଇବାପାଇଁ ଯୁକ୍ତିଯୁକ୍ତ ମନେ କରୁଛି । 1974 ଅପ୍ରିଲ ପହିଲାଠାରୁ ନୂତନ ଫୌଜଦାରୀ ବିଧାନ କାର୍ଯ୍ୟକାରୀ କରାଗଲା ଏବଂ ଏହା ସଙ୍ଗେ ସଙ୍ଗେ ଶାସନ ବିଭାଗଠାରୁ ବିଚାର ବିଭାଗ ପୃଥକୀକରଣ କାର୍ଯ୍ୟ ସଂପୂର୍ଣ୍ଣ ହେଲା । ଏହି ନୂତନ ବିଧାନର ବ୍ୟବସ୍ଥା ଅନୁଯାୟୀ

ଯୋଜନା ନିୟନ୍ତ୍ରଣରେ ବାହାରେ ଏକ ସ୍ୱାଧୀନ ଅଭିଯୋଜନା ସଂସ୍ଥା ରହିବ । ଏହି ବିଧାନର ଅନ୍ୟ ଏକ ବିଶେଷତ୍ୱ ହେଉଛି ଯେ ଯଦି କୌଣସି ଅଭିଯୁକ୍ତ ବ୍ୟକ୍ତି ଓକିଲ ନିଯୁକ୍ତିପାଇଁ ଅସମର୍ଥ ହୁଏ, ତେବେ ତାଙ୍କପାଇଁ ସରକାରୀ ଖର୍ଚ୍ଚରେ ଓକିଲ ନିଯୁକ୍ତ କରାଯିବ । ଏହି ଫୌଜଦାରୀ ବିଧାନର ସମସ୍ତ ବ୍ୟବସ୍ଥା କାର୍ଯ୍ୟକାରୀ କରାଗଲେ 1974-75 ମସିହାରେ ଅଧିକ 10 ଲକ୍ଷ ଟଙ୍କା ଆବଶ୍ୟକ ହେବ । ଏ ରାଜ୍ୟରେ ଏକ ମ୍ୟୁନିସିପାଲ ଅର୍ଥ କମିଶନ ପ୍ରତିଷ୍ଠା କରାଯାଇଛି । ମ୍ୟୁନିସିପାଲିଟି ଓ ଏନ୍‌ଏସି ଅନ୍ୟାନ୍ୟ ପୌର ସ୍ୱାୟତ୍ତ ସଂସ୍ଥାଗୁଡ଼ିକର ସମ୍ବଳ ସଂକ୍ରାନ୍ତରେ ଉକ୍ତ କମିଶନ ଅନୁଧ୍ୟାନ କରିବା ସଙ୍ଗେ ସଙ୍ଗେ ସଂପୃକ୍ତ ସଂସ୍ଥାଗୁଡ଼ିକପାଇଁ କିପରି ଅଧିକ ଅର୍ଥ ବ୍ୟବସ୍ଥା କରାଯାଇପାରିବ ସେ ସଂପର୍କରେ ସେମାନେ ସରକାରଙ୍କୁ ସୁପାରିଶ କରିବେ । ବିଶ୍ୱବିଦ୍ୟାଳୟ ସଂଶ୍ଳିଷ୍ଟ କଲେଜ ଶିକ୍ଷକମାନଙ୍କ ବେତନହାର ନେଇ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନ ଯେଉଁ ସୁପାରିଶ କରିଥିଲେ ତତ୍‌ସଂକ୍ରାନ୍ତୀୟ ଅନୁମୋଦନପତ୍ର ଭାରତ ସରକାରଙ୍କ ଶିକ୍ଷା ମନ୍ତ୍ରଣାଳୟରୁ ପାଇବା ପରେ ପରେ ତାହା କାର୍ଯ୍ୟକାରୀ କରିବା କେତେଦୂର ସମ୍ଭବ, ସେ ସଂପର୍କରେ ପରୀକ୍ଷା କରିବାକୁ ନୀତିଗତଭାବେ ରାଜ୍ୟ ସରକାର ସ୍ଥିର କରିଛନ୍ତି । ଚତୁର୍ଥ ବେତନ କମିଟିର ସୁପାରିଶ ସମେତ ଅନ୍ୟ ଦୁଇଗୋଟି ସରକାରୀ କମିଟିଙ୍କ ରିପୋର୍ଟ ରାଜ୍ୟ ମନ୍ତ୍ରୀ ପରିଷଦଙ୍କ ନିକଟରେ ଉପସ୍ଥାପିତ କରାଯାଇଛି ଓ ଏ ସଂକ୍ରାନ୍ତରେ ସରକାରୀ ନିଷ୍ପତ୍ତିକୁ ଅପେକ୍ଷା କରାଯାଇଛି ।

34. ମୋର ବକ୍ତବ୍ୟ ଶେଷ କରିବା ପୂର୍ବରୁ ମୁଁ ଏଠାରେ ଉଲ୍ଲେଖ କରିବାକୁ ଚାହେଁ ଯେ ପଞ୍ଚବାର୍ଷିକ ଯୋଜନା ବାବଦ ବ୍ୟୟ, ଆମର ଯୋଜନା ସଂସ୍ଥା ଏବଂ ବିଭିନ୍ନ କ୍ଷେତ୍ରରେ କାର୍ଯ୍ୟକାରୀ ହେଉଥିବା ସଂସ୍ଥା ପକ୍ଷରେ ଏକ ଗୁରୁତର ଆହ୍ୱାନ ସ୍ୱରୂପ । ଯୋଜନା କାର୍ଯ୍ୟକ୍ରମଗୁଡ଼ିକର ସଫଳତାପାଇଁ ତଳ ସ୍ତରରୁ କାର୍ଯ୍ୟକାରିତା ସଂପର୍କରେ ସଠିକ ବିବରଣୀ ସଂଗ୍ରହ ନିମନ୍ତେ ଏକ ବିଧିବଦ୍ଧ ତଥା ସୁସଙ୍ଗତ ସଂସ୍ଥା ଆବଶ୍ୟକ । କ୍ରମାଗତଭାବେ ବିଭିନ୍ନ ତଥ୍ୟ ସଂଗ୍ରହ ତଥା ସେଗୁଡ଼ିକର ମୂଲ୍ୟାୟନ ଫଳରେ ସେ କ୍ଷେତ୍ରର ତ୍ରୁଟିବିଚ୍ୟୁତିଗୁଡ଼ିକୁ ଚିହ୍ନିତ କରି ସେଗୁଡ଼ିକ ଦୂର କରିବାପାଇଁ ଆବଶ୍ୟକୀୟ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇପାରିବ । ଅଧିକ ବିଜ୍ଞାନ ସମ୍ମତ ତଥ୍ୟକୁ ଭିତ୍ତିକରି ଯୋଜନାର ଅଭିମୁଖ୍ୟରେ ଗୁଣାତ୍ମକ ଉନ୍ନତି ସାଧନ କରାଯାଇପାରିବ । ଏଥି ସଙ୍ଗେ ସଙ୍ଗେ ଯୋଜନାର ଟିକିନିଖି ରୂପରେଖ ନିର୍ଣ୍ଣୟ ତଥା ବିଭିନ୍ନ ବିଭାଗ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠାକରି ଓ ଯୋଜନାର କାର୍ଯ୍ୟକାରିତା ସଂପର୍କରେ ଯଥାଯଥ ସମୀକ୍ଷା ଓ ମୂଲ୍ୟାୟନ କରିହେବା ସମ୍ଭବ ହେବ । ଉପରୋକ୍ତ ଉଦ୍ଦେଶ୍ୟ ସାଧନ ଅଭିପ୍ରାୟରେ ରାଜ୍ୟର ଯୋଜନା ସଂସ୍ଥାକୁ ନୂତନ ରୂପ ଦିଆଯାଇଛି । ବିଭିନ୍ନ ପରିକଳ୍ପନା ଓ ବଡ ବଡ ନିର୍ମାଣ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିବା ଦାୟିତ୍ୱରେ ରହିଥିବା ସରକାରୀ ବିଭାଗଗୁଡ଼ିକପାଇଁ

କାର୍ଯ୍ୟ ସଂପାଦନ ବଜେଟ୍ (Performance Budget) କରାଯାଉଛି । କାର୍ଯ୍ୟ ସଂପାଦନ ବଜେଟ୍ ସଙ୍ଗେ ସଙ୍ଗେ ହିସାବରୁଦ୍ଧିକର ବିକେନ୍ଦ୍ରୀକରଣ ପରିବର୍ତ୍ତନ କରାଯିବା ଫଳରେ ପରିକଳ୍ପନାଗୁଡ଼ିକର ପ୍ରାରମ୍ଭିକ ପ୍ରସ୍ତୁତ ସମୟ ହ୍ରାସ କରାଯାଇପାରିବ ଏବଂ ବିଭିନ୍ନ ପରିକଳ୍ପନାପାଇଁ ଯୋଜନାବଦ୍ଧଭାବେ ସମ୍ବଳ ଯୋଗାଇଦେବା ସମ୍ଭବ ହେବ । ଏହା ଫଳରେ ପର୍ଯ୍ୟାୟକ୍ରମେ ଦକ୍ଷତାର ସହିତ ସ୍ୱଳ୍ପ ସମ୍ବଳର ସର୍ବାଧିକ ସଦୁପଯୋଗ ହୋଇପାରିବ ।

ସରକାରୀ ଅର୍ଥର ଉପଯୁକ୍ତ ବିନିଯୋଗପାଇଁ ଅଡିଟ ସଙ୍ଗଠନକୁ ସୁଦୃଢ଼ କରିବାପାଇଁ ମୁଁ ପ୍ରସ୍ତାବ ରଖିଛି ।

35. ବର୍ତ୍ତମାନର ଆର୍ଥିକ ପରିସ୍ଥିତି ଏବଂ ଆଗାମୀ ବର୍ଷମାନଙ୍କରେ ଆମମାନଙ୍କୁ ଯେଉଁ ଗୁରୁ ଦାୟିତ୍ୱ ସଂପାଦନ କରିବାକୁ ହେବ ସେ ସବୁର ଗୁରୁତ୍ୱ ମାନ୍ୟବର ସଦସ୍ୟମାନେ ହୃଦୟଙ୍ଗମ କରିପାରିଥିବେ ବୋଲି ମୋର ଆଶା । ଆମ ରାଜ୍ୟର ଅର୍ଥନୀତିରେ ମୌଳିକ ଢଙ୍ଗରେ ରାତାରାତି କୌଣସି ପରିବର୍ତ୍ତନ ଅଣାଯାଇ ପାରିବ ବୋଲି ମୁଁ ପ୍ରତିଶ୍ରୁତି ଦେଇପାରିବିନାହିଁ । ମୁଁ କେବଳ ପ୍ରତିଶ୍ରୁତି ଦେଇପାରେ ଯେ ଗଠନମୂଳକ ମନୋଭାବ ନେଇ ଅବଶ୍ୟକୀୟ ସହଯୋଗ ମିଳିଲେ ରାଜ୍ୟବାସୀଙ୍କପାଇଁ ଏକ ଉନ୍ନତ ତଥା ସମୃଦ୍ଧ ଓଡ଼ିଶା ଗଠନ ଦିଗରେ ମୁଁ ଓ ଆମ ସରକାର ଯେ କୌଣସି ପ୍ରକାରର ଉଦ୍ୟମରୁ ବିରତ ହେବୁନାହିଁ ।

36. ଅଧ୍ୟକ୍ଷ ମହୋଦୟ, ମୁଁ ଆପଣଙ୍କର ଅନୁମତି ନେଇ 1974-75 ମସିହାର ବାର୍ଷିକ ଅର୍ଥ ବିବରଣୀ ଏ ମହାମାନ୍ୟ ଗୃହର ବିବେଚନା ତଥା ଅନୁମୋଦନ ନିମନ୍ତେ ବର୍ତ୍ତମାନ ଉପସ୍ଥାପିତ କରୁଛି ।

## ପରିଶିଷ୍ଟ 'କ'

### ରାଜ୍ୟର ଋଣ ପରିସ୍ଥିତି

(ହଜାର ଟଙ୍କା ହିସାବରେ)

| ଋଣର ବିବରଣୀ | 1973 ଅପ୍ରେଲ ପହିଲାରେ ବକେୟା ଋଣ | 1974 ଅପ୍ରେଲ ପହିଲାରେ ବକେୟା ଅଟକଳ | 1975 ଅପ୍ରେଲ ପହିଲାରେ ବକେୟା ଅଟକଳ |
|---|---|---|---|
| (1) | (2) | (3) | (4) |
| 1. ସ୍ଥାୟୀ ଋଣ | 74,06,11 | 80,50,46 | 86,78,83 |
| 2. ଋଣ ଭଣ୍ଡାର (ଫ୍ଲୋଟିଂ ଡେଟ୍) | | 5,40,00 | 5,40,00 |
| 3. କେନ୍ଦ୍ର ସରକାରଙ୍କଠାରୁ ଋଣ । | 4,69,73,03 | 5,19,80,54 | 5,50,03,94 |
| 4. ଭାରତର ରିଜର୍ଭ ବ୍ୟାଙ୍କରୁ ଋଣ । | 3,01,21 | 3,85,24 | 4,72,69 |
| 5. ଭାରତ ଜୀବନ ବୀମା କର୍ପୋରେସନରୁ ଋଣ । | 12,66,01 | 13,35,61 | 14,22,01 |
| 6. ଜାତୀୟ ସମବାୟ ବିକାଶ କର୍ପୋରେସନରୁ ଋଣ । | 3,31,90 | 3,93,43 | 3,58,55 |
| 7. ଭାରତର ଖଦି ଓ ଗ୍ରାମୋଦ୍ୟୋଗ କମିଶନରଙ୍କଠାରୁ ଋଣ । | 12,00 | 12,00 | 12,00 |
| 8. ଭାରତର ଷ୍ଟେଟ ବ୍ୟାଙ୍କରୁ ଋଣ | | 4,00,00 | |
| ମୋଟ ... | 5,62,90,26 | 6,30,97,28 | 6,64,88,02 |

# ପରିଶିଷ୍ଟ 'ଖ'

## ରାଜ୍ୟ ଯୋଜନା

### 1974-75 ମସିହା ନିମନ୍ତେ ବଜେଟ୍ ବ୍ୟବସ୍ଥା

( ଲକ୍ଷ ଟଙ୍କା ହିସାବରେ )

| ଉନ୍ନୟନର ବାବଦ | ବଜେଟ୍‌ରେ ବରାଦଥିବା ଅର୍ଥର ପରିମାଣ |
|---|---|
| (1) | (2) |
| **(1) କୃଷି କାର୍ଯ୍ୟକ୍ରମ—** | |
| 1. କୃଷି ଉତ୍ପାଦନ | 4,06·69 |
| 2. ଭୂ-ସଂସ୍କାର | 61·00 |
| 3. ଆୟାକଟ୍ ଉନ୍ନୟନ | 50·00 |
| 4. କ୍ଷୁଦ୍ର ଜଳସେଚନ | 3,00·00 |
| 5. ମୃତ୍ତିକା ସଂରକ୍ଷଣ .. | 65·32 |
| 6. ଡେଆରି ଓ ଦୁଗ୍ଧ ଯୋଗାଣ ସମେତ ପଶୁପାଳନ | 60·00 |
| 7. ଜଙ୍ଗଲ | 92·00 |
| 8. ମତ୍ସ୍ୟ ଚାଷ | 43·25 |
| 9. ପଣ୍ୟାଗାର ଓ ବିକ୍ରିବଟା | 6·99 |
| ମୋଟ—(1) କୃଷି କାର୍ଯ୍ୟକ୍ରମ | 10,85·25 |
| **(2) ଗୋଷ୍ଠୀ ଉନ୍ନୟନ ଓ ସମବାୟ—** | |
| 1. ସମବାୟ | 2,20·00 |
| 2. ଗୋଷ୍ଠୀ ଉନ୍ନୟନ | 38·00 |
| 3. ପଞ୍ଚାୟତ | 10·00 |
| ମୋଟ—(2) ଗୋଷ୍ଠୀ ଉନ୍ନୟନ ଓ ସମବାୟ .. | 2,68·00 |

(ଲକ୍ଷ ଟଙ୍କା ହିସାବରେ)

| ଉନ୍ନୟନର ବାବଦ | ବଜେଟରେ ବରାଦଥିବା ଅର୍ଥର ପରିମାଣ |
|---|---|
| (1) | (2) |
| (3) ଜଳସେଚନ ଓ ବିଦ୍ୟୁତ୍— | |
| 1. ଜଳସେଚନ | 12,00·00 |
| 2. ବନ୍ୟା ନିୟନ୍ତ୍ରଣ | 70·00 |
| 3. ବିଦ୍ୟୁତ୍ | 22,25·00 (କ) |
| ମୋଟ—(3) ଜଳସେଚନ ଓ ବିଦ୍ୟୁତ୍ | 34,95·00 |
| (4) ଶିଳ୍ପ ଓ ଖଣି— | |
| 1. ବୃହତ୍ ଓ ମଧ୍ୟମ ଧରଣର ଶିଳ୍ପ | 1,22·00 |
| 2. ଖଣିଜ ସମ୍ପଦର ବିକାଶ | 85·00 |
| 3. ଗ୍ରାମ୍ୟ ଓ କ୍ଷୁଦ୍ର ଶିଳ୍ପ | 1,03·03 |
| ମୋଟ—(4)—ଶିଳ୍ପ ଓ ଖଣି | 3,10·03 |
| (5) ପରିବହନ ଓ ଯୋଗାଯୋଗ— | |
| 1. ରାସ୍ତା | 4,30·00 |
| 2. ରାସ୍ତା ପରିବହନ | 43·00 (ଖ) |
| 3. ଅଭ୍ୟନ୍ତରୀଣ ଜଳ ପରିବହନ | 1·00 |
| 4. ପର୍ଯ୍ୟଟନ | 10·00 |
| ମୋଟ—(5) ପରିବହନ ଓ ଯୋଗାଯୋଗ .. | 4,84·00 |

(ଲକ୍ଷ ଟଙ୍କା ହିସାବରେ)

| ଉନ୍ନୟନର ବାବଦ | ବଜେଟରେ ବରାଦଥିବା ଅର୍ଥର ପରିମାଣ |
|---|---|
| (1) | (2) |
| (6) ସମାଜ ସେବା— | |
| 1. ସାଧାରଣ ଶିକ୍ଷା | 4,90·00 |
| 2. ବୈଷୟିକ ଶିକ୍ଷା | 18·97 |
| 3. ସାଂସ୍କୃତିକ କାର୍ଯ୍ୟକ୍ରମ | 10·00 |
| 4. ସ୍ୱାସ୍ଥ୍ୟ | 2,06·66 |
| 5. ଜଳ ଯୋଗାଣ | 2,35·00 |
| 6. ବାସଗୃହ ନିର୍ମାଣ | 1,00·00 |
| 7. ସହର ଉନ୍ନୟନ | 10·00 |
| 8. ଅନୁନ୍ନତ ଶ୍ରେଣୀମାନଙ୍କ କଲ୍ୟାଣ | 1,00·00 |
| 9. ସମାଜ କଲ୍ୟାଣ | 2·50 |
| 10. ଶ୍ରମ ଓ ଶ୍ରମିକ କଲ୍ୟାଣ | 7·00 |
| 11. କାରିଗରି ତାଲିମ | 7·00 |
| 12. ଜନ ସହଯୋଗ | 1·00 |
| 13. ପୁଷ୍ଟି କାର୍ଯ୍ୟକ୍ରମ | 1,50·00 |
| ମୋଟ—(6) ସମାଜ ସେବା | 13,38·13 |

## 1974-75 ବଜେଟ ସମ୍ବନ୍ଧରେ ସାଧାରଣ ଆଲୋଚନା

7-6-74

ବହୁ ମାନ୍ୟବର ସଭ୍ୟ ବଜେଟ୍‌ର ସାଧାରଣ ଆଲୋଚନାରେ ଅଂଶ ଗ୍ରହଣ କରିଛନ୍ତି । ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଛି । ଆଲୋଚନା ପ୍ରସଙ୍ଗରେ କେତେକ ମାନ୍ୟବର ସଭ୍ୟ ଉପାଦେୟ ପରାମର୍ଶ ଦେଇଛନ୍ତି । ଆଉ କେତେକ ମାନ୍ୟବର ସଭ୍ୟ ସେମାନଙ୍କର ଭାଷଣରେ କେତେଗୁଡ଼ିଏ ପ୍ରଶ୍ନ ଉଠାଇଛନ୍ତି ମୁଁ ସେଗୁଡ଼ିକ ଯଥାସାଧ୍ୟ ଉତ୍ତର ଦେବି । ମୋ ପୂର୍ବରୁ ମାନ୍ୟବର ମୁଖ୍ୟମନ୍ତ୍ରୀ ବଜେଟ୍ ଆଲୋଚନା ପ୍ରସଙ୍ଗରେ ବିରୋଧୀଦଳର ନେତାଙ୍କ ଭାଷଣ ଉପରେ ସ୍ପଷ୍ଟୀକରଣ ଦେଇଛନ୍ତି । ସେ ପ୍ରଶ୍ନ ଉପରେ ମୁଁ ଆଉ ଅଧିକ ସମୟ ନେବି ନାହିଁ । କେତେକ ମାନ୍ୟବର ସଭ୍ୟ କହିଛନ୍ତି ଯେ ଆଗରୁ ଯେଉଁ ବଜେଟ୍ ଉପସ୍ଥାପିତ ହେଉଥିଲା, ଏ ବଜେଟ୍‌ରେ ତା'ର କିଛି ବ୍ୟତିକ୍ରମ ହୋଇଛି । ବ୍ୟତିକ୍ରମ ଭିତରେ ଆପଣ ଦେଖିବେ ଆମର ଗତ 5 ବର୍ଷ ଧରି non-plan deficit ହୋଇଆସିଛି । ଗତ 5 ବର୍ଷର non-plan deficit ହେଉଛି 155 କୋଟି ଟଙ୍କା । ତାକୁ ଆମକୁ ଋଣକରି ଭରଣା କରିବାକୁ ପଡ଼ୁଥିଲା । କିନ୍ତୁ ଏ ବର୍ଷ ସେ କଥା ହୋଇନାହିଁ । ଏ ବର୍ଷ non-plan ବାବଦରେ ଅଧିକ 14·59 କୋଟି ଟଙ୍କା ଆମକୁ ଦେଇଛନ୍ତି । ପୂର୍ବ ବର୍ଷମାନଙ୍କରେ ଋଣ କରି non-plan deficit ଆମକୁ ଭରଣା କରିବାକୁ ପଡ଼ୁଥିଲା । କେତେକ ମାନ୍ୟବର ସଭ୍ୟ କହିଛନ୍ତି ଯେ ଏବର୍ଷ ତା'ର ପରିବର୍ତ୍ତନ ହୋଇଛି । ଆମର accumulated loan ହେଉଛି 34 କୋଟିରୁ ଅଧିକ ଟଙ୍କା । ଭାରତ ସରକାର ଆମକୁ plan ବାବଦରେ 32 କୋଟି ଟଙ୍କା ଦେଉଛନ୍ତି । ତା'ଭିତରେ 9 କୋଟି ହେଉଛି grant, 23 କୋଟି ହେଉଛି loan. ଏଇଟା କେବଳ ଆମ ରାଜ୍ୟପାଇଁ ପ୍ରଯୁଜ୍ୟ ନୁହେଁ । ଭାରତର ଅନ୍ୟାନ୍ୟ ରାଜ୍ୟପାଇଁ ଠିକ୍ ଏହି ନିୟମ । ଏହାଛଡ଼ା ଆମେ ଖୋଲା ବଜାରରୁ ଆଉ 8 କୋଟି ଟଙ୍କା ଋଣ ଆଣିଛୁ । ଆମର negotiated loan ହେଉଛି 2 କୋଟି 60 ଲକ୍ଷ ଟଙ୍କା । ଏହିପରି ଆମର 32 କୋଟିରୁ ଅଧିକ ଋଣ ହୋଇଛି । ଆପଣ ଦେଖିବେ ଆମର capital accountରେ 4·43 କୋଟି ଟଙ୍କା ଅଛି । ଏବର୍ଷ ଶେଷରେ ଆମର accumulated loan ହେଉଛି 34 କୋଟି ଟଙ୍କା । ଆମ capital accountରେ plan ବାବଦରେ 40·43 କୋଟି ଟଙ୍କା ଆଣିଛୁ । ଅନ୍ୟାନ୍ୟ ପ୍ରଦେଶରେ ମଧ୍ୟ ଏହା ହୋଇଛି । ଏଇଟା ହେଉଛି sound financial principle. ଯେତିକି ଋଣ ଆମେ ଆଣୁଛୁ ତା'ଠାରୁ ଅଧିକ ଟଙ୍କା ଆମେ invest କରୁଛୁ । ଋଣ ଅପେକ୍ଷା ଯଦି ଆମେ କମ୍ ଟଙ୍କା invest କରନ୍ତୁ ବା ଆଦୌ invest କରନ୍ତୁ ନାହିଁ ସେଇଟା sound financial principle ହୁଅନ୍ତା ନାହିଁ । Plan ବାବଦରେ ଆମେ 40·43 କୋଟି ଟଙ୍କା capital ପାଉଛୁ । ଏହା ସମ୍ଭବ ହୋଇପାରିଲା 6th Finance Commission Award ଯୋଗୁଁ । Sixth Finance Commission have recommended devaluation

of rupees 577 crores against the 5th Finance Commissions recommendation of rupees 287 crores. Sixth Finance Commission have recommended debt relieve grant of rupees 157 crores. ଏଇଟା ହେଉଛି grant-in-aid । ପୂର୍ବରୁ ଏ ବାବଦରେ ଯେଉଁ grant ଦିଆଯାଇଥିଲା ଏହା ତା'ଠାରୁ ଅଧିକ । ସେଥିପାଇଁ ଆମର ଆର୍ଥିକ ପରିସ୍ଥିତି କିଛିଏ ସ୍ୱଚ୍ଛଳ ହୋଇଛି । ମାନ୍ୟବର ସଭ୍ୟ କହିଲେ ଯେ ବଜେଟ୍ ଯଦି surplus ହୋଇଥାନ୍ତା ତାହାହେଲେ ଭଲ ହୋଇଥାନ୍ତା । Surplus budget ହୋଇଥିଲେ ଆମେ ଆନନ୍ଦିତ ହୋଇଥାନ୍ତେ କିପରି ? ବରଂ balance budget ହୋଇଥିଲେ ଆମେ ଆନନ୍ଦିତ ହୋଇଥାନ୍ତେ । ଉତ୍ପାଦନ ବଢ଼ାଇବାପାଇଁ ଓ ରାଜ୍ୟର ଅନ୍ୟାନ୍ୟ ସମସ୍ୟା ସମାଧାନ କରିବାପାଇଁ deficit budget କରାଯାଇଛି । ଏଥିରେ ଆତଙ୍କିତ ହେବାର କିଛି କାରଣ ନାହିଁ । କିନ୍ତୁ ପ୍ରତିବର୍ଷମାନଙ୍କଭଳି ଆମେ କେବଳ non-plan sizeରେ deficit କରିଥାଆନ୍ତୁ, ତା'ହେଲେ ଆତଙ୍କର କାରଣ ହୋଇଥାଆନ୍ତା । ଯେପରି ଘର ଚଳାଇବାପାଇଁ ବାହାରୁ ଧାର ଆଣି ଘର ଚଳାଇଲେ ଯେପରି ଆତଙ୍କର କାରଣ ହେବ ସେପରି ହୋଇଥାଆନ୍ତା । ବର୍ତ୍ତମାନ ଆମେ plan sizeରେ ଅଧିକ ଟଙ୍କା ଖଟାଇବାପାଇଁ managerial deficit ଦେଖା ଦେଇଛି । ହୁଏତ ମାନ୍ୟବର ସଭ୍ୟ ଯାହା କହିଲେ ଆମର ଯେଉଁ ବକେୟା ପଡ଼ିଛି non-time ବାବଦରେ ଅନ୍ୟାନ୍ୟ ମାନଙ୍କଠାରୁ royalty ବାବଦରେ ଯାହାସବୁ ରହିଛି ଆମେ ଯଦି ତାକୁ ଆଦାୟ କରିଦେଇ ପାରିବା କିମ୍ବା ଆମର tightening of belt କରିଦେବା, ଆମର ଯେଉଁ deficit ଦେଖାଦେଇଛି ବର୍ଷ ଶେଷକୁ ତାକୁ meet କରିଦେଇ ପାରିବା । ଆଉ ଜଣେ ମାନ୍ୟବର ସଭ୍ୟ କେନ୍ଦ୍ରପ୍ରଦ ଅର୍ଥ ସମ୍ପର୍କରେ ପ୍ରଶ୍ନ ଉଠାଇଥିଲେ । ମୁଖ୍ୟମନ୍ତ୍ରୀ ଯାହା କହିଛନ୍ତି ମୁଁ ଆଉ ଅଧିକ କିଛି କହୁ ନାହିଁ । କେବଳ ଗୋଟାଏ ହିସାବ ତାଙ୍କ ପାଖରେ ରଖିଦେବାକୁ ଚାହୁଁଛି । ମାନ୍ୟବର ବିରୋଧିଦଳର ନେତା କହିଲେ ଭୁଲ ତଥ୍ୟ ଯୋଗାଇ ଦିଆଯିବା ଫଳରେ ଆମଠାରୁ ସହଯୋଗ ପାଇପାରିଲେ ନାହିଁ । ସେ ବର୍ତ୍ତମାନ ଏ ଗୃହରେ ନାହାନ୍ତି । କିନ୍ତୁ ଅନ୍ୟ ବନ୍ଧୁମାନେ ଯେଉଁମାନେକି ଏକଥା ଉପରେ ଜୋର ଦେଇଛନ୍ତି ତାଙ୍କପାଇଁ ମୁଁ ଏ ହିସାବଟି ଦେଉଛି ।

*Provisional profit and loss account for the year 1973-74 ending the 31st April 1974*

| | |
|---|---|
| Total production as intimated by the Chief Conservator of Forests for the year 1973-74. | 375 lakh quintals |

| | |
|---|---|
| Sold and despatched in 1973-74. | 268 lakh quintals |
| Closing stock as on the 30th April 1974. | 1·9 ,, |
| Closing stock valued at the rate of Rs. 200 per quintal. | Rs. 1·78 lakhs |
| For this expenditure by Forest Department for 3·57 quintals, collection charges etc. at the rate of Rs.125 per quintal. | |
| Here collection charges include total cost of production this comes to. .. | Rs. 446·25 lakhs |
| Royalty on Kendu Leave payable to Government at the rate of Rs. 100 per quintal. .. | Rs. 250 lakhs |

It comes about .. Rs. 3·57 lakhs

So the total comes to .. Rs. 8·35 lakhs

Gross profit comes to .. Rs. 6·00 lakhs

| | |
|---|---|
| Administrative charges of the Corporation and overhead charges including establishment. .. | Rs. 25 lakhs |
| Bank interest | Rs. 20 lakhs |
| Total | Rs. 45 lakhs |
| Net profit | Rs. 25·60 lakhs |
| Gross profit ... | Rs. 70·60 lakhs |

ଏଥିରୁ ଆପଣ ଦେଖିପାରିବେ ଆମର କେନ୍ଦୁପତ୍ର nationalisation ହେଲାପରେ 3 କୋଟି Royalty ଆମେ ପାଉଛୁ । ସେଥିରୁ establishment charge ଏବଂ ଅନ୍ୟାନ୍ୟ ବାଦ ଦେଇ ଏତିକ ପାଉଛୁ । ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ ।

ବହୁତ ମାନ୍ୟବର ସଭ୍ୟ ଆଉ କୋଟିଏ କଥା ଉତ୍ଥାପନ କରିଛନ୍ତି । ସେମାନେ କହୁଛନ୍ତି ଆଦିବାସୀ ହରିଜନ ଶ୍ରେଣୀର ଲୋକେ ଯେଉଁମାନେ ଅତି ନିମ୍ନଶ୍ରେଣୀରେ ଅଛନ୍ତି, ସେମାନଙ୍କପାଇଁ ବିଶେଷ କିଛି କରାଯାଇ ନାହିଁ । ଜଣେ ମାନ୍ୟବର ସଭ୍ୟ କହିଲେ ଆଦିବାସୀ ହରିଜନମାନଙ୍କପାଇଁ କେବଳ 10 ଲକ୍ଷ ଟଙ୍କା ବଜେଟ୍‌ରେ ରହିଛି । ମୁଁ ମାନ୍ୟବର ସଭ୍ୟ ମାନଙ୍କର ଅବଗତି ନିମନ୍ତେ କହିଦେବାକୁ ଚାହେଁ ଯେ କେବଳ 100 ଲକ୍ଷ ଟଙ୍କା ଯେ ରଖାଯାଇଛି ତାହା ନୁହେଁ । ତାହାଛଡ଼ା Drought-prone Programme ନାଆଁରେ 2ଟି ଯୋଜନା ହରିଜନ, ଆଦିବାସୀମାନଙ୍କପାଇଁ କଳାହାଣ୍ଡି, ଫୁଲବାଣୀ ଜିଲ୍ଲାରେ କାର୍ଯ୍ୟକାରୀ ହେଉଛି, ଏଥିରେ ସ୍ଥାନୀୟ ଆଦିବାସୀ, ହରିଜନମାନେ ଉପକୃତ ହେଉଛନ୍ତି । ଏ programme ଭିତରେ Minor Irrigation, Rural Roadର ବ୍ୟବସ୍ଥା ହେଉଛି । ତା'ଛଡ଼ା Tribal Development Agency ଦ୍ୱାରା କେତେକ programme କାର୍ଯ୍ୟକାରୀ ହେଉଛି, ଗୋଟାଏ ହେଲା ପାରଳା-ଖେମୁଣ୍ଡି, ଆଉ କୋଟିଏ ଗୁଣପୁର । କେବଳ ଆଦିବାସୀମାନଙ୍କ ଉନ୍ନତିପାଇଁ ଏହା କରାଯାଉଛି । ଏହାଛଡ଼ା ଆଉ 2ଟି କେନ୍ଦୁଝର ଏବଂ ଅନ୍ୟ ଏକ ସ୍ଥାନରେ ହେବାକୁ ଯାଉଛି । ତା'ଛଡ଼ା ଅନ୍ୟ କେତେକ Tribal Development Agency ମଧ୍ୟ କାର୍ଯ୍ୟକାରୀ ହେବାକୁ ଯାଉଛି । ତା'ଛଡ଼ା ଗଞ୍ଜାମ ଜିଲ୍ଲାର ଚନ୍ଦ୍ରଗିରିଠାରେ ସୌରା-ମାନଙ୍କର Development Agency କରାଯାଉଛି, ତଦ୍ୱାରା ସେମାନଙ୍କର ଆର୍ଥିକ ଉନ୍ନତି କରିବାପାଇଁ ସବୁ ପ୍ରକାର ଉନ୍ନତି ମୂଳକ କାର୍ଯ୍ୟ ଆରମ୍ଭ ହୋଇଛି । ତେଣୁ ଯାହା ବୁଝାଯାଉଛି କେବଳ ଶହେ ଲକ୍ଷ ଟଙ୍କା ରଖାଯାଇଛି ତାହା ନୁହେଁ । ବିଭିନ୍ନ ଯୋଜନା ଜରିଆରେ ସେମାନଙ୍କର ଉନ୍ନତି କଳ୍ପନା କରାଯାଇଛି ଏବଂ କାର୍ଯ୍ୟକାରୀ ମଧ୍ୟ ହେଉଛି । ବୁଝାଯାଉଛି ସରକାରଙ୍କ ଟଙ୍କା ଅନେକ ସମୟରେ ଖର୍ଚ୍ଚ ହୋଇପାରୁ ନାହିଁ । ବିଶେଷକରି ଆମର ଶ୍ରେଷ୍ଠ ବୃଦ୍ଧିପାଇଁ ଯାହା ଟଙ୍କା ଖର୍ଚ୍ଚ କରିବା କଥା ତାହା ନ ହେବା ଫଳରେ ସେମାନଙ୍କର ଉନ୍ନତି ହୋଇପାରୁ ନାହିଁ ମୁଁ କେତେକ ହିସାବ ଆପଣଙ୍କ ଆଗରେ ରଖିବି । ସେଥିରୁ ଜଣାଯିବ Small Farmers Development ପାଇଁ କପଣ କାର୍ଯ୍ୟ କରାଯାଉଛି । 1974 ମାର୍ଚ୍ଚ ସୁଦ୍ଧା All-India basisରେ 46 ଟି S. F. D. A. କାର୍ଯ୍ୟ କରୁଛନ୍ତି । ଆମର ପୂର୍ବାଞ୍ଚଳରେ 12 ଟି ରହିଛି, ସେଥିମଧ୍ୟରୁ ଓଡ଼ିଶାରେ ତିନୋଟି S. F. D. A. କାର୍ଯ୍ୟ କରୁଛି । ସର୍ବଭାରତୀୟ ସ୍ତରରେ 2,057 ଟି ଏବଂ

Eastern Zone ରେ 12 ଟି କାମ କରୁଛନ୍ତି । Eastern Zone ରେ 12ଟି ପାଇଁ ଥିଲା 632 ଲକ୍ଷ ଆମର 3 ଟି ପାଇଁ ଥିଲା 220 ଲକ୍ଷ । Amount utilised ସର୍ବଭାରତୀୟ କ୍ଷେତ୍ରରେ 2757 ଲକ୍ଷରୁ 2541 ଲକ୍ଷ ଖର୍ଚ୍ଚ ହୋଇଛି । Eastern Zoneରେ 632 ଲକ୍ଷ ଥିଲା । ଖର୍ଚ୍ଚ ହୋଇଛି 561 ଲକ୍ଷ । ଆମର ଥିଲା 220 ଲକ୍ଷ ଏବଂ ପୂରା amount ଖର୍ଚ୍ଚ ହୋଇଛି । Average per agency ଦେଖିଲେ ଓଡ଼ିଶାରେ ସବୁଠାରୁ ଅଧିକ । ସର୍ବଭାରତୀୟ ସ୍ତରରେ 59·94 । Eastern Zoneରେ 52·68. ଓଡ଼ିଶାରେ 73·42. Beneficiaries ହେଲେ ଓଡ଼ିଶାରେ 1·34 lakhs small farmers. ସେହିପରି participants enrolled as Co-operative members ଆମର ହେଲେ 80 ହଜାର । Beneficiaries under improved agricultural practices 28. Number of dry wells ଆମର ସବୁଠାରୁ ଅଧିକ । ସର୍ବଭାରତୀୟ ସ୍ତରରେ 93,718 ଟି ସ୍ଥିର ହୋଇଥିଲା । ପୂର୍ବାଞ୍ଚଳପାଇଁ 32,572 ଟି ସ୍ଥିର ହୋଇଥିଲା । କିନ୍ତୁ ଆମର 3 ଟି agency ରେ 19,205 ଟି dug wells ହୋଇପାରିଛି । Average per agency ସର୍ବଭାରତୀୟ ସ୍ତରରେ 2,037 । Eastern Zone ପାଇଁ 2,714 କିନ୍ତୁ ଆମ ରାଜ୍ୟର average ହେଲା 6,401. ଏହି ହିସାବରେ ଆମ dug wells ହୋଇପାରିଛି ଠିକ୍ ସେହିଭଳି M. F. D. A. ପାଇଁ ଯାହା ସବୁ ଟଙ୍କା ମିଳିଥିଲା ତାହା ଖର୍ଚ୍ଚ ହୋଇଛି । ତେଣୁ marginal ଚାଷୀଙ୍କପାଇଁ ଯଥେଷ୍ଟ ହୋଇନାହିଁ, ତାହା ନୁହେଁ । ଆଉ ଦୁଇଟି ଅଞ୍ଚଳ ଆମର ନିକଟରେ ଘୋଷିତ ହେବ ।

ବାଚସ୍ପତି ମହାଶୟ, କାଲି ଉପସ୍ଥିତ ମାନ୍ୟବର ସଭ୍ୟ ଧାନ ଦର ବିଷୟରେ କହୁଥିଲେ । ଭାରତ ସରକାର ତା 1-11-1973 ଖରିଫରେ ଧାନ ଦର ସ୍ଥିର କଲେ । ସେତେବେଳଠାରୁ procurement ଆରମ୍ଭ ହେଲା । ଉପସ୍ଥିତ ସଭ୍ୟ ଯାହା କହିଲେ ଚାଷୀମାନେ କ୍ଷତିଗ୍ରସ୍ତ ହେଲେ କାରଣ ପୂର୍ବ rateରେ ଚାଷୀଙ୍କଠାରୁ ଧାନ ସଂଗ୍ରହ ହେଲା, ତାହା ନୁହେଁ । ତା 1-11-1973 ରଖରୁ ଭାରତ ସରକାର ସବୁ ରାଜ୍ୟପାଇଁ ଧାନ ଦର ସ୍ଥିର କରନ୍ତି । ତା'ମଧ୍ୟ କମିତ ହୁଏ, ମାନ୍ୟବର ସଭ୍ୟ ଜାଣିଛନ୍ତି । ଆମର Price Fixation Committee ଅଛି । ସେମାନେ ବିଭିନ୍ନ ରାଜ୍ୟର ଚାଷୀ ପ୍ରତିନିଧିଙ୍କ ସହିତ ଆଲୋଚନା କରି ଭାରତ ସରକାରଙ୍କୁ ମତାମତ ଦିଅନ୍ତି । ତାହାପରେ ଭାରତ ସରକାର ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀ ଏବଂ ଖାଦ୍ୟ ମନ୍ତ୍ରୀଙ୍କ ସହିତ ପରାମର୍ଶ କରି ଦର ଧାର୍ଯ୍ୟ କରନ୍ତି । କାହାରି ମର୍ଜିରେ ଦର ଧାର୍ଯ୍ୟ ହୁଏ ନାହିଁ । ଚାଷୀ ଅଧିକ ଦୁଇ ପଇସା ପାଇବ ବୋଲି ଦର ଧାର୍ଯ୍ୟ ହୋଇଛି । ମୋଟା, ସରୁ ଏବଂ ଅତି ସରୁପାଇଁ 70,72 ଏବଂ 75 ଟଙ୍କା ସ୍ଥିର ହୋଇଛି । ତା 1-11-1973 ରରୁ ଚାଷୀଙ୍କଠାରୁ

ଯାହା ସଂଗ୍ରହ ହୋଇଛି, ଏହି ଦରରେ ହୋଇଛି । ଏଣୁ ଚାଷୀ କ୍ଷତିଗ୍ରସ୍ତ ହେଉନାହିଁ । କେତେକ କାରଣରୁ ତା 1-11-1973 ରିଖରୁ ଚାଉଳ ଦର ଧାର୍ଯ୍ୟ କରାଯାଇପାରିଲା ନାହିଁ । ଏପ୍ରିଲ ମାସରେ ସେଇଟା ହେଲା । ଆପଣ ପଚାରି ପାରନ୍ତି, ଏତେଦିନ ପର୍ଯ୍ୟନ୍ତ କ'ଣ ହେଲା । ପୂର୍ବ ବର୍ଷର ଯାହା carried over stock ଥିଲା, ପୂର୍ବ ବର୍ଷ rate ଅନୁସାରେ ଆମେ ବିଭିନ୍ନ ସ୍ଥାନର ଚାହିଦା ମେଣ୍ଟାଇଲୁ । ତା'ପରେ ଏପ୍ରିଲ ମାସରୁ ନୂଆ ଦର ଆସିଲା । ଭାରତ ସରକାରଙ୍କ ଧାନ ଦର ଅନୁସାରେ ଆମର costing କୁ ମିଶାଇ ଚାଉଳ ଦର ମୋଟା ପାଇଁ ହେଲା 142 ଟଙ୍କା । ସେଥିରୁ କିଛି ରିହାତି ଦେଇ ଆମେ କଲୁ 130 ଟଙ୍କା ତା'ପରେ ପୁଣି କଲୁ 120 ଟଙ୍କା ସରୁ ଚାଉଳ ହେଲା 146ଟଙ୍କା per quintal, ତାହାପରେ ଗୋଟିଏ ଟଙ୍କା ରିହାତି ଦେଇ କଲୁ 145ଟଙ୍କା । ଏ ବିଷୟରେ dispute ଯାହା ହୋଇଛି ସେଥିପାଇଁ ଗୋଟିଏ କମିଟି ବସିଛି । ସେମାନେ ତାହା ଦେଖିବେ । କାରଣ ବହୁତ ମାନ୍ୟବର ସଭ୍ୟ costing ବିଷୟରେ ଆପତ୍ତି କରିଛନ୍ତି । ମୁଁ ଆଶା କରୁଛି, ଉତ୍କ୍ରୋଳର ମାନ୍ୟବର ସଭ୍ୟଙ୍କ ଆଶଙ୍କା ଦୂର ହୋଇପାରିବ ।

ସେ ପୁଣି ତାଙ୍କ ନିଜ ଅଞ୍ଚଳ ବିଷୟରେ କହିଛନ୍ତି ଯେ ସେଠାରେ କୁଆଡ଼େ 7 କୁଇଣ୍ଟାଲ ଧାନ ସଂଗ୍ରହ ହୋଇଥିଲା । ସେଥିପାଇଁ ଯେଉଁ ମନ୍ତ୍ରୀମାନେ procurement drive କରିଥିଲେ, ତାଙ୍କ ବିରୁଦ୍ଧରେ ସ୍ୱର ଉଠାଇଛନ୍ତି । ଆମର 15 ଦିନପାଇଁ special procurement drive ହୋଇଥିଲା । 3 ଲକ୍ଷ ଟନ୍ ଚାଉଳରୁ ଦେଢ଼ଲକ୍ଷ ଟନ୍ procure ହୋଇପାରିଥିଲା । ଆଉ ବାକି ଯାହା ହେଲା ଏହି 15 ଦିନରେ ହେବ, ଏ କଥା ନୁହେଁ । It was just to give a push to the procuremeut. ଏବଂ ଏ 15 ଦିନକୁ de-hoarding drive କହୁଥିଲେ ଚଳେ । ଏହି 15 ଦିନରେ ଚାଉଳ ଆକାରରେ 11·058 ଟନ୍ procure ହୋଇଛି । ସେଥିପାଇଁ ଟଙ୍କା ମଧ୍ୟ ଦିଆସରିଛି । 15 ତାରିଖ ଭିତରେ ଯେଉଁଟା lift ନ ହୋଇ ପାରିଲା, ତା'ର ପରିମାଣ ହେଉଛି 5,879 ଟନ୍ । The drive has given momentum to procurement and Government have extended this special procurement drive till the end of June, 1974. Total procurement in the State during the month of May, 1974 in terms of rice ଆମର ହୋଇଛି 24,123 ଟନ୍, ଅର୍ଥାତ 2 ଲକ୍ଷ 41 ହଜାର 230 କୁଇଣ୍ଟାଲ । ଆମର ସଂଗ୍ରହ ଚାଲିଛି ଏବଂ ତାଲୁଅ ପରେ ତାଲୁଅ ଅଞ୍ଚଳରୁ ଆମେ ଅଧିକ ପରିମାଣରେ ସଂଗ୍ରହ କରିପାରିବା ଏବଂ ଆମର ଯେଉଁ 3 ଲକ୍ଷ ଟନ୍ ଲକ୍ଷ୍ୟ ରଖାଯାଇଛି ଆପଣମାନଙ୍କ ସହଯୋଗ ମିଳିଲେ ଆମେ

ନଷ୍ଟିତ ଭାବରେ ତାହା ସଂଗ୍ରହ କରିପାରିବା । ଏ ସମ୍ପର୍କରେ କାଲି ଖାଦ୍ୟ ମନ୍ତ୍ରୀ ଏ ଗୃହରେ କହିଛନ୍ତି । ଓଡ଼ିଶାର ପ୍ରତି ମାସରେ ଆବଶ୍ୟକତା 3 ଲକ୍ଷ ଟନ୍ ଏବଂ ବର୍ଷରେ ଆମର consumption ହେଉଛି 36 ଲକ୍ଷ ଟନ୍ । ଆମର total procurement ହେଉଛି 3 ଲକ୍ଷ ଟନ୍ । ତା'ଭିତରୁ off-take ଏକ ଲକ୍ଷ ସ୍ୱଦୁଇଟାର ଟନ୍ last year ଥିଲା । ଏ ବର୍ଷ 1 ଲକ୍ଷ 80 ହଜାର ଟନ୍ ହେବ ବୋଲି ଆମେ ହିସାବ କରିଛୁ ।

*　　　*　　　*　　　*

ଆପଣ ଜାଣନ୍ତି 36 ଲକ୍ଷ ଟନ୍ consumption ବାହାରେ seed wastage ଏବଂ ଅନ୍ୟାନ୍ୟ କଥା ଅଛି । ଏହିପରି ଭାବରେ ରାଜ୍ୟରେ 41 ଲକ୍ଷ ଟନ୍ production ହେଉଛି । ତା'ବାହାରେ ରବି ପ୍ରାୟ 4/5 ଲକ୍ଷ ଟନ୍ ହେଉଛି । ସେଥିପାଇଁ ଆମର marketable surplus 12 ଲକ୍ଷ ଟନ୍ ହେଉଛି । ଆମର ଯେଉଁ ଭୂ-ସ୍ୱତ୍ୱ ପୁନଃ ପ୍ରବର୍ତ୍ତନ କରାଯାଉଛି ତାକୁ ବିରୋଧ ଦଳର ନେତା ଓ ମାନ୍ୟବର ଘଣ୍ଟୋଲିର ସଭ୍ୟଙ୍କ ଛଡ଼ା ଅନ୍ୟ କେହି ବିରୋଧ କରିଥିଲେ, ମୁଁ କିଛି ମନେ କରି ନ ଥାନ୍ତି । ଭୂ-ସ୍ୱତ୍ୱ ଉଠିଲାବେଳେ ବିରୋଧ ଦଳର ନେତା ଓ ଘଣ୍ଟୋଲିର ମାନ୍ୟବର ସଭ୍ୟ ଆମେ ସମସ୍ତେ ଗୋଟିଏ ଦଳରେ ଥିଲୁ ଏବଂ ଏହି ବିଧାନ ସଭାରେ ତା'ର ବିରୋଧ କରିଥିଲୁ ।

*　　　*　　　*　　　*

ଆମେ ସମସ୍ତେ ଗୋଟିଏ ଦଳରେ ଥାଇ ବିରୋଧ କରୁଥିଲୁ । କାରଣ ମୁଖ୍ୟମନ୍ତ୍ରୀ ଯାହା କହିଥିଲେ କେବଳ ବଡ଼ ବଡ଼ ଜମି ମାଲିକମାନେ ଏଥିରୁ ଉପକୃତ ହୋଇଛନ୍ତି ।

*　　　*　　　*　　　*

ଭୂସଂସ୍କାର କାର୍ଯ୍ୟକାରୀ ହେବ, ଏଇଟା ବି ସ୍ୱାଭାବିକ । ତା' ପରେ ସିଲିଂ କଥା ଆପଣ ଜାଣନ୍ତି ।

*　　　*　　　*　　　*

6ଷ୍ଠ ଅର୍ଥ କମିଶନ ସବୁ ରାଜ୍ୟପାଇଁ ଯାହା ଦେଲେ ତାହା ଗୋଟିଏ ମାତ୍ରରେ ଦେଇଛନ୍ତି । ସେହି ଦୃଷ୍ଟିରୁ ଆମେ money value କଥା କହିଲେ କଣ ହେବ । ମୁଁ କହିବାକୁ ଚାହେଁ ଯେ ଆମର ଗୋଟିଏ advantageous position ଅଛି । Non-Plan revenue gap ଆମର ନାହିଁ । 6ଷ୍ଠ ଅର୍ଥ କମିଶନର award ଫଳରେ ଏହା ସମ୍ଭବ ହୋଇ ପାରିଛି ।

ତା'ପରେ ଜଳକର ସମ୍ପର୍କରେ ମାନ୍ୟବର ସଭ୍ୟମାନେ କହିଛନ୍ତି ଯେଉଁ ଜଳକର ପରିବର୍ତ୍ତନ ହେଉଛି incidence of taxation କୃଷୀମାନଙ୍କ ଉପରେ ଅଧିକ ଲାଗିବ ନାହିଁ । ମାନ୍ୟବର ସଭ୍ୟମାନେ ଏହା ବି ଜାଣିଛନ୍ତି । ବର୍ତ୍ତମାନ ଆମେ ଯାହା ଜଳକର ହିସାବରେ ଆଦାୟ କରୁଛୁ । ତାହା maintainance ପାଇଁ ଯଥେଷ୍ଟ ନୁହେଁ । ଏପରିସ୍ଥିତିରେ ଆମେ ଆଉ ରାଜ୍ୟରେ ଅଧିକ ଜଳସେଚନ ଯୋଜନା କାର୍ଯ୍ୟକାରୀ କରିବା

କପର ? ଏପରି ଗୋଟିଏ ମନୋଭାବ ବିଭିନ୍ନ ଅଞ୍ଚଳରେ ଅଛି ଯେ ଯେଉଁ ଅଞ୍ଚଳରେ ଜଳସେଚନ ଅଛି ସେମାନେ ସୁବିଧା ପାଇବେ । ତାଙ୍କ ପାଇଁ ଆମେ ଦେଉଛୁଁ । ସେ ଋଣ ପରିଶୋଧ ପାଇଁ ଓ ସୁଧ ପାଇଁ ଆମେ ଦେଉଛୁଁ । ସେଥିପାଇଁ ମୋର କହିବାର କଥା ପୁରୁଣା ଋଣ ଯାହା ଥିଲା ତାହା ଭରପାଇ ନାହିଁ । 1968 ମସିହାରେ ଯାହା ଥିଲା ସେହି ଋଣ ଦେବାପାଇଁ ହେଉଛି ।

ଆଠଗଡର ମାନ୍ୟବର ସଭ୍ୟ ଗୋଟିଏ କଥା ଉଠାଇଥିଲେ ଯେ କେତେକ defalcation ଧରାଯାଉଛି । କମିଟି ବସୁଛି ତା'ର ଫଳାଫଳ କିଛି ହେଉନାହିଁ । ଗୋଟିଏ defalcation 1·80 crores 1970 ମସିହାରେ ଧରାଯାଇଥିଲା । ସେଥିରେ ବର୍ତ୍ତମାନ Depatmental proceedings କରାଯାଉଛି । Depatmantal କାମ ଶେଷ ହେଲେ action ନିଆଯିବ । ଏପରି କି 1973 ମସିହାରେ ସେଣ୍ଟ୍ରାଲ ଗୋଟିଏ defalcation case ଧରାଗଲା ସେତେବେଳେ ଯେଉଁ ଅଫିସରମାନେ ଦାୟୀ ସେମାନଙ୍କ ଉପରେ କ'ଣ action ନିଆଯାଉଛି । 1970 ମସିହା caseରେ ଆହୁରି କେତେକ enquiry proceedings ହେବାପାଇଁ ଅଛି । ତାହା ସମ୍ପୂର୍ଣ୍ଣ ହେବ, ଏଥିରେ କିଛି ସନ୍ଦେହ ନାହିଁ । Enquiry ପରେ ଯିଏ ଦୋଷୀ ହେବାର ଜଣାଯାଉଛି ସେ ନିଶ୍ଚିତଭାବରେ ଦଣ୍ଡ ପାଇବ । ସେ କାର୍ଯ୍ୟ ଆମର ଚାଲିଛି ।

ଆଉ ଗୋଟିଏ କଥା ମୁଁ କହୁଅଛେ, ଯାହାକି କେହି କେହି ମାନ୍ୟବର ସଭ୍ୟ ଉତ୍ଥାପନ କରିଛନ୍ତି । ତାହା ହେଉଛି ଅତିରିକ୍ତ ସମ୍ବଳ ସଂଗ୍ରହ କରିବାପାଇଁ ଯେଉଁ ଟ୍ୟାକ୍ସ ଆମେ ବର୍ତ୍ତମାନ ଧାର୍ଯ୍ୟ କରୁଛୁଁ, ବିରୋଧୀ ଦଳର ମାନ୍ୟବର ନେତା ଓ ଅନ୍ୟମାନେ ତାକୁ ବିରୋଧ କରିଛନ୍ତି । ବିରୋଧୀ ଦଳର ନେତାଙ୍କ ଦଳର ଦଳପତି ମୁଖ୍ୟମନ୍ତ୍ରୀ ଥିବାବେଳେ 1972-73 ମସିହାରେ ଯେଉଁ ବଜେଟ ଉପସ୍ଥାପିତ କରିଥିଲେ ତହିଁରେ କେବଳ taxation measures ସମ୍ବନ୍ଧେ ଯାହା କୁହାହୋଇଥିଲା, ସେଥିରୁ ଅଳ୍ପ କିଛି ପଢ଼ି ଦେଉଛି ।

"Increase land revenue—As a result of settlement operations which are now going on and levy of cess at 25 np. per rupee of land revenue, the Bill for which is now before tho Assembly, we expect to get about Rs. 42 lakhs next year.

The irrigation rules have since been finalised during the current year and it is expected that we will get a full year's yield from irrigation rates next year.

With the increased tempo of transport of iron-ore, it is expected that we will be able to collect a higher amount from canal tollage.

As practical difficulties were experienced in the imposition of betterment levy on the lands benefitted by irrigation facilities, the Taxation Enquiry Committee have recommended to impose a tax on transfer of immovable properties. Steps are being taken to impose this tax early. It is also proposed to increase rates of non-judicial stamps.

It has been decided to levy a tax on passengers' fares and freights and the proposal has been sent to the Government of India for the consent of the President. it is expected that the consent of the President will be received soon and the Bill will be introduced in the House so that it will be possible to realise revenue from the next year. All these measures and those already adopted are likely to bring an additional revenue of Rs. 450 lakhs over the normal revenue".

ସେ ସମୟରେ ସେ advantageous positionରେ ଥିଲେ । ତାଙ୍କ ପକ୍ଷରେ 4·50 କୋଟି ଟଙ୍କା କେନ୍ଦ୍ରରୁ ଆଣିବା ବହୁ କଷ୍ଟକର ନ ଥିଲା । କିନ୍ତୁ internal resource mobilisationରେ ଏତେକ କରିପାରିଲେ । ସେ ଆଜ ଉପଦେଶ ଦେଲେ 85 କୋଟି ଟଙ୍କା internal resources ବାହାର କରିବା କ'ଣ ଦରକାର ଥିଲା । ଏତେଟା ଭାରତ ସରକାରଙ୍କଠାରୁ ଅଣାଯାଇ ପାରିଥାଆନ୍ତା । ସେ ଏକଥା କହୁଥିଲେ ବୋଲି ମୁଁ ସେଦିନଥିପାଇଁ 6th Finance Commissionରୁ ଆସିମ ଯାହା ଆଣିପାରିଲୁ it is more than 120 crores ସେହି ଦୃଷ୍ଟିରୁ ମୁଁ କହିବ internal resources କେବଳ ଆମ ରାଜ୍ୟରେ ହିଁ ନୁହେଁ । କଥା ପ୍ରସଙ୍ଗରେ ସେ କହିଲେ ଅନ୍ୟ କେଉଁ ରାଜ୍ୟ ଏତା କରି ନାହାନ୍ତି । ଯଦି ଅନ୍ୟ ରାଜ୍ୟମାନଙ୍କର ବଜେଟ estimate for 1974-75 ଦେଖିବେ, ତାହାହେଲେ ବହୁ ରାଜ୍ୟ ସେମାନଙ୍କର internal resources

ବଢ଼ାଇବାପାଇଁ କଉଣ ଉଦ୍ୟମ କରିଛନ୍ତି ଦେଖୁ ପାରୁନେ । ବହୁ ରାଜ୍ୟର Land tax ଆଦାୟ କରୁଛନ୍ତି । ସେତେବେଳେ Land tax ଅଳ୍ପ ସେତେବେଳେ ଅଧିକ ଆଦାୟ କରିବାପାଇଁ ଶ୍ରୀ ବିଜୁ ପଟ୍ଟନାୟକ betterment levy ବସାଇବାପାଇଁ ପ୍ରସ୍ତାବ କରିଥିଲେ । ଯାହା ଥିଲା ତାକୁ ପ୍ରବର୍ତ୍ତନ କରିବାରେ ଭୁଲ୍ କ'ଣ ହେଲା ।

Pay Committee Reportରେ age of superannuation ଉଚ୍ଚ୍ୟାଡ ବଢ଼ନ୍ତି recommendation ହୋଇଛି ଅଛି, ତାହା ବର୍ତ୍ତମାନ ସରକାରଙ୍କ ବିଚାରାଧୀନ ଅଛି । ନଭେମ୍ବର ସରକାର ତା'ର ନିଷ୍ପତ୍ତି ନେବେ ଏବଂ ସେଥିପାଇଁ ବଜେଟରେ 10 କୋଟି ଟଙ୍କା ବ୍ୟବସ୍ଥା ଆମେ କରିସାରିଛୁଁ । ମୋର ବକ୍ତବ୍ୟ ଶେଷ ପୂର୍ବରୁ ମୁଁ ଶ୍ରୀ ବିଜୁ ବାବୁଙ୍କ ଭାଷଣର 4/5ଟି ଧାଡ଼ି ପଢ଼ି ଶୁଣାଇ ଦେଉଛି ।

"Though our per capital income is low, we cannot but impose some additional measures of taxation so that the present generation may suffer a little and sacrifice for a better and wealthier Orissa to benefit our posterity. We are honouring the commitment made in 1960 to the Planning Commission that during the five-year period we would be raising additional resources to the extent of Rs. 23 crores".

BUDGET SPEECH (25-2-1975)

ଶ୍ରୀ ବିନାୟକ ଆଚାର୍ଯ୍ୟ : ଅଧ୍ୟକ୍ଷ ମହୋଦୟ, ମୁଁ ଏଧାନ ସଭାରେ 1975-76 ବର୍ଷ ପାଇଁ ବାର୍ଷିକ ବଜେଟ ଉପସ୍ଥାପିତ କରୁଛି ।

ଅର୍ଥ ନୈତିକ ପୃଷ୍ଠଭୂମି

1975-76 ବର୍ଷ ନିମନ୍ତେ ରାଜ୍ୟ ସରକାରଙ୍କ ବାର୍ଷିକ ଆର୍ଥିକ ବିବରଣୀ ସମେତ ଅନ୍ୟାନ୍ୟ କାଗଜପତ୍ର ଏହି ମହାମନସ୍କ ଗୃହର ମାନ୍ୟବର ସଦସ୍ୟମାନଙ୍କୁ ଯୋଗାଇ ଦିଆଯାଇଛି । ଆମ ଅର୍ଥନୀତିର ସ୍ଥିତିସ୍ଥାପକତା ଓ ଅଗ୍ରଗତିର ଦୃଢ଼ତା ଉପରେ ଜନସାଧାରଣଙ୍କ ଆଶା ଓ ବିଶ୍ୱାସକୁ ପୁନରୁଜ୍ଜୀବିତ କରି ଦେଶର ଆର୍ଥିକ ପରିସ୍ଥିତି କ୍ରମେ କ୍ରମେ ସୁଧୁରି ଆସୁଥିବା ସମୟ ଏକ ଶୁଭ ମୁହୂର୍ତ୍ତରେ ରାଜ୍ୟର ବଜେଟ୍ ଉପସ୍ଥାପିତ କରାଯାଉଛି । ଗତ କେତେ ମାସ ପୂର୍ବେ ଆମ ଅର୍ଥନୀତି ବିଶେଷ ବିପର୍ଯ୍ୟସ୍ତ ହୋଇପଡ଼ିଥିଲା ଓ ତାହାକୁ ସମ୍ଭାଳି ହେବ ବୋଲି ଆଶା କରାଯାଉ ନ ଥିଲା । ସବୁତ୍ର ନୈରାଶ୍ୟର କରାଳ ଛାୟା ଦେଖାଯାଉଥିଲା । 1972 ଜୁନ ମାସ ଶେଷ ସୁଦ୍ଧା ସରକାରୀ ହିସାବରେ 12 ମାସର ହାରାହାରି ପାଇକାରୀ ମୂଲ୍ୟସୂଚୀ 188.4 ରହିଥିଲା । 1973 ରେ

ଏହା 207.1 ରୁ ବୃଦ୍ଧି ପାଇଥିଲା ଓ ତାହାପରେ ଏହି ମୂଲ୍ୟସୂଚୀ ଶୀଘ୍ର ଶୀଘ୍ର ବୃଦ୍ଧି ପାଇ ବ୍ୟାପକ ଆକାର ଧାରଣ କଲା ଏହି ମୂଲ୍ୟସୂଚୀ 1974 ଜୁନ୍ ଶେଷ ସୁଦ୍ଧା 254.2 ରେ ପହଞ୍ଚିଥିଲା ଏବଂ 1974 ସେପ୍ଟେମ୍ବର ମାସ ଶେଷ ସୁଦ୍ଧା ଏହା ଦ୍ରୁତ ଗତିରେ ବୃଦ୍ଧି ପାଇ ସର୍ବାଧିକ 328.2 ରେ ପହଞ୍ଚିଥିଲା । ପାଇକାରୀ ମୂଲ୍ୟସୂଚୀ ଏପରି ଅସାଧାରଣ ଭାବରେ ବୃଦ୍ଧି ପାଇବା-ହେତୁ ସାଧାରଣ ଲୋକଙ୍କର ଅର୍ଥନୈତିକ ଜୀବନକୁ ବିପର୍ଯ୍ୟସ୍ତ କରିବା ସଙ୍ଗେ ସଙ୍ଗେ ସର୍ବତ୍ର ଉଦ୍‌ବେଗର କାରଣ ହୋଇ ପଡ଼ିଲା । ଆମ ଅର୍ଥନୈତିକ ବ୍ୟାଧିର ପ୍ରତିକାର ହୋଇ ପାରିବ ନାହିଁ ବୋଲି ଧ୍ୱଂସ ଓ ନୈରାଶ୍ୟର ବାର୍ତ୍ତାବହମାନେ ପ୍ରଚାର କରିବାକୁ ଲାଗିଲେ । ଏହି ପରିସ୍ଥିତି ତ୍ରୁଟିଯୁକ୍ତ ଓ ଘୋର ନୈରାଶ୍ୟଜନକ ବୋଲି ପ୍ରଚାର ଉଦ୍ଦେଶ୍ୟରେ ଗଢ଼ାଯାଇ ବଳଶାଳୀ ହୋଇ ଯାଇଥିବା ବ୍ୟକ୍ତିମାନେ ଆମ ଅର୍ଥନୀତିରେ ସ୍ଥାଣୁତ୍ୱ ତଥା ଉତ୍କଟ ମୁଦ୍ରାସ୍ଫୀତି ଘଟିଗଲା ବୋଲି ଶସ୍ତା ସ୍ଲୋଗାନ ଗାଇ ବୁଲିଲେ କିନ୍ତୁ ମୁଁ ସୁଖୀ ଯେ ସଂପ୍ରତି ଆମ ଜାତୀୟ ଜୀବନର ବିଭିନ୍ନ କ୍ଷେତ୍ରରେ ଦେଖାଦେଇଥିବା ଅର୍ଥନୈତିକ ଧାରାର ରୂପ ଦେଖି ମନେହୁଏ ଯେ ଆମ ଅର୍ଥନୀତିରେ ଉନ୍ନତି ଘଟିଛି । 1974 ଫେବୃଆରୀ ମାସରୁ ଅର୍ଥ ସମ୍ବଳିତ ଏବଂ ଅଣଅର୍ଥ ସମ୍ବଳିତ କ୍ଷେତ୍ରରେ ପ୍ରୟୋଗ କରାଯାଇଥିବା କଟକଣା ଯୋଗୁଁ ଏହା ସମ୍ଭବ ହୋଇଛି । ଖାଦ୍ୟଦ୍ରବ୍ୟ, ଶିଳ୍ପପାଇଁ ଆବଶ୍ୟକ କଞ୍ଚାମାଲ ଓ ଶିଳ୍ପଜାତ ଦ୍ରବ୍ୟ ପ୍ରଭୃତି ଆବଶ୍ୟକ ସାମଗ୍ରୀଗୁଡ଼ିକର ଦରଦାମ ହ୍ରାସ ପାଇଛି । 1974 ମସିହା ଡିସେମ୍ବର ମାସ ସୁଦ୍ଧା ଖାଦ୍ୟ ସାମଗ୍ରୀଗୁଡ଼ିକର ଦରଦାମ କ୍ଷେତ୍ରରେ ଶତକଡ଼ା 4.3 ଭାଗ, ଶିଳ୍ପପାଇଁ କଞ୍ଚାମାଲ କ୍ଷେତ୍ରରେ ଶତକଡ଼ା 9.9 ଭାଗ ଓ ଶିଳ୍ପଜାତ ଦ୍ରବ୍ୟ କ୍ଷେତ୍ରରେ ଶତକଡ଼ା 2.6 ଭାଗ ମୂଲ୍ୟ ହ୍ରାସ ପାଇଛି । ଅବଶ୍ୟ ଏ ସଫଳତା ବିଶେଷ ଉଲ୍ଲେଖନୀୟ ନ ହେଲେ ମଧ୍ୟ ଧୀରେ ଧୀରେ ଦର ଯେ କମିଯାଉଛି ଏହା ନିଶ୍ଚିତ । ଦରବୃଦ୍ଧି ଜନିତ ସଂକଟରୁ ଉଦ୍ଧାର ପାଇବାର ବାଟ ହେଉଛି ଉତ୍ପାଦନ ବୃଦ୍ଧି ଦିଗରେ ଆମର ଧାର୍ଯ୍ୟ ନୀତି ଚାଲୁ ରଖିବା ବ୍ୟବହାର୍ଯ୍ୟ ଦ୍ରବ୍ୟ ନିୟନ୍ତ୍ରଣ ତଥା ଆର୍ଥିକ ଶୃଙ୍ଖଳା ଜାରି ରଖିବା ।

ଆମ ପରିସ୍ଥିତି

2 . ଦେଶରେ ମୁଦ୍ରାସ୍ଫୀତିର ଯେଉଁ ବିସ୍ଫୋରଣ ଘଟିଛି ତା'ର ପ୍ରଭାବ ଆମ ଉପରେ ପଡ଼ିଛି । କିନ୍ତୁ ଚଳିତ ବର୍ଷ ରାଜ୍ୟର ବିଭିନ୍ନ ଅଞ୍ଚଳରେ ଦେଖାଦେଇଥିବା ଘୋର ମରୁଡ଼ିଜନିତ ପରିସ୍ଥିତିଯୋଗୁଁ ଆମର ଦୁର୍ଦ୍ଦଶା ବଢ଼ି ଯାଇଛି । କ୍ରମାଗତ ଲାଗିରହିଥିବା ପ୍ରାକୃତିକ ବିପର୍ଯ୍ୟୟ—ମରୁଡ଼ି, ବନ୍ୟା

ଓ ବାତ୍ୟାଯୋଗୁଁ ରାଜ୍ୟର ଅର୍ଥନୈତିକ ସ୍ଥିତି ଘୋର ବିପର୍ଯ୍ୟସ୍ତ ହୋଇପଡ଼ିଛି ଏହା ନିଃସନ୍ଦେହ ଏବଂ ସେ ସମ୍ପର୍କରେ ମୁଁ ଏଠାରେ ସୂଚନା ଦେବାକୁ ଚାହେଁ । ଚତୁର୍ଥ ପଞ୍ଚବାର୍ଷିକ ଯୋଜନାକାଳରେ ଆମ ଆଭ୍ୟନ୍ତରୀଣ ଉତ୍ପାଦନ-କ୍ଷେତ୍ରରେ ଅଭିବୃଦ୍ଧି ହାରର ଲକ୍ଷ୍ୟ ଶତକଡ଼ା 5·6 ରଖାଯାଇଥିବା ସ୍ଥଳେ, ମାତ୍ର ଶତକଡ଼ା 2·57 ହୋଇଛି । ଏହି ସମୟ ମଧ୍ୟରେ ବାର୍ଷିକ ଶତକଡ଼ା 2·5 ହାରରେ ଲୋକସଂଖ୍ୟା ବୃଦ୍ଧି ପାଇଥିବାଯୋଗୁଁ ଆଭ୍ୟନ୍ତରୀଣ ଉତ୍ପାଦନ ଅଭିବୃଦ୍ଧି କ୍ଷେତ୍ରରେ ବିପର୍ଯ୍ୟୟ ଘଟିଛି । ରାଜ୍ୟର ମୁଣ୍ଡପିଛା ଆୟ ସ୍ଥିର ମୂଲ୍ୟରେ 1968-69 ଏବଂ 1973-74 ମସିହାରେ ଯଥାକ୍ରମେ 262 ଟଙ୍କା ଓ 266 ଟଙ୍କା ଥିଲା (ତୁରନ୍ତ ପ୍ରାକ୍କଳନ) ପାଞ୍ଚ ବର୍ଷ ମଧ୍ୟରେ ମାତ୍ର 4 ଟଙ୍କା ବୃଦ୍ଧି ହୋଇଥିଲା । ବେଳେ ବେଳେ ହାରାହାରି ପରିସଂଖ୍ୟାନ ତଥ୍ୟରୁ ଯାହା ଜଣାପଡ଼ୁଥାଏ, ତା' ଅପେକ୍ଷା ବେଶି ଦୃଷ୍ଟି ଅଗୋଚରରେ ରହିଯାଏ । ଆୟର ବଣ୍ଟନ ବ୍ୟବସ୍ଥାରେ ରହିଥିବା ତାରତମ୍ୟ ଦୃଷ୍ଟିରୁ ଅଭିବୃଦ୍ଧିର ଉପକାରିତା ଦାରିଦ୍ର୍ୟ ସୀମାରେଖା ତଳେ ରହିଥିବା ଲୋକଙ୍କ ପାଖରେ ଯେ ପ୍ରକୃତରେ ପହଞ୍ଚି ପାରିଛି ସେ ବିଷୟରେ ମୁଁ ସନ୍ଦିହାନ । ମାସିକ ମୁଣ୍ଡ ପିଛା ଖାଉଟି ବ୍ୟୟ ସମ୍ପର୍କିତ ପରିସଂଖ୍ୟାନ ମୋର ଆଶଙ୍କାକୁ ସମର୍ଥନ କରୁଛି । 1960-61 ମୂଲ୍ୟସୂଚୀ ଅନୁପାତରେ ଗ୍ରାମାଞ୍ଚଳରେ 1970-71 ମସିହାରେ ମୁଣ୍ଡ ପିଛା ବ୍ୟୟ ହାର 17 ଟଙ୍କା ଥିଲାବେଳେ ସହରାଞ୍ଚଳରେ ଏହା 24 ଟଙ୍କା ଥିଲା । ଆମର ଲୋକସଂଖ୍ୟାର ଶେଷ ଭାଗ ଦାରିଦ୍ର୍ୟର ସୀମାରେଖାତଳେ ରହୁଥିବାର କାରଣ ଆଉ ବେଶୀ ଖୋଜିବାର ଅବଶ୍ୟକତା ନାହିଁ । ବିଗତ ଦଶନ୍ଧିଗୁଡ଼ିକରେ ଆମର ଉନ୍ନୟନମୂଳକ ପ୍ରଚେଷ୍ଟା, ଦାରିଦ୍ର୍ୟର ନିରବଚ୍ଛିନ୍ନ ପଦଯାତ୍ରାକୁ ରୋକି ପାରିଛି ବୋଲି ମନେ ହୁଏ ନାହିଁ । ଚତୁର୍ଥ ପଞ୍ଚବାର୍ଷିକ ଯୋଜନା ଶେଷବେଳକୁ ଆମେ ଆମର ପ୍ରସ୍ତାବିତ ଲକ୍ଷ୍ୟସ୍ଥଳର ନିକଟବର୍ତ୍ତୀ ହୋଇପାରି ନାହୁଁ । ଏଣୁ ମୋ ମତରେ ବଜେଟ ଜରିଆରେ ଆମର ଅଭିମୁଖ୍ୟ ଏବଂ କାର୍ଯ୍ୟକ୍ରମ ଏପରି ହେବା ଉଚିତ ଯାହାଫଳରେ କି ଆମ ଅର୍ଥନୀତିରେ ପ୍ରବେଶ କରିଥିବା ଅଡୁଆ ଓ ବୈଷମ୍ୟକୁ ସଂଶୋଧନ କରାଯାଇପାରିବ । ଆଗାମୀ ବର୍ଷଗୁଡ଼ିକରେ ବସ୍ତୁତଃ ଧାର୍ଯ୍ୟ କରାଯାଇଥିବା ଲକ୍ଷ୍ୟଗୁଡ଼ିକ ହେଉଛି :—

**ଆମର ଲକ୍ଷ୍ୟ ଓ କୌଶଳ**

(କ) ବିଶେଷକରି ଗ୍ରାମାଞ୍ଚଳ ଲୋକମାନଙ୍କ ମୁଣ୍ଡପିଛା ଘରୋଇ ଉତ୍ପାଦନ ବୃଦ୍ଧି କରିବା ନିମନ୍ତେ ଆର୍ଥିକ ସମ୍ବଳ ଉପରେ ଚାପ ପଡୁଥିବା ଦୃଷ୍ଟିରୁ ଓ ମୁଖ୍ୟ କଞ୍ଚାମାଲ ଅଭାବ ଥିବାରୁ ଖାଦ୍ୟ ଉତ୍ପାଦନ

ଏବଂ ଅନ୍ୟାନ୍ୟ ପ୍ରଧାନ ଫସଲର ଉତ୍ପାଦନ ବୃଦ୍ଧି ନିମନ୍ତେ ଉତ୍ପାଦନକ୍ଷମ କାର୍ଯ୍ୟକ୍ରମ ଯଥା—କୃଷି, ଜଳସେଚନ ଓ ବିଦ୍ୟୁତ୍‌କ୍ଷେତ୍ର ଉପରେ ଅଗ୍ରାଧିକାର ଦିଆଯାଇ ଚଳିତ ବର୍ଷର ଆଭିମୁଖ୍ୟ ଗ୍ରହଣ କରାଯାଇଛି;

(ଖ) ଅର୍ଥନୈତିକ ଅଭିବୃଦ୍ଧି ଓ ନ୍ୟାସ୍ୟ ହ୍ରାସଲପାଇଁ ପ୍ରଚଳିତ ବୈଷମ୍ୟ ହ୍ରାସକରଣ ସବୁଠାରୁ ଦରିଦ୍ର ଲୋକ ନିମନ୍ତେ ଏକ ଅର୍ଥିକ ଭିତ୍ତିଭୂମିର ବ୍ୟବସ୍ଥା କରିବା;

(ଗ) ପ୍ରାକୃତିକ ଦୁର୍ବିପାକଜନିତ କ୍ଷୟକ୍ଷତିର ମୁକାବିଲା କରିବା ନିମନ୍ତେ ଏକ ଧାରାବାହିକ କାର୍ଯ୍ୟକ୍ରମ ପ୍ରଣୟନ କରିବା;

(ଘ) ଅଗ୍ରାଧିକାର ଭିତ୍ତିରେ ଅସମ୍ପୂର୍ଣ୍ଣ ଯୋଜନାଗୁଡ଼ିକୁ ସଂପୂର୍ଣ୍ଣ କରିବା ତଥା ଆଶୁ ଫଳପ୍ରଦ ଯୋଜନାରେ ଅର୍ଥ ବିନିଯୋଗ କରିବା, କୃଷି ଉତ୍ପାଦନ ବୃଦ୍ଧିପାଇଁ ମୁଖ୍ୟ ସହାୟକ ଜଳସେଚନ ଓ ବିଦ୍ୟୁତ୍ ଯୋଜନାରେ ସର୍ବାଧିକ ଅର୍ଥ ବିନିଯୋଗ କରାଯାଉଛି;

(ଙ) ଶିକ୍ଷା, ଯୋଗାଯୋଗ, ସ୍ୱାସ୍ଥ୍ୟ ଓ ଜଳଯୋଗାଣ ଭଳି ସର୍ବନିମ୍ନ ଆବଶ୍ୟକତା ପୂରଣ ଦିଗରେ ଉନ୍ନତ ବ୍ୟବସ୍ଥା କରିବା;

(ଚ) ଆସନ୍ତା ବର୍ଷ 'ଅଞ୍ଚଳ ଉନ୍ନୟନ' ବ୍ୟବସ୍ଥା ଅନୁଯାୟୀ ଅନୁନ୍ନତ ଅଞ୍ଚଳକୁ ନିର୍ଦ୍ଦିଷ୍ଟ ରୂପରେ ଏବଂ ଆଦିବାସୀ ଅଞ୍ଚଳରେ ଏକ ଉପଯୋଜନା ମାଧ୍ୟମରେ 'ସମନ୍ୱିତ ଅଞ୍ଚଳ ଉନ୍ନୟନ' ଯୋଜନାକୁ କାର୍ଯ୍ୟକାରୀ କରି ରାଜ୍ୟ ମଧ୍ୟରେ ଥିବା ଆଞ୍ଚଳିକ ବୈଷମ୍ୟର ଦୂରୀକରଣ;

(ଛ) ସମାଜର ଦୁର୍ବଳ ଶ୍ରେଣୀର ଲୋକଙ୍କପାଇଁ ସମ୍ବଳର ସମସ୍ତ ସ୍ତର ମଧ୍ୟରେ ସାମାଜିକ ନିରାପତ୍ତା ବ୍ୟବସ୍ଥା କରିବା ।

ବାର୍ଷିକ ଯୋଜନା ଓ ଉନ୍ନୟନ-ମୂଳକ କାର୍ଯ୍ୟକଳାପ ।

3. ଉପରୋକ୍ତ ଲକ୍ଷ୍ୟ ଓ ଆକାଂକ୍ଷାକୁ ବାସ୍ତବ ରୂପରେଖ ଦେବା ନିମନ୍ତେ 1975-76 ମସିହା ବଜେଟ୍ ବ୍ୟବସ୍ଥା ତଥା ଚଳିତ ବର୍ଷର ସଂଶୋଧିତ ଅଟକଳ ଅଭିପ୍ରେତ । ଆଗାମୀ ବର୍ଷ ବଜେଟରେ ଅଣଯୋଜନା ଉନ୍ନୟନମୂଳକ କାମ ସମେତ ଯୋଜନା କାର୍ଯ୍ୟକଳାପ ବାବଦରେ ମୋଟ 2,24,87·48 ଲକ୍ଷ ଟଙ୍କା ବ୍ୟୟର ବ୍ୟବସ୍ଥା କରାଯାଇଛି । ଏଥି ମଧ୍ୟରୁ ରାଜ୍ୟ

ଯୋଜନା ଅନ୍ତର୍ଭୁକ୍ତ ପରିକଳ୍ପନା ବାବଦରେ 6645 ଲକ୍ଷ ଟଙ୍କା, ସ୍ୱତନ୍ତ୍ର ଅଣ-ଯୋଜନା ପରିକଳ୍ପନା ବାବଦରେ 6,90·86 ଲକ୍ଷ ଟଙ୍କା ଏବଂ କେନ୍ଦ୍ରୀୟ ଯୋଜନା ବାବଦରେ 2506·79 ଲକ୍ଷ ଟଙ୍କାର ବ୍ୟବସ୍ଥା ହୋଇଛି । ଏହା ବ୍ୟତୀତ ଆଗାମୀ ବର୍ଷ ରାଜ୍ୟ ଯୋଜନା ଅନ୍ତର୍ଭୁକ୍ତ ପରିକଳ୍ପନାଗୁଡ଼ିକପାଇଁ ରାଷ୍ଟ୍ରାୟତ୍ତ ସଂସ୍ଥାଗୁଡ଼ିକର ବଜେଟରେ 24,09 ଲକ୍ଷ ଟଙ୍କାର ବ୍ୟୟ ବ୍ୟବସ୍ଥା ରଖାଯାଇଛି । ରାଜ୍ୟ ଯୋଜନା ଅନ୍ତର୍ଭୁକ୍ତ ପରିକଳ୍ପନାଗୁଡ଼ିକପାଇଁ ଚଳିତ ବର୍ଷ 73,76·74 ଲକ୍ଷ ଟଙ୍କା ବ୍ୟୟ ବ୍ୟବସ୍ଥା କରାଯାଇଥିବାସ୍ଥଳେ 1975-76 ମସିହାପାଇଁ ଏହି ପରିକଳ୍ପନାଗୁଡ଼ିକ ପାଇଁ ଟ. 89,25 ଲକ୍ଷ ଟଙ୍କା ବ୍ୟୟ ବ୍ୟବସ୍ଥା କରାଯାଇଛି । ମାନ୍ୟବର ସଭ୍ୟମାନେ ଉପଲବ୍ଧି କରିପାରିବେ ଯେ ସମସାମୟିକ ଆର୍ଥିକ ପରିସ୍ଥିତି ଉପରେ ବହୁ-ପ୍ରଭାବ ପଡ଼ାଉଥିବା କଟକଣା ଓ ରୂପ ସତ୍ତ୍ୱେ 1975-76ରେ ରାଜ୍ୟ ଯୋଜନାରେ ଚଳିତ ବର୍ଷର ଖର୍ଚ୍ଚ ତୁଳନାରେ ଶତକଡ଼ା 20 ଭାଗରୁ ଅଧିକ ଖର୍ଚ୍ଚର ବ୍ୟବସ୍ଥା କରାଯାଇଛି । ଆମ ଯୋଜନାରେ ଯଥେଷ୍ଟ ପରିମାଣ ଅର୍ଥର ବ୍ୟବସ୍ଥା କରିବାପାଇଁ ଭାରତ ସରକାର ଓ ଯୋଜନା କମିସନ ଆମମାନଙ୍କୁ ସାହାଯ୍ୟ କରିଥିବାରୁ ମୁଁ ଏଠାରେ ସେମାନଙ୍କ ପ୍ରତି ଆମର କୃତଜ୍ଞତା ଜଣାଇବାକୁ ଚାହେଁ । କିନ୍ତୁ ଆମ ରାଜ୍ୟର ମୁଣ୍ଡପିଚ୍ଛା ଆୟ ଊଣା, ଏଠାରେ ବେଶି ସଂଖ୍ୟାରେ ଆଦିବାସୀଙ୍କର ଅଭାବ ଏବଂ ବହୁସଂଖ୍ୟକ ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ସମ୍ପ୍ରଦାୟର ଲୋକ, ବୋଧହୁଏ ଦେଶରେ ଅନ୍ୟ ରାଜ୍ୟମାନଙ୍କ ତୁଳନାରେ ଆମ ରାଜ୍ୟରେ ସେମାନଙ୍କର ସଂଖ୍ୟା ସର୍ବାଧିକ । ଏସବୁ ଦୃଷ୍ଟିରୁ ଅନ୍ୟ ରାଜ୍ୟମାନଙ୍କ ତୁଳନାରେ ଆମର ଆବଶ୍ୟକତା ଯଥେଷ୍ଟ ବେଶି । ତେଣୁ ଆମେ ସନିର୍ବନ୍ଧ ଅନୁରୋଧ କରୁଛୁ ଯେ ଆମମାନଙ୍କ ଦାବିପ୍ରତି ସମ୍ୟକ ବିବେଚନା କରାଯିବା ସଙ୍ଗେସଙ୍ଗେ ସେସବୁ ସହାନୁଭୂତି ସହକାରେ ଗ୍ରହଣ କରିନିଆଯିବା ଉଚିତ୍ । ମୁଁ ଆଶାକରେ ଯେ, ଆଗାମୀ ବର୍ଷର ମଧ୍ୟ ଭାଗରେ ଯୋଜନା ସଂପର୍କରେ ଯେଉଁ ସମୀକ୍ଷା କରାଯିବ ତା'ଫଳରେ ଯୋଜନାର ଆକାର ବିଶେଷଭାବେ ବୃଦ୍ଧି ପାଇବ ।

ବିଭିନ୍ନ ବାବଦରେ ବ୍ୟୟ ବରାଦ ।

4. ସେହିସବୁ କ୍ଷେତ୍ରରେ ଅଧିକ ଉତ୍ପାଦନ ଓ ଅଧିକ ସମ୍ପତ୍ତି ଗଠନ କରାଯାଇପାରିବ, 1975-76ର ଯୋଜନାର ସେହିସବୁ କ୍ଷେତ୍ରରେ ଅଧିକ ଉଦ୍ୟମ କରିବା ଉପରେ ମୁଖ୍ୟତଃ ଗୁରୁତ୍ୱ ଦିଆଯିବ । ପ୍ରସ୍ତାବିତ ଯୋଜନାରେ ମୋଟ ବ୍ୟୟ ବ୍ୟବସ୍ଥାଗୁଡ଼ିକ ନିମ୍ନରେ ଉଲ୍ଲେଖ ହେଲା:—

(ଟଙ୍କା ଲକ୍ଷ ଆକାରରେ)

| | |
|---|---|
| (କ) କୃଷି ଓ ଆନୁଷଙ୍ଗିକ ସେବା | 14,25·00 |
| (ଖ) ଜଳସେଚନ ଓ ବିଦ୍ୟୁତ୍ | 51,05·00 |
| (ଗ) ଶିଳ୍ପ ଓ ଖଣି | 4,00·00 |
| (ଘ) ପରିବହନ ଓ ଯୋଗାଯୋଗ | 5,53·00 |
| (ଙ) ସମାଜ ସେବା | 13,49·00 |
| (ଚ) ବିବିଧ | 93·00 |
| ମୋଟ | 89,25·00 |

ଚଳିତ ବର୍ଷ ମରୁଡ଼ି ଦ୍ୱାରା କ୍ଷତିଗ୍ରସ୍ତ ହୋଇଥିବା ଅଞ୍ଚଳମାନଙ୍କରେ ଅଧିକ ଶ୍ରମ ବହୁଳ କାର୍ଯ୍ୟର ଆବଶ୍ୟକତା ପ୍ରତି ଦୃଷ୍ଟି ଦିଆଯାଇ ଆଗାମୀ ବର୍ଷପାଇଁ କେତେକ କ୍ଷେତ୍ରରେ ଯୋଜନାରେ ଖର୍ଚ୍ଚ ବ୍ୟବସ୍ଥା କରାଯାଇଛି । ବ୍ୟାପକ ମରୁଡ଼ି ପରିସ୍ଥିତି ଯୋଗୁଁ ଆମର ଚଳିତ ବର୍ଷର ସମ୍ବଳ ଉପରେ ମଧ୍ୟ ଅତ୍ୟଧିକ ଚାପ ପଡ଼ିଥିଲା । କିନ୍ତୁ ତା' ସତ୍ତ୍ୱେ ଅବଶ୍ୟକସ୍ଥଳେ ମରୁଡ଼ି ପ୍ରପୀଡ଼ିତ ଲୋକମାନଙ୍କୁ ସାହାଯ୍ୟ ଯୋଗାଇ ଦେବାରେ ସରକାରଙ୍କ ପକ୍ଷରୁ ଯଥୋପଯୁକ୍ତ ଉଦ୍ୟମ କରାଯାଇଥିଲା । ଚଳିତ ବର୍ଷର ଯୋଜନା ଖର୍ଚ୍ଚ 71,40 ଲକ୍ଷ ଟଙ୍କାରୁ 73,76·74 ଲକ୍ଷ ଟଙ୍କାକୁ ବୃଦ୍ଧି କରାଯାଇଥିଲା ଏବଂ ମରୁଡ଼ିଗ୍ରସ୍ତ ଅଞ୍ଚଳମାନଙ୍କରେ ଅଧିକ ଶ୍ରମବହୁଳ କାର୍ଯ୍ୟ ସୃଷ୍ଟି କରିବା ଓ ପାନୀୟ ଜଳଯୋଗାଣର ବ୍ୟବସ୍ଥା କରିବା ଉଦ୍ଦେଶ୍ୟରେ ବିଭିନ୍ନ ବାବଦରେ ନିର୍ଦ୍ଦିଷ୍ଟ ହୋଇଥିବା ଖର୍ଚ୍ଚ ଅଦଳ ବଦଳ କରାଯାଇଥିଲା । ଯୋଜନାବାବଦ ବ୍ୟୟ ଅଦଳ ବଦଳ ହେବା ଫଳରେ 1975 ଜାନୁଆରୀଠାରୁ

ମାର୍ଚ୍ଚ ମାସ ମଧ୍ୟରେ 14,00 ଲକ୍ଷ ଟଙ୍କା ମୂଲ୍ୟର ଶ୍ରମ ବହୁଳ କାର୍ଯ୍ୟ ସୃଷ୍ଟି ହୋଇ ପାରିବ ବୋଲି ଅଟକଳ କରାଯାଇଛି । ଏହାବ୍ୟତୀତ ମରୁଡ଼ି ରିଲିଫ୍ କାର୍ଯ୍ୟ ବାବଦ ବ୍ୟବସ୍ଥା କରାଯାଇଥିବା ଖର୍ଚ୍ଚର ପରିପୂରକ ଭାବେ ଦୁର୍ଭିକ୍ଷ ରିଲିଫ୍ ପାଣ୍ଠିରେ ରହିଥିବା ସମୁଦାୟ 3.58 ଲକ୍ଷ ଟଙ୍କା ଯୋଗାଇ ଦିଆଯାଇଥିଲା । ଆୟବ୍ୟୟ ପ୍ରସ୍ତାବ ଓ ବଜେଟ ଅଟକଳ ସଂପର୍କରେ ଆଲୋଚନା କରିବା ପୂର୍ବରୁ ମୁଁ ଅର୍ଥନୀତିର ବିଭିନ୍ନ କ୍ଷେତ୍ରରେ ଆମର କାର୍ଯ୍ୟକଳାପ ଓ କାର୍ଯ୍ୟ ବିବରଣୀ ସଂକ୍ଷେପରେ ଉଲ୍ଲେଖ କରିବାକୁ ଚାହେଁ ।

କୃଷି, ପଶୁପାଳନ, ମାଛଚାଷ ଓ ସମବାୟ ।

5. ଆମର ଅର୍ଥନୈତିକ ବ୍ୟବସ୍ଥାରେ କୃଷିକୁ ପ୍ରଧାନ ସ୍ଥାନ ମିଳିଛି । କେବଳ କୃଷି ବାଧାପାଇଲେ ଏବଂ ଏ କ୍ଷେତ୍ରର କର୍ମଚଞ୍ଚଳତା ପ୍ରକାଶ ନ ପାଇଲେ ଅନ୍ୟାନ୍ୟ କ୍ଷେତ୍ରରେ ଅଚଳ ଅବସ୍ଥା ଆରମ୍ଭ ହୁଏ । ଶତକଡ଼ା 85 ଭାଗରୁ ଅଧିକ ଲୋକ ଯେଉଁମାନେ କି ମୁଖ୍ୟତଃ ଜୀବନଯାପନ ପ୍ରଣାଳୀର ନିମ୍ନସ୍ତରରେ କାଳାତିପାତ କରନ୍ତି, ସେମାନେ ରୋଜଗାର-ପାଇଁ କୃଷି ଉପରେ ନିର୍ଭର କରନ୍ତି ଏବଂ ଏହି କୃଷିରୁ ହିଁ ରାଜ୍ୟରେ ମୋଟ ଆୟର ଶତକଡ଼ା 50 ଭାଗରୁ ଅଧିକ ମିଳିଥାଏ । ତେଣୁ ଅଧିକ ଉତ୍ପାଦନ ଓ କୃଷିର ଉତ୍ପାଦନଶକ୍ତି ଉପରେ ଗ୍ରାମାଞ୍ଚଳ ଲୋକମାନଙ୍କର ଅଧିକ ଆୟ ଓ ଅଧିକ ନିଯୁକ୍ତି ନିର୍ଭର କରିଥାଏ । ବିଭିନ୍ନ କୃଷି କାର୍ଯ୍ୟକ୍ରମ ନିମନ୍ତେ ଆଗାମୀ ବର୍ଷପାଇଁ ବଜେଟରେ 14,25 ଲକ୍ଷ ଟଙ୍କା ବ୍ୟବସ୍ଥା କରାଯାଇ, ଦୁଇଟି ଦିଗ ଉପରେ ବିଶେଷ ଧ୍ୟାନ ଦିଆଯାଇଛି । ପ୍ରଥମତଃ ସମାଜର ଦୁର୍ବଳ ଶ୍ରେଣୀର ଲୋକ, ଯଥା :—ଅଧିବାସୀ, କ୍ଷୁଦ୍ର ଚାଷୀ, ନାମମାତ୍ର ଚାଷୀ ଓ କୃଷି ଶ୍ରମିକମାନଙ୍କର ଆର୍ଥିକ ଅବସ୍ଥାର ଉନ୍ନତିକରଣ । ମାନ୍ୟବର ସଭ୍ୟମାନେ ଜାଣି ଖୁସି ହେବେ ଯେ, ଭୂମିହୀନ ଲୋକଙ୍କୁ ଭୂମିବଣ୍ଟନପାଇଁ ଆମର ଯେଉଁ କାର୍ଯ୍ୟକ୍ରମ ଚାଲିଛି ଲକ୍ଷ୍ୟସୀମାର ଢେର ଆଗେଇ ଚାଲିଛି । ସମସ୍ତ ଆନୁଷ୍ଠାନିକ କାର୍ଯ୍ୟ ଶେଷ କରିସାରି 1,31,959 ଜଣ ବ୍ୟକ୍ତିଙ୍କୁ 2·03 ଲକ୍ଷ ଏକରରୁ ଅଧିକ ଜମି ହସ୍ତାନ୍ତରିତ କରାଯାଇ-ପାରିଛି । ଦ୍ୱିତୀୟତଃ, କୃଷିର ଉନ୍ନତିପାଇଁ ବ୍ୟବସାୟୀ ବ୍ୟାଙ୍କ ପ୍ରଭୃତି ଅନୁଷ୍ଠାନରୁ ମିଳିଥିବା ଋଣରେ ବ୍ୟାପକ ବିନିଯୋଗ । କ୍ଷୁଦ୍ର ଚାଷୀ, ନାମମାତ୍ର ଚାଷୀ ଓ କୃଷି ଶ୍ରମିକମାନଙ୍କ ଉନ୍ନତି ନିମନ୍ତେ ସ୍ଥାପିତ ହୋଇଥିବା ସମସ୍ତ ସଂସ୍ଥା ଜଳସେଚନ, ଫସଲ ଋଣ ଓ ଗୋପାଳନ କାର୍ଯ୍ୟକ୍ରମ ଉପରେ ଧ୍ୟାନ ଦେଉଛନ୍ତି । ଏହିସବୁ ସଂସ୍ଥା ଅଧୀନରେ ଉପକୃତ ବ୍ୟକ୍ତିମାନେ ସ୍ୱଳ୍ପ ପ୍ରାରମ୍ଭିକ ମୂଳଧନ ବଢ଼ାଇ ସମବାୟ ଅନୁଷ୍ଠାନ ଓ ବ୍ୟବସାୟୀ

ବ୍ୟାଙ୍କଗୁଡ଼ିକରୁ ଋଣ ଆଣି ତାହାର ଉପଯୋଗ କରୁଅଛନ୍ତି । ଅଳ୍ପ ଚାଷଜମିଥିବା ଲୋକମାନଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ଜମିରେ କୂଅ ଖୋଳିବାପାଇଁ ଗୋଟିଏ ବ୍ୟାପକ କାର୍ଯ୍ୟକ୍ରମ ରହିଛି । ତଦନୁସାରେ ଭୂତଳଜଳ ସର୍ଭେ କରାଯାଇ ଓ କୃଷି ଅର୍ଥ କର୍ପୋରେସନ୍‌ରୁ ଋଣ ଅଣାଯାଇ ଉକ୍ତ କାର୍ଯ୍ୟକ୍ରମଟିକୁ କାର୍ଯ୍ୟକାରୀ କରାଯାଉଛି । କାର୍ଯ୍ୟକ୍ରମ ଶେଷ ହେବା ପରେ ଆଗାମୀ 3/4 ବର୍ଷ ମଧ୍ୟରେ 3·5 ଲକ୍ଷ ହେକ୍ଟର ପରିମିତ ଅଞ୍ଚଳକୁ ନିୟନ୍ତ୍ରିତ ଭାବେ ଜଳ ଯୋଗାଇ ଦିଆଯାଇପାରିବ । ଚଳିତବର୍ଷ ମରୁଡ଼ି ଯୋଗୁଁ ଅନେକ ଅଞ୍ଚଳରେ ଶସ୍ୟହାନୀ ଘଟିଥିଲେ ହେଁ କୂପଖନନ କରାଯାଇଥିବା ଅଞ୍ଚଳ ସବୁଜ ରହିଥିଲା । ବର୍ତ୍ତମାନ ସୁଦ୍ଧା 50 ହଜାର କୂଅର ଉପଯୋଗ କରାଗଲାଣି ଓ 1975 ଜୁନ୍ ଶେଷସୁଦ୍ଧା 7,00 ଲକ୍ଷରୁ ଅଧିକ ଟଙ୍କା ବିନିଯୋଗରେ ଆଉ 24 ହଜାର କୂଅ କାର୍ଯ୍ୟକାରୀ କରାଯିବ । ଜମି ସମତଳ କରିବା, ଜମିର ଉନ୍ନତ କରିବା ଓ ଜମି ଆବାଦ କରିବାପାଇଁ ଉଦ୍ଦିଷ୍ଟ ପରିକଳ୍ପନା ନିମନ୍ତେ କୃଷି ଫାଇନାନ୍ସ କର୍ପୋରେସନ୍‌ରୁ ମଧ୍ୟ ଆର୍ଥିକ ସାହାଯ୍ୟ ମିଳିବ । ଆଦିବାସୀ ଅଞ୍ଚଳମାନଙ୍କରେ ଥିବା ଜମିର ଉନ୍ନତି ପକ୍ଷେ ଉକ୍ତ ପରିକଳ୍ପନା ଅତ୍ୟନ୍ତ ଫଳପ୍ରଦ ହେବ । ପଞ୍ଚମ ଯୋଜନା କାଳରେ 6,18 ଲକ୍ଷ ଟଙ୍କା ବ୍ୟୟରେ ଏହି ପରିକଳ୍ପନାଗୁଡ଼ିକ 1 ଲକ୍ଷ ହେକ୍ଟରର ଜମିରେ କାର୍ଯ୍ୟକାରୀ କରିବାପାଇଁ ପ୍ରସ୍ତାବ କରାଯାଇଛି । ଆଦିବାସୀ ଉନ୍ନୟନ ସଂସ୍ଥା ଅଧୀନରେ ଉପକୃତ ହୋଇଥିବା ଆଦିବାସୀମାନଙ୍କ ପାଇଁ ଇତିମଧ୍ୟରେ କୃଷି ଭିତ୍ତିକ ଶିଳ୍ପ କର୍ପୋରେସନ 800 ଏକରରୁ ଅଧିକ ଜମିକୁ ଆବାଦ କରି ସାରିଛନ୍ତି । ଆମେ 1973-74 ରେ କୃଷି ଫାଇନାନ୍ସ କର୍ପୋରେସନରୁ ମାତ୍ର 55 ଲକ୍ଷ ଟଙ୍କା ଋଣ ପାଇଥିଲୁ । ଚଳିତ ବର୍ଷ 26,00 ଲକ୍ଷ ଟଙ୍କା ଋଣ ପାଇ ତା'ର ସଦୁପଯୋଗ କରିବୁ ବୋଲି ଆଶା କରୁଛୁ ଏବଂ ପଞ୍ଚମ ଯୋଜନା ଶେଷ ସୁଦ୍ଧା ବିଭିନ୍ନ କାର୍ଯ୍ୟକ୍ରମ ନିମନ୍ତେ ଏହି ଋଣର ପରିମାଣ 10,000 ଲକ୍ଷ ଟଙ୍କାରୁ ଅଧିକ ହୋଇପାରେ । ମୁଖ୍ୟତଃ ଦୁର୍ବଳ ଶ୍ରେଣୀର ଲୋକମାନେ ଏତଦ୍ୱାରା ଉପକୃତ ହେବେ । ଆମେ ଯୋଜନାପାଇଁ ଯେଉଁ ସମ୍ବଳ ସଂଗ୍ରହ କରିବାକୁ ଉଦ୍ୟମ କରୁଛୁ, ତାହା ବ୍ୟତୀତ ଉକ୍ତ ସମ୍ବଳ ଲାଭ କରି ପାରିବା । ଏହା ସୁଚିନ୍ତିତ କୌଶଳପାଇଁ ଏହି ଅବସରରେ ମୁଁ ସମସ୍ତ ସଂପୃକ୍ତ ବ୍ୟାଙ୍କ ଓ ଅନୁଷ୍ଠାନମାନଙ୍କୁ ଧନ୍ୟବାଦ ଜ୍ଞାପନ କରିବାକୁ ଚାହେଁ । ପଞ୍ଚମ

ଯୋଜନାରେ ଦୁଗ୍ଧ ଉତ୍ପାଦନ ସାମର୍ଥ୍ୟ ବୃଦ୍ଧି କରିବା ସହାରେ ସଘନ ଗୋ-ଉନ୍ନୟନ କାର୍ଯ୍ୟକ୍ରମ, ଆଦର୍ଶ ଗ୍ରାମ, କୃତ୍ରିମ ପ୍ରଜନନ କେନ୍ଦ୍ର ଓ ଅନ୍ୟାନ୍ୟ ପଶୁପାଳନ କାର୍ଯ୍ୟକ୍ରମ ଚାଲୁ ରଖାଯିବ । ପଞ୍ଚମ ଯୋଜନା ଶେଷସୁଦ୍ଧା ଶତକଡ଼ା 60 ଭାଗ ଗାଈଙ୍କୁ ଏହି କାର୍ଯ୍ୟକ୍ରମ ପରିସରଭୁକ୍ତ କରିବାପାଇଁ ଲକ୍ଷ୍ୟ ରଖାଯାଇଛି । ସଘନ ଗୋ-ଉନ୍ନୟନ କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହେଉଥିବା ଅଞ୍ଚଳରେ ହାରାହାରି ଦୈନିକ ଦୁଗ୍ଧ ଉତ୍ପାଦନ ପ୍ରାୟ 6 ଲିଟରରୁ ଓ ଆଦର୍ଶ ଗ୍ରାମ ତଥା କୃତ୍ରିମ ପ୍ରଜନନ କେନ୍ଦ୍ରଗୁଡ଼ିକରେ 3ରୁ 4 ଲିଟରକୁ ବୃଦ୍ଧି ପାଇଥିବା ଜଣାଯାଇଛି । ଅଧିକ ପରିମାଣରେ ଦୁଗ୍ଧ ଉତ୍ପାଦନ ଫଳରେ ଗ୍ରାମାଞ୍ଚଳ ଲୋକମାନଙ୍କ ଆୟ ବୃଦ୍ଧି ପାଇବ । କୋରାପୁଟ ଜିଲ୍ଲାର ଜୟପୁରଠାରେ 1975-76ରେ ସଘନ ଗୋ-ଉନ୍ନୟନ କାର୍ଯ୍ୟକ୍ରମପାଇଁ ଏକ ସଂସ୍ଥା ଖୋଲାଯିବ । ମୟୂରଭଞ୍ଜ ଜିଲ୍ଲାର କେନ୍ଦ୍ରଟିକୁ ଗୋଟିଏ ଆଦର୍ଶ ଗ୍ରାମ ବ୍ଲକର ଅନ୍ତର୍ଭୁକ୍ତ କରାଯିବ ଏବଂ ପ୍ରାୟ ଆଉ 100ଟି କୃତ୍ରିମ ପ୍ରଜନନ କେନ୍ଦ୍ର ବିଭିନ୍ନ ଅଞ୍ଚଳକୁ ସଂପ୍ରସାରିତ ହେବ । ଡେନମାର୍କ ସରକାରଙ୍କ ହୋଷ୍ଟାଇନ ଫ୍ରିଜିଆନ କିସମର କେତେକ ଜାତୀୟ ଉନ୍ନତ ଦୁଧିଆଳୀ ଗାଈ ଡେନମାର୍କରୁ ଆଣାଯାଇଛି । ଏମାନେ ପ୍ରତ୍ୟେକ ଦୈନିକ ହାରାହାରି 40 ଲିଟର ଦୁଧ ଦିଅନ୍ତି । ଆମ ରାଜ୍ୟରେ ଉନ୍ନତ ଗୋରୁର ଉତ୍ପତ୍ତି ଉଦ୍ଦେଶ୍ୟରେ ଏମାନଙ୍କୁ ବ୍ୟବହାର କରାଯିବ । ଗୁଜରାଟର ଆନନ୍ଦ ଢାଞ୍ଚାରେ ଗୋଟିଏ ଦୁଗ୍ଧ ଉନ୍ନୟନ କର୍ପୋରେସନ ସ୍ଥାପନ କରାଯିବାର ପ୍ରାରମ୍ଭିକ ବ୍ୟବସ୍ଥା ସ୍ୱରୂପ [illegible]ନଗର ଦୁଗ୍ଧ ଯୋଗାଣ ପରିକଳ୍ପନାର ପରିଚାଳନା ଦାୟିତ୍ୱ ଓଡ଼ିଶା କୃଷି ଶିଳ୍ପ କର୍ପୋରେସନ ହାତକୁ ନେଇଛନ୍ତି । ହ୍ରଦ, ସମୁଦ୍ର ଓ ନଈ ପୋଖରୀରୁ ମତ୍ସ୍ୟ ଉତ୍ପାଦନ ଆହୁରି ଅଧିକ ବଢ଼ାଇବାର ବ୍ୟବସ୍ଥା ହେଉଛି । 1975-76ରେ 48 ନୂତନ ଗାଆଁଳ ଯୋଗାଇ ଦିଆଯିବ । ମାଛ ଉତ୍ପାଦନ ଓ ଯୋଗାଣ ବୃଦ୍ଧି କରାଯିବା ଫଳରେ 1974-1975ରେ ଜଣ ପିଛା 1·91 କିଲୋଗ୍ରାମରୁ 1975-1976ରେ 2·09 କିଲୋଗ୍ରାମକୁ ମାଛ ଯୋଗାଣ ବୃଦ୍ଧି ପାଇବ ।

5·01. ବ୍ୟାପକ ଋଣ ଦାନ ଓ ଋଣାଦାୟନ ସାରଚ କାରବାର ତଥା ବଣ୍ଟନ କରିଆରେ କୃଷିକୁ ଅଧିକ ସାହାଯ୍ୟ କରିବାପାଇଁ ସମବାୟ କ୍ଷେତ୍ର ସୁସଙ୍ଗଠିତ ହୋଇଅଛି । ସ୍ୱଳ୍ପ ମିଆଦି, ମଧ୍ୟମ ମିଆଦି ଓ ଦୀର୍ଘ ମିଆଦି ସୂତ୍ରରେ ଦିଆଯାଇଥିବା ଋଣର ପରିମାଣ 1975 ଜୁନ ମାସ ସୁଦ୍ଧା 2,200 ଲକ୍ଷ ଟଙ୍କା ହେବ ବୋଲି ଆଶା କରାଯାଏ । ଦେଶରେ ସବୁଜ ବିପ୍ଳବର ଅଭିବୃଦ୍ଧି କ୍ରମରେ ଋଣ ପ୍ରଦାନ ଉତ୍ପାଦନର ଏକ ଅତ୍ୟାବଶ୍ୟକ

ଉତ୍ପାଦନ କାଳ ଗଡ଼ୁଥିବା ଋଣର ପରିମାଣ ଯଦି ବଢ଼ୁନ ଥାନ୍ତା, ତାହାହେଲେ ସମୁଦାୟ ଅନୁଷ୍ଠାନ ଓ ଅନ୍ୟାନ୍ୟ ବ୍ୟବସାୟୀ ବ୍ୟାଙ୍କମାନ ଅନୁଷ୍ଠାନରୁ ପର୍ଯ୍ୟାପ୍ତ ଋଣ ଯୋଗାଇ ଦିଆଯାଇପାରନ୍ତା । ଋଣ ପ୍ରଦାନ ପ୍ରଧାନ ବ୍ୟାପାରରେ ବ୍ୟବସାୟିକ ଦୃଷ୍ଟିକୋଣରୁ ଯେଉଁ ଶୃଙ୍ଖଳା ରକ୍ଷା କରିବା ଉଚିତ ଆମର ଗ୍ରାମୀଣ ଜନଙ୍କ ମଧ୍ୟରେ ଯଦି ସେହି ଶୃଙ୍ଖଳା ଜ୍ଞାନ ସୃଷ୍ଟି କରିବା ଦିଗରେ ଆମେ ସମସ୍ତେ ସହଯୋଗ କରିବା ତାହାହେଲେ ଅସ୍ୱଚ୍ଛଳ ଅବସ୍ଥାରେ ଥିବା ଆମ କୃଷି ଅର୍ଥନୀତିକୁ ସ୍ୱଚ୍ଛଳ କରିବାପାଇଁ ବ୍ୟବସାୟୀ ବ୍ୟାଙ୍କମାନେ ଅନୁଷ୍ଠାନମାନଙ୍କରୁ ଅଧିକ ଋଣ ଆଣି ବିନିଯୋଗ କରିବା ସମ୍ଭବ ହୋଇପାରିବ । ମୁଁ ଆଶା କରୁଛି ମୋର ଶ୍ରୋତୃବୃନ୍ଦ ବନ୍ଧୁଗଣ ଏ ବିଷୟରେ ମୋ ସହିତ ଏକମତ ହେବେ । ବହୁ ସଂଖ୍ୟକ ଚାଷୀ ଋଣ ଦାନକାରୀ ଅନୁଷ୍ଠାନମାନଙ୍କଠାରୁ ଋଣ ଆଣି ତାହାକୁ ଉତ୍ପାଦନ ବଢ଼ାଇବାରେ ବିନିଯୋଗ କରି ଯଥା ସମୟରେ ତାହା ପରିଶୋଧ କରି ଦେବାର ଲକ୍ଷ୍ୟରେ ମୋର ବନ୍ଧୁମାନଙ୍କର ସମର୍ଥନ ମୁଁ ପ୍ରାର୍ଥନା କରୁଛି । ଏହା ଏକ ଅପରିବର୍ତ୍ତନୀୟ ଓ କଠୋର ନିୟମ ଯାହାକୁ ଭାଙ୍ଗିବା ଠିକ ହେବ ନାହିଁ । ଏହି ନିୟମର ବ୍ୟତିକ୍ରମ କରିବା ଦ୍ୱାରା ସମସ୍ୟା ହେବ, ଯାହା ଦୁର୍ଦ୍ଦଶାଜନକ ପରିସ୍ଥିତି ଉପୁଜେ ଓ ଯାହା ବାସ୍ତବ ଏବଂ ବ୍ୟାପକ ହୋଇଥାଏ । ମାତ୍ର ଋଣଦାନ ପଦ୍ଧତିକୁ ଉନ୍ନତ ଓ ସରଳ କରିବାପାଇଁ ଆମକୁ ସର୍ବଦା ଧାରବାହିକ ଉଦ୍ୟମ କରିବାକୁ ହେବ । ଯଦି ଶୀଘ୍ର ଋଣ-ଅର୍ଥନୀତିକ ବ୍ୟବସ୍ଥାକୁ ଭିତ୍ତି କରି ଉତ୍ପାଦନ ପଦ୍ଧତିକୁ ସଂଗଠିତ କରାଯାଏ, ତାହାହେଲେ ଆମ ମତରେ ତାହା ଗ୍ରାମାଞ୍ଚଳର ଲକ୍ଷ ଲକ୍ଷ ଦୁର୍ବଳ ଶ୍ରେଣୀର ଲୋକଙ୍କ ସ୍ୱାର୍ଥ ଅନୁସାରେ ଏକ ସ୍ୱଳ୍ପ ପ୍ରଥା ଜାତ ହେବ । ସହଯୋଗୀ କାର୍ଯ୍ୟକଳାପ ଅର୍ଥ-ନୀତିର ସମସ୍ତ ଚତୁର୍ଦ୍ଦିଗ କ୍ଷେତ୍ର, ଅର୍ଥାତ୍ ଉତ୍ପାଦନ, ବିକିବଟା ଓ ଋଣଦାନ କ୍ଷେତ୍ରକୁ କ୍ରମଶଃ ପରିବ୍ୟାପ୍ତ ହେଉଛି ।

5·02. ଓଡ଼ିଶା କୃଷି ଶିଳ୍ପ କର୍ପୋରେସନ 2.6 ଲକ୍ଷ ଟଙ୍କା ମୂଲ୍ୟର ଟ୍ରାକ୍ଟର, କଳ ଲଙ୍ଗଳ, ସ୍ପ୍ରେୟର ଓ ଅନ୍ୟାନ୍ୟ କୃଷି ଯନ୍ତ୍ରପାତି ବିକ୍ରି କରିଛନ୍ତି । କର୍ପୋରେସନ ପରିଚାଳିତ ବ୍ରହ୍ମପୁର, ଭୁବନେଶ୍ୱର ଓ ସମ୍ବଲପୁରସ୍ଥିତ ଗୋଖାଦ୍ୟ ଉତ୍ପାଦନ କେନ୍ଦ୍ରଗୁଡ଼ିକରୁ 16 ଲକ୍ଷ ଟଙ୍କା ମୂଲ୍ୟର ମିଶ୍ରିତ ଗୋଖାଦ୍ୟ ବିକ୍ରୟ କରାଯାଇଛି ଓ ବଜାରରେ ଏହାର ଭଲ ଚାହିଦା ରହିଛି । ଏହି ମିଶ୍ରିତ ଗୋଖାଦ୍ୟର ଯେଉଁ ବ୍ୟାପକ ଚାହିଦା ରହିଛି ତାହା ପୂରଣ କରିବା ଉଦ୍ଦେଶ୍ୟରେ 1975-1976ରେ ସୁନ୍ଦରଗଡ଼, କୋରାପୁଟ ଓ ବାଲେଶ୍ୱର ଜିଲ୍ଲାମାନଙ୍କରେ ଏହିଭଳି କାରଖାନା

ସ୍ଥାପନର ପ୍ରସ୍ତାବ ରହିଛି । ଆଉ ମଧ୍ୟ କୃଷିଭିତ୍ତିକ ଭ୍ରମଣ ଶିଳ୍ପ ସ୍ଥାପନ କରିବାପାଇଁ କର୍ପୋରେସନ ମନସ୍ଥ କରିଛନ୍ତି । 1975-1976ରେ ଯେଉଁ ସବୁ ଯୋଜନା କାର୍ଯ୍ୟକାରୀ ହେବ ତନ୍ମଧ୍ୟରେ ରାୟଗଡ଼ାଠାରେ 40 ଟନ୍ ଉତ୍ପାଦନକ୍ଷମ ଏକ ଦ୍ରବକ ନିଷ୍କାସନ କାରଖାନା ଓ ସହରାଞ୍ଚଳ ଆବର୍ଜନାର ଉପଯୋଗ ନିମନ୍ତେ କମ୍ପୋଷ୍ଟ ପ୍ଲାଣ୍ଟ ସ୍ଥାପନ ଅନ୍ୟତମ । କୃଷକମାନଙ୍କପାଇଁ ଆଧୁନିକ ଯନ୍ତ୍ରର ସୁବିଧା ସୁଯୋଗ ଯୋଗାଇଦେବା ଉଦ୍ଦେଶ୍ୟରେ ବର୍ତ୍ତମାନ ରହିଥିବା 14ଟି କୃଷି ସେବା କେନ୍ଦ୍ର ବ୍ୟତୀତ 1975-1976ରେ ଆଉ ଏଭଳି ଅଧିକ 15ଟି କେନ୍ଦ୍ର ଖୋଲିବାର କାର୍ଯ୍ୟକ୍ରମ ରହିଛି । ଏଭଳି କେନ୍ଦ୍ର ବେଶ୍ ଲୋକପ୍ରିୟତା ହାସଲ କରି ପାରିଛି ।

ଜଳସେଚନ ଓ ବିଦ୍ୟୁତ୍

6. କ୍ଷୁଦ୍ର, ମଧ୍ୟମ, ବୃହତ୍ ଓ ଉଠା ଜଳସେଚନ ବ୍ୟବସ୍ଥା ଆଦିକୁ ରାଜ୍ୟର ଜଳ ଉପଯୋଗ ଯୋଜନା କହିଲେ ଅତ୍ୟୁକ୍ତି ହେବ ନାହିଁ । ତ୍ରୁଟିପୂର୍ଣ୍ଣ ଯୋଜନା ଅଥବା ଅକ୍ଷମତାର ଯନ୍ତ୍ରପାତିର ଯୋଗାଣ ନ ହେବା ଫଳରେ ଅନେକ ଯୋଜନାର ନିର୍ମାଣ କାର୍ଯ୍ୟ ବହୁ ବର୍ଷ ଧରି ଲାଗି ରହିଛି । ଏ ସବୁ ଅସଂପୂର୍ଣ୍ଣ ଯୋଜନା ଶୀଘ୍ର ସଂପୂର୍ଣ୍ଣ କରିବାର ଅଭିପ୍ରାୟ ରଖି ସରକାର ନିଷ୍ପତ୍ତିମୂଳକ ପଦକ୍ଷେପ ନେଇଛନ୍ତି ଓ 1975 ମାର୍ଚ୍ଚ ଶେଷ ସୁଦ୍ଧା 113ଟି ଯୋଜନା ସଂପୂର୍ଣ୍ଣ କରିବା ଉଦ୍ଦେଶ୍ୟରେ ଚଳିତ ବର୍ଷର ବାଜେଟ୍ ଅଟକଳ 2,17 ଲକ୍ଷ ଟଙ୍କାରୁ 5,21·75 ଲକ୍ଷ ଟଙ୍କାକୁ ବୃଦ୍ଧି କରାଯାଇଛି । ଏସବୁ ଯୋଜନା ସଂପୂର୍ଣ୍ଣ ହେଲେ 25,933 ହେକ୍ଟର ଖରିଫ ଫସଲ ଓ 7,494 ହେକ୍ଟର ରବି ଫସଲପାଇଁ ଜଳସେଚନର ସୁବିଧା ମିଳିବ । ମାନ୍ୟବର ସଭ୍ୟମାନେ ହୃଦୟଙ୍ଗମ କରିବେ ଯେ ସରକାରଙ୍କର ଏହି ବଳିଷ୍ଠ ନିଷ୍ପତ୍ତି-ଦ୍ୱାରା ଗୋଟିଏ ବର୍ଷରେ କ୍ଷୁଦ୍ର ଜଳସେଚନ ଯୋଜନାରୁ ମିଳୁଥିବା ସୁବିଧା ଆହୁରି ଶତକଡ଼ା 10 ଭାଗ ବୃଦ୍ଧି ପାଇବ । ଆମେ 1975-76ରେ ଏହି ଉଦ୍ୟମ ଅବ୍ୟାହତ ରଖିବାପାଇଁ ପ୍ରସ୍ତାବ ରଖିଛୁ । କିନ୍ତୁ ଯେଉଁ ଅଞ୍ଚଳଗୁଡ଼ିକରେ ଜଳସେଚନର ସୁବିଧା ଅପେକ୍ଷାକୃତ କମ୍ ସେହି ଅଞ୍ଚଳମାନଙ୍କରେ କେତେକ ନୂତନ ଯୋଜନା ଆରମ୍ଭ କରାଯାଇପାରେ । ଚତୁର୍ଥ ଯୋଜନାର ଶେଷ ସୁଦ୍ଧା ବୃହତ୍ ଓ ମଧ୍ୟମ ଜଳସେଚନ ଯୋଜନା ଦ୍ୱାରା 5,10,240 ହେକ୍ଟର ଖରିଫ ଫସଲ ଓ 2,61,470 ହେକ୍ଟର ରବି ଫସଲପାଇଁ ଜଳସେଚନର ବ୍ୟବସ୍ଥା କରାଯାଇଥିଲା । ଅତଏବ ଜଳସେଚନର ସମ୍ଭାବନା

ମୃତ୍ତି ଭରବାଫଳରେ 1974-75 ମସିହାରେ ଅଧିକ 23,970 ହେକ୍ଟର ଖରିଫ ଫସଲ ଓ 8,280 ହେକ୍ଟର ରବି ଫସଲପାଇଁ ଜଳସେଚନର ବ୍ୟବସ୍ଥା କରାଯାଇପାରିବ । ବର୍ତ୍ତମାନ ନିର୍ମାଣ ଅବସ୍ଥାରେ ଥିବା 3ଟି ବୃହତ୍ ଓ 22ଟି ମଧ୍ୟମ ଜଳସେଚନ ଯୋଜନା ସକାଶେ 1975-76 ବଜେଟ୍ ଅଟକଳରେ 12,60 ଲକ୍ଷ ଟଙ୍କାର ବ୍ୟୟ ବରାଦ କରାଯାଇଛି । ଏହି ଯୋଜନାଗୁଡ଼ିକ ଅସମ୍ପୂର୍ଣ୍ଣ ରହିଥିଲେ ମଧ୍ୟ ଏଗୁଡ଼ିକ ଦ୍ୱାରା 1975-76 ମସିହାରେ ଅଧିକ 32,290 ହେକ୍ଟର ଖରିଫ ଫସଲ ଓ 15,330 ହେକ୍ଟର ରବିଫସଲରେ ଜଳସେଚନ କରାଯାଇପାରିବ । କାମ ଚାଲିଥିବା କେତେକ ମଧ୍ୟମ ଧରଣର ଜଳସେଚନ ପରିକଳ୍ପନାଦ୍ୱାରା ସୁନ୍ଦରଗଡ଼, ମୟୂରଭଞ୍ଜ, ଫୁଲବାଣୀ, ଓ କଳାହାଣ୍ଡି ଜିଲ୍ଲାର ଆଦ୍ୟାକଟ୍‌ମାନେ ଉପକୃତ ହେବେ । କୋରାପୁଟ ଜିଲ୍ଲାରେ କାର୍ଯ୍ୟକାରୀ ହେଉଥିବା ପୋଟେରୁ ଜଳସେଚନ ଯୋଜନାପାଇଁ 1975-76 ମସିହାରେ ପ୍ରାୟ 2,45 ଲକ୍ଷ ଟଙ୍କାର ବ୍ୟୟ ବରାଦ କରାଯାଇଛି । ଯେଉଁସବୁ ଅଞ୍ଚଳରେ କେନାଲ ଜଳସେଚନର ସୁବିଧା ସମ୍ଭବପର ନୁହେଁ, ସେସବୁ ଅଞ୍ଚଳରେ ଜଳସେଚନର ପରିସର ବୃଦ୍ଧି କରିବା ନିମନ୍ତେ ଓଡ଼ିଶା ଉଠାଜଳସେଚନ କର୍ପୋରେସନ୍ ଅନେକଗୁଡ଼ିଏ ଯୋଜନା ପ୍ରଣୟନ କରିଛନ୍ତି । ଏ ସବୁଯୋଗରେ 1975-76 ମସିହାରେ 15,117 ହେକ୍ଟର ଆୟାକଟ୍‌ରେ ଜଳସେଚନର ବ୍ୟବସ୍ଥା କରାଯାଇପାରିବ । 1975-76ରେ 750ଟି ଉଠାଜଳସେଚନ କେନ୍ଦ୍ର ସ୍ଥାପିତ ହେବାପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇଛି । ସେଥିମଧ୍ୟରୁ କେନ୍ଦୁଝର ଜିଲ୍ଲାରେ 42ଟି, କୋରାପୁଟ ଜିଲ୍ଲାରେ 70ଟି, ମୟୂରଭଞ୍ଜ ଜିଲ୍ଲାରେ 14ଟି, ଫୁଲବାଣୀ ଜିଲ୍ଲାରେ 13ଟି ଢେଙ୍କାନାଳ ଜିଲ୍ଲାରେ 12ଟି, ଓ ସୁନ୍ଦରଗଡ଼ ଜିଲ୍ଲାରେ 9ଟି, କେନ୍ଦ୍ର ସ୍ଥାପିତ ହେବ । ଓଡ଼ିଶା ଉଠାଜଳସେଚନ କର୍ପୋରେସନ୍ ସେମାନଙ୍କର ପରିକଳ୍ପନାଗୁଡ଼ିକରେ ଅର୍ଥଯୋଗ କରିବା ନିମନ୍ତେ କୃଷି ପୁନଃଋଣଦାନ କର୍ପୋରେସନ୍‌ରୁ ଋଣ ନେବାପାଇଁ ତାଙ୍କସହିତ ଆଲୋଚନାକରି ବ୍ୟବସ୍ଥା କରି ସାରିଛନ୍ତି ।

6·1. ଅର୍ଥନୈତିକ ଉନ୍ନତିପାଇଁ ବିଦ୍ୟୁତ୍ ଗୋଟିଏ ମୌଳିକ ଆବଶ୍ୟକତା ଏବଂ କୋଣାର୍କ ଯେ କୌଣସି ସମାଜ ପକ୍ଷରେ ଏହା ଦେବୋଦୌ ଆବଶ୍ୟକ । 1975-76 ପାଇଁ ସରକାର ବିଦ୍ୟୁତ୍ ଯୋଜନାରେ 37,75 ଲକ୍ଷ ଟଙ୍କାର ବ୍ୟୟ ପ୍ରସ୍ତାବ ହୋଇଛି ଓ ଏହା ଚଳିତ ବର୍ଷର ବଜେଟ୍ ବ୍ୟବସ୍ଥାଠାରୁ ଅଧିକ । ଏ କ୍ଷେତ୍ରରେ ଆମର ଆଗ୍ରାଧିକାର ସମ୍ପର୍କିତ ଯେଉଁ ପରିକଳ୍ପନା ରହିଛି ତାହାର ନିର୍ମାଣ ଅବସ୍ଥାରେ ଥିବା କାର୍ଯ୍ୟଗୁଡ଼ିକୁ ଶୀଘ୍ର ଶେଷ କରିବାପାଇଁ

ଲକ୍ଷ୍ୟ ରଖାଯାଇଛି । 1975-76ରେ ଉତ୍ପାଦନ ସାମର୍ଥ୍ୟ 901 ମେଗାଓ୍ୱାଟ୍ ପର୍ଯ୍ୟନ୍ତ ବୃଦ୍ଧି କରାଯିବ । ତାଳଚେରର ତାପଜ ବିଦ୍ୟୁତ୍ କେନ୍ଦ୍ରର ସମ୍ପ୍ରସାରଣ କାର୍ଯ୍ୟ ସନ୍ତୋଷଜନକଭାବେ ଆଗେଇ ଚାଲିଛି । ଅପର କୋଲାବ ପ୍ରକଳ୍ପର ପ୍ରାରମ୍ଭିକ କାର୍ଯ୍ୟ ଆରମ୍ଭ କରାଯାଇଛି । କେତେକ ବିଦ୍ୟୁତ୍ ସରବରାହ ଓ ବଣ୍ଟନ କାର୍ଯ୍ୟ ସମ୍ପୂର୍ଣ୍ଣ କରିବା ନିମନ୍ତେ ବିଦ୍ୟୁତ୍ ଯୋଜନାରେ 18,08 ଲକ୍ଷ ଟଙ୍କା ନିର୍ଦ୍ଦିଷ୍ଟ କରାଯାଇଛି । ଗ୍ରାମ୍ୟ ବିଦ୍ୟୁତ୍କରଣ ପରିକଳ୍ପନା ଅନୁଯାୟୀ 1975-76ରେ ଅଧିକ 970ଟି ଗ୍ରାମ ଓ 500 ପମ୍ପସେଟ୍କୁ ବିଦ୍ୟୁତ୍ ସଂଯୋଗ କରାଯିବ ।

**ଶିଳ୍ପ ଓ ଖଣି**

7. ରାଜ୍ୟର ଶିଳ୍ପ ସଂସ୍ଥାଗୁଡ଼ିକର ମୌଳିକ ସାଙ୍ଗଠନିକ ରୂପାନ୍ତର ଘଟାଇବା ରାଜ୍ୟର ଶିଳ୍ପପ୍ରସାର କାର୍ଯ୍ୟକ୍ରମଗୁଡ଼ିକର ମୂଳଲକ୍ଷ୍ୟ । ଏହି ଆଭିମୁଖ୍ୟର ଅଙ୍ଗୀଭୂତ ହେଲା, ଶିଳ୍ପ ସଂସ୍ଥା ପ୍ରତିଷ୍ଠା ନିମନ୍ତେ ସରକାରୀ, ସହଯୋଗୀ ତଥା ମିଳିତ ଉଦ୍ୟମ ଜରିଆରେ ଅର୍ଥ ବିନିଯୋଗ, କେତେକ ନିର୍ଦ୍ଦିଷ୍ଟ ସୁବିଧାସୁଯୋଗ, ନୂତନ ଶିଳ୍ପ ଉଦ୍ୟୋଗକାରୀମାନଙ୍କୁ ପ୍ରୋତ୍ସାହନ ପ୍ରଦାନ, ବୈଷୟିକ ପାଠ୍ୟକ୍ରମଗୁଡ଼ିକର ଅଧିକାକରଣ, କର୍ମ ସଂସ୍ଥାନ ଓ ଉପାର୍ଜନ ନିମନ୍ତେ ଶିଳ୍ପ କ୍ଷେତ୍ରରେ ଅବତୀର୍ଣ୍ଣ ହେବାପାଇଁ ଯୁବକମାନଙ୍କୁ ପ୍ରୋତ୍ସାହନ । ଶିଳ୍ପ ଉନ୍ନୟନ ଏବଂ ଅର୍ଥ ବିନିଯୋଗ କର୍ପୋରେସନ୍ ଓ ଶିଳ୍ପ ଉନ୍ନୟନ କର୍ପୋରେସନ୍ଙ୍କ ଦ୍ୱାରା ମିଳିତ ଉଦ୍ୟୋଗର କାର୍ଯ୍ୟକାରୀ ହେବାପାଇଁ କେତେକ ଚୁକ୍ତି ସ୍ୱାକ୍ଷରିତ ହୋଇଛି । ଏହାଫଳରେ ଆଗାମୀ 2/3 ବର୍ଷ ମଧ୍ୟରେ 50,00 ଲକ୍ଷ ଟଙ୍କାରୁ ଅଧିକ ଅର୍ଥ ବିନିଯୋଗ କରାଯିବାର ସମ୍ଭାବନା ଭୁବନେଶ୍ୱରଠାରେ ଏକ ଅକ୍ସାଇମାଲାଇଜ ନାଇଲନ ଟାୟାର କାରଖାନା ସ୍ଥାପନପାଇଁ ଯୁକ୍ତରାଷ୍ଟ୍ରଆମେରିକା ସହିତ କାରିଗରୀ ସହଯୋଗ ଓ ବଜାର-ଇଞ୍ଜିନିୟରିଂ ସେବା ସମ୍ପର୍କୀୟ ଚୁକ୍ତି ସ୍ୱାକ୍ଷରିତ ହୋଇଛି । ବେସରକାରୀ ଉଦ୍ୟୋଗରେ ଅନ୍ୟାନ୍ୟ ବୃହତ୍ ଓ ମଧ୍ୟମ ଶିଳ୍ପ ସଂସ୍ଥା ଯେଉଁମାନେ ଆଗାମୀ ଦୁଇ ତିନି ବର୍ଷ ମଧ୍ୟରେ ଶିଳ୍ପ ସ୍ଥାପନପାଇଁ ଇପିତାଲ ସହିତ ଆଲୋଚନାକରିଛନ୍ତି, ସେମାନେ ପାଖ 10,000 ଲକ୍ଷ ଟଙ୍କା ବିନିଯୋଗ କରିବା ସମ୍ଭାବନା ଅଛି । ବରଗଡ ସମବାୟ ସୂତାକଳରେ 51 ଲକ୍ଷ ଟଙ୍କା ଖର୍ଚ୍ଚରେ 18,400 କଣ୍ଢା ଚଳାଇବାପାଇଁ କଳର ସମ୍ପ୍ରସାରଣ କରାଯାଉଛି । 4,50 ଲକ୍ଷ ଟଙ୍କା ବ୍ୟୟରେ ଦ୍ୱିତୀୟ ସୂତା କଳ ପ୍ରତିଷ୍ଠା ନିମନ୍ତେ 1975-76ରେ କାମଆରମ୍ଭ କରାଯିବ । 1965 ମସିହାଠାରୁ ଅଚଳ ଅବସ୍ଥାରେ ଥିବା ଭଗତପୁର ସୂତା କଳରେ 423 ଜଣ କର୍ମଚାରୀଙ୍କୁ ନିଯୁକ୍ତି ଦିଆଯାଇ ତାହାର

ସ୍ଥାନରୁଛ ମଧ୍ୟରେ କରାଯାଉଛି । ଏହି କଳର ବାର୍ଷିକ 50 ଲକ୍ଷ ଟଙ୍କାରୁ ଅଧିକ ମୂଲ୍ୟର ସୂତା ଉତ୍ପାଦନ କରାଯାଉଛି । ଅନେକ ଗୁଡ଼ିଏ ପ୍ରକଳ୍ପର ନିର୍ମାଣ କାର୍ଯ୍ୟ ଆରମ୍ଭ ହେବାପାଇଁ ସ୍ଥିର ହୋଇଥିବା ହେତୁ 1975-76 ମସିହାର ପ୍ରଥମ ଛଅମାସ ମଧ୍ୟରେ ଶିଳ୍ପ ସମ୍ପର୍କିତ କାର୍ଯ୍ୟକଳାପରେ ଅଭୂତପୂର୍ବ ଅଭିବୃଦ୍ଧି ଘଟିବ । ପ୍ରତିଷ୍ଠିତ ହେବାକୁ ଯାଉଥିବା ଶିଳ୍ପ ପ୍ରକଳ୍ପ ହେଲା—ଧାନମଣ୍ଡଳ-ଠାରେ କୋଣାର୍କ ହୋଟେଲ, ଭୁବନେଶ୍ୱରଠାରେ ଓଡ଼ିଶା ଟାୟାର ଓ ଇଲେକ୍ଟ୍ରୋଲିଟିକ୍ ମାଙ୍ଗାନିଜ୍, ଢେଙ୍କାନାଳଠାରେ କାରବନ ଆଲୁମିନିୟମ, କାଗଜ ଓ ଫାଇବର ସଂସ୍ଥା, ମୟୂରଭଞ୍ଜ ଜିଲ୍ଲାର ଫେରୋଆଲୟଜ, କଙ୍କ୍ରିଟ ଓ କାଗଜ ବୋର୍ଡ ସଂସ୍ଥା ଏବଂ ଅନୁଗୁଳ ଓ ରାୟଗଡ଼ାଠାରେ ଦ୍ରାବକ ନିଷ୍କାସନ କାରଖାନା । ଗୋପାଳପୁରଠାରେ ଇଣ୍ଡିଆନ୍ ରେୟାର ଆର୍ଥ ଶିଳ୍ପ ସମନ୍ୱୟ, ରାଇରଙ୍ଗପୁରଠାରେ ଫେରୋଭାନାଡ଼ିୟମ୍ କାରଖାନା ଓ ସୁକିନ୍ଦାଠାରେ ନିକେଲ କାରଖାନା ଭଳି କେତେକ କେନ୍ଦ୍ରୀୟ ପରିକଳ୍ପନାର କାର୍ଯ୍ୟ ଆଗାମୀ ଦୁଇ ତିନି ବର୍ଷ ମଧ୍ୟରେ 650 ଲକ୍ଷରୁ ଅଧିକ ଟଙ୍କା ବିନିଯୋଗରେ 1975-76 ମସିହାରେ ଆରମ୍ଭ କରାଯିବ ବୋଲି ଆଶା କରାଯାଉଛି । ତାଳଚେର ସାର କାରଖାନା ଓ ଭାରୀ ଜଳ ପରିକଳ୍ପନାର କାମ 1975-76ରେ ଆରମ୍ଭ ହେବ ବୋଲି ଆଶା କରାଯାଏ । ଶିଳ୍ପାୟନ କ୍ଷେତ୍ରରେ ଏକ ଉଲ୍ଲେଖଯୋଗ୍ୟ ଘଟଣା ଏହି ଯେ ଓଡ଼ିଶାରେ ଅର୍ଥ ଖଟାଇବାପାଇଁ ଶିଳ୍ପପତିମାନେ ପୂର୍ବାପେକ୍ଷା ଆଜି ପଶ୍ଚାତ୍‌ପଦ ହେଉନାହାନ୍ତି । ଭାରତର ଶିଳ୍ପ ଉନ୍ନୟନ ବ୍ୟାଙ୍କ, ଶିଳ୍ପ ଅର୍ଥ କର୍ପୋରେସନ ତଥା ବ୍ୟବସାୟୀ ବ୍ୟାଙ୍କମାନେ ମଧ୍ୟ ଆବଶ୍ୟକୀୟ ସମସ୍ତ ସାହାଯ୍ୟ ଯୋଗାଇ ଦେବାପାଇଁ ବ୍ୟଗ୍ର । ଏହା ବାଦ୍ ରାଜ୍ୟ ଅର୍ଥ କର୍ପୋ-ରେସନ ମଧ୍ୟ ଏଥି ନିମନ୍ତେ ସାହାଯ୍ୟ କରିବାପାଇଁ ତତ୍ପର ଅଛନ୍ତି ଏବଂ ସେମାନେ 215 ଲକ୍ଷ ଟଙ୍କାରୁ ଅଧିକ ଅର୍ଥ ମଞ୍ଜୁର କରି ସାରିଛନ୍ତି । ତେଣୁ ଏହି କେବଳ ବୃଦ୍ଧି ପାଏ ତାହାହେଲେ ମୁଁ ନିଶ୍ଚିତ ଯେ ଆମ ରାଜ୍ୟରେ ସମସ୍ତ ସମ୍ପଦ୍ ସମ୍ପର୍କରେ ପୂର୍ବ ଯାହାକି ରାଜ୍ୟ ବାହାରେ ଥିବା ଅଧିକ ଶିଳ୍ପ ସମ୍ଭାବନା-ପୂର୍ଣ୍ଣ ସ୍ଥାନକୁ ଚାଲିଯାଉଛି, ତାହା ବନ୍ଦ ହୋଇ ବରଂ ବାହାରୁ ପୁଞ୍ଜି ଆସି ଆମ ରାଜ୍ୟରେ ବିନିଯୁକ୍ତ ହେବ । କ୍ଷୁଦ୍ର ଶିଳ୍ପ ତଥା ଆନୁଷଙ୍ଗିକ ଶିଳ୍ପ ସମ୍ପର୍କରେ ହୋଇଥିବା ଅଗ୍ରଗତି ଅଧିକ ନ ହେଲେ ମଧ୍ୟ ସମାନ ପରିମାଣରେ ଉଲ୍ଲେଖଯୋଗ୍ୟ । ଓଡ଼ିଶା କ୍ଷୁଦ୍ର ଶିଳ୍ପ କର୍ପୋରେସନର କଞ୍ଚାମାଲ କାରବାର 223 ଲକ୍ଷ ଟଙ୍କା ହୋଇଛି । 1975-76ରେ ବଡ଼ବିଲ, କେଉଁଝର ଓ ବାଲେଶ୍ୱର ଆଦି ନୂଆ ନୂଆ ଅଞ୍ଚଳରେ କଞ୍ଚାମାଲ ମହଜୁଦ୍ କରିବା ନିମନ୍ତେ

ଷ୍ଟକସ୍ୱାର୍ଡ ଏଖୋଲଗଲେ ଉକ୍ତ କାରବାରରେ ଆହୁରି ଉନ୍ନତି ଘଟିବ ବୋଲି ଆଶା କରାଯାଏ । 1975-76ର କାର୍ଯ୍ୟକ୍ରମରେ କାରବାର ସରକାରଙ୍କ ବଜେଟ୍‌ରୁ କୌଣସି ସାହାଯ୍ୟ ନପାଇ 16 ଲକ୍ଷ ଟଙ୍କାରୁ ଅଧିକ ହେବ ବୋଲି ଆଶା କରାଯାଏ । ରାଉରକେଲା ଏବଂ ତାହାର ଚତୁଃପାର୍ଶ୍ୱବର୍ତ୍ତୀ ସ୍ଥାନ-ମାନଙ୍କରେ ଥିବା ଆନୁଷଙ୍ଗିକ ଶିଳ୍ପ ସଂସ୍ଥାଗୁଡ଼ିକ 1974-75ରେ 500 ଲକ୍ଷ ଟଙ୍କା ମୂଲ୍ୟର ସାମଗ୍ରୀ ଉତ୍ପାଦନ କରିଥିବା ସମ୍ଭାବନା । କିନ୍ତୁ ଏହି ସଂସ୍ଥା-ମାନଙ୍କରେ 1972-73ରେ 324 ଲକ୍ଷ ଟଙ୍କା ମୂଲ୍ୟର ଏବଂ 1973-74ରେ 354 ଲକ୍ଷ ଟଙ୍କା ମୂଲ୍ୟର ସାମଗ୍ରୀ ଉତ୍ପାଦିତ ହୋଇଥିଲା । ତାଳଚେର ଓ ସୁନାବେଡ଼ା ଏବଂ ସେସବୁର ଚତୁଃପାର୍ଶ୍ୱରେ ଏହିଭଳି ଶିଳ୍ପ ସଂସ୍ଥାମାନ ସ୍ଥାପନ କରିବାପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତ ହୋଇଛି । ଚଳିତବର୍ଷ କ୍ଷୁଦ୍ରଶିଳ୍ପ ସଂସ୍ଥାଗୁଡ଼ିକ ଦ୍ୱାରା ଗଠିତ ସମ୍ପତ୍ତିର ମୂଲ୍ୟ 300 ଲକ୍ଷ ଟଙ୍କାରୁ ଅଧିକ । ଉକ୍ତ ସଂସ୍ଥାଗୁଡ଼ିକ 3500ରୁ ଅଧିକ କର୍ମସଂସ୍ଥାନର ବ୍ୟବସ୍ଥା କରିଛନ୍ତି । କାର୍ଯ୍ୟକାରୀ ଅବସ୍ଥାରେ ଥିବା ପାଇଲଟ୍ ପ୍ରୋଜେକ୍ଟ ସଂସ୍ଥାମାନେ 60 ଲକ୍ଷ ଟଙ୍କାରୁ ଅଧିକ ମୂଲ୍ୟର କାରବାର କରିପାରିଛନ୍ତି । 66ଟି ପଞ୍ଜୀକୃତ ଧର୍ଷିତ ଶିଳ୍ପର କାର୍ଯ୍ୟକଳାପରେ ଉନ୍ନତି ଘଟିଛି ଏବଂ 1975-76ରେ ଅଧିକା ଆଉ 7ଟି ସଂସ୍ଥାର ପୁନରୁଦ୍ଧାର କରାଯିବା ପ୍ରସ୍ତାବ ରହିଛି । ରାଜ୍ୟରୁ ଶିଳ୍ପାୟନ କାର୍ଯ୍ୟକୁ ଶକ୍ତିଶାଳୀ କରିବାପାଇଁ ଯେଉଁସବୁ ପଦକ୍ଷେପ ନିଆଯାଇଛି ତନ୍ମଧ୍ୟରୁ କେନ୍ଦ୍ରୀକ ହେଲା ବିକାଶ କେନ୍ଦ୍ରର ଚୟନ ବଲାଙ୍ଗୀର, କଳାହାଣ୍ଡି, ତାଳଚେର ଓ ସୁନାବେଡ଼ା ଆଦି ଅଞ୍ଚଳ ଗୁଡ଼ିକରେ କାରଖାନା ଗୃହର ସଂପ୍ରସାରଣ, ଶିଳ୍ପ ପ୍ରତିଷ୍ଠା ଉତ୍କର୍ଷରେ ମୌଳିକ ସୁବିଧା ସୁଯୋଗ ଯୋଗାଇ ଦେବା ସଂକ୍ରାନ୍ତ କାର୍ଯ୍ୟବିଧିର ସରଳୀକରଣ ଓ ବିଭିନ୍ନ ବିଭାଗ ସ୍ତରରେ ଅଧିକ ସମନ୍ୱୟ ସ୍ଥାପନ । ରାଜ୍ୟରେ ଥିବା ହସ୍ତଚାଳିତ ଓ ବିଦ୍ୟୁତ୍‌ଚାଳିତ ତନ୍ତଗୁଡ଼ିକ ସେମାନଙ୍କର ଉତ୍ପାଦିତ ସାମଗ୍ରୀକୁ ଯେପରି ଅଧିକ ମୂଲ୍ୟରେ ବିକ୍ରୟ କରିପାରିବେ ସେଥିପାଇଁ 1975-76ରେ ସେମାନଙ୍କୁ ବିଭିନ୍ନ ପ୍ରକାର ସହାୟତା କରାଯିବ, ଯଥା:—ବିକ୍ରି ବଜାର ସୁବିଧା, ପ୍ରସ୍ତୁତମୂଳକ ଓ ପ୍ରଶୋଧନ ୟୁନିଟ୍ । ରାଜ୍ୟସ୍ତରୀୟ ଉଦ୍ୟୋଗଗୁଡ଼ିକର ନିର୍ଦ୍ଦେଶକ ମଣ୍ଡଳୀ (ବୋର୍ଡ ଅଫ୍ ଡିରେକ୍ଟର) ମାନଙ୍କରେ ବ୍ୟାଙ୍କର, ବୈଷୟିକ ଉଦ୍ୟୋକ୍ତା, ଗବେଷଣା ସଂସ୍ଥାମାନଙ୍କର ମୁଖ୍ୟ ଓ ଶିଳ୍ପ ସମ୍ପର୍କୀୟ ଅଭିଜ୍ଞ ବ୍ୟକ୍ତିମାନଙ୍କୁ ନିଆଯାଇ ଉକ୍ତ ଉଦ୍ୟୋଗଗୁଡ଼ିକର ପରିଚାଳନାକୁ ଦୃଢ଼ୀଭୂତ କରାଯାଇଛି । ଏଠାରେ ମୁଁ ସୂଚାଇ ଦେବାକୁ ଚାହେଁ ଯେ ଉପଯୁକ୍ତ ପ୍ରୋଜେକ୍ଟଗୁଡ଼ିକୁ ସେମାନଙ୍କର କାର୍ଯ୍ୟକାରିତା ଦେଖିବାରେ ଥିବା ବାଧାବିଘ୍ନ ଏଡ଼ାଇବା ନିମନ୍ତେ

ବା ଅର୍ଥ ଲଗାଣକାରୀ ସଂସ୍ଥାକୁ ଅର୍ଥ ପାଇବାରେ ବିଳମ୍ବ ହେବାରୁ ସମ୍ପ୍ରସାରଣ କାର୍ଯ୍ୟ ଯେପରି ବ୍ୟାହତ ନହୁଏ ସେଥିନିମନ୍ତେ ଆର୍ଥିକ ସାହାଯ୍ୟ ଦେବାପାଇଁ 100 ଲକ୍ଷ ଟଙ୍କା 1975-76 ବଜେଟ୍‌ରେ ବ୍ୟବସ୍ଥା କରାଯାଇଛି ।

7·1. 1974-75 ଓ 1975-76ରେ ଅଧିକ ଉତ୍ପାଦନ ଏବଂ ଖଣିଜ ଦ୍ରବ୍ୟର ଅଧିକ ବିନିଯୋଗ ଦେଉଛି ଆମର ଦୁଇଟି ପ୍ରଧାନ ଲକ୍ଷ୍ୟ । ବହୁ ବାଧାବିଘ୍ନ ସତ୍ତ୍ୱେ ପାରାଦୀପ ବନ୍ଦର ଜରିଆରେ ଆମର ରପ୍ତାନୀ 2·2 ନିୟୁତ ଟନ୍ ହେବ ବୋଲି ଆଶା କରାଯାଏ ଏବଂ ଏହା ବନ୍ଦରର ପ୍ରତିଶ୍ରୁତି ସାମର୍ଥ୍ୟ-ଠାରୁ ବେଶୀ । ଖଣିଜ ପଦାର୍ଥ ଅନୁସନ୍ଧାନ କାର୍ଯ୍ୟକ୍ରମ ଫଳରେ ରାଜ୍ୟରେ ଥିବା କ୍ରୋମାଇଟ୍, ବକ୍‌ସାଇଟ୍ ଓ ଚୂନପଥର ପରି ଖଣିଜ ପଦାର୍ଥର ଠାବ କରାଯାଇଛି । ଆମର ବକ୍‌ସାଇଟ୍ ଖଣିଜ ସମ୍ପଦ ପୃଥିବୀରେ ଅନ୍ୟତମ ସର୍ବବୃହତ୍ ବୋଲି କୁହାଯାଉଛି । 1975-76ରେ ସୁଧ ବାବଦ ଦେୟ ଓ ଅନ୍ୟାନ୍ୟ ଦେଣା ଦେଇସାରିବାପରେ ଓଡ଼ିଶା ଖଣି କର୍ପୋରେସନ୍‌ଙ୍କ 150 ଲକ୍ଷ ଟଙ୍କା ବଳକା ହେବ । 1975-76ରେ ଗନ୍ଧମାର୍ଦ୍ଦନ ଲୁହାପଥରର ପୁଙ୍ଖାନୁପୁଙ୍ଖ ଗବେଷଣା ଏବଂ ଦଇତାରି ଖଣିଜ ଉତ୍ତୋଳନ ପ୍ଲାଣ୍ଟର ଦ୍ୱିତୀୟ ପର୍ଯ୍ୟାୟ କାମ ଶେଷ କରିବା ନିମନ୍ତେ କର୍ପୋରେସନ୍ କାର୍ଯ୍ୟକ୍ରମ ରଖିଛନ୍ତି । 1973-74 ଓ 1974-75ରେ ଖଣି ବାବଦ ରୟାଲଟି ଯଥାକ୍ରମେ 240 ଲକ୍ଷ ଓ 285 ଲକ୍ଷ ଟଙ୍କା ଥିବାସ୍ଥଳେ 1975-76ରେ ଏହା 356 ଲକ୍ଷ ଟଙ୍କା ହେବ ବୋଲି ଆଶା କରାଯାଏ ।

**ଆଦିବାସୀ ଓ ଗ୍ରାମମଙ୍ଗଳ**

8. ଉପଯୋଜନାରେ ଆମ ଜନସଂଖ୍ୟାର ବହୁଭାଗ ତଫସିଲଭୁକ୍ତ ସମ୍ପ୍ରଦାୟ ଓ ତଫସିଲଭୁକ୍ତ ଜାତିର ଲୋକମାନଙ୍କ ନିମନ୍ତେ ଅନେକ ସୁବିଧା ସୁଯୋଗର ବ୍ୟବସ୍ଥା କରାଯାଇଛି । ଏହି ଯୋଜନା ଯୋଗୁଁ ଶତକଡ଼ା 50 ଭାଗ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ଉକ୍ତ ସୁବିଧା ସୁଯୋଗ ପାଇବେ । କାରଣ ଉକ୍ତ ଅଞ୍ଚଳ 4ଟି ଆଦିବାସୀ ଉନ୍ନୟନ ସଂସ୍ଥାର ବାହାରେ ରହିବ । ଏହି ଉପଯୋଜନାର ସ୍ୱତନ୍ତ୍ର ସାମାଜିକ ତଥା ଅର୍ଥନୈତିକ କାର୍ଯ୍ୟକ୍ରମ ଜମିକୁ ଭିତ୍ତି-କରି ପ୍ରଣୀତ ହୋଇଛି ଏବଂ ଜମି ଆବାଦ, ଜମିର ବଣ୍ଟନ, ଜଳସେଚନ ଓ ଫଳ ଉଦ୍ୟାନ ଏହାର ଅନ୍ତର୍ଭୁକ୍ତ । ଉନ୍ନତ କୃଷି ଏବଂ ଅନ୍ୟାନ୍ୟ ଲାଭପ୍ରଦ ଧନ୍ଦା କରିଆସିବା ଦଳିତ ଶ୍ରେଣୀର ଜୀବନଯାପନ ପ୍ରଣାଳୀ ଉନ୍ନତ କରିବା ନିମନ୍ତେ ଏବଂ ଆର୍ଥିକ ଭିତ୍ତିକୁ ସୁଦୃଢ଼ କରିବା ନିମନ୍ତେ ଏହି ବହୁମୁଖୀ ବ୍ୟବସ୍ଥା ଉଦ୍ଦିଷ୍ଟ । ସ୍ୱାସ୍ଥ୍ୟ, ବାସଗୃହ ଏବଂ ଶିକ୍ଷା ପ୍ରଭୃତି ଯୋଜନାରେ ଥିବା ଅନ୍ୟାନ୍ୟ ବ୍ୟବସ୍ଥାମାନ 1975-76ରେ ଋଲୁରହିବ । 4 ଗୋଟି ନୂଆ ଆବାସୀ

ସେବାଶ୍ରମ, 2 ଗୋଟି ନୂଆ ଆଶ୍ରମ ସ୍କୁଲ ଓ ହାଇସ୍କୁଲରେ ନୂତନ ଶ୍ରେଣୀ ପ୍ରତିଷ୍ଠା ଶିକ୍ଷା କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ । 1971 ମସିହା ଜନଗଣନା ଅନୁଯାୟୀ ତଫସିଲଭୁକ୍ତ ସମ୍ପ୍ରଦାୟର ଶତକଡ଼ା ସାକ୍ଷର ହାର 11·62ରୁ 15·5କୁ ଓ ତଫସିଲଭୁକ୍ତ ଜାତିର ଶତକଡ଼ା ସାକ୍ଷର ହାର 7·4ରୁ 9·5 କୁ ଯଥାକ୍ରମେ ବୃଦ୍ଧି ପାଇଛି । ଶିଳ୍ପ ତାଲିମ ପ୍ରତିଷ୍ଠାନରୁ ତାଲିମପାଇ ଉତ୍ତୀର୍ଣ୍ଣ ହୋଇଥିବା ବହୁସଂଖ୍ୟକ ତଫସିଲଭୁକ୍ତ ଜାତି ଓ ସମ୍ପ୍ରଦାୟର ବ୍ୟକ୍ତିମାନେ କମାର ଓ ବଢ଼ଇ କାମରେ ନିଜକୁ ପ୍ରତିଷ୍ଠିତ କରିପାରିଛନ୍ତି । ସରକାରୀ ସ୍ତରରେ ସେମାନଙ୍କ ସ୍ୱତନ୍ତ୍ରଭାବେ ନିଯୁକ୍ତି ଦେବା ନୀତିକୁ ପଦୋନ୍ନତି କ୍ଷେତ୍ରରେ ମଧ୍ୟ ପ୍ରଯୁଜ୍ୟ କରାଯାଇଛି । ଆଦିବାସୀ ଉନ୍ନୟନ ସମବାୟ ସମିତିର କାରବାର 1972-73 ମସିହାରେ 108 ଲକ୍ଷ ଟଙ୍କା ହୋଇଥିବାସ୍ଥଳେ ଚଳିତବର୍ଷ ତାହା 600 ଲକ୍ଷ ଟଙ୍କା ହୋଇପାରେ । ଆଦିବାସୀ ଅଞ୍ଚଳଗୁଡ଼ିକରେ ପ୍ରତିଷ୍ଠା କରାଯାଇଥିବା 250 ଗୋଟି ସୁଲଭ ମୂଲ୍ୟ ଦୋକାନ ଜରିଆରେ ଚଳିତବର୍ଷ 150 ଲକ୍ଷରୁ ଅଧିକ ଟଙ୍କା ମୂଲ୍ୟର ଖାଦ୍ୟଦ୍ରବ୍ୟ ଓ ଅନ୍ୟାନ୍ୟ ଅତ୍ୟାବଶ୍ୟକୀୟ ସାମଗ୍ରୀ ବଣ୍ଟନ କରିବା ପ୍ରସ୍ତାବ ରହିଛି ।

**ଜଙ୍ଗଲ**

9. ରାଜ୍ୟ ରାଜକୋଷପାଇଁ ଜଙ୍ଗଲ ସମ୍ପଦରୁ ବିପୁଳ ରାଜସ୍ୱ ଆଦାୟ ହୋଇଥାଏ । 1975-76 ମସିହାରେ ନୂତନ ଜଙ୍ଗଲ ସୃଷ୍ଟି ପରିକଳ୍ପନା ଅନୁଯାୟୀ 9,750 ଏକର ଜମିରେ ନୂତନ ଜଙ୍ଗଲ ସୃଷ୍ଟି କରାଯିବା ପ୍ରସ୍ତାବ ରହିଛି । ଜାତୀୟକରଣ କରାଯାଇଥିବା କେନ୍ଦୁପତ୍ର ବ୍ୟବସାୟ ଦ୍ରୁତଗତିରେ ଆଗେଇ ଚାଲିଛି । ଉକ୍ତ ପରିକଳ୍ପନା ଅନୁଯାୟୀ 1973-74 ମସିହାରେ 251·40 ଲକ୍ଷ ଟଙ୍କା ଓ 1974-75 ମସିହାରେ 452 ଲକ୍ଷ ଟଙ୍କା ରୟାଲଟି ମିଳିବ ବୋଲି ଆଶା କରାଯାଉଛି । ଏହାଦ୍ୱାରା ଉକ୍ତ ଜାତୀୟକରଣ ବ୍ୟବସାୟ 150 ଲକ୍ଷ ଲୋକଙ୍କୁ ନିଯୁକ୍ତି ଦେଇ ପାରିବା ଭଳି ସକ୍ଷମ ହେବା ସଙ୍ଗେ ସଙ୍ଗେ ସମୟାନୁଯାୟୀ ଓ ବେଳେବେଳେ ଉଚିତ୍ ମୂଲ୍ୟରେ ହଜାର ହଜାର ଲୋକଙ୍କୁ କାମ ଯୋଗାଇଥାନ୍ତି । ମୁଁ ଆଶାକରେ ଏହି ବ୍ୟବସାୟକୁ ଜାତୀୟକରଣ କରିବାରେ ସରକାର ଦୃଢ଼ ଓ ସାହାସିକ ପଦକ୍ଷେପ ନେଇଲେ ତାହାର ପରିମାଣରେ ଯେଉଁସବୁ ଆଶଙ୍କା ଉପୁଜିଥିଲା, ତାହା ଏତଦ୍ୱାରା ଦୂରହେବ ବୋଲି ମୋର ଅନୁମାନ । ଏହା ନିଜର ବ୍ୟବସାୟିକ ଓ ସାମାଜିକ ତଥା ଅର୍ଥନୈତିକ ଲକ୍ଷ୍ୟ ହାସଲ କରି ପାରିଛି । କ୍ଷୁଦ୍ର ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ କରିବା ନିମନ୍ତେ ଆଦିବାସୀ ଉନ୍ନୟନ ସମବାୟ ସମିତି ଓ ଜଙ୍ଗଲ ଶ୍ରମ ସମବାୟ ସମିତିକୁ ଦାୟିତ୍ୱ ନ୍ୟସ୍ତ କରାଯାଇଛି ଓ ଏହା ଫଳରେ ସାମଗ୍ରୀର ଉଚିତ୍ ଅଂଶ ଆଦିବାସୀମାନେ ପାଇ ପାରିବେ ।

**ରାସ୍ତା ଓ ପରିବହନ**

10 । ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଆମ ରାଜ୍ୟରେ ରେଳପଥ ପ୍ରତି ବର୍ଗମାଇଲ ପିଛା ଅପେକ୍ଷାକୃତ କମ୍ ଥିବା ଦୃଷ୍ଟିରୁ ରାଜପଥ, ପ୍ରଧାନ ରାସ୍ତା ତଥା ଶାଖାରାସ୍ତାଗୁଡ଼ିକ ବିଶେଷ ଭାବରେ ବ୍ୟବହାର ଉପଯୋଗୀ ହୋଇଥାଏ । 1975-76 ରେ ସର୍ବନିମ୍ନ ଆବଶ୍ୟକତା ତଥା ଅନ୍ୟାନ୍ୟ ରାସ୍ତା ଉନ୍ନୟନ କାର୍ଯ୍ୟକ୍ରମପାଇଁ 286 ଲକ୍ଷ ଟଙ୍କାର ବ୍ୟୟ ବରାଦ କରାଯାଇଛି ।

10.1 । ଓଡ଼ିଶା ରାଜ୍ୟ ସଡ଼କ ପରିବହନ କର୍ପୋରେସନ 1975-76 ରେ ରେଳବାଇ ସଂସ୍ଥାଠାରୁ ଆର୍ଥିକ ସହାୟତା ନେଇକରି 20ଟି ନୂତନ ରାସ୍ତାରେ ବସ୍ ଚଳାଚଳ କରିବାପାଇଁ, ସଂପ୍ରତି ବସ୍ ଚଳାଚଳ କରୁଥିବା 5ଟି ରାସ୍ତାରେ ଅଧିକ ବସ୍ ଚଳାଇବା ଓ ଯାତ୍ରୀମାନଙ୍କୁ ଅଧିକ ସୁଖ ସ୍ୱାଚ୍ଛନ୍ଦ୍ୟ ଯୋଗାଇ ଦେବା ନିମନ୍ତେ ସ୍ଥିର କରିଛନ୍ତି । ଓଡ଼ିଶା ସଡ଼କ ପରିବହନ କମ୍ପାନୀ 1974-75 ମସିହାରେ ଭାରତୀୟ ଶିଳ୍ପ ଉନ୍ନୟନ ବ୍ୟାଙ୍କଠାରୁ ଆର୍ଥିକ ସାହାଯ୍ୟ ଆଣି ଓ ନିଜର ସମ୍ବଳ ମିଶାଇ 89ଟି ନୂତନ ବସ୍ କିଣିଛନ୍ତି ।

**ଶିକ୍ଷା**

11 । ନିରକ୍ଷରତା ଓ ଅନଗ୍ରସରତାର କଠିନ ବ୍ୟୂହ ଭେଦ କରିବା ଲକ୍ଷ୍ୟ ରଖି ଆମର ଶିକ୍ଷା କାର୍ଯ୍ୟକ୍ରମ ଧାର୍ଯ୍ୟ କରାଯାଇଛି । ଏହି ଲକ୍ଷ୍ୟ ହାସଲ କରିବାପାଇଁ 1975-76 ମସିହାରେ 1,000 ନୂଆ ପ୍ରାଥମିକ ସ୍କୁଲ, 75ଟି ନୂଆ ହାଇକର ସ୍କୁଲ ଖୋଲିବା, 3,500 ନିମ୍ନ ପ୍ରାଥମିକ ସ୍କୁଲକୁ ଉଚ୍ଚ ପ୍ରାଥମିକ ସ୍କୁଲରେ ପରିଣତ କରିବା, ଶିକ୍ଷକମାନଙ୍କପାଇଁ ତାଲିମ ସୁବିଧାର ସଂପ୍ରସାରଣ ଏବଂ ଅଣଆନୁଷ୍ଠାନିକ ଶିକ୍ଷା ପ୍ରବର୍ତ୍ତନ କରାଯିବାର ପ୍ରସ୍ତାବ ରହିଛି । ମାଧ୍ୟମିକ ଓ ଉଚ୍ଚତର ଶିକ୍ଷା କ୍ଷେତ୍ରରେ ସଂଗଠିତ ଓ ଗୁଣାତ୍ମକ ବିକାଶ ଆମର ଲକ୍ଷ୍ୟ । ମାଧ୍ୟମିକ ଶିକ୍ଷା ଶେଷ କଲାପରେ ଉଚ୍ଚତର ଶିକ୍ଷା ଲାଭ କରିବାକୁ ଚାହୁଁଥିବା ବା ଉଚ୍ଚତର ବୃତ୍ତିମୂଳକ ପାଠ୍ୟକ୍ରମରେ ଯୋଗଦେବା ଅଥବା କୌଣସି ଲାଭପ୍ରଦ ଧନ୍ଦାରେ ଜୀବିକାର୍ଜ୍ଜନ କରିବାକୁ ଚାହୁଁଥିବା ଛାତ୍ରମାନଙ୍କର ସୁବିଧା ପୂରଣ କରିବା ଦିଗରେ ମାଧ୍ୟମିକ ପାଠ୍ୟକ୍ରମର ସଂସ୍କାର କରାଯିବ । ଉଚ୍ଚ ଶିକ୍ଷା କ୍ଷେତ୍ରରେ କରାଯାଇଥିବା ଅର୍ଥ ବ୍ୟବସ୍ଥାରେ କର୍ମଭିମୁଖୀ ପାଠ୍ୟକ୍ରମ ପ୍ରବର୍ତ୍ତନପାଇଁ ଏବଂ ବହୁଦିନରୁ ଅନୁଭୂତ ହେଉଥିବା ଅଭାବ ଅସୁବିଧାର ଦୂରୀକରଣ ଯଥା—ଅସଂପୂର୍ଣ୍ଣ ଗୃହଗୁଡ଼ିକର କାମ ଶେଷ କରିବା, ପାଠାଗାର ଓ ଶ୍ରେଣୀଗୃହର ବ୍ୟବସ୍ଥା କରିବା ପ୍ରଭୃତି କାର୍ଯ୍ୟଗୁଡ଼ିକୁ ଅଗ୍ରାଧିକାର ଦିଆଯିବ । ଯାହା ହେଲେବି ଏହିରୂପ କଟକଣା ମଧ୍ୟରେ ରାଜ୍ୟର ମହିଳା ଶିକ୍ଷାର ଅଗ୍ରଗତି ବ୍ୟାହତ ହେବ ନାହିଁ । 1975-76 ମସିହାରେ ମୟୂରଭଞ୍ଜ ଓ ଢେଙ୍କାନାଳ ଜିଲ୍ଲା ଅନଗ୍ରସର

ଜିଲ୍ଲାମାନଙ୍କରେ ଦୁଇଟି ମହିଳା କଲେଜ ଖୋଲାଯିବ । ଶିକ୍ଷା କ୍ଷେତ୍ରରେ ଆଉ କେତେକ ନୂତନ ବ୍ୟବସ୍ଥା ହେଲା—ଡାକ ଯୋଗେ ଶିକ୍ଷାଦାନ, ସାମରିକ ଶିକ୍ଷା ଏବଂ ନିଜେ ନିଜେ ଅଧ୍ୟୟନ କରିବା ।

ସ୍ୱାସ୍ଥ୍ୟ, ଓ ଗୃହ ନିର୍ମାଣ ଓ କର୍ମ ସଂସ୍ଥାନ

12 । 1975-76 ଆର୍ଥିକ ବର୍ଷରେ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମରେ ଜିଲ୍ଲାସ୍ତରୀୟ ଡାକ୍ତରଖାନା, ସବ୍‌ଡିଭିଜନାଲ ଡାକ୍ତରଖାନା ଏବଂ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ଗୁଡ଼ିକ ଉପରେ ଦୃଷ୍ଟି ଦିଆଯାଇଛି । 1975-76 ଆର୍ଥିକ ବର୍ଷରେ ସର୍ବନିମ୍ନ ଆବଶ୍ୟକତା କାର୍ଯ୍ୟକ୍ରମର ବ୍ୟବସ୍ଥା କରାଯାଇଥିବା 65 ଲକ୍ଷ ଟଙ୍କାରୁ 57 ଲକ୍ଷ ଟଙ୍କା ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ଏବଂ ଉପକେନ୍ଦ୍ର ଗୁଡ଼ିକରେ ଔଷଧପତ୍ର ପରିମାଣ ବଢ଼ାଇବା ଦିଗରେ ବିନିଯୋଗ ହେବ । ବଳକା 8 ଲକ୍ଷ ଟଙ୍କା ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ଗୃହ ସଂପୂର୍ଣ୍ଣ କରିବାରେ ଖର୍ଚ୍ଚ ହେବ । ରାଜ୍ୟର ସବୁ ଜିଲ୍ଲାସ୍ତରୀୟ ଡାକ୍ତରଖାନାରେ ମେଡିସିନ, ଅସ୍ତ୍ରୋପଚାର, ଶିଶୁରୋଗ, ସ୍ତ୍ରୀରୋଗ, ଚକ୍ଷୁରୋଗ, ନିଶ୍ଚେତକ, ଏକ୍ସ-ରେ ବିଶେଷଜ୍ଞମାନେ ରହିବେ । ସେହିପରି ଡାକ୍ତରଖାନାମାନଙ୍କର କାର୍ଯ୍ୟ ଚଳିବା ନିମନ୍ତେ ଅଭିଜ୍ଞ ଡାକ୍ତରମାନଙ୍କୁ ଆକୃଷ୍ଟ କରିବା ଉଦ୍ଦେଶ୍ୟରେ ସବ୍‌ଡିଭିଜନାଲସ୍ତରୀୟ ଡାକ୍ତରଙ୍କ ପାହ୍ୟାକୁ ଜୁନିଅର ପ୍ରଥମ ଶ୍ରେଣୀକୁ ଉନ୍ନୀତ କରାଯାଇଛି । 1975-76 ବର୍ଷରେ ଆଉ ଅଧିକ କୋଡ଼ିଏଟି ଡାକ୍ତରୀ ସାହାଯ୍ୟ କେନ୍ଦ୍ର ଖୋଲାଯିବ । 4 ହଜାର ନମୁନା ଔଷଧ ପରୀକ୍ଷା କରାଯାଇବା ଭଳି ଶକ୍ତି ବିଶିଷ୍ଟ ଏକ ଔଷଧ ପରୀକ୍ଷାଗାର ଚଳିତ ବର୍ଷ କାର୍ଯ୍ୟକ୍ଷମ ହେବ ବୋଲି ଆଶା । ଏହା ଫଳରେ ପରୀକ୍ଷା ନିମନ୍ତେ ନମୁନା ଔଷଧ ମୁକ୍ତିକ ରାଜ୍ୟ ବାହାରକୁ ଆଉ ପଠାଯିବ ନାହିଁ । କୁଷ୍ଠ, ବସନ୍ତ ଓ ମ୍ୟାଲେରିଆ ନିୟନ୍ତ୍ରଣ କାର୍ଯ୍ୟକ୍ରମଦ୍ୱାରା ଅଧିକରୁ ଅଧିକ ସଂକ୍ରାମକ ରୋଗୀ ଚିକିତ୍ସିତ ହେଉଛନ୍ତି । ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟକ୍ରମର ଲକ୍ଷ୍ୟ ହାସଲ କରିବାପାଇଁ ଯେଉଁ ବାଟ ରହିଯାଇଛି ତାହା ପୂରଣ କରିବା ନିମନ୍ତେ ଅଧିକ କେନ୍ଦ୍ରୀୟ ସାହାଯ୍ୟ ଆବଶ୍ୟକ । ଗୋଷ୍ଠୀ ଉନ୍ନୟନ ଓ ନଗର ଉନ୍ନୟନ ବିଭାଗ ଅଧୀନରେ ଥିବା ଅସଂପୂର୍ଣ୍ଣ ପାନୀୟ ଜଳ ଯୋଗାଣ ପରିକଳ୍ପନାଗୁଡ଼ିକୁ ସଂପୂର୍ଣ୍ଣ କରିବା ଦିଗରେ ଅଗ୍ରାଧିକାର ଦିଆଯିବ । ରାଜ୍ୟର 308 ଟି ବ୍ଲକରେ 9270 ଟି ଅସଂପୂର୍ଣ୍ଣ କୂଅ କାମ ଶେଷ କରିବା ପାଇଁ 1974-75 ମସିହାରେ 92,30,252 ଟଙ୍କାର ବ୍ୟବସ୍ଥା କରାଯାଇଛି ଏବଂ ଏହା ଏକ ଦ୍ରୁତଗତିରେ କାମ ହେବ । ମରୁଡ଼ିଗ୍ରସ୍ତ ଗ୍ରାମମାନଙ୍କରେ ଆଉ 1,666 ଟି କୂଅ ମଧ୍ୟ ଖୋଳା ଯିବ । 1974-75 ମସିହାର ନଗର ଉନ୍ନୟନ ବିଭାଗ ଗ୍ରାମାଞ୍ଚଳରେ

800 ନଳକୂଅ କାର୍ଯ୍ୟ ଶେଷ କରିବାକୁ ସ୍ଥିର କରିଛନ୍ତି । ଏହି କାର୍ଯ୍ୟକ୍ରମଦ୍ୱାରା 3,61,448 ଲୋକ ଉପକୃତ ହେବେ । ସର୍ବନିମ୍ନ ଆବଶ୍ୟକତା କାର୍ଯ୍ୟକ୍ରମ ଅନୁଯାୟୀ 1975-76 ମସିହାରେ ଗ୍ରାମାଞ୍ଚଳରେ ଆଉ 580 ଟି ନଳ କୂପ କାମ ସଂପୂର୍ଣ୍ଣ ହେଲେ ଏବଂ 30 ଲକ୍ଷ ଟଙ୍କା ବ୍ୟୟରେ ପାଣିସ୍ତ କଳ କୂଅ ତିଆରି କରଗଲେ ଅଧିକ ଦୁଇ ଲକ୍ଷ ଲୋକ ଉପକୃତ ହୋଇ ପାରିବେ । ଫୁଲବାଣୀ, କଳାହାଣ୍ଡି, ସୁନ୍ଦରଗଡ଼, କେନ୍ଦୁଝର, କୋରାପୁଟ ଓ ମୟୂରଭଞ୍ଜ ଜିଲ୍ଲାର ଗ୍ରାମାଞ୍ଚଳରେ ବହୁ ସଂଖ୍ୟକ ନଳକୂଅ ବସାଯିବ । 1974-75 ରେ ଗ୍ରାମାଞ୍ଚଳର 31ଟି ପାଇପ୍ ଜଳ ଯୋଗାଣ ବ୍ୟବସ୍ଥା ଏବଂ 7ଟି ତ୍ୱରାନ୍ୱିତ ଜଳଯୋଗାଣ ପରିକଳ୍ପନା ଶେଷ ହେବା ଫଳରେ 1,80,000ରୁ ଊର୍ଦ୍ଧ୍ୱ ଲୋକ ଉପକୃତ ହେବେ ।

12·1. ରାଜ୍ୟ ଗୃହ ନିର୍ମାଣ ବୋର୍ଡ଼ର କାର୍ଯ୍ୟକଳାପ ସଂପ୍ରସାରିତ ହେବାରେ ଲାଗିଛି । 1975-76 ଓ 1976-77 ମସିହାରେ ପୁରୀ, ରାଉରକେଲା ଓ ଭୁବନେଶ୍ୱରରେ 900 ଲକ୍ଷରୁ ଅଧିକ ଟଙ୍କା ବିନିଯୋଗ କରିବାକୁ ସେମାନେ ପ୍ରସ୍ତାବ ରଖିଛନ୍ତି । ବୃହତ୍ତର କଟକ ଉନ୍ନୟନ ଟ୍ରଷ୍ଟ କଟକ ସହରର ବିକାଶ ପାଇଁ 287·16 ଲକ୍ଷ ଟଙ୍କାର ଗୃହ ନିର୍ମାଣ ଓ ନଗରାଞ୍ଚଳ ଉନ୍ନୟନ କର୍ପୋରେସନ ଯୋଜନା କାର୍ଯ୍ୟକାରୀ କରୁଛନ୍ତି । ଏହା ବ୍ୟତୀତ 1975-76 ମସିହାରେ ଅନ୍ୟାନ୍ୟ ଗୃହ ନିର୍ମାଣ ପରିକଳ୍ପନା ବାବଦରେ 235ଲକ୍ଷ ଟଙ୍କାର ବ୍ୟବସ୍ଥା ଅଛି । ହୋଟେଲ, ଭୋଜନାଳୟ, ରେସ୍ତୁରାଁ ପ୍ରଭୃତିରେ କାର୍ଯ୍ୟ କରୁଥିବା କର୍ମଚାରୀମାନେ ବର୍ତ୍ତମାନ ଆଇନ ଅନୁସାରେ ନିର୍ଦ୍ଧାରିତ ସର୍ବନିମ୍ନ ମଜୁରୀ ପାଇ ପାରିବେ । କେନ୍ଦୁଝର ଜିଲ୍ଲାର ଭୂୟାଁପୀଡ଼ର କାଞ୍ଚିପାଣିରେ ଏବଂ ଜୁଆଙ୍ଗପୀଡ଼ରେ, ଫୁଲବାଣୀର କ-ଉଦୟଗିରି ଏବଂ ଗଞ୍ଜାମ ଜିଲ୍ଲାର ଆର-ଉଦୟଗିରି ଓ ଚିମା ପ୍ରଭୃତି ସ୍ଥାନମାନଙ୍କରେ କର୍ମନିଯୁକ୍ତି ସେବାସଂସ୍ଥା ଖୋଲାଯାଇଛି ।

ଖାଦ୍ୟ ଓ ଅତ୍ୟାବଶ୍ୟକ ଦ୍ରବ୍ୟ ।

13. ସାଧାରଣ ବଣ୍ଟନ ବ୍ୟବସ୍ଥାକୁ ସୁଦୃଢ଼ କରିବା ନିମନ୍ତେ ଚଳିତ କେଲଣ୍ଡର ବର୍ଷରେ ରାଜ୍ୟର ଖାଦ୍ୟ ନୀତିରେ ସଂଶୋଧନ କରାଯାଇଛି । ସେ ପରିବର୍ତ୍ତନଗୁଡ଼ିକ ହେଲା, ଉତ୍ପାଦନକାରୀଙ୍କ ଉପରେ, ମିଲମାଲିକମାନଙ୍କ ଉପରେ, ଧାନ କିଣିବା ଓ ଗଚ୍ଛିତ ରଖିବା ବ୍ୟବସ୍ଥା ଥିବା ଦଲାଲମାନଙ୍କ ଉପରେ ଲେଭି ବ୍ୟବସ୍ଥା । ସମାଜର ଦୁର୍ବଳ ଶ୍ରେଣୀର ଲୋକମାନଙ୍କୁ ନିର୍ଦ୍ଧାରିତ ଦରରେ ଖାଦ୍ୟଶସ୍ୟ ଯୋଗାଇ ଦେବା ନିମନ୍ତେ ଅଧିକ ଖାଦ୍ୟଶସ୍ୟ ସଂଗ୍ରହ କରିବା ଲକ୍ଷ୍ୟରେ ଉକ୍ତ ପରିବର୍ତ୍ତନ କରାଯାଇଛି । କନିଜମା ସଂପର୍କୀୟ ପରିବର୍ତ୍ତିତ

ଓ ଅନ୍ୟାନ୍ୟ ପକେଟରେ ଥିବା ତ୍ରୁଟି ଦୂର କରାଯିବ ଓ ଏଥି ସଙ୍ଗେ ସଙ୍ଗେ ଯେଉଁମାନଙ୍କଠାରୁ ପ୍ରାପ୍ୟ ସେମାନଙ୍କଠାରୁ ଲେଭି ଆଦାୟ କରାଯିବ। ଦୋଷ ତ୍ରୁଟି ଦୂର କରିବା ନିମନ୍ତେ ଏବଂ ଅଭାବ ଅସୁବିଧା ଦୂର କରିବାର ସୁଯୋଗ ଦେବାପାଇଁ ଅଫିସର ବ୍ୟବସ୍ଥା ମଧ୍ୟ ରଖାଯାଇଛି। ମୁଁ ଏହି ଅବସରରେ ମୋର ସମ୍ମାନିତ ବନ୍ଧୁମାନଙ୍କୁ ଓ ଅନ୍ୟମାନଙ୍କୁ ନିବେଦନ କରିବି ଯେ ସାଧାରଣ ବଣ୍ଟନ ସଂସ୍ଥାକୁ ମଜଭୁତ କରିବାପାଇଁ ତଥା ସୁସ୍ଥ ରଖିବାପାଇଁ ସେମାନେ ସରକାରଙ୍କ ସହ ସହଯୋଗ କରନ୍ତୁ। ମୁଁ ମଧ୍ୟ ଏହି କଥାକୁ ପ୍ରତିଶ୍ରୁତି ଦେଉଛି ଯେ ଏହି ସଂଗ୍ରହ ଅଭିଯାନରେ ନ୍ୟସ୍ତସ୍ୱାର୍ଥ ଲୋକଙ୍କ ଅସହଯୋଗ ହେତୁ ଦୁର୍ବଳ ଶ୍ରେଣୀର ଲୋକ ଏବଂ ଅଭାବଗ୍ରସ୍ତ ଖାଉଟିଙ୍କୁ କଷ୍ଟ ଭୋଗିବାକୁ ପଡ଼ିବ ନାହିଁ। ସରକାର ପରିସ୍ଥିତି ପ୍ରତି ସଜାଗ ଅଛନ୍ତି ଏବଂ ଯଥେଷ୍ଟ ପରିମାଣ ଖାଦ୍ୟଶସ୍ୟ ଯୋଗାଇ ଦେବା ନିମନ୍ତେ ସବୁ ପ୍ରକାର ସମୟୋପଯୋଗୀ ପନ୍ଥା ଅବଲମ୍ବନ କରାଯିବ। ବିଭିନ୍ନ କାରଣ-ବଶତଃ ଯେଉଁ ଦରଦାମ ବୃଦ୍ଧି ପାଉଥିଲା ତାହା ଏବେ କମିବାର ଲକ୍ଷଣ ଦେଖାଯାଉଛି। ଅନେକ ଗୁଡ଼ିଏ ଦ୍ରବ୍ୟ ଯଥା ଖାଇବା ତେଲ, ବନସ୍ପତି, ଡାଲି ଜାତୀୟ ଖାଦ୍ୟ, ଶିଶୁଖାଦ୍ୟ, ସିମେଣ୍ଟ, କୋଇଲା, କିରୋସିନ ଏବଂ ଷ୍ଟାମ୍ପର ପ୍ରକୃତରେ ଅଭାବ ଘଟିଛି ବୋଲି ଯେଉଁ ଆଶଙ୍କା ସୃଷ୍ଟି ହୋଇଥିଲା ତାହା ବର୍ତ୍ତମାନ ଦୂର ହେବାକୁ ବସିଲାଣି।

ପର୍ଯ୍ୟଟନ

14. ଆମ ରାଜ୍ୟ ରମଣୀୟ ବେଳାଭୂମି, ସବୁଜ ସୁନ୍ଦର ବନାଞ୍ଚଳ, ସୁନ୍ଦର ସୁନ୍ଦର ଜୀବଜନ୍ତୁ ଏବଂ ସ୍ଥାପତ୍ୟ ଓ ସାଂସ୍କୃତିକ ବିଭବରେ ଭରପୂର। ବଡ଼ ଧରଣର ପର୍ଯ୍ୟଟନ ଶିଳ୍ପ ନିମନ୍ତେ ଏଗୁଡ଼ିକ ମୂଳ ଉପାଦାନ ସ୍ୱରୂପ କିନ୍ତୁ ଅଗ୍ରାଧିକାର ଭିତ୍ତିରେ ଅନ୍ୟାନ୍ୟ କ୍ଷେତ୍ରରେ ଆମର ସମ୍ବଳର ଚାହିଦା ବିଶେଷ ଥିବାରୁ ଏହି ଶିଳ୍ପଟି ଆବଶ୍ୟକୀୟ ସମ୍ବଳରୁ ବଞ୍ଚିତ ହୋଇଛି। ତେଣୁ ଯେଉଁଠି ପର୍ଯ୍ୟଟନ ଶିଳ୍ପର ସମ୍ଭାବନା ଖୁବ୍ ବେଶୀ ଅଛି ସେସବୁ ସ୍ଥାନମାନଙ୍କର ବିକାଶ ଘଟାଇବା ନିମନ୍ତେ ଆମେ ବର୍ତ୍ତମାନ ଉଦ୍ୟମ କରୁଛୁ।

ପ୍ରାରମ୍ଭ ଓ 1975-76 ପାଇଁ ସମ୍ବଳ

15. ମାନ୍ୟବର ସଦସ୍ୟମାନେ ନିଶ୍ଚୟ ଲକ୍ଷ୍ୟ କରିବେ ଯେ ଏକ ଦୃଢ଼ତର ଅର୍ଥନୀତିର ଭିତ୍ତି ଗଢ଼ି ତୋଳିବା ନିମନ୍ତେ 1975-76 ବାର୍ଷିକ ଯୋଜନାରେ ଆମର ସମସ୍ତ ଉଦ୍ୟମ ଉତ୍ସର୍ଗ କରାଯାଇଛି। ଜନସାଧାରଣଙ୍କୁ ଆହୁରି ଅଧିକ ସୁବିଧାସୁଯୋଗ ଦେବା ନିମନ୍ତେ ଅଣଯୋଜନା ବାବଦରେ

1975-76 ରେ ଯେଉଁ କର୍ଯ୍ୟକ୍ରମ ରଖାଯାଇଛି ତଦନୁଯାୟୀ ନୂଆ ସବ୍ ଟ୍ରେଜେରୀ, କୋର୍ଟ ସବ୍‌ରେଜିଷ୍ଟ୍ରାର ଅଫିସ, ତହସିଲ ଏବଂ ରାଜସ୍ୱ ସର୍କଲ ସ୍ଥାପନ କରାଯିବ । ଆମର ଉନ୍ନୟନ ଓ ଅଣଉନ୍ନୟନ ଖର୍ଚ୍ଚକୁ ଆହୁରି ତ୍ୱରାନ୍ୱିତ କରିବା ନିମନ୍ତେ ଆମ ଯୋଜନା ଅନେକ ଆହୁରି ବଡ଼ ଆକାରର ହେବ ବୋଲି ମୁଁ ବୁଝେଁ । କିନ୍ତୁ ଆପଣମାନେ ଜାଣନ୍ତି, ଏବର୍ଷ ଆମ ଉପରେ ଅତ୍ୟଧିକ ଚାପ ପଡ଼ୁଛି । ବେସରକାରୀ ସରକାରୀ ସ୍ୱାୟତ୍ତ ଶାସନ ଏବଂ ସାହାଯ୍ୟ ପାଉଥିବା ଅନୁଷ୍ଠାନମାନଙ୍କର କର୍ମଚାରୀମାନଙ୍କ ଦରମା ବୃଦ୍ଧି ଓ ଅନ୍ୟାନ୍ୟ ସୁବିଧା ସର୍ତ୍ତାବଳୀ ହେତୁ ଆମ ଅର୍ଥନୀତି ଉପରେ ଅଧିକ ବୋଝ ପଡ଼ୁଛି । କେତେକ ବଡ ଧରଣର ଉନ୍ନତିମୂଳକ କାମ ହେଉଛି—

(କ) ସର୍ବନିମ୍ନ ମାସିକ ଦରମା ଟ 200 ରେ ଧାର୍ଯ୍ୟ କରଣ ;

(ଖ) ବେସରକାରୀ ପ୍ରାଥମିକ ସ୍କୁଲ ଶିକ୍ଷକଙ୍କ ଦରମାହାର ସରକାରୀ ପ୍ରାଥମିକ ସ୍କୁଲ ଶିକ୍ଷକଙ୍କ ଦରମାହାର ସହ ସମୀକରଣ । ବେସରକାରୀ ପ୍ରାଥମିକ ସ୍କୁଲ ଶିକ୍ଷକମାନେ ପୂର୍ବରୁ ଟ 70—85ରୁ ଟ 100—150 ପର୍ଯ୍ୟନ୍ତ ବିଭିନ୍ନ ହାରରେ ବାର ପ୍ରକାରର ଦରମା ପାଉଥିଲେ । ବର୍ତ୍ତମାନ ସେମାନେ ତିନୋଟି କ୍ରମର ସଂଶୋଧିତ ଓ ଉନ୍ନତ ହାରରେ ଦରମା ପାଇବେ । ଏ ବାବଦରେ 1974-75ରେ 539·90 ଲକ୍ଷ ଟଙ୍କା ଅଧିକ ଖର୍ଚ୍ଚ ହେବ ;

(ଗ) ବେସରକାରୀ ମାଧ୍ୟମିକ ସ୍କୁଲ ଓ କଲେଜ ଶିକ୍ଷକମାନଙ୍କୁ ନିର୍ଦ୍ଧାରିତ ଦରମା ପ୍ରଦାନ ବ୍ୟବସ୍ଥା ପ୍ରବର୍ତ୍ତନ । ଏ ବାବଦରେ ପ୍ରାୟ 183 ଲକ୍ଷ ଟଙ୍କା ଅତିରିକ୍ତ ଖର୍ଚ୍ଚ ହେବ;

(ଘ) ସ୍ୱୟଂତ୍ତ ଶାସନ ସଂସ୍ଥାର କର୍ମଚାରୀମାନଙ୍କ ଦରମାହାର ଅନୁରୂପ ସରକାରୀ କର୍ମଚାରୀଙ୍କ ଦରମାହାର ସହିତ ସମୀକରଣ ଯାହାଫଳରେ ପ୍ରାୟ 50 ଲକ୍ଷ ଟଙ୍କା ଅଧିକ ଖର୍ଚ୍ଚ ହେବ ;

(ଙ) ସ୍ଥାୟୀ ଓ ଅସ୍ଥାୟୀକାଳୀନ ଦୈନିକ ଭତ୍ତା ଉଚ୍ଚହାର ବୃଦ୍ଧି । ସର୍ବନିମ୍ନ ଦରମା ପାଉଥିବା କର୍ମଚାରୀ ବର୍ତ୍ତମାନ ଦୈନିକ ଭତ୍ତା ଟ 2 ସ୍ଥଳେ ଟ 6 ହିସାବରେ ପାଇବେ ;

(ଚ) ସଦ୍ରକାରୀ ଜିଲ୍ଲା ମେଡ଼ିକାଲ୍ ଅଫିସର, ସବ୍‌ଡ଼ିଭିଜନାଲ୍ ମେଡ଼ିକାଲ ଅଫିସର ଏବଂ ସହକାରୀ ଶ୍ରମ କମିଶନରଙ୍କ ପାହ୍ୟାକୁ ରାଜ୍ୟ ସର୍ଭିସର ଜୁନିୟର ପ୍ରଥମ ଶ୍ରେଣୀ ପାହ୍ୟାକୁ ଉନ୍ନୀତ କରାଯାଇଛି ;

(ଛ) ରାଜ୍ୟ ସର୍ଭିସେସ୍‌ର ବହୁରୀପ୍ତ ଓ ୩ୟ ଭଲ ରଡ ପଦଗୁଡ଼ିକର ଦରମା ହାରରେ ଅଧିକ ଏକ୍ରିମେଣ୍ଟ ଅଭିବୃଦ୍ଧି କରାଯାଇଛି ;

(ଜ) ସର୍ବନିମ୍ନ ମାସିକ ପେନସନ୍ ଟ 40 ସ୍ଥାନରେ ଟ 50ରେ ଧାର୍ଯ୍ୟ କରାଯାଇଛି ଏବଂ ମୃତ୍ୟୁ ଏବଂ ଅବସରକାଳୀନ ଗ୍ରାଚ୍ୟୁଇଟି ଓ ପେନସନର ସର୍ବୋଚ୍ଚ ସୀମା ବଢ଼ାଇ ଦିଆଯାଇଛି ;

(ଝ) ବିଭିନ୍ନ ଦରମାହାରରେ ଥିବା କର୍ମଚାରୀମାନଙ୍କୁ ଦିଆଯାଇଥିବା ଘରଭଡ଼ା ଭତ୍ତା ବଢ଼ାଇ ଦିଆଯାଇଛି ।

ଏସବୁ ଉନ୍ନତିମୂଳକ କାର୍ଯ୍ୟପାଇଁ 1974-75ରେ 16,71 ଲକ୍ଷ ଟଙ୍କା ଟଙ୍କା ଖର୍ଚ୍ଚ ହେବ ଏବଂ ପରବର୍ତ୍ତୀ ବର୍ଷମାନଙ୍କରେ ବାର୍ଷିକ ପ୍ରାୟ 14,32 ଲକ୍ଷ ଟଙ୍କା ହିସାବରେ ଖର୍ଚ୍ଚ ହେବ । ସରକାରୀ କର୍ମଚାରୀମାନଙ୍କୁ ମହଙ୍ଗା-ଭତ୍ତା ଦେବାପାଇଁ ନିଷ୍ପତ୍ତି ନିଆଯାଇଥିବାରୁ ଆମ ସମ୍ବଳ ଉପରେ ଆଉ ଅଧିକ ଚାପ ପଡ଼ିବ । ଯୋଜନା କମିଶନ ଆସନ୍ତା ବର୍ଷ ଯୋଜନା ବାବଦରେ ରାଜ୍ୟ ସରକାରଙ୍କ ସମ୍ବଳ 65,79 ଲକ୍ଷ ଟଙ୍କା ଧାର୍ଯ୍ୟ କରିଥିଲେ । ଯହିଁରେ କେନ୍ଦ୍ରୀୟ ସାହାଯ୍ୟ ବାବଦ 32,70 ଲକ୍ଷ ଟଙ୍କା ଅନ୍ତର୍ଭୁକ୍ତ । 1975-1976 ବର୍ଷପାଇଁ ଆମର ଯୋଜନା ବ୍ୟୟ 89,25 ଲକ୍ଷ ଟଙ୍କା ଧାର୍ଯ୍ୟ କରାଯାଇଛି ଏହା ଧାର୍ଯ୍ୟ ହୋଇଥିବା ସମ୍ବଳଠାରୁ 23,46 ଲକ୍ଷ ଟଙ୍କା ଅଧିକ । ଏହି ଯେଉଁ 23,47 ଲକ୍ଷ ଟଙ୍କାର ବ୍ୟବଧାନ ରହୁଛି, ସେଥିମଧ୍ୟରୁ ରାଜ୍ୟ ସରକାରଙ୍କ ଅଂଶ 746 ଲକ୍ଷ ଟଙ୍କା । ଅବଶିଷ୍ଟ 16,00 ଲକ୍ଷ ଟଙ୍କା ଭାରତ ସରକାରଙ୍କ ଅତିରିକ୍ତ ଦାୟ । କେନ୍ଦ୍ର ସରକାରଙ୍କଠାରୁ ଚଳିତ ବର୍ଷ 42,61 ଲକ୍ଷ ଟଙ୍କା ସାହାଯ୍ୟ ମିଳିବାର ଆଶା କରାଯାଉଥିବାବେଳେ ଏବଂ ବଜେଟ ମୁତାବକ 3,270 ଲକ୍ଷ ଟଙ୍କା ମିଳିଥିବାବେଳେ 1975-1976ପାଇଁ ତାଙ୍କଠାରୁ ସାହାଯ୍ୟ ସ୍ୱରୂପ 48,70 ଲକ୍ଷ ଟଙ୍କା ମିଳିବ ବୋଲି ଧରି ନିଆଯାଇଛି । ଚଳନ୍ତି ଓ ବଢେଇବା ରାଜସ୍ୱ ଓ ଋଣ ଆଦାୟରେ ଉନ୍ନତ ବିଧାନ କରି କ୍ୟାପିଟାଲ ଖର୍ଚ୍ଚ ଉପରେ ଆଉ

ନ ଆସି ବ୍ୟୟ ସଙ୍କୋଚ କରି, ସରକାରୀ ଉଦ୍ୟୋଗରେ ପରିଚାଳିତ ସଂସ୍ଥା-ଗୁଡ଼ିକରେ ମାଲଫର୍ଦ୍ଦ କମାଇବା, ସେମାନଙ୍କ ଉତ୍ପାଦିତ ସାମଗ୍ରୀ ଓ ସେବାର ଦର ଓ ମୂଲ୍ୟ ପ୍ରଭୃତି ସଂଶୋଧନ କରିବା ବ୍ୟବସ୍ଥା ଅବଲମ୍ବନରେ ସେମାନଙ୍କର କାର୍ଯ୍ୟକାରିତାରେ ଉନ୍ନତି ବିଧାନ କରି, ସ୍ୱଳ୍ପ ସଞ୍ଚୟ ମାଧ୍ୟମରେ ଅଧିକ ସମ୍ବଳ ସଂଗ୍ରହ କରି ଏବଂ ଗୋଟିଏ ନୂଆ ଟିକସର ବ୍ୟବସ୍ଥା ପ୍ରଚଳନ କରି ରାଜ୍ୟ ସରକାରଙ୍କ ଅଂଶ ବାବଦ 746 ଲକ୍ଷ ଟଙ୍କାର ବ୍ୟବଧାନକୁ ପୂରଣ କରିବାକୁ ମୁଁ ପ୍ରସ୍ତାବ କରୁଛି ।

16. ବର୍ତ୍ତମାନ ମୁଁ ଦୁଇଟି ପରସ୍ପର ବିରୋଧୀ ସମାସ୍ୟାରେ ପଡ଼ି ଏକ କୌତୁହଳଜନକ ପରିସ୍ଥିତିର ସମ୍ମୁଖୀନ ହୋଇଛି । ସେଥିମଧ୍ୟରୁ ପ୍ରଥମଟି ହେଲା ଯୋଜନାପାଇଁ ଅଧିକ ଖର୍ଚ୍ଚ ବ୍ୟବସ୍ଥା କରିବାର ଜରୁରୀ ଆବଶ୍ୟକତା ଏବଂ ଦ୍ୱିତୀୟଟି ହେଉଛି କରଦାତାମାନଙ୍କ ଉପରେ ଅତ୍ୟଧିକ କର ଭାର ନ ପକାଇ ସମ୍ବଳ ସଂଗ୍ରହ କରିବା ଭଳି କିଛି ଗୋଟିଏ ଆର୍ଥିକ କୌଶଳ ଉଦ୍ଭାବନ କରିବା । ଏଭଳି ପୃଷ୍ଠଭୂମିରେ ମୋ ଦାୟିତ୍ୱରେ ଥିବା ବିଭାଗ 1975-1976ପାଇଁ ଗୋଟିଏ ମାତ୍ର ନୂଆ ବ୍ୟବସ୍ଥା ସ୍ଥିର କରିଛନ୍ତି, ତାହା ହେଉଛି ବିକ୍ରି ଉପରେ କାରବାର ଟିକସ ଯାହାକି ଅନ୍ୟଭାବରେ ଅତିରିକ୍ତ ବିକ୍ରୟ କର ରୂପେ ବିଦିତ । ଏହି ଟିକସପାଇଁ ପ୍ରସ୍ତାବିତ ଆଇନଗତ ବ୍ୟବସ୍ଥା ହେଲେ, ଉକ୍ତ ଟିକସ ଭାର ଗ୍ରାହକମାନଙ୍କ ଉପରେ ଲଦି ଦିଆଯିବ ନାହିଁ । ଏହା ବିକ୍ରେତାମାନଙ୍କ ଉପରେ ଗୋଟିଏ ଲେଭି ଭଳି ହେବ । ଏହି ଟିକସରୁ ବାର୍ଷିକ ଆୟର ପରିମାଣ ପ୍ରାୟ 50 ଲକ୍ଷ ଟଙ୍କାର ହେବାର ସମ୍ଭାବନା । ମୋର ଦୃଢ଼ ବିଶ୍ୱାସ ମାନ୍ୟବର ସଭ୍ୟମାନେ ସ୍ୱୀକାର କରିବେ ଯେ ମୋର ଏହି ପ୍ରସ୍ତାବ ଅତି ମାମୁଲି ଧରଣର ଏବଂ ସରକାର 1975-1976ର ବଜେଟ ପ୍ରସ୍ତାବର ରୂପରେଖ ସ୍ଥିର କଲାବେଳେ ସାଧାରଣ ଜନତାର ସ୍ୱାର୍ଥକୁ ଦୃଷ୍ଟି ଆଗରେ ରଖିଥିଲେ । ଯୋଜନା କ୍ରମରେ ଅଧିକ ସମ୍ବଳ ସଂଗ୍ରହ କରିବାକୁ ସର୍ବାଧିକ ପରିମାଣର ବକେୟା ସରକାରୀ ପ୍ରାପ୍ୟ ଆଦାୟ କରିବା କାର୍ଯ୍ୟରେ ମୁଁ ମୋର ଶ୍ରଦ୍ଧେୟ ବନ୍ଧୁମାନଙ୍କର ସଦିଚ୍ଛା ଓ ସହଯୋଗ ଲୋଡୁଛି । ଉପରୋକ୍ତ ବିବେଚନାକୁ ଭିତ୍ତି କରି 1975-1976ର ବଜେଟ ପ୍ରସ୍ତାବଗୁଡ଼ିକ ପ୍ରସ୍ତୁତ ହୋଇଛି ।

17. 1975-76ରେ ରାଜ୍ୟ ଯୋଜନାପାଇଁ ବରାଦ କରାଯାଇଥିବା ମୋଟ ଖର୍ଚ୍ଚ 8,975 ଲକ୍ଷ ଟଙ୍କା ମଧ୍ୟରୁ 2,409 ଲକ୍ଷ ଟଙ୍କା ଓଡ଼ିଶା ରାଜ୍ୟ ବିଦ୍ୟୁତ ବୋର୍ଡ, ଓଡ଼ିଶା ଖଣି କର୍ପୋରେସନ, ଓଡ଼ିଶା ରାଜ୍ୟ ସଡ଼କ ପରିବହନ

କର୍ପୋରେସନ, ଓଡ଼ିଶା ନିର୍ମାଣ କର୍ପୋରେସନ ଓ ଓଡ଼ିଶା କ୍ଷୁଦ୍ର ଶିଳ୍ପ କର୍ପୋରେସନ ଭଳି ସରକାରୀ ସଂସ୍ଥାମାନଙ୍କ ବଜେଟରେ ବ୍ୟବସ୍ଥା କରାଯିବ । ରାଜ୍ୟ ବଜେଟରେ 6,516 ଲକ୍ଷ ଟଙ୍କାର ନିଟ୍ ବ୍ୟୟ ବ୍ୟବସ୍ଥା କରାଯିବ । ଏଥି ମଧ୍ୟରୁ ବଜେଟରେ 6,495·23 ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି । ଅତିରିକ୍ତ ବର୍ଷ ମଧ୍ୟରେ ଅବଶିଷ୍ଟ 20·77 ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯିବ । ଉପରୋକ୍ତମତେ ବଜେଟ ଅନ୍ତର୍ଭୁକ୍ତ ନିଟ ବ୍ୟୟ ବାବଦ ତୁଳାଇବା ନିମନ୍ତେ ରାଜ୍ୟ ସରକାରଙ୍କ ଅତିରିକ୍ତ ସମ୍ବଳ ସଂଗ୍ରହ ଉଦ୍ୟମରୁ ପ୍ରାପ୍ତ 1,354 ଲକ୍ଷ ଟଙ୍କା ଏବଂ ଭାରତର ରିଜର୍ଭ ବ୍ୟାଙ୍କ ଓ ଜୀବନବୀମା କର୍ପୋରେସନରୁ ଚଳିତବର୍ଷ ଋଣ ଆକାରରେ 80 ଲକ୍ଷ ଟଙ୍କା ସଂଗ୍ରହ କରାଯିବ । କେନ୍ଦ୍ରୀୟ ଯୋଜନା ଏବଂ ବଜେଟର ଅଣଯୋଜନା କ୍ଷେତ୍ରରେ ଯେଉଁ ବଳକା ଅର୍ଥ ମିଳିବ, ତଦ୍ଵାରା ଅବଶିଷ୍ଟ ସମ୍ବଳ ଭରଣା କରାଯିବ ।

1975-76 ବଜେଟ ଓ 1974-75 ସଂଶୋଧିତ ବଜେଟ୍ ।

18. 1975-76 ମସିହାର ମୋଟାମୋଟି ଆୟ ଓ ବ୍ୟୟ ଅଟକଳ ଏବଂ 1974-75 ମସିହାର ବଜେଟ ଅଟକଳ ସାଙ୍ଗକୁ ସଂଶୋଧିତ ଅଟକଳର ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା:--

(ଲକ୍ଷ ଟଙ୍କା ହିସାବରେ)

| | ବଜେଟ ଅଟକଳ 1974-75 | ସଂଶୋଧିତ ଅଟକଳ 1974-75 | ବଜେଟ ଅଟକଳ 1975-76 |
|---|---|---|---|
| ରାଜସ୍ୱ ହିସାବ | | | |
| ଆୟ | 23,007·41 | 23,541·16 | 26,809·78 |
| ବ୍ୟୟ | 23,144·35 | 24,424·29 | 27,489·77 |
| ନିଟ୍ | (—) 136·39 | (—) 883·13 | (—) 679·99 |
| କ୍ୟାପିଟାଲ ହିସାବ | | | |
| ଆୟ | .. | .. | ... |
| ବ୍ୟୟ | 4,206·21 | 5,393·31 | 3,267·80 |
| ନିଟ୍ .. | (—)4,206·21 | (—) 5,393·31 | (—) 3,267·80 |

| | | | |
|---|---|---|---|
| **ସରକାରୀ ଋଣ** | | | |
| ଆୟ | 7,007·09 | 9,441·84 | 7,682·45 |
| ବ୍ୟୟ | 3,614·35 | 3,418·29 | 4,789·23 |
| ନିଟ୍ | 3,390·74 | 6,023·55 | 2,893·22 |

(ଲକ୍ଷ ଟଙ୍କା ହିସାବରେ)

| | ବଜେଟ ଅଟକଳ 1974-75 | ସଂଶୋଧିତ ଅଟକଳ 1974-75 | ବଜେଟ ଅଟକଳ 1975-76 |
|---|---|---|---|
| **ଋଣ ଓ ଅଗ୍ରିମ** | | | |
| ଆୟ | 899·53 | 906·32 | 1,222·00 |
| ବ୍ୟୟ | 921·09 | 1,030·35 | 1,456·99 |
| ନିଟ୍ | (—) 21·56 | (—) 124·03 | (—) 234·99 |
| **ଅପ୍ରତ୍ୟାଶିତ ଖର୍ଚ୍ଚ ପାଣ୍ଠି** | | | |
| ଆୟ | | | |
| ବ୍ୟୟ | | (—) 39·50 | |
| ନିଟ୍ | .. | 39·50 | |

| ପଞ୍ଜି ଏକାଉଣ୍ଟ | | | |
|---|---|---|---|
| ଆୟ | 20,719·77 | 30,361·64 | 27,852·74 |
| ବ୍ୟୟ | 19,936·72 | 28,585·36 | 26,542·06 |
| ନିଟ୍ | 783·05 | 1,776·28 | 1,310·68 |
| ମୋଟ ଆୟ | 51,633·80 | 64,250·96 | 63,566·97 |
| ବ୍ୟୟ | 51,824·72 | 62,812·10 | 63,545·85 |
| ନିଟ୍ ଦେଣ ନେଣ .. | (—) 190·92 | 1,438·86 | 21·12 |
| ପ୍ରାରମ୍ଭିକ ଜମା | 59·13 | (—) 1,422·56 | 16·30 |
| ବର୍ଷ ଶେଷର ଜମା | (—)131·79 | 16·30 | 37·42 |

19. ମାନ୍ୟବର ସଭ୍ୟମାନଙ୍କ ଅବଗତ ନିମନ୍ତେ ସଂକ୍ଷେପରେ ବଜେଟ୍‌ର ହିସାବ ବୁଝାଇବାକୁ ଯାଇ ଉଲ୍ଲେଖ କରାଯାଇପାରେ ଯେ 1975-76ରେ 26809.78 ଲକ୍ଷ ଟଙ୍କା ରାଜସ୍ୱ ଆୟ ମଧ୍ୟରେ ରାଜ୍ୟ ସରକାରଙ୍କ ରାଜସ୍ୱ ଓ ଅଣରାଜସ୍ୱ ବାବଦ ଆୟ, ସମ୍ବିଧାନର 275 (1) ଅନୁଚ୍ଛେଦ ଅନୁଯାୟୀ ଭାରତ ସରକାରଙ୍କ ଗ୍ରାଣ୍ଟ ଏବଂ ଯୋଜନା ଓ ଅଣଯୋଜନା କାର୍ଯ୍ୟରେ ଖର୍ଚ୍ଚ ହେବା ନିମନ୍ତେ ଗ୍ରାଣ୍ଟ ମଧ୍ୟ ଅନ୍ତର୍ଭୁକ୍ତ । ମୋଟରେ ଯେଉଁ 27489.77 ଲକ୍ଷ ଟଙ୍କା ଖର୍ଚ୍ଚର ପ୍ରସ୍ତାବ ରଖାଯାଇଛି ତନ୍ମଧ୍ୟରେ ଅଣଯୋଜନା, ଅଣବିକାଶମୂଳକ ପରିକଳ୍ପନା ବାବଦ ଖର୍ଚ୍ଚ ଓ ବିକାଶମୂଳକ ପରିକଳ୍ପନା ବାବଦ ଖର୍ଚ୍ଚ, ବିଶେଷ ଧରଣର ଅଣଯୋଜନା ବାବଦ ଖର୍ଚ୍ଚ, ରାଜ୍ୟ ଯୋଜନା ଓ କେନ୍ଦ୍ର ଆନୁକୂଲ୍ୟରେ ସମ୍ପାଦିତ ହେବା ପରିକଳ୍ପନା ବାବଦ ଖର୍ଚ୍ଚ ଅନ୍ତର୍ଭୁକ୍ତ । ସର୍ବମୋଟ ରାଜସ୍ୱ ନିଅଣ୍ଟର ପରିମାଣ ହେଉଛି 679·99 ଲକ୍ଷ ଟଙ୍କା ।

19·1. 1975-76 ବର୍ଷ ନିମନ୍ତେ ଅଟକଳ କରାଯାଇ ଥିବା ମୋଟ କ୍ୟାପିଟାଲ ଆୟ 36757.19 ଲକ୍ଷ ଟଙ୍କା ମଧ୍ୟରେ କେନ୍ଦ୍ରସରକାରର ଋଣ, ସ୍ୱଳ୍ପ ସଞ୍ଚୟ ସଂଗ୍ରହ ବାବଦ ଋଣ, ଭାରତ ସରକାର ଓ ଅର୍ଥ ଲଗାଣକାରୀ ସଂସ୍ଥାମାନଙ୍କଠାରୁ ଅଣାଯିବା ଅନ୍ୟାନ୍ୟ ଯୋଜନା ଓ ଅଣଯୋଜନା ଋଣ, ଜୀବନ ବୀମା ବା ଅନୁଷ୍ଠାନମାନଙ୍କଠାରୁ ଋଣ ଆଦାୟ, କର୍ମଚାରୀମାନଙ୍କ ଭବିଷ୍ୟନିଧିରେ ଜମା ହୋଇଥିବା ଅର୍ଥ ତଥା ଅନ୍ୟାନ୍ୟ ଜମା ଓ ଅଗ୍ରିମ ବାବଦରେ ପ୍ରାପ୍ତ ଆୟ ଅନ୍ତର୍ଭୁକ୍ତ । ମୋଟ କ୍ୟାପିଟାଲ ଖର୍ଚ୍ଚ 32788.28 ଲକ୍ଷ ଟଙ୍କା ମଧ୍ୟରେ ସରକାରୀ ଋଣ ପରିଶୋଧ, ଜୀବନ ବୀମା ବା ଅନୁଷ୍ଠାନମାନଙ୍କୁ ଋଣ ଓ ଅଗ୍ରିମ ପ୍ରଦାନ ଓ ସରକାରୀ ହିସାବରେ ବ୍ୟୟର ବ୍ୟବସ୍ଥା କରାଯାଇଛି । କ୍ୟାପିଟାଲ ଖାତାରେ 3968.91 ଲକ୍ଷ ଟଙ୍କା ବଳକା ରହିବ ଯାହାକି ରାଜସ୍ୱ ନିଅଣ୍ଟକୁ ଭରଣା କରାଯାଇ ପାରିବ ଓ ଅବଶିଷ୍ଟ 3267·80 ଲକ୍ଷ ଟଙ୍କା ବିଭିନ୍ନ ଯୋଜନା ତଥା ଅଣଯୋଜନା କାର୍ଯ୍ୟର କ୍ୟାପିଟାଲ ଖର୍ଚ୍ଚ ବାବଦରେ ବିନିଯୁକ୍ତ ହେବାପାଇଁ ମିଳିବ ।

1973-74ର ଆୟବ୍ୟୟ । 19·2. 1973-74 ଶେଷବେଳକୁ 59.13 ଲକ୍ଷ ଟଙ୍କା ବଳକା ରହିବ ବୋଲି ଆଶା କରାଯାଉଥିବାବେଳେ ସେ ବର୍ଷର ଆୟ ବ୍ୟୟର ହିସାବରେ 1422.56 ଲକ୍ଷ ଟଙ୍କା ନିଅଣ୍ଟ ପଡ଼ିଥିଲା । ବର୍ଷ ଶେଷକୁ ନିଅଣ୍ଟ ପଡ଼ିବାର କେତେକ ଗୁରୁତ୍ୱପୂର୍ଣ୍ଣ କାରଣ ନିମ୍ନରେ ଉଲ୍ଲେଖ କରାଗଲା:—

(କ) ରିଜର୍ଭ ବ୍ୟାଙ୍କ ଅଫ୍ ଇଣ୍ଡିଆରୁ ସାଧାରଣାପାୟ ଅଗ୍ରିମ ଆଣିବାପାଇଁ 1973-74ର ସଂଶୋଧିତ ଅଟକଳରେ ଧରାଯାଇଥିଲେ ମଧ୍ୟ ତାହା ଦ୍ୱାବଦକୁ ନିଆଯାଇ ନଥିଲା ।

(ଖ) ରାଜ୍ୟ ସରକାରଙ୍କ କେନ୍ଦ୍ରୀୟ ସ୍ୱଳ୍ପମିଆଦି 1974 ମାର୍ଚ୍ଚମାସ 31 ତାରିଖ ମଧ୍ୟରେ ଭଙ୍ଗାଯାଇ ନଥିଲା ।

(ଗ) ପ୍ରାକୃତିକ ଦୁର୍ବିପାକ ଜନିତ ଖର୍ଚ୍ଚପାଇଁ ପ୍ରତ୍ୟାଶିତ କେନ୍ଦ୍ରୀୟ ସାହାଯ୍ୟ ପରିମାଣ ହ୍ରାସ ।

(ଘ) ମୁଖ୍ୟତଃ ଓଡ଼ିଶା ରାଜ୍ୟ ବିଦ୍ୟୁତ୍ ବୋର୍ଡରୁ ମିଳିବାକୁ ଥିବା ସୁଧ, କିସ୍ତି, ରୟାଲଟି ପ୍ରଭୃତି ବାବଦରୁ ମିଳିଥିବା ଆୟ ଏବଂ ସରକାରୀ ଏକାଉଣ୍ଟରେ ଆଦାୟ ପ୍ରଭୃତିରେ ହ୍ରାସ ।

ମୁଁ ଏଠାରେ ସ୍ପଷ୍ଟ କରି ଦେବାକୁ ଚାହେଁ ଯେ ସଂଶୋଧିତ ଅଟକଳରେ ବଳକା ରହିବ ବୋଲି ଆଶା କରାଯାଉଥିବାସତ୍ତ୍ୱେ, ଏ ପ୍ରଥମ ନିଅଣ୍ଟ ଦେଖାଗଲା, ତାହା 1974-75 ମସିହାପାଇଁ ଆମର ଯୋଜନା ସମ୍ବନ୍ଧ ଉପରକୁ କୌଣସି ଆଞ୍ଚ ଆଣିବ ନାହିଁ । 1974-75 ମସିହାପାଇଁ ବଜେଟ୍ ଉପସ୍ଥାପିତ କରାଗଲାବେଳେ 190·92 ଲକ୍ଷ ଟଙ୍କା ନିଅଣ୍ଟ ରହିବ ଆଶା କରାଯାଉଥିବାସ୍ଥଳେ 1974-75 ମସିହାପାଇଁ ସଂଶୋଧିତ ଅଟକଳରେ 1438·86 ଲକ୍ଷ ଟଙ୍କା ବଳକା ରହୁଛି । ଏହି ବଳକା ଅର୍ଥ 1422·56 ଲକ୍ଷ ଟଙ୍କା ପ୍ରାରମ୍ଭିକ ନିଅଣ୍ଟକୁ ପୂରାପୂରି ମୂଳପୋଛ କରି ଦେବାପରେ ଅବଶିଷ୍ଟ 16·30 ଲକ୍ଷ ଟଙ୍କ ବଳକା ରହିବ, ଯାହା କି 1975-76 ମସିହାର ପ୍ରାରମ୍ଭିକ ଜମା ହେବ । 1975-76 ବର୍ଷର ଆୟ ବ୍ୟୟର ହିସାବ ହେବାପରେ ସର୍ବମୋଟ 21·12 ଲକ୍ଷ ଟଙ୍କା ବଳକା ରହିବବୋଲି ଆଶା କରାଯାଏ । ଏହା ଫଳରେ ବର୍ଷ ଶେଷବେଳକୁ 37·42 ଲକ୍ଷ ଟଙ୍କା ବଳକା ରହିବ । ତାହାହେଲେ ମଧ୍ଯ ଯଦି ପୂର୍ବୋକ୍ତମତେ 20·77 ଲକ୍ଷ ଟଙ୍କା ବ୍ୟୟ ସମ୍ବଳିତ ରାଜ୍ୟ ଯୋଜନା ଅନ୍ତର୍ଭୁକ୍ତ ପରିକଳ୍ପନାଗୁଡ଼ିକ ଅଧୀନରେ ବର୍ଷ ମଧ୍ଯରେ ଅର୍ଥ ବ୍ୟବସ୍ଥା କରାଯାଏ, ତାହାହେଲେ ବର୍ଷ ଶେଷକୁ ଜମାର ପରିମାଣ 16·65 ଲକ୍ଷ ଟଙ୍କାକୁ ହ୍ରାସ ପାଇବ ।

20. ଆର୍ଥିକ ବିକାଶ ଏକ ଦୀର୍ଘମିଆଦି ଧାରା ହୋଇଥିବାସ୍ଥଳେ କୌଣସି ଏ ବଜେଟର କାର୍ଯ୍ୟକାଳ ଏକବର୍ଷ ପାଇଁ ଉଦ୍ଦିଷ୍ଟ । ଆମର କାଉଗୁଡ଼ିକର ପ୍ରକୃତି, ଆମର ପ୍ରଚେଷ୍ଟା ଓ ଲକ୍ଷ୍ୟଗୁଡ଼ିକୁ ଦେଇ ଏହି ଧାରାର ଗତିକୁ ତ୍ୱରିତ ବା ମନ୍ଥର କରାଯାଇପାରିବ । ଇତିମଧ୍ୟ, ଅନିୟମିତ ଅର୍ଥ ବିନିଯୋଗ ଦ୍ୱାରା ବା ଧନବନ୍ତ ଦେଶମାନଙ୍କର ଅନୁସୃତ ପଦ୍ଧତିର ଅନୁସରଣରେ କେତେକ ବଡ଼ ବଡ଼ ପ୍ରକଳ୍ପ ସ୍ଥାପନ ଦ୍ୱାରା ଆମ ରାଜ୍ୟରେ ବର୍ତ୍ତମାନ ଥିବା ପରିସ୍ଥିତିରେ ଆର୍ଥିକ ଅନଗ୍ରସରତାର ବିକଳ୍ପ ସାଧନ କରାଯାଇ ପାରିବନାହିଁ । ଆମର ପ୍ରୟୋଜନ : ଆତ୍ମବଳ ଓ କଠିନ ପରିଶ୍ରମ, ଅଧିକ ସଞ୍ଚୟ ଏବଂ ଆର୍ଥନୈତିକ ବିକାଶ ସଂକ୍ରାନ୍ତ ମୌଳିକ ପ୍ରଶ୍ନଗୁଡ଼ିକୁ ଆଦର୍ଶଗତ ଦ୍ୱନ୍ଦ୍ୱଠାରୁ ଦୂରରେ ରଖିବାପାଇଁ ଦୃଢ଼ ସଙ୍କଳ୍ପ । ଏକ ସାଧାରଣ ଓ ଐକ୍ୟବଦ୍ଧ ଆଭିମୁଖ୍ୟ ଜରିଆରେ ଆମର ବଜେଟକୁ ସାମାଜିକ ପରିବର୍ତ୍ତନ ତଥା ସ୍ୱଳ୍ପ ସୁବିଧାପ୍ରାପ୍ତ ଅଧିକାଂଶ ଆମର ଲକ୍ଷ ଲକ୍ଷ ଦେଶବାସୀଙ୍କ ପକ୍ଷରେ ଉଜ୍ଜ୍ୱଳ ଭବିଷ୍ୟତର ଶକ୍ତିଶାଳୀ ସାଧନରେ ପରିଣତ କରାଯାଇପାରିବ । ମହାଶୟ ମୁଁ ବର୍ତ୍ତମାନ

1975-76 ପାଇଁ ବଜେଟ୍ ଅଟକଳ ଉପସ୍ଥାପିତ କରିବାକୁ ଅନୁମତି ମାଗୁଛି । ଭାଷଣ ଶେଷ କରିବା ପୂର୍ବରୁ ମୁଁ ଆନନ୍ଦର ସହିତ ଦୁଇଟି ବିଷୟ ଘୋଷଣା କରିବାକୁ ଯାଉଛି । ଏଥିମଧ୍ୟରୁ ଗୋଟିଏ ବିଷୟରେ ମାନ୍ୟବର ସଭ୍ୟମାନେ ବହୁଦିନ ହେଲା ଆଗ୍ରହ ପ୍ରକାଶକରି ଆସିଛନ୍ତି । ମୁଁ ଆନନ୍ଦର ସହିତ ଉଲ୍ଲେଖ କରୁଛି ଯେ ସରକାର ତା 1-4-1975 ରିଖଠାରୁ ଏକ ବାର୍ଦ୍ଧକ୍ୟ ଭତ୍ତା ପରିକଳ୍ପନା ପ୍ରବର୍ତ୍ତନ କରିବାକୁ ସ୍ଥିର କରିଛନ୍ତି । ପ୍ରାରମ୍ଭରୁ ଏହା 65 ବର୍ଷ ବୟସ ବା ତଦୁର୍ଦ୍ଧ୍ୱ ବୟସର ସମସ୍ତ ନିରାଶ୍ରୟ ବ୍ୟକ୍ତିମାନଙ୍କ ପ୍ରତି ପ୍ରଯୁକ୍ତ ହେବ । ଅନ୍ୟ ବିଷୟଟି ହେଉଛି ପୁରୁଣା ବଳକା ଗ୍ରୋମୋର ଫୁଡ୍ ଋଣ ଛାଡ଼ କରିବାପାଇଁ ସିଦ୍ଧାନ୍ତ କରିଛୁ । ଏହି ଦୁଇଟି କାର୍ଯ୍ୟାନୁଷ୍ଠାନ ଏ ଦିଗରେ ଅଥମାରମ୍ଭ ମାତ୍ର ବୋଲି ମୁଁ ଏଠାରେ ଉଲ୍ଲେଖ କରିପାରେ । ସମ୍ବଳ ସୁଲଭ ହେଲେ ଆମେ ଏକ ଅଧିକ ନ୍ୟାୟପୂର୍ଣ୍ଣ ସମାଜ ସ୍ଥାପନ ଦିଗରେ ଆଗେଇ ଚାଲିବା ସଙ୍ଗେ ସଙ୍ଗେ ସାମାଜିକ ନିରାପତ୍ତାପାଇଁ ଉତ୍ତରୋତ୍ତର ସୁଦୂରପ୍ରସାରୀ କାର୍ଯ୍ୟକ୍ରମ କାର୍ଯ୍ୟକାରୀ କରିପାରିବୁ ।

ଜୟ ହିନ୍ଦ୍

## ପରିଶିଷ୍ଟ

### ରାଜ୍ୟର ଋଣ ପରିସ୍ଥିତି

(ହଜାର ଟଙ୍କା ହିସାବରେ)

| | 1974 ଅପ୍ରେଲ ପହିଲାରେ ବକେୟା ଋଣ | 1975 ଅପ୍ରେଲ୍ ପହିଲାରେ ବକେୟା ଅଟକଳ | 1976 ଅପ୍ରେଲ ପହିଲାରେ ବକେୟା ଅଟକଳ |
|---|---|---|---|
| 1. ସ୍ଥାୟୀ ଋଣ | 805198 | 870144 | 1015038 |
| 2. ଅସ୍ଥାୟୀ ଋଣ | .. | 42200 | 42200 |
| 3. କେନ୍ଦ୍ର ସରକାରଙ୍କଠାରୁ ଋଣ | 5146491 | 5546317 | 5794937 |
| 4. ରିଜର୍ଭ ବ୍ୟାଙ୍କ ଅଫ୍ ଇଣ୍ଡିଆରୁ ଋଣ | 35350 | 44095 | 55908 |
| 5. ଭାରତର ଜୀବନବୀମା କର୍ପୋରେସନ୍‌ରୁ ଋଣ । | 133566 | 131206 | 138787 |
| 6. ଜାତୀୟ ସମବାୟ ବିକାଶ .. କର୍ପୋରେସନ୍‌ରୁ ଋଣ । | 37425 | 46423 | 42837 |
| 7. ଭାରତର ଖଦୀ ଓ ଗ୍ରାମ .. ଶିଳ୍ପ କମିଶନଙ୍କଠାରୁ ଋଣ । | 1200 | 1200 | 1200 |
| 8. ଷ୍ଟେଟ୍ ବ୍ୟାଙ୍କ୍ ଅଫ୍ ଇଣ୍ଡିଆରୁ ଋଣ । | 40000 | 120000 | -- |
| ମୋଟ .. | 6199230 | 6801585 | 7090907 |

## ଓଡ଼ିଶା ବିନିଯୋଗ ବିଧେୟକ, 1975 ଉପରେ ଆଲୋଚନା

(26-3-1975)

ବ୍ୟୟ ମଞ୍ଜୁରୀ ବିଲ୍ ଉପରେ ବନ୍ଧୁ ମାନ୍ୟବର ସଭ୍ୟ ଆଲୋଚନା କରିଛନ୍ତି କେତେ ପରାମର୍ଶ ମଧ୍ୟ ଦେଇଛନ୍ତି—ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଛି । ଆପଣ ସାର୍ ଜାଣନ୍ତି ଏହି ବ୍ୟୟ ମଞ୍ଜୁରୀ ବିଲରେ 29 କୋଟି 70 ଲକ୍ଷ 20 ହଜାର ଟଙ୍କା ସମ୍ଯୋଜନା ଏବଂ ଅଣଯୋଜନା ବାବଦରେ ମଗାଯାଇଛି । ସେଥିରୁ ଆମର ନେଟ୍ ଡେଫିସିଟ୍ 14 କୋଟି 22 ଲକ୍ଷ 80 ହଜାର । ଚଳିତ ବର୍ଷରେ in the shape of savings and accelerated assistance from India Government ଆମର resources ଅଛି । ତାକୁ ଛାଡିଦେଲେ ଆମର ନେଟ୍ ଡେଫିସିଟ୍ 14 କୋଟି 22 ଲକ୍ଷ 80 ହଜାର । ସେହି ଟଙ୍କାର ବ୍ୟବସ୍ଥା ଏଥିରେ ହୋଇଛି । ଆମର 29 କୋଟି 70 ଲକ୍ଷ 20 ହଜାର ଟଙ୍କା ଯାହା ମାଗିଛୁ ସେ ସବୁର ତାଲିକା ଏହିପରି ହେବାକୁ ଯାଉଛି । ମୁଁ ଏହା କହିବାକୁ ବାଧ୍ୟ ହେଉଛି ଯେଉଁହେତୁ ବନ୍ଧୁ ମାନ୍ୟବର ସଭ୍ୟ ଆଶଙ୍କା ପ୍ରକାଶ କରିଛନ୍ତି ଯେ ଚଳିତ ଆର୍ଥିକ ବର୍ଷର ଶେଷ ସୁଦ୍ଧା ଏ ଟଙ୍କା ଖର୍ଚ୍ଚ ହୋଇ ପାରିବ କି ନାହିଁ । ଆପଣ ଦେଖିବେ ଦରମା କମିଟିର ସୁପାରିଶ ଅନୁସାରେ ପ୍ରାଥମିକ ଶିକ୍ଷକମାନଙ୍କୁ ଅଧିକ ଦରମା ଦେବା ବାବଦରେ 5 କୋଟି 57 ଲକ୍ଷ 47 ହଜାର ରହିଛି । Government Secondary School staff ଇତ୍ୟାଦିଙ୍କୁ ବର୍ଦ୍ଧିତ ହାରରେ ଦରମା ଦେବାପାଇଁ 2 କୋଟି 66 ଲକ୍ଷ 45 ହଜାର ରହିଛି । National Scholarship at the end of Secondary stage, B. Ed. ଏବଂ M. Ed. ଛାତ୍ରମାନଙ୍କୁ stipend ଓ ସୈନିକ ସ୍କୁଲ ଛାତ୍ରମାନଙ୍କୁ stipend ବର୍ଦ୍ଧିତ ହାରରେ ଦେବାପାଇଁ 35 ଲକ୍ଷ 50 ହଜାର ରହିଛି ।

ଉପାଧ୍ୟକ୍ଷ ମହାଶୟ, ଆଜି ଆପ୍ରୋପ୍ରିଏସନ୍ ବିଲ ସମ୍ପର୍କରେ ଆଲୋଚନା ଚାଲିଛି । ଏ ଆଲୋଚନାରେ ଯେଉଁମାନେ ଭାଗ ନେଇଛନ୍ତି ସେମାନଙ୍କୁ ଧନ୍ୟବାଦ ଦେଉଛନ୍ତି । ଆଜି ଏ ବିଲ 464 କୋଟି 53 ଲକ୍ଷ 53 ହଜାର ଟଙ୍କାର ମଞ୍ଜୁରୀପାଇଁ ଆଗତ କରାଯାଇଛି । ଏବଂ 25 ତାରିଖରେ ଯେଉଁ ବଜେଟ୍ ପାସ୍ କରାଯାଇଥିଲା, ସେ ବଜେଟର ବିଭିନ୍ନ ଦିଗ ପ୍ରତି ମୁଁ ସଭ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲି । ଅନ୍ୟାନ୍ୟ ଡିମାଣ୍ଡଗୁଡ଼ିକର ଦାବୀ ଉପସ୍ଥାପିତ ହୋଇ ପାସ୍ ହୋଇ ଥିଲା । ସେସବୁ

ସମ୍ପର୍କରେ ମଧ୍ୟ ଆଲୋଚନା ହୋଇଥିଲା । ବିରୋଧିଦଳର ସଭ୍ୟମାନଙ୍କର ଅଭିଯୋଗଗୁଡ଼ିକର ଯଥାଯଥ ଉତ୍ତର ମୋ ସହକର୍ମୀମାନେ ଦେଇଛନ୍ତି । ବିରୋଧି ଦଳର ନେତା ବ୍ୟସ୍ତ ମନ୍ତ୍ରୀଙ୍କ ଭଲ୍ ଆଲୋଚନା ଆରମ୍ଭ କରିଛନ୍ତି । ସେ କହିଛନ୍ତି ଯେ, ନିର୍ବାଚନ ସମୟରେ ଆମେ ଲୋକଙ୍କୁ ଯେଉଁ ପ୍ରତିଶ୍ରୁତି ଦେଇଥିଲୁ ତା' ପାଳନ କରିପାରି ନାହୁଁ । ମୁଁ ଆପଣଙ୍କ ଜରିଆରେ କହିଦେବାକୁ ଚାହେଁ ଯେ, ଏ ଗଣତାନ୍ତ୍ରିକ ଶାସନରେ ଯେଉଁ ଦଳ ସରକାର ଗଠନ୍ତି ତାଙ୍କୁ ପାଞ୍ଚ ବର୍ଷ ସମୟ ଦିଆଯାଇଥାଏ । ପାଞ୍ଚବର୍ଷ ଶେଷରେ ସେ ସରକାର କେତେଦୂର ସଫଳତା ହାସଲ କଲେ ଓ କେତେଦୂର ବିଫଳ ହେଲେ, ସେସବୁ ବିଷୟ ବିଚାରକୁ ନିଆଯାଏ । ଏ ସରକାର ଗଠା ହେବାର ମୋଟ ଦେଢ଼ ବର୍ଷ ହୋଇଛି । ଦେଢ଼ ବର୍ଷକ ପରେ କୁହାଯାଏ ଯେ ପ୍ରତିଶ୍ରୁତି ରକ୍ଷା ହେଲାନାହିଁ,ତା, ହେଲେ ଆମେ ନାଚାର । ଗୋଟିଏ ବର୍ଷ ଶେଷରେ ଏଭଳି ଗୋଟିଏ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ପହଞ୍ଚିବା ଠିକ୍ ହେବନାହିଁ । ଗୋଟିଏ ବର୍ଷରେ କୌଣସି ବଡ଼ ଯୋଜନା ସମ୍ପୂର୍ଣ୍ଣ ହୋଇ ପାରିବନାହିଁ । ସମାଜର ଯେଉଁମାନେ ନିମ୍ନସ୍ତରରେ ଅଛନ୍ତି ସେମାନଙ୍କର ଉତ୍ଥାନ ଗୋଟିଏ ବର୍ଷରେ ହେବା ସମ୍ଭବ ନୁହେଁ । କୃଷିର ଉନ୍ନତିପାଇଁ ପୂର୍ବତନ ସରକାରମାନେ ଦୃଷ୍ଟି ଦେଇ ନ ଥିଲେ । କୃଷିପ୍ରତି ଓ ଜଳସେଚନ ପ୍ରତି ଏ ସରକାର ପ୍ରଥମେ ଦୃଷ୍ଟି ଦେଇଛନ୍ତି । କୃଷିପ୍ରତି ଯେଉଁ ଅବହେଳା କରାଯାଇଛି ତା, ଫଳରେ ଏ ଅସୁବିଧା ସୃଷ୍ଟି ହୋଇଛି । ତେଣୁ କୃଷିପ୍ରତି, କୃଷିକୁ ସାହାଯ୍ୟ କରୁଥିବା ଜଳସେଚନ ପ୍ରତି ଏବଂ ଅନ୍ୟାନ୍ୟ ଆନୁଷଙ୍ଗିକ ବ୍ୟବସ୍ଥାପ୍ରତି ପ୍ରଥମେ ଦୃଷ୍ଟି ଦିଆଯାଇଛି । ତଦ୍ୱାରା ଉତ୍ପାଦନ ବୃଦ୍ଧି ହେବ । ଆମର ଯାହା ଅଭାବ ରହିଛି ତା,ପୂରଣ ହୋଇପାରିବ । ତା, ସଙ୍ଗେ ସଙ୍ଗେ ପ୍ରଥମେ କର୍ମ ଯୋଗାଣର ସୁଯୋଗ ସୃଷ୍ଟି ହୋଇ ପାରିବ, ଯେଉଁଥିରେ କି ବହୁତ ଲୋକ ନିଯୁକ୍ତି ପାଇପାରିବେ । କୃଷି ଦିଗରେ ଆମେ ଯେଉଁ ସ୍ତରରେ ପହଞ୍ଚିବାର କଥା, ପୂର୍ବତନ ସରକାରମାନେ ସେଥିପାଇଁ ଉଦ୍ୟମକରି ନ ଥିବାରୁ, ଆମେ ସେ ସ୍ତରରେ ପହଞ୍ଚିପାରି ନାହୁଁ । ତେଣୁ ଏ ଅସୁବିଧା ସୃଷ୍ଟି ହୋଇଛି । ଆପଣ ଜାଣନ୍ତି ଯେ କୌଣସି ଦେଶ ସ୍ୱାଧୀନତା ଲାଭପରେ ପ୍ରଥମେ କୃଷି ପ୍ରତି ଦୃଷ୍ଟି ଦିଏ । କୃଷିରେ ସ୍ୱାବଲମ୍ବୀ ହେଲାପରେ ଅନ୍ୟ ବିଷୟପ୍ରତି ଦୃଷ୍ଟି ଦିଏ । କୃଷିର ଉନ୍ନତିରେ ଶିଳ୍ପର ଉନ୍ନତି ହୁଏ । ଆମ ରାଜ୍ୟରେ କୃଷି ଦିଗରେ ଯାହା କରିବା ସମ୍ଭବ ସେ ସବୁ ହୋଇପାରି ନ ଥିବାରୁ ଏ ଅସୁବିଧା ସୃଷ୍ଟି ହୋଇଛି । କୁହାଯାଇଛି ଯେ ଏ ରାଜ୍ୟରେ ଅଧିକରୁ ଅଧିକ ଟିକସ ବସାଯାଇଛି । ମୁଁ ଆପଣଙ୍କ ଜରିଆରେ କହିବାକୁ ଚାହେଁ ଯେ, ଏବର୍ଷ କେବଳ 50 ଲକ୍ଷ ଟଙ୍କାର ନୂଆ ଟିକସ ଧାର୍ଯ୍ୟ କରାଯାଇଛି । ମୁଁ ଆଗରୁ

କହୁଛି ଯେ ଏ କ୍ଷତି ଜନସାଧାରଣଙ୍କ ଉପରେ ପଡ଼ିବ ନାହିଁ । ବ୍ୟବସାୟୀ-ମାନଙ୍କ ଉପରେ ଏହା ପ୍ରତ୍ୟକ୍ଷ କ୍ଷତି ହେବ । ଏ କଥା ସତ ଯେ, ଏ ରାଜ୍ୟ ବର୍ତ୍ତମାନ ଦୈବ ଦୁର୍ବିପାକର ସମ୍ମୁଖୀନ ହୋଇଛି । ଗତବର୍ଷ ବର୍ଷା ଅଭାବରୁ ବହୁ ଅଞ୍ଚଳରେ ମରୁଡ଼ି ଦେଖାଦେଇଛି । ମାନ୍ୟବର ବିରୋଧୀ ଦଳର ନେତା କହିଛନ୍ତି ଯେ ଏ ରାଜ୍ୟର ଉନ୍ନତି କରିବାପାଇଁ ଆମେ ସମସ୍ତେ ଏକାଠି କାମ କରିବାର କଥା । ଏଥିରେ ମୁଁ ତାଙ୍କ ସହିତ ଏକ ମତ । ସାମୟିକ ଯେଉଁ ଅସୁବିଧା ସୃଷ୍ଟି ହେଉଛି ତା'ର ସୁଯୋଗନେଇ ଲୋକଙ୍କ ଭିତରେ ଯେଉଁ ଆନ୍ଦୋଳନ ସୃଷ୍ଟି କରାଯାଉଛି ତା' କରିବା କେତେଦୂର ସମୀଚୀନ ତା' ଆପଣ ବିଚାର କରନ୍ତୁ । ଯେଉଁ ଅସୁବିଧା ସୃଷ୍ଟି ହେଉଛି ତାକୁ କିପରି ଆମେ ଅତିକ୍ରମ କରିବା ସେ ଦିଗରେ ଚେଷ୍ଟା କରାଯାଉ ନାହିଁ । ଏଥିରେ ବ୍ୟକ୍ତିର କଥା ଉଠୁନାହିଁ, ଯେଉଁମାନେ ସରକାରରେ ଅଛନ୍ତି ସେମାନଙ୍କ କଥା ଉଠୁନାହିଁ, କୋଟି କୋଟି ଲୋକଙ୍କର କଥା ଏଥିରେ ଉଠୁଛି । ଯେଉଁ ଲୋକ ଧାର୍ଯ୍ୟ ହୋଇଛି ସେଥିରେ ଯେଉଁ ତ୍ରୁଟି ଅଛି ତାକୁ ଦୂର କରିବାପାଇଁ ପ୍ରସ୍ତାବ ଦିଆଯାଇ ପାରିଥାନ୍ତା । ତା' ନ କରି ତା' ବିରୁଦ୍ଧରେ ଲୋକଙ୍କ ଭିତରେ ପ୍ରଚାର ଆରମ୍ଭ ହୋଇଗଲା । C. P. I. ବନ୍ଧୁମାନେ ଜନତା କମିଟି ଗଠନ କରିବାପାଇଁ ଯେଉଁ ପ୍ରସ୍ତାବ ଦେଇଛନ୍ତି ତା ଏତେ ଶୀଘ୍ର ହୋଇ ପାରିନାହିଁ । ସେ ସବୁ କମିଟି ଗଠନ କରିବାପାଇଁ ନିର୍ଦ୍ଦେଶ ଦିଆଯାଇଛି । ଯେତେଶୀଘ୍ର ହୋଇ ପାରିବ ସେଥିପ୍ରତି ଦୃଷ୍ଟି ଦିଆଯାଇଛି । ଏହା ନକରି ଲୋକଙ୍କୁ ଲେଭି ନଦେବା ପାଇଁ ପ୍ରଚାର କରିବା ସମୀଚୀନ ହୋଇଛି କି ? ଲେଭିକୁ କେନ୍ଦ୍ରକରି ଆନ୍ଦୋଳନ କରାଯିବା ଅତ୍ୟନ୍ତ ଦୁଃଖଦାୟକ କଥା । ଓଡ଼ିଶାରେ ଯେଉଁ ଉତ୍କଟ ଖାଦ୍ୟ ସମସ୍ୟା ଦେଖାଦେଇଛି ତାକୁ ଅତିକ୍ରମ କରିବାପାଇଁ ଏହା କ'ଣ ବାଟ ? ଅବଶ୍ୟ ଅନ୍ୟଠାରୁ ଖାଦ୍ୟଶସ୍ୟ ଆଣିବାକୁ ଚେଷ୍ଟା କରାଯାଉଛି । ଉତ୍କଟ ସମୟରେ ଲୋକଙ୍କୁ ଖାଦ୍ୟ ଯୋଗାଇବାପାଇଁ ଚେଷ୍ଟା କରାଯାଉଛି । ବିରୋଧୀଦଳର ନେତା ଓଡ଼ିଶାର ଉନ୍ନତିପାଇଁ ଆମେ ସମସ୍ତେ ଏକାଠି କାମ କରିବାକଥା କହୁଥିଲେ ବେଳେ ତା'ର ବିପରୀତ କରାଯାଉଛି । ମାନ୍ୟବର ବିରୋଧୀଦଳର ନେତା ଓ ସଭ୍ୟମାନେ ଜାଣନ୍ତି ଯେ ଗତ ଦୁଇବର୍ଷ ହେଲା ସାରା ଦେଶରେ ଗୋଟିଏ ଆର୍ଥିକ ସଂକଟ ସୃଷ୍ଟି ହୋଇଛି ଓ ଆମେ ସେଇ ସଂକଟ ଭିତରଦେଇ ଗତି କରୁଛୁ । ଏପରି ବିପଦ ସମୟରେ ଯେଉଁ ଅସୁବିଧା ଦେଖା ଦେଇଛି ତାକୁ ଉତ୍ତେଜକତାର ସହ ଗୋଟିଏ ବିସ୍ଫୋରକ ପରିସ୍ଥିତି ସୃଷ୍ଟି କରାଯାଏ, ତାହେଲେ ସମସ୍ୟାର ସମାଧାନ କିପରି ହେବ ମୁଁ

ଲୁଚିପାରୁ ନାହିଁ । ଯେକୌଣସିଠି କାହା ମନ୍ଦବୁଦ୍ଧି ହେଲେ ତାର ସମାଧାନ କରି ନେବା ବଦଳରେ ବିଶୋରଜ ପରିସ୍ଥିତ ସୃଷ୍ଟି କରାଗଲା । ଏ ରାଜ୍ୟ ପକ୍ଷରେ ଅତି ଦୁଃଖଦାୟକ ହେବ । ମୁଁ ଜାଣେ ଗଣତନ୍ତ୍ରର ବିରୋଧୀ-ଦଳର ନିର୍ଦ୍ଦିଷ୍ଟ ଭୂମିକା ରହିଛି । ଯଦି କୌଣସି ପ୍ରତିଷ୍ଠିତ ସରକାରକୁ ଭାଙ୍ଗିବାପାଇଁ ଯେ କୌଣସି ଉପାୟ ଅବଲମ୍ବନ କରାଯିବ ଏବଂ ଲୋକଙ୍କ ଅସୁବିଧା ପ୍ରତି ଦୃଷ୍ଟି ନ ଦେଇ ସରକାରକୁ ଭାଙ୍ଗିବାପାଇଁ ଉଦ୍ୟମ କରାଯିବ, ତା ହେଲେ ବିରୋଧଦଳ ଠିକ୍ ଭାବରେ ଗଣତନ୍ତ୍ରରେ ତାଙ୍କର ଭୂମିକା ଅନୁସରଣ କରୁନାହାନ୍ତି ବୋଲି ମୁଁ କହିବି । ଆପଣ ଜାଣିଥିବେ, ଆମେ ଦୁଇଥର ନୂଆଦିଲ୍ଲୀ ଏ ଗୃହରୁ ସଭ୍ୟ ହୋଇ ଆସିଥିଲେ । ଗତ ଏକଦେଶ ଥର ହେଲା ଯେଉଁଭଳି ଅସ୍ୱାଭାବିକ ପରିସ୍ଥିତି ଏଠାରେ ଦେଖିବାକୁ ମିଳୁଛି ଆଗରୁ କେବେ ସେପରି ସୃଷ୍ଟି ହୋଇ ନଥିଲା । ଏହା ଅତ୍ୟନ୍ତ ଦୁଃଖ ଦାୟକ କଥା । କାରଣ ଏହିଦ୍ୱାରା ଏଠାକୁ ଦର୍ଶକ ହୋଇ ଆସୁଥିବା ଲୋକେ କ'ଣ ଶିକ୍ଷାଲାଭ କରିବେ । ଏହା ଫଳରେ ତାଙ୍କ ଉପରେ ଖ ପ୍ରଭାବ ପଡୁଛି । ଆମେ ପ୍ରତ୍ୟେକ ଦେଢ଼ଲକ୍ଷ ଲୋକଙ୍କର ପ୍ରତିନିଧି । ଆମେ ଠିକ୍ଭାବରେ ବ୍ୟବହାର ନ କଲେ ବା ଖରାପ ପରିସ୍ଥିତି ସୃଷ୍ଟି କଲେ ତାହା ଇତିହାସରେ ରହିଯିବ ଏବଂ ଭବିଷ୍ୟତ ବଂଶଧରମାନେ ଏ ମୁଦ୍ରିତ ବିବରଣୀ ପାଠକରି ନିଶ୍ଚୟ ଦୁଃଖିତ ହେବେ ଏବଂ ଆମର ଏହି କାର୍ଯ୍ୟକଳାପ ଲାଗି ଯେ ଆମକୁ ନିନ୍ଦା କରିବେ, ଏଥିରେ ସନ୍ଦେହ ନାହିଁ । ମୁଁ ଏଠାରେ କହି ରଖୁଛି, ଓଡ଼ିଶାର ଅର୍ଥନୈତିକ ଅଭିବୃଦ୍ଧିରେ କୌଣସି ରାଜନୀତି ରହିବ । ଉଚିତ ନୁହେଁ । ଦରକାରବେଳେ ଆମେ ବିରୋଧୀଦଳ ସହିତ ପରାମର୍ଶ କରୁଛୁ ଏବଂ ନିଜର confidence ନେଇ ଯାହା କରିବା କଥା, କରାଯାଉଛି ।

ମନ୍ତ୍ରୀମାନଙ୍କ ସଂପତ୍ତି ତାଲିକା ନେଇ ଯାହା କୁହା ଯାଇଥିଲା ମୁଁ ଏଠାରେ ଜଣେଇ ଦେବାକୁ ଚାହେଁ । ମୁଁ ଭାବୁଛି କେବଳ ମନ୍ତ୍ରୀମଣ୍ଡଳ ନୁହେଁ, ରାଜ୍ୟର ସମସ୍ତ ଏମ୍. ଏଲ୍. ଏ. ଓ ଏମ୍. ପି.ଙ୍କ ସଂପତ୍ତି ତାଲିକା ହେବା ଦରକାର । କିନ୍ତୁ ମନ୍ତ୍ରୀମଣ୍ଡଳପାଇଁ ସଂପତ୍ତି ତାଲିକା ନିର୍ଦ୍ଧାରଣ ହୋଇଯାଇଛି ।

ମୁଁ ନିର୍ଦ୍ଦିଷ୍ଟ ଭାବରେ କହି ରଖୁଛି ନିକଟରେ ଆମେ ଆମର ସଂପତ୍ତି ତାଲିକା ଦେଉଛୁ । କେବଳ ସେଥିରେ ଅନ୍ୟାନ୍ୟ ସଭ୍ୟଙ୍କ କଥା ନାହିଁ । ସେମାନଙ୍କ କଥା ରହିଥିଲେ ମୁଁ ଆନନ୍ଦିତ ହୋଇଥାନ୍ତି ।

ରାଜନୈତିକ ହତ୍ୟା ଯେପରି ବଢି ଚାଲିଛି, ଗତ କେତେ ମାସ ଧରି ମାରିବାହୁବଳରୂପ ରାଜନୈତିକ ଓ ଅନ୍ୟାନ୍ୟ ହତ୍ୟାକାଣ୍ଡ ଚାଲିଛି । ଆମର ତରୁଣମାନଙ୍କର cult of hatred ପ୍ରଚାରପନ କରାଯାଇଛି । ତଦ୍ଵାରା ଯେଉଁ ବାୟୁମଣ୍ଡଳ ସୃଷ୍ଟି ହେବ ତାକୁ କେହି ରୋକି ପାରିବେ ନାହିଁ । ଏହା ଫଳରେ ସାମାଜିକ ସ୍ତରରେ ମଧ୍ୟ ଅଶାନ୍ତି ବ୍ୟାପିବ । ଆମେ ସାମୟିକ ହତ୍ତେଜନାର ବଶବର୍ତ୍ତୀ ହୋଇ ଯାହା କରିଦେଉଛୁ ଅନେକ ସମୟରେ ଭୁଲି ଯାଉଛୁ ଭବିଷ୍ୟତରେ ତା'ର କି ପ୍ରଭାବ ପଡ଼ିବ ।

ଶ୍ରୀ ବନମାଳୀ ଆଚାର୍ଯ୍ୟ (ମନ୍ତ୍ରୀ) : ମୁଁ କୌଣସି ଦଳ କଥା କହୁ ନାହିଁ ଯେଉଁ ଦଳ ଯାହା କରେ ତା'ର ପରିଣାମ ସେ ନିଶ୍ଚୟ ପାଇବ, ଏଥିରେ ସନ୍ଦେହ ନାହିଁ । ଆମ ରାଜ୍ୟରେ ଯାହା ଚାଲିଛି, ଦେଶରେ ଯାହା ଦେଖା-ଯାଉଛି, ସେଥିପ୍ରତି ମୁଁ ଆପଣମାନଙ୍କର ଦୃଷ୍ଟି ଆକର୍ଷଣ କରୁଛି ।

ଏଠାରେ C. I. A., J. P. ଏବଂ ଅନ୍ୟାନ୍ୟ କଥା ଆଲୋଚନା କରାଯାଇଛି । ମୁଁ ସେଥିରେ ଅଗ୍ରେଇବା କଥା କହୁନାହିଁ । ଜୟପ୍ରକାଶ ହଉନ୍ତୁ ବା ଅନ୍ୟ କେହି ହଉନ୍ତୁ, ପ୍ରଧାନମନ୍ତ୍ରୀ ସଭ୍ୟ ଏବଂ ସରକାରଙ୍କୁ ଇସ୍ତଫା ଦେବା କହିବା ଯେ କୌଣସି ପ୍ରକାରରେ ହେଉ ଏହା ଚେତେଇବାର ସମୀଚୀନ । ଗାନ୍ଧୀଙ୍କ ବିଚାରଧାରା ଯାହା ଥିଲା ତାକୁଇ ନେଇ ମୁଁ କହୁଛି । ଆଜି ରାଜନୈତିକ କ୍ଷେତ୍ରରେ ବହୁତ କଥା ହେଉଛି । ବିଭିନ୍ନ ବିରୋଧୀ-ଦଳମାନଙ୍କର ଜେ. ପି. ଗୋଟିଏ ଛତା ଭଳି ଅଛନ୍ତି । ଏଠାରେ ଜନସଂଘ କଥା ବିଚାର କରାଯାଉ । ଏ ଯେଉଁ ବିରୋଧୀଦଳଗୁଡ଼ିକ ଜୟପ୍ରକାଶଙ୍କ ପାଖରେ ଠୁଳ ହୋଇଛନ୍ତି ଏଥିରେ ଜନସଂଘ ଅଧିକ ଶକ୍ତିଶାଳୀ ହୋଇଛି । ତା' ଫଳରେ ହେଉଛି କ'ଣ ନା, ଯେଉଁ ବନ୍ଧୁମାନେ ଏ ରାଜ୍ୟରେ ସମାଜବାଦ ଚିନ୍ତାଧାରା କାର୍ଯ୍ୟକାରୀ ହେଲା ନାହିଁ ଏବଂ ଦରିଦ୍ର ଜନସାଧା-ରଣଙ୍କର କଥା ଏଠାରେ ଉଚ୍ଚ ସ୍ୱରରେ ଉତ୍ତୋଳନ କରୁଛନ୍ତି ସେମାନଙ୍କୁ ମୁଁ କହିବି, ଯେଉଁ ଦଳ ସମାଜବାଦ ବିରୋଧୀ ସେ ଦଳ ଆଜି ଶକ୍ତିଶାଳୀ ହେଉଛି । ଭାରତୀୟ ରାଜନୈତିକ କ୍ଷେତ୍ରରେ ତା'ର ପ୍ରଭାବ ବଢିବାକୁ ଯାଉଛି । ଏହା କାହାକୁ ବୁଝାଇବ । ତେଣୁ ଯାହାଙ୍କର ସମାଜବାଦ ଚିନ୍ତାଧାରା ଦୃଢ଼ୀଭୂତ ହେବ ସେ ଦିଗରେ କାର୍ଯ୍ୟ କରିବା ଉଚିତ । ଦେଶରେ ହିଂସା ଓ ଏକଛତ୍ରବାଦ ମୁଣ୍ଡ ଟେକିଲେ ବା ସେ ଦିଗରେ ଆନ୍ଦୋଳନ ହେଲେ କୌଣସି ସମାଧାନ ସମ୍ଭବପର ହେବ ନାହିଁ ।

ଏବସମ୍ବ ମାନ୍ୟବର ସଭ୍ୟ ଭୂଷଣ ପ୍ରସଙ୍ଗରେ କେତେକ କଥା କହିଛନ୍ତି । ସରକାର ନିର୍ଦ୍ଦିଷ୍ଟ ଭାବରେ ସେ ଦିଗରେ କାର୍ଯ୍ୟ କରିବେ । ବିଶେଷକରି ଭୂସଂସ୍କାର ଉପରେ କେତେକ କାର୍ଯ୍ୟ ହୋଇନାହିଁ । ସେଠିଁ Peoples Committee କରିବା କଥା, ସେ ଦିଗରେ ଚଞ୍ଚଳ କାର୍ଯ୍ୟ କରାଯିବ । ଏହିପରି ଯେଉଁ ସବୁ ପ୍ରୋଜେକ୍ଟ କାର୍ଯ୍ୟକାରୀ ହେଉଛି ସେଥିପାଇଁ ଜନସାଧାରଣଙ୍କ ପକ୍ଷରୁ ଗୋଟିଏ ଗୋଟିଏ Committee ଗଢ଼ିବା ଦରକାର । ପ୍ରୋଜେକ୍ଟରୁ ପ୍ରୋଜେକ୍ଟର ଆରମ୍ଭ କେବେ, ଶେଷ କେବେ; ତାହା ଜାଣିବା ଦରକାର ହେଉଛି । ସେଥିପାଇଁ ଆମେ performance budget ଗୋଟିଏ ବର୍ଷରେ introduce କରୁଛୁ । ଅନ୍ୟାନ୍ୟ ଦିଗରେ ତାହା କାର୍ଯ୍ୟକାରୀ କରିବାକୁ ଯାଉଛୁ । ଏଥିରେ ଲୋକଙ୍କର ସହଯୋଗପାଇଁ ଯାହାସବୁ ପରାମର୍ଶ ଦେଉଛନ୍ତି ତାକୁ ଆମେ ଗ୍ରହଣ କରୁଛୁ ।

ଜଣେ ମାନ୍ୟବର ସଭ୍ୟ କହିଲେ 11,000 Share Cropper ଅଛନ୍ତି । ସେମାନେ ଦରଖାସ୍ତ କରିନାହାନ୍ତି । ମୁଁ ବିଭିନ୍ନ ରାଜନୈତିକ ଦଳର ସଭ୍ୟମାନଙ୍କୁ କହିଦେବାକୁ ଚାହେଁ ସେମାନେ ଯେପରି ଦରଖାସ୍ତ କରିବେ ସେଥିପାଇଁ କାର୍ଯ୍ୟ କରନ୍ତୁ । ମାନ୍ୟବର ଉଦ୍ଦାଳର ସଭ୍ୟ କେରଳ କଥା ଏ ପ୍ରସଙ୍ଗରେ ଉଠାଇଲେ । ସେମାନେ 3 ଲକ୍ଷ ଲୋକଙ୍କୁ ଜମିର ମାଲିକ କରିଛନ୍ତି । ଏହା ଏକ ପ୍ରଶଂସାର କାର୍ଯ୍ୟ । ମୁଁ ମାନ୍ୟବର ସଭ୍ୟମାନଙ୍କୁ ଅନୁରୋଧ କରୁଛି, ଯେଉଁମାନେ ଦରଖାସ୍ତ କରିନାହାନ୍ତି ସେମାନେ ଯେପରି ଦରଖାସ୍ତ କରିବେ ସେଥିପାଇଁ ଚେଷ୍ଟା କରନ୍ତୁ । ତା’ ପରେ ସ୍କୁଲ ଶିକ୍ଷକମାନଙ୍କର ଦରମା direct payment କରିବା ସମ୍ବନ୍ଧରେ ବହୁକଥା କୁହାଯାଇଛି । ଆମେ ଗୋଟିଏ ନୂଆ ପଦ୍ଧତି ଅନୁସରଣ କରିଛୁ । ଏଥିରେ ତ୍ରୁଟି ଥାଇପାରେ । କେହି କେହି ଦରମା ପାଇନଥିବେ ଆମର ବି ଏ ବିଷୟରେ ଆଲୋଚନା ଚାଲିଛି । ମୁଁ ଭାବୁଛି ନିକଟରେ ଏହା ଦୂର ହୋଇଯିବ । ତା’ପରେ ଶ୍ରୀ ହରିହର କରଣ କହିଲେ ଆମ ରାଜ୍ୟରେ regional imbalance ରହୁଯାଉଛି । ମୁଁ ଆରମ୍ଭରୁ କହିଥିଲି ଏବଂ ଏବେ ବି କହୁଛି, ଏ ସରକାର ଶାସନକୁ ଆସିବାଠାରୁ ଅନ୍ୟମାନେ ଯାହା କରିଥାନ୍ତୁ ନା କାହିଁକି regional imbalance ବିରୁଦ୍ଧରେ ଲଢ଼େଇକରି ଆସିଛନ୍ତି ଏବଂ ଅନୁନ୍ନତ ଅଞ୍ଚଳକୁ ଉନ୍ନତ କରିବାକୁ ଦରବାର କରୁଥିଲେ ଆସିଛନ୍ତି ଏବଂ ସେ ଦିଗରେ ଉଦ୍ୟମ କରାଯାଉଛି । ସାଧାରଣତଃ ଦେଖା ଯାଉଥାଏ ଅନେକ ଅଞ୍ଚଳରେ ପିଇବାପାଣି ମିଳୁନାହିଁ । ମୋର ଆଶା ନିକଟରେ ଏ ଅସୁବିଧା ଦୂର ହେବ । ତା’ ପରେ ମୁଖ୍ୟମନ୍ତ୍ରୀଙ୍କ ପୁତ୍ରଙ୍କ ସମ୍ବନ୍ଧରେ କେତେକ

କଥା କୁହାଯାଇଛି, ଏହା ଠିକ୍ ନୁହେଁ । ଗୃହର ବାସ୍ତବତା ଉପରେ ଆଲୋଚନା ନ କରି ବାହାରକୁ ଯିବା ଠିକ୍ ନୁହେଁ । ମାନ୍ୟବର ସଭ୍ୟ ଏ ଗୃହରେ ଅନୁପସ୍ଥିତ ଅଛନ୍ତି, ସେଥିପାଇଁ ଏ ଗୃହରେ ଉତ୍ତେଜନା ସୃଷ୍ଟି ହୋଇଥିଲା ।

ମାନ୍ୟବର ଉତ୍କୋଳର ସଭ୍ୟ ମିନିମମ୍ ବେତନ କଥା ଉଠାଇଥିଲେ । ମୁଁ ଯାହା କହିଥିଲି ସେଥିରେ ଟିକେ ଭୁଲ ରହିଯାଇଛି । ବର୍ତ୍ତମାନ maximum ହେଉଛି 1,000 ଟଙ୍କା ଏବଂ minimum ହେଉଛି 103 ଟଙ୍କା ।

ଆସାମ ନୂଆକରି ଏ ଲେଭି କରିଛି । ଅନ୍ୟାନ୍ୟ ରାଜ୍ୟରେ ଲେଭି କରିଛନ୍ତି । ଏଥିରେ ଯଦି କିଛି ତ୍ରୁଟି ରହିଥାଏ ତାହା ଦୂରହେବ । ବିରୋଧୀଦଳର ସଭ୍ୟମାନେ ଲେଭି ନେଇ ବାହାରେ ଏ ଗୃହ ଭିତରେ ଏବଂ ବାହାରେ ଯେପରି ସମାଲୋଚନା କରୁଛନ୍ତି ସେହି ଦୃଷ୍ଟିରୁ ମୁଁ କହିବି ବିରୋଧୀଦଳ ସଭ୍ୟମାନେ ସରକାରଙ୍କ ସହିତ ସହଯୋଗ କରୁ ନାହାନ୍ତି । ମୁଁ ଚ୍ୟାଲେଞ୍ଜ କରୁଚି ସେ କହନ୍ତୁ ସେ କେତେ ଟଙ୍କାରେ ଗ୍ରହଣ କରୁଛନ୍ତି । ମୁଁ ଯାହା କହୁଚି ମୁଖ୍ୟମନ୍ତ୍ରୀ ତାକୁ ଅପ୍ରମାଣ କରନ୍ତୁ । ପାର୍ଲାମେଣ୍ଟରେ ଏ କଥା ଉଠିଛି ।

ବ୍ୟସ୍ତ ମନ୍ତ୍ରୀଙ୍କ ବିଲ ଉପରେ ଆଲୋଚନା

20-11-1975

ବାଚସ୍ପତି ମହୋଦୟ, ଆଜି ଏ ଗୃହରେ ଆମ ଓଡ଼ିଶା ଆପ୍ରୋପିଏସନ୍ ବିଲ ନଂ 4 ଓ ନଂ 3 ଉପରେ ଯେଉଁ ଆଲୋଚନା ଚାଲିଥିଲା ସେଥିରେ ବହୁ ମାନ୍ୟବର ସଭ୍ୟ ଅଂଶ ଗ୍ରହଣ କରିଛନ୍ତି । ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଛି । ପ୍ରଥମେ ଆଲୋଚନା ଆରମ୍ଭ କରି ଆମର ବର୍ତ୍ତମାନର ବିରୋଧୀ ଦଳର ନେତା ଡାକ୍ତର ମାନ୍ୟବର ରମାପ୍ରସାଦ ମିଶ୍ର ଗୋଟିଏ କଥା କହିଲେ ଯେଉଁଟା ହେଉଛି ଏ ଜରୁରୀ ପରିସ୍ଥିତିର କୌଣସି କାରଣ ନ ଥାଇ ଦେଶରେ ଜରୁରୀ ଘୋଷଣା କରାଗଲା । ମହୋଦୟ, ମୋର କହିବା କଥା ଯଦି ଜଣେ ଜେଉଁ ଶୋଇଥିବ ବା ଆଖି ବୁଜିଥିବ, ସେ ବିଶେଷ କିଛି ଦେଖି ପାରିବ ନାହିଁ । ଜରୁରୀ ପରିସ୍ଥିତି ଏ ଗୋଟିଏ 4 ମାସ କାଳ ଚାଲିଲା ପରେ ଏବଂ ଯେଉଁ ବିଦେଶୀ ଖବର କାଗଜମାନେ ଏ ଜରୁରୀ ପରିସ୍ଥିତି ଘୋଷଣାର ନିନ୍ଦା କରୁଥିଲେ ସେମାନେ ଏହାର ଆବଶ୍ୟକତା ଓ ବାସ୍ତବତା ଅନୁଭବ କଲାପରେ

ଯଦି ଏ ମୁଦ୍ଧର ଜଣେ ମାନ୍ୟବର ସଦସ୍ୟ ସେ ଦଳରେ ବସି କହନ୍ତେ ଯେ ଏ ଜରୁରୀ ପରିସ୍ଥିତିର କୌଣସି ଆବଶ୍ୟକତା ନ ଥିଲା, ତା'ହେଲେ ମୁଁ କହିବି ଯେ ଏ ଦେଶରେ ଯେତେ ସବୁ ଶୋଷଣ କାଣ୍ଡ ଘଟିଯାଉଥିଲା ସେସବୁ ମାନ୍ୟବର ସଭ୍ୟଙ୍କ ଦୃଷ୍ଟିକୁ ଆସୁ-ନ ଥିଲା । ଆପଣ ଜାଣନ୍ତି ଯୋଜନାବଦ୍ଧଭାବରେ ଲାଗିଥିବା କାମ ରୁକିଥିଲା । ଭାରତ, ବଙ୍ଗଳାଦେଶ ଓ ଶ୍ରୀଲଙ୍କା ଏ ତିନୋଟି ଦେଶରେ ବିଦେଶୀ ଶକ୍ତିର ହାତ ଥାଇ ସେମାନଙ୍କର ଅନୁଗାମୀମାନେ ଏଭଳି ଷଡ଼ଯନ୍ତ୍ର ଘଟାଇବାକୁ ଯାଉଥିଲେ । ମହୋଦୟ, କଳ୍ପନା କରିପାରୁ ନାହିଁ ଯଦି 26 ଜୁନ୍‌ରେ ଶ୍ରୀମତୀ ଇନ୍ଦିରା ଗାନ୍ଧି ଏ ଦେଶରେ ଜରୁରୀ ପରିସ୍ଥିତି ଘୋଷଣା କରି ନ ଥାନ୍ତେ, ତା'ହେଲେ ଏ ଦେଶର ଅବସ୍ଥା କ'ଣ ହୋଇଥାନ୍ତା, ଆଜି ଆମେ ଏଠାରେ ବସି ଆଲୋଚନା କରିବାର ସୁଯୋଗ ଘଟିଥାଆନ୍ତା କି ନାହିଁ ସନ୍ଦେହ । କାରଣ ଆଜି ବଙ୍ଗଳାଦେଶରେ ଯେଉଁଭଳି କାଣ୍ଡ ସବୁ ଘଟୁଛି ଏ ଦେଶରେ ଯଦି ସେଭଳି ଘଟଣା ଘଟିଥାନ୍ତା ତା'ହେଲେ ଏ ଦେଶରେ ଗଣତନ୍ତ୍ରର ସତ୍ତା ରହି ନ ଥାନ୍ତା । ମହାଶୟ, ବଡ଼ ଆଶ୍ଚର୍ଯ୍ୟର କଥା ଯେଉଁମାନେ ଗଣତନ୍ତ୍ରକୁ ଧ୍ୱଂସ କରିବାପାଇଁ ଏ ଦେଶରେ ଉଦ୍ୟମ କରୁଥିଲେ ସେମାନେ ପୁଣି ଦେଶ ଗଣତନ୍ତ୍ରର ରକ୍ଷା ନାଁରେ ଏ କାର୍ଯ୍ୟ କରିବାକୁ ଯାଉଥିଲେ । ବିରୋଧି ଦଳର ସଭ୍ୟମାନେ ଆଜି ମଧ୍ୟ କହୁଛନ୍ତି ଯେ ଗଣତନ୍ତ୍ରର ସୁରକ୍ଷାପାଇଁ ସେମାନେ କାର୍ଯ୍ୟ କରୁଥିଲେ । ମାନ୍ୟବର ମହୋଦୟ, ଯେତେବେଳେ ବିହାର ବିଧାନସଭା ସଦସ୍ୟମାନଙ୍କୁ ବାଧ୍ୟ ବାଧ୍ୟକତା କରି ବିଧାନସଭାରୁ ଇସ୍ତଫା ଦେବାପାଇଁ କୁହାଯାଉଥିଲା ଏବଂ ସେତେବେଳେ ସେହିପରି ଭାବରେ ଗୁଜରାଟ ବିଧାନସଭା ସଭ୍ୟମାନଙ୍କୁ ଇସ୍ତଫା ଦେବାପାଇଁ ବାଧ୍ୟ କରାଯାଉଥିଲା ସେତେବେଳେ ଗଣତନ୍ତ୍ର କେଉଁଠି ଥିଲା ? ଏହା କ'ଣ ଗଣତାନ୍ତ୍ରିକ motto ଅନୁସାରେ ବା ସାମ୍ବିଧାନିକ motto ଅନୁସାରେ କରାଯାଉଥିଲା ? ଯେଉଁମାନେ ଲକ୍ଷ ଲୋକଙ୍କର ପ୍ରତିନିଧି, ଯେଉଁମାନଙ୍କୁ ଲକ୍ଷେ ଲୋକ ପ୍ରତିନିଧି କରି ପଠାଇଛନ୍ତି, ସେମାନଙ୍କ ଇସ୍ତଫା ଦେବାପାଇଁ ବାଧ୍ୟ କରାଯାଉଥିଲା, ସେମାନଙ୍କ ବେକରେ ଗାମୁଛା ପକାଇ ଟାଣି ଆଣି ଇସ୍ତଫା ଦେବାପାଇଁ କୁହାଯାଉଥିଲା ସେମାନଙ୍କ ପିଲାମାନଙ୍କୁ ଓ ତାଙ୍କୁ ଧମକ ଦିଆଯାଇଥିଲା ଯେ ଯଦି ତୁମେ ଇସ୍ତଫା ନ ଦେବ ତା'ହେଲେ ତୁମ ଉପରେ ଶୋଷଣ କାଣ୍ଡ କରାଯିବ । ସେହିପରିଭାବରେ ଗଣତନ୍ତ୍ରର ସୁରକ୍ଷା କରିବାକୁ ସେମାନେ ଯାଉଥିଲେ । ଉଦାହରଣ କହୁଛି ଇଟାଲୀର ମୁସୋଲିନ, ଜର୍ମାନୀର ହିଟଲର ଏବଂ ସ୍ପେନର ଫ୍ରାଙ୍କୋ ଠିକ୍ ଏହିଭଳି ଗଣତନ୍ତ୍ରର ସୁରକ୍ଷାପାଇଁ କାର୍ଯ୍ୟ କରିଥିଲେ । ସେମାନେ ସେପରି ଜନ ଅସନ୍ତୋଷର ସୁଯୋଗ ନେଇ ଗଣତନ୍ତ୍ରର ସୁରକ୍ଷା ନାଁରେ ତାଙ୍କ ଦେଶରେ ସ୍ଲୋଗାନ ଦେଉଥିଲେ ଠିକ୍ ସେହିପରି ଆମ ଦେଶରେ ଯେଉଁସବୁ ଦୈବ ଦୁର୍ବିପାକ ହେଲା ଓ ଅନ୍ୟାନ୍ୟ ସବୁ ପରିସ୍ଥିତି ହେଲା, ଯାହାଦ୍ୱାରାକି କିଛି କିଛି ଅସୁବିଧା ହେଲା ଠିକ୍ ତା'ର ସୁଯୋଗ ନେଇ ଏମାନେ ଗଣତନ୍ତ୍ରର ସୁରକ୍ଷା ନାଁରେ ସ୍ଲୋଗାନ ଦେଉଥିଲେ । ଏ

ଦେଶରେ ଯେପରି ଶାସନ କାର୍ଯ୍ୟ ସୁଚାରୁରୂପେ ଚାଲି ନ ପାରିବ ସେ ଦିଗରେ ସେମାନେ ଷଡ଼ଯନ୍ତ୍ରକାରୀ କାର୍ଯ୍ୟ କରୁଥିଲେ । ସେମାନଙ୍କର ଲକ୍ଷ୍ୟ ଥିଲା ସରକାର ଯେପରି କାର୍ଯ୍ୟ କରି ନ ପାରୁ ଓ ଭାଙ୍ଗିଯାଉ । ନିର୍ବାଚନ ତଥା ଜନମତ ଜରିଆରେ କ୍ଷମତାକୁ ଆସିବାର କୌଣସି ଆଶା ନ ରହି ସେମାନେ ଅସାମ୍ବିଧାନିକ ପନ୍ଥା ଅନୁସରଣ କରି କ୍ଷମତାକୁ ଆସିବାକୁ ଚେଷ୍ଟା କରୁଥିଲେ । ସେମାନେ କ'ଣ ଗଣତନ୍ତ୍ରର ରକ୍ଷାକାରୀ ? ସୁଖର କଥା ଯେଉଁ 26 ତାରିଖରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଏ ଦେଶରେ ଜରୁରୀକାଳୀନ ପରିସ୍ଥିତି ଘୋଷଣା କଲେ, ସେହି ଦିନଠାରୁ ଆପଣ ଲକ୍ଷ୍ୟ କରିଥିବେ ଆମର ବିଭିନ୍ନ ବିଭାଗରେ ଏବଂ ଦେଶର ବିଭିନ୍ନ ସ୍ତରରେ ସାମାଜିକ, ରାଜନୈତିକ, ଅର୍ଥନୈତିକ ଓ ଅନ୍ୟାନ୍ୟ ସ୍ଥାନରେ ଶୃଙ୍ଖଳା ଦେଖାଦେଇଛି । ସେଥିପାଇଁ ଆମର ବୟୋଜ୍ୟେଷ୍ଠ ସର୍ବୋଦୟ ନେତା କହିଛନ୍ତି ଯେ, ଏ ଆସିଲା ଗୋଟିଏ ଯୁଗ, ଯେଉଁ ଯୁଗରେ କି ଶୃଙ୍ଖଳା ରହିବ । ଶ୍ରୀଯୁକ୍ତ ବିନୋବା ଭାବେ କହିଛନ୍ତି ଯେ ଆମର ଅନୁଶାସନ ପର୍ବ ଆସିଲା, ଶୃଙ୍ଖଳାର ଯୁଗ ଆସିଲା ଏଇଟା ବିରୋଧୀ ଦଳର ମାନ୍ୟବର ସଭ୍ୟମାନେ ଦେଖିପାରୁ ନାହାନ୍ତି । କୃଷି, ଶିଳ୍ପ ଓ ଅନ୍ୟାନ୍ୟ କ୍ଷେତ୍ରରେ ଉତ୍ପାଦନ ବୃଦ୍ଧି, ସାମାଜିକ କ୍ଷେତ୍ରରେ ଶୃଙ୍ଖଳା ଓ ଅନ୍ୟାନ୍ୟ କ୍ଷେତ୍ରରେ ଯେପରି ଶୃଙ୍ଖଳା ପ୍ରତିଷ୍ଠିତ ହୋଇଛି, ତାକୁ ସେମାନେ ଦେଖିପାରୁ ନାହାନ୍ତି । ସେମାନେ ବାହାସ୍ଫୋଟନ କରୁଛନ୍ତି ଯେ ଅର୍ଡିନାନ୍ସ ବଳରେ ଏ ଶାସନ ଚାଲିଛି । ମୋତେ ଆଶ୍ଚର୍ଯ୍ୟ ଲାଗେ ଶ୍ରୀଯୁକ୍ତ ବୃନ୍ଦାବନ ନାୟକଙ୍କ ପରି ଜଣେ ପୁରୁଖା ସଭ୍ୟ ଏକଥା କହୁଛନ୍ତି । ସେ ଜାଣିବା ଉଚିତ୍ ଯେ ଯେତେବେଳେ ବିଧାନ ସଭା ନ ଥାଏ, ଯେତେବେଳେ ପାର୍ଲିଆମେଣ୍ଟ ନ ଥାଏ, ଅର୍ଡିନାନ୍ସ ବଳରେ କାର୍ଯ୍ୟ କରାଯାଏ । ସେ ଯଦି ଭାବୁଥାନ୍ତି ଯେ କୌଣସି ପ୍ରକାର ଅର୍ଡିନାନ୍ସର ଆବଶ୍ୟକତା ନାହିଁ, ମୁଁ ଦୁଃଖର ସହିତ କହିବି ଯେ ମୁଁ ତାଙ୍କ ସହିତ ଏକମତ ହୋଇପାରୁ ନାହିଁ ।

ପଣ୍ଡିତ ଜବାହରଲାଲ ନେହେରୁଙ୍କ ସମ୍ପର୍କରେ ବିରୋଧୀ ଦଳର ନେତା କହିଛନ୍ତି ଯେ, କହିଛନ୍ତି ଯେ, democracy has been imperilled. ଏ ଦେଶରେ ଗଣତନ୍ତ୍ର ସୃଷ୍ଟି ନଥାନ୍ତା ଯେପରି ବେ-ସାମାଜିକଭାବରେ ଜୟପ୍ରକାଶ ନାରାୟଣଙ୍କ ନେତୃତ୍ୱରେ କାର୍ଯ୍ୟ ଚାଲିଥିଲା । ଏ କଥା ବିରୋଧୀଦଳର ନେତାଙ୍କୁ ଅଛପା ନାହିଁ । ଯେଉଁମାନେ ସମାଲୋଚନା କରୁଛନ୍ତି ସେମାନଙ୍କୁ ଅଛପା ନାହିଁ । ଯେତେବେଳେ ଆମର ପ୍ରଥମେ ଅଧିବେଶନ ବସିଥିଲା ଆମର ତତ୍କାଳୀନ ଗଭର୍ଣ୍ଣର ଶ୍ରୀଯୁକ୍ତ ଜଟ୍ଟି ଅଧିବେଶନ ଆରମ୍ଭ କରିବା ସମୟରେ ବିରୋଧୀ ଦଳର ସଭ୍ୟମାନେ ଏ ଗୃହରେ ଯେପରିଭାବରେ ବ୍ୟବହାର କଲେ ବିରୋଧୀ ଦଳର ନେତା କହିପାରିବେ କି ତା' ଗଣତାନ୍ତ୍ରିକ ପଦ୍ଧତି ଓ ସାମ୍ବିଧାନିକ ପଦ୍ଧତି ଅନୁଯାୟୀ ହୋଇଥିଲା ? ସେପରି ଦୁର୍ବ୍ୟବହାରକୁ ନିନ୍ଦା କରିବାର କଥା । ତାହା

ବିରୋଧୀଦଳ ତରଫରୁ କରାଯାଇ ଥିଲା କି ? ଏଥିରେ ବିରୋଧୀଦଳର ସଭ୍ୟମାନେ norms of democracy ଗଣତାନ୍ତ୍ରିକ ନୀତି ଓ ଗଣତାନ୍ତ୍ରିକ ନିୟମାବଳୀ ଭଂଗ କରି ବିଷୟଟିର ପ୍ରଶ୍ନ ଉଠାଇଛନ୍ତି । ମୁଁ ତାଙ୍କ ସହିତ ସ୍ୱର ମିଳାଇ କହିବି ଯେ Democracy was in danger and democracy was rightly saved by the Prime Minister Shrimati Indira Gandhi at the appropriate time.

ବିଗତ ବିଭାଗକୁ ବାଦଦେବା କଥା ଏରସମାର ମାନ୍ୟବର ସଭ୍ୟ କହିଛନ୍ତି, ଏଲ୍ଲାହାବାଦର ହାଇକୋର୍ଟ ରାୟ ଦେଲେ । ଅପିଲ କରିବାପାଇଁ 20 ଦିନ ସମୟ ଦେଲେ । 20 ଦିନ ପର୍ଯ୍ୟନ୍ତ ଧୈର୍ଯ୍ୟ ଧରି ରହିପାରିଲେ ନାହିଁ । ବାରମ୍ବାର ପ୍ରଶ୍ନ କରା-ଗଲା ଯେ ପ୍ରଧାନମନ୍ତ୍ରୀ ଇସ୍ତଫା ଦେବା ଉଚିତ । 20 ଦିନ ପରେ ସୁପ୍ରିମ କୋର୍ଟରେ ବିଚାର ହୋଇଥାନ୍ତା । ସୁପ୍ରିମ କୋର୍ଟର ରାୟ ବାହାରିଥାନ୍ତା । ତା'ପରେ ସେମାନେ ତାଙ୍କ ଇସ୍ତଫା ଦାବି କରିଥାନ୍ତେ । କିନ୍ତୁ ଏଲ୍ଲାହାବାଦ ହାଇକୋର୍ଟ ରାୟ ବାହାରିବା ସଙ୍ଗେ ସଙ୍ଗେ ସେମାନେ ଆନ୍ଦୋଳନ ଆରମ୍ଭ କରିଦେଲେ । କେଉଁ ଗଣତାନ୍ତ୍ରିକ ପଦ୍ଧତିରେ ସେମାନେ ଏହା କଲେ ? ପ୍ରଧାନ ମନ୍ତ୍ରୀ କହିଥିଲେ ଯେ ମୋତେ ଫାଶିଦଣ୍ଡ ଦିଆଯାଇଛି । ମୁଁ ସୁପ୍ରିମ କୋର୍ଟରେ ଅପିଲ କରୁଛି । ସୁପ୍ରିମ କୋର୍ଟ ଯଦି ସେ ଫାଶିଦଣ୍ଡକୁ କାଏମ ରଖନ୍ତି ମୋତେ ଫାଶି ଦେବାରେ ମୋର ଆପତ୍ତି ନାହିଁ । କିନ୍ତୁ ସେମାନେ ଦାବି କଲେ ତୁରନ୍ତ ଫାଶି ଦିଆଯାଉ । ଏହା କେଉଁ ଆଇନର ପଦ୍ଧତି ମୁଁ ଜାଣିବାକୁ ଚାହେଁ । ସେମାନେ ଯାହା କହୁଛନ୍ତି ତା କହିବେ ସେଇଟା ଆଇନ ସମ୍ମତ, ସେଇଟା ସଂବିଧାନ ସମ୍ମତ ଓ ଗଣତାନ୍ତ୍ରିକ ଠିକ୍ ଏହିପରିଭାବରେ ସ୍ଲୋଗାନ ଦେଉଥିଲେ ମୁର୍ଦ୍ଦାବାଦ ଓ ଜିନ୍ଦାବାଦ । ଠିକ 4/5 ବର୍ଷ ତଳେ ଏ ଦେଶରେ ସ୍ଲୋଗାନ ଦିଆଯାଉଥିଲା ଯେ ଗଣତନ୍ତ୍ର ସଙ୍କଟାପନ୍ନ । ଜନସାଧାରଣଙ୍କର ଅଭାବ ଅସୁବିଧାର ସୁଯୋଗ ନେଇ ଗୋଟିଏ ବାତାବରଣ ସୃଷ୍ଟି କରି ଯେ କୌଣସି ଉପାୟରେ କ୍ଷମତା ହାସଲ କରିବା ତାଙ୍କର ଲକ୍ଷ୍ୟ ଥିଲା । ତା'ପରେ ନିଜର ରୁଚି ଅନୁସାରେ ଶାସନ ଚଳାଇଥାନ୍ତେ । ନିର୍ବାଚନରେ ତ ଜୟଯୁକ୍ତ ହୋଇପାରିଲେ ନାହିଁ । ତେଣୁ ଏ ପନ୍ଥା ଧରିଥିଲେ । କେଉଁ ବେ-ସାମାଜିକ ପନ୍ଥା ଗ୍ରହଣ କରିବାର କଥା ନୁହେଁ, ସେ ପନ୍ଥା ଗ୍ରହଣ କରାଯାଇଥିଲା । ଏଠାରେ ଆମେ ଜାଣିଛୁ କିପରି ଶ୍ରମିକମାନଙ୍କ ଧର୍ମଘଟ କରିବାପାଇଁ ଉତ୍ସାହ ଦିଆ-ଯାଇଥିଲା—ମଦତ୍ ଦିଆଯାଇଥିଲା । ଏପରି ଯେଉଁମାନେ କରୁଥିଲେ ସେମାନେ ଦେଶର ସ୍ୱାର୍ଥପାଇଁ ଚିନ୍ତା କରୁଥିଲେ କି ?

ମାନ୍ୟବର ସଭ୍ୟମାନେ କହୁଛନ୍ତି ଯେ ଦଳପାଇଁ ବା ବ୍ୟକ୍ତିପାଇଁ ଟଙ୍କା ନାହିଁ । ଏମାନେ ଟଙ୍କା ନେବାର ଏତେଦୂର ଅଭ୍ୟସ୍ତ ହୋଇ ଯାଇଛନ୍ତି ଯେ ସେ କଥା ସେ ଭୁଲିପାରୁ ନାହାନ୍ତି । ତେଣୁ ସେମାନେ କଥା କଥାକେ ଦୁର୍ନୀତି କଥା କହୁଛନ୍ତି । ମିଥ୍ୟାକୁ ବାରମ୍ବାର ଆବୃତ୍ତି କଲେ ଯେପରି ସତ୍ୟ ହୋଇଯାଏ, ସେହିପରି ଅସତ୍ୟକୁ ବାରମ୍ବାର ଆବୃତ୍ତି କରୁଛନ୍ତି । ସେପରି ପ୍ରଚାର କରି ଗୋଟିଏ ବାତାବରଣ ସୃଷ୍ଟି କରିବାକୁ ଯାହୁଛନ୍ତି । ଶ୍ରୀଯୁକ୍ତ ହୃଷାନନ୍ଦ ମଲ୍ଲିକଙ୍କର ଯଦି ହୃଦସ୍ଥାନ୍ତା, ସେ ଅଣିଆ ଅପିଆ ବନ୍ୟା ସମୟରେ ଲୋକଙ୍କ ପାଖରେ ରହି କାର୍ଯ୍ୟ କରିଥାନ୍ତେ । ଖାଲି ପାଟିତୁଣ୍ଡ କଲେ ଲୋକଙ୍କର ଦୁଃଖ ଦୂର ହୁଏ ନାହିଁ । ଗଠନମୂଳକ ପ୍ରସ୍ତାବ ଦେବା ଦରକାର । ତା' ମୁଁ ଏମାନଙ୍କଠାରେ ଦେଖିଲି ନାହିଁ ।

ତା'ପରେ 20 ଦଫା, 12 ଦଫା କଥା କୁହାଯାଉଛି । ଏଇ 20 ଦଫା ଓ 12 ଦଫା has become an anathema to them. ତାଙ୍କୁ ଭୂତ ଗୋଡ଼ାଇଲାପରି ଏ 20 ଦଫା ଓ 12 ଦଫା ହୋଇଛି । ତାଙ୍କ ପ୍ରତି ଏସବୁ ଦଫା ଗୋଟିଏ ଅସୁସ୍ଥାଭାବ ସୃଷ୍ଟି କରିଛି । ଏ 20 ଦଫା, 12 ଦଫା କାର୍ଯ୍ୟକ୍ରମରେ ଏ ରାଜ୍ୟରେ କ'ଣ ହୋଇଛି ସେମାନେ ଯଦି ଜାଣିବାକୁ ଚାହାନ୍ତି ବୁଝନ୍ତୁ ନିଶାନିବାରଣ ସମ୍ପର୍କରେ 12 ଦଫା କାର୍ଯ୍ୟକ୍ରମ କରାଯାଇଛି । ଅବଶ୍ୟ ବିରୋଧୀଦଳର ମାନ୍ୟବର ନେତା କହିଲେ ଯେ ତଳ ସ୍ତରରେ ଯେଉଁମାନେ ମଦ ଖାଆନ୍ତି ତାଙ୍କୁ ବନ୍ଦ କରିବାପାଇଁ କିଛି ବ୍ୟବସ୍ଥା କରାଯାଇ ନାହିଁ । ଅବଶ୍ୟ 12 ଦଫା କାର୍ଯ୍ୟକ୍ରମରେ ଓ଼ରେକ୍‌ସନ ଆମ ପାଖକୁ ଆସିନାହିଁ । ତଥାପି ଆମେ 40ଟି ଦୋକାନ ବନ୍ଦ କରିଛୁ । ପ୍ରତିବର୍ଷ ଏଇପରି ବନ୍ଦ କରାଯିବ । ଯେଉଁଠି ଆଦିବାସୀମାନଙ୍କର concentration ଅଛି ସେଠି ମଦ ଦୋକାନ ବନ୍ଦ କରିବା କାର୍ଯ୍ୟ ଚାଲିଛି । ଏବର୍ଷ ଆମେ 50ଟା ଦୋକାନ ବନ୍ଦ କରିବାକୁ ଯାଉଛୁ । ଯଦି ଆମେ କ୍ଲବରେ ମଦ ପିଇବା ବନ୍ଦ କରୁ ତା'ମାନେ ଲୁଚିକି ସେମାନେ ଘରକୁ ନେଇ ପିଇବେ । ସେମାନେ ବୁଝିବା ଉଚିତ୍ ଯେ କ୍ଲବରେ ମଦ ଖାଇବାଟାକୁ ସମାଜରେ ଆଉ ପସନ୍ଦ କରାଯାଉନାହିଁ । ଭାରତୀୟ ମନୋଭାବ ଏହାର ବିରୋଧ କରେ । ସେଥିପାଇଁ ତାକୁ କମତ ଛାଡ଼ିବା ଯେ କଥା ଚିନ୍ତା ନ କରି ଘରକୁ ମଦ ବୋତଲ ନେଇ ପିଇବେ ଏବଂ କ୍ଲବରେ ନ ପିଇ ଘରେ ପିଇବେ ଏବଂ ପିଲାମାନେ ମଦ ଖାଇବା ଶିଖିବେ, is this the only alternative, ମାନ୍ୟବର ସଭ୍ୟ ଧୈର୍ଯ୍ୟ ଧରିବା ଦରକାର । ଆସ୍ତେ ଆସ୍ତେ ବନ୍ଦ ହେବ । ଆପଣମାନେ କହିବେ ଆମ ଅଞ୍ଚଳରେ ହେଲା ନାହିଁ । ଉଠା ଜଳସେଚନ ପାଇଁ ବ୍ୟବସ୍ଥା ହେଲା ନାହିଁ । ଆମେ ଦେଖିଛୁ ପର୍ଯ୍ୟାପ୍ତରୂପେ କେତେ ଟଙ୍କା ଆମେ ଷଷ୍ଠ ସମ୍ଭାଳ ପାଇବୁ ଏବଂ ସେହି ଅନୁସାରେ ବନ୍ଦ କରିବାକୁ ଯାଉଛୁ ଏବଂ ନିଶ୍ଚିତଭାବରେ ଏହା ବନ୍ଦ ହେବ ଏଥିରେ ସନ୍ଦେହ ନାହିଁ ।

ବନ୍ଧୁ ମାନ୍ୟବର ସଭ୍ୟ କହୁଛନ୍ତି ଆମେ ଏକଛତ୍ର ବାଦ୍ କରିବାକୁ ଚାହୁଁ । ପ୍ରଧାନ ମନ୍ତ୍ରୀ ଏ ଦେଶରେ ଏକଛତ୍ରବାଦ୍ ସ୍ଥାପନ କରିବାକୁ ଯାଉଛନ୍ତି, ଏହା କହିଛି କଥା । ଯେଉଁମାନେ ଏକଛତ୍ରବାଦ୍ କରିବାକୁ ଯାଉଥିଲେ ସେମାନଙ୍କ ନିଜ କାର୍ଯ୍ୟରୁ ନିବୃତ୍ତ କରିବା ଫଳରେ ସେମାନେ ଅନ୍ୟକୁ ସେହି ଦୋଷରେ ଦୋଷୀ ସାବ୍ୟସ୍ତ କରିବା ସ୍ୱାଭାବିକ ହୁଏ । ସେଥିପାଇଁ ପ୍ରଧାନ ମନ୍ତ୍ରୀ ଏ ଦେଶରେ ଏକଛତ୍ରବାଦ୍ କରିବାକୁ ଯାଉଛନ୍ତି, ଏକଥା ବାରମ୍ବାର କୁହାଯାଉଛି । ଏହା ହେଉଛି Waverian theory ଅର୍ଥାତ ଯେଉଁଟା ମିଛ କଥା ତାକୁ କହି ଚାଲ, ସତ ହେବ । ତାଙ୍କର ଯେଉଁ ପଞ୍ଚ ଶିଷ୍ୟମାନେ ଏ ଗୃହରେ ରହିଛନ୍ତି ସେମାନେ ଅସତ୍ୟକୁ ବାରମ୍ବାର ଘୋଷଣାକରି ସତ୍ୟରେ ପ୍ରତିପାଦିତ କରିବାପାଇଁ ଚାହୁଁଛନ୍ତି ।

ଏକଥା ମଧ୍ୟ ଅତି ସ୍ପଷ୍ଟଭାବରେ Constitutionର guide Principleରେ ଆମର ଲେଖା ଅଛି ଯେ ଏହି ଲକ୍ଷ୍ୟ ସାଧିତ ହେବ । ସେଥିରେ ଯଦି କିଛି ବାଧା ଅଛି ବା ବର୍ତ୍ତମାନ ସମ୍ବିଧାନ କିଛି ଅସୁବିଧା ହେଉଛି ତା'କୁ ପରିବର୍ତ୍ତନ କରିବା ଏ କ'ଣ uncemocraitc ? ମୁଁ ତ ବୁଝି ପାରୁନାହିଁ ଆମର ମତ ଯାହା ଅଛି ଯାହାକୁ ଆମେ କାର୍ଯ୍ୟକାରୀ କରିବାକୁ ଯାଉଛୁ ଏବଂ ଯଦ୍ୱାରା ଦେଶରେ ଏକ ଗଣତାନ୍ତ୍ରିକ ସମାଜବାଦୀ ସମାଜ ସ୍ଥାପିତ ହେବ ସେ ପଥରେ କୌଣସି ବାଧା ରହିଲେ ତାକୁ ପରିବର୍ତ୍ତନ କରି ସେ ବାଧା ଦୂର କରିବା କୌଣସି ମତେ ଅଗଣତାନ୍ତ୍ରିକ ନୁହେଁ ସେଥିପାଇଁ ସମ୍ବିଧାନ ପରିବର୍ତ୍ତନ କରିବା କଥା ମଧ୍ୟ କୁହାଯାଉଛି । ମାନ୍ୟବର ବିରୋଧୀଦଳର ନେତା କହିଲେ ଯେ ଦେଶକୁ ଏକ ଜେଲ୍‌ଖାନାରେ ପରିଣତ କରାଯାଇଛି । ସମସ୍ତେ ଭୀତତ୍ରସ୍ତ ହୋଇ ରହିଛନ୍ତି । ଏକଥା ଆଗରୁ ଆମର ପ୍ରଧାନ ମନ୍ତ୍ରୀ ମଧ୍ୟ କହିଛନ୍ତି ଯେଉଁମାନେ ଆଇନ୍ ମାନି ଏ ଦେଶରେ ଚଳିବେ ସେମାନଙ୍କର କୌଣସି ପ୍ରକାର ଭୟ କରିବାର କିଛି ନାହିଁ । ଆଜକୁ 4/5 ମାସ ହେଲା ଯେଉଁମାନେ ଆଇନ୍ ସଙ୍ଗତ କାର୍ଯ୍ୟକରି ଚାଲିଛନ୍ତି ସେମାନଙ୍କର କୌଣସି ଭୟର କଥା ନାହିଁ । ଆମେ ବହୁ ସ୍ଥାନ ବୁଲୁଛୁଁ, ଆପଣ ମଧ୍ୟ ଜାଣିଥିବେ, କୌଣସି ସ୍ଥାନରେ ଭୟଭୀତ ହେବାର କିଛି ନାହିଁ । ଯେଉଁମାନେ ନିଜ ଦେଶରେ ଦୋଷୀ ହୋଇଥିଲେ ବା ଦୋଷୀ ସାବ୍ୟସ୍ତ ହୋଇଥିଲେ ସେପରି ଲୋକମାନଙ୍କର ଭୟ କରିବାର କାରଣ ଅଛି । ଆଲୋକ ଚୋରର ପ୍ରଧାନ ଶତ୍ରୁ । ସବୁତ ଆଲୋକିତ ହେଲେ ଚୌର୍ଯ୍ୟବୃତ୍ତି କରିବା ଅସମ୍ଭବ ହୁଏ । କିନ୍ତୁ ଚୋର ସବୁବେଳେ ଚାହୁଁଥାଏ ସବୁଆଡ଼େ ସବୁବେଳେ ଅନ୍ଧକାର ରହୁ, ରହିଥିଲେ ତାହାହେଲେ ସେ ତ' କାର୍ଯ୍ୟ କରିବାର ସୁବିଧା ପାଇବ । ଏଥର ଯେଉଁମାନେ ଡରୁଥିବେ ମୁଁ ତ କହିବି ଯେପରି ହେବା ଭଲ ସେମାନଙ୍କ ମତ ପରିବର୍ତ୍ତନ କରନ୍ତୁ । 26 ତାରିଖ ଜୁନ୍ ପରେ ଏହି 4/5 ମାସ ଭିତରେ

ସକୁଟି ସେହିଭଳି ଆତଙ୍କର ସ୍ରଷ୍ଟା ଦେଖୁଛନ୍ତି । ଲୋକମାନେ ଏପରି ଉଚ୍ଛୃଙ୍ଖଳ ହୋଇ ରହି ଅଛନ୍ତି ଯେ ପ୍ରତିଦିନର କାର୍ଯ୍ୟ କରିବାରେ ବହୁତ ଅସୁବିଧା ସୃଷ୍ଟି ହେଉଛି । ଏସବୁ ଯେଉଁ ମତ ପ୍ରକାଶ କରାଯାଉଛି ମୁଁ ତ କହିବି ତାକୁ ପୂର୍ଣ୍ଣ ଅସ୍ୱୀକାର କରନ୍ତୁ । କାରଣ ତାହା ସମ୍ପୂର୍ଣ୍ଣ ଭୁଲ୍ । ସାମାଜିକ ଜୀବନରେ ଅର୍ଥନୈତିକ କ୍ଷେତ୍ରରେ ବା ବ୍ୟବସାୟିକ କ୍ଷେତ୍ରରେ କୌଣସି ସ୍ଥାନରେ ଏପରି ଅସୁବିଧା ସୃଷ୍ଟି ହୋଇନାହିଁ । ଯେଉଁମାନେ ସ୍ମଗଲର, ବ୍ଲାକମାର୍କେଟିୟର୍ ସେମାନଙ୍କ ପ୍ରତି କଠୋର ଦଣ୍ଡବିଧାନ କରାଯାଉଛି । ଯଦିଓ କେତେକ ମାନ୍ୟବର ସଭ୍ୟ କହୁଛନ୍ତି ଏପରି ବହୁଲୋକ ବନ୍ଦୀ ଯାଉଛନ୍ତି ଯେଉଁମାନଙ୍କ ଘର ଖାନତଲାସ ହୋଇନାହିଁ ତାହା ମଧ୍ୟ ସତ୍ୟ ହୋଇପାରେ । ହୁଏତ ଏପରି ବହୁଲୋକ ବନ୍ଦୀ ଯାଇଛନ୍ତି । କିନ୍ତୁ ଯେଉଁମାନଙ୍କ ଘର ଖାନତଲାସ କରାଯାଇଛି ସେମାନଙ୍କ ଘରୁ ଯାହା ବାହାରିଛି ତାକୁ ଧରି ସେମାନଙ୍କୁ ଜେଲ୍ ଭିତରକୁ ପଠାଯାଇଛି ଏ କାର୍ଯ୍ୟ ଠିକ୍ ଏବଂ ସେମାନଙ୍କୁ କୁହାଯାଉଛି ନିଜ ସମ୍ପତ୍ତିର ତାଲିକା ଦେବାପାଇଁ ଏବଂ ନିର୍ଦ୍ଦିଷ୍ଟ ସମୟ ଭିତରେ ସେମାନଙ୍କୁ ତାଲିକା ଦେବାପାଇଁ କୁହାଯାଉଛି । ସେମାନେ ନିଜ ନିଜ ସମ୍ପତ୍ତିର ତାଲିକା ଯଦି ନିର୍ଦ୍ଦିଷ୍ଟ ସମୟ ଭିତରେ ନ ଦିଅନ୍ତି, ତାହାହେଲେ ସେମାନଙ୍କ ପ୍ରତି ଯାହା ଦଣ୍ଡ ବିଧାନ କରିବା କଥା ତାହା ନିଶ୍ଚିତ ଭାବରେ ହେବ ।

ଯେଉଁ ଲୋକମାନେ ବ୍ଲାକ୍ ମାର୍କେଟିୟର, ସ୍ମଗଲର୍ ଓ ଇଣ୍ଟର ନେସନାଲ୍ ସାବୋଟିୟର୍ସ ସେହିଭଳି ଲୋକମାନଙ୍କୁ ନୋଟିସ୍ ଦେବା କଥା ଆଉ ମାନ୍ୟବର ସଭ୍ୟ ଯାହା କହୁଛନ୍ତି ବିରୁଦ୍ଧଦଳର ଏମ୍. ଏଲ୍. ଏ. ମାନଙ୍କୁ ନୋଟିସ ଦିଆଯାଇଛି, ସେମାନେ ମଧ୍ୟ ସମ୍ପତ୍ତି ତାଲିକା ଦେବେ । ସେହିଭଳି କେତେଜଣଙ୍କୁ ଦିଆଯାଇଛି ଏବଂ ମାନ୍ୟବର ସଭ୍ୟଙ୍କୁ ଦିଆଯାଇଛି କି ନା ମୁଁ ଜାଣେନା ।

ମୁଁ କହିବି ଯେହେତୁ ସବୁବେଳେ କୁହାଯାଉଛି ଏପଟର ସଭ୍ୟମାନଙ୍କୁ ସୁବିଧା ଦିଆଯାଉଛି ନିଶ୍ଚିତଭାବରେ ବିରୁଦ୍ଧ ଦଳର ଏମ୍. ଏଲ୍. ଏ. ମାନଙ୍କୁ ଏଭଳି ନୋଟିସ୍ ଦିଆଯାଇଛି । ଏକଛତ୍ରବାଦ ଶାସନ ଚାଲିଛି । ଆଇନର ଶାସନ ନାହିଁ ଏବଂ ସେଇଥିପାଇଁ ସେମାନେ ଆମକୁ ଗାଳି ଦେଉଛନ୍ତି । କିନ୍ତୁ ବର୍ତ୍ତମାନ ମୁଁ ଆଶ୍ଚର୍ଯ୍ୟ ହେଲି ସେପରି କୌଣସି ନୋଟିସ୍ ସେମାନଙ୍କୁ ଦିଆଯାଇନାହିଁ । ପଞ୍ଚାୟତ ନିର୍ବାଚନ କଥା କୁହାଗଲା ସେଥିରେ ସେମାନେ ନିଜ ପକ୍ଷରୁ ବହୁତ ଅପିଲ୍ କରିଛନ୍ତି । ଆଉ ନେତାମାନେ ବର୍ତ୍ତମାନ ଜେଲରେ ଅଛନ୍ତି । ଏହା ଭିତରେ ନିର୍ବାଚନ ହେଲା । ନିର୍ବାଚନ ହେଉ କିନ୍ତୁ ସେମାନେ ଆସନ୍ତୁ ଦେଖାଇବ । ଆମେମାନେ ଦେଖିବୁ । କ'ଣ ଦେଖିବ ଏହାର ଅର୍ଥ ବି ମୁଁ ବୁଝିପାରୁନାହିଁ । ନିର୍ବାଚନ ହେଲା, ଯେପରି ଭାବରେ ନିର୍ବାଚନ ହେବ ସେମାନେ କ୍ଷମତାକୁ ଆସୁଥିଲେ ଏହି କଥାଟି ମନରୁ ସେମାନେ ଭୁଲି ଯାଇ ନାହାନ୍ତି । ପଞ୍ଚାୟତ

ନିର୍ବାଚନ, ଗ୍ରାମପଞ୍ଚାୟତ ନିର୍ବାଚନ ଆଉ ଯେଉଁ ନିର୍ବାଚନ ହେଲା ମଧ୍ୟ ଗୋଟିଏ ଦୃଷ୍ଟାନ୍ତ ସେମାନେ ବସି ଦେଖୁଛନ୍ତି ଯେ ଗ୍ରାମ୍ୟ ଟଙ୍କା ପଇସା ଦେଇ ଦେଲେ ନିର୍ବାଚନରେ ଜିତିଯିବେ । କିନ୍ତୁ ଏଥର ତାହା ଯେତେବେଳେ ବିଫଳ ହେଲା ବର୍ତ୍ତମାନ କୁହାଯାଉଛି ଓ୍ୱାର୍ଡମେମ୍ବର ଓ ଅନ୍ୟମାନଙ୍କୁ ଆମେ କହିଲୁ ଆମ ପ୍ରାର୍ଥୀମାନଙ୍କୁ ଭୋଟ ନ ଦେଲେ ଆମେ ନିଶାର ଅଟକ କରିଦେବୁ । ମୁଁ ନିର୍ଦ୍ଦିଷ୍ଟଭାବରେ ଜାଣିବାକୁ ଚାହେଁ କେଉଁ ସ୍ଥାନରେ କେଉଁ ଓ୍ୱାର୍ଡ ମେମ୍ବର ବା ସରପଞ୍ଚମାନଙ୍କୁ ଏକଥା କୁହାଯାଉଛି ତା’ର ପ୍ରମାଣ ଦେବା ଉଚିତ । ନିର୍ଦ୍ଦିଷ୍ଟ ଲୋକଙ୍କୁ ଭୋଟ ନ ଦେଲେ ଯେ ଗ୍ରେଫ୍ତାର କରିବେ । ତାହା ନ କରି ଏପରି ବୃଥା ଆସ୍ଫାଳନ ବାସ୍ତବ ଘଟଣା ସହିତ କୌଣସି ସମ୍ପର୍କ ନାହିଁ ।

ମାନ୍ୟବର ଏରସମ ର ସଦସ୍ୟ କେତେକ କଥା ଉଠାଇଛନ୍ତି ଯେ ଜନସାଧାରଣଙ୍କୁ ଏ କାର୍ଯ୍ୟରେ ସଂଯୁକ୍ତ କରାଯାଉନାହିଁ । ଆମେ ନିର୍ଦ୍ଦିଷ୍ଟ ଭାବରେ ଦେଖୁଛୁ ଯେ 20 ଦଫା ଅର୍ଥ ନୈତିକ କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବାରେ ବହୁବ୍ୟକ୍ତି ଅଧିକ ସଂଯୁକ୍ତ ହେବେ ଏବଂ ଅଧିକରୁ ଅଧିକ ଲୋକଙ୍କର ସହଯୋଗ କମିଟି ମିଳିବ କିନ୍ତୁ ସେ ତାହା କହୁଛନ୍ତି ଯେ କମିଟି ହୋଇପାରୁନାହିଁ । ତାହା ଠିକ୍ କଥା ଯେ ସେପରିଭାବରେ କମିଟି ହୋଇପାରି ନାହିଁ କିନ୍ତୁ ତା’ ମାନେ ନୁହେଁ ସାଧାରଣଲୋକଙ୍କୁ ତା ସହିତ ସଂଯୁକ୍ତ କରାଇ ସେମାନଙ୍କୁ ଅଧିକ କର୍ମଶୀଳ ଢଙ୍ଗରେ ଉଦ୍ୟମ କରାଯାଉଛି । ସେ ଯେଉଁ କମିଟି ହେବା ସମ୍ପର୍କରେ କହୁଥିଲେ ସେ ବିଷୟରେ ସରକାର ଚିନ୍ତା କରୁଛନ୍ତି ଏବଂ ଯଥା ସମୟରେ ସରକାର ତାହା ଘୋଷଣା କରିବେ ।

ଯୋଗାଣ ସମ୍ପର୍କରେ ମଧ୍ୟ କୁହାଯାଉଛି । ବର୍ତ୍ତମାନ ଯେଉଁ ନୂଆ ଫସଲ ହେଲା ସେ ସେ ମତ ଅନୁସାରେ ସରକାର ଅଧିକ Procure କରି ନାହାନ୍ତି । ମାନ୍ୟବର ସଭ୍ୟମାନେ ଜାଣିବା ଉଚିତ ଆମର late crop harvesting ହେଉଥିବାରୁ ଯେତିକି ପରିମାଣରେ ଆମେ Procure କରିବାକଥା, ତାହା କରିପାରୁନାହୁଁ । ତଥାପି ବର୍ତ୍ତମାନ ସୁଦ୍ଧା ପ୍ରାୟ 4 ହଜାର ଟନ୍ ଆମର procurement ହୋଇଛି । କଲେକ୍ଟର-ମାନଙ୍କୁ ବହୁ ପରିମାଣର ଟଙ୍କା ଦିଆହୋଇଛି । ଯେଉଁଠି distress sale ହେବ ଯେଉଁ ଚାଷୀମାନେ ନିର୍ଦ୍ଧାରିତ ଦରଠାରୁ କମ୍ ଦରରେ ବିକିବେ ସେଠାରେ ସରକାର ଖୋଦ୍ କିଣିବେ ବା co-operative କିଣିବେ କିମ୍ବା F. C. I. କିଣିବ ଏବଂ ଏ ବିଷୟରେ ସେମାନଙ୍କୁ ଉପର କରାଇ ଦିଆଯାଇଛି ଏବଂ କୌଣସିଠାରେ ଚାଷୀ ଯେପରି ଦୁଃସ୍ଥ ପରିସ୍ଥିତି ଯୋଗୁ ନିର୍ଦ୍ଧାରିତ ଦରଠାରୁ କମ୍ ଦରରେ ନ ବିକନ୍ତି ସେଥିପ୍ରତି ଦୃଷ୍ଟି ଦିଆଯାଇଛି । ଆଲୋଚନା ପ୍ରସଙ୍ଗରେ ବିରୋଧୀ ଦଳର ନେତା ବକ୍ତୃତାରେ ପଲିଟିକାଲ ମର୍ଡର ହୋଇଛି ବୋଲି କହିଛନ୍ତି । ପ୍ରତ୍ୟେକ ଘଟଣାକୁ ପଲିଟିକାଲ୍ ମର୍ଡର ବୋଲି କହିବା ଗୋଟିଏ

ସ୍ୱଜନଙ୍କ କଥା ହେଲାଣି । ମୁଁ ଏତିକି କହିବାକୁ ଚାହେଁ, The investigation is in progress under the direct supervision of the S.P. The investigation of Bolangir S.P. so far reveals that the murder was committed by his own nephew. It is still under investigation. It is too early to do something about it. ହେଲ୍ଥ ଡିପାର୍ଟମେଣ୍ଟ ପ୍ରସଙ୍ଗରେ ସେ କହିଲେ ଯେ ପ୍ରତ୍ୟେକ ଗ୍ରାମପଞ୍ଚାୟତରେ 3ଜଣ ଡାକ୍ତର ନିଯୁକ୍ତ କଲେ ଆମର ଏଡ଼ିସନାଲ ଡାକ୍ତର ଦରକାର ପଡ଼ିବେ 9,.50 ଜଣ । ଏହି ଡାକ୍ତରମାନଙ୍କର ଦରମା ବାବଦରେ ଖର୍ଚ୍ଚ ହେବ ପ୍ରାୟ 14 କୋଟି. ମାନ୍ୟବର ସଭ୍ୟ ଜାଣନ୍ତି ବର୍ତ୍ତମାନ ରାଜ୍ୟର ଆର୍ଥିକ ପରିସ୍ଥିତିରେ ବର୍ତ୍ତମାନ ବାର୍ଷିକ 14 କୋଟି ଟଙ୍କା ଡାକ୍ତରମାନଙ୍କର ଦରମାରେ ଖର୍ଚ୍ଚ କରିବା ସମ୍ଭବ ନୁହେଁ । ତା'ପରେ ସେଲ୍ଫ ଏମ୍ପ୍ଲଏମେଣ୍ଟ କୋଶ୍ଚିନ୍ ଉଠାଇଛନ୍ତି । ସେପ୍ରସଙ୍ଗରେ ମୁଁ କହିବି ଯଦି କୌଣସି ଡାକ୍ତର ରୁରାଲ୍ ଏରିଆରେ କ୍ଲିନିକ୍ କରିବାପାଇଁ କୌଣସି Nationalised Co-operative Bankରୁ ପ୍ରାଥମିକ ଲୋନ୍ ଆଣିବେ, ଏ କଥା ସରକାରଙ୍କୁ ଜଣାଇ-ଦେଲେ ସିଡ୍ ମନି ଶତକଡ଼ା 10 ଦିଆଯିବ । ତା,ପରେ C. M.O. ସରକାରଙ୍କୁ ଏ କଥା ଜଣାଇଲେ ସେ ଷ୍ଟାଇପେଣ୍ଡ ପାଇବେ । This is the Scheme. ଏ ସ୍କିମକୁ କମ୍ୟୁନିକେଟ୍ କରିବାପରେ, ରେଡ଼ିଓ ମାଧ୍ୟମରେ ପତ୍ରର ଜଣାଯାଇଥିଲେ ମଧ୍ୟ 1973-74 ରେ ଯଦିଓ ଲକ୍ଷ୍ୟାର୍ଥୀ ହୋଇଥିଲେ 300 କାଣ୍ଡିଡେଟ୍‌କୁ ଟଙ୍କା ଦେବାପାଇଁ ସେଥିରୁ 78 ଜଣ ତାକୁ avail କଲେ; ସେଥିରେ 1.52 ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଛି । 1974-75 ରେ ଟାର୍ଗେଟ୍ ଥିଲା 200 କିନ୍ତୁ ମୋଟ 57 ଜଣ ସେ ସୁବିଧା avail କଲେ ଓ 78 ହଜାର ଟଙ୍କା ଖର୍ଚ୍ଚ ହୋଇଥିଲା । 1975-76ରେ ଟାରଗେଟ 150 ଜଣ କାଣ୍ଡିଡେଟ୍‌ଙ୍କପାଇଁ ଅଛି, ସେଥିପାଇଁ ସାଂକ୍ସନ ହୋଇଛି 1.22 ଲକ୍ଷ । କିନ୍ତୁ କେତେଜଣ ଏ ସୁବିଧା ନେଇଛନ୍ତି ତା,ର କୌଣସି ହିସାବ ବର୍ତ୍ତମାନ ମୋ ପାଖରେ ନାହିଁ । ଶେଷରେ ମୁଁ ଏତିକି କହିବି ସେଲ୍ଫ ଏମ୍ପ୍ଲଏମେଣ୍ଟରେ ଓପେନ ଲୋକଙ୍କୁ ଅଧିକ ଉତ୍ସାହ ଦିଆଯିବା କଥା, ଦିଆଯିବ । ଆଉ ଗୋଟିଏ କଥା ରାମ ପ୍ରସାଦ ବାବୁ ଉଲ୍ଲେଖ କରିଛନ୍ତି ଯେ savings locate ହୋଇନାହିଁ । ଆମର ଯେଉଁସବୁ ଦେଖାଯାଇଛି ଟ୍ରାନ୍ସଫର ଓ ସରେଣ୍ଡର ଗୋଟିଏ ହେଡ଼ରୁ ଅନ୍ୟ ଗୋଟିଏ ହେଡ଼କୁ ସେଭିଙ୍ଗ୍ସ୍ ନ ହେଲେ କିପରି ହେବ । ଗୋଟିଏ ହେଡ୍ ଭିତରୁ ଅନ୍ୟ ହେଡ଼କୁ ଯିବାଟା କେବଳ ରିଆପ୍ରୋପ୍ରିଏସନରେ ଯିବ । Savings, surrender ଆମର demand for taking supple-mentary for other demands non-plan ରେ 793 ଲକ୍ଷ ଏବଂ ରାଜ୍ୟ ଯୋଜନା ବାବଦ 145 ଲକ୍ଷ । ଏପରି ସରେଣ୍ଡର ହୋଇଛି from one demand

ସପ୍ଲିମେଣ୍ଟାରୀ ନିଆଯାଇଛି total 938 ଲକ୍ଷ । Savings within the demand utilised and supplementary taken for net amounts non-plan ହେଉଛି 96 ଲକ୍ଷ । Special non-plan 76 ଲକ୍ଷ, state plan 103 ଲକ୍ଷ, central plan 18 ଲକ୍ଷ । ଏପରି 196 ଲକ୍ଷରେ ଆଉ ଅତିରିକ୍ତ appropriation Bill ଆଗତ କରାଯାଇଛି । ଇରିଗେସନ୍ ଉପରେ କେତେକ ସମାଲୋଚନା କରିଛନ୍ତି । କିନ୍ତୁ ଇରିଗେସନ୍ ସମ୍ପର୍କରେ ଗତକାଲି ବିଭାଗୀୟ ମନ୍ତ୍ରୀ ସବିଶେଷ ବିବରଣୀ ଦେଇଥିଲେ । ତା'ଠାରୁ ମୋର ଅଧିକା କିଛି କହିବାର ନାହିଁ । ଜେଲ୍ ଓ ଅନ୍ୟ ପ୍ରସଙ୍ଗରେ ଯାହା କହିଛନ୍ତି ଜେଲ extension ଆଗରୁ ହେବାର ଥିଲା । ଜେଲ୍ ମାନୁଏଲ୍ ଅନୁସାରେ ଜଣେ ଜଣେ କଏଦୀଙ୍କୁ ଖାଦ୍ୟ, ଲୁଗାପଟା ବେଡିଙ୍ଗ ଇତ୍ୟାଦି ଦିଆଯାଇଛି । ଏମରଜେନ୍ସି ସମୟରେ political businessର ସଂଖ୍ୟା ବଢ଼ିଛି । ସେମାନଙ୍କ ପାଇଁ ବ୍ୟବସ୍ଥା କରିବାକୁ ହେଉଛି । ଏବେ କଏଦୀ ସଂଖ୍ୟା ବଢ଼ିଛି । ସେମାନଙ୍କ ଖାଦ୍ୟ ପେୟ ନିୟମ ମୁତାବକ ଦିଆଯିବାରେ ଅଧିକା ଖର୍ଚ୍ଚ ହେଉଛି । Home Guard ସମ୍ପର୍କରେ ଏମାନଙ୍କୁ ପୋଷାକ ଇତ୍ୟାଦି ଦେବାରେ ମଧ୍ୟ ଖର୍ଚ୍ଚ ଏବଂ Home Guard ସଂଖ୍ୟାକୁ ସଙ୍କୋଚ କରିବା ଉଦ୍ଦେଶ୍ୟରେ ଯାହା ଖର୍ଚ୍ଚ କରାଯାଇଛି, ଏଥିରେ କାହାର ଆପତ୍ତି ନାହିଁ । ତା, ପରେ Implementation of the provisions of Minimum Wages Act ସମ୍ପର୍କରେ ସମାଲୋଚନା ହେଉଛି । ମାନ୍ୟବର ଏରସମାର ସଭ୍ୟ କହିଲେ ଆମର ଶ୍ରମିକମାନଙ୍କର minimum wages ପାଇବାରେ କିଛି ବ୍ୟବସ୍ଥା କରୁନାହିଁ । ବହୁ ସ୍ଥାନରେ ଶ୍ରମିକମାନଙ୍କର minimum Wages wages Board ବ୍ୟବସ୍ଥା ଅନୁଯାୟୀ କାର୍ଯ୍ୟକାରୀ କରାହୋଇଛି । ଆମର minimnim wages 3 ଟଙ୍କା ଥିଲା ତାକୁ 4 ଟଙ୍କା କରାଯାଇଛି । ମାନ୍ୟବର ସଭ୍ୟ ଯେଉଁ ଇଣ୍ଡଷ୍ଟ୍ରି କଥା କହୁଛନ୍ତି ସେ ଖବର ବର୍ତ୍ତମାନ ମୋ ପାଖରେ ନାହିଁ ।

ଆଉ ଗୋଟିଏ ପ୍ରଶ୍ନ ଉଠି ଥିଲା workers participation in industry. ଏ ସମ୍ପର୍କରେ ବହୁତ ପଦକ୍ଷେପ ନିଆଯାଇଛି । ଏଥିରେ ଯେଉଁ ଅସୁବିଧା ସୃଷ୍ଟି ହେଉଛି ତାକୁ ଅତିକ୍ରମ କରିବାକୁ ହେବ । ଏ ଯେଉଁ workers participation in industry ତାହା State Labour Advisory Board Meetingରେ ଆଲୋଚନା ହୋଇଥିଲା । ସେଥିରେ ସ୍ଥିରହେଲା—

"Workers' participation in industry

The matter was discussed in the meeting of the State Labour Advisory Board, which is the appropriate forum

to deal with these matters. The Board decided to set up a Sub-committee to speel out the modality of such participation The State Government constituted a Sub-committee accordingly and the Sub-committee have since given their report which has also been considered by the State Labour Advisory Board.

In the meantime the Government of India have formulated a Scheme suggesting therein the average and the procedure of workers participation. They have already made an appeal to all concerned to make the scheme a success. The State Government are also making another similar appeal to the enterprises at the State level to co-operate in the scheme. This participation will be voluntary at the first instance and after gaining some experience in the line, the question of taking up legislation will be considered."

ମୋର ଆଉ ଅଧିକ କହିବାର ନାହିଁ । Appropriation Bill Number 3, 1975 ନିୟମ ଅନୁସାରେ ଆସିଛି । ଏହାକୁ Comptrollor-General of India ଓ A.-G., Public Accounts କମିଟିରେ ପରୀକ୍ଷା କରିଛନ୍ତି । ବିଭିନ୍ନ ବିଷୟ ତାହାର explanation ଦେଇଛନ୍ତି । Public Accounts Committee ତାକୁ ଗ୍ରହଣ କରିଛି । ମୁଁ ନିବେଦନ କରିବି ଗୃହ ଏହାକୁ ଗ୍ରହଣ କରିବେ ।

## BUDGET SPEECH

### 1-3-1976

ବାଚସ୍ପତି ମହୋଦୟ, 1976 ଆର୍ଥିକ ବର୍ଷର ବଜେଟ ସମ୍ବନ୍ଧୀୟ ସମସ୍ତ କାଗଜପତ୍ର ମାନ୍ୟବର ସଦସ୍ୟମାନଙ୍କୁ ଯୋଗାଇ ଦିଆଯାଇଛି ।

ଗତାନୁଦୃଷ୍ଟି — ଅଧ୍ୟକ୍ଷ ମହୋଦୟ । ଓଡ଼ିଶା ସରକାରଙ୍କ ବାର୍ଷିକ ଆର୍ଥିକ ବିବରଣୀ ଦ୍ୱିତୀୟ ଥରପାଇଁ ଏହି ମହନୀୟ ଗୃହରେ ଉପସ୍ଥାପନ କରିଥିବାରୁ ମୁଁ ନିଜକୁ ବିଶେଷ ଗୌରବାନ୍ୱିତ ମନେକରୁଛି । ଆଉ ଅଳ୍ପ କେତୋଟି ସପ୍ତାହ ପରେ ଚଳିତ ବଜେଟ ପଞ୍ଜିକାର ମିଆଦ ପୂରିଯିବ । ଏହି 1975 ଆର୍ଥିକ ବର୍ଷଟି ଆମ ରାଜ୍ୟ ତଥା

ଦେଶର ଆର୍ଥିକ ଇତିହାସରେ ଏକ ସଙ୍କେତ ସୃଷ୍ଟି ହୋଇ ରହିବ ନାହିଁ । ମୋର ଏଭଳି ମନ୍ତବ୍ୟର ତାତ୍ପର୍ଯ୍ୟ ହେଉଛି ଯେ ଗତ ଆର୍ଥିକ ବର୍ଷରେ ସମଗ୍ର ଦେଶରେ ଏକ ଅଭ୍ୟୁତ୍ଥାନର ପ୍ରକ୍ରିୟା ଦେଖା ଦେଇଛି ଏବଂ ଦେଶର କୋଟି କୋଟି ଦୁର୍ଦ୍ଦଶାଗ୍ରସ୍ତ ଓ ଦୁଃସ୍ଥ ଦେଶବାସୀଙ୍କପାଇଁ ନୂତନ ପଥ ଫିଟିଛି । ଆମର ଜାତୀୟ ଜୀବନରେ ଗୌରବ ଭାବରେ ଲିପିବଦ୍ଧ ହୋଇ ରହିପାରିବା ଭଳି ଗତ କେତେ ମାସର ଘଟଣାକୁ ଆଲୋଚନା କଲେ ମୋର ମନେପଡ଼େ ଯେ ବିଗତ ଫେବୃଆରି ମାସର ଏହି ସମୟ, ଯେତେବେଳେ କି ବିରୋଧୀ ଦଳରେ ଥିବା ମୋର ସମ୍ମାନାସ୍ପଦ ବନ୍ଧୁମାନେ ଏ ଦେଶ ଏବଂ ଏହାର ଅର୍ଥନୀତି ଏକ ଧାବମାନ ମୁଦ୍ରାସ୍ଫୀତିଜନିତ ବିପର୍ଯ୍ୟୟର ସମ୍ମୁଖୀନ ହୋଇ ଧ୍ୱଂସ ଉନ୍ମୁଖୀ ହେଉଛି ବୋଲି ଉଦ୍‌ବେଗ ପ୍ରକାଶ କରିଥିଲେ ଓ ଆମର ଧ୍ୱଂସ ଅନିବାର୍ଯ୍ୟ ବୋଲି ସତର୍କ କରାଇ ଦେଇଥିଲେ । ସେମାନେ ମୁଦ୍ରାସ୍ଫୀତି ବିରୁଦ୍ଧରେ କାର୍ଯ୍ୟକାରୀ କରାଯାଉଥିବା ଆର୍ଥିକ, ପ୍ରଶାସନିକ ଓ ମୁଦ୍ରା ସମ୍ବନ୍ଧୀୟ ପ୍ରତିକାର ବ୍ୟବସ୍ଥାଗୁଡ଼ିକ ଅତ୍ୟନ୍ତ ମାମୁଲି ଓ ଉପରଠାଉରିଆ ବୋଲି ମନେ କରୁଥିଲେ । ସେମାନଙ୍କ ମତରେ ଦେଶ ଯେଉଁ ଜଟିଳ ସନ୍ଧିକ୍ଷଣରେ ଉପନୀତ ହୋଇଥିଲା ତହିଁରୁ ଉଦ୍ଧାର ପାଇବା ଅତ୍ୟନ୍ତ ଦୁଃସାଧ୍ୟ । ମାତ୍ର ଉପରୋକ୍ତ ପ୍ରତିକାର ବ୍ୟବସ୍ଥା ଏବଂ ତା'ର ପରବର୍ତ୍ତୀ ଫଳାଫଳ ଏତେ ସୁସ୍ପଷ୍ଟ ଯେ ସେ ସମ୍ପର୍କରେ ଆଉ ଅଧିକ ଟିପ୍ପଣୀ ଦେବା ଅନାବଶ୍ୟକ । ଏହି ଧ୍ୱଂସସୂଚକ ଭବିଷ୍ୟବାଣୀ ଯେ ସମ୍ପୂର୍ଣ୍ଣ ଭ୍ରମାତ୍ମକ୍ ତାହା ଗତ କେତେ ମାସର ଘଟଣାବଳୀରୁ ସ୍ପଷ୍ଟ ପ୍ରମାଣିତ ହୋଇଛି । ଆମେ ବର୍ତ୍ତମାନ ମୁଦ୍ରାସ୍ଫୀତିଜନିତ ଜ୍ୱରରୁ ମୁକ୍ତ ହୋଇଛୁ । ମୂଲ୍ୟ ବୃଦ୍ଧିର ହ୍ରାସ ଘଟିଛି ଏବଂ 1975 ପାଇକାରୀ ମୂଲ୍ୟସୂଚୀ ଶତକଡ଼ା 71 ଭାଗ କମିଛି । ଖାଦ୍ୟଶସ୍ୟ, ଶିଳ୍ପ କଞ୍ଚାମାଲ ଓ ଶିଳ୍ପଜାତ ଦ୍ରବ୍ୟର ମୂଲ୍ୟ ହ୍ରାସ ଯୋଗୁଁ ଏହା ସମ୍ଭବ ହୋଇଛି । ବିଭିନ୍ନ ଅର୍ଥନୈତିକ କ୍ଷେତ୍ରରେ ବେଶ୍ ଅଭିବୃଦ୍ଧି ଘଟିଛି । ଏହି ଅର୍ଥନୈତିକ ଅଭିବୃଦ୍ଧିକୁ ଅଧିକ ଗତିଶୀଳ କରି ଦେଶର ଜନସାଧାରଣଙ୍କ ପାଇଁ ଯଥାର୍ଥ ସ୍ୱଚ୍ଛଳ ଏବଂ ସୁନ୍ଦର ଓ ସୁସ୍ଥ ଜୀବନଯାପନର ଆବଶ୍ୟକତା ପୂରଣ ନିମନ୍ତେ ଜାତି ଏବେ ପ୍ରସ୍ତୁତ ।

1·1 । ଦେଶର ସମାଜବାଦ, ଗଣତନ୍ତ୍ର ଓ ଆଇନର ଶାସନ ପ୍ରତି ନିର୍ବିଷ ପନ୍ଥା ଉପରେ ଅସାମ୍ବିଧାନିକ ଭାବେ ଦଳେ ଲୋକଙ୍କ ଆକ୍ରମଣକୁ ଯେଉଁଭଳି ଭାବେ ଧୈର୍ଯ୍ୟର ସହିତ ଦେଶବାସୀ ପ୍ରତିହତ କରିଛନ୍ତି ତାହା ବାସ୍ତବିକ ବିସ୍ମୟକର । ନୈରାଶ୍ୟର ଅତଳ, ଅନ୍ଧକାର ମଧ୍ୟରୁ, ସଂହତି, ଶୃଙ୍ଖଳା ଓ ସଂଯମର ଆଲୋକକୁ ଆସିବାକୁ ଜାତିପାଇଁ ଜରୁରୀ ପରିସ୍ଥିତି ଓ ତତ୍‌ପରବର୍ତ୍ତୀ ବ୍ୟବସ୍ଥାମାନ ଉଜ୍ଜୀବନ ପ୍ରକ୍ରିୟା କାର୍ଯ୍ୟ କରିଛି । ଆଜକୁ ତିରିଶ ବର୍ଷ ପୂର୍ବେ ଏକ ମଧ୍ୟ ରାତ୍ରିରେ ଭାରତ ସ୍ୱାଧୀନତା ହାସଲ କରିଥିଲା । ଗତ ଜୁନ୍ ମାସରେ ଠିକ୍ ସେହିଭଳି ଏକ ମଧ୍ୟ ରାତ୍ରିରେ ଏକ କ୍ରାନ୍ତିକାରୀ

ମୁହୂର୍ତ୍ତ ଅଭିପ୍ରେତ ଥିଲା । ଫାସିଷ୍ଟ ପ୍ରେରଣା ଓ ପ୍ରଣାଳୀ ଦ୍ୱାରା ଦେଶରେ ବିଶୃଙ୍ଖଳା ଓ ଅରାଜକତା ସୃଷ୍ଟି କରିବାକୁ ଉଦ୍ୟମ କରୁଥିବା ଦଳେ ଲୋକଙ୍କର ମୁକାବିଲା କରିବାକୁ ସମଗ୍ର ଜାତି ସଙ୍କଳ୍ପବଦ୍ଧ ହୋଇଥିଲା । ଜରୁରୀ ପରିସ୍ଥିତି ଘୋଷଣା ଏବଂ ତା'ର ପରବର୍ତ୍ତୀ ବ୍ୟବସ୍ଥାଗୁଡ଼ିକ ଆମର ଅନ୍ତରଙ୍ଗ ଐତିହ୍ୟ ଓ ମୂଲ୍ୟବୋଧର ସଂରକ୍ଷଣ ନିମନ୍ତେ ଏକ ଅନୁକୂଳ ପଦକ୍ଷେପ । ଆମ ସମାଜର ଦୁର୍ବଳ ଶ୍ରେଣୀର ଅସଂଖ୍ୟ ଲୋକଙ୍କ ଦୁଃଖଦୁର୍ଦ୍ଦଶା ଲାଘବ କରିବା ପାଇଁ ଉଦ୍ଦିଷ୍ଟ ପ୍ରଧାନମନ୍ତ୍ରୀଙ୍କ 20-ଦଫା ସମ୍ବଳିତ ଅର୍ଥନୈତିକ କାର୍ଯ୍ୟକ୍ରମ ଏଦ୍ୱାରା ଅନ୍ୟତମ ସ୍ଥାୟୀ ଅବଦାନ । ତଥାପି କେତେକ କ୍ଷେତ୍ରରେ ସନ୍ଦେହ ପ୍ରକାଶ ପାଉଛି ଏବଂ କୁହାଯାଉଛି ଯେ ଏହି ଜରୁରୀ ପରିସ୍ଥିତି ଏକ ପକ୍ଷତ୍ୱମୂଳକ ରାଜନୀତିର ରକ୍ଷାକବଚ ଏବଂ 20-ଦଫା ଅର୍ଥନୈତିକ କାର୍ଯ୍ୟକ୍ରମ ଏକ ଅନ୍ତଃସାରଶୂନ୍ୟ ଧୂମ୍ରାଚ୍ଛାଦନ ମାତ୍ର । ଏହି ଅତିରଞ୍ଜିତ ମିଥ୍ୟାର ପ୍ରତିରୋଧ କରିବାକୁ ଅସାର ବାକ୍ଚାତୁରୀର ଆଶ୍ରୟ ନେବାର ଆବଶ୍ୟକତା ମୁଁ ଅନୁଭବ କରୁ ନାହିଁ । ଯେପରି ଅଭିଯୋଗ ହେଉଛି, ଯଦି ସେପରି ଜରୁରୀ ଅବସ୍ଥା ଘୋଷଣା ପରଠାରୁ ଗଣତନ୍ତ୍ର ବା ଗଣତାନ୍ତ୍ରିକ ନୀତି ଉପରେ ଆଧାରିତ ପାରସ୍ପରିକ ସମ୍ମାନ ଓ ସହନଶୀଳତା ନଥାନ୍ତା, ତେବେ ଆମେ ସ୍ୱାଧୀନଭାବରେ ନିଜ ମତବ୍ୟକ୍ତ କରି ଆଲୋଚନା କରିବାପାଇଁ ଏବଂ ଆବଶ୍ୟକ ସ୍ଥଳେ ଭୋଟ ମାଧ୍ୟମରେ ସିଦ୍ଧାନ୍ତ ଗ୍ରହଣ କରିବାପାଇଁ ଆଜି ଏଠାରେ ଏକାଠି ହୋଇ ପାରି ନଥାନ୍ତେ । ସେହିପରି, 20-ଦଫା ସମ୍ବଳିତ ଅର୍ଥନୈତିକ କାର୍ଯ୍ୟକ୍ରମରେ ହୁଏତ କିଛି ନୂତନତ୍ୱ ନଥାଇ ପାରେ, କିନ୍ତୁ ଏହା ଏକ କର୍ମାଭିମୁଖୀ ବାସ୍ତବ ଯୋଜନା ଏବଂ ଦୁଇବର୍ଷକାଳ ଯାବତ୍ ରୂପାୟିତ ହେଉଥିବା ଦେଶର ଅଧିକାଂଶ ଦରିଦ୍ର ଜନସାଧାରଣଙ୍କର ଜୀବନ ଧାରଣର ମାନ ଉନ୍ନତ କରିବା ନିମନ୍ତେ ଆମର ଯେ ଦୃଢ଼ ସଂକଳ୍ପ ଏହା ତାହାର ଏକ ନିଦର୍ଶନ । ଜରୁରୀ ପରିସ୍ଥିତିର ଅବ୍ୟବହିତ ପୂର୍ବରୁ ଦେଶ ଆଗରେ ଦୁଇଟି ପନ୍ଥା ଉନ୍ମୁକ୍ତ ଥିଲା; ନୀରବ ଦର୍ଶକ ଭାବରେ ଦେଶରେ ପ୍ରତିଷ୍ଠିତ ସାମ୍ବିଧାନିକ ବ୍ୟବସ୍ଥା ଏବଂ ଗଣତାନ୍ତ୍ରିକ ସଂସ୍ଥାଗୁଡ଼ିକର ମୂଳୋତ୍ପାଟନକୁ ସହ୍ୟ କରିଯିବା କିମ୍ବା ଉକ୍ତ ଆହ୍ୱାନର ଦୃଢ଼ ମୁକାବିଲା କରି ଦେଶର ମୌଳିକ ବିଧି ବିଧାନର ସୁରକ୍ଷାପାଇଁ ବ୍ୟବସ୍ଥା କରିବା । ମୋ ମତରେ ଏ ଦେଶ ଏବଂ ଦେଶବାସୀ ପରବର୍ତ୍ତୀ ପନ୍ଥାଟିକୁ ଯଥା ଅବସରରେ ବାଛି ନେଇଛନ୍ତି । ଜାତୀୟ ଜୀବନର ଏକ ଅତି ଜଟିଳ ପରିସ୍ଥିତି ଭିତରେ ଆମର ପ୍ରଧାନମନ୍ତ୍ରୀ ତାଙ୍କର ପାରଦର୍ଶିତା ଓ ଧୀମନ୍ତା ବଳରେ ଦେଶକୁ ସେପରିସ୍ଥିତିରେ ବାଟକଢ଼ାଇ ଆଣିଲେ ସେଥି ନିମନ୍ତେ ବର୍ତ୍ତମାନ ଓ ଭବିଷ୍ୟତ ବଂଶଧରମାନେ ତାଙ୍କଠାରେ ଗଭୀର କୃତଜ୍ଞତା ପାଶରେ ଆବଦ୍ଧ ରହିବେ । ତାଙ୍କର ଦୂରଦୃଷ୍ଟି ନିମନ୍ତେ ଆମେ ସମସ୍ତେ ତାଙ୍କୁ ଅଭିନନ୍ଦନ ଜଣାଇବା ସଙ୍ଗେ ସଙ୍ଗେ, ଆସନ୍ତୁ, ତାଙ୍କର ସାହସିକ ଓ ପ୍ରଗତିଶୀଳ ନେତୃତ୍ୱ ପ୍ରତି ଆମର ସମ୍ମିଳିତ, ଅକୁଣ୍ଠ ସମର୍ଥନ ଜ୍ଞାପନ କରିବା ।

2. ଅର୍ଥନୈତିକ ପରିସ୍ଥିତି—ବାରମ୍ବାର ପ୍ରାକୃତିକ ଦୁର୍ବିପାକ ସତ୍ତ୍ୱେ ବି ରାଜ୍ୟର ଆର୍ଥିକ ପରିସ୍ଥିତି ଯଥେଷ୍ଟ ସନ୍ତୋଷଜନକ ରହିଛି । 1975 ଅଗଷ୍ଟ ମାସର ବନ୍ୟା ପ୍ରଳୟଙ୍କରୀ ହୋଇଥିଲେ ସୁଦ୍ଧା ମାନ୍ୟବର ରାଜ୍ୟପାଳ ତାଙ୍କର ଅଭିଭାଷଣରେ ସୂଚାଇ ଦେଇପାରିଛନ୍ତି ଯେ ଜନବଳ, ଅର୍ଥ ସମ୍ବଳ ତଥା ଅନ୍ୟାନ୍ୟ ସାମଗ୍ରୀ ଦେଇ ଉକ୍ତ ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କୁ ସାହାଯ୍ୟ କରିବାରେ ଆମେ କୌଣସି ତ୍ରୁଟି ରଖି ନାହୁଁ । ଠିକ୍ ସମୟରେ ପର୍ଯ୍ୟାପ୍ତ ଖାଦ୍ୟର ଅତଶୀଘ୍ର ରିଲିଫ୍ ଓ ଥଇଥାନ ବ୍ୟବସ୍ଥା କରାଯାଇଥିଲା । ଜରୁରୀ ସାହାଯ୍ୟ ବାବଦରେ ମୋଟ 4·04 କୋଟି ଟଙ୍କା ବ୍ୟୟ ହୋଇଥିଲା, ଅର୍ଥାତ୍ ବଜେଟ୍‌ରେ ବ୍ୟବସ୍ଥା କରାଯାଇଥିବା 3·58 କୋଟି ଟଙ୍କାଠାରୁ ଏହା ପାଖାପାଖି 0·46 କୋଟି ଟଙ୍କା ଅଧିକ । ବନ୍ୟାରେ ନଷ୍ଟ ହୋଇଥିବା ସମ୍ପତ୍ତିର ମରାମତି ଓ ପୁନରୁଦ୍ଧାର ସକାଶେ ଚଳିତ ବର୍ଷ ବଜେଟ୍‌ରେ 7·55 କୋଟି ଟଙ୍କାର ପୃଥକ ବ୍ୟବସ୍ଥା କରାଯାଇଛି । ଗତବର୍ଷର ପ୍ରଳୟଙ୍କରୀ ବନ୍ୟାଜନିତ ପରିସ୍ଥିତିକୁ ଅତିକ୍ରମ କରିବା ପାଇଁ ଭାରତ ସରକାର ଯେଉଁ ସାହାଯ୍ୟ ଦେଲେ ସେଥି ନିମନ୍ତେ ଏହି ଅବସରରେ ତାଙ୍କ ପ୍ରତି ମୁଁ ଆମର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି । ଏ ସବୁ ସାମୟିକ ବାଧାବିଘ୍ନ ସତ୍ତ୍ୱେ ଆମର ସମୁଦ୍ଧ ଆର୍ଥିକ ପରିସ୍ଥିତିର ଅଭିବୃଦ୍ଧି ଘଟିଛି । 1974-75 ଶେଷ ସୁଦ୍ଧା (1970-71 ମୂଲ୍ୟସୂଚୀ ଅନୁଯାୟୀ) ରାଜ୍ୟର ଆୟ 1,089·00 କୋଟି ଟଙ୍କା ଥିବା ସ୍ଥଳେ 1975-76 ଶେଷବେଳକୁ ଏହା 1,160·00 କୋଟି ଟଙ୍କାରୁ ଅଧିକ ହେବାର ସମ୍ଭାବନା ଅଛି । 1974-75ରେ ଧାନ ଉତ୍ପାଦନ 4·9 ନିୟୁତ ମେଟ୍ରିକ ଟନ ଥିବାସ୍ଥଳେ ଚଳିତ ବର୍ଷ ତାହା 6·9 ନିୟୁତ ମେଟ୍ରିକ୍‌ଟନ ହେବ ବୋଲି ଆଶା କରାଯାଉଛି । ଖାଦ୍ୟ ଶସ୍ୟ, ଡାଲି, ଶସ୍ତା ଦରର ଲୁଗା ଓ ଖାଇବା ତେଲ ପ୍ରଭୃତି ସାଧାରଣ ଖାଉଟି ଦ୍ରବ୍ୟର ଯୋଗାଣ ପରିସ୍ଥିତିରେ ଯଥେଷ୍ଟ ଉନ୍ନତି ହୋଇଥିବାରୁ ଦୃଷ୍ଟିପ୍ରତିକ୍ରିୟାରେ ଅବସ୍ଥା ସ୍ୱାଭାବିକ ହୋଇଛି । ସବୁ ଭରତୀୟ ଶ୍ରମିକ ଶ୍ରେଣୀ ପାଇଁ ଖାଉଟି ମୂଲ୍ୟସୂଚୀ (1960=100) 1974 ଅକ୍ଟୋବରରେ 335 ପଏଣ୍ଟ ଥିବାସ୍ଥଳେ 1975 ଅକ୍ଟୋବର ସୁଦ୍ଧା ତାହା 316 ପଏଣ୍ଟ ଖସି ଆସିଛି । ପ୍ରାୟ ପ୍ରତ୍ୟେକ ପଦାର୍ଥର ଦରଦାମ ହ୍ରାସ ପାଇଛି ।

3·20- ଦଫା ଅର୍ଥନୈତିକ କାର୍ଯ୍ୟକ୍ରମ—ସମାଜର ଅବହେଳିତ ଓ ଦୁର୍ବଳ ଶ୍ରେଣୀର ଲୋକେ ଯେପରି ଅଧିକରୁ ଅଧିକ ମାତ୍ରାରେ ଅର୍ଥନୈତିକ ଉନ୍ନତିର ଅଂଶୀଦାର ହୋଇପାରିବେ, ସେଥି ନିମନ୍ତେ ପ୍ରଧାନମନ୍ତ୍ରୀ 1975 ଜୁଲାଇ ପହିଲାରେ ବିଂଶସୂତ୍ରୀ ଅର୍ଥନୈତିକ କାର୍ଯ୍ୟକ୍ରମ ମାଧ୍ୟମରେ ଏକ ନୂତନ ଦିଗ୍‌ଦର୍ଶନ ଦେଇଛନ୍ତି । ଏହି ନୂତନ ଅର୍ଥନୈତିକ ବ୍ୟବସ୍ଥାଗୁଡ଼ିକ କାର୍ଯ୍ୟକାରୀ କରିବାପାଇଁ ରାଜ୍ୟ ସରକାର ଗତ କେତେ ମାସ ହେଲ ଜୋରସୋରରେ ଅନେକ ବହୁମୁଖୀ କାର୍ଯ୍ୟକ୍ରମ ଆରମ୍ଭ କରି ଦେଇଛନ୍ତି । ଅନାବଶ୍ୟକ ନିଯୁକ୍ତି ବନ୍ଦ, ଗସ୍ତ ଓ ଅଫିସ ଖର୍ଚ୍ଚରେ କଟକଣା,

ଆସବାବପତ୍ର କ୍ରୟ ଏବଂ ସରକାରୀ ଦପ୍ତରର ଅନ୍ୟାନ୍ୟ ଖର୍ଚ୍ଚ କ୍ଷେତ୍ରରେ ଯଥାସମ୍ଭବ କଟକଣା କରିବା ଫଳରେ ଚଳିତ ବର୍ଷ ମୋଟରେ 2 କୋଟି ଟଙ୍କା ଖର୍ଚ୍ଚ କାଟ କରାଯାଇ ପାରିଛି । ଆସନ୍ତା ବର୍ଷ ଖର୍ଚ୍ଚ କାଟ ବାବଦରେ 3 କୋଟି ଟଙ୍କା ହିସାବକୁ ନିଆଯାଇଅଛି । ମାଲ ମହଜୁଦ, ଲାଭଖୋରି, କଳାବଜାରକାରବାର ଓ ଟିକସ ଫାଙ୍କି ପ୍ରଭୃତି ଦମନ କରାଯାଇଛି । ଦରଦାମ ପରିସ୍ଥିତି ଆୟତ୍ତାଧୀନ ଅଛି । ଅର୍ଥନୈତିକ ଅପରାଧୀମାନଙ୍କପ୍ରତି କଠୋର ବ୍ୟବସ୍ଥା ଗ୍ରହଣ କରାଯାଉଛି । ଭୂମିହୀନଙ୍କୁ ଭୂମି ବଣ୍ଟନ, ସିଲିଂ ବହିର୍ଭୂତ ଉଦବୃତ୍ତ ଜମିକୁ ସରକାରଙ୍କ ଦଖଲକୁ ଆଣିବା ଏବଂ ଘରଡିହ ଯୋଗାଇଦେବା ପ୍ରଭୃତି କାର୍ଯ୍ୟକ୍ରମ ଦ୍ରୁତ ଆଗେଇ ଚାଲିଛି । 1974-75ରେ 1·5 ଲକ୍ଷ ଲୋକଙ୍କ ମଧ୍ୟରେ 2·46 ଲକ୍ଷ ଏକର ଜମି ବଣ୍ଟନ କରାଯାଇଥିଲା । ତନ୍ମଧ୍ୟରୁ 83,000 ତଫସିଲଭୁକ୍ତ ସମ୍ପ୍ରଦାୟର ଓ 34,000 ତଫସିଲଭୁକ୍ତ ଜାତିର ଲୋକ । ଚଳିତ ବର୍ଷ 71,632 ଜଣଙ୍କ ମଧ୍ୟରେ 1·41 ଲକ୍ଷ ଏକର ଜମି ବଣ୍ଟନ କରାଯାଇଛି । ଉପକୃତ ବ୍ୟକ୍ତିଙ୍କ ମଧ୍ୟରୁ 53,628 ଜଣ ତଫସିଲଭୁକ୍ତ ଜାତି ଓ ସଂପ୍ରଦାୟର ଲୋକ । ଯାହା ଜଣା ପଡୁଛି, ଚଳିତ ବର୍ଷ 1·70 ଲକ୍ଷ ଏକର ଜମି ବାଣ୍ଟିବାକୁ ଯେଉଁ ଲକ୍ଷ୍ୟ ଧାର୍ଯ୍ୟ ହୋଇଛି ତାକୁ ଆମେ ଅନାୟାସରେ ହାସଲ କରିପାରିବୁ । ଚଳିତ ବର୍ଷ 14,000 ରୁ ଅଧିକ ଲୋକଙ୍କୁ ବିନା ସଲାମିରେ 910 ଏକର ଘରଡିହ ଯୋଗାଇ ଦିଆଯାଇଛି । ଦୁର୍ବଳ ଶ୍ରେଣୀ ଲୋକଙ୍କ କଲ୍ୟାଣପାଇଁ ଉଦ୍ଦିଷ୍ଟ ଯୋଜନାଗୁଡ଼ିକ ଆସନ୍ତା ବର୍ଷ ଅଧିକ ଅଗ୍ରଗତି କରିବ ବୋଲି ଆଶା କରାଯାଏ । ମାନ୍ୟବର ସଦସ୍ୟମାନେ ଜାଣନ୍ତି ଯେ ସମନ୍ୱିତ ବାସଗୃହ ଯୋଜନା ଅନୁଯାୟୀ ରାଜ୍ୟର 5 ଲକ୍ଷ ବାସହୀନ ଲୋକଙ୍କୁ ଗୋଟିଏ ଲେଖାଏଁ ଘର ଯୋଗାଇ ଦେବାର ଲକ୍ଷ୍ୟ ଆମେ ରଖିଛୁ । 75 କୋଟି ଟଙ୍କା ବ୍ୟୟ ସାପେକ୍ଷ ଏହି ଯୋଜନା ସହିତ ଗୃହ ଜମି ଯୋଗାଣ, କୁଟୀର ଶିଳ୍ପ ଓ ଅନ୍ୟାନ୍ୟ ଲାଭପ୍ରଦ ଧନ୍ଦାର ବ୍ୟବସ୍ଥା, ପିଇବା ପାଣିପାଇଁ କୂଅ ଓ ସ୍କୁଲ ଘର ପ୍ରଭୃତି ଆନୁଷଙ୍ଗିକ ସାମାଜିକ ବ୍ୟବସ୍ଥାମାନ ସଂଶ୍ଳିଷ୍ଟ କରାଯିବ । ସଂପ୍ରତି ଏହି ଯୋଜନାଟି ସର୍ବନିମ୍ନ ଆବଶ୍ୟକତା ଏବଂ ଗ୍ରାମାଞ୍ଚଳ ଗୃହ ନିର୍ମାଣ ନିମନ୍ତେ ଗଚ୍ଛିତ ଯୋଜନା ପାଣ୍ଠିରୁ କାର୍ଯ୍ୟକାରୀ କରାଯାଉଛି । ଢେଙ୍କାନାଳ, ମୟୂରଭଞ୍ଜ, କଳାହାଣ୍ଡି ଓ କୋରାପୁଟ ଏହି 4ଟି ଜିଲ୍ଲାରେ ଏହି ଯୋଜନା ଅନୁଯାୟୀ 2,500 ଘର ସଂପୂର୍ଣ୍ଣ ପ୍ରାୟ । ଉକ୍ତ ପରିକଳ୍ପନା ଯୋଜନା କମିଶନଙ୍କ ଚୂଡ଼ାନ୍ତ ସ୍ୱୀକୃତି ପାଇବା ପରେ ପରେ ଯୋଜନା ବାବଦ ବରାଦ ଅର୍ଥର ପରିମାଣ ବେଶ୍ ବୃଦ୍ଧି ପାଇବ । ଯାହାହେଲେବି ଏହି କାର୍ଯ୍ୟକ୍ରମର ଅଗ୍ରଗତି ବ୍ୟାହତ ହେବ ନାହିଁ ଓ 1976-77 ଆର୍ଥିକ ବର୍ଷରେ ଏଭଳି ଆହୁରି ଅନେକ ବାସଗୃହ ନିର୍ମାଣ କରାଯିବ ।

ଅସାଧୁ ମହାଜନମାନଙ୍କ ଶୋଷଣରୁ ଗ୍ରାମାଞ୍ଚଳର ଗରିବ ଲୋକଙ୍କୁ ରକ୍ଷା କରିବା ନିମନ୍ତେ ଏବଂ ସେମାନଙ୍କୁ ଋଣମୁକ୍ତ କରିବା ହେତୁ ଉପୁଜିଥିବା ସମସ୍ୟାଗୁଡ଼ିକୁ ସମାଧାନ କରିବା ଉଦ୍ଦେଶ୍ୟରେ ପ୍ରଚଳିତ 1939 ମସିହା ମହାଜନ ଆଇନର କେତେକ ବ୍ୟବସ୍ଥାକୁ ସମୟୋପଯୋଗୀ କରିବା ଲାଗି ଅନେକଗୁଡ଼ିଏ ସଂଶୋଧନ କରାଯାଇଛି । ସଂଶୋଧିତ ବ୍ୟବସ୍ଥାଗୁଡ଼ିକର କଡ଼ାକଡ଼ି ପ୍ରୟୋଗ ଫଳରେ ସମଗ୍ର ରାଜ୍ୟରେ ଅତ୍ୟଧିକ ସୁଧ ନେଉଥିବା ମହାଜନମାନଙ୍କ ବିରୁଦ୍ଧରେ 700ରୁ ଊର୍ଦ୍ଧ୍ୱ ମକଦ୍ଦମା ରୁଜୁ କରାଯାଇଛି । ଏଥି ସଙ୍ଗେ ସଙ୍ଗେ ଗ୍ରାମାଞ୍ଚଳରେ ଯେପରିକି ଯଥେଷ୍ଟ ପରିମାଣରେ ଋଣ ମିଳିପାରିବ, ସେଥିନିମନ୍ତେ ପ୍ରଗତିମୂଳକ ତଥା ସମନ୍ୱିତ ଉପାୟ ଅବଲମ୍ବନ କରିବା ଲାଗି ସମବାୟ ଓ ବ୍ୟବସାୟୀ ବ୍ୟାଙ୍କମାନଙ୍କୁ ପରାମର୍ଶ ଦିଆଯାଇଛି । ମୁଁ ମାନ୍ୟବର ସଭ୍ୟମାନଙ୍କୁ ପ୍ରତିଶ୍ରୁତି ଦେଉଛି ଯେ ଏ ପ୍ରକାର ସାମାଜିକ ଅର୍ଥନୈତିକ ପରିବର୍ତ୍ତନର ପରିପ୍ରେକ୍ଷୀରେ ଉପୁଜୁଥିବା ସମସ୍ୟାଗୁଡ଼ିକୁ ଆୟତ୍ତ କରିବାପାଇଁ ସମସ୍ତ ପ୍ରକାର ଆବଶ୍ୟକୀୟ ବ୍ୟବସ୍ଥା ଗ୍ରହଣ କରାଯିବ ।

3·1. ନୂତନ ଅର୍ଥନୈତିକ କାର୍ଯ୍ୟକ୍ରମ କ୍ଷେତ୍ରରେ ଯେଉଁସବୁ ଉଲ୍ଲେଖନୀୟ ଅଗ୍ରଗତି ଘଟିଛି, ସେଗୁଡ଼ିକ ହେଲା—46,000ରୁ ଊର୍ଦ୍ଧ୍ୱ କ୍ଷୁଦ୍ର ତଥା ନାମମାତ୍ର ଚାଷୀ ଯେପରି ସମବାୟ ସମିତିର ସଭ୍ୟଭୁକ୍ତ ହେବା ସଙ୍ଗେ ସଙ୍ଗେ ସମିତିରୁ ଋଣ ଓ ଅନ୍ୟାନ୍ୟ ସୁବିଧାସୁଯୋଗ ପାଇବେ, ସେଥିନିମନ୍ତେ ସେମାନଙ୍କୁ ମୁଖ୍ୟମନ୍ତ୍ରୀଙ୍କ ରିଲିଫ ପାଣ୍ଠିରୁ ଆର୍ଥିକ ସାହାଯ୍ୟ ଦେବାର ବ୍ୟବସ୍ଥା କରିବା; ଅଭାବଗ୍ରସ୍ତ ପିତାମାତା ବିଶେଷତଃ ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ସଂପ୍ରଦାୟର ପିଲାମାନଙ୍କ ନିମନ୍ତେ ଅଧିକ ଶିକ୍ଷାଗତ ସୁବିଧାସୁଯୋଗର ବ୍ୟବସ୍ଥା କରିବା; ସୁଲଭ ମୂଲ୍ୟରେ ଛାତ୍ରମାନଙ୍କୁ ଖାତା, କାଗଜ ଓ ପାଠ୍ୟ ପୁସ୍ତକ ଯୋଗାଇବା; ଛାତ୍ରୀମାନଙ୍କ ନିମନ୍ତେ ଅଧିକ ସଂଖ୍ୟକ ଉପସ୍ଥାନ ବୃତ୍ତିର ବ୍ୟବସ୍ଥା; ହାଇସ୍କୁଲ ସାର୍ଟିଫିକେଟ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିବା 300 ଜଣ ମେଧାବୀ ଛାତ୍ରଙ୍କୁ କଲେଜରେ ନାମ ଲେଖାଇବା ପାଇଁ ଆର୍ଥିକ ସାହାଯ୍ୟ ଓ ରାଜ୍ୟର ବିଭିନ୍ନ ଶିକ୍ଷାଅନୁଷ୍ଠାନରେ ପୁସ୍ତକ ବ୍ୟାଙ୍କ ପ୍ରତିଷ୍ଠା । ଶ୍ରମିକ ତଥା ମଜୁରିଆମାନଙ୍କୁ ଶୋଷଣରୁ ରକ୍ଷା କରିବାପାଇଁ ବିଭିନ୍ନ ଶ୍ରେଣୀର ଶ୍ରମିକ ତଥା ମଜୁରିଆଙ୍କପାଇଁ ସର୍ବନିମ୍ନ ମଜୁରି ନିର୍ଦ୍ଧାରଣ କରିବା ହେଉଛି ଆଉ ଏକ ପଦକ୍ଷେପ । ଏସବୁ ଯୋଜନାରେ ଆମେ କେତେ ଦୂର ସଫଳତା ଲାଭ କରିଛୁ, ସେ ସମ୍ପର୍କରେ କେତେକ ସବିଶେଷ ବିବରଣୀ ମାନ୍ୟବର ରାଜ୍ୟପାଳଙ୍କ ଅଭିଭାଷଣରେ ଉଲ୍ଲେଖ ଅଛି । ମାନ୍ୟବର ସଦସ୍ୟମାନେ ଲକ୍ଷ୍ୟ କରିବେ ଯେ ଏହି ବିଂଶସୂତ୍ରୀ କାର୍ଯ୍ୟକ୍ରମ ଆମର ସମୁଦାୟ ସାମାଜିକ ତଥା ଅର୍ଥନୈତିକ କାର୍ଯ୍ୟ ପରିସରର ଅନ୍ତର୍ନିହିତ କେନ୍ଦ୍ର । ଏହି କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କାର୍ଯ୍ୟକାରୀ କରିବାପାଇଁ ମୁଖ୍ୟମନ୍ତ୍ରୀ ଏବଂ ମନ୍ତ୍ରୀମଣ୍ଡଳର ସଦସ୍ୟବୃନ୍ଦ ବିଶେଷ ଆଗ୍ରହୀ । ଉକ୍ତ କାର୍ଯ୍ୟକ୍ରମର ଅଗ୍ରଗତି ସମ୍ପର୍କରେ ବାରମ୍ବାର ସମୀକ୍ଷା ଓ ତତ୍ତ୍ୱାବଧାନ

କରିବାପାଇଁ ମନ୍ତ୍ରୀ, ବେସରକାରୀ ଓ ସରକାରୀ ବ୍ୟବସାୟୀମାନଙ୍କୁ ନେଇ ଏକ ରାଜ୍ୟସ୍ତରୀୟ କମିଟି ଗଠନ କରାଯାଇଛି । ଶେଷ, କେନ୍ଦ୍ରୀୟ ମନ୍ତ୍ରାଳୟର ଏହି 20 ଦଫା କାର୍ଯ୍ୟକ୍ରମ ଏକ ଧ୍ୱନ ହେବାଲି ଯେଉଁ ଭବିଷ୍ୟତ ମତ ପ୍ରକାଶ ପାଉଛି, ତାହାକୁ ଉପେକ୍ଷା କରାଯାଇ-ପାରେ ।

4. ବାର୍ଷିକ ଯୋଜନା ଓ ଏହାର ଆଭିମୁଖ୍ୟ—1976-77 ବଜେଟରେ ଯୋଜନା ବାବଦରେ 124·74 କୋଟି ଟଙ୍କା ଓ ଅଣଯୋଜନା କ୍ଷେତ୍ରରେ ଉନ୍ନୟନ କାର୍ଯ୍ୟ ବାବଦରେ 160·41 କୋଟି ଟଙ୍କାର ଯେଉଁ ବ୍ୟୟ ବ୍ୟବସ୍ଥା କରାଯାଇଛି, ତାହା ଏକ ସାମ୍ୟବାଦୀ ସମାଜର ଭିତ୍ତିସ୍ଥାପନ ଉଦ୍ଦେଶ୍ୟରେ, ଅଧିକ ଅର୍ଥନୈତିକ ସୁବିଧାସୁଯୋଗ ସୃଷ୍ଟି କରିବାରେ ଏବଂ ଏ ପର୍ଯ୍ୟନ୍ତ ଆର୍ଥିକ କ୍ଷେତ୍ରରେ ଅନଗ୍ରସର ତଥା ସାମାଜିକ ସ୍ତରର ଅବହେଳିତ ଅବସ୍ଥାରେ ରହିଥିବା ଲୋକମାନଙ୍କୁ ଏ କାର୍ଯ୍ୟକ୍ରମରେ ସମ୍ପୃକ୍ତ କରାଇବା ଉଦ୍ଦେଶ୍ୟରେ ଏକ ବଳିଷ୍ଠ ପଦକ୍ଷେପ । ଆଗାମୀ ବର୍ଷର ବଜେଟରେ ଉଭୟ ଦୀର୍ଘ ମିଆଦୀ ପଦକ୍ଷେପ ଓ ଆଶୁ ଫଳପ୍ରଦ ଲକ୍ଷ୍ୟ ହାସଲ ଉପରେ ଗୁରୁତ୍ୱ ଦିଆଯାଉଛି । ଆମର ସୁଦୂରପ୍ରସାରୀ ଲକ୍ଷ୍ୟ ହେଲା; ବିଭିନ୍ନ ସୂତ୍ରରୁ ଆମ ସମ୍ବଳର ଅଭିବୃଦ୍ଧି ଘଟାଇ ଆମ ଅର୍ଥନୀତିର ଭିତ୍ତିକୁ ସୁଦୃଢ଼ କରିବା । ଏତଦ୍ୱାରା ଆମେ କ୍ରମବିକାଶଶୀଳ ଅର୍ଥନୈତିକ ପରିସର ଭିତରେ ବର୍ଦ୍ଧିଷ୍ଣୁ ବ୍ୟବହାରିକ ଆବଶ୍ୟକତା ପୂରଣ କରି ଅଧିକ ସଞ୍ଚୟ କରିପାରିବା ଏବଂ ଘରୋଇ କ୍ଷେତ୍ର ମଧ୍ୟ ଅଧିକ ସମ୍ବଳ ବିନିଯୋଗ କରିପାରିବ । ଆମର ସ୍ୱଳ୍ପ ମିଆଦୀ ଲକ୍ଷ୍ୟ ହେଲା; କମ୍ ସୁବିଧା ସୁଯୋଗ ପାଉଥିବା, ବେକାର ଓ ସମାଜର ଦୁର୍ବଳ ଶ୍ରେଣୀର ଲୋକମାନଙ୍କ ପାଇଁ କାର ନିମନ୍ତେ ଅଳ୍ପ ସମୟ ମଧ୍ୟରେ ଫଳପ୍ରଦ ହେଉଥିବା ଅନେକ ଯୋଜନା କାର୍ଯ୍ୟକାରୀ କରିବା । ମାନ୍ୟବର ସଦସ୍ୟମାନେ ଲକ୍ଷ୍ୟ କରିବେ ଯେ ରାଜ୍ୟ ଅର୍ଥନୀତିର ବିଭିନ୍ନ କ୍ଷେତ୍ରରେ ପ୍ରଥମ ଥର ପାଇଁ 1976-77 ମସିହାର ଉନ୍ନୟନମୂଳକ ବିନିଯୋଗର ବାର୍ଷିକ ଅଟକଳ 100 କୋଟି ଟଙ୍କାରୁ ଅଧିକ ହୋଇଛି । 1976-77 ମସିହା ପାଇଁ ମୋଟ ରାଜ୍ୟ ଯୋଜନା ବାବଦ ଅଟକଳ 124·74 କୋଟି ଟଙ୍କା ରଖାଯାଇଛି ଏବଂ ଏହା ଚଳିତ ବର୍ଷର ମୂଳ ଯୋଜନା ଅଟକଳ 89·15 କୋଟି ଟଙ୍କାଠାରୁ ଶତକଡ଼ା 40 ଭାଗ ଅଧିକ । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ କୋଣାର୍କ ଭୂମି ଜଳସେଚନ ଯୋଜନା । ବାର୍ଷିକ ଉତ୍ସବ ପାଳନ କରିବାପାଇଁ 1 କୋଟି ଏବଂ ବନ୍ୟା ପରିସ୍ଥିତିଜନିତ ମରାମତି ଓ ପୁନର୍ନିର୍ମାଣ କାର୍ଯ୍ୟପାଇଁ 7·55 କୋଟି ଟଙ୍କା ଆବଶ୍ୟକ ପଡ଼ିବାରୁ ଉକ୍ତ ମୂଳ ଅଟକଳକୁ 98·60 କୋଟି ଟଙ୍କାକୁ ବୃଦ୍ଧି କରାଯାଇଅଛି । ରାଜ୍ୟର ଯୋଜନା ବାବଦ ଖର୍ଚ୍ଚ 1974-75 ମସିହାଠାରୁ କ୍ରମଶଃ ବଢ଼ି ଚାଲିଛି । ପଞ୍ଚମ ଯୋଜନାର ପ୍ରଥମ ତିନିବର୍ଷ ମଧ୍ୟରେ ଉକ୍ତ ଖର୍ଚ୍ଚ ପ୍ରାୟ 300 କୋଟି ଟଙ୍କାରେ ପହଞ୍ଚିବ । ସମଗ୍ର ଚତୁର୍ଥ ଯୋଜନାକାଳ ମଧ୍ୟରେ ଆମର ସମୁଦାୟ

ବର୍ଷଯୋଜନାର ପରିମାଣ ପ୍ରାୟ 252 କୋଟି ଟଙ୍କା ଥିଲା । "ଆଜି ଆମର ଏହି ବୃହତ୍ତର ଯୋଜନା ଖର୍ଚ୍ଚ—ବୃହତ୍ତର କେବଳ ଆମର ବର୍ତ୍ତମାନର ସାମାଜିକ ଓ ଅର୍ଥନୈତିକ ପରିପ୍ରେକ୍ଷୀରେ—ହାତକୁ ନେବାରେ ସକ୍ଷମ ହୋଇଛୁ । ମୁଣ୍ଡପିଛା ଆୟର ସ୍ୱଳ୍ପତାର ଉପମସ୍ତ ପରିଣତ ଏବଂ ବିକାଶୋନ୍ମୁଖୀ ରାଜ୍ୟର ସ୍ୱତନ୍ତ୍ର ସମସ୍ୟା ଓ ବହୁବିଧ ଆବଶ୍ୟକତା ବାବଦରେ ଯୋଜନା କମିଶନ ଓ କେନ୍ଦ୍ର ସରକାରଙ୍କୁ ଅବହିତ କରିବାପାଇଁ ଆମ ମୁଖ୍ୟମନ୍ତ୍ରୀଙ୍କର ଅକ୍ଳାନ୍ତ ଉଦ୍ୟମ ଫଳରେହିଁ ଏହା ସମ୍ଭବ ହୋଇପାରିଛି" ।

5. ଉନ୍ନୟନ କାର୍ଯ୍ୟକ୍ରମ—ଆମେ ଶାସନ ଦାୟିତ୍ୱ ଗ୍ରହଣ କରିବା ପରଠାରୁ, ରାଜ୍ୟର ଜନସାଧାରଣ ଧାରାବାହିକଭାବରେ ଅର୍ଥନୈତିକ ବିକାଶ ହାସଲ କରିବ ସଙ୍ଗେ ସଙ୍ଗେ ସାମାଜିକ ନ୍ୟାୟ ଏବଂ ଅଧିକରୁ ଅଧିକ ଆୟ କରିପାରିବା ଦିଗରେ ଯେଉଁ ଉଦ୍ୟମ କରିଥିଲୁ, ଆସନ୍ତା ବର୍ଷର ଯୋଜନା ତା'ର ଅନୁବୃତ୍ତି ମାତ୍ର । 1976-77 ଆର୍ଥିକ ବର୍ଷର ଯୋଜନା ଅଟକଳ 124·74 କୋଟି ଟଙ୍କା ମୁଖ୍ୟତଃ ନିମ୍ନଲିଖିତମତେ ଖର୍ଚ୍ଚ କରାଯିବ:—

(ଟଙ୍କା କୋଟି ଆକାରରେ)

| ରାଜ୍ୟ ସରକାର | | ସରକାରୀ ଉଦ୍ୟୋଗରେ ପରିଚାଳିତ ସଂସ୍ଥା ଓ ସ୍ୱୟଂଶାସିତ ସଂସ୍ଥା | |
|---|---|---|---|
| (1) | | (2) | |
| (କ) ମୁଖ୍ୟ କାର୍ଯ୍ୟକ୍ରମ (କୋର ସେକ୍ଟର) | 75·90 | (କ) ଓଡ଼ିଶା ରାଜ୍ୟ ବିଦ୍ୟୁତ୍ ବୋର୍ଡ । | 18·22 |
| (ଖ) ସାମାଜିକ ଓ ଗୋଷ୍ଠୀ ସେବା କାର୍ଯ୍ୟକ୍ରମ । | 16·75 | (ଖ) ଓଡ଼ିଶା ଖଣି କର୍ପୋରେସନ୍ ଲିମିଟେଡ୍ । | 1·67 |
| (ଗ) ଅନ୍ୟାନ୍ୟ ଗୌଣ କାର୍ଯ୍ୟକ୍ରମ (Non-core Sector) | 10·25 | (ଗ) ଅନ୍ୟାନ୍ୟ ସଂସ୍ଥା | 1·95 |
| ମୋଟ .. | 102·90 | | 21·84 |

ରାଜ୍ୟ ବିଦ୍ୟୁତ୍ ବୋର୍ଡ ଯୋଜନାପାଇଁ ଉଦ୍ଦିଷ୍ଟ 18·22 କୋଟି ଟଙ୍କା ବ୍ୟତୀତ ରାଜ୍ୟ ସରକାରଙ୍କ ଯୋଜନା ଅଟକଳରେ ମୁଖ୍ୟ କାର୍ଯ୍ୟକ୍ରମ (କୋର୍ ସେକ୍ଟର)ପାଇଁ ବ୍ୟୟ ବରାଦ କରାଯାଇଥିବା 75·90 କୋଟି ଟଙ୍କା ମଧ୍ୟରୁ ବୋର୍ଡର ଅଧିକ ଯୋଜନା ଖର୍ଚ୍ଚ ପାଇଁ 6·86 କୋଟି ଟଙ୍କା ଅନ୍ତର୍ଭୁକ୍ତ ।

6. କୃଷି ଓ ସମବାୟ—ମୁଖ୍ୟ ଯୋଜନା କାର୍ଯ୍ୟକ୍ରମର କେନ୍ଦ୍ର ହେଲା କୃଷି, ବୃହତ୍ ଓ ମଧ୍ୟମ ଜଳସେଚନ ଯୋଜନା ଏବଂ ବିଦ୍ୟୁତ୍ ଶକ୍ତିର ବିକାଶ ସାଧନ । 1976-77 ଆର୍ଥିକ ବର୍ଷର ଯୋଜନା ଅଟକଳରେ କେବଳ ଜଳସେଚନ ଓ ବିଦ୍ୟୁତ୍ ଉତ୍ପାଦନପାଇଁ 75·33 କୋଟି ଟଙ୍କା ରଖାଯାଇଛି । ପଞ୍ଚମ ପଞ୍ଚବାର୍ଷିକ ଯୋଜନାର ପ୍ରଥମ ବର୍ଷପାଇଁ ନିର୍ଦ୍ଧାରିତ ହୋଇଥିବା ଯୋଜନା ବାବଦ ବ୍ୟୟ 73·04 କୋଟି ଟଙ୍କାଠାରୁ ଏହା ଅଧିକ । ଏଠାର ଅବସ୍ଥା, ମୂଲ୍ୟ ଅମଳ, ଫସଲ ଉତ୍ପାଦନ କ୍ଷେତ୍ରରେ ଧାନର ପ୍ରାଧାନ୍ୟ, ଉତ୍ପାଦନ କ୍ଷେତ୍ରରେ ଅସ୍ଥିରତା, ଅନିଶ୍ଚିତ ବୃଷ୍ଟି ଉପରେ ନିର୍ଭରଶୀଳତା ପ୍ରଭୃତି କୃଷି ଅର୍ଥନୀତି କ୍ଷେତ୍ରରେ ଦୁର୍ବଳତାର ସ୍ୱରୂପ । ଅବଶ୍ୟ ଉନ୍ନତ ଧରଣର କୃଷି ଯନ୍ତ୍ରପାତିର ଅଧିକ ବୈଷୟିକ ବ୍ୟବହାର, ଭୂମିହୀନ ଲୋକମାନଙ୍କ ସଂଖ୍ୟା ହ୍ରାସ, ରଯୁତ ସ୍ୱତ୍ତ୍ୱର ନିରାପତ୍ତା ଓ କୃଷୀଙ୍କ ସ୍ୱାର୍ଥରକ୍ଷା ନିମନ୍ତେ ନିଆଯାଇଥିବା ପଦକ୍ଷେପଗୁଡ଼ିକ ଖାଦ୍ୟ ଶସ୍ୟର ଉତ୍ପାଦନ ବୃଦ୍ଧିପାଇଁ ଯେ ସହାୟକ ହୋଇଛି, ଏଥିରେ ସନ୍ଦେହ ନାହିଁ । ଗତ ବର୍ଷ ସମୟୋପଯୋଗୀ ବୃଷ୍ଟି ହେତୁ 57 ଲକ୍ଷ ହେକ୍ଟର ଜମିରେ ଖରିଫ୍ ଫସଲ କରାଯାଇପାରିଥିଲା । ମାତ୍ର କେବଳ ଫସଲ ଅମଳ କରି ଚାଷ ଜମିର ପରିମାଣ ବା କ୍ଷେତ୍ରଫଳ ବୃଦ୍ଧି ଦ୍ୱାରା ଖାଦ୍ୟଶସ୍ୟ ବା ଅନ୍ୟାନ୍ୟ କୃଷିଜାତ ଦ୍ରବ୍ୟ ଅମଳର ଉତ୍‌ଥାନପତନ ଜନିତ ସମସ୍ୟାର ଯେ ଦୀର୍ଘ ମିଆଦି ସମାଧାନ ହୋଇପାରିବ ନାହିଁ, ସେ ବିଷୟରେ ଆମେ ସଚେତନ । କୃଷକ ତା'ର ଜମିରୁ ସର୍ବାଧିକ ପରିମାଣ ବଳକା ଉତ୍ପାଦନ କରି ଉକ୍ତ ଉଦ୍‌ବୃତ୍ତିକୁ ପୁନର୍ବିନିଯୋଗ କରିବାକୁ ହେଲେ ଜମିର ଉତ୍ପାଦିକା ଶକ୍ତି ବଢ଼ାଇବା ଆବଶ୍ୟକ । ଏହି ମୌଳିକ ଅଭାବ ଦୂରୀକରଣ ହେଉଛି ଆମର କୃଷି କାର୍ଯ୍ୟକ୍ରମର ଆଭିମୁଖ୍ୟ । 1976-77 ବର୍ଷରେ 5·9 ନିୟୁତ ମେଟ୍ରିକ୍ ଟନ ଖାଦ୍ୟ ଶସ୍ୟ ଉତ୍ପାଦନ କରିବା ଆମର ବର୍ତ୍ତମାନ ଲକ୍ଷ୍ୟ । ଅଧିକ ଖତ ଓ ରାସାୟନିକ ସାର ବ୍ୟବହାର କରି, ଉନ୍ନତ ଧରଣର ତଥା ଅଧିକ ଅମଳକ୍ଷମ ବିହନ ବ୍ୟବହାର କରି, କୀଟ ଓ ରୋଗ ନିୟନ୍ତ୍ରଣ କରି ଏବଂ ଜଳସେଚନ ସୁବିଧା ଓ ସୁଯୋଗର ପୂର୍ଣ୍ଣ ଉପଭୋଗ କରି ଆମର କୃଷୀ ଭାଇମାନେ 1976-77 ବର୍ଷ ପାଇଁ ଧାର୍ଯ୍ୟ କରାଯାଇଥିବା ଅଧିକ ଖାଦ୍ୟଶସ୍ୟ ଉତ୍ପାଦନ ଲକ୍ଷ୍ୟ ହାସଲ କରି ପାରିବେ । ଏତଦ୍‌ଭିନ୍ନ କପା, ଆଖୁ, ଝୋଟ ଓ ତୈଳବୀଜ ଭଳି ଶିଳ୍ପୋପଯୋଗୀ ଫସଲ ଅଧିକ ଜମିରେ କରିବା ପାଇଁ ଆମେ ଲକ୍ଷ୍ୟ ଧାର୍ଯ୍ୟ କରିଛୁ । ଗୁଡ଼ ଆକାରରେ 2·82 ଲକ୍ଷ ଟନ, 3·63 ଲକ୍ଷ ଟନ୍

ତୈଳବୀଜ, 4·00 ଲକ୍ଷ ଗାଣ୍ଠି ଝୋଟ ଓ 11,000 ଗାଣ୍ଠି ତୁଳା ଉତ୍ପାଦନ କରିବା ଲାଗି ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଡାଲି ଜାତୀୟ ଫସଲ ଓ ପନିପରିବା ମଧ୍ୟ ଅଧିକ ଜମିରେ ଅମଳ କରିବା ସକାଶେ କାର୍ଯ୍ୟକ୍ରମ ରହିଛି । ଚଳିତ ବର୍ଷ ତୁଳନାରେ 1976-77 ବର୍ଷରେ ଅଧିକ 17,906 କୁଇଣ୍ଟାଲ୍ ଉନ୍ନତ ଧରଣର ବିହନ ବଣ୍ଟାଯିବାର ପ୍ରସ୍ତାବ ରହିଛି । ଖାଦ୍ୟସାର ଆକାରରେ ବ୍ୟବହାର କରିଲ ଆସନ୍ତା ବର୍ଷ ଚଳିତ ବର୍ଷ ଅପେକ୍ଷା ଆଉ ଅଧିକ 39,000 ମେଟ୍ରିକ୍ ଟନ୍ ରସାୟନିକ ସାର ପ୍ରୟୋଗ କରାଯିବ ଏବଂ ଖାଦ୍ୟଶସ୍ୟ ଓ ଅର୍ଥକରୀ ଫସଲ ପାଇଁ କୀଟନାଶକ ଔଷଧ ବ୍ୟାପକ ଅଞ୍ଚଳରେ ବ୍ୟବହାର କରାଯିବ । ମୃତ୍ତିକା ସଂରକ୍ଷଣ, ଜଳ ଉପଯୋଗ ବ୍ୟବସ୍ଥା ଓ ମୃତ୍ତିକା ପରୀକ୍ଷା କାର୍ଯ୍ୟଗୁଡ଼ିକୁ ଆହୁରି ବ୍ୟାପକ କରାଯିବ । ଫଳରେ ରାଜ୍ୟର ମୃତ୍ତିକା ଓ ଜଳ ସଂପଦର ଯଥାଯଥ ବିକାଶ ହେବା ସଙ୍ଗେ ସଙ୍ଗେ ତାହାର ସଦୁପଯୋଗ କରାଯାଇ ପାରିବ । ଗବେଷଣା ଫଳରେ ଅନେକଗୁଡ଼ିଏ ଅଧିକ ଅମଳକ୍ଷମ ଉନ୍ନତ କିସମର ଧାନ, ଗହମ, ମାଣ୍ଡିଆ ଓ ମୁଗ ବାହାର କରାଯାଇ ପାରିଛି । ରାଜ୍ୟର ବିଭିନ୍ନ କୃଷି ମଣ୍ଡଳରେ ରହିଥିବା ବିଭିନ୍ନ ସମସ୍ୟା ନିରୂପଣ କରିବା ଲାଗି ପରୀକ୍ଷା ନିରୀକ୍ଷା କରାଯାଉଛି । ଅଞ୍ଚଳ ବିକାଶ କାର୍ଯ୍ୟକ୍ରମ ଅଧୀନରେ ଫଳବୃକ୍ଷର ପ୍ରସାର ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଛି । କ୍ଷୁଦ୍ର କୃଷୀ ଉନ୍ନୟନ ସଂସ୍ଥା (S. F. D. A.) ଏବଂ ନାମମାତ୍ର କୃଷୀ ଓ କୃଷି ଶ୍ରମିକ ଉନ୍ନୟନ ସଂସ୍ଥା (M. F. A. L.) କ୍ଷୁଦ୍ର ତଥା ନାମମାତ୍ର କୃଷୀ ଓ କୃଷିଶ୍ରମିକ ମାନଙ୍କୁ ଯଥା ସମ୍ଭବ ସବୁପ୍ରକାର ସାହାଯ୍ୟ କରୁଛନ୍ତି । କୃଷି ବିକାଶ ନିମନ୍ତେ ଆଗାମୀ ବର୍ଷର ବଜେଟରେ ରାଜ୍ୟ ଯୋଜନାରେ 11·17 କୋଟି ଟଙ୍କାର ବ୍ୟୟ ବରାଦ କରା-ଯାଇଛି ଏବଂ କେନ୍ଦ୍ରୀୟ ଯୋଜନା ସମେତ ଏ ବାବଦରେ ମୋଟ ବ୍ୟୟ ଅଟକଳ 14·43 କୋଟି ଟଙ୍କା ହୋଇପାରେ ।

6·1. । କୃଷୀମାନଙ୍କୁ ଋଣ ଓ ଆର୍ଥିକ ସାହାଯ୍ୟ ଦେବାଲାଗି ରାଜ୍ୟରେ ବଢ଼ିଉଠି ହୋଇ ରହିଥିବା ସମବାୟ ସମିତିଗୁଡ଼ିକ ଏକ ବିଶେଷ ଭୂମିକା ଗ୍ରହଣ କରିଛନ୍ତି । ଚଳିତ ବର୍ଷରେ 31 କୋଟି ଟଙ୍କା ସମବାୟ ଋଣ ଦିଆଯାଇଥିବା ସ୍ଥଳେ 1976-77 ଆର୍ଥିକ ବର୍ଷରେ 35 କୋଟି ଟଙ୍କା ସମବାୟ ଋଣ ଦେବାଲାଗି ପ୍ରସ୍ତାବ ରଖାଯାଇଛି । ଏହି ପ୍ରସ୍ତାବିତ ଋଣ ମଧ୍ୟରୁ 25 କୋଟି ଟଙ୍କା ସ୍ୱଳ୍ପ ମିଆଦି ଋଣ ଏବଂ 10 କୋଟି ଟଙ୍କା ମଧ୍ୟମ ତଥା ଦୀର୍ଘ ମିଆଦୀ ଋଣ । 1976 ଜୁଲାଇ ମାସରେ ଆରମ୍ଭ ହେଉଥିବା ସମବାୟ ବର୍ଷ ମଧ୍ୟରେ ସମବାୟ ସମିତି-ଗୁଡ଼ିକର ସଭ୍ୟ ସଂଖ୍ୟା 19·65 ଲକ୍ଷ୍ୟରେ ପହଞ୍ଚିବ ବୋଲି ଆଶା କରାଯାଏ ଏବଂ ଏହା ଫଳରେ ପ୍ରାୟ ଶତକଡ଼ା 70 ଭାଗ କୃଷକ ପରିବାର ସମବାୟ ପରିସରଭୁକ୍ତ ହେବେ । ଗ୍ରାମାଞ୍ଚଳ ଲୋକମାନଙ୍କର ସମସ୍ତ ପ୍ରକାର ବ୍ୟାଙ୍କ ସୁବିଧା ଓ ଋଣ ସ୍ପୃହା ପୂରଣ କରିବା ନିମନ୍ତେ ରାଜ୍ୟରେ 4ଟି ଗ୍ରାମ୍ୟ ବ୍ୟାଙ୍କ ପ୍ରତିଷ୍ଠା କରିବାର କାର୍ଯ୍ୟକ୍ରମ ରହିଛି । ପ୍ରଥମ ଗ୍ରାମ

ବ୍ୟାଙ୍କ୍‌ଟି ପୂର୍ବ ଜିଲ୍ଲାରେ ଗତ କିଛି ଦିନତଳେ ଉଦ୍‌ଘାଟନ କରାଯାଇଛି । ଆସନ୍ତା ବର୍ଷ ମଧ୍ୟରେ କଣ୍ଟ୍ରୋଲ ଲୁଗା ଅନ୍ୟାନ୍ୟ ସାମଗ୍ରୀ ବଣ୍ଟନ ଦାୟିତ୍ୱରେ ଥିବା ସମବାୟ ଖୁଚୁରା ଦୋକାନ ଗୁଡ଼ିକ ରାଜ୍ୟର ସମସ୍ତ ଗ୍ରାମପଞ୍ଚାୟତମାନଙ୍କରେ ଖୋଲିବାର କାର୍ଯ୍ୟକ୍ରମ ରହିଛି ସମବାୟ ବ୍ୟବସ୍ଥାର ରହିଥିବା ବିଭିନ୍ନ ତ୍ରୁଟି ଓ ଅସୁବିଧା ଏବଂ ସମାସ୍ୟା ଚିହ୍ନଟ କରିବାପାଇଁ ଓ ଆବଶ୍ୟକ ସ୍ଥଳେ ସେ ସବୁକୁ ସୁଧାରିବା ନିମନ୍ତେ କିଛି ପଦକ୍ଷେପ ନିଆଯିବା ଆବଶ୍ୟକ, ଯେଉଁଥିପାଇଁ ବିଭିନ୍ନ ସମାଧାନଗୁଡ଼ିକର ଅନୁଶୀଳନକରି ପରାମର୍ଶ ଦେବାକୁ ସରକାର ଏକ କମିଟି ଗଠନ କରିଛନ୍ତି ।

7. ପଶୁପାଳନ, ଦୁଗ୍ଧ ଉତ୍ପାଦନ ଓ ମତ୍ସ୍ୟ ଗୃହ ପଶୁପାଳନ କାର୍ଯ୍ୟକ୍ରମ ନିମନ୍ତେ ଆସନ୍ତା ବର୍ଷ ରାଜ୍ୟ ଯୋଜନାରେ 55·00 ଲକ୍ଷ ଓ କେନ୍ଦ୍ରୀୟ ଯୋଜନାରେ 50·69 ଲକ୍ଷ ଟଙ୍କାର ବ୍ୟବସ୍ଥା କରାଯାଇଛି । ଏହା ଫଳରେ ସଘନ ଗୋ-ଉନ୍ନୟନ ଯୋଜନା ଅନୁଯାୟୀ ରାଜ୍ୟର 4ଟି ଜିଲ୍ଲାରେ କାର୍ଯ୍ୟକାରୀ ହେଉଥିବା ଜାତିଆ ଗାଈଗୋରୁ ଉନ୍ନତିର କାର୍ଯ୍ୟକ୍ରମକୁ ସୁଦୃଢ଼ କରିବା ସଙ୍ଗେ ସଙ୍ଗେ ଅଧିକ ଦୁଗ୍ଧ ଉତ୍ପାଦନ ପାଇଁ ତଥା ଉନ୍ନତ ପ୍ରଜନନ କାର୍ଯ୍ୟକ୍ରମ ଏବଂ ଗୋରୁ ଗାଈଙ୍କର ସ୍ୱାସ୍ଥ୍ୟୋନ୍ନତିପାଇଁ ରାଜ୍ୟରେ ଥିବା ପଶୁ ଚିକିତ୍ସାଳୟର ସଂପ୍ରସାରଣ କରାଯାଇପାରିବ । ଉନ୍ନତ ପ୍ରଜନନ କାର୍ଯ୍ୟକ୍ରମକୁ ବିଶେଷ ସକ୍ରିୟ ଓ ବ୍ୟାପକ କରିବା ନିମନ୍ତେ 1976-77 ବର୍ଷର ପ୍ରାରମ୍ଭରେ ଡେନମାର୍କ ସରକାରଙ୍କ ସହାୟତାରେ ଏକ ଫ୍ରୋଜନ୍ ସିମେନ୍ ବ୍ୟାଙ୍କ୍ ପ୍ରତିଷ୍ଠା କରାଯିବାର ପ୍ରସ୍ତାବ ରହିଛି । ଛୋଟ ଛୋଟ ତଥା ନାମମାତ୍ର କୃଷୀମାନେ ଯେପରି ଜାତିଆ ଗୋରୁ ଗାଈଙ୍କର ରକ୍ଷଣାବେକ୍ଷଣ କରିପାରିବେ, ସେଥି ନିମନ୍ତେ ସାହାଯ୍ୟ ଆକାରରେ ଗୋ-ଖାଦ୍ୟ ଯୋଗାଇ ଦିଆଯାଉଛି । କୁକୁଡ଼ା ସଂଖ୍ୟା ମଧ୍ୟ ବୃଦ୍ଧି ପାଇବାରେ ଲାଗିଛି । 20ଟି କୁକୁଡ଼ା ପାଳନ ସମବାୟ ସମିତି ଗଠନ କରାଯାଇଛି ଏବଂ ଏହି ସମିତିମାନଙ୍କ କୁକୁଡ଼ା କେନ୍ଦ୍ରଗୁଡ଼ିକର ଉତ୍ପାଦର ବିକ୍ରୀବଟାର ସୁବିଧା ନିମନ୍ତେ ଗୋଟିଏ ସମବାୟ ବିକ୍ରୀକେନ୍ଦ୍ର ଫେଡ଼େରେସ ପ୍ରତିଷ୍ଠା କରାଯିବାର ପ୍ରସ୍ତାବ ରହିଛି 1975-76 ଶେଷ ସୁଦ୍ଧା ରାଜ୍ୟରେ ଅଣ୍ଡା ଉତ୍ପାଦନ 252 ନିୟୁତରୁ ଅଧିକ ହେବ ବୋଲି ଅନୁମାନ । ରାଜ୍ୟରେ ଦୁଗ୍ଧ ଉତ୍ପାଦନ କାର୍ଯ୍ୟକ୍ରମକୁ ବ୍ୟାପକ କରିବା ନିମନ୍ତେ ଜିଲ୍ଲାସ୍ତରୀୟ ସମବାୟ ଦୁଗ୍ଧ ଉତ୍ପାଦନ ସମିତିମାନ ଗଢ଼ାଯାଇ ପ୍ରାଥମିକ ଦୁଗ୍ଧ ଉତ୍ପାଦନକାରୀ ସମବାୟ ସମିତିଗୁଡ଼ିକୁ ସଶକ୍ତ କରିବା ନିମନ୍ତେ ପ୍ରସ୍ତାବ ରହିଛି । ରାଜ୍ୟରେ ଏକ ଦୁଗ୍ଧ ଉନ୍ନୟନ କର୍ପୋରେସନ୍ ଗଠନ ଦିଗରେ ପ୍ରାରମ୍ଭିକ ପଦକ୍ଷେପ ସ୍ୱରୂପ କୃଷି ଶିଳ୍ପ କର୍ପୋରେସନ ଫୁଲନଖରାସ୍ଥିତ ଦୁଗ୍ଧ ଯୋଗାଣ କେନ୍ଦ୍ରକୁ ହାତକୁ ନେଇଛନ୍ତି । 1975-76 ବର୍ଷ ଶେଷ ସୁଦ୍ଧା ପ୍ରାୟ ଦୁଇ ଲକ୍ଷ ମେଟ୍ରିକ୍ ଟନ୍ ଦୁଗ୍ଧ ଉତ୍ପାଦନର ସମ୍ଭାବନା ରହିଛି । ଗୋ-ଖାଦ୍ୟ ଉତ୍ପାଦନକୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ କୃଷୀମାନଙ୍କୁ, ବିଶେଷକରି ଯେଉଁମାନେ ଶଙ୍କର ଜାତୀୟ ଦୁଧିଆଳୀ ଗାଈ ରଖିଛନ୍ତି,

ସେମାନଙ୍କୁ ବନ୍ଧନ ଓ ଘାସ ଗୃହ ଆଦ କମ୍ ମୂଲ୍ୟରେ ଯୋଗାଇ ଦିଆଯାଉଅଛି । ଗୋ-ମହିଷାଦ ପଶୁ ସମ୍ପଦ ବୃଦ୍ଧି ପାଇଁ ଦୁଗ୍ଧ ଉତ୍ପାଦନ ବିକାଶ ଘଟିଲେ ଗ୍ରାମାଞ୍ଚଳରେ କର୍ମ ସଂସ୍ଥାନ ସୁଯୋଗର ପରିସର ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଅଧିକ ଆୟର ପଥ ସୁଗମ ହେବ । ବିଶେଷ କରି ଗାଁ ଗହଳର ଛୋଟ ଛୋଟ ଚାଷୀ ଏବଂ ନାମମାତ୍ର ଚାଷୀମାନେ ଉପକୃତ ହୋଇ ପାରିବେ ।

7·1. 1976-77 ରାଜ୍ୟ ଯୋଜନାରେ ମତ୍ସ୍ୟ ଚାଷର ଉନ୍ନୟନ ଓ ମତ୍ସ୍ୟ ଉତ୍ପାଦନ ବାବଦକୁ 40 ଲକ୍ଷ ଟଙ୍କାର ବ୍ୟୟ ବରାଦ ହୋଇଛି । ମଧୁର ମାଛ ଉତ୍ପାଦନ 27ହଜାର ମେଟ୍ରିକ ଟନକୁ ଏବଂ ସମୁଦ୍ରମାଛ 25 ହଜାର ମେଟ୍ରିକ୍‌ଟନ୍‌କୁ ବଢ଼ାଇବା ନିମନ୍ତେ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । 1975-76 ରେ ଉଭୟ ଆଭ୍ୟନ୍ତରୀଣ ଜଳାଶୟ ଗୁଡ଼ିକରୁ ଏବଂ ସମୁଦ୍ରରୁ ମାଛ ଉତ୍ପାଦନ ମୋଟ 46,000 ମେଟ୍ରିକ ଟନ୍ ହେବ ବୋଲି ଅନୁମାନ । ଅଧିକ ମତ୍ସ୍ୟ ଉତ୍ପାଦନ କାର୍ଯ୍ୟକ୍ରମକୁ ସଫଳ କରିବା ଉଦ୍ଦେଶ୍ୟରେ 1976-77 ବର୍ଷରେ 440 ନିୟୁତ ଯାଆଁଳ ସଂଗ୍ରହ କରାଯିବ ଏବଂ ଏଥିମଧ୍ୟରୁ ବିସ୍ତାରିତ ମାଛ ଯାଆଁଳ ଫାର୍ମ-ଗୁଡ଼ିକରୁ କୃତ୍ରିମ ପ୍ରଣାଳୀ (ଇନ୍‌ଡ୍ୟୁସଡ୍ ବ୍ରିଡ଼ିଂ)ରେ 67 ନିୟୁତ ଯାଆଁଳ ଉତ୍ପାଦନ କରାଯିବ । ସମୁଦ୍ରରୁ ମାଛ ଧରୁଥିବା କେବଳ ଧୀବରମାନେ ଯେପରି ଅଧିକ ମାଛ ଧରି ପାରିବେ, ସେଥିପାଇଁ ସେମାନଙ୍କ ଦେଶୀ ଡଙ୍ଗା ଓ ଜାଲ କିଣିବା ନିମନ୍ତେ ଅର୍ଥଲଗାଣ ସଂସ୍ଥାମାନଙ୍କ ପକ୍ଷରୁ ଅର୍ଥ ଯୋଗାଇ ଦିଆଯିବ ଏବଂ ଏ ଯୋଜନାରେ ସେମାନଙ୍କୁ ଉତ୍ସାହିତ କରିବା ନିମନ୍ତେ ଶତକଡ଼ା 25 ଟଙ୍କା ସାହାଯ୍ୟ ଆକାରରେ ମିଳିବ । କ୍ଷୁଦ୍ରନିଆ ପ୍ରାଥମିକ ମତ୍ସ୍ୟଜୀବୀ ସମବାୟ ସମିତି ନିମନ୍ତେ 69·15 ଲକ୍ଷ ଟଙ୍କାର ଏକ ପରିକଳ୍ପନା ଏବଂ ରାମଲକ୍ଷ୍ମୀ ସମବାୟ ସମିତି ପାଇଁ 61 ଲକ୍ଷ ଟଙ୍କାର ଆଉ ଏକ ପରିକଳ୍ପନା କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ କୃଷି ପୁନଃ ଅର୍ଥ ଲଗାଣ କର୍ପୋରେସନ୍ (ଏଗ୍ରିକଲଚରାଲ ରିଫାଇନାନ୍‌ସ କର୍ପୋରେସନ୍)ଙ୍କ ସହ କଥାବାର୍ତ୍ତା କରାଯାଉଛି ଏହି ଦୁଇଟିଯାକ ପରିକଳ୍ପନା କାର୍ଯ୍ୟକାରୀ କରାହେଲେ ସମୁଦ୍ରରୁ ଅଧିକ ଏକ ହଜାର ମେଟ୍ରିକ ଟନ୍ ମାଛ ଉତ୍ପାଦନ କରାଯାଇ ପାରିବ । 1976-77 ବର୍ଷରେ 208 ଜଣ ପ୍ରାର୍ଥୀଙ୍କୁ ରାଜ୍ୟ ମଧ୍ୟରେ ତଥା ରାଜ୍ୟ ବାହାରେ ମାଛଚାଷ ସମ୍ପର୍କରେ ତାଲିମ ଦିଆଯିବ । ବିଦେଶୀ ମତ୍ସ୍ୟ ସମ୍ପର୍କରେ ଗବେଷଣା ଓ ଜଳକୃଷ୍ଣ ଧରଣର ମତ୍ସ୍ୟର ଉପଯୋଗିତା ସମ୍ପର୍କରେ ଜୟପୁର ଓ ପାରାଦୀପଠାରେ ସମନ୍ୱିତ ଗବେଷଣା କେନ୍ଦ୍ର ମାନ ଖୋଲାଯିବ । ଏ ବାବଦ ମୋଟ ବ୍ୟୟର ଶତକଡ଼ା 75 ଭାଗ ଅର୍ଥ ଭାରତୀୟ କୃଷି ଗବେଷଣା ପରିଷଦରୁ ସାହାଯ୍ୟ ଆକାରରେ ମିଳିବ । 84·34 ଲକ୍ଷ ଟଙ୍କା ବ୍ୟୟରେ ଧାମରା ମାଛଧରା ବନ୍ଦରର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଛି । ଏ ସମସ୍ତ ଉଦ୍ୟମ ଫଳରେ ରାଜ୍ୟର ମତ୍ସ୍ୟ ଉତ୍ପାଦନ ଓ ଚାହିଦା ବୃଦ୍ଧି ପାଇବ ।

୮ । ଜଳସେଚନ ଓ ବିଦ୍ୟୁତ୍ କ୍ଷେତ୍ରରେ ଉତ୍ପାଦନ ଓ ଉତ୍ପାଦିକା ଶକ୍ତିର ଅଭିବୃଦ୍ଧି ପାଇଁ ବର୍ତ୍ତମାନ ଯେଉଁ ଜଳ ବିହନ ସାର ପ୍ରୟୋଗର ବିପ୍ଳବ ଦେଖା ଦେଇଛି, ତା' ମଧ୍ୟରେ ଜଳସେଚନର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଅଧିକରୁ ଅଧିକ ଅଞ୍ଚଳ ଜଳସେଚନ ପରିସର ମଧ୍ୟକୁ ଆଣିବା ନିମନ୍ତେ ଆମେ ଯେଉଁ ନୀତି ଗ୍ରହଣ କରିଛୁ, ତା'ଦ୍ୱାରା ତ ଅଗ୍ରଗତି ହୋଇ ପାରିଛି । 1974-75 ବର୍ଷ ଶେଷସୁଦ୍ଧା ବୃହତ ଏବଂ ମଧ୍ୟମ ଧରଣର ଜଳସେଚନ ଯୋଜନାଗୁଡ଼ିକର ସାମର୍ଥ୍ୟ 7·88 ଲକ୍ଷ ହେକ୍ଟର ଥିଲା । 1975-76 ବର୍ଷରେ ଏହି ସାମର୍ଥ୍ୟ 8·68 ଲକ୍ଷ ହେକ୍ଟରକୁ ବୃଦ୍ଧି ପାଇବ ଏବଂ 1976-77 ବର୍ଷରେ ଆଉ ଅଧିକ 35 ହଜାର ହେକ୍ଟର ଜମିକୁ ଜଳସେଚିତ କରିବା ଲକ୍ଷ୍ୟ ରହିଛି । 1976-77 ବର୍ଷ ମଧ୍ୟରେ ବୃହତ ଓ ମଧ୍ୟମ ଧରଣର ଜଳସେଚନ ପରିକଳ୍ପନା ବାବଦରେ 23 କୋଟି ଟଙ୍କା ବ୍ୟୟ କରାଯିବ । ତନ୍ମଧ୍ୟରେ 'ପୋଟେରୁ ପ୍ରୋଜେକ୍ଟ' ବାବଦକୁ 3 କୋଟି ଟଙ୍କା ଅନ୍ତର୍ଭୁକ୍ତ । ଏହା 1975-76 ବର୍ଷର ବ୍ୟୟ 15·05 କୋଟି ଟଙ୍କା ଉପରେ ଶତକଡ଼ା 64 ଭାଗ ଅଧିକ । ବନ୍ୟାଜନିତ କ୍ଷତିର ମରାମତି ଓ ପୁନରୁଦ୍ଧାର କାର୍ଯ୍ୟପାଇଁ ବ୍ୟୟ ହେଉଥିବା ଅର୍ଥ ଏହି ହିସାବର ଅନ୍ତର୍ଭୁକ୍ତ ନୁହେଁ । କ୍ଷୁଦ୍ର ଜଳସେଚନ ଯୋଜନା, ସେଚ-କୂପ ଓ ଉଠା ଜଳସେଚନ ଯୋଜନାଗୁଡ଼ିକ ଫଳରେ 1976-77 ବର୍ଷ ଶେଷସୁଦ୍ଧା 3·70 ଲକ୍ଷ ହେକ୍ଟର ଜମିରେ ଜଳସେଚନ କରାଯାଇ ପାରିବ । ଆସନ୍ତା ବର୍ଷପାଇଁ କ୍ଷୁଦ୍ର ଜଳସେଚନ ଓ ଉଠା ଜଳସେଚନ ବାବଦକୁ 6 କୋଟି ଟଙ୍କାର ବ୍ୟୟ ବ୍ୟବସ୍ଥା କରାଯାଇଛି । ଉଠା ଜଳସେଚନ କର୍ପୋରେସନ 1976-77 ବର୍ଷରେ 45 ହଜାର ବର୍ଗ କିଲୋମିଟର ଅଞ୍ଚଳରେ ଭୂ-ତଳ ଜଳ ସର୍ଭେ କରିବାର ପ୍ରସ୍ତାବ ରଖିଛନ୍ତି ଓ ଏହାକୁ ମିଶାଇ 1976-77 ବର୍ଷ ଶେଷସୁଦ୍ଧା 1,45,609 ବର୍ଗ କିଲୋମିଟର ଅଞ୍ଚଳରେ ସର୍ଭେ କରାଯାଇ ସାରିଥିବ । ଗୋଦାବରୀ ଓ ସୁବର୍ଣ୍ଣରେଖା ଜଳ ରାଜିନାମା ଆମ ରାଜ୍ୟପକ୍ଷରେ ଅତୀବ ଗୁରୁତ୍ୱପୂର୍ଣ୍ଣ । ଏଥି ନିମନ୍ତେ ମୁଁ ଆମର ମୁଖ୍ୟମନ୍ତ୍ରୀଙ୍କୁ ତାଙ୍କର ନିରବଚ୍ଛିନ୍ନ ଉଦ୍ୟମପାଇଁ ଆନ୍ତରିକ ଅଭିନନ୍ଦନ ଜ୍ଞାପନ କରୁଛି । ଏହା ଫଳରେ ରାଜ୍ୟର ଜଳସେଚନ ଯୋଜନାର ପରିସର ଅଧିକ ବୃଦ୍ଧି ପାଇବ; ବିଶେଷକରି କଳାହାଣ୍ଡି ଓ ମୟୂରଭଞ୍ଜଭଳି ଅନୁନ୍ନତ ଜିଲ୍ଲା ଉପକୃତ ହେବେ ।

୮·1 । ମାନ୍ୟବର ସଦସ୍ୟମାନେ ଅବଗତ ଅଛନ୍ତି ଯେ ଭାରତର ଜଳ ବିଦ୍ୟୁତ୍ ସମ୍ବଳରେ ବହୁସଂଖ୍ୟକରେ ସମୃଦ୍ଧ କେତୋଟି ରାଜ୍ୟପାଳଙ୍କ ମଧ୍ୟରେ ଓଡ଼ିଶା ଅନ୍ୟତମ । ବିଦ୍ୟୁତ୍ ଶକ୍ତିର ବିକାଶ ଓ ତାହାର ସୁଲଭତା ବିଗତ କେତେ ବର୍ଷ ଧରି ଧାରାବାହିକଭାବେ ହୋଇ ନାହିଁ । ରାଜ୍ୟର ବ୍ୟବହାର ଉପଯୋଗୀ ବିଦ୍ୟୁତ୍ ଶକ୍ତି ଉତ୍ପାଦନର ସାମର୍ଥ୍ୟ ଦ୍ରୁତ

ଯୋଜନା ଶେଷ ସମୟରେ 295 ମେଗାଓ୍ୱାଟ୍ ଥିଲା । ଏହା 1974-1975 ବର୍ଷରେ 336 ମେଗାଓ୍ୱାଟକୁ ବୃଦ୍ଧି ପାଇଥିଲା ଓ 1975-1976 ଶେଷସୁଦ୍ଧା 375 ମେଗାଓ୍ୱାଟକୁ ବୃଦ୍ଧି ପାଇବ । ଆସନ୍ତା ବର୍ଷ ଏହା ସାମର୍ଥ୍ୟ 400 ମେଗାଓ୍ୱାଟ୍‌କୁ ବୃଦ୍ଧି ପାଇବ ଏବଂ ପ୍ରତିଷ୍ଠିତ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ସାମର୍ଥ୍ୟ 921·5 ମେଗାଓ୍ୱାଟ୍ ହେବ । ରାଜ୍ୟ ଭିତରେ ବିଦ୍ୟୁତ୍ ଶକ୍ତିର ବ୍ୟବହାର ମଧ୍ୟ ବଢ଼ି ଚାଲିଛି । 1976-1977 ବର୍ଷର ଅଭ୍ୟନ୍ତରୀଣ ବିକ୍ରୟ ବାବଦରୁ 25 କୋଟି ଟଙ୍କା ଆୟ ହୋଇପାରେ । 1974-1975 ବର୍ଷରେ ଏଭଳି ଆୟର ପରିମାଣ 16 କୋଟି ଟଙ୍କାରୁ କିଛି ଅଧିକ ଥିଲା । ରେଙ୍ଗାଲି, ଅପର କୋଲାବ ଓ ତାଳଚେର ତାପଜ ବିଦ୍ୟୁତ୍ କେନ୍ଦ୍ରର ସଂପ୍ରସାରଣ କାର୍ଯ୍ୟ ଯଥାଶୀଘ୍ର ଶେଷ କରିବା ରାଜ୍ୟ ବିଦ୍ୟୁତ୍ ବିକାଶ ଯୋଜନାର ଅନ୍ତର୍ଭୁକ୍ତ । ଆସନ୍ତା ଆର୍ଥିକ ବର୍ଷରେ ବିଦ୍ୟୁତ ବିକାଶ ବାବଦକୁ 55·33 କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି । ଚଳିତ ବର୍ଷର 37·75 କୋଟି ଟଙ୍କାର କାର୍ଯ୍ୟକ୍ରମ ତୁଳନାରେ ଏହା ଶତକଡ଼ା 46·56ଭାଗ ଅଧିକ । ଗ୍ରାମ୍ୟ ବିଦ୍ୟୁତିକରଣ କାର୍ଯ୍ୟକ୍ରମ ଅନୁସାରେ ପଞ୍ଚମ ପଞ୍ଚବାର୍ଷିକ ଯୋଜନାରେ 1976-77 ବର୍ଷର ଶେଷ ସୁଦ୍ଧା 5,000ରୁ ଅଧିକ ଗ୍ରାମ ଓ ପଲ୍ଲୀକୁ ବିଦ୍ୟୁତ୍ ଶକ୍ତି ଯୋଗାଇ ଦିଆଯାଇପାରିବ । ଏହା ଫଳରେ ବିଦ୍ୟୁତ୍ ଯୋଗାଣ ପାଇ ପାରୁଥିବା ମୋଟ ଗ୍ରାମର ସଂଖ୍ୟା 14,329 ହେବ ।

9 । ଶିଳ୍ପ ଓ ବାଣିଜ୍ୟ ବିକାଶ ରାଜ୍ୟ ଅର୍ଥନୀତିର ବହିର୍ମୁଖୀକରଣ ଏବଂ ଶିଳ୍ପ ବିକାଶ ପ୍ରକ୍ରିୟା ଅଙ୍ଗାଙ୍ଗୀଭାବେ ଜଡ଼ିତ । ବିଭିନ୍ନ ପ୍ରତିବନ୍ଧକ ସତ୍ତ୍ୱେ ସରକାର, ସରକାରୀ ତଥା ମିଳିତ ଉଦ୍ୟୋଗରେ ଶିଳ୍ପ କ୍ଷେତ୍ରରେ ବିପୁଳ ପୁଞ୍ଜି ବିନିଯୋଗ କରିବା ନିମନ୍ତେ ଅନେକ ଏକ ନୀତି ଗ୍ରହଣ କରିଅଛନ୍ତି । 1975-1976 ବର୍ଷରେ 'ଇପିକଲ' ସାଧାରଣ ଅଂଶ ବିଶେଷରେ 0·42 କୋଟି ଟଙ୍କା ବିନିଯୋଗକରି 6ଟି ମିଳିତ ଉଦ୍ୟୋଗକୁ ସହାୟତା କରିଛନ୍ତି । 1976-1977 ବର୍ଷରେ ଅନ୍ୟୁନ ଆଉ ତିନି କୋଟି ମିଳିତ ଉଦ୍ୟୋଗ ବିକାଶ ନିମନ୍ତେ ଉକ୍ତ କର୍ପୋରେସନ କାର୍ଯ୍ୟକ୍ରମ ରଖିଛନ୍ତି । 1975-1976 ବର୍ଷରେ ପାଞ୍ଚ ଜଣ ବେସରକାରୀ ଶିଳ୍ପ ଉଦ୍ୟୋଗୀ ସେମାନଙ୍କର ଶିଳ୍ପ ସଂସ୍ଥାପାଇଁ 'ଇପିକଲ'ଠାରୁ ସହାୟତା ଲାଭ କରିଥିଲେ । 1976-1977 ବର୍ଷରେ ଆଉ ଅଧିକା 13 ଜଣ ଶିଳ୍ପୋଦ୍ୟୋଗୀଙ୍କୁ ସାହାଯ୍ୟ କରିବାର ଯୋଜନା ରହିଛି । ଶିଳ୍ପାଞ୍ଚଳ ବିକାଶ ଯୋଜନା ଅନୁସାରେ ଭୁବନେଶ୍ୱରରେ ଦୁଇ ଶହ ଏକର ଓ ରାଉରକେଲାରେ ଆଠ ଶହ ତିନି ଏକର ପରିମିତ ଅଞ୍ଚଳରେ ଯେଉଁ ଶିଳ୍ପାଞ୍ଚଳ ବ୍ୟୁହ ପ୍ରତିଷ୍ଠା କରାଯାଇଛି, ତାହା ଆଗ୍ରହୀ ଶିଳ୍ପୋଦ୍ୟୋଗୀମାନଙ୍କୁ ଆବଶ୍ୟକ ସୁବିଧା ସୁଯୋଗ ଯୋଗାଇବ । ଶିଳ୍ପ ଉନ୍ନୟନ କର୍ପୋରେସନ ଏବଂ N. A.F E.ଙ୍କର ମିଳିତ ଉଦ୍ୟୋଗରେ କୋଣାର୍କ ଜୁଟ୍ ଲିମିଟେଡ୍ ନାମକ ଯେଉଁ

ଝୋଟକଲ ପ୍ରତିଷ୍ଠା କରାଯାଉଛି ତାହାର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଛି । ତାଳଚେରଠାରେ କେନ୍ଦ୍ରସରକାରଙ୍କର 31 କୋଟି ଟଙ୍କା ବ୍ୟୟ ସମ୍ବଳିତ ଫର୍ମଡ୍ କୋକ୍ ପ୍ଲାଣ୍ଟ ଓ ସାରକଳ ପରିକଳ୍ପନାର କାମ ଆଗେଇ ଚାଲିଛି । 1975 ଡିସେମ୍ବର ମାସରେ ଶିଳ୍ପ ଉନ୍ନୟନ କର୍ପୋରେସନର ସ୍ଲାଗ ସିମେଣ୍ଟ କାରଖାନା 38,400 ମେଟ୍ରିକ୍ ଟନ ସିମେଣ୍ଟ ଉତ୍ପାଦନ କରି ଏକ ରେକର୍ଡ ସୃଷ୍ଟି କରିଥିବାରୁ କେନ୍ଦ୍ର ଶିଳ୍ପ ଉନ୍ନୟନ ମନ୍ତ୍ରଣାଳୟର ପ୍ରଶଂସାଲାଭ କରିଥିଲେ । ଶିଳ୍ପ ଉନ୍ନୟନ କର୍ପୋରେସନର ଅନ୍ୟ ଦୁଇଟି ଶିଳ୍ପ ସଂସ୍ଥା ଯଥା:—କଳିଙ୍ଗ ଆଇରନ୍ ଓ୍ୱାର୍କସ ଏବଂ ଫେରୋକ୍ରୋମ ପ୍ଲାଣ୍ଟର ଉତ୍ପାଦନ ଦ୍ରବ୍ୟ ରପ୍ତାନି ବଜାରକୁ ଗଲାଣି ଏବଂ 2·65 କୋଟି ଟଙ୍କା ମୂଲ୍ୟର 25 ହଜାର ମେଟ୍ରିକ ଟନ ପିଗ ଆଇରନ ଓ 1·50 କୋଟି ଟଙ୍କାର 1,760 ମେଟ୍ରିକ୍ ଟନ ଫେରୋକ୍ରୋମ ବିଦେଶକୁ ପଠାଗଲାଣି । ଯେଉଁ କେତେକ ଶିଳ୍ପ ସଂସ୍ଥା ଚଳିତ ବର୍ଷ ମଧ୍ୟରେ ଉତ୍ପାଦନକ୍ଷମ ହୋଇଛନ୍ତି ସେଗୁଡ଼ିକ ମଧ୍ୟରେ ରାଉରକେଲାଠାରେ ଏସିଆଟିକ ଅକ୍ସିଜେନ ପ୍ରାଇଭେଟ ଲିମିଟେଡଙ୍କ ଅକ୍ସିଜେନ ପ୍ଲାଣ୍ଟ, ତାଳଚେରଠାରେ ଇସ୍ପାତ କାଷ୍ଟିଙ୍ଗ କାରଖାନା, ଝୁପୁସାଂରେ ସ୍କ୍ରୁକ କାରଖାନା, ସମ୍ବଲପୁରଠାରେ ଶାଳ ମଞ୍ଜି ତେଲ ନିଷ୍କାସନ କାରଖାନା ଏବଂ ବରଗଡଠାରେ ପ୍ରତିଷ୍ଠା କରାଯାଇଥିବା ଚୋରା ସୂତା କଳର 18,400 ତାକୁଡ଼ି ବିଶିଷ୍ଟ ସମ୍ପ୍ରସାରଣସ୍କିମଟି ପ୍ରଭୃତି ଅନ୍ତର୍ଭୁକ୍ତ । ଓଡ଼ିଶା କ୍ଷୁଦ୍ର ଶିଳ୍ପ କର୍ପୋରେସନ 1975-1976 ବର୍ଷରେ 215 ଲକ୍ଷ ଟଙ୍କା ମୂଲ୍ୟର କଞ୍ଚାମାଲ କ୍ଷୁଦ୍ର ଶିଳ୍ପ ସଂସ୍ଥାଗୁଡ଼ିକୁ ସୁଲଭ ଦରରେ ଯୋଗାଇ ଦେଇଥିଲେ ଏବଂ ଆସନ୍ତା ବର୍ଷମାନଙ୍କରେ ମଧ୍ୟ ଏଭଳି ଅନ୍ୟାନ୍ୟ ଆନୁଷଙ୍ଗିକ ସାହାଯ୍ୟ ଯୋଗାଇବ । ରାଜ୍ୟର ବିଭିନ୍ନ ବିକାଶୋନ୍ମୁଖୀ ସ୍ଥାନମାନଙ୍କରେ ଶିଳ୍ପାଞ୍ଚଳ ପ୍ରତିଷ୍ଠା କାମରେ ମଧ୍ୟ କ୍ଷୁଦ୍ର ଶିଳ୍ପ ଉନ୍ନୟନ କର୍ପୋରେସନ କାର୍ଯ୍ୟକ୍ଷମ ରହିଛନ୍ତି । କ୍ଷୁଦ୍ର ତଥା ଗ୍ରାମ୍ୟ ଶିଳ୍ପ ସଂସ୍ଥାଗୁଡ଼ିକ State-Aid to Industries Act ଅନୁସାରେ ଋଣ, ରାଜ୍ୟ ସରକାରଙ୍କ ଦ୍ୱାରା ଅଂଶଧନ ଦେୟ, ବଜାର ସମ୍ବନ୍ଧୀୟ ତଥ୍ୟ ଓ ଯୋଗାଣ କଞ୍ଚାମାଲ ମୂଲ୍ୟସମୀକରଣ ବାବଦକୁ ସବ୍‌ସିଡି ଇତ୍ୟାଦି ଆକାରରେ ସାହାଯ୍ୟ ପାଉଛନ୍ତି । ମୂଲ୍ୟାଧିମାନ, ରେଟ୍ କଣ୍ଟ୍ରାକ୍ଟ, ସାମୂହିକ ରିପୋର୍ଟ ଉତ୍ସାହମୂଳକ ଅର୍ଥ ବ୍ୟବସ୍ଥା ପ୍ରଭୃତି ପୁଞ୍ଜିଭୂତ ପ୍ରୋତ୍ସାହନ ଦିଆଯାଇ ଧାରାବାହିକ ଉଦ୍ୟମ କରାଯିବା ଫଳରେ 1975-1976 ବର୍ଷରେ ଅନେକଗୁଡ଼ିଏ ଶିଳ୍ପ ସଂସ୍ଥା ରେଜିଷ୍ଟ୍ରିଭୁକ୍ତ ହୋଇଛନ୍ତି ଏବଂ ଏ ବାବଦରେ 4 କୋଟି ଟଙ୍କାରୁ ଊର୍ଦ୍ଧ୍ୱ ପୁଞ୍ଜି ବିନିଯୋଗ ହୋଇପାରିଛି । ଆତ୍ମନିଯୁକ୍ତି ବ୍ୟବସ୍ଥା ଏବଂ ଶିକ୍ଷିତ ବେକାରମାନଙ୍କୁ କର୍ମ-ଯୋଗାଣ ବ୍ୟବସ୍ଥା ମାଧ୍ୟମରେ 180ଟି କ୍ଷୁଦ୍ର ଶିଳ୍ପ ସଂସ୍ଥା ପ୍ରତିଷ୍ଠା ହୋଇ ସାରିଛି । 1976-1977 ବର୍ଷରେ ମୋଟରେ 10·50 କୋଟି ଟଙ୍କାର ପୁଞ୍ଜି ବିନିଯୋଗ କରିପାରିବା ଭଳି 1,500 କ୍ଷୁଦ୍ର ଶିଳ୍ପ ସଂସ୍ଥାକୁ ପ୍ରୋତ୍ସାହନ ଦିଆଯିବ ବୋଲି ଲକ୍ଷ୍ୟ ରଖାଯାଇଛି । ତାଳଚେର ଓ ଏହାର ଆଖପାଖ ଅଞ୍ଚଳରେ ଆନୁଷଙ୍ଗିକ ଶିଳ୍ପ ପ୍ରତିଷ୍ଠା କରିବା କେତେ

ଦୃଷ୍ଟ ସମ୍ପ୍ରତି, ଏସବୁ ସମ୍ପର୍କରେ ଅନୁଧ୍ୟାନ କରାଯାଉଛି । ଓଡ଼ିଶା ରାଜ୍ୟ ଅର୍ଥ କର୍ପୋରେସନଙ୍କ ପକ୍ଷରୁ 1975-1976 ବର୍ଷରେ ଦିଆଯାଇଥିବା ମୋଟ ଋଣର ପରିମାଣ 4·83 କୋଟି ଟଙ୍କା ହେବ ବୋଲି ଅନୁମାନ କରାଯାଇଥିବାବେଳେ, 1976-1977 ବର୍ଷରେ ଉକ୍ତ ଋଣ ପରିମାଣ 6·50କୋଟି ଟଙ୍କା ହେବ ବୋଲି ଅନୁମାନ କରାଯାଏ । ରାଜ୍ୟରେ ଚମଡ଼ା ଶିଳ୍ପର ପ୍ରସାର ଘଟାଇବା ଉଦ୍ଦେଶ୍ୟରେ ରାଜ୍ୟ ସରକାର ଏକ ଚମଡ଼ା କର୍ପୋରେସନ ଗଠିବାକୁ ଯାଉଛନ୍ତି । ଓଡ଼ିଆ ଚଳଚ୍ଚିତ୍ରପାଇଁ ସାହାଯ୍ୟ ଏବଂ ଚଳଚ୍ଚିତ୍ର ଉତ୍ପାଦନ ବୃଦ୍ଧି ତ କରିବାପାଇଁ ଏକ ଚଳଚ୍ଚିତ୍ର ଉନ୍ନୟନ କର୍ପୋରେସନ ଗଠନ କରାଯାଉଛି । କଳ ତନ୍ତ ସମବାୟ ସମିତିର ଉତ୍ପାଦିତ ଦ୍ରବ୍ୟପାଇଁ ଗୋଟିଏ ରଙ୍ଗ ଓ ଛପା କାରଖାନା 1976-1977 ବର୍ଷ ମଧ୍ୟରେ ପ୍ରତିଷ୍ଠିତ ହେବ । ଅଧିକାଂଶ ଗ୍ରାମ୍ୟ କାରିଗରଙ୍କୁ କାମ ଯୋଗାଇଥିବା ହସ୍ତତନ୍ତ ଶିଳ୍ପ ମାଧ୍ୟମରେ 1976-1977 ବର୍ଷ ମଧ୍ୟରେ 12 ନିୟୁତ ମିଟର ଲୁଗା ଉତ୍ପାଦିତ ହେବ । ପ୍ରାଥମିକ ଓ ଶୀର୍ଷ ହସ୍ତତନ୍ତ ସମବାୟ ସମିତିଗୁଡ଼ିକରେ ଗଚ୍ଛିତ ହୋଇ ରହିଥିବା ମାଲଗୁଡ଼ିକର ବିକ୍ରୟ ତ୍ୱରାନ୍ୱିତ କରିବା ନିମନ୍ତେ ଶତକଡ଼ା 20 ଟଙ୍କା ରିହାତି ହାରରେ ଦେବାର ଏକ ବିଶେଷ ଯୋଜନା କାର୍ଯ୍ୟକାରୀ କରାଯାଉଛି । ବୁଣାଳୀମାନଙ୍କୁ ଭଲଭାବରେ ସଂଗଠିତ କରିବାପାଇଁ ଏବଂ ସେମାନଙ୍କର ଆର୍ଥିକ ବଳ ବଢ଼ାଇବା-ପାଇଁ ଅଧିକରୁ ଅଧିକ ସଂଖ୍ୟକ ସମବାୟ ସମିତି ଗଠନ କରାଯାଉଛି । ହସ୍ତତନ୍ତ ଲୁଗାଗୁଡ଼ିକର ଛାଞ୍ଚ ଓ ଗୁଣାତ୍ମକ ଉତ୍କର୍ଷ ସାଧନ ନିମନ୍ତେ ବୁଣାଳୀମାନଙ୍କୁ ତାଲିମ ଦିଆଯାଉଛି । ଏକ ଜରୁରୀ କାର୍ଯ୍ୟକ୍ରମ ମାଧ୍ୟମରେ 14,000 ଅଧିକ ବୁଣାଳୀଙ୍କୁ ସମବାୟ ସମିତି ଅନ୍ତର୍ଭୁକ୍ତ କରିବାପାଇଁ ପ୍ରସ୍ତାବ ରହିଛି । ହସ୍ତତନ୍ତ ବସ୍ତ୍ରର ଗୁଣାତ୍ମକ ବିକାଶ ନିମନ୍ତେ ଆଧୁନିକ ଧରଣର ଯନ୍ତ୍ରପାତି ବ୍ୟବହାରପାଇଁ ଆର୍ଥିକ ସାହାଯ୍ୟଦେବା ସକାଶେ ପ୍ରାୟ 24,000ରୁ ଅଧିକ ବୁଣାଳୀମାନଙ୍କୁ ନେଇ ଏକ ହସ୍ତତନ୍ତ ଉନ୍ନୟନ କର୍ପୋରେସନ ଖୁବ୍ ନିକଟରେ ଗଠନ କରାଯିବା ପ୍ରସ୍ତାବ ରହିଛି । ବର୍ତ୍ତମାନ ହସ୍ତଶିଳ୍ପ ସମବାୟ ସମିତିମାନଙ୍କରେ ପ୍ରାୟ 6,000 କାରିଗର ସଭ୍ୟ ଅଛନ୍ତି । କାରିଗରମାନଙ୍କୁ ତାଲିମ ଦେବା ସଙ୍ଗେ ସଙ୍ଗେ ଋଣ, ଅନ୍ୟାନ୍ୟ ଆର୍ଥିକ ସାହାଯ୍ୟ ଏବଂ ଉତ୍ପାଦନର ବିକ୍ରି ବନ୍ଦୋବସ୍ତରୁ ସୁବିଧା ନିମନ୍ତେ ବ୍ୟବସ୍ଥା କରାଯାଉଛି । ଟସର ଲୁଗା ଉତ୍ପାଦନ ବୃଦ୍ଧି କରିବା ସକାଶେ ଆଦିବାସୀମାନଙ୍କୁ ଟସର ଉତ୍ପାଦନ କରିବା ଓ ବୁଣିବାପାଇଁ ତାଲିମ ପ୍ରଦାନ କରାଯାଉଛି । 20 ଦଫା ଅର୍ଥନୈତିକ କାର୍ଯ୍ୟକ୍ରମର ଅନ୍ୟ ଏକ ଅଙ୍ଗରୂପେ ଶିକ୍ଷାନବିଶ୍-ମାନଙ୍କର ତାଲିମ ଓ କର୍ମସଂସ୍ଥା ନିମନ୍ତେ ରାଜ୍ୟରେ 530ଟି ଶିଳ୍ପ ସଂସ୍ଥା ମଧ୍ୟରୁ 501ଟିକୁ ସର୍ଭେ କରାଯାଇ 1,764ଟି ସ୍ଥାନ ରଖାଯାଇଛି । ତା 30-9-1975ରିଖ ସୁଦ୍ଧା 1,653 ଜଣ ଶିକ୍ଷାନବିଶଙ୍କୁ ତାଲିମ ଦିଆଯାଇଥିଲା । ପ୍ରଥମ ଥରପାଇଁ 350 ଜଣ ଇଞ୍ଜିନିୟରିଂ ଗ୍ରାଜୁଏଟ ଓ ଡ଼ିପ୍ଲୋମାଧାରୀ ଉକ୍ତ ତାଲିମ ପାଉଥିଲେ ।

9·1. 1976-77 ବର୍ଷରେ ବ୍ୟାପକ ଆକାରରେ ନକ୍ସା ପ୍ରସ୍ତୁତ କରି ଲୁହା ପଥର, କ୍ରୋମାଇଟ୍, ଘ୍ରଇନାଇଟ୍, ଫାସ୍ଫାଇଟ୍, ଚୂନ, ଚୂନ ପଥର ଓ ଡୋଲମାଇଟ ପ୍ରଭୃତି ଖଣିଜ ପଦାର୍ଥ କେତେ ପରିମାଣରେ ଗଚ୍ଛିତ ଅଛି, ତାହା ଅବିଷ୍କାର କରିବା ଦିଗରେ ଖଣିଜ ବିକାଶ କାର୍ଯ୍ୟକଳାପ ଅଭିପ୍ରେତ । ବକ୍ସାଇଟ୍ ଖଣିର ଅନୁସନ୍ଧାନ କାର୍ଯ୍ୟକ୍ରମ ପୂର୍ବଭଳି ଅବ୍ୟାହତ ରହିବ । 1976-1977 ବର୍ଷରେ ବିଭିନ୍ନ ଖଣିଜ ଦ୍ରବ୍ୟର ପରିମାଣ 13 ନିୟୁତ ମେଟ୍ରିକ ଟନ୍ ହେବ ଏବଂ ଖଣି ରୟାଲଟି ବାବଦରୁ 4·00 କୋଟି ଉର୍ଦ୍ଧ୍ୱ ଟଙ୍କା ରାଜକୋଷକୁ ଆସିବ । ଖଣିଜ ଦ୍ରବ୍ୟର ବିକାଶ ନିମନ୍ତେ ରାଜ୍ୟ ସରକାରଙ୍କ 0·40 କୋଟି ଟଙ୍କା ବ୍ୟୟ ବରାଦ ବାହାରେ ଓଡ଼ିଶା ଖଣି କର୍ପୋରେସନ ଆଗାମୀ ବର୍ଷ ବିଭିନ୍ନ ପରିକଳ୍ପନା ସମ୍ପୂର୍ଣ୍ଣ କରିବା ନୂତନ ପରିକଳ୍ପନାଗୁଡ଼ିକୁ କାର୍ଯ୍ୟକାରୀ କରିବା ନିମନ୍ତେ 1·67 କୋଟି ଟଙ୍କା ବିନିଯୋଗର କାର୍ଯ୍ୟକ୍ରମ ରଖିଛନ୍ତି ।

10. ଆଦିବାସୀ ଓ ଗ୍ରାମ ମଙ୍ଗଳ—ରାଜ୍ୟର ଆଦିବାସୀ ତଥା ଅନୁପଛାକୃତ ଅନୁନ୍ନତ ଶ୍ରେଣୀ ଲୋକମାନଙ୍କର ଉନ୍ନତିବିଧାନ ନିମନ୍ତେ ସରକାର ବିଶେଷ ସଚେତନ ଅଛନ୍ତି । ସେମାନଙ୍କର ଅର୍ଥନୈତିକ, ଶିକ୍ଷାଗତ ଏବଂ ପାରିପାର୍ଶ୍ୱିକ ପରିବେଶର ବିକାଶଜନିତ ବିଭିନ୍ନ ସମସ୍ୟାଗୁଡ଼ିକୁ ଅଗ୍ରାଧିକାର ଭିତ୍ତିରେ ସମସ୍ତ ସରକାରୀ ସ୍ତରରେ ବିଶେଷଧ୍ୟାନ ଦିଆଯାଉଛି । ସାମାଜିକ ଓ ଅର୍ଥନୈତିକ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଏହି ଶ୍ରେଣୀର ଲୋକମାନେ ଯେପରି ଦ୍ରୁତ ଅଗ୍ରଗତି କରିବାରେ ସମର୍ଥ ହୋଇପାରିବେ ସେଥି-ନିମନ୍ତେ ଆଦିବାସୀ ବ୍ଲକ, ଆଦିବାସୀ ଉନ୍ନୟନ ଏଜେନ୍ସି ଓ ସମନ୍ୱିତ ଆଦିବାସୀ ଉନ୍ନୟନ ଏଜେନ୍ସି ଗଠନ କରାଯାଇଛି । ଆଦିବାସୀ ଲୋକମାନଙ୍କର ଜୀବନ ଧାରଣମାନ ଉନ୍ନତ କରିବା ଏବଂ ସେମାନଙ୍କର ଆୟ ବୃଦ୍ଧି କରିବା ଉଦ୍ଦେଶ୍ୟରେ ଫଳ ବୃକ୍ଷ, ଜଳସେଚନ, ଜମିର ଉନ୍ନତି ବିଧାନ, ଜମି ଆବାଦ ଓ ପଶୁପାଳନ ସମେତ ଜମିର ବ୍ୟାପକ ଉପଯୋଗ ଆଦି କାର୍ଯ୍ୟକଳାପ ପୂର୍ବଭଳି ଅବ୍ୟାହତ ରହିବ । ଆଦିବାସୀମାନେ ସେମାନଙ୍କର ଉତ୍ପାଦିତ ସାମଗ୍ରୀ ନିମନ୍ତେ ଯେପରି ନ୍ୟାର୍ଯ୍ୟ ମୂଲ୍ୟ ପାଇପାରିବେ ସେଥିପାଇଁ ଆଦିବାସୀ ଉନ୍ନୟନ ସମବାୟ ସମିତି ଗଠିତ ହୋଇଛି । 1974-1975 ବର୍ଷରେ ଏହି ସମିତି 4·00 କୋଟିରୁ ଅଧିକ ଟଙ୍କା ମୂଲ୍ୟର ସାମଗ୍ରୀ କାରବାର କରିଥିଲେ ଏବଂ ତା’ପରଠାରୁ ସମିତିର କାର୍ଯ୍ୟ-କଳାପରେ ବେଶ ଆହୁରି ବୃଦ୍ଧି ପାଇଛି । 1976-1977 ବର୍ଷର ରାଜ୍ୟ ଯୋଜନା ଖର୍ଚ୍ଚ ଅଟକଳରେ ଆଦିବାସୀ ଅଞ୍ଚଳର ଉନ୍ନୟନପାଇଁ 4·00 କୋଟି ଟଙ୍କାରୁ ଅଧିକ ଅର୍ଥର ବ୍ୟବସ୍ଥା କରାଯାଇଅଛି । ଏତଦ୍‌ବ୍ୟତୀତ କେନ୍ଦ୍ରୀୟ ଯୋଜନାରେ ମଧ୍ୟ ପ୍ରାୟ 4·30 କୋଟି ଟଙ୍କାର ବ୍ୟୟ ବ୍ୟବସ୍ଥା କରାଯାଇଅଛି ।

11. ଜଙ୍ଗଲ—ଜଙ୍ଗଲ ସମ୍ପଦର ସଂରକ୍ଷଣ ସଙ୍ଗେ ସଙ୍ଗେ ନୂତନ ଜଙ୍ଗଲ ସୃଷ୍ଟି, ବୈଜ୍ଞାନିକ ପ୍ରଣାଳୀରେ ଜଙ୍ଗଲର ରକ୍ଷଣାବେକ୍ଷଣ ଏବଂ ଜଙ୍ଗଲ ସମ୍ପଦର ଯଥାଯଥ ଉପଯୋଗ କରିବାକୁ ସରକାର ନୀତିଗତଭାବରେ ସ୍ଥିର କରିଛନ୍ତି । ଜଙ୍ଗଲର ଆୟବୃଦ୍ଧି ତଥା ଜଙ୍ଗଲ ସମ୍ପଦର ଅଭିବୃଦ୍ଧି ପାଇଁ ଉପକୂଳବର୍ତ୍ତୀ ଅଞ୍ଚଳରେ ନୂଆ ଜଙ୍ଗଲ ସୃଷ୍ଟି ଓ ଜଙ୍ଗଲ କଟା ହୋଇଥିବା ଅଞ୍ଚଳରେ ନୂଆକରି ଗଛ ଲଗାଇବା ଆଦି ପରିକଳ୍ପନାମାନ ଉଦ୍ଦିଷ୍ଟ । ଶାଳ ମଞ୍ଜିରୁ ତେଲ ନିଷ୍କାସନ ସମେତ ବିଭିନ୍ନ ଜଙ୍ଗଲଜାତ ଦ୍ରବ୍ୟର ଲାଭଜନକ ଉପଯୋଗର ବାଟ ଖୋଲୁଛି । କେନ୍ଦୁପତ୍ର ଉତ୍ପାଦନ କ୍ରମଶଃ ବୃଦ୍ଧି ପାଇବାରେ ଲାଗିଛି । 1975-76 ବର୍ଷରେ କେନ୍ଦୁପତ୍ର ଉତ୍ପାଦନ 4 ଲକ୍ଷ କୁଇଣ୍ଟାଲ ହେବାର ଆଶା । ଓଡ଼ିଶାରେ କେନ୍ଦ୍ରୀୟ ସରକାର କାର୍ଯ୍ୟକାରୀ ହେଉଥିବା ଶିମିଳିପାଳ ବ୍ୟାଘ୍ର ସଂରକ୍ଷଣ ଯୋଜନା, କୁମ୍ଭୀର ଓ ସାମୁଦ୍ରିକ କଇଁଛ ରକ୍ଷା ବ୍ୟତୀତ ଚନ୍ଦକାଠାରେ ଏକ ବନ୍ୟହସ୍ତୀ ବିହାର ଆରମ୍ଭ କରାଯିବାର ସମ୍ଭାବନା ଅଛି ।

12. ରାସ୍ତା ଓ ସଡ଼କ ପରିବହନ—ସର୍ବନିମ୍ନ ଆବଶ୍ୟକତା କାର୍ଯ୍ୟକ୍ରମ ଅନୁସାରେ 3ଟି ପୋଲ ସମେତ 482·80 କିଲୋମିଟର ଦୈର୍ଘ୍ୟ ସମ୍ବଳିତ ରାସ୍ତା ନିର୍ମାଣ ସମ୍ପୂର୍ଣ୍ଣ କରିବା ନିମନ୍ତେ ଆଗାମୀ ବର୍ଷର ଗମନାଗମନ କାର୍ଯ୍ୟକ୍ରମରେ ଲକ୍ଷ୍ୟ ରଖାଯାଇଛି । ତା'ଛଡ଼ା 200 କିଲୋମିଟର ଗ୍ରାମ୍ୟ ରାସ୍ତାର ଉନ୍ନତି ଏହି ଯୋଜନା ମାଧ୍ୟମରେ କରାଯିବ । ଅନ୍ୟାନ୍ୟ ରାସ୍ତା ନିର୍ମାଣ କାର୍ଯ୍ୟକ୍ରମ ଅନୁସାରେ 19 କିଲୋମିଟର ରାସ୍ତାରେ ମରାମତି କରାଯିବ ଓ 42 କିଲୋମିଟର ରାସ୍ତାରେ ପିଚ୍ ଢଳାଯିବା ସଙ୍ଗେ ସଙ୍ଗେ ଅସମ୍ପୂର୍ଣ୍ଣ 9ଟି ପୋଲର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରାଯିବ । କେନ୍ଦ୍ରୀୟ ସଡ଼କ ପାଣ୍ଠିରୁ ମିଳୁଥିବା ସମ୍ବଳରେ ବନ୍ଦରଘାଟର ସୁବର୍ଣ୍ଣରେଖା ପୋଲ ଓ ପୋଲର ଉଭୟ ପାର୍ଶ୍ୱରେ ସଂଯୋଗକାରୀ ରାସ୍ତା ଏବଂ ବାର୍ଗୀ ଓ କଣ୍ଟନାଳ ଉପରେ ପୋଲ ନିର୍ମାଣ ସମ୍ପୂର୍ଣ୍ଣ କରାଯିବ । ଜନସାଧାରଣଙ୍କ ନିମନ୍ତେ ପରିବହନ ସୁବିଧାର ବ୍ୟାପକ ପ୍ରସାର ପାଇଁ ଓଡ଼ିଶା ରାଜ୍ୟ ରାସ୍ତା ପରିବହନ କର୍ପୋରେସନ 1976-77 ବର୍ଷରେ ବସ ସଂଖ୍ୟା 664କୁ ବୃଦ୍ଧି କରିବା ନିମନ୍ତେ କାର୍ଯ୍ୟକ୍ରମ ରଖିଛନ୍ତି । 1974-75 ବର୍ଷରେ ଏ ସବୁ ବସର ସଂଖ୍ୟା ଥିଲା 519 ଏବଂ 1975-76 ବର୍ଷର ଶେଷ ବେଳକୁ ତାହା 539କୁ ବୃଦ୍ଧି ପାଇବାର ସମ୍ଭାବନା । ଓଡ଼ିଶା ରାସ୍ତା ପରିବହନ କମ୍ପାନୀ ମଧ୍ୟ 1976-77 ବର୍ଷରେ 53ଟି ନୂଆ ଗାଡ଼ି ଚଳାଚଳ କରିବେ । 20 ଦଫା ଅର୍ଥନୈତିକ କାର୍ଯ୍ୟକ୍ରମର ଏକ ଅଂଶ ସ୍ୱରୂପ ଏହି ରାଜ୍ୟକୁ 250ଟି ଜାତୀୟ ପରମିଟ ମିଳିଛି ।

13. ଶିକ୍ଷା—ଆମ ବଜେଟ ଅଟକଳର ଏକ ବିଶିଷ୍ଟ ଅଂଶ ଶିକ୍ଷାରେ ବିନିଯୋଗ ହୋଇଥାଏ ଏବଂ ଏଥି ନିମନ୍ତେ 1976-77 ବର୍ଷରେ 5892 କୋଟି ଟଙ୍କାର ବ୍ୟୟ ବରାଦ କରାଯାଇଛି । ଏ ଦିଗରେ ଆମର ମୌଳିକ ଲକ୍ଷ୍ୟ ହେଉଛି;

ସାକ୍ଷରତା ଦ୍ଵାରା ବୃଦ୍ଧି କରିବା ଏବଂ ବହୁମୁଖୀ ପାଠ୍ୟକ୍ରମର ପ୍ରବର୍ତ୍ତନ ସାଙ୍ଗକୁ ସମାଜରେ ଥିବା ବିଭିନ୍ନ ବର୍ଗାଷ୍ଟୀର ଲୋକମାନଙ୍କ ପାଇଁ ବିଭିନ୍ନ ଶିକ୍ଷାନୁଷ୍ଠାନରେ ସମାନ ସୁଯୋଗ ସୃଷ୍ଟି କରିବା । ଏ ଦିଗରେ ନିରବଚ୍ଛିନ୍ନ ଅଭିଯାନ ସାଙ୍ଗକୁ ଏକ ପ୍ରୋତ୍ସାହନମୂଳକ ପରିକଳ୍ପନା ଯଥା—ପ୍ରଥମ ଓ ଦ୍ଵିତୀୟ ଶ୍ରେଣୀର ପରୀକ୍ଷା ଉଠାଇ ଦିଆଯିବା ସଙ୍ଗେ ସଙ୍ଗେ ଛାତ୍ର ଛାତ୍ରୀମାନଙ୍କୁ ମାଗଣାରେ ସ୍କୁଲ ପୋଷାକ ଯୋଗାଣ, ମଧ୍ୟାହ୍ନ ଭୋଜନ ଓ ଉପସ୍ଥାନ ବୃଦ୍ଧି ପ୍ରଦାନ ଫଳରେ 1976-77 ବର୍ଷ ଶେଷ ସୁଦ୍ଧା 6ରୁ 11 ବର୍ଷର ଶିଶୁମାନଙ୍କ ମଧ୍ୟରୁ ବିଦ୍ୟାଳୟରେ ନାମ ଲେଖାଇଥିବା ଶିଶୁମାନଙ୍କ ସଂଖ୍ୟା ଶତକଡ଼ା 75 ଭାଗକୁ ବୃଦ୍ଧି ପାଇଥିବ ଏବଂ 11ରୁ 14 ବର୍ଷ ବୟସର ପିଲାମାନଙ୍କ ସଂଖ୍ୟା ଶତକଡ଼ା 28 ଭାଗ ହୋଇ ପାରିବ ବୋଲି ଆଶା କରାଯାଏ । 1976-77 ବର୍ଷର ଶେଷ ସୁଦ୍ଧା ମାଧ୍ୟମିକ ଶିକ୍ଷାନୁଷ୍ଠାନର ଛାତ୍ର ସଂଖ୍ୟା ମୋଟ 3·05 ଲକ୍ଷ ହେବାର ସମ୍ଭାବନା ରହିଛି । 1976-77 ବର୍ଷର ବିଶ୍ଵବିଦ୍ୟାଳୟ ଓ ଉଚ୍ଚତର ଶିକ୍ଷାନୁଷ୍ଠାନରେ ଛାତ୍ର ଛାତ୍ରୀଙ୍କ ସଂଖ୍ୟା 81·7 ହଜାର ଥିବା ସ୍ଥଳେ 1976-77 ବର୍ଷରେ ସେମାନଙ୍କ ସଂଖ୍ୟା 90·9 ହଜାରକୁ ବୃଦ୍ଧି ପାଇବ । ରାଜ୍ୟର ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ନୂତନ ଶିକ୍ଷାନୁଷ୍ଠାନ ଖୋଲିବା ଦିଗରେ ଅଗ୍ରାଧିକାର ଦିଆଯିବ । ଚଳିତ ଯୋଜନାର ପ୍ରଥମ ତିନିବର୍ଷ ମଧ୍ୟରେ 1,600 ନୂତନ ପ୍ରାଥମିକ ବିଦ୍ୟାଳୟ ଖୋଲିବାପାଇଁ ଯେଉଁ କାର୍ଯ୍ୟକ୍ରମ ରହିଛି, ସେଥିମଧ୍ୟରୁ 900ରୁ ଅଧିକ ବିଦ୍ୟାଳୟ ରାଜ୍ୟର ବିଭିନ୍ନ ଆଦିବାସୀ ଅଞ୍ଚଳରେ ଖୋଲାଯିବ । କୋରାପୁଟ, ଫୁଲବାଣୀ ଓ କଳାହାଣ୍ଡି ଜିଲ୍ଲାର ଅଭ୍ୟନ୍ତରୀଣ ଅଞ୍ଚଳରେ ଆଗାମୀ ବର୍ଷ 7ଟି ସରକାରୀ ଉଚ୍ଚ ଇଂରାଜୀ ବିଦ୍ୟାଳୟ ଖୋଲାଯିବାର ପ୍ରସ୍ତାବ ରହିଛି । ଆଗାମୀ ବର୍ଷ ହେବାକୁ ଥିବା ଦୁଇଟି ନୂତନ ବାଳିକା ଉଚ୍ଚ ଇଂରାଜୀ ବିଦ୍ୟାଳୟ ଏବଂ ଢେଙ୍କାନାଳ ଓ ମୟୂରଭଞ୍ଜରେ ଆରମ୍ଭ କରାଯାଇଥିବା ଦୁଇଟି ମହିଳା କଲେଜ ମହିଳାମାନଙ୍କର ଉଚ୍ଚତର ଶିକ୍ଷାଲାଭ ଦିଗରେ ଅଧିକ ସହାୟକ ହେବ । ମାନ୍ୟବର ସଦସ୍ୟମାନେ ସ୍କୁଲ ଓ କଲେଜମାନଙ୍କରେ ଆରମ୍ଭ ହୋଇଥିବା 'ବୁକ ବ୍ୟାଙ୍କ' ଯୋଜନା ସମ୍ପର୍କରେ ଅବଗତ ଥିବେ । ଏହି ଯୋଜନା ମାଧ୍ୟମରେ ନିଃସ୍ଵ ପରିବାରର ଆସୁଥିବା ଛାତ୍ର ଛାତ୍ରୀଙ୍କ ପାଇଁ ପାଠ୍ୟ ପୁସ୍ତକ ଯୋଗାଇ ଦେବାର ପ୍ରଚେଷ୍ଟା ପ୍ରଥମଥର ପାଇଁ ହୋଇଛି । ଶିକ୍ଷା ଦିଗରେ ଅନଗ୍ରସର ଜିଲ୍ଲାମାନଙ୍କୁ ସ୍ଵତନ୍ତ୍ର ଅଗ୍ରାଧିକାର ଦିଆଯାଉଛି । ଆମର ଆଶା, ଆଗାମୀ 2 ବର୍ଷ ମଧ୍ୟରେ ରାଜ୍ୟର ସମସ୍ତ ହାଇସ୍କୁଲରେ ଏହି ଯୋଜନା କାର୍ଯ୍ୟକାରୀ ହୋଇଯିବ । ଅସଂପୂର୍ଣ୍ଣ ବିଦ୍ୟାଳୟ ଗୃହକୁ ସଂପୂର୍ଣ୍ଣ କରିବା ବାଳିକା ହାଇସ୍କୁଲମାନଙ୍କରେ ଧନ୍ଦାମୂଳକ ପାଠ୍ୟକ୍ରମ ପ୍ରବର୍ତ୍ତନ କରିବା ଏବଂ ମାଧ୍ୟମିକ ବିଦ୍ୟାଳୟଗୁଡ଼ିକରେ ବିଜ୍ଞାନ ଶିକ୍ଷାଦାନ ନିମନ୍ତେ ଅଧିକ ସୁବିଧା ପ୍ରଦାନ ଆଦି ବ୍ୟବସ୍ଥା, ପ୍ରାଥମିକ ଓ ମାଧ୍ୟମିକ ସ୍ତରରେ ଶିକ୍ଷାର ଗୁଣାତ୍ମକ ବିକାଶପାଇଁ ଗୁରୁତ୍ଵ ଦିଆଯାଉଥିବା କାର୍ଯ୍ୟକ୍ରମର

ଅଂଶବିଶେଷ । ଏକୋଟି ବିଶ୍ୱବିଦ୍ୟାଳୟକୁ ଦିଆଯାଉଥିଲା । ବ୍ଲକଗ୍ରାଣ୍ଟ ସରକାରଙ୍କ ଦ୍ୱାରା ଗଠିତ ଏକ କମିଟିଙ୍କ ସୁପାରିଶ ଅନୁଯାୟୀ ବଢାଇ ଦିଆଯାଉଛି । ଫଳ ସ୍ୱରୂପ ସେମାନଙ୍କୁ ବାର୍ଷିକ 0-80 କୋଟି ଟଙ୍କା ସାହାଯ୍ୟ ଦିଆଯାଉଥିବା ସ୍ଥଳେ ବର୍ତ୍ତମାନ ହାରାହାରି ବାର୍ଷିକ ଗ୍ରାଣ୍ଟର ପରିମାଣ 1·25 କୋଟି ଟଙ୍କାକୁ ବୃଦ୍ଧି ପାଉଛି ।

14. ସ୍ୱାସ୍ଥ୍ୟ, ଜନସ୍ୱାସ୍ଥ୍ୟ ଓ ପାନୀୟ ଜଳ ଯୋଗାଣ—ଗ୍ରାମାଞ୍ଚଳରେ ଡାକ୍ତରୀ ଚିକିତ୍ସାର ମାନ ବଢାଇବା ଉଦ୍ଦେଶ୍ୟରେ ଆଗାମୀ ବର୍ଷର ବଜେଟ ଅଟକଳରେ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ଓ ଉପକେନ୍ଦ୍ର ଗୁଡ଼ିକରେ ଅଧିକ ଔଷଧର ବ୍ୟବସ୍ଥା କରିବାପାଇଁ ବ୍ୟୟ ବରାଦ କରାଯାଇଛି ଏବଂ 6ଟି ଚିକିତ୍ସାଳୟକୁ 6-ଶଯ୍ୟା ବିଶିଷ୍ଟ ହାସପାତାଳରେ ପରିଣତ କରିବାପାଇଁ ପ୍ରସ୍ତାବ ରହିଛି 1976-77 ବର୍ଷରେ 10ଟି ଅଧିକ ଆୟୁର୍ବେଦ ଚିକିତ୍ସାଳୟ ଏବଂ 10ଟି ଅଧିକ ହୋମିଓପାଥିକ ଚିକିତ୍ସାଳୟ ପ୍ରତିଷ୍ଠା କରାଯିବା ଫଳରେ ଏହି ଚିକିତ୍ସା ପଦ୍ଧତି ତଥା ଔଷଧପତ୍ର ଜନସାଧାରଣଙ୍କ ନିକଟରେ ପହଞ୍ଚିପାରିବ । ଜିଲ୍ଲା ହାସପାତାଳଗୁଡ଼ିକରେ ବିଭିନ୍ନ ବିଷୟରେ ବିଶେଷଜ୍ଞ ଡାକ୍ତରମାନଙ୍କୁ ଅବସ୍ଥାପିତ କରାଯାଇଛି । ବାକି ରହିଯାଇଥିବା ଅନ୍ୟ କେତେକ ବିଷୟରେ ମଧ୍ୟ ବିଶେଷଜ୍ଞ ଚିକିତ୍ସା ସୁବିଧା 1976-77 ବର୍ଷରେ ଯୋଗାଇ ଦେବାର ପ୍ରସ୍ତାବ ରହିଛି । ଜିଲ୍ଲା ଏବଂ ସବଡ଼ିଭିଜନାଲ ହାସପାତାଳଗୁଡ଼ିକରେ କର୍ମଚାରୀ ଓ ଔଷଧଜନିତ ଅଭାବ ଦୂରକରି ଅଧିକରୁ ଅଧିକ ଡାକ୍ତରୀ ଚିକିତ୍ସା ସୁବିଧା ଯୋଗାଇ ଦେବା ନିମନ୍ତେ ଆଗାମୀ ବର୍ଷ ବଜେଟରେ ଏକ ଉଦ୍ୟମ କରାଯାଇଅଛି । ବୁର୍ଲା ଓ ବ୍ରହ୍ମପୁର ମେଡ଼ିକାଲ କଲେଜରେ କର୍କଟ ରୋଗୀଙ୍କ ଚିକିତ୍ସା ନିମନ୍ତେ କୋବାଲ୍ଟ ଥେରାପି ବ୍ୟବସ୍ଥା କରାଯିବାର ସମ୍ଭାବନା ଅଛି । ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର, ମେଡ଼ିକାଲ କଲେଜ ଏବଂ ତତସଂଲଗ୍ନ ହାସପାତାଳଗୁଡ଼ିକର ଅସଂପୂର୍ଣ୍ଣ ରହିଥିବା କୋଠାବାଡ଼ି ଓ କର୍ମଚାରୀମାନଙ୍କର ବାସଗୃହ ଅଗ୍ରାଧିକାର ଭିତ୍ତିରେ ସଂପୂର୍ଣ୍ଣ କରିବା ନିମନ୍ତେ ପଦକ୍ଷେପ ନିଆଯାଇଛି । କୁଷ୍ଠରୋଗୀମାନଙ୍କର ଉନ୍ନତ ଚିକିତ୍ସା ନିମନ୍ତେ 1976-77 ବର୍ଷରେ 6·65 ଲକ୍ଷ ଟଙ୍କା ବ୍ୟୟରେ ସେମାନଙ୍କୁ ହାସପାତାଳରେ ରଖି ଚିକିତ୍ସା କରିବାପାଇଁ ଆଉ ଆଠଟି ୱାର୍ଡ ଖୋଲାଯିବାର ପ୍ରସ୍ତାବ ରହିଛି । ଏହିଭଳି ଚାରୋଟି ୱାର୍ଡ ଚଳିତ ବର୍ଷ ଖୋଲାଯାଇଅଛି । ଉଭୟ ପ୍ରତିଷେଧକ ଓ ଆରୋଗ୍ୟମୂଳକ ଚିକିତ୍ସା ନିମନ୍ତେ ଜାତୀୟ ମ୍ୟାଲେରିଆ ନିରାକରଣ କାର୍ଯ୍ୟକ୍ରମ ଓ ଏହିଭଳି ଅନ୍ୟାନ୍ୟ କେନ୍ଦ୍ରୀୟ କାର୍ଯ୍ୟକ୍ରମ ଚାଲୁ ରହିବ । ବର୍ତ୍ତମାନ ଜନସଂଖ୍ୟା ବୃଦ୍ଧିର ହାରକୁ ନିୟନ୍ତ୍ରଣ କରା ନଗଲେ ମୁଣ୍ଡପିଛା ଆୟ ବଢାଇବାପାଇଁ ଆମର ସମସ୍ତ ପ୍ରଚେଷ୍ଟା ବ୍ୟର୍ଥ ହୋଇଯିବ । ଏହି ଲକ୍ଷ୍ୟ ହାସଲ କରିବା ନିମନ୍ତେ ପରିବାର ନିୟନ୍ତ୍ରଣ କାର୍ଯ୍ୟକ୍ରମ ସଂପ୍ରସାରିତ କରାଯାଉଛି ।

14·1. ସବୋନମ୍ନ ଆବଶ୍ୟକତା କାର୍ଯ୍ୟକ୍ରମ ଅନୁଯାୟୀ ଅଗାମୀ ବର୍ଷ ଯୋଜନାରେ ଗ୍ରାମାଞ୍ଚଳରେ ପାନୀୟ ଜଳ ଯୋଗାଣ ପରିକଳ୍ପନା ବାବଦରେ 140·00 ଲକ୍ଷ ଟଙ୍କା ବିନିଯୋଗ ହେବ । ଏଥିମଧ୍ୟରୁ ଅସଂପୂର୍ଣ୍ଣ କୂଅଗୁଡ଼ିକୁ ସଂପୂର୍ଣ୍ଣ କରିବା ଏବଂ ନୂତନ ସ୍ଥାୟୀ କୂପ ଖନନ ବାବଦରେ 100·00 ଲକ୍ଷ ଟଙ୍କା ବିନିଯୋଗ କରାଯିବ । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଚଳିତ ବର୍ଷ ଏଭଳି କୂଅ ଖୋଳିବାରେ 40·60 ଲକ୍ଷ ଟଙ୍କା ବ୍ୟବସ୍ଥା କରାଯାଇଥିଲା । ଏହା ବ୍ୟତୀତ 1975-76 ଶେଷ ସୁଦ୍ଧା ଗ୍ରାମାଞ୍ଚଳରେ 803 ନଳକୂପ ସ୍ଥାପନ ଓ 38ଟି ପାଇପ ପାଣି ଯୋଗାଣ ପରିକଳ୍ପନା ଶେଷ ହେବାର ଆଶା କରାଯାଏ । 1976-77 ବର୍ଷ ସକାଶେ 40·00 ଲକ୍ଷ ଟଙ୍କା ବ୍ୟୟରେ ଆଉ 375ଟି ନଳକୂପ ବସାଇବାର କାର୍ଯ୍ୟକ୍ରମ ରହିଛି । ସହରାଞ୍ଚଳ ଜଳଯୋଗାଣ ଓ ମଇଳା ନିଷ୍କାସନ ପରିକଳ୍ପନା ନିମନ୍ତେ ରାଜ୍ୟ ଯୋଜନା ବାବଦ ବର୍ତ୍ତମାନର ବ୍ୟୟ ବରାଦକୁ 75 ଲକ୍ଷ ଟଙ୍କାରୁ ଆସନ୍ତା ବର୍ଷ ପାଇଁ 99·00 ଲକ୍ଷ ଟଙ୍କାକୁ ବୃଦ୍ଧି କରାଯାଇଛି ।

15. ଗ୍ରାମ, ନଗର ଓ ଗୃହ ନିର୍ମାଣ—ଅର୍ଥ ଲଗାଣକାରୀ ସଂସ୍ଥାରୁ ଅଧିକ ସହାୟ୍ୟ ବଳରେ ବଡ଼ ଗୃହ ନିର୍ମାଣ ଯୋଜନାକୁ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ଗୃହ ନିର୍ମାଣ ବୋର୍ଡ ତାଙ୍କର ସଂସ୍ଥାକୁ ଆହୁରି ସୁଦୃଢ଼ କରିଛନ୍ତି । ଆଗାମୀ ବର୍ଷ ହୁଡ଼କୋ (HUDCO) ଠାରୁ 103·88 ଲକ୍ଷ ଟଙ୍କା ଋଣ ସାହାଯ୍ୟ ନେଇ 336ଟି ଗୃହ ନିର୍ମାଣ କରିବା ନିମନ୍ତେ ସେମାନେ ଯୋଜନା କରିଛନ୍ତି । 1976-77 ବର୍ଷ ସୁଦ୍ଧା ନିମ୍ନବିତ୍ତ, ମଧ୍ୟବିତ୍ତ ଏବଂ ଗ୍ରାମ୍ୟଗୃହ ନିର୍ମାଣ ଇତ୍ୟାଦି ଯୋଜନା ଅନୁଯାୟୀ ଆଉ 1,060ଟି ଗୃହର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହେବ । ହୁଡ଼କୋ (HUDCO)ଙ୍କଠାରୁ ପାଇଥିବା ଋଣକୁ ବାଦ ଦେଇ ବାସଗୃହ ନିର୍ମାଣ ଯୋଜନା ବାବଦରେ ଆସନ୍ତା ବର୍ଷ ବଜେଟରେ ମୋଟ 1·66 କୋଟି ଟଙ୍କାର ବ୍ୟୟ ବରାଦ ହୋଇଛି । ବାରମ୍ବାର ଦେଖା ଦେଉଥିବା ବନ୍ୟା ବିପତ୍ତିର ପ୍ରତିକାର ଲାଗି କଟକ, ପୁରୀ, ବାଲେଶ୍ୱର, ମୟୂରଭଞ୍ଜ, ଢେଙ୍କାନାଳ, କେନ୍ଦୁଝର ଓ ସମ୍ବଲପୁର ଜିଲ୍ଲାର ବନ୍ୟାଗ୍ରସ୍ତ ଅଞ୍ଚଳମାନଙ୍କରେ ଉଚ୍ଚ ଜାଗା ଦେଖି ଗୃହ ନିର୍ମାଣପାଇଁ ଏକ ପରିକଳ୍ପନା ହାତକୁ ନିଆଯାଇଛି ।

15·1. 20-ଦଫା ଅର୍ଥନୈତିକ କାର୍ଯ୍ୟକ୍ରମ ଅନୁଯାୟୀ ଶ୍ରମିକ ଶ୍ରେଣୀ ଲୋକଙ୍କ କାମ କରିବା ଅବସ୍ଥା ଓ ଭବିଷ୍ୟତ ଉନ୍ନତି ନିମନ୍ତେ ସରକାର ଅନେକଗୁଡ଼ିଏ ବ୍ୟବସ୍ଥା ଗ୍ରହଣ କରିଛନ୍ତି । ବର୍ତ୍ତମାନ କୃଷି ଶ୍ରମିକଙ୍କ ପାଇଁ ସର୍ବନିମ୍ନ ମଜୁରୀ ହାର ଦୈନିକ ଟ 4·00 ରଖାଯାଇଛି । ପୁରୁଷ ଓ ମହିଳା ଶ୍ରମିକଙ୍କପାଇଁ ଆଇନାନୁସାରେ ସମାନ ମଜୁରୀ ନିର୍ଦ୍ଧାରଣ କରାଯାଇଛି । ଗୋତି ପ୍ରଥା ଓ ଠିକା ଶ୍ରମିକ ବ୍ୟବସ୍ଥା ଲୋପ କରାଯାଇଛି । ଯେଉଁ ସବୁ

ସଂସ୍ଥାମାନଙ୍କରେ 250 କମ୍ବା ତହିଁରୁ ବେଶି ଶ୍ରମିକ କାମ କରନ୍ତି ସେ ସବୁ ସଂସ୍ଥା ପରିଚାଳନା କ୍ଷେତ୍ରରେ ଶ୍ରମିକମାନଙ୍କ ସକ୍ରିୟ ଅଂଶ ଗ୍ରହଣ ଜନିତ ଯୋଜନା ଚାଲୁ ହୋଇଛି ଏବଂ କର୍ମଚାରୀ ବୀମା ପରିସରକୁ ଅଧିକ ପ୍ରସାରିତ କରାଯାଇଛି । ରାଜ୍ୟର ସବୁ ସ୍ଥାନର ନିଯୁକ୍ତି ଜନିତ ପରିସ୍ଥିତି ଆଶାନୁରୂପ ନ ହେଲେହେଁ 1975-76 ବର୍ଷରେ ଏମ୍ପ୍ଲୟମେଣ୍ଟ ଏକ୍ସଚେଞ୍ଜ କରିଆରେ 18,621 ଜଣଙ୍କୁ ନିଯୁକ୍ତି ଦିଆଯାଇପାରିଥିଲା । ଏହା ପୂର୍ବ ବର୍ଷଠାରୁ 4,000 ଅଧିକ ।

16. ଭୂସଂସ୍କାର ଓ ଅନ୍ୟାନ୍ୟ ସମାଜ ମଙ୍ଗଳ ବ୍ୟବସ୍ଥା—20 ଦଫା ଅର୍ଥନୈତିକ କାର୍ଯ୍ୟକ୍ରମ ସମ୍ପର୍କରେ ଆଲୋଚନା କରିବାବେଳେ ଭୂସଂସ୍କାର କ୍ଷେତ୍ରରେ ଆମେ କି କି ସଫଳତା ହାସଲ କରିଛୁ, ସେ ସମ୍ପର୍କରେ ମୁଁ ସୂଚନା ଦେଇଛି । ଭୂସଂସ୍କାର ଆଇନରେ ଥିବା ବ୍ୟବସ୍ଥାଗୁଡ଼ିକୁ ଖୁବ୍ ଶୀଘ୍ର କାର୍ଯ୍ୟକାରୀ କରିବାପାଇଁ ଆମେ ଦୃଢ଼ ପଦକ୍ଷେପ ଗ୍ରହଣ କରିଛୁ । 1976-77 ଶେଷସୁଦ୍ଧା ସିଲିଂ ବାହାରେ ଥିବା 68,327 ଏକର ଉଦ୍‌ବୃତ୍ତ ଜମି ସରକାରଙ୍କ ହାତକୁ ଆସିବ । ରାଜ୍ୟର 6ଟି ଜିଲ୍ଲାରେ 1,338 ଗ୍ରାମରେ 250 ଲକ୍ଷ ହେକ୍ଟର ଜମିରେ ଚକବନ୍ଦୀ କାର୍ଯ୍ୟ ଚାଲିଛି । ଆସନ୍ତା ବର୍ଷପାଇଁ ଏ ବାବଦରେ ମୋଟ ଏ 1·10 କୋଟି ଟଙ୍କାର ବ୍ୟବସ୍ଥା ରହିଛି । ସରକାର ସମାଜ କଲ୍ୟାଣ କ୍ଷେତ୍ରରେ ଅନ୍ୟ ଯେଉଁସବୁ ପଦକ୍ଷେପ ନେଇଛନ୍ତି, ସେଥିରୁ କେତୋଟି ହେଉଛି—ଯୌତୁକ ନିଷେଧ ଆଇନ, ଗରିବ ଶ୍ରେଣୀର ଲୋକଙ୍କୁ ମାଗଣା ଆଇନଗତ ସାହାଯ୍ୟ ପ୍ରଦାନ, ପୁଷ୍ଟିକର ଖାଦ୍ୟ ଯୋଗାଣ କାର୍ଯ୍ୟକ୍ରମ, ଗ୍ରୁପ୍ ଇନ୍‌ସୁରାନ୍ସ ପରିକଳ୍ପନା ଓ ବାର୍ଦ୍ଧକ୍ୟ ଭତ୍ତା ପ୍ରଦାନ ସ୍ୱାଧୀନତା ସଂଗ୍ରାମୀ ଭତ୍ତା ପ୍ରଦାନ ଅନୁଯାୟୀ ରାଜ୍ୟର 2,332 ଜଣ ସ୍ୱାଧୀନତା ସଂଗ୍ରାମୀଙ୍କୁ କେନ୍ଦ୍ରୀୟ ପେନ୍‌ସନ୍ ଦିଆଯାଇଛି । ଯେଉଁ ସ୍ୱାଧୀନତା ସଂଗ୍ରାମୀ ଏବଂ ପୂର୍ବତନ ଆଜାଦ୍ ହିନ୍ଦ୍ ଫୌଜର ଲୋକ ଏଭଳି ପେନ୍‌ସନ୍ ପାଇବାକୁ ଯୋଗ୍ୟ ସେହିଭଳି ଲୋକଙ୍କୁ ପେନ୍‌ସନ୍ ଦେବା ବିଷୟରେ ସମୀକ୍ଷା କରିବା ନିମନ୍ତେ ରାଜ୍ୟ ସରକାର ଦୁଇଟି କମିଟି ଗଠନ କରିଛନ୍ତି । ମାନ୍ୟବର ସଭ୍ୟମାନେ ଲକ୍ଷ୍ୟ କରିଥିବେ ଯେ ସରକାରଙ୍କ ଅବକାରୀ ନୀତି ଅନୁଯାୟୀ ଆଦିବାସୀ ବହୁଳ ଅଞ୍ଚଳରୁ ଅନେକ ଦେଶୀମଦ ଦୋକାନ ହଟାଇ ଦିଆଯାଇଛି ଏବଂ ରାଜ୍ୟର ବିଭିନ୍ନ ଜିଲ୍ଲାମାନଙ୍କରେ କ୍ରମଶଃ ସ୍ଥିର କରିଆରେ ମଦ ବନ୍ଦ କାରବାର ବ୍ୟବସ୍ଥା ସଂପ୍ରସାରିତ କରିବାପାଇଁ ସ୍ଥିର କରାଯାଇଛି ।

17. ଖାଦ୍ୟ ଓ ଯୋଗାଣ—ଖାଦ୍ୟଶସ୍ୟ ସମେତ ସାଧାରଣ ଅତ୍ୟାବଶ୍ୟକ ଖାଉଟି ଦ୍ରବ୍ୟ ଯୋଗାଣ ପରିସ୍ଥିତିରେ ଉଲ୍ଲେଖଯୋଗ୍ୟ ଉନ୍ନତି ଦେଖା ଦେଇଥିବା ବିଷୟରେ ମୁଁ ପୂର୍ବରୁ ସୂଚନା ଦେଇଛି । ଏକଚାଟିଆ ସଂଗ୍ରହ ବ୍ୟବସ୍ଥା ଅନୁଯାୟୀ 1975-76 ଖରିଫ ବର୍ଷରେ 1,75,000 ମେଟ୍ରିକ ଟନ୍ ଚାଉଳ ସଂଗ୍ରହର ଯେଉଁ ଲକ୍ଷ୍ୟ ଧାର୍ଯ୍ୟ କରିଥିଲୁ ତାକୁ ଟପିଯିବାର ସମ୍ଭାବନା ଅଛି । ଏହି କାର୍ଯ୍ୟକ୍ରମପାଇଁ ରାଜ୍ୟ ସରକାର ଷ୍ଟେଟ ବ୍ୟାଙ୍କ ଅଫ୍ ଇଣ୍ଡିଆଠାରୁ 10 କୋଟି ଟଙ୍କା ପର୍ଯ୍ୟନ୍ତ ଋଣ ନେଇପାରିବେ ।

18. ପର୍ଯ୍ୟଟନ—ରାଜ୍ୟରେ ପର୍ଯ୍ୟଟକମାନଙ୍କ ନିମନ୍ତେ ଅଧିକ ଭିତ୍ତିଭୂମିକ ସୁବିଧା ସୁଯୋଗ ସୃଷ୍ଟି କରିବା ଉଦ୍ଦେଶ୍ୟରେ ପର୍ଯ୍ୟଟନ ବିଭାଗ ତାଙ୍କ ଉଦ୍ୟମ ଅବ୍ୟାହତ ରଖିବେ । ଅଲୋଚନ ଭିତରେ ସମ୍ବଲପୁରଠାରେ 48-ଶଯ୍ୟା-ବିଶିଷ୍ଟ 24ଟି ପ୍ରକୋଷ୍ଠ ସମ୍ବଳିତ ଗୋଟିଏ ପାନ୍ଥନିବାସ ଖୋଲାଯିବ । 1976-77ରେ ନୃସିଂହନାଥ ଓ ରାଉରକେଲାଠାରେ ଆଉ ଦୁଇଟି ପାନ୍ଥ ନିବାସ ନିର୍ମାଣ କରାଯିବାର ପ୍ରସ୍ତାବ ରହିଛି । 1975-76ରେ ସମ୍ବଲପୁର ଓ ବଲାଙ୍ଗିର ଜିଲ୍ଲାପାଇଁ ଦର୍ଶନୀୟ ସ୍ଥାନ ପରିକ୍ରମା କାର୍ଯ୍ୟକ୍ରମ ଆରମ୍ଭ କରାଯାଇଥିଲା ଓ 1976-77ରେ ଏହି କାର୍ଯ୍ୟକ୍ରମ ଜୟପୁରକୁ ସମ୍ପ୍ରସାରିତ କରାଯିବ । ଭୁବନେଶ୍ୱର, ପୁରୀ, ବଲାଙ୍ଗୀର, ସମ୍ବଲପୁର ଓ ବାଲେଶ୍ୱରଠାରେ ପର୍ଯ୍ୟଟକମାନଙ୍କ ନିମନ୍ତେ ପରିବହନ ବ୍ୟବସ୍ଥା ରହିଛି । ବିଶିଷ୍ଟ ପର୍ଯ୍ୟଟନ କେନ୍ଦ୍ରଗୁଡ଼ିକର ବିକାଶ ସାଧନ ନିମନ୍ତେ ଏକ ମାଷ୍ଟର ପ୍ଲାନ ପ୍ରସ୍ତୁତ କରାଯାଉଛି ଓ ଏହି ଯୋଜନାର ପ୍ରଥମ ପର୍ଯ୍ୟାୟ କାମ 1976-77ରେ କୋଣାର୍କ, ଚିଲିକା, ଅତ୍ରି ଓ ଟିକରପଡ଼ାରେ କାର୍ଯ୍ୟକାରୀ କରାଯିବ । ପୁରୀ-କୋଣାର୍କ ମାରାଇନ ଡ୍ରାଇଭର କାମ ତ୍ୱରାନ୍ୱିତ କରାଯିବ, ଯାହାଫଳରେ କି ଆସନ୍ତା ଦୁଇ ତିନି ବର୍ଷ ମଧ୍ୟରେ ଏହି ରାସ୍ତାର ଉପଯୋଗ କରାଯାଇପାରିବ ।

19. ରାଜସ୍ୱ ବ୍ୟବସ୍ଥା—ଆଗାମୀ ବର୍ଷପାଇଁ ସେଇଁ ବିକାଶମୂଳକ ଯୋଜନାଗୁଡ଼ିକ ମୁଁ ଆପଣମାନଙ୍କ ସମୀପରେ ଉପସ୍ଥାପନ କଲି । ସେଗୁଡ଼ିକ ବହୁମୁଖୀ ଓ ସୁଦୂର ପ୍ରସାରୀ । ଏହି ସମସ୍ତ ପରିକଳ୍ପନାକୁ କାର୍ଯ୍ୟକାରୀ କରିବା ନିମନ୍ତେ 1976-77ରେ 124·74 କୋଟି ଟଙ୍କାର ସମ୍ବଳ ସଂଗ୍ରହ କରିବାକୁ ପଡ଼ିବ । ଆପାତତଃ କେନ୍ଦ୍ରୀୟ ସାହାଯ୍ୟର ପରିମାଣ 63·28 କୋଟି ଟଙ୍କା ମିଳିବ ବୋଲି ଧରି ନିଆଯାଇଛି । ଏହା ଆଗାମୀ ବର୍ଷର ମୋଟ ଖର୍ଚ୍ଚ ଅଟକଳର ଶତକଡ଼ା 50 ଭାଗରୁ ସାମାନ୍ୟ ଅଧିକ । ଏ ବାବଦରେ ଆମର ଦାୟିତ୍ୱ ହେଲା 61·46 କୋଟି ଟଙ୍କା । ଏହି ଦାୟିତ୍ୱ ତୁଲାଇବାପାଇଁ ଆମକୁ 1976-77ରେ 16·23 କୋଟି ଟଙ୍କାର ନୂତନ ସମ୍ବଳ ସଂଗ୍ରହ କରିବା ଆବଶ୍ୟକ, କିନ୍ତୁ ଆଗାମୀ ବର୍ଷପାଇଁ ମୋର ସର୍ବମୋଟ ନୂତନ ଟିକସର ପ୍ରସ୍ତାବ ହେଲା ମାତ୍ର ୩·୬୩ କୋଟି ଟଙ୍କା । ଆବଶ୍ୟକ ହେଉଥିବା ଅବଶିଷ୍ଟ ସମ୍ବଳ ସରକାରୀ କର୍ମଚାରୀ ଓ ଶିକ୍ଷକମାନଙ୍କ ଭବିଷ୍ୟନିଧିରେ ଗଚ୍ଛିତ ପାଣ୍ଠିର ଅଭିବୃଦ୍ଧି ଘଟାଇ ଏବଂ ବିଗତ ବର୍ଷମାନଙ୍କରୁ ଅଧିକ ସମ୍ବଳ ସଂଗ୍ରହ ବ୍ୟବସ୍ଥାରୁ ଅର୍ଥ ସଂଗ୍ରହ କରି ଭରଣା କରାଯିବ । ମୋର ନୂତନ ଟିକସ ପ୍ରସ୍ତାବଗୁଡ଼ିକ ହେଲା—

| | ଆନୁମାନିକ ବାର୍ଷିକ ଆୟ (କୋଟି ଟଙ୍କା ହିସାବରେ) |
|---|---|
| (କ) ତା 1-4-1976 ଠାରୁ ସାଧାରଣ ବିକ୍ରି କର ହାର ଶତକଡ଼ା 5ରୁ 6 ଭାଗକୁ ବୃଦ୍ଧି । | 2·00 |
| (ଖ) ପ୍ରେକ୍ଷାଳୟ ମାଲିକମାନଙ୍କ ଉପରେ ପ୍ରଦର୍ଶନ ଟିକସ (ଶୋ ଟାକ୍ସ) ଧାର୍ଯ୍ୟ । | 0·13 |

(ଗ) ପ୍ରମୋଦ କର ହାର ସର୍ବନିମ୍ନ ଶତକଡ଼ା 25ରୁ 30 ଭାଗକୁ ବୃଦ୍ଧି । 0·10

(ଘ) ଷଣ୍ଢ ରସ୍ଥାଲଞ୍ଚି ଉପରେ ସେସ୍ ଧାର୍ଯ୍ୟ । 1·00

ମାନ୍ୟବର ସଦସ୍ୟମାନେ ମୋ ସହିତ ଏକମତ ହେବେ ଯେ ଏହି ଅତିରିକ୍ତ ଟିକସ ଭାର ଅପେକ୍ଷାକୃତ ସମାଜର ସ୍ୱଚ୍ଛଳ ଶ୍ରେଣୀଙ୍କ ଉପରେ ବେଶୀ ପଡ଼ିବ । 1976-77ର ରାଜ୍ୟ ଯୋଜନାରେ 124·74 କୋଟି ଟଙ୍କା ବିନିଯୋଗ କାର୍ଯ୍ୟକ୍ରମ ରହିଥିବା ଦୃଷ୍ଟିରୁ ଏହି ଟିକସ ଯେ ଅତ୍ୟଧିକ ଏହା କହିବା ସମୀଚୀନ ହେବ ନାହିଁ । ମୋ ଟିକସ ପ୍ରସ୍ତାବଗୁଡ଼ିକୁ କାର୍ଯ୍ୟକାରୀ କରିବା ନିମନ୍ତେ ଆବଶ୍ୟକ ଆଇନ ପ୍ରଣୟନ ଓ ଅନ୍ୟାନ୍ୟ ବ୍ୟବସ୍ଥା ଗ୍ରହଣ କରିବା ଦିଗରେ ମୁଁ ମାନ୍ୟବର ସଦସ୍ୟମାନଙ୍କର ସହଯୋଗ କାମନା କରୁଛି ।

20. 1975-76 ସଂଶୋଧିତ ଅଟକଳ ଓ 1976-77ର ବଜେଟ ଅଟକଳ—1974-75 ଠାରୁ 1976-77 ପର୍ଯ୍ୟନ୍ତ ଅଠରକ୍ଷ ମଧ୍ୟରେ ସପ୍ତମ ବାର୍ଷିକ ଯୋଜନାର ଆନୁମାନିକ ଆୟ 2,272 କୋଟି ଟଙ୍କା ହିସାବକୁ ନିଆଯାଇ ଅସନ୍ତା ବର୍ଷର ବଜେଟ ଅଟକଳ ପ୍ରସ୍ତୁତ କରାଯାଇଛି । ବଜେଟରେ ଦର୍ଶାଯାଇଥିବା ବର୍ଷକର ଆୟବ୍ୟୟ ଅନୁଯାୟୀ ମୋଟ ଆୟ 760·51 କୋଟି ଟଙ୍କା ଓ ବ୍ୟୟ 760·06 କୋଟି ଟଙ୍କା ହେବ ନାମକୁ ମାତ୍ର 0·15 କୋଟି ଟଙ୍କା ବଳକା ହେବ । କେନ୍ଦ୍ର ବର୍ଷ ଭିତରେ ଯୋଜନା ଅଧୀନରେ 0·11 କୋଟି ଟଙ୍କା ଯାଏଁ ବିଭିନ୍ନ ବିଭାଗକୁ ଦିଆଯିବାର ସମ୍ଭାବନା ରହିଥିବାରୁ ଏହି ବଳକା ପରିମାଣ ପରିଶେଷରେ 0·04 କୋଟି ଟଙ୍କାରେ ପହଞ୍ଚପାରେ । ଚଳିତ ବର୍ଷର ସଂଶୋଧିତ ଅଟକଳ ଏବଂ 1976-77 ବର୍ଷର ବଜେଟ ଅଟକଳ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା—

(କୋଟି ଟଙ୍କା ହିସାବରେ)

| | ବଜେଟ ଅଟକଳ 1975-76 | ସଂଶୋଧିତ ଅଟକଳ 1975-76 | ବଜେଟ ଅଟକଳ 1976-77 |
|---|---|---|---|
| ରାଜସ୍ୱ ହିସାବ | | | |
| ଆୟ | 268·10 | 282·83 | 311·35 |
| ବ୍ୟୟ | 274·90 | 299·75 | 308·83 |
| ନିଟ୍ .. | (—) 6·80 | (—) 16·92 | 2·52 |

| | | | |
|---|---|---|---|
| କ୍ୟାପିଟାଲ ହିସାବ | | | |
| ଆୟ | | | .. |
| ବ୍ୟୟ | 32·68 | 58·71 | 41·82 |
| ନିଟ୍ | .. (—) 32·68 | (—) 58·71 | (—) 41·82 |
| ସରକାରୀ ଋଣ | | | |
| ଆୟ | 76·82 | 106·44 | 106·49 |
| ବ୍ୟୟ | 47·89 | 60·05 | 68·13 |
| ନିଟ୍ | 28·93 | 46·39 | 38·36 |
| ଋଣ ଓ ଅଗ୍ରିମ | | | |
| ଆୟ | 12·22 | 17·34 | 15·25 |
| ବ୍ୟୟ | 14·57 | 16·87 | 42·52 |
| ନିଟ୍ | ... (—) 2·35 | 0·47 | (—) 27·27 |

(କୋଟି ଟଙ୍କା ହିସାବରେ)

| | ବଜେଟ ଅଟକଳ 1975-76 | ସଂଶୋଧିତ ଅଟକଳ 1975-76 | ବଜେଟ ଅଟକଳ 1976-77 |
|---|---|---|---|
| ଅପ୍ରତ୍ୟାଶିତ ଖର୍ଚ୍ଚ ପାଣ୍ଠି | | | |
| ଆୟ | | .. | |
| ବ୍ୟୟ | | (—) 1·08 | |
| ନିଟ୍ | .. | (—) 1·08 | |

| | | | |
|---|---|---|---|
| ପବ୍ଲିକ ଏକାଉଣ୍ଟ | | | |
| ଆୟ | 278·53 | 304·53 | 327·42 |
| ବ୍ୟୟ | 265·42 | 276·81 | 299·06 |
| ନଟ୍ | 13·11 | 27·72 | 28·36 |
| ମୋଟ ଆୟ | 635·67 | 711·14 | 760·51 |
| ମୋଟ ବ୍ୟୟ | 635·46 | 711·11 | 760·36 |
| ନଟ୍ ଦେଣନେଣ .. | 0·21 | 0·03 | 0·15 |
| ପ୍ରାରମ୍ଭିକ ଜମା | 0·16 | (—) 4·85 | (—) 4·82 |
| ବର୍ଷ ଶେଷରେ ଜମା.. | 0·37 | (—) 4·82 | (—) 4·67 |

20. ପ୍ରଥମେ 1975-1976 ବର୍ଷଟି 0·16 କୋଟି ବଳକା ଟଙ୍କାକୁ ନେଇ ଆରମ୍ଭ ହେବ ବୋଲି ଆଶା କରାଯାଇଥିଲା, ବାସ୍ତବ କ୍ଷେତ୍ରରେ ଉକ୍ତ ବର୍ଷର ପ୍ରାରମ୍ଭିକ ଜମାରେ 4·85 କୋଟି ଟଙ୍କା ନିଅଣ୍ଟ ପଡ଼ିବାରୁ 1976-1977 ଶେଷରେ 4·67 କୋଟି ଟଙ୍କା ନିଅଣ୍ଟ ପଡ଼ିବ । 1974-1975 ବର୍ଷର ଦେଣନେଣରେ ଯେଉଁ ଅବନତି ଘଟିଲା ତାହା ମୁଖ୍ୟତଃ ଆପେକ୍ସ ସମବାୟ ବ୍ୟାଙ୍କ ସମ୍ପତ୍ତିକୁ ସାର ଯୋଗାଣ ବାବଦ 4·35 କୋଟି ଟଙ୍କା ବ୍ୟୟ ଏବଂ ପୋଟେଟୁ ଓ ରେଙ୍ଗାଲି ଯୋଜନା ବାବଦ କେନ୍ଦ୍ରୀୟ ସାହାଯ୍ୟରୁ 2·43 କୋଟି ଟଙ୍କା କମିଯିବା ଯୋଗୁଁ ଘଟିଛି, ଯାହାକି 1974-1975 ବଜେଟରେ ହିସାବକୁ ନିଆଯାଇ ନଥିଲା । ଚଳିତ ବର୍ଷର ସଂଶୋଧିତ ଅଟକଳରୁ ଜଣାପଡ଼େ ଯେ ବଜେଟ୍ ପରବର୍ତ୍ତୀ ଅତିରିକ୍ତ ବ୍ୟୟ ମଞ୍ଜୁରି ବାବଦ 6·23 କୋଟି ଟଙ୍କା ହିସାବକୁ ନେଲେହେଁ 0·03 କୋଟି ଟଙ୍କା ନାମକୁ ମାତ୍ର ବଳକା ରହୁଛି ।

21. ରାଜସ୍ୱ ପରିଚାଳନା—ମୁଁ ଏଠାରେ ସୂଚାଇ ଦେବାକୁ ଚାହେଁ ଯେ (ଅତିରିକ୍ତ ସମ୍ବଳ ସଂଗ୍ରହ ବାହାରେ) ରାଜ୍ୟର ନିଜ ଟିକସ ଓ ଅଣ-ଟିକସ ଆୟର ପରିମାଣ 1976-1977ରେ ପ୍ରଥମ ଥରପାଇଁ 100 କୋଟି ଟଙ୍କାକୁ ଅତିକ୍ରମ କରୁଛି । ଅଧିକ ଦକ୍ଷତା

ସହକାରେ ହାଲ ଓ ବକେୟା ସରକାରୀ ପାଉଣା ଅସୁଲ କରିବା ଏହି ସମ୍ବଳ ଅଭିବୃଦ୍ଧିର ପ୍ରୋତ୍ସାହିତ କାରଣ । ନଗଦ ସମ୍ବଳ ଯେପରି ଅଯଥା ଜିନିଷପତ୍ର ବା ଆସବାବ ଆକାରରେ ପଡ଼ି ନ ରହେ, ସେଥିପାଇଁ ସରକାରୀ ଉଦ୍ୟୋଗମାନଙ୍କୁ ଏବଂ ନିର୍ମାଣ ଦାୟିତ୍ୱରେଥିବା ବିଭାଗଗୁଡ଼ିକୁ ଷ୍ଟୋରସ ପରିଚାଳନା ଉପରେ ଅଧିକ ଯତ୍ନଶୀଳ ହେବାକୁ ନିର୍ଦ୍ଦେଶ ଦିଆଯାଇଛି । ରାଜ୍ୟର କୃଷି ଓ ଶିଳ୍ପ କ୍ଷେତ୍ରର ବିକାଶ ମୂଳକ କାର୍ଯ୍ୟକଳାପ ନିମନ୍ତେ ଅର୍ଥ ଲଗାଣକାରୀ ସଂସ୍ଥାମାନଙ୍କରୁ ମିଳୁଥିବା ଋଣର ପରିମାଣ କ୍ରମଶଃ ବୃଦ୍ଧି ପାଇବାରେ ଲାଗିଛି ଏବଂ ବ୍ୟବସାୟିକ ବ୍ୟାଙ୍କମାନଙ୍କର ଶାଖା ସଂଖ୍ୟା ପ୍ରାୟ ତିନିଗୁଣ ବୃଦ୍ଧି ପାଇଛି । ସାଧାରଣ ପ୍ରଶାସନ କ୍ଷେତ୍ରରେ ଅତ୍ୟାବଶ୍ୟକ ଖର୍ଚ୍ଚ ଯଥୋଚିତ ପରିମାଣରେ ବଢ଼ାଇ ଦିଆଯାଇଛି । ସର୍ବସାଧାରଣ ସମ୍ପତ୍ତିଗୁଡ଼ିକର ରକ୍ଷଣାବେକ୍ଷଣ ନିମନ୍ତେ ଋଣ-ଯୋଜନା ବାବଦ ବ୍ୟୟ ନସ୍ୱାଦ ବୃଦ୍ଧି କରି ଦିଆଯାଇଛି । ପୋଲିସ, ବିଚାର ବିଭାଗ, ଜେଲ, ରାଜସ୍ୱ ଆଦି ନିୟନ୍ତ୍ରଣକାରୀ ବିଭାଗଗୁଡ଼ିକର ପ୍ରଶାସନିକ ମାନବୃଦ୍ଧି ଉଦ୍ଦେଶ୍ୟରେ 2·10 କୋଟି ଟଙ୍କାର ନୂତନ ଖର୍ଚ୍ଚ ବ୍ୟବସ୍ଥା ବଜେଟ୍‌ରେ ଅନ୍ତର୍ଭୁକ୍ତ କରାଯାଇଛି । ବିଭିନ୍ନ ଅପରାଧର ଅନୁସନ୍ଧାନ ନିମନ୍ତେ ପୋଲିସ ଥାନାମାନଙ୍କର କର୍ମଚାରୀଙ୍କର ଯେଉଁ ଅଭାବ ରହିଛି ଆଗାମୀ ବର୍ଷ ତାହା ପୂରାପୂରି ଦୂର କରିବାପାଇଁ ପ୍ରସ୍ତାବ ରହିଛି । ରାଜସ୍ୱ ବିଭାଗର ଦକ୍ଷତା ବୃଦ୍ଧି ଉଦ୍ଦେଶ୍ୟରେ ଚଳିତ ବର୍ଷ ଆଉ 250ଟି ରାଜସ୍ୱ ପରିଦର୍ଶକ ସଂସ୍ଥା ଖୋଲାଯାଇଛି ଏବଂ ଆସନ୍ତା ବର୍ଷ ବଜେଟରେ ଆଉ 250ଟି ସଂସ୍ଥା ଖୋଲିବାପାଇଁ ବ୍ୟବସ୍ଥା କରାଯାଇଛି । ଚଳିତ ବର୍ଷ ଖୋଲାଯାଇଥିବା 4ଟି ନୂଆଁ ଲିଭ କେନ୍ଦ୍ର ବ୍ୟତୀତ 1976-1977ରେ ଆଉ 4ଟି ନୂତନ କେନ୍ଦ୍ର ବନ୍ଦୋବସ୍ତ ହୋଇ ନଥିବା ଅଞ୍ଚଳରେ ପ୍ରତିଷ୍ଠା କରାଯିବ । 1975-1976ରେ 8ଟି ଅଧିକ ସବ୍-ରେଜିଷ୍ଟ୍ରାର ଅଫିସ ଖୋଲାଯାଇଛି ।

22. ସରକାରୀ କର୍ମଚାରୀ ଓ ପେନ୍‌ସନ୍ ଗ୍ରହୀତାମାନଙ୍କପାଇଁ ସୁବିଧା—ଏହି ଅବସରରେ ମୁଁ ମାନ୍ୟବର ସଦସ୍ୟମାନଙ୍କୁ ଅବଗତ କରାଇବାକୁ ଚାହେଁ ଯେ ଆମ ସମ୍ବଳ ଉପରେ ବହୁ ଚାପ ସତ୍ତ୍ୱେ ସରକାରୀ କର୍ମଚାରୀ ଏବଂ ପେନ୍‌ସନ୍‌ଭୋଗୀମାନଙ୍କ କଲ୍ୟାଣ ସାଧନ ଉଦ୍ଦେଶ୍ୟରେ ସରକାର ବହୁ ବ୍ୟବସ୍ଥା ଗ୍ରହଣ କରିଛନ୍ତି । ଏହିଦିନ ତଳେ ସର୍ବଭାରତୀୟ ନିର୍ଲୋକ ନିଯୋଗ ଶ୍ରମିକମାନଙ୍କର ଖାଉଟି ମୂଲ୍ୟସୂଚୀର 12 ମାସ ହାରାହାରି 306 ପଏଣ୍ଟ ପର୍ଯ୍ୟନ୍ତ ବୃଦ୍ଧିକୁ ବିଚାରକୁ ନିଆଯାଇ ଅଧିକା ଦୁଇ କିସ୍ତି ମହଙ୍ଗାଭତ୍ତା କର୍ମଚାରୀମାନଙ୍କୁ ମଞ୍ଜୁର କରାଯାଇଛି । ପେନ୍‌ସନ୍ ଗ୍ରହୀତାମାନଙ୍କୁ ଅଧିକା ଦୁଇଟି କିସ୍ତିରେ ସର୍ବନିମ୍ନ 8 ଟଙ୍କା ଓ ସର୍ବୋଚ୍ଚ 40 ଟଙ୍କା ଅଧିକ ଭତ୍ତା ମଞ୍ଜୁର କରାଯାଇଛି । ସରକାରୀ କର୍ମଚାରୀଙ୍କ ବ୍ୟକ୍ତିଗତ ସର୍ତ୍ତାବଳୀ ଏବଂ ପ୍ରାପ୍ୟର ତୁରନ୍ତ ଫଇସଲ ନିମନ୍ତେ ନିୟମାବଳୀଗୁଡ଼ିକ ସରଳ କରାଯାଇଛି । ଏଣିକି ଅବସର ଗ୍ରହଣ କରୁଥିବା ଯେ କୌଣସି କର୍ମଚାରୀ ଅବସର ଗ୍ରହଣ ଦିନ ଅନ୍ତତଃପକ୍ଷେ ତାଙ୍କ ପେନ୍‌ସନ୍‌ର

ଋଣ ଚତୁର୍ଥାଂଶ ମଞ୍ଜୁର ପାଇବେ । ଶିକ୍ଷକମାନଙ୍କ ଭବିଷ୍ୟନିଧି ପାଣ୍ଠି ସରକାର ହାତକୁ ନେବା ଫଳରେ ସେମାନେ ବେଶି ହାରରେ ସୁଧ ପାଇପାରିବେ ।

ଅଧ୍ୟକ୍ଷ ମହୋଦୟ, ଦେଶର ସ୍ୱାଧୀନତା ପ୍ରାପ୍ତି ସମ୍ପୂର୍ଣ୍ଣ ହେବା ଉପରେ । ଓଡ଼ିଶାର ଅଗ୍ରଗତି ତଥା ଉନ୍ନୟନ କ୍ଷେତ୍ରରେ ଆମେ ଗୋଟିଏ ଫଳପ୍ରଦ ଏବଂ ଘଟଣା ବହୁଳ ବର୍ଷକୁ ବିଦାୟ ଦେଉଛୁ । ଅନ୍ୟ ପକ୍ଷେ, ଜନସାଧାରଣଙ୍କର ସେବାରେ ନିଯୁକ୍ତ ରହି ସେମାନଙ୍କୁ ସଭ୍ୟ ସମାଜର ଅନ୍ତତଃ ନିମ୍ନତମ ଜୀବନଧାରଣର ମାନ ହାସଲ କରିବାପାଇଁ ନିର୍ଦ୍ଦିଷ୍ଟ ଏକ ପଥରେ ଆଗେଇ ନେବାକୁ ସଂକଳ୍ପବଦ୍ଧ ହେବାପାଇଁ ଏକ ଆଶାପୂର୍ଣ୍ଣ ଓ ସୁଯୋଗ ବହୁଳ ନୂତନ ବର୍ଷ ଆଗତ ପ୍ରାୟ । ଏହି ମହାନ୍ ସୁଯୋଗର ସାର୍ଥକତାପାଇଁ ମୁଁ କାମନା କରୁଛି ଆପଣମାନଙ୍କର ସଦିଚ୍ଛା ଓ ସହଯୋଗ । ମୋର ବିଶ୍ୱାସ, ଯଦି ଆମେ ସମସ୍ତେ ସମ୍ମିଳିତ ଭାବରେ ସ୍ୱେଚ୍ଛାପ୍ରଣୋଦିତ ହୋଇ ବିଦ୍ୱେଷାତ୍ମକ ସଂକୀର୍ଣ୍ଣ ରାଜନୀତି ତ୍ୟାଗକରି ଗଠନମୂଳକ ରାଜନୀତି ଗ୍ରହଣ କରିନେବା ତା'ହେଲେ ଆମର ପବିତ୍ର ସଂକଳ୍ପ ପୂର୍ଣ୍ଣ ହେବ ।

ମହାଶୟ, 1976-1977ର ବାର୍ଷିକ ଆର୍ଥିକ ବିବରଣୀ ଉପସ୍ଥାପନ କରିବା ନିମନ୍ତେ ଆପଣଙ୍କର ଅନୁମତି ଭିକ୍ଷା କରୁଛି ।

ଜୟହିନ୍ଦ୍

# ରାଜ୍ୟର ଋଣ ପରିସ୍ଥିତି

(ହଜାର ଟଙ୍କା ହିସାବରେ)

| | | 1975 ଅପ୍ରେଲ ପହିଲାରେ ବକେୟା ଋଣ | 1976 ଅପ୍ରେଲ ପହିଲାରେ ବକେୟା ଅଟକଳ | 1977 ଅପ୍ରେଲ ପହିଲାରେ ବକେୟା ଅଟକଳ |
|---|---|---|---|---|
| 1. | ଖୋଲା ବଜାର ଋଣ | 87,58,98 | 102,21,03 | 108,86,03 |
| 2. | ରିଜର୍ଭ ବ୍ୟାଙ୍କ ଅଫ୍ ଇଣ୍ଡିଆରୁ କାମଚଳା ଅଗ୍ରିମ | 5,38,00 | 5,38,00 | 5,38,00 |
| 3. | କେନ୍ଦ୍ର ସରକାରଙ୍କଠାରୁ ଋଣ | 539,02,65 | 566,47,36 | 606,83,33 |
| 4. | ରିଜର୍ଭ ବ୍ୟାଙ୍କ ଅଫ୍ ଇଣ୍ଡିଆ (ଏଲ୍. ଟି. ଓ.) ପାଣ୍ଠିରୁ ଋଣ । | 3,34,12 | 4,08,08 | 5,02,42 |
| 5. | ଭାରତର ଜୀବନବୀମା କର୍ପୋରେସନରୁ ଋଣ | 14,01,97 | 14,80,11 | 15,52,33 |
| 6. | ଜାତୀୟ ସମବାୟ ଉନ୍ନୟନ କର୍ପୋରେସନରୁ ଋଣ | 3,84,50 | 4,64,88 | 4,33,10 |
| 7. | ଭାରତର ଖଦି ଓ ଗ୍ରାମ୍ୟଶିଳ୍ପ କମିଶନଙ୍କଠାରୁ ଋଣ | 12,00 | 12,00 | 12,00 |
| 8. | ଷ୍ଟେଟ୍ ବ୍ୟାଙ୍କ ଅଫ୍ ଇଣ୍ଡିଆରୁ ଋଣ | 8,00,00 | 10,00,00 | |
| | ମୋଟ .. | 661,32,22 | 707,71,46 | 746,07,21 |

## ବଜେଟ ବିଷୟରେ ଆଲୋଚନା
## 4-3-1976

ଏ ଗୃହରେ 1976-77 ମସିହାପାଇଁ ଯେଉଁ budget ଉପସ୍ଥାପିତ ହୋଇଥିଲା ତା ଉପରେ ଆଲୋଚନାକରି ଏହି ଗୃହର 43ଜଣ ମାନ୍ୟବର ସଭ୍ୟ ସେମାନଙ୍କର ମତାମତ ଦେଇଥିଲେ, ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଛି । ଆଲୋଚନା ପ୍ରସଙ୍ଗରେ ସେମାନେ ଅନେକ କଥା ଉତ୍ଥାପନ କରିଛନ୍ତି । କେତେକ ମାନ୍ୟବର ସଭ୍ୟ ନିର୍ଦ୍ଦିଷ୍ଟ ଭାବରେ ନିଜ ନିଜ ନିର୍ବାଚନମଣ୍ଡଳୀର ଅଭାବ ଅଭିଯୋଗ କଥା ଉଲ୍ଲେଖ କରିଛନ୍ତି । Sir, ଏସବୁ detailsକୁ ଯିବାପାଇଁ ସମୟ ଅବଶ୍ୟ ନାହିଁ; ତେଣୁ ଯାହାକି ସାଧାରଣ ଭାବରେ ଏଠାରେ ଆଲୋଚନା କରାଗଲା ସେ ସମ୍ପର୍କରେ ମୁଁ କହିବି, ଅମର ଏରସମାର ମାନ୍ୟବର ସଭ୍ୟ ଗୋଟିଏ ପ୍ରଶ୍ନ ଉଠାଇଥିଲେ ଯେ ଅମର ଏ ଗୃହରେ budget ଆଲୋଚନାରେ ସାହାଯ୍ୟ କରିବାପାଇଁ ଗୋଟିଏ White Paper ପ୍ରତିବର୍ଷ ଦିଆ-ଯାଇଥାଏ ଏବଂ ତା ସହିତ ମଧ୍ୟ ବିଭିନ୍ନ ବିଭାଗପାଇଁ ଗୋଟିଏ ଗୋଟିଏ ନୋଟ୍ ଥାଏ । କିନ୍ତୁ Sir, ମୋ ବିଭାଗ ଓ ଅନ୍ୟ ବିଭାଗରୁ ମୁଁ ଯାହା ବୁଝିଛି 1974-75 ମସିହାଠାରୁ ଏହାର ଗୋଟିଏ departure ହୋଇଛି । ତାହା ପୂର୍ବରୁ 1974-75 ମସିହା ପର୍ଯ୍ୟନ୍ତ ପ୍ରତିବର୍ଷ budget ଆଲୋଚନା ସମୟରେ ଗୋଟିଏ White Paper ଆସୁଥାଏ । ସେ White Paperରେ ସରକାରଙ୍କ ବିଭିନ୍ନ ବିଭାଗର କାର୍ଯ୍ୟକଳାପ ସମ୍ପର୍କରେ ଉଲ୍ଲେଖ କରାଯାଇଥାଏ । 1974-75 ଠାରୁ ଏହାର departure ହେଲା । ସେହି Consolidated White Paper ଅଉ ବାହାରିଲା ନାହିଁ । ତା' ବଦଳରେ ବିଭିନ୍ନ ବିଭାଗର କାର୍ଯ୍ୟ ସମ୍ପର୍କରେ ଅଲଗା ଅଲଗା ନୋଟ ମାନ୍ୟବର ସଭ୍ୟମାନଙ୍କୁ ଆମ demand ଆଲୋଚନାରେ ସାହାଯ୍ୟ କରିବା-ପାଇଁ ବାହାରୁଛି । ଯଦିଓ ଏଇଟା ପ୍ରକାଶିତ ହେଉନାହିଁ ସେଥିପାଇଁ ମାନ୍ୟବର ସଭ୍ୟମାନଙ୍କର ଏତେ ଉଦ୍‌ବେଗ ପ୍ରକାଶ କରିବାର କିଛି କାରଣ ନାହିଁ ।

Sir, ଆପଣ ଦେଖିବେ ଯେ ଏଠାରେ ପ୍ରଧାନତଃ ଦୁଇ ଗୋଟି କଥା ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି । 20-ଦଫା କାର୍ଯ୍ୟକ୍ରମ ଏବଂ ଜରୁରୀକାଳୀନ ଏବଂ ଅନ୍ୟାନ୍ୟ କେତେକ ଉତ୍କଳର ନେଇ ବିରୋଧୀ ଦଳ ତାଙ୍କର ତୀବ୍ରତର ମାର୍ଗରେ ସମାଲୋଚନା କରିଛନ୍ତି । ଧାମନଗରର ମାନ୍ୟବର ସଭ୍ୟ କହିଲେ 20-ଦଫା ପ୍ରୋଗ୍ରାମ, 12-ଦଫା ପ୍ରୋଗ୍ରାମ, 5-ଦଫା ପ୍ରୋଗ୍ରାମ ଏହାଭିତରେ କେଉଁଆଡ଼େ ଯିବ, ତାହା ଭବିବେ ଆମେ ଜାଣି ପାରୁନାହୁଁ । ମୁଁ ତାଙ୍କୁ ଏଠାକୁ ଅନୁରୋଧ କରିବି ସେ ଟିକିଏ ହୃଦୟର ସହିତ ଦେଖନ୍ତୁ 20-ଦଫା ହେଉ, 12-

ପଏଣ୍ଟ ହେଉ, 5-ପଏଣ୍ଟ ହେଉ ଏଥିରେ ନୂତନତ୍ୱ କିଛି ନାହିଁ ବୋଲି କେତେକ ମାନ୍ୟବର ସଭ୍ୟ ଯାହା କହୁଛନ୍ତି ମୁଁ ମଧ୍ୟ ସେଇକଥା କହୁଥାଉଛି । ଏଥିରେ ନୂତନତ୍ୱ କିଛି ନାହିଁ । ସବୁ ଆଗରୁ ଥିଲା । କିନ୍ତୁ ଏବେ ତାକୁ କାର୍ଯ୍ୟକାରୀ କରିବାପାଇଁ ଗୁରୁତ୍ୱ ଦିଆଗଲା । ଏସବୁ ପ୍ରସ୍ତାବ ଆଗରୁ ଥିଲେ ମଧ୍ୟ କାର୍ଯ୍ୟକାରୀ କରିବାକୁ ହେବ । ବିଭିନ୍ନ ସମୟରେ ବର୍ତ୍ତମାନ ଯେଉଁମାନେ ବିରୋଧୀ ଦଳରେ ଅଛନ୍ତି ସେମାନଙ୍କ ଭିତରୁ କେତେକ ଅତୀତରେ ମୁଖ୍ୟମନ୍ତ୍ରୀ ଆସନରେ ଥିଲେ । ସେମାନଙ୍କ ସମୟରେ ଯେଉଁସବୁ ପ୍ରସ୍ତାବ ହୋଇଥିଲା ତା ମଧ୍ୟ କାର୍ଯ୍ୟକାରୀ ହୋଇ ନଥିଲା । ସେଇଥିପାଇଁ ଆପଣ ଜାଣନ୍ତି ହେଲା କଂଗ୍ରେସ ବିଭାଜନ । କଂଗ୍ରେସ ବିଭାଜନ ପରେ ହେଲା ଯେଉଁ ପ୍ରସ୍ତାବ ସବୁ ପାର୍ଟି ଫୋରମରେ ହେଉ କିମ୍ବା ଅନ୍ୟ ଫୋରମରେ ହେଉ, ଗୃହୀତ ହୋଇଛି ତାକୁ କାର୍ଯ୍ୟକାରୀ କରାଯିବ । 20-ପଏଣ୍ଟ, 12-ପଏଣ୍ଟ, ବା 5-ପଏଣ୍ଟ......

5-ପଏଣ୍ଟ ହେଉଛି ବିନୋବା ଭାବେଙ୍କ ପ୍ରଥମ ଦାନ ଆନ୍ଦୋଳନ ପ୍ରସଙ୍ଗରେ । ବିନୋବା ଭାବେ ଗୋଟିଏ 5-ପଏଣ୍ଟ ପ୍ରୋଗ୍ରାମ କରିଛନ୍ତି । କେତେକ ମାନ୍ୟବର ସଭ୍ୟ କହୁଛନ୍ତି ଏହା ଗୋଟିଏ ଇଲେକ୍‌ସନ୍ ମାନିଫାଷ୍ଟୋ । ଆଉ କେତେକ କହୁଛନ୍ତି ପ୍ରକୃତର ମୂଲ୍ୟ ବଢାଇବାପାଇଁ ଏହା ହୋଇଛି । ସାର୍, ଏଗୁଡ଼ା ମୋଟେ ନୁହେଁ । ଏଥିରେ ଯାହା କୁହାଯାଇଛି with all earnestness at my command । ମାନ୍ୟବର ଧାମନଗରର ସଭ୍ୟ, କନ୍‌ଫ୍ରଣ୍ଟେସନ୍ ଗୁଡ଼ି କୋ-ଅପରେସନ୍ ଉପରେ ଜୋର ଦେଇଛନ୍ତି । ସେ ପ୍ରଥମେ ଆରମ୍ଭ କଲେ କନ୍‌ଫ୍ରଣ୍ଟେସନ୍ କେଉଁ ପକ୍ଷରୁ ଆରମ୍ଭ ହୋଇଛି । ସେ କେତେକ ଉଦାହରଣ ଦେଇଛନ୍ତି । ଏ ପ୍ରସଙ୍ଗରେ ମୁଁ କହିବି, ଦେଶରେ ଏଭଳି ଗୋଟିଏ ପରିସ୍ଥିତି ସୃଷ୍ଟି ହେଲା ଯେଉଁ ପରିସ୍ଥିତିରେ ଘୋର ଅନ୍ଧକାର ମାଡ଼ି ଆସୁଥିଲା, ତା'ର ପ୍ରତିରୋଧ କରିବାକୁ ହେବ । ସେଥିପାଇଁ ମୁଁ କହୁଥିଲି 15-8-1947 ମଧ୍ୟ ରାତ୍ରରେ ଆମେ ଯେପରି ସ୍ୱାଧୀନତା ଲାଭ କରୁ ସେଇପରି ଜନ୍ 26 ମଧ୍ୟ ରାତ୍ରରେ ଦେଶ ଏକ ଘୋର ବିପଦର ସମ୍ମୁଖୀନ ହେବା-ପାଇଁ ବଞ୍ଚିଗଲା । ସେହି ଦୃଢ଼ତା ଫଳରେ ଯେଉଁ ବିପତ୍ତି କଳ୍ପିତଭାବରେ ଏ ଦେଶକୁ ଆସିଥାନ୍ତା ତାହା ଆସିପାରିଲା ନାହିଁ । ସାର୍, ଅନେକ ମାନ୍ୟବର ସଭ୍ୟ କହୁଛନ୍ତି ସେଭଳି ବିପତ୍ତି କିଛି ନଥିଲା । କଂଗ୍ରେସ ଦଳ ଅତିରଞ୍ଜିତକରି ଏହା କହୁଛନ୍ତି । ଯେଉଁ ବିପତ୍ତି ଆସୁଥିଲା ବୋଲି ସେମାନେ ନିଜେ କହୁଛନ୍ତି ତା କିଛି ନୁହେଁ । ମୁଁ ସାର୍, ବିରୋଧ କରିବ ନାହିଁ । ଏ ବିପତ୍ତି ଅତି ଭୟାନକଭାବରେ

ପଡୁଥିଲା । କେବଳ ସେତିକି ନୁହେଁ ଗତ 3/4 ବର୍ଷର ଧାରାବାହିକ ଇତିହାସ ଦେଖନ୍ତୁ, ସାମାଜିକ, ଅର୍ଥନୈତିକ ଏବଂ ଅନ୍ୟାନ୍ୟ କ୍ଷେତ୍ରର ଯେଉଁସବୁ ସ୍ତରରେ ବିଶୃଙ୍ଖଳା ଦେଶରେ ଦେଖା ଦେଇଥିଲା ସେ ବିଶୃଙ୍ଖଳା ଏ ଦେଶର କାଳ ହୋଇଥାନ୍ତା । ଅଧ୍ୟକ୍ଷ ମହୋଦୟ, ଗୋଟିଏ ଉଦାହରଣ ଦେଲେ ଆପଣ ଜାଣିପାରିବେ, ଆମର ପବ୍ଲିକ ସେକ୍ଟରର କେତୋଟି ଇସ୍ପାତ୍ କାରଖାନା ଅଛି, ତା'ର ରେଟେଡ୍ କାପାସିଟି ଅଛି । ଏଭଳିଭାବରେ ଧର୍ମଘଟ ହେଲା କୌଣସି କାରଖାନା ରେଟେଡ୍ କାପାସିଟିରେ ପହଞ୍ଚି ପାରିଲେନାହିଁ । ଏଣୁ ଆମର ଲୁହାପଥର ବ୍ୟବହାର ଯଥେଷ୍ଟ ହେଲା ନାହିଁ । ମାନ୍ୟବର ସଭ୍ୟ କହୁଥିଲେ ଏହା ରତ୍ନଗର୍ଭା ରାଜ୍ୟ । ବହୁତ ଖଣିଜ ପଦାର୍ଥ ରହିଛି, ଏହାକୁ ଆମେ ଏକ୍ସପ୍ଲଏଟ୍ କରିପାରୁନାହୁଁ । କୋଟିଏ ଟଙ୍କା ରୟାଲଟି ପାଇ ଆମେ ସନ୍ତୁଷ୍ଟ । ଅନ୍ୟାନ୍ୟ କାରଣ ରହିଛି । କିନ୍ତୁ ମୁଖ୍ୟତଃ ବିଶୃଙ୍ଖଳା । ସାର୍, ଆଜି କେତେବେ ମାନ୍ୟବର ସଭ୍ୟ କହୁଛନ୍ତି ଏଥିରେ ଆମର କଂଟ୍ରୋଲ୍ କେଉଁଠି ଦେଖାଦେଉଛି । ଆମେ ଯାହା କହୁଛୁ 14 ହଜାର ଲୋକ ଚାକିରି ପାଇଲେ କିନ୍ତୁ ଏଇଟା କଣ ଗୋଟାଏ ବଡ କଥା । ଏଥିରେ ଗର୍ବ କରିବାର କଣ ଅଛି ? କେବଳ ଫ୍ୟାକେଟ୍ ଯାହା ତାକୁହିଁ ଏଥିରେ ପ୍ରେଜେଣ୍ଟ୍ କରାଯାଇଛି । ମାନ୍ୟବର ସଭ୍ୟ ଯାହା କହୁଥିଲେ attitude towards developments, ସେ ସବୁ ଭଲଭାବରେ ବିଚାର କରିବେ does he find a change in the attitude or not ? ଏଇଟା ଲକ୍ଷ୍ୟ କରିବାର କଥା । ଆମର ବିଭିନ୍ନ ବିଭାଗର ଉନ୍ନତିପାଇଁ ଉଦ୍ୟମ ହେଉଛି । ଏହାର ସ୍ପିଡ୍ କେଉଁଠି ଧୀର ହୋଇ ପାରିଥାଏ, କେଉଁଠି ଅଧିକ ହୋଇ ପାରିଥାଏ ମୁଁ ସେଇଟା ମାନୁଛି । ମିନେରାଲସ୍ କଥା ଆଲୋଚନା କରାଯାଉ । ମିନେରାଲ ଉତ୍ତୋଳନ କରିବା ଏବଂ ତାହାକୁ ପଠାଇବା କେତେଗୁଡ଼ିଏ ଜିନିଷ ଉପରେ ନିର୍ଭର କରେ । ଏହାର ମାର୍କେଟ ଇଣ୍ଟର ନ୍ୟାସନାଲ ମାର୍କେଟ । ପ୍ରତି-ଦ୍ୱନ୍ଦ୍ୱିତାର ସମ୍ମୁଖୀନ ହେଉଛୁ । ଲୁହାପଥର, ଡୋଲମାଇଟ, କ୍ରୋମାଇଟ, ଇସ୍ପାତ କାରଖାନାରେ ଯାହାସବୁ ଦରକାର ହୁଏ ଏଥିପାଇଁ ପୃଥିବୀର ଅନ୍ୟାନ୍ୟ ଦେଶ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ପଡୁଛି । ସେଥିପାଇଁ ଦରଦାମ କେଉଁ ରେଟରେ ବଢ଼ିବ ସେଇଟା ସରକାର ସ୍ଥିର କରନ୍ତୁ । ଏହା ନୁହେଁ ଯେ ଆମେ ସବୁ ସ୍ଥିର କରିଦେବୁ ଆମର ଯେତେ ଲୁହା ଅଛି, ଏକ୍ସପ୍ଲଏଟ୍ କରିବୁ ତା' ହେଲେ ମୁଁ କହିବି ପିଟ୍‌ହେଡ୍‌ରେ ଜମା ରହିବାଛଡ଼ା ଅନ୍ୟ ଯାଗାକୁ ଯିବାରେ ଅସୁବିଧା ହେବ । ଗୋଟିଏ କଣ୍ଡିସନ୍ ହେଲା ଆମର ଏକ୍ସପୋର୍ଟ ଟେକ୍ସ ଆମେ ବିଦେଶକୁ ଯେତେ ଅଧିକ ପଠାଇବୁ

ସେତେ ଅଧିକ ଖଣିଜ ଦୋର୍ଥ ଏକ୍ସପ୍ଲଏଟ୍ କରିବୁ ଅମେ । ଦ୍ୱିତୀୟ କଥାଟି ହେଲା, ଆମକାରିକ କାର, ସେଇଟା ନିର୍ଭର କରେ ଅର୍ଥନୈତିକ ଅଭିବୃଦ୍ଧି ଉପରେ । ଯେତେ ଦୃତଗତିରେ ଲୋକଙ୍କ ଆର୍ଥିକ ଉନ୍ନତି ହେବ ସେତେ ଅଧିକ ବେଗରେ ଅମେ ଏକ୍ସପ୍ଲଏଟ୍ କରିପାରିବୁ । ମୁଁ କହୁଥିଲି ଆମର ଯେଉଁ ଡ଼ାଇନାମ ରହିଥିଲା ସେଥିରୁ ଟୋଟିଏ ହେଲା ରେଟେଡ କାପାସିଟି । ଇମରଜେନ୍‌ସି ଭିତରେ ଲୁହା କାରଖାନାମାନଙ୍କରେ ରେଟେଡ଼ କାପାସିଟି ବଢ଼ି ଯାଇଛି । ବର୍ତ୍ତମାନ 94 ଅଛି । ଉନ୍ନତିବେଳେ ଅଧିକ ଲୁହା ଦରକାର ହେବ । ସେମାନେ ଯୋଗାଇବେ, ଏଥିରୁ କାରଣ ଆମକୁ ଦେଖିବାକୁ ହେବ । ଆମର ଏତେ ଲୁହା ଅଛି ଅମେ ଖନି କରି ପାରୁ ନାହୁଁ, ଏପରି କହିବା ଠିକ୍ ନୁହେଁ । ଅନ୍ୟ ଉପରେ ଦୋଷ ଲଦିଦେବା ଠିକ୍ ନୁହେଁ । ଏପରି ଆଲୋଚନା ଏ ଗୃହରେ ହୋଇପାରେ । ଯେ ଉଦ୍ଦେଶ୍ୟରେ ଏହା ହୋଇଥାଏ ତାହାହେଲେ ମୁଁ ଜାଣେ । ଅମେ maximum attempt ଏ ଦିଗରେ କରୁଛୁ । କନ୍ସୋଲିଡେଟ୍ ମାଇନସର development ପାଇଁ ବହୁତ ସ୍କିମ୍ ଅଛନ୍ତି । ତାକୁ ଉପରି ଏକ୍ସପ୍ଲଏଟ୍ କରିବୁ, ବଡ ଧରଣର କାରଖାନା ଆମର ହୋଇପାରିବ ସେ ଦିଗର ଉଦ୍ୟମ ଚାଲିଛି । ମୋର ବିଶ୍ୱାସ ଆମେ ସେ ଦିଗରେ ସଫଳ ହେବୁ । ଆଲୋଚନା ପ୍ରସଙ୍ଗରେ କବିସୂର୍ଯ୍ୟନଗର ମାନ୍ୟବର ସଭ୍ୟ କହିଲେ ଯେ ଆମର tax ଏବଂ non-tax revenue କ୍ଷେତ୍ରରେ ସାମଞ୍ଜସ୍ୟ ରହୁନାହିଁ । ଆମର non-tax revenue ବଢ଼ିବା ଦରକାର । ଏଥିରେ ପଦରୁ ବଡ଼ କଥା କହିବାର ନାହିଁ । ମୁଁ ତାକୁ dispute କରୁନାହିଁ । କିନ୍ତୁ non-tax revenue ବଢ଼ିବ କୌଣସି ପରିସ୍ଥିତିରେ । ସେ ପରିସ୍ଥିତିରେ non-tax revenue ବଢ଼ିବା ଉଦ୍ୟମ ହୋଇଛି । ଆମର ଗତ କେତେ ବର୍ଷରେ tax revenue କେତେ ବଢ଼ିଛି, non-tax revenue କେତେ ବଢ଼ିଛି ମୁଁ ତା'ର ସଂକ୍ଷିପ୍ତ ସୂଚନା ଦେଉଛି ଯେଉଁଥିରୁ ମନେହେବ revenue ପାଇଁ କେବଳ ସରକାର tax revenue ଉପରେ ନିର୍ଭର କରୁଛନ୍ତି । Non-tax revenue ମୋଟେ ବଢ଼ୁନାହାନ୍ତି । ଏ ଧାରଣା ଠିକ୍ ନୁହେଁ ଆପଣ ଦେଖିବେ ଯେପରି tax ବଢ଼ିଛି—

| | କୋଟି |
|---|---|
| 1973-74 | 42·20 |
| 1974-75 | 50·43 |
| 1975-76 | 67·37 |
| 1976-77 | 81·05 |

Non-tax excluding Commercial interest

| | କୋଟି |
|---|---|
| 1973-74 | 48·82 |
| 1974-75 | 48·04 |
| 1975-76 | 56·90 |
| 1976-77 | 67·87 |

This doesnot include Central grant-in-aid.

Development expenditure କେତେ ? Non-development expenditure କେତେ ? ଏ ସମ୍ବନ୍ଧରେ Non-development expenditure ଅଧିକା ହେଉଛି ବୋଲି ଅଭିଯୋଗ ହୋଇଛି । କ୍ରମାଗତ ଭାବରେ Non-development expenditure ବହୁତ ଅଧିକ ବଢି ଚାଲିଛି । ସେ proportion ରେ development expenditure ହେଉନାହିଁ । ଏଥିରେ ମାନ୍ୟବର ସଭ୍ୟ ଚିନ୍ତା କରୁ ନାହାନ୍ତି । ତାହା ମୁଁ ସ୍ବୀକାର କରୁଛି । ଆପଣ ଦେଖନ୍ତୁ Non-development revenue expenditure—

| | |
|---|---|
| 1973-74 | 87·78 |
| 1974-75 | 73·50 |
| 1975-76 | 98·99 |
| 1976-77 | 102·34 |

estimate ହୋଇଛି

Development revenue expenditure excluding Central Plan sector—

| | |
|---|---|
| 1973-74 | 153·73 |
| 1974-75 | 157·51 |
| 1975-76 | 256·86 |
| 1976-77 | 285·12 |

ଏହି ହାରରେ ଆମର development expenditure ପୁରା ବର୍ଷ ହେଉଛି । Non-tax revenueର ଆମର source ହେଲା, royalty on mineral, sale of ବାଣିଜ୍ୟମାନ and ଉତ୍ତମା power, forest revenue. ଏ ଉତ୍ସ ଆମର ବଡ ଆଇଟମ୍ ।

କଵପୁର୍ଯୋଜନାରେ ମାନ୍ୟବର ସଦସ୍ୟ ଅନେକ ଗୋଟିଏ କଥା କହିଛନ୍ତି ଯେ ଆମେ ବହୁତ Monopoly House ଉପରେ depend କରୁଛୁ । ଆଉ ଜଣେ ମାନ୍ୟବର ସଦସ୍ୟ ମଧ୍ୟ ସେ କଥା କହିଛନ୍ତି । ଏହା All India Level National Policy ଉପରେ ନିର୍ଭର କରେ । ଏ ଆଲୋଚନା Central Budget ଉପରେ ନିର୍ଭର କରିବ ହେବ । ପ୍ରତ୍ୟେକ ମଧ୍ୟ ଗତ କେତେ ବର୍ଷ ଭିତରେ ବହୁତ ଇଣ୍ଡଷ୍ଟ୍ରି ବଢ଼ିଛି । ଏ ସବୁ Monopoly Houseମାନଙ୍କୁ ଦିଆଯାଉଛି ଓ ସେମାନଙ୍କୁ ଉତ୍ସାହିତ କରାଯାଉଛି ବୋଲି କହିବା ଠିକ୍ ନୁହେଁ । ଆଗରୁ କାଳଜନଲ, ଜୟଶ୍ରୀ କେମିକାଲ, ଏ ସବୁ ବସିଯାଇଛି । ସେ ସବୁ ଛାଡ଼ିଦେଲେ ଗତ 5 ବର୍ଷର ଯୋଜନା ଦେଖିବା ଯାହାକିଛିଲେ Monopoly Houseମାନଙ୍କରେ ଓଡ଼ିଶା ଇଣ୍ଡଷ୍ଟ୍ରି ସମ୍ବନ୍ଧ କିଛି ବାଣିଜ୍ୟ ନାହିଁ ।

Rupees in Crores

| | | | |
|---|---|---|---|
| 1. | Orissa Cotton Mill, Bhagatpur. | 1·34 | Revived by National Textile Corporation. |
| 2. | Orissa Tyres Ltd., Bhubaneswar. | 33·00 | The Industrial Promotion and Investment Corporation of Orissa Ltd., and Transport Corporation of India. |
| 3. | Konark Jute Mill, Dhanmandal. | 450 | Industrial Development Corporation and National Agriculture Co-operative Marketing Federation of India Ltd. |
| 4. | Sodium Dichromate Plant, Talcher. | 3·21 | Industrial Development Corporation and Shri D. K. Jhunjhunwala. |

| | Rupees in Crores | |
|---|---|---|
| 5. East Coast Breweries and Distilleries Ltd., Paradeep. | 1·50 | Industrial Development Corporation. |
| 6. Orissa State Powerloom Weavers, Co-operative Society Ltd., (Cotton Yarn Product), Cuttack. | 5·00 | Co-operative Sector |
| 7. Indian Metal and Ferro-Alloys Ltd., (Calcium Carbide Project), Theruvali. | 5·24 | Dr. B. D. Panda, M/s. Indian Metal and Ferro-Alloys, Private Local Entrepreneurs. |
| 8. Straw Products Ltd., (Expansion), Rayagada. | 1·00 | M/s. Straw Products Ltd., an outside Entrepreneurs. |
| 9. Orissa Industries (Refractory Plant), Lathikata. | 1·00 | M/s. Orissa Industries, a local Entrepreneure. |
| 10. Fertiliser Plant at Talcher. | 150·00 | Fertiliser Corporation of India Ltd., a Government of India Undertaking. |
| 11. Mineral Sands Separation Unit at Gopalpur. | 38·00 | M/s. Indian Rare Earth, Ltd. a Government of India Undertaking. |
| 12. Heavy Water Plant, Talcher. | 21·00 | Atomic Energy Commission of the Government of India. |
| 13. Coke Plant at Talcher. | 10·00 | National Coal Development Corporation, a Government of India Undertaking. |

ମୁଁ ଦୁଇଜଣ ବନ୍ଧୁଙ୍କର ନାମ ଉଲ୍ଲେଖ କଲି । ଆମେ ପ୍ରଥମେ ଆମ ରାଜ୍ୟର ଶିଳ୍ପପତିମାନଙ୍କୁ ସୁବିଧା ସୁଯୋଗ ଦେଉଛୁ । ଆମ ରାଜ୍ୟରେ ଯେଉଁ ସବୁ କର୍ପୋରେସନ ଅଛନ୍ତି ଏବଂ ଯେଉଁମାନଙ୍କର ସମ୍ବଳ ଅଛି ସେମାନଙ୍କୁ ପ୍ରଥମ ସୁବିଧା ଦେଉଛୁ । ତା'ପରେ ଯାଇ ବାହାର ଲୋକଙ୍କୁ ସୁବିଧା ଦେଉଛୁ । ବାହାର ଲୋକେ ଯେଉଁମାନେ ପ୍ରଥମ କରି ଏ ଧନ ଖଟାଇ ପାରିବେ, ପ୍ରଥମ କରି ଶିଳ୍ପଅନୁଷ୍ଠାନମାନ ଆରମ୍ଭ କରି ପାରିବେ, ସେମାନଙ୍କୁ ତା'ପରେ ସୁବିଧା ସୁଯୋଗ ଦିଆଯାଉଛି । ତା'ପରେ ଅଭିଯୋଗ ହୋଇଛି । World Bank ହେଉଛି ଗୋଟିଏ ଆମେରିକାନ୍ Agency. World Bankକୁ ଏହିପରି ଭାବରେ ସମାଲୋଚନା କରିବା ଉଚିତ ନୁହେଁ । World Bahkରେ କେବଳ ଆମେରିକାର ଅଂଶ ନାହିଁ । ଅନ୍ୟାନ୍ୟ ଦେଶମାନଙ୍କର ମଧ୍ୟ ଅଂଶ ରହିଛି । Developing Countryମାନେ World Bankରୁ ଟଙ୍କା ଆଣୁଛନ୍ତି । ଏହି Developing Countryମାନଙ୍କୁ Third World ବୋଲି କୁହାଯାଇଥାଏ । ମାନ୍ୟବର ସଭ୍ୟମାନେ ବୋଧ ହୁଏ C. I. A.କୁ ଅନ୍ତରରେ ରଖି ଏହିକଥା କହୁଛନ୍ତି । ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଛି । ଆମଦେଶରେ C. I. A.ର activity ଥିଲା, ତା'ର Agency ଥିଲା । ସେଥିପାଇଁ ବୋଧହୁଏ ଏହି ଭୟ ରହିଯାଇଛି । ସେ ଭୟର କୌଣସି କାରଣ ନାହିଁ । ଆମେ ସବୁବେଳେ ସତର୍କ ରହୁଛୁ ଏଥିରେ କୌଣସି ଦ୍ୱିଧାର କଥା ନାହିଁ ।

World Bank Team ବୁଲି ଦେଖୁଛନ୍ତି କେଉଁ କେଉଁ କାର୍ଯ୍ୟ ସେମାନେ ଗ୍ରହଣ କରିବେ । ସେମାନେ clear view ନେଉଛନ୍ତି । ଏହାପରେ ଯିବ ହେବ । ତାହାପରେ ପ୍ରଶ୍ନ ଉଠିଛି ବିଗତ କେନ୍ଦ୍ରୀୟ ଇଉନିକ ଭାରତ ବର୍ଷର ଅର୍ଥନୈତିକ ପଲିସିରେ ଯେ ଉନ୍ନତି ଘଟିଛି । ଏହାଦ୍ୱାରା କିଏ ଅଧିକ ଉପକୃତ ହୋଇଛି ? ଗରିବଲୋକ ଉପକୃତ ହୋଇ ନାହାନ୍ତି ବୋଲି ବିରୋଧୀ ଦଳ ପକ୍ଷରୁ କୁମ୍ଭୀର କାନ୍ଦଣା ଗୁଲିଛି । ମୁଁ ସେମାନଙ୍କୁ ପଚାରେ ଏ କୁମ୍ଭୀର କାନ୍ଦଣା କାହିଁକି ?

କୁମ୍ଭୀର ଯେତେବେଳେ ପ୍ରାଣୀଟିକୁ ଉପରକୁ ବାହାରେ ତା' ଆଖିରୁ ପାଣି ଗଡ଼ିପଡେ ସେ ଯାହାହେଉ ଆମେ ସାଧାରଣ ଲୁଗାର ଦର ଅତି କମ୍ କରି ଦେଇଛୁ । ଅବଶ୍ୟ ଉଚ୍ଚଶ୍ରେଣୀର ଲୁଗା ନାଇଲନ୍ ପ୍ରଭୃତି, ଉପରେ ଟିକସ ରହିଛି । ମାନ୍ୟବର ସଭ୍ୟମାନେ ଶୁଣି ଖୁସି ହେବେ ସାଧାରଣ ଲୁଗାର ଦର ଏତେ କମ୍ ହୋଇଛି ଯେ ଲୋକେ ଆଗହ ସହକାରେ ତାକୁ କିଣୁଛନ୍ତି । ତା'ପରେ ଖାଦ୍ୟ ଶସ୍ୟ ଦରରେ ୧.୧୦% କମିଯାଇଛି । କୃଷି ଜାତ କଞ୍ଚାମାଲ ଉପରେ ୬୫% ଭାଗ କମିଯାଇଛି । ଶିଳ୍ପଜାତ ଦ୍ରବ୍ୟରେ ୧.୯ ଭାଗ କମି ଯାଇଛି । ସେଥିପାଇଁ ମାନ୍ୟବର ସଭ୍ୟମାନେ କ୍ଷୋଭ ପ୍ରକାଶ

କରିବାର କୌଣସି କାରଣ ନାହିଁ । କରେ ବନ୍ଧ କହିଲେ ଖାଦ୍ୟ ଶସ୍ୟର ଦର କମିଛି ସତ କିନ୍ତୁ ସେତେ ପରିମାଣରେ କମି ନାହିଁ । ପ୍ରଶଂସିତ ଭାବରେ କମିନାହିଁ । ଆଗରୁ Fall in Price ଏତେ ପରିମାଣରେ ନଥିଲ । ସେମାନେ Higher Rateରେ କିଣିଥିଲେ କିନ୍ତୁ ସେତେବେଳେ ସେମାନେ Prevailing Rateରେ କିଣିବେ ସେତେବେଳେ ଦେଖାଯିବ କ'ଣ ହେଉଛି । ୨୫% ଦର fall ହେଉଛି ବୋଲି କୁହାଯାଉଛି । ସେତେବେଳେ ଯଦ ଆମେ ଉଚିତ୍ ମନେକରିବା, ଆମେ Revised Price ସ୍ଥିରକରି ପାରିବା, କିନ୍ତୁ ବର୍ତ୍ତମାନ ତାହାକୁ କହିବା, ପ୍ରଶଂସା କରିବାର ଅବକାଶ ନାହିଁ । ଫରେନ ମାର୍କେଟକୁ ରପ୍ତାନି କରିବା ବିଷୟରେ ମୁଁ କହୁଛି ଆମେ ୩୩ ଶହ କୋଟି ଟଙ୍କାର ଶିଳ୍ପଜାତ ଓ Engineering Goods ରପ୍ତାନି କରୁଛୁ ପ୍ରଥମ ଥର ପାଇଁ । ଆମେ ଏହି ଗୌରବରେ ରହୁଛୁ । ଆମେ ଆଶା କରୁଛୁ ଆହୁରି ଅଧିକ ରପ୍ତାନି କରି ପାରିବୁ । ତା'ପରେ ଜଣେ ମାନ୍ୟବର ସଭ୍ୟ କହିଲେ ଆମର ଶ୍ରମମନ୍ତ୍ରୀ ଆମେରିକାରେ ଯାଇ କହିଲେ ଭାରତବର୍ଷରେ Labour is very cheap, it is dam cheap. ମାନ୍ୟବର ସଭ୍ୟ ବୋଧ ହୁଏ କଥାଟାକୁ ଭଲଭାବରେ ବୁଝି ନାହାନ୍ତି, ସେଥିପାଇଁ ବୋଧ ହୁଏ ତାଙ୍କ ମନରେ ଏହିପରି ଆଶଙ୍କା ଜାତ ହୋଇଛି । ମାନ୍ୟବର ସଭ୍ୟ ମନେ ରଖିବା ଉଚିତ ତାଙ୍କ ଦେଶ ଏବଂ ଆମ ଦେଶ ଭିତରେ ବହୁତ ତଫାତ୍ ରହିଛି । ଯଦରେ ବହୁତ ତଫାତ୍ ରହିଛି । ତାଙ୍କ ଦେଶର ଲେବର ଆମ ଦେଶର ଲେବର ସଙ୍ଗେ ସମାନ ନୁହେଁ । ତେଣୁ ଆମେ ଶ୍ରମିକ ଶ୍ରେଣୀକୁ exploit କରୁଛୁ ବୋଲି କହିବା ଠିକ୍ ହେବନାହିଁ । ଆମର କୃଷି ମୂଲିଆଙ୍କର ମୂଲ ଥିଲା ୫୨.୫୦ଙ୍କା ପୁରୁଷ ଓ ସ୍ତ୍ରୀ ମୂଲିଆଙ୍କ ଭିତରେ ପାର୍ଥକ୍ୟ ଥିଲା । ଆମେ ସେ ପାର୍ଥକ୍ୟତାକୁ ହଟାଇ ଦେଇ ସମସ୍ତଙ୍କ ପାଇଁ ୫୬.୦୦ଙ୍କା କରିଦେଇଛୁ । ଏହା ହେଲା କୃଷି ମୂଲିଆଙ୍କର ମୂଲ କଥା । Minimum Wage Act ଅନୁସାରେ ବଢାଯାଇଛି । ଅନ୍ୟାନ୍ୟ କ୍ଷେତ୍ରରେ ଯାହାଥିଲା ତାହା ରହିଛି । ଏ ଦିଗରେ କେବଳ Labour Department ନୁହେଁ ବିଭିନ୍ନ trade union ମାନେ ସତର୍କ ରହିଛନ୍ତି କଏ କେଉଁଠି ଆଇନର ଖିଲାପ କଲେ ଦେଖୁଛନ୍ତି । ତା'ପରେ Exchange Value of Rupeeକୁ ଆମେ stable କରୁଛୁ, ଏହା ଏକ ଗର୍ବର କଥା । Dollar, Franc ପ୍ରଭୃତି ବିଭିନ୍ନ ମୁଦ୍ରାମାନ ବିଭିନ୍ନ ଦେଶରେ ପ୍ରଚଳିତ ଅଛି । ସବୁ ଦିଗରେ କଳା ଓ ଧଳା ଏହିପରି ଦୁଇଟି ଦିଗ ଅଛି । ଆମେମାନେ ସବୁବେଳେ କଳା ଦିଗଟାକୁ ଦେଖିବା ଉଚିତ ନୁହେଁ । ଧଳା ଦିଗକୁ ଦେଖିବା ଉଚିତ୍ । ସବୁବେଳେ କଳା ଦିଗକୁ ଦେଖିଲେ, ତାହା ଆମ ଉନ୍ନୟନ ଯୋଜନାକୁ ସାହାଯ୍ୟ କରିବ ନାହିଁ । ତା' ସଙ୍ଗେ ସଙ୍ଗେ ମଧ୍ୟ inflationary tendency and

unemployment indiscipline ବଢ଼ି ଯାଉଛି, in country like America, France, England, Germany and we are the first country to check such inflationary tendency. ଆମେ ତାକୁ ଏକବାରେକେ ରୋକି ପାରିଛୁ We have brought it down to zero. Now there is no inflationary tendency and because we took stern measure against those who were contributing to the cause of inflationary tendency, this is impossible. ଯେଉଁମାନେ କଳାବଜାରୀ, smugglers, ଯେଉଁମାନେ ଆଜି ଗୋଟିଏ Government ଚଳାଇ ଭଳିଆ ଚଳୁଥିଲେ, ଆଜି ସଞ୍ଚ କୁଞ୍ଚେଇହୋଇଛନ୍ତି what was there capital, whether it is 40,00 crores or 40 thousand crores, their activities checks because we took stern measures against them.

It is not a question of Delhi because it is not from Dumdum Air Port on the other air port at Delhi where people indulge in smuggilng. Smuggling activities are carried on from harbour to harbour. That is the main channel or area of smuggling and that is also limited to big-bigs.

ଅନ୍ୟ ପକ୍ଷରେ ଦେଖିବେ ଆମେ କୃଷିର ଉନ୍ନତିକୁ ଅଗ୍ରାଧିକାର ଦେଉଛୁ । ମାନ୍ୟବର ସଭ୍ୟ ଯଦି ଜାଣନ୍ତି ଯେ ୨-୩ ବର୍ଷ ଭିତରେ ଆମର ଯେତେ ଚାଷ ଜମି ଅଛି, ପ୍ରାୟ ୫୬ ଲକ୍ଷ ହେକ୍ଟର ଜମି ଚାଷ ହେଉଛି । ସେ ସବୁଯାକ irrigated ହୋଇ ଯିବାକୁ ହେବ ତାହା ଏକ ଅସମ୍ଭବ କଥା । ସରକାର ଯେ Irrigationକୁ ଅଧିକ ବଢ଼ାଇ ବଢ଼ାଇ ଯାଉଛନ୍ତି ତା'ର pace ଦେଖିବା କଥା କିପରି ଦ୍ରୁତବେଗେ ସେ ବଢ଼ି ଚାଲିଛି । ମାନ୍ୟବର ସଭ୍ୟ ଶ୍ରୀ ଦୟାନିଧି ନାୟକ ନାହାନ୍ତି । ସେ କହୁଥିଲେ ଆମର ଗୋଦାବରୀ water dispute settle ହେଲାପରେ ଇନ୍ଦ୍ରାବତୀ ପାଇଁ କିଛି ଯୋଜନା ଦେବା ସମ୍ପର୍କରେ ବଜେଟ୍ ଭାଷଣରେ କିଛି ଉଲ୍ଲେଖ କାହିଁକି ନ ହେଲା । ସେଥିପାଇଁ ସେ କହୁଲେ ନିଆଁ ନାହିଁ କି ଧୂଆଁ ନାହିଁ । କିନ୍ତୁ ମୁଁ କହିବି, after the death of the person ନାମ କହିବା ଠିକ୍ ହେବ ନାହିଁ, ଯେଉଁ ସମୟରେ ନିଆଁ ନ ଥିଲା, ଧୂଆଁ ନ ଥିଲା project report ନ ଥିଲା କିମ୍ବା ଇନ୍ଦ୍ରାବତୀର ସ୍ଥିତି ଦିଆଯାଇଥିଲା । ମାନ୍ୟବର ସଭ୍ୟମାନେ ଜାଣିଛନ୍ତି ଯେ C. W. P. C. ତାକୁ

ଗୋଟିଏ Projectର sanction ଆଣିବା it is not a small thing. ସବୁକଥା systematically ହେଲାପରେ ଏବଂ querriesର reply ଦେଲାପରେ and after taking the past, present and future they will give sanction. କିନ୍ତୁ ଇନ୍ଦ୍ରାବତୀ କ୍ଷେତ୍ରରେ before any such thing was done ଶିଳା ଦିଆଯାଇଥିଲା । ସେହିପରି ବ୍ରାହ୍ମଣୀ ଉପରେ ଗୋଟିଏ ପୋଲ ହେବାପାଇଁ ଏପରି କିଛି ନ ହୋଇ ଶିଳା ଦିଆଯାଇଥିଲା ; କିନ୍ତୁ ସେଥିରେ ମଧ୍ୟ I do not know whether there is any project report or any Administrative sanction for it. When everything was complete dark the foundation stone was laid and people are still in the dark. ସେମାନେ ଜାଣି ପାରୁ ନାହାନ୍ତି ଏ ଯୋଜନାଟା କେବେ ହେବ କି'ଣ ହେବ ।

We will do it. But our apprcch should be on practical life. We are not going to so dark in anything and create a smoke screen. ସେଥିପାଇଁ ଆମେ ଯେତେବେଳେ କରିବାକୁ ଯାଉଛୁଁ ତା'ର plan, budget estimate, project report ଇତ୍ୟାଦି ହେଲାପରେ କରିବୁ । It is not a thing as if I can spend money on it from my own pocket. We have to think up the huge capital that will be required for it, has to be obtained from somewhere. ସେଇଥିପାଇଁ project report ଇତ୍ୟାଦି ହେଲାପରେ ଆମେ ଇନ୍ଦ୍ରାବତୀ takeup କରିବୁ । ଆମେ ମଧ୍ୟ ଶୀଘ୍ର ଚାହୁଁବୁ, କାରଣ ଇନ୍ଦ୍ରାବତୀ ଓ ଅପର କୋଲାବ ଅବଶ୍ୟ ହୋଇଯିବ । ଯଦିଓ ମାନ୍ୟବର ସଭ୍ୟମାନେ ଜାଣିଛନ୍ତି ଯେ ଏଥିପାଇଁ କେତେ capital ଦରକାର ହେଉଛି ଏବଂ ତଥାପି କହୁଛନ୍ତି ଯେ ଏକଥା ବାରମ୍ବାର repeat କଲାପରେ ସରକାରଙ୍କୁ ନେଇ awkward situationରେ ନେଇ ପକାଇଦେବୁ । We have kept that in mind. ସୁତରାଂ ଏଥିପାଇଁ ବ୍ୟସ୍ତ ହେବାର କିଛି କାରଣ ନାହିଁ । In time we shall produce the report and it will certainly find a place in the Budget speech.

ଅନ୍ୟକଥା ହେଉଛି Land distribution କଥା । The hon'ble member from Kabisurya Nagar could not digest it, other member would not or did not believe it, କିନ୍ତୁ ବାସ୍ତବ ଅବସ୍ଥାର

କ'ଣ ଏକେ strong food ହୋଇଗଲା that could not be digested. ଗୋଟିଏ କଥା ହେଲା land ଦିଆଯାଇଛି । ମାନ୍ୟବର ମହୋଦୟ, ଆମର ଗୋଟିଏ fault finding ଅଭ୍ୟାସ ହୋଇଯାଇଛି । ଯଦି ୫୦ଟି ଭାଗ ଭିତରୁ ଗୋଟିଏ ଭାଗରେ ତ୍ରୁଟି ହେଲା ସେଇଟା highlight କରାଯାଉଛି । ବାକି ୪୯ଟିର ଯେଉଁ achievement ହେଲା ସେଥିପ୍ରତି ଦୃଷ୍ଟି ଦିଆଯାଉ ନାହିଁ । କୁହାଯାଉଛି ଭୂଦାନ୍‌ର ଯେତିକି ଜମି ଦିଆ ଯାଉଥିଲା ସେସବୁ ଟାଙ୍ଗର ଜମି ଦିଆଯାଉଛି, ଦୂବ ଘାସ ବି ଉଠୁ ନାହିଁ ।

ମାନ୍ୟବର ସଭ୍ୟ ଯାହା କହିଲେ ମୁଁ ବି ସେହି କଥାକୁ ଆସୁଥିଲି । ଆମେ ବି ବୁଝୁଁ କ'ଣ କେଉଁଠି ଦିଆଯାଇଛି । We are taking it up now. କେଉଁ ଜମି କାହାକୁ କେତେ ଦିଆଯାଇଛି ଏଇଟା ଆମେ ଦେଖିବାର କଥା । ଦ୍ୱିତୀୟ କଥା ହେଲା, immediately ତାଙ୍କ ପାଇଁ ଯଦି Finance ଯୋଗାଡ଼ ନକଲେ ସେମାନେ ଚାଷ କରି ପାରିବେ ନାହିଁ । ତୃତୀୟ କଥା, ମୁଁ ନିଜେ ଦେଖୁଛି କେତେକ ଜମିରେ ଚାଷୀ କିଛି inputsର ଆବଶ୍ୟକତା ଅନୁଭବ କରୁଛି । ସେଥିପାଇଁ Co-operative ଜରିଆରେ ବ୍ୟବସ୍ଥା କରାଯାଉଛି । ଦୁର୍ଭାଗ୍ୟର କଥା interiorରେ Nationalised Bankର ଶାଖା ଇତ୍ୟାଦି ନ ଥିବାରୁ ସେମାନଙ୍କୁ ସୁବିଧାରେ loan ଦେବା ସମ୍ଭବ ହେଉନାହିଁ । କିନ୍ତୁ Co-operative ଋଣ ସେମାନେ ପାଉଛନ୍ତି ବା ପାଇବେ । ମୁଁ ମାନ୍ୟବର ସଭ୍ୟଙ୍କ ସହିତ ଏକମତ । ଜମି ଆମେ ଦେଇଦେଲୁ । କିନ୍ତୁ ଆମେ ଯଦି ଅନ୍ୟ କୌଣସି ସୁବିଧା ନ ଦେଉ ସେ ଉଠିଆ ଭରିବେ କପର । ଏ ସମ୍ପର୍କରେ ୨ଟି point ଉଠିଛି । ଗୋଟିଏ ହେଉଛି ଜମି ଦିଆଯାଇ ନାହିଁ ବା ଏତେ ଜମି ଦିଆଯାଇ ନାହିଁ । ଆଉ ଗୋଟିଏ ହେଲା ସେମାନଙ୍କୁ ପାହାଡ଼ିଆ ଟାଙ୍ଗର ଜମି ଦିଆଯାଇଛି । ତୃତୀୟ ହେଲା ଜମି ସିନା ଦେଲୁ, କିନ୍ତୁ ସେ ସବୁ ଜମି ଚାଷ ନ ହୋଇ ପଡ଼ିରହିଛି । ଅବଶ୍ୟ ମାନ୍ୟବର ସଭ୍ୟ ଆଉ ଗୋଟିଏ କଥା କହୁଛନ୍ତି, ଯେଉଁ ଜମି ଦିଆଯାଇଛି ଅସୀମ demarket କରି ଚିହ୍ନଟ କରିନାହାନ୍ତି । ଏବେ ଯେଉଁ ଜମି ଦିଆଯାଉଛି ରାଜସ୍ୱ ବିଭାଗ ଅଫିସରମାନଙ୍କୁ instruction ଦିଆଯାଇଛି ଯେ ଜମିର ସୀମା ଚିହ୍ନଟ କରି ଆସିବେ । ମାନ୍ୟବର ସଭ୍ୟ ମଧ୍ୟ କହିଛନ୍ତି କେତେକ ସ୍ଥାନରେ ଜମି ଦିଆଯାଇଥିଲା ସେ ଜମି ଆଉ ଜଣେ ଚାଷ କରୁଛି । ସେଇଥିପାଇଁ ବର୍ତ୍ତମାନ ନିର୍ଦ୍ଦେଶ ଦିଆଯାଇଛି ଯେ ଜମି ଦେବା ପୂର୍ବରୁ demarket କରିବା ନିହାତି ଆବଶ୍ୟକ । ପ୍ରକୃତରେ ଆମେ ବର୍ତ୍ତମାନ ଜମି ଦେବା କଥା review କରୁଛୁ । Review କରି ଆମେ ନିଶ୍ଚିତ ଭାବରେ ଜାଣି ପାରିବୁ କେତେ ଏକର ଦିଆଯାଇଛି ଏବଂ କେତେ ଲୋକଙ୍କ ଭିତରେ ଜମି ବଣ୍ଟନ ହୋଇଛି ।

ଅନ୍ୟ କଥା ଆପଣ ଦେଖିବେ, about priority Seefor or Core sector କଥା କୁହାଯାଇଛି । ବର୍ତ୍ତମାନ Agriculture Improvement ପାଇଁ ଓ Industrial Development ପାଇଁ ଆମେ Electricity ଉପରେ ନିର୍ଭର କରୁଛୁ । ଆପଣ ଜାଣନ୍ତି for the development of the State Electricity is very important, Irrigation ପାଇଁ, Agriculture ପାଇଁ, Industry ପାଇଁ, we want Electricity, ସେଇଥିପାଇଁ ଇରିଗେସନ ବିଭାଗ କାର୍ଯ୍ୟକୁ ଆମେ ସର୍ବାଧିକ ଗୁରୁତ୍ୱ ଦେଉଛୁ । ଏଥିରେ ଅଧିକ ଟଙ୍କା ବିନିଯୋଗ କରୁଛୁ । ଏପରି କି ଚଳିତ ୫ ବାର୍ଷିକ ଯୋଜନା ପ୍ରଥମ ବର୍ଷରେ ବ୍ୟୟ ଯୋଜିତ ହୋଇଛି ତା'ଠାରୁ ଅଧିକ ଟଙ୍କା ଆମେ ବ୍ୟୟ କରୁଛୁ । ଆମେ core sector ଉପରେ stress ଦେଉଛୁ । ମାନ୍ୟବର ସଭ୍ୟମାନେ ଅସନ୍ତୋଷ ପ୍ରକାଶ କରି କହୁଛନ୍ତି plan sectorରେ ଅର୍ଥାତ road ପାଇଁ ଅନ୍ୟାନ୍ୟ ବିଭାଗପାଇଁ କାହିଁକି ଅଧିକ ଟଙ୍କା ଦିଆଯାଏ । ମାନ୍ୟବର ସଭ୍ୟ ଯେଉଁ ସାସ୍ଥ୍ୟ ବିଭାଗ କଥା କହିଲେ ମୁଁ ସେ ବିଷୟକୁ ଆସିବି । ସେ ବିଷୟରେ ନୂଆ ଯୋଜନା ହୋଇଛି ଏବଂ ଡିମାଣ୍ଡ ଆଲୋଚନାବେଳେ ସେ ବିଷୟରେ ବିଶଦ ଭାବରେ ଆଲୋଚନା ହେବ । ଆପଣ ଦେଖି ପାରୁଥିବେ ଅନ୍ୟାନ୍ୟ ବିଭାଗରେ ଯେଉଁ କମ୍ allotment ହୋଇଛି ତା'ର ଅର୍ଥ ନୁହେଁ ଯେ ଆମେ ସେ ବିଭାଗ ପ୍ରତି ଦୃଷ୍ଟି ଦେଉନାହୁଁ, ଯେହେତୁ ଅତି କମ୍ ସମୟ ଭିତରେ ଆମକୁ ଏ କାର୍ଯ୍ୟ କରିବାପାଇଁ ପଡୁଛି । ଆମ ଓଡ଼ିଶା ରାଜ୍ୟରେ ୮୦ ଭାଗ agriculturist ଅଛନ୍ତି । ଯେ ପର୍ଯ୍ୟନ୍ତ ଆମେ ସେମାନଙ୍କ Economic Development ନ କରିବୁ ଆମର industry sector ଆମେ ଯେତେ improvement କରିବାକୁ ଚେଷ୍ଟାକଲେ ମଧ୍ୟ we won't have a local market. ଆମେ ଷ୍ଟାଣ୍ଡ କରାଇ ପାଇବା ନାହିଁ ଏବଂ ବାହାର State ସହିତ compete କରିପାରିବା ନାହିଁ ଏବଂ small scale industry କରିବାରେ ଅସୁବିଧା ସୃଷ୍ଟି ହେବ । ସେଥିପାଇଁ ଉକ୍ତ ବିଭାଗକୁ ବିସ୍ତର କରି ଅଧିକ ଅର୍ଥର ବ୍ୟବସ୍ଥା କରାଯାଇଛି । ଆମର କୃଷୀଭାଇମାନଙ୍କ income ବଢ଼ାଇବାକୁ ହେବ । Irrigationର ସୁବିଧା ଦେବାକୁ ହେବ । ନୂଆ ଚଷିଙ୍କ ପାଟେଣ୍ଟର ବ୍ୟବସ୍ଥା କରିବାକୁ ହେବ । ସେ ଦୃଷ୍ଟିରୁ ଏସବୁ କଥା ମଧ୍ୟ କରାଯାଉଛି । କାରଣ ଆପଣ ଜାଣିଥିବେ ଆମ କୃଷୀମାନଙ୍କର ଧାରଣା ହେଉଛି କୃଷିକାମ means ଧାନଚାଷ । ଆଜି soil testing ଇତ୍ୟାଦି କରି natural quality of the soil ଦେଖି ତାକୁ କିପରି କେଉଁ ଅବସ୍ଥାରେ କି ଫସଲ କଲେ ଭଲ ହେବ, ସେଦିନ ମୁଁ ଉତ୍ତରରେ କହୁଥିଲି ଆମର କଟକ ଜାଗାରେ ଆରମ୍ଭ ହୋଇଛି

diversification of croping pattern. ଯାହାଫଳରେ ଆମର ଗୃହୀମାନେ ବଡ଼ିଲ ଜାଗାରେ cash crop catch up କରୁଛନ୍ତି । ଆମେ ଆଶା କରୁଛୁ ଅଳ୍ପ କେତେ ବର୍ଷ ଭିତରେ ଏହାର acreage ନିଶ୍ଚିତ ବଢ଼ିବ ।

Fertiliser price fixation ସମ୍ପର୍କରେ ସମାଲୋଚନା ହୋଇଛି । ୧୯୭୨-୭୩ରେ ଯେଉଁ price fix ହୋଇଥିଲା ସେଇଟା ଗୋଟିଏ arbitrarily ହୋଇଛି ବୋଲି କୁହାଯାଇଛି । ମାନ୍ୟବର ସଭ୍ୟମାନେ ଜାଣନ୍ତି Agricultural Price Commission ଗୋଟିଏ ଅଛି । ବଡ଼ିଲ Stateରେ ଯେତେ କୃଷି ଅନୁଷ୍ଠାନ ଅଛି, ସେମାନଙ୍କଠାରୁ ଏବଂ ରାଜ୍ୟ ସରକାରମାନଙ୍କ ଠାରୁ ସେ ରିପୋର୍ଟ ନିଅନ୍ତି । ସେ ମଧ୍ୟ କୃଷି ଅନୁଷ୍ଠାନମାନଙ୍କଠାରୁ evidence ନିଅନ୍ତି । ସେଇଟା ନେଲାପରେ ସେମାନେ ନିଜ ଭିତରେ ଆଲୋଚନା କରି ତାଙ୍କର ସପୋର୍ଟ ପ୍ରାଇସ କ'ଣ ହେବ ସେଇଟା ସେ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆକୁ ଦିଅନ୍ତି । ଏ ସୁପାରିଶ ଦିଆଗଲା ପରେ Prime Minister ଗୋଟିଏ ମିଟିଙ୍ଗ୍ ଡାକନ୍ତି of all the Chief Ministers and Food Ministers of different States. ସେଠାରେ A. P. C. Report ବା Recommendationକୁ ବିଚାର କରାଯାଏ ଏବଂ ଆଲୋଚନା ପରେ ଏ ପ୍ରାଇସ୍ ସ୍ଥିର କରାଯାଏ । କିନ୍ତୁ ୧୯୭୪-୭୫ରେ ଯେଉଁ ୮୨ ଟଙ୍କା ପ୍ରାଇସ୍ ଫିକ୍ସ କରାଯାଇଛି ଏଇଟା ଆରବିଟ୍ରାରିଲି ହୋଇନାହିଁ । They take many things into consideration. ସେ ସାମ୍ପ୍ରତିକ ବର୍ତ୍ତମାନ ମୋ ପାଖରେ Particulars ନାହିଁ । But I can assure the House in the last two occasions there was reduction in price. Fertiliser Price ବଢ଼ି ନାହିଁ ବରଂ କମିଛି । Government of India ଦୁଇଟି କିସ୍ତିରେ ଏହାର ଦର କମାଇଛନ୍ତି । Fertiliser Price ବଢ଼ି ବଢ଼ି ଚାଲିଛି ବୋଲି ଯାହା ପ୍ରସଙ୍ଗରେ କହିଲେ ଶ୍ରୀଶ୍ରୀବାବୁ ଅତ ସୁନ୍ଦର ଓ ଭଲ ଲାଗେ । ଏଥିରେ factual error ରହିଛି । ଏଥିପ୍ରତି ମାନ୍ୟବର ସଭ୍ୟଙ୍କ ଦୃଷ୍ଟି ଆକର୍ଷଣ କରୁଛି ।

ମାନ୍ୟବର ସଭ୍ୟମାନେ କହିଛନ୍ତି rice ଯେଉଁଟାକି ଆମର main staple food, ତା'ର ଦର କମିଯାଉଛି । କୁହାଯାଇଛି ଧାନ ଦର ଏପରି ସ୍ତରରେ କମିଛି ବହୁ ସ୍ଥାନରେ ସପୋର୍ଟ ପ୍ରାଇସରୁ ତଳକୁ ଆସିଯାଇଛି । ମୁଁ ଏ ସମ୍ପର୍କରେ ସପ୍ତାଇ ଲେଗ ସହିତ ଆଲୋଚନା କରିଥିଲି । ମୁଁ ଗତଥର Supplementary Appropriation ସମୟରେ ଏ ପ୍ରସଙ୍ଗରେ କହିଥିଲି ଯେ ଆମେ ପ୍ରତ୍ୟେକ ଜିଲ୍ଲା କଲେକ୍ଟରମାନଙ୍କୁ କହିଦେଇଛୁ ଯେଉଁଠି distress sale କଥା ଉଠିବ ସେମାନେ

ସେ ସ୍ଥାନକୁ ଚାଉଳ ଯାଇ ପାରୁ। available stock ଥିବ ସବୁଯାକ କିଣି ନେବେ । ଏ ପ୍ରସଙ୍ଗରେ ମୁଁ କହିଦେବାକୁ ଚାହେଁ ମାର୍କେଟକୁ ଯେଉଁ ଚାଉଳ ଆସେ ସେ ଚାଉଳକୁ ସରକାର କିଣନ୍ତି ନାହିଁ । କାରଣ ମାର୍କେଟ ଉପରେ ଆମର consumerମାନେ ନିର୍ଭର କରୁଛନ୍ତି । ସେମାନେ କିଣନ୍ତି । ସେଥିପାଇଁ ମାର୍କେଟ ଭିତରେ ପଶି ଗଭର୍ଣ୍ଣମେଣ୍ଟ ଏହାକୁ procure ବା purchase କରନ୍ତି ନାହିଁ । Where there is question of distress sale; ସେଠିକି ଆମ ଲୋକେ ଯାଇ କିଣନ୍ତି । ଏ ବର୍ଷ beginning ରୁ distress sale ହେଉଛି ବୋଲି କୁହାଯାଉଛି । ସେ distress sale କେଉଁଦିନ ଲାଗିଥିଲେ । ସବୁଦିନ ପାଇଁ ନୁହେଁ । ଆମର କଂଗ୍ରେସ ଦଳର ବହୁତ ପୁରାତନ ସଭ୍ୟ ଅଛନ୍ତି ସେମାନେ ଜାଣିବେ ଏ ଗୃହରେ distress sale ସମ୍ପର୍କରେ ପ୍ରତିବର୍ଷ ଆଲୋଚନା ହେଉଛି । ସେଇଟା ଗୋଟିଏ period ୧୦ ଦିନ କି ୧୫ ଦିନ । ସେଇଥିପାଇଁ distress sale ହେଉଛି ବୋଲି ମାନ୍ୟବର ସଭ୍ୟମାନେ ଅତିରଞ୍ଜିତ କରି କହୁଛନ୍ତି । ଆଜି ସୁଦ୍ଧା distress sale ଲାଗି ରହିଛି ବୋଲି କୁହାଯାଉଛି । Where the Government machinery to purchase all the things. ଏପରି କହିବା ଦ୍ୱାରା ସେମାନେ କିଛି ମାତ୍ରାରେ କଥାଟିକୁ ଅତିରଞ୍ଜିତ କରି କହୁଛନ୍ତି । ମୁଁ ମାନ୍ୟବର ସଭ୍ୟମାନଙ୍କୁ କହିଦେବାକୁ ଚାହେଁ ଯଦି ସେ ଭାବୁଥିବେ last year ରେ ଯେଉଁ price ଥିଲା that is the price. ବର୍ତ୍ତମାନର ସପୋର୍ଟ ପ୍ରାଇସ is no price, ସେପରି ବୁଝିବା ଭୁଲ ହେବ । ବିରୋଧୀ ଦଳର ମାନ୍ୟବର ସଭ୍ୟ କହିଲେ ଯେ ଏକଥା ବୁଝିବା ଉଚିତ ଥିଲା । ଗତବର୍ଷ ଧାନ କୁଇଣ୍ଟାଲ ଟ ୧୨୦—୧୩୦ରେ ବିକ୍ରି ହେଉଥିଲା, ଯାହା ଉପରେ ସରକାର action ନେଲେ ମଧ୍ୟ ବଢ଼ିଥାନ୍ତା । ଏ ଯେଉଁ ୧୨୦—୧୩୦ ଟଙ୍କାରେ ବିକ୍ରି ହେଉଥିଲା it was at the cost of poor consumers. But it was not the rate. ଯେଉଁମାନେ ଭାବୁଥିଲେ ସେହି ରେଟ ଏବର୍ଷ ମିଳିଲେ ଋଷକ ଧାନ କରିବୁ ନାହିଁ କିମ୍ବା ଯେଉଁ ରେଟ ହୋଇଥିଲା that is not the rate । ଏଇଟା ଗୋଟିଏ ଭୁଲ ଧାରଣା । ମୁଁ ଜାଣେ ମୋ ଜିଲ୍ଲାରେ ୧୨୦—୧୩୦ ଟଙ୍କାରେ ଯେତେବେଳେ ବିକ୍ରୀ ହେଉଥିଲା ତାଙ୍କୁ ଯେତେବେଳେ ଯାଇ ଧାନ ମାଗିବ he will make the loudest voice. ଏଥର ଆମେ ଯଦି ସେଇଟାକୁ ସପୋର୍ଟ କରିବା ଠିକ୍ ହେବ ନାହିଁ, କେଉଁ ଆମେ ନାହିଁକି କରିବୁ ସେଇଟା ଅନ୍ୟ ପ୍ରସଙ୍ଗରେ ଆଲୋଚନା କରିବା । ବର୍ତ୍ତମାନ ଆଲୋଚନା କଲେ ଅଧିକ ସମୟ ନେବ । କୁହାଯାଉଛି Government rate କମିଛି । Support price କମିଛି । ମୁଁ ପଚାରିବାକୁ ଚାହୁଁଛି କେଉଁ ଏରିଆରେ ଏପରି ହୋଇଛି ସରକାର ଜାଣନ୍ତି ନାହିଁ ।

ଧାମନଗର, ମାନ୍ୟବର ସଭ୍ୟ ଗଞ୍ଜାମ ଜିଲ୍ଲା ତଥା ଭୁଲ୍ୟର କହୁଥିଲେ । ସେହିକ falling price କଥା କୁହାଗଲା । Agriculture price ଯେଉଁ ହାରରେ ରିଜ୍ ହୋଇଛି ସେହି ହାରରେ ଇଣ୍ଡଷ୍ଟ୍ରିଆଲ୍ ଗୁଡ୍‌ସ୍ ପ୍ରାଇସ୍ ବଢ଼ିନାହିଁ ବୋଲି କୁହାଯାଉଛି । ମୁଁ ଆପଣଙ୍କୁ ଗୋଟିଏ figure ଦେଉଛି । Index of wholesale price of manufacturer goods ଥିଲା । ୧୯୭୨-୭୩ରେ ୧୭୨.୪, ୧୯୭୪-୭୫ରେ ହେଲା ୨୪୧.୭ । There was a rise about 40 per cent. According to the index wholesale Agricultural Price ୧୯୭୨-୭୩ରେ ଥିଲା ୨୯୦.୭, ୧୯୭୪-୭୫ରେ ହେଲା ୪୬୦.୧ । There was a rise about 60 per cent.

କଟକର ସଭ୍ୟ ଯାହା ପଚାରିଲେ ତାହା ହଠାତ୍ ନାହିଁ, କିନ୍ତୁ ନିର୍ଦ୍ଦେଶ ପଠାଯାଉଛି ଏବଂ ପଦକ୍ଷେପ ନିଆଯାଉଛି ।

ମାନ୍ୟବର ସଭ୍ୟ ଯେଉଁଠିରୁ ଜମବାପୁର ମୁଖ୍ୟମନ୍ତ୍ରୀଙ୍କର ଅଛନ୍ତି ସେ ନିଶ୍ଚୟ ଉଦ୍‌ବେଗ ପ୍ରକାଶ କରନ୍ତୁ ।

ତା'ପରେ ଧାମନଗର ସଭ୍ୟ ଗୋଟିଏ ପ୍ରଶ୍ନ ଉଠାଇଛନ୍ତି—ଗତ ଅଗଷ୍ଟ, ସେପ୍‌ଟେମ୍ବର, ଅକ୍ଟୋବର ତିନି ମାସ ଭିତରେ ୮ ଜଣ ବ୍ୟକ୍ତି, ଯାହାଙ୍କ ନାମ ମୋ ପାଖରେ ଅଛି, ସେମାନେ କୁଆଡ଼େ ଅମଳ ଟପିଯାଇ ସ୍ୱାଧୀନତାଲକ୍ଷ ଦଣ୍ଡିରୁ ପେନ୍‌ସନ ପାଇ ଆସିଲେ । ତା'ପରେ ଜଣାପଡ଼ୁଛି ଯେଉଁ ସାର୍ଟିଫିକେଟ ନେଇଥିଲେ ତାହା forged । କାରଣ ଆପଣ ଜାଣିଥିବେ ଭାରତ ସରକାରଙ୍କ ସଙ୍ଗେ ଗୋଟିଏ ସର୍ତ୍ତ ଅଛି ଗୋଟିଏ ଜେଲ ସାର୍ଟିଫିକେଟ୍ ଦରକାର; ଯଦି କୌଣସି ଏମ୍. ପି. ବା ଏମ୍. ଏଲ୍. ଏ. ସେତେବେଳେ ଜେଲରେ ଥିଲେ ସେମାନଙ୍କ ସାର୍ଟିଫିକେଟ ନ ହେଲେ ମଧ୍ୟ sanction କରୁଛନ୍ତି । ଯେଉଁମାନେ ଜାଣିଛନ୍ତି, ଏହିପରି ନୟାଗଡ଼ କ୍ୟାମ୍ପ ଜେଲ କଥା ଉଠିଛି, ସେହିପରି application ସବୁ କରିଦେଲେ ସେଥିରେ ଆଫିଡେଭିଟ୍ ଅଛି, ଷ୍ଟାମ୍ପ ପେପରରେ ଦସ୍ତଖତ ଅଛି, ଆଫିଡେଭିଟ ଆଧାରରେ ଆସିଥିବାରୁ କେନ୍ଦ୍ର ସରକାର ମଞ୍ଜୁର ଦେଇଦେଲେ, କିନ୍ତୁ ପରେ ଜଣାଗଲା there was no Camp Jail in Nayagarh. It is a forgery. ତେଣୁ, ଯେଉଁମାନେ ପାଉଥିଲେ ତାକୁ ବନ୍ଦ କରିଦେଲେ କେବଳ ସେତିକି ନୁହେଁ, ସେଠାରେ Camp Jail ଥିଲା ଏବଂ ଏମାନେ ୬ମାସରୁ ଅଧିକ ଥିଲେ ଏହା ପ୍ରମାଣ କରିଇ ନ ପାରିଲେ ଏ ପର୍ଯ୍ୟନ୍ତ ଯାହା ପାଇ ଆସିଛନ୍ତି ସେସବୁ ଫେରାଇ ଦେବାକୁ ପଡ଼ିବ ।

ମାନ୍ୟବର ସଭ୍ୟଙ୍କୁ ମୁଁ ଏତକ ଆଶ୍ୱାସନା ଦେଉଛୁ if it is found to be forgery, they will have to return all what they have taken. ଏ ସମ୍ପର୍କରେ ଗୋଟିଏ ପ୍ରୋସିଡ଼ିଓ ଅଛୁ, ଗୋଟିଏ ସବ୍-କମିଟି ବସି ପ୍ରତ୍ୟେକ କେସ୍ ପ୍ରୋସିଡ଼ିଙ୍ଗ କରି କେନ୍ଦ୍ର ସରକାରଙ୍କ ପାଖକୁ ପଠାନ୍ତି ଏବଂ ସେମାନଙ୍କର ସୁପାରଶ ଅନୁଯାୟୀ ମଞ୍ଜୁର କରନ୍ତି ।

ଆଜି ସକାଳେ ମଧ ଏ ଗୃହରେ କୁହାଗଲା ସେଥିପାଇଁ ଆଉ ଗୋଟିଏ ସବ୍-କମିଟି ଅଛୁ ଯେକି ସ୍ଥିର କରୁଛନ୍ତି । ମୁଁ ଯାହା ଶୁଣିଛୁ କେନ୍ଦ୍ର ସରକାର ଯେଉଁକି ପେନ୍‌ସନ ମଞ୍ଜୁର କରିଛନ୍ତି ସବୁଯାକ କେସ୍ ଏହ କମିଟି ପୁଣି review କରିବେ ଏବଂ ଭୁଲ ଭଟକା ଥିଲେ ତାହା ଦୂର କରିବେ । ଏ ଯେଉଁ ଅଠିଟି କେସ ହୋଇଛୁ forgery ହୋଇଥିଲେ ତାକୁ ବନ୍ଦ କରିଦେବାରେ କଛୁ ନାହିଁ । ବରଂ ତାକୁ ତୁଅଳ କରିବା ପାଇଁ ଉକ୍ତ ସବ୍-କମିଟିକୁ ପଠେଇ ଦିଆଯାଇ ପାରିବ । If they find these are all bogus and forged that will be stopped. I hope he will help me. As regards the M. P., I may say all are expected to be honest and gentle man. It is not expected of us to give false certificate to anybody.

ଆଉ ଗୋଟିଏ କଥା ଦେଖିବେ ମାନ୍ୟବର ସଦସ୍ୟମାନେ ପ୍ରଦର୍ଶନୀ ଦେଖିଲେ, but not a word of praise has been said for the labour, the department took. ଇତିହାସରେ ଏତେ ବଡ଼ ପ୍ରଦର୍ଶନୀ କେବେ ହୋଇ ନ ଥିଲା । These have been praised by verious States, whose representatives came to this place. They are only sorry because there is not a photo of Biju Pattnaik or Dr. Harekrishna Mahatab—ସେଥିପାଇଁ ସାରା ପ୍ରଦର୍ଶନୀକୁ ମୂଲ୍ୟାଙ୍କନ କରିବାରେ ଯଥାର୍ଥତା ନାହିଁ । You not demand respect like these. Respect will be paid if it is due. So it is better not to raise this point, ସେଥିରେ ବକ୍ତୃତା ହେବା କୌଣସି କାରଣ ନାହିଁ ।

ପ୍ରତ୍ୟେକ ଜନିଷର meritକୁ ନ ଯାଇ ବାହାର ଦୃଷ୍ଟିଭଙ୍ଗୀକୁ with coloured outlook, with jaundice eye ଓଜନ କରିବାପାଇଁ ଖୁଜନ୍ତି, ତାହା ଠିକ୍‌ରେ available ହୋଇ ପାରିବ ନାହିଁ ।

ତା'ପରେ ଅବକାରୀ ସମ୍ପର୍କରେ ଅନେକ ସଭ୍ୟ ଉଦ୍‌ବେଗ ପ୍ରକାଶ କରି କହିଛନ୍ତି, ଆଦିବାସୀ ଅଧ୍ୟୁଷିତ ଜିଲ୍ଲାମାନଙ୍କରେ ନିଶା ନିବାରଣ କାର୍ଯ୍ୟକାରୀ ହୋଇନାହିଁ । ଆପଣ ଜାଣନ୍ତି ଏ ବର୍ଷ ଓ ଆସନ୍ତା ବର୍ଷ ନିଶା ନିବାରଣ କରିବା ପାଇଁ ପ୍ରସ୍ତୁତ ହୋଇଛୁଁ । କେବଳ ଗୋଟିଏ ପରିବର୍ତ୍ତନ କରିଥିଲୁ from so out still system to distillary system । ତାହାକର ଶେଷରେ ଦୋକାନ ବନ୍ଦ କରିବୁ । ଆମେ ବହୁ ପୂର୍ବରୁ କହିଥିଲୁ ଏହା କରିବୁ ବୋଲି । ୧୯୭୪-୭୫ରେ ୭୮ଟି ଦୋକାନ ବନ୍ଦ ହୋଇଥିଲା । ୧୯୭୫-୭୬ରେ ୪୦ଟି ହେଲା । ଏବର୍ଷ ୩୦ରୁ ଅଧିକ ଦୋକାନ ବନ୍ଦ କରିପାରିବୁ । ଏହା ଆମେ ଆମର ମନଇଚ୍ଛା କରୁ ନାହୁଁ । କେନ୍ଦ୍ର ନିଶା ନିବାରଣ କମିଟିର ସୁପାରିଶ ଅନୁସାରେ ଦୋକାନ ସବୁ ବନ୍ଦ କରୁଛୁ । ତେଣୁ ଯେଉଁ ସବୁ ସ୍ଥାନରେ ବହୁସଂଖ୍ୟାରେ ଆଦିବାସୀ ଅଛନ୍ତି ସେହି ରାଜ୍ୟମାନଙ୍କର ଅବକାରୀ ମନ୍ତ୍ରୀମାନଙ୍କର ଗୋଟିଏ ସମ୍ମିଳନୀରେ ଯାହା ନିଷ୍ପତ୍ତି ହେବ, ସେଇଠାରୁ ନିଶା-ନିବାରଣ କରିବା ସ୍ଥିର ହେବ ତାହା ପାଳନ କରାଯିବ । ମୁଁ ତା'ର merits and de-merits କହୁ ନାହିଁ, କିନ୍ତୁ ଆମର ସେଥିରେ ଆନ୍ତରିକତା ଅଛି । କେତେକ ସଭ୍ୟ କହିଛନ୍ତି ମଦ ଦୋକାନମାନ ରାସ୍ତାକଡରେ, ମନ୍ଦିର ଓ ଶିକ୍ଷାକେନ୍ଦ୍ର ନିକଟରେ ରହିଛି । ସେଭଳି ଯଦି କୌଣସି ରହିଥାଏ, ଯଦି ସରକାରଙ୍କ ଦୃଷ୍ଟିକୁ ଅଣାଯାଏ ତେବେ ତଦନ୍ତ କରିବାକୁ ସୁବିଧା ହେବ । Rural areaରେ ପିଇବା ପାଣି ସମ୍ପର୍କରେ ମୁଁ କହିବି ଯେ it is a credit to our Chief Minister । ସେ Planning Commission ସହିତ ବିଶେଷ କରି Mr. Haksharଙ୍କ ସହିତ argument କଲେ ଯେ ଆମ ଓଡ଼ିଶାରେ 15 ହଜାର ଗ୍ରାମରେ ସରକାରଙ୍କ ପକ୍ଷରୁ ପିଇବା ପାଣିର ବନ୍ଦୋବସ୍ତ ନାହିଁ, ଏପରିକି କୂଅ ଗୋଟିଏ ମଧ୍ୟ ନାହିଁ । ଆମେ ଗତ ଦୁଇବର୍ଷ ହେଲା ଯେଉଁ ସବୁ dug-well କରୁଛୁ ପରେ ଆମେ ସେଗୁଡ଼ିକୁ Sanitary wellରେ ପରିଣତ କରିବୁ । ସେମାନେ ଏବର୍ଷ ଯେଉଁ 70 ଲକ୍ଷ ଟଙ୍କା କାଟି ଦେଇଥିଲେ ଏଗୁଡ଼ିକ କରିବାପାଇଁ ଆମେ ସେ ଟଙ୍କା ପାଇଲୁ । ସେତିକିରେ ଆମେ ସେତେଦୂର ଯିବା କଥା ଆଗେଇ ଯିବୁ । ଆମେ ତାଙ୍କୁ କହିଛୁ ଯେ 5 ବର୍ଷ କିମ୍ବା ଛଅ ବର୍ଷ ଅଧିକା ନେଇ 5 ହଜାର ଗ୍ରାମରେ tube-well ଓ 10 ହଜାର ଗ୍ରାମରେ dug-well କରିବା କାମକୁ ଆମେ ସମାପ୍ତ କରିବୁ । ପଞ୍ଚମ ପଞ୍ଚ-ବାର୍ଷିକ ଯୋଜନା ଠାରୁ ଆଉ ବର୍ଷେ ଅଧିକା ଲାଗି ପାରେ । ସେହି ଦୃଷ୍ଟିରୁ ସେ ଟଙ୍କା ମଞ୍ଜୁର କରିଛନ୍ତି । Urban area କଥା କଟକର ମାନ୍ୟବର ସଭ୍ୟ ଜାଣିଛନ୍ତି । L. I. C.ର ଟଙ୍କା ଆଣି ଏଠାରେ ଯେଉଁ କେତେକ ପିଇବା ପାଣି ଯୋଗାଣ Scheme କରିଛନ୍ତି; ସେମାନେ ତାକୁ ଠିକ୍ ସମୟରେ Complete କରି ପାରୁନାହାନ୍ତି । ତା'ର କଣ୍ଟି ପାଇପାରୁ ନାହାନ୍ତି । ତେଣୁ ସେ drinking water project incomplete ହୋଇରହୁଛି । ସରକାର

ଷ୍ଟଡ଼ିଛନ୍ତି ସେମାନେ ସେ ଅନୁସାରେ କାମକୁ ମୂଲ୍ୟ ଲାଭ କରିବେ, କଥା କରି loan ପାଇବେ ଏବଂ ସେ କାମ Complete କରିବେ this is a difficult problem in Urban areas.

ଏତିକି କହି ଏ budgetକୁ ଗ୍ରହଣ କରିବା ପାଇଁ ମୁଁ ଅନୁରୋଧ କରୁଛି ।

ଓଡ଼ିଶା ବିନିଯୋଗ ବିଧେୟକ, 1976 ଉପରେ ଆଲୋଚନା : 26-3-76

ବାଚସ୍ପତି ମହୋଦୟ, ଏ ଯେଉଁ ଅର୍ଥ ବିନିଯୋଗ ବିଲ୍ ଆଜି ଅଗତ କରାଯାଇ-ଥିଲା ତା' ଉପରେ ଷୋହଳ ଜଣ ମାନ୍ୟବର ସଭ୍ୟ ଭାଷଣ ଦେଇଛନ୍ତି । ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଛି । କେତେଜଣ ସଭ୍ୟ ଭାଷଣ ପ୍ରସଙ୍ଗକ୍ରମେ ଜରୁରୀକାଳୀନ ପରିସ୍ଥିତି କାହିଁକି ହେଲା କହିଛନ୍ତି, ତାହାଶୁଣି ମୁଁ ବଡ଼ ଆଶ୍ଚର୍ଯ୍ୟାନ୍ୱିତ ହେଲି, କାରଣ ଏତେ ଦିନ ବିତିଗଲାଣି, ତା'ଉପରେ ବହୁ ଯୁକ୍ତିତର୍କ ଓ ଆଲୋଚନା ମାଧ୍ୟମରେ ହୋଇ ସାରିଲାଣି । ବିଶେଷ କରି କେନ୍ଦ୍ରାପଡ଼ାର ମାନ୍ୟବର ସଭ୍ୟ ଯେଉଁଠି ଆଗେ ଥିଲେ ଆଜି ମଧ୍ୟ ଏଠାରେ ଅଛନ୍ତି, ତାଙ୍କର କୌଣସି ପରିବର୍ତ୍ତନ ହୋଇ ନାହିଁ । ଏକଥା କାହିଁକି କହୁଚି, ଯେଉଁ ସବୁ ଯୁକ୍ତି ସେ ବାଢ଼ିଲେ ଯେ ଜରୁରୀକାଳୀନ ପରିସ୍ଥିତି ନ ହୋଇଥିଲେ ଠିକ୍ ହୋଇଥାନ୍ତା । ତାହାଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି, ତେଣୁ କୁହାଯାଉଛି ଗତ ଜୁନ୍ ୨୫ ତାରିଖରେ ବିରୋଧୀଦଳର ନେତାମାନେ ବସି ସ୍ଥିର କଲେ ଅହିଂସା ଉପାୟରେ ୨୯ ତାରିଖରେ ସାରା ଭାରତବର୍ଷରେ ଆନ୍ଦୋଳନ ହେବ ଏବଂ ତାହା ହେବ ଅହିଂସା ଆନ୍ଦୋଳନ । କିନ୍ତୁ ତା ପୂର୍ବରୁ ଯେପରି L. N. Mishraଙ୍କୁ ମାରି ଦିଆଗଲା, ଭାରତର ପ୍ରଧାନ ବିଚାରପତିଙ୍କ ଉପରକୁ ବୋମା ଫିଙ୍ଗା ଗଲା ଏବଂ ଗୁଣ୍ଡମାନେ କଲେଜକୁ ଗଲେ ତାଙ୍କ ଛେଲୁ ଛୁରୀର ଭୁକି ଦିଆଗଲା ଏବଂ ଏ ଗୁଜୁରାଟର ଯେଉଁ ଅହିଂସା ଆନ୍ଦୋଳନ ହୋଇଥିଲା, ଆପଣେ ଜାଣିଥିବେ ଯେପରି ପୂର୍ବତନ ରାଜ୍ୟପାଳଙ୍କ ଉପରେ ଅହିଂସାତ୍ମକ ଆନ୍ଦୋଳନ ହୋଇଥିଲା । ସବୁ ଜାଣିଛନ୍ତି, ତା'ପରେ ସୈନ୍ୟ ବାହିନୀ ଓ ନୌବାହିନୀ ଲୋକଙ୍କୁ ଯେପରି ଡାକରା ଦିଆଗଲା ଯେ କୌଣସି ନିର୍ଦ୍ଦେଶ ଉପରରୁ ଆସିଲେ ଯେ ବିଚାର କରିବେ ନ୍ୟାୟ କି ଅନ୍ୟାୟ, ସେତେବେଳେ ହୁଏତ ଶତ୍ରୁ ସୀମା ଭିତରେ ଅସି ଯାଇଥିବ । ସେଥିରେ ଯାଏ ଆସେ ନାହିଁ । ଶତ୍ରୁ ଆସିଲେ ଅବସର ପାଇବ । ଏପରି ଉଦ୍ଭଟ ଯୁକ୍ତି ଉପରେ ନିର୍ଭରକରି ଯଦି ସଭ୍ୟମାନେ ଭାବୁଥାନ୍ତି ଏ ଜରୁରୀ-କାଳୀନ ପରିସ୍ଥିତି ଅନ୍ୟାୟ ହୋଇଛି ତେବେ ମୁଁ ଅତ୍ୟନ୍ତ ଦୁଃଖିତ ହେବି । ସେମାନେ ଏ ଭିତରେ କିଛି ଜାଣିପାରି ନାହାନ୍ତି । ତେଣୁ ଶୋଇବା ଯିଏ ତାକୁ ଉଠାଇବ କିଏ ? ସବୁ ଜାଣି ଯଦି ଏଭଳି କଥା ଉପସ୍ଥାପିତ କରନ୍ତି ସେଥିରେ ମୋର କିଛି କହିବାର ନାହିଁ । କିନ୍ତୁ କେନ୍ଦ୍ରାପଡ଼ାର ମାନ୍ୟବର ସଭ୍ୟ ଜଣେ ବୁଦ୍ଧିବା ସୁବିଧା ସଭ୍ୟ ହୋଇ ଏହି ଧାରଣା ଅତି

ପର୍ଯ୍ୟନ୍ତ ପୋଷଣ କରିବା ଆଶ୍ଚର୍ଯ୍ୟ କଥା । ସେଥିପାଇଁ ଆପଣଙ୍କ ଜରିଆରେ ମୁଁ କହିଦେବାକୁ ଚାହେଁ ଜରୁରୀକାଳୀନ ପରିସ୍ଥିତି ଜାରି କରିବାକୁ ଶାନ୍ତିକ ଶବ୍ଦ କାରଣ ଥିଲା । ସ୍ଥିର ଭାବରେ ଚିନ୍ତା କଲେ ଜାଣିବେ ଏହା ଫଳରେ କେତେ ବଡ଼ ବିପଦରୁ ଦେଶ ରକ୍ଷା ପାଇଲା । ଆମ ପଡ଼ୋଶୀ ପାଖରେ ଥିବା ବଙ୍ଗଳା ଦେଶର ପରିସ୍ଥିତି, କ'ଣ ହେଲା ଆପଣ ଜାଣିଥିବେ ଏବଂ ବିଦେଶୀ ସରକାର ଗୋଇନ୍ଦା ବିଭାଗର ହାତ ଯେପରି ରହିଛି, Multi-national Corporation ଜରିଆରେ ଓ ଅନ୍ୟାନ୍ୟ ସଂସ୍ଥା ଜରିଆରେ ଯେଉଁ କାଣ୍ଡ ହେଉଛି ଯାହାକି ଆମେରିକାର ସିନେଟ କମିଟି ଅଗାଡ଼ି ବାହାର ହେବା ପରେ ସବୁ କଥା ପଦାରେ ପଡ଼ୁଛି । ଲୁମ୍ବୁମ୍ବାଙ୍କ ହତ୍ୟାକାଣ୍ଡ ଠାରୁ ଆରମ୍ଭ କରି latest ହତ୍ୟାକାଣ୍ଡ ସବୁ କଥା ବାହାରୁଛି । ଆମ ଦେଶର କେତେକ ନେତା ତାଙ୍କ ସଙ୍ଗେ ମିଶି ସେ ଘଟଣା ଘଟାଇବା ପାଇଁ ଚେଷ୍ଟା କରୁଥିଲେ; ତାହା ହୋଇ-ପାରିଲା ନାହିଁ । ଏପରି କହୁଥିବେ ମୁଁ ସେଥିରେ ନାଗର । କି ରକମ ଅହିଂସା ଆନ୍ଦୋଳନ କରିବାକୁ ଚାହୁଁଥିଲେ ଯେଉଁଠି R.S.S. ଲୋକେ ପ୍ରସ୍ତୁତ ହେଉଥିଲେ, ୨୯ ତାରିଖ ଦିନ ମିଲିଟାରୀ ପୋଷାକରେ ପ୍ରଧାନ ମନ୍ତ୍ରୀଙ୍କ ଘରକୁ ଯିବାପାଇଁ ଏବଂ ଯେତେ ଫଟୋଗ୍ରାଫର ଅଛନ୍ତି ବିଶେଷତଃ ପାଶ୍ଚାତ୍ୟ ଦେଶର, ପ୍ରସ୍ତୁତ ହେବାପାଇଁ ମେସେଜ୍ କୁହାଯାଇଥିଲା, to take snaps, ତାକୁ ଖବର କାଗଜରେ ବାହାର କରିବାକୁ । ଦ୍ଵିତୀୟ କଥା ହେଲା ଆହ୍ଲାବାଦ୍ ହାଇକୋର୍ଟର ରାଏ କଥା, ଏହା ବହୁବାର ଆଲୋଚନା ହେଲାଣି । ସମୟ ଦିଆଗଲା ଅପିଲ କରିବାପାଇଁ କ'ଣ ଏତେ ଆବଶ୍ୟକ ହେଲା ତୁରନ୍ତ ଇସ୍ତଫା ଦେବାପାଇଁ । ଏସବୁ ଷଡ଼ଯନ୍ତ୍ର ପୂର୍ବରୁ ପରିକଳ୍ପିତ ହୋଇ ଥିବାରୁ ମୁଁ ଏକଥା କହୁଛି । ସେମାନେ ସୁପ୍ରିମ କୋର୍ଟ ରାଏ ହେବା ପର୍ଯ୍ୟନ୍ତ ଅପେକ୍ଷା କଲେ ନାହିଁ । ତାଙ୍କର target ହେଲା ପ୍ରଧାନ ମନ୍ତ୍ରୀ । କାରଣ ସେ ଯେବେଠାରୁ ଆସିଲେ କେତେକ କାର୍ଯ୍ୟକାରୀ କଲେ ଯାହାକି କଂଗ୍ରେସର ପ୍ରସ୍ତାବ ଆକାରରେ ରହି ଯାଇଥିଲା । ବ୍ୟାଙ୍କ ଜାତୀୟକରଣଠାରୁ ଆରମ୍ଭ କରି ରାଜାଙ୍କ ଭତ୍ତା କାଟିବା, ଭୂ-ସଂସ୍କାର ଇତ୍ୟାଦି ଯାହା ସବୁ ପୂର୍ବରୁ ଥିଲା ସେ ସବୁକୁ କଡ଼ାକଡ଼ି ଭାବେ କାର୍ଯ୍ୟକାରୀ କଲେ । ଆଜିର ଏହି କୋଡ଼ିଏ ଦଫା ଅର୍ଥନୈତିକ କାର୍ଯ୍ୟ ପ୍ରତି ବିରୋଧୀଦଳ ସଭ୍ୟଙ୍କ ଆନ୍ତରିକତା ନଥିବା ପରିଲକ୍ଷିତ ହେଉଛି, ସେଥିପାଇଁ ମୁଁ ଦୁଃଖିତ । ତାହା ଇନ୍ଦିରା ଗାନ୍ଧୀ ଦେଇଛନ୍ତି ସେପରି ନୁହେଁ, ଏହା କଂଗ୍ରେସ ଦଳ ଦେଇଛନ୍ତି ତାହା ନୁହେଁ, ଆଜି ଏହା ଜାତୀୟ ଯୋଜନାରେ ପରିଣତ ହେଲାଣି । କଂଗ୍ରେସ ହୁଅନ୍ତୁ ବା ଅଣକଂଗ୍ରେସ ହୁଅନ୍ତୁ ସମସ୍ତେ ଦଳମତ ନିର୍ବିଶେଷରେ ଦେଶର ଉନ୍ନତି କରିବାପାଇଁ, ଲୋକଙ୍କ ମଙ୍ଗଳ କରିବା ପାଇଁ ଆଗେଇ ଆସନ୍ତୁ । ଯେତେବେଳେ ଏ ପଟରେ ବନ୍ଧୁମାନେ କହୁଛନ୍ତି ଯେ ଆପଣମାନଙ୍କର ସହଯୋଗ କାମନା କରୁଛୁ ସେତେବେଳେ କେନ୍ଦ୍ରାପଡ଼ାର ମାନ୍ୟବର ସଭ୍ୟ କେଉଁଥି ପାଇଁ ସହଯୋଗ ମାଗିଛନ୍ତି ବୋଲି ପଚାରିଛନ୍ତି । ସହଯୋଗ ଏଇଥି ପାଇଁ ଦରକାର ଯେ ଆମେ ସମସ୍ତେ ମିଳିତ ଭାବରେ

କାର୍ଯ୍ୟକଲେ ସାରା ଦେଶ ବିଶେଷ କରି ଆମ ରାଜ୍ୟର ଉନ୍ନତି ହୋଇ ପାରିବ । ଆଉ ଯେଉଁ ଦରିଦ୍ର ଲୋକମାନଙ୍କ କଥା କହୁଛୁ ସେମାନଙ୍କ ଉନ୍ନତି ବିଧାନ କରିବାକୁ ହେଲେ ସମସ୍ତେ ମିଳିମିଶି କାର୍ଯ୍ୟକରିବା ଉଚିତ୍ ହେବ । ମୁଁ ଆଜି ଏଠାରେ ଆପଣଙ୍କ ନିକଟରେ କହୁଅଛି ଯେ ୨୦ ଦଫା ଅର୍ଥନୈତିକ କାର୍ଯ୍ୟକ୍ରମ ହେଉଛି ସ୍ଥାୟୀ କାର୍ଯ୍ୟକ୍ରମ । ଏହାକୁ କାର୍ଯ୍ୟକାରୀ କରିବା-ବାଟରେ ଯଦି କୌଣସି ପ୍ରକାରର ଅସୁବିଧା ହେଉଥାଏ ତାକୁ ଦୂର କରିବାକୁ ଆମେ ନିଶ୍ଚିତ ଭାବରେ ଚେଷ୍ଟାକରିବୁ, ଏଥିରେ ସନ୍ଦେହ ନାହିଁ । ଏତେବଡ଼ ବିରାଟ ରାଜ୍ୟରେ କେଉଁଠି କେଉଁ ଅଞ୍ଚଳରେ କ'ଣ ଅସୁବିଧା ହେଉଥିବ ସେ କଥା ମୁଁ ମାନୁଛି । ତାକୁ ଆମେ ସଂଶୋଧନ କରିବାକୁ ଚେଷ୍ଟା କରୁଛୁ । ଅନ୍ୟ ଦିଗରେ ମାନ୍ୟବର ଧାମନଗର ସଭ୍ୟ କହିଲେ ଯେ କୌଣସି ନୀତି ନଥାଇ ଏମାନେ କାର୍ଯ୍ୟ ଚଳାଇଛନ୍ତି । ନୀତି ନଥାଇ କାର୍ଯ୍ୟ କରୁଛନ୍ତି ବୋଲି ମୁଁ ତାହା ବୁଝିପାରୁନାହିଁ । ମୁଁ ଖାଲି ଏତିକି କହୁଛି ଯେ ସେ ଏ ସରକାରକୁ ଚିହ୍ନିବା ପାଇଁ ଏ ସରକାର କିପରି କେଉଁ ନୀତି ଉପରେ ଭିତ୍ତିକରି ସରକାର ଚଳୁଛନ୍ତି ନା କୌଣସି ନୀତି ନିୟମ ନଥାଇ ସରକାର ଚଳୁଛନ୍ତି । ଏହା ଆପଣ ଟିକିଏ ବିଚାର କରିବେ । ମୁଁ ଯେତେବେଳେ detailsକୁ ଆସୁଛି, ମୁଁ ମାନୁଛି କେତେ କ୍ଷେତ୍ରରେ ଅସୁବିଧା ସୃଷ୍ଟି ହୋଇଛି । ସେ ଅସୁବିଧାକୁ ଦୂର କରିବା ପାଇଁ ଆମେ ନିଶ୍ଚିତ ଭାବରେ ଚେଷ୍ଟା କରିବୁ ।

Sir, ଆମର 7·5 କୋଟି ଟଙ୍କା ଯାଇଛି flood, damage, restoration ଇତ୍ୟାଦି କାର୍ଯ୍ୟରେ । Second Supplementary 2·55 କୋଟି ଟଙ୍କା ବ୍ୟୟ ବରାଦ କରାଯାଉଛି । ମୋର ବିଶ୍ୱାସ ହେଉଛି ଯେ March ଶେଷ ସୁଦ୍ଧା ଏ ଟଙ୍କା ଖର୍ଚ୍ଚ ହୋଇଯିବ । କାରଣ କେତେକ ବିଭାଗରେ December ଶେଷ ସୁଦ୍ଧା ଯେତେ ଖର୍ଚ୍ଚ ହୋଇଥିଲା ତା'ର figure ପାଇଲା ପରେ ମୋର କାହିଁକି ବିଶ୍ୱାସ ହେଉଛି ଯେ ପ୍ରତ୍ୟେକ ବିଭାଗ March ମାସ ଶେଷ ସୁଦ୍ଧା ଏହାକୁ ଶେଷ କରିବା ପାଇଁ ଦୃଢ଼ଭାବରେ ସଚେଷ୍ଟ ହୋଇ କାର୍ଯ୍ୟ କରିବେ ତାହାହେଲେ ଏ ଟଙ୍କା ଖର୍ଚ୍ଚ ହେବାରେ କୌଣସି ଅସୁବିଧା ହେବ ନାହିଁ । ତେଣୁ ଏ ଟଙ୍କା ଖର୍ଚ୍ଚ ହୋଇ ପାରିବ ନାହିଁ ବୋଲି ଆଶଙ୍କା କରିବା କଥା ନୁହେଁ ।

ଅନ୍ୟ ଦିଗରେ ସମାଲୋଚନା ହେଲା ଯେ ଏ ଯେଉଁ ୭୩ କୋଟି ୭୭ ଲକ୍ଷ ଟଙ୍କାର ବ୍ୟୟ ବରାଦ କରାଯାଉଛି, ଏହା ଗୋଟିଏ Post-budget decision ଏବଂ ଏ decision budget ତିଆରି ସମୟରେ କାହିଁକି ହୋଇ ପାରିନଥିଲା । ମାନ୍ୟବର ସଭ୍ୟମାନେ ଜାଣିଛନ୍ତି ଯେ ଅଳ୍ପ ଦିନ ଏ ଗୃହରେ ପ୍ରଥମ Supplementary ଓ ତା'ପରେ ଦ୍ୱିତୀୟ Supplementary ଆସିଛି । ଆପଣ ଦେଖିବେ ଯେ ଆମର Capital accounts repayment of wage and means advance to Reserve Bank of India ହେଉଛି 20 କୋଟି 88 ଲକ୍ଷ 90 ହଜାର ଟଙ୍କା ।

ଆମେ ବର୍ଷକୁ ଯେ ଆମର 8 କୋଟି ଟଙ୍କା wage and means advance ଆଣି କାର୍ଯ୍ୟ ଚଳାଉଛୁ । Budgetରେ ସେ Provision ଥିଲା । କିନ୍ତୁ କେତେକ କାର୍ଯ୍ୟରେ ବେଶି ଅଡୁଆ ଯୋଗୁଁ ଖର୍ଚ୍ଚ ହେଲା ସେତେବେଳେ ତାହା ସମ୍ଭବ ନଥିଲା । ତା'ପରେ Reserve Bankରୁ advance ଆଣିବାକୁ ପଡ଼ିଲା । ଆମେ Reserve Bankରୁ ଯେତେବେଳେ ଟଙ୍କା ଆଣୁ ତାକୁ ପୁଣି ଫେରାଇ ଦେଉ । ଏହିପରି ଭାବରେ ଆମେ Reserve Bankରୁ ଯେତେଥର ଆଣିଛୁ ତାକୁ ପୁଣି ଫେରାଇ ଦେଇଛୁ, ସେଇଥି ପାଇଁ ଏ ଗୋଟିଏ ବଡ଼ figure ହୋଇଛି 20 କୋଟି 88 ଲକ୍ଷ 90 ହଜାର ।

ତା'ପରେ ଆପଣ ଦେଖିବେ ଯେ, ଆମର ମହଙ୍ଗା ଭତ୍ତା ଦେବାରେ ଖର୍ଚ୍ଚ ହେଲା, ପ୍ରଥମେ ତିନୋଟି ଦଫା ଦେଇଥିଲୁ ଆଉ ଗୋଟିଏ ଦଫା ତାଙ୍କୁ ଦିଆଗଲା, ଏ ବର୍ଷ ସ୍ଥିର କରିବା ପାଇଁ ସମୟ ଲାଗିଲା । ଆମ ରାଜ୍ୟର ଅର୍ଥନୀତି ଉପରେ ତା'ର କି ପ୍ରଭାବ ପଡ଼ିବ ଏବଂ ଦେଶ-ସାରା ଆମର ସାମର୍ଥ୍ୟ କେତେ ତାହାକୁ ବିଚାର କଲାପରେ ଆମର ଯେତେବେଳେ ସ୍ଥିର ହେଲା ସେତେବେଳେ ସେ ବାବଦରେ ଆମର ହେଲା 17 କୋଟି 60 ଲକ୍ଷ 53 ହଜାର ଟଙ୍କା ।

ଆପଣ ଦେଖିବେ ଯେ Payment of Sales tax by Forest and Animal Husbandry, ଏ ଗୋଟିଏ ଖାଲି head ପରିବର୍ତ୍ତନ Animal Husbandry Department ଠାରୁ Sales tax ବାବଦରେ ଏହା Financeକୁ ଆସିଲା । ସେଥିପାଇଁ ଆମକୁ ଏ ବ୍ୟବସ୍ଥା କରିବାକୁ ପଡ଼ିଲା । କେତେ ବାବଦରେ ସେମାନେ Sales tax ଦେଇ ପାରି ନଥିଲେ ତା'ର ଶେଷ ହିସାବ ମିଳିଲା ପରେ ଏପରି ବ୍ୟବସ୍ଥା କରାଗଲା ।

ମାନ୍ୟବର ସଦସ୍ୟ ପଞ୍ଚାୟତରେ ପୋଡ଼ି ବାବଦରେ ଅର୍ଥ ମଞ୍ଜୁର ହେଉ ବୋଲି କହୁଥିଲେ । ଆମେ ଏ ବାବଦରେ 5 ଲକ୍ଷ ଟଙ୍କା ରଖିଛୁ । ଆଜି ଏ ମଞ୍ଜୁରି ମିଳିଲା ପରେ ଏ 5 ଲକ୍ଷ ଟଙ୍କା ଖର୍ଚ୍ଚ କରିବାକୁ ପାରିବ ।

ତା'ପରେ Sir, ଅନେକ Creation of 250 R. I. Circles, ଏହିପରି କେତେକ ନୂଆ କଥା କରିବାକୁ ପଡ଼ିଲା । Fire relief ଓ election expensesରେ ଟଙ୍କା ଖର୍ଚ୍ଚ ହୋଇଥିଲା, କିନ୍ତୁ ରହି ଯାଇଥିଲା । ପରେ ହିସାବ ସବୁ ଆସିଲା ପରେ ତାକୁ ଶେଷ ହିସାବ କରି ଏ ଟଙ୍କା ଦେବାକୁ ପଡ଼ିଲା । Sir, ଏହିପରି କେତେକ unforeseen ରହିବ ।

ଏଭଳି Revenue Head ହେଲା । ତା'ପରେ ଆମର State Planରେ ମଧ୍ୟ ସେଭଳି ହେଲା । Flood damage repair, Purchase of a Composing machine for Government Press, Consolidation of holdings ଉପରେ ମାନ୍ୟବର ସଭ୍ୟମାନେ ବହୁତ କଥା କହିଛନ୍ତି, ସେଥିପାଇଁ ଟଙ୍କା ଅଧିକ ରଖାଯାଇଛି । ସେହିପରି State Planର Capital accountରେ ମଧ୍ୟ ବେଙ୍ଗାଲି Project ପାଇଁ ଅଧିକ 2 କୋଟି ଟଙ୍କା ରଖିବାକୁ ପଡ଼ିଲା । କିନ୍ତୁ ଶେଷରେ ଆମେ କେନ୍ଦ୍ରରୁ ସାହାଯ୍ୟ ପାଇବା କଥା ପାଇଲୁ, ତା ବାହାରେ ରାଜ୍ୟ ସରକାରଙ୍କ ଦେୟ ହିସାବରେ ଆମେ 2 କୋଟି ଟଙ୍କା ବେଙ୍ଗାଲି ପାଇଁ ରଖିଛୁ । ତା'ପରେ Health Department building ଉପରେ ବହୁତ ଆଲୋଚନା ହେଲା, building ପାଇଁ ତାଙ୍କର ଯାହା ଟଙ୍କା ଅଛି ତା ବାହାରେ ଆମେ ସେମାନଙ୍କୁ 20 ଲକ୍ଷ 46 ହଜାର ଟଙ୍କା ଦେଇଛୁ । କେତେକ ନୂଆ କାର୍ଯ୍ୟପାଇଁ ଆମେ ଏ ଟଙ୍କା ଦେବାକୁ ବାଧ୍ୟ ହେଲୁ । ଆମର ଏଭଳି କେତେକ ଖର୍ଚ୍ଚ ଅଛି ଯେଉଁଥିପାଇଁ budget ତିଆରି ସମୟରେ ଆମେ expect କରି ନଥିଲୁ । ପରେ ପରେ ବର୍ଷ ଭିତରେ ସେଥିପାଇଁ budget provision କରିବାକୁ ପଡ଼ିଲା । ଉଦାହରଣ ସ୍ୱରୂପ କେନ୍ଦ୍ର ସରକାରଙ୍କର କେତେକ grant ମିଳିବ କି ନମିଳିବ ଏଭଳି ସନ୍ଦେହଜନକ ଅବସ୍ଥାରେ ଥିଲା, ସେଗୁଡ଼ିକ ମିଳିଗଲା । ସେଭଳି grant ଆସିଲେ ତାକୁ ଆମ budgetରେ ନେବାକୁ ପଡ଼େ । ସେହିଭଳି Centrally Sponsored Scheme ପାଇଁ ଟଙ୍କା ଆସିଲେ ସେଥିପାଇଁ Provision କରିବାକୁ ହୁଏ ।

ଏହା ବାହାରେ ବହୁ ମାନ୍ୟବର ସଭ୍ୟ detailକୁ ଆସିଛନ୍ତି । ବିଶେଷକରି ଆମର କୃଷି ଉତ୍ପାଦନ ବୃଦ୍ଧି ଉପରେ ବହୁ ଗୁରୁତ୍ୱ ଦେଇଛନ୍ତି । ସେଥିପାଇଁ ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଛି । କାରଣ ଆମର 20 ଦଫା ଅର୍ଥନୈତିକ କାର୍ଯ୍ୟକ୍ରମର ପ୍ରଥମ ଦଫା ହେଉଛି ବଢ଼ିବା ହାରରେ ଉତ୍ପାଦନ ବୃଦ୍ଧି କରିବା । ଉତ୍ପାଦନ ବୃଦ୍ଧି ପାଇଁ ସରକାର ବହୁତ କାମ କରିଛନ୍ତି । ଜମି ବଣ୍ଟନ ହେଲାପରେ ସରକାର ଯେ ଭୂମି ଦେଉଛନ୍ତି ତାହା ନୁହେଁ । ଏ ବିଷୟରେ ଆମ ରାଜ୍ୟପାଳଙ୍କ ଭାଷଣରେ ମଧ୍ୟ କିଛି ସୂଚନା ଦିଆଯାଇଥିଲା । ଆମେ ବର୍ତ୍ତମାନ ଉଦ୍ୟମ କରୁଛୁ ଯେଉଁମାନଙ୍କୁ ଜମି ଦିଆଯାଇଛି ସେମାନେ ବ୍ୟାଙ୍କରୁ କିପରି ଅର୍ଥ ପାଇବେ । କୋ-ଅପରେଟିଭରୁ ଲୋନ ପାଇବେ ଏବଂ ଏସ୍. ଏଫ୍. ଡି. ଏ., ଏମ୍. ଏଫ୍. ଡ଼ି. ଏ. ଇତ୍ୟାଦି ସଂସ୍ଥାମାନଙ୍କରୁ କିପରି ସାହାଯ୍ୟ ପାଇବେ । ଏଥିପାଇଁ ପ୍ରତ୍ୟେକ ଜିଲ୍ଲାରେ

ଆମେ ଗୁରୁତ୍ୱ ଦେଇ କାର୍ଯ୍ୟ ଆରମ୍ଭ କରିଛୁ । ସାର୍, ଏହା ଠିକ୍ ନୁହେଁ ଯେ ଯେଉଁ କମ୍ପ ଦିଆଯାଇଛି ସେ କେବଳ ଧାନ୍ଦୁ ହୁଅ, ଜଙ୍ଗଲ ଯାହାକୁ ଶକ୍ତି ଉତ୍ପାଦନ କଲବେଳକୁ ବହୁତ ସମୟ ଲାଗିବ ।

ସାର୍, ଆପଣ ଦେଖୁଥିବେ ଗତକାଲି the first Rural Bank of Orissa, ପିପିଲିଠାରେ ଖୋଲାଗଲା । ଆପଣ ଏବଂ ମାନ୍ୟବର ସଭ୍ୟମାନେ ଶୁଣି ଖୁସି ହେବେ ଯେ ଜାତୀୟକରଣ କମର୍ସିଆଲ୍ ବ୍ୟାଙ୍କମାନଙ୍କ ମଧ୍ୟରେ ଗୋଟିଏ ପ୍ରତିଯୋଗିତା ସୃଷ୍ଟି ହୋଇଛି, କିଏ କେତେ ନୂଆ ବ୍ୟାଙ୍କ ଖୋଲିବ ସେଥିପାଇଁ ସେମାନେ ଘର ସୁବିଧା ଖୋଜୁଛନ୍ତି । ଏମିତିକି ସେମାନେ ଘର ଭଡ଼ାରେ ବ୍ୟାଙ୍କ ଦେବାପାଇଁ ଯଦି କେହି ବୁଝୁଁଛି ସେମାନେ ଆଡ଼ଭାନ୍ସ ମଧ୍ୟ ଦେଉଛନ୍ତି । ଯେଉଁଠି ସେ ତାଙ୍କର ରୁରାଲ୍ ବ୍ୟାଙ୍କ ଖୋଲିବେ । ମୋର କହିବାର କଥା ଗାଁ ଗହଳକୁ ବ୍ୟାଙ୍କ ଗଲେ ଆମର ଚାଷୀ ଭାଇମାନେ ଦୂରକୁ ସକାଶେ ଋଣ ପାଇବା ପାଇଁ ଯେଉଁ ଅସୁବିଧା ହେଉଛି ସେ ଅସୁବିଧା ଦୂର ହୋଇପାରିବ । ଆପଣ ଜାଣିଥିବେ ଆମ ମୁଖ୍ୟମନ୍ତ୍ରୀ ତାଙ୍କ ରିଲିଫ୍ ଫଣ୍ଡରୁ—ବର୍ତ୍ତମାନ ମୋ ପାଖରେ ହିସାବ ନାହିଁ, ୨ ଲକ୍ଷ ଟଙ୍କା ଦେଇଛନ୍ତି ଯେଉଁଥିରେ କୃଷକମାନେ ସେଆର କିଣି କୋ-ଅପରେଟିଭ୍‌ର ସଭ୍ୟ ହୋଇପାରିବେ । ଯାହା ଫଳରେ ସେମାନେ ଋଣ ପାଇବାର ସୁବିଧା ହେବ ।

ଉଦ୍‌ବେଗର କଥା ମାନ୍ୟବର ସଭ୍ୟ ଉଠାଇଛନ୍ତି । ଆମର ଆସନ୍ତା ବଜେଟରେ ଯାହାକି ଆସନ୍ତା ଦିନରେ ଉପସ୍ଥାପିତ ହେବ ସେଥିରୁ ସବୁ ବିବରଣୀ ଆପଣମାନେ ପାଇପାରିବେ । କେନ୍ଦ୍ର ସରକାର ଯେଉଁ priority sector କରିଛନ୍ତି । ସେଥିରେ କୃଷି, ସମବାୟ, ଜଳସେଚନ ଏବଂ ବିଦ୍ୟୁତ୍ ଶକ୍ତି ଉତ୍ପାଦନ ଉପରେ ବହୁ ଗୁରୁତ୍ୱ ଦେଇଛନ୍ତି । ପ୍ଲାନ ମନିର ପ୍ରାୟ ୭୦ ଭାଗରୁ ଊର୍ଦ୍ଧ୍ୱ ଅଧିକ ଟଙ୍କା ଏଥିରେ ବିନିଯୋଗ କରିବା ପାଇଁ ବ୍ୟବସ୍ଥା ହେଉଛି । ଚିରଗୁଣ ମାନ୍ୟବର ସଭ୍ୟ ଯାହା କହିଲେ ଯେ ଲେନିନ୍ କହୁଥିଲେ ପାୱାର ଦ୍ୱାରା real socialism ହୋଇପାରିବ, ସେକଥା ଠିକ୍ । ସେଥିପାଇଁ ୫।୧୦ ବର୍ଷ ତଳେ ଏ ସରକାରଙ୍କର ଯେଉଁ ମନୋଭାବ ଥିଲା ଯେ ଯେଉଁଠାରେ ଟିକେ Lift Irrigation Point ହେବ, ଇଣ୍ଡଷ୍ଟ୍ରି ହେବାର ସମ୍ଭାବନା ଥିବ ସେଠାକୁ କେବଳ ବିଜୁଳି ଯାଇପାରିବ । ବର୍ତ୍ତମାନ ସେଥିରେ ପରିବର୍ତ୍ତନ କରି ବିଜୁଳି ଦେଉଛନ୍ତି । କେବଳ ଗ୍ରାମ ଆଲୋକିତ କରିବାପାଇଁ ନୁହେଁ । ତା'ର ସୁବିଧା ନେଇ ଯେପରି ଲିଫ୍‌ଟ୍ ପଏଣ୍ଟ ହୋଇପାରିବ, ସ୍ଲେଟ ଇଣ୍ଡଷ୍ଟ୍ରି ହୋଇପାରିବ ଏବଂ ଅନ୍ୟାନ୍ୟ ଡେଭଲପମେଣ୍ଟ ହୋଇପାରିବ । ଢେଙ୍କାନାଳରେ ହ୍ୟାଣ୍ଡଲୁମ୍‌କୁ ପାୱାରଲୁମ୍‌ରେ ପରିଣତ କରୁଛନ୍ତି । ମାର୍କେଟିଂରେ କୌଣସି ଅସୁବିଧା ହେଉନାହିଁ ।

ବର୍ତ୍ତମାନ ତା'ର ଉଦ୍ୟମ ହେଉଛି । ଆପଣ ଜାଣିଥିବେ ଗତକାଲ୍ instructions ଆସିଛି, ଜାତୀୟକରଣ ବ୍ୟାଙ୍କର ତତ୍ତ୍ୱାବଧାନକେମାନଙ୍କୁ ତାକ 20-ଦଫା କାର୍ଯ୍ୟକ୍ରମ ସଫଳ କରିବାରେ ବ୍ୟାଙ୍କ ଯେଉଁ ଅର୍ଥ ବିନିଯୋଗ କରିବେ ସେଥିରେ ଯାହା ଅସୁବିଧା ଅଛି ତାହା ଦୂର କରାଯିବ । ନିୟମ, ସରଳୀକୃତ ହେବ । ଏ କାମ ଲୋକଙ୍କପାଇଁ ହୋଇଛି । ଯଦି ସେଥିରେ କୌଣସି ନିୟମ ପ୍ରତିବନ୍ଧକ ସୃଷ୍ଟି କରେ ନିଶ୍ଚୟ ସେ ନିୟମର ସରଳୀକରଣ କରାଯିବ ।

ମାନ୍ୟବର ସଭ୍ୟ ଯାହା କହିଲେ ତାହା ବଡ଼ ଗୁରୁତର କଥା । ସମବାୟ ବ୍ୟାଙ୍କ ହେଉ, ଭୂମିଉନ୍ନୟନ ବ୍ୟାଙ୍କ ହେଉ, ଋଣ ଯଦି ଠିକ୍‌ଭାବରେ ଶୁଝାଯିବ ମୁଁ କହିବି ଜଳସେଚନପାଇଁ, ରିଲିଫପାଇଁ ଆମେ ଯେଉଁ ଟଙ୍କା ଦେଉଛୁ ତା'ଠାରୁ ଯଥେଷ୍ଟ ଅଧିକ ଟଙ୍କା ଆମେ ଦେଇ ପାରିବୁ । ପତ୍ତାବ କଥା ମାନ୍ୟବର ସଭ୍ୟ କହିଲେ । ସେଠାରେ ଯାହା ହୋଇଛି ଏଠାରେ ତାହା କରିବାପାଇଁ କୌଣସି ଅସୁବିଧା ନାହିଁ, ଏହା ନିଶ୍ଚିତ କଥା । ଯେ ସମସ୍ତ ଦେଶରେ ପର କାପିଟା ଇନକମ, ପର୍ କାପିଟା ଏକ୍‌ସପେଣ୍ଡିଚର ପଞ୍ଜାବର ବେଶି । ସେ କହିଛନ୍ତି 10 ବର୍ଷ ଭିତରେ ଚକବନ୍ଦି କରିବାପାଇଁ କାଇଗନ୍ କହୁଥିଲେ । ଆମର ଏତେ ଦ୍ରୁତ ବେଗରେ ନହେଲେ ମଧ୍ୟ କନ୍‌ସୋଲିଡେସନପାଇଁ ସେକେଣ୍ଡ ସପ୍ଲିମେଣ୍ଟାରୀରେ ଟଙ୍କା ଅଛି । ମାନ୍ୟବର ସଭ୍ୟ ପଞ୍ଜାବରେ ଲ୍ୟାଣ୍ଡ ହୋଲ୍‌ଡିଂ କେତେ ତାହା ଜାଣନ୍ତି । ଆମର କେତେଗୁଡ଼ିଏ ଜିଲ୍ଲା ଅଛି ଯେଉଁଠାରେ କନ୍‌ସୋଲିଡେସନ ହୋଇପାରିବ ନାହିଁ । ଖାଲ, ଢିପ ଜମି ଯେଉଁଠି ଥିବ ସେଠାରେ ଲ୍ୟାଣ୍ଡ କନ୍‌ସୋଲିଡେସନ୍ ଏତେ ସୁବିଧା ନୁହେଁ । କଟକ, ବାଲେଶ୍ୱରର ସୁବିଧା ଗଞ୍ଜାମ, ଫୁଲବାଣୀରେ ନାହିଁ । ତଥାପି ଯେଉଁଠାରେ ସୁବିଧା ଅଛି ଶୀଘ୍ର କରିବାପାଇଁ ବ୍ୟବସ୍ଥା ହେଉଛି ଏବଂ ବ୍ୟୟ ବରାଦ କରାଯାଇଛି ।

ସାର୍, ଅନ୍ୟ କେତେକ କଥା ଏଠାରେ ଉଠିଛି । ଆର୍. ଇ. ଓ. ସମ୍ପର୍କରେ କାଲି ଏ ଗୃହରେ ଆଲୋଚନା ହୋଇଯାଇଛି । ମାନ୍ୟବର ସଭ୍ୟମାନେ ତାଙ୍କ ନିର୍ବାଚନମଣ୍ଡଳୀରେ ଯେଉଁସବୁ ଅସୁବିଧା ରହିଛି ତାହା ଆଗରେ କହିଛନ୍ତି । ସେ ଅସୁବିଧା ଦୂର ହେବା ଦରକାର । ମୁଁ ମଧ୍ୟ ଅନୁଭବ କରୁଛି । ବଜେଟରେ ବିଭିନ୍ନ ବିଭାଗର ଡିମାଣ୍ଡ ଆସିଲେବେଳେ ମାନ୍ୟବର ସଭ୍ୟମାନେ ତାଙ୍କ ନିର୍ବାଚନମଣ୍ଡଳୀର ସେହି ବିଭାଗର ଅସୁବିଧା ସମ୍ପର୍କରେ ଉପସ୍ଥାପିତ କରିବେ ଏବଂ ବିଭାଗୀୟ ମନ୍ତ୍ରୀ ତା'ର ଉତ୍ତର ଦେବେ ।

ମୁଁ ବର୍ତ୍ତମାନ ପ୍ରୋକିଓରମେଣ୍ଟ ଉପରକୁ ଆସୁଛି । ଏହା ଗୋଟିଏ ମୁଖ୍ୟ କଥା । ବହୁ ମାନ୍ୟବର ସଭ୍ୟ ଆଶଙ୍କା ପ୍ରକାଶ କରି କହିଛନ୍ତି, କେତେକ ଜାଗାରେ ଧାନ ସୃଷ୍ଟିଦର କମିଗଲାଣି । ଏପରିକି ସପୋର୍ଟ ପ୍ରାଇସ ଠାରୁ କମିଗଲାଣି । ଦୁଇଟି ଜିଲ୍ଲାରୁ ସେ ଅଭିଯୋଗ

ଆସିଛୁ । କୋରାପୁଟ ପାଇଁ ସଗ୍ରହ କରିବାପାଇଁ ଟାର୍‌ଗେଟ୍ ଥିଲା ୧୪ ହଜାର ଟନ୍ । ବର୍ତ୍ତମାନ ପୁଞ୍ଜା ହୋଇଛି 20,9466·2 ଟନ୍ । ପ୍ରୋକ୍ୟୁରମେଣ୍ଟ ଚାଲିଛି, ବନ୍ଦ ହୋଇନାହିଁ । କଳାହାଣ୍ଡି ଟାରଗେଟ୍ ଥିଲା 15 ହଜାର ଟନ୍ । ବର୍ତ୍ତମାନ ପୁଞ୍ଜା ହେଲାଣି 17 ହଜାର 8 ଟନ୍ ।

କଟକ ଜିଲ୍ଲା କଥା ଆପଣ ଜାଣନ୍ତି, କେଉଁଠି ପଛରେ ପଡ଼ିଛି । 7 ହଜାର ଟନ୍ ଟାର୍‌ଗେଟ୍ ରଖାଯାଇଥିଲା । ସେଥିରୁ ହୋଇଛି 72,483 ଟନ୍ । ମାନ୍ୟବର ସଭ୍ୟମାନେ ଯେଉଁମାନେ କଟକ ଜିଲ୍ଲାରୁ ଆସିଛନ୍ତି ସେମାନଙ୍କର ବିନା ସହଯୋଗରେ ଏହା କେବେ ହୋଇପାରିବ ନାହିଁ । ଗୋଟିଏ ବର୍ଷ ଆପଣ ଟାର୍‌ଗେଟ ରିଚ୍ କରିବାରେ ସାହାଯ୍ୟ କରନ୍ତୁ ।

ମୁଁ ଗୃହକୁ ଏ କଥା ଜଣାଇବାକୁ ଚାହେଁ ଅର୍ଥ ଅଭାବରୁ ପ୍ରୋକ୍ୟୁରମେଣ୍ଟ ହୋଇପାରୁ ନାହିଁ ଯାହା କୁହାଯାଇଛି ତାହା ଠିକ୍ ନୁହେଁ । ଏତକ ସମସ୍ତେ ମନେରଖିଥିବା ଦରକାର । ଆଉ କେତେକ କଥା କହୁଛନ୍ତି ଚାଉଳ ବଜାରକୁ ଆସୁଛି କମ୍ ଦରରେ ବିକି ହେଉଛି । ସରକାର କେହୁ ନାହାନ୍ତି । ସାର୍, ବଜାରକୁ ଯେଉଁ ଚାଉଳ ଆସେ ଆମେ ଲେଭିଲ୍ କଂଜଂପ୍‌ସନପାଇଁ ଯୋଉ ଫାଇଣ୍ଟ ସମୟରେ ଛାଡ଼ିଦେଇଥାଉ । Support price for rice ଆମର କିଛି ନାହିଁ । Hand pounding rice ଏବଂ ହଲରପାଇଁ ଗୋଟିଏ ରେଟ୍ ଅଛି । ଆମର support price for paddy ଅଛି । କଲେକଟରମାନଙ୍କ ପାଖକୁ ନିର୍ଦ୍ଦେଶ ଚାଲିଗଲାଣି ଯେଉଁଠି ଡ଼ିସ୍‌ଟ୍ରେସ୍ ସେଲ କଥା ଜାଣିବେ ତୁରନ୍ତ ସେଠାରେ ପ୍ରୋକ୍ୟୁରମେଣ୍ଟ କରିବେ । କଲେକଟରଙ୍କୁ କୁହାଯାଇଛି ଅର୍ଥର ଅଭାବ ନାହିଁ ।

ଭିତର ଡ଼ିଷ୍ଟ୍ରିକ୍ଟ ରେସ୍‌ଟ୍ରିକ୍‌ସନ୍ କିଛି ନାହିଁ । Within the district ଚାଷୀ ଯେଉଁଠିକି ଯେତେ ନେଇପାରିବେ । Inter district ଆମର ଥିଲା up to 2 କୁଇଣ୍ଟାଲସ୍ ନେଇପାରିବ । ଆଜି ତାକୁ ଆଉ ଟିକିଏ ରେସଟ୍ରିକ୍ଟ କରାଯାଇଛି । ଯଦି ବୋଟ୍, ଟ୍ରକ୍ ବା ଟ୍ରେନ୍‌ରେ ନେବାକୁ ହୁଏ ତାହାହେଲେ ଜଣେ ଲୋକ 5 କେଜିରୁ ବେଶି ନେଇପାରିବ ନାହିଁ । ସ୍ମଗଲିଂ ହେଉଥିବା ସମୟରେ ଜଣେ ଜଣେ ଲୋକ ଏକ କ୍ୱିଣ୍ଟାଲ ଦୁଇ କ୍ୱିଣ୍ଟାଲ କରି 10-20 କ୍ୱିଣ୍ଟାଲ ନେଇଯାଉଥିଲେ । ସେଥିପାଇଁ ସେ ନିୟମ ରହିଯାଇଛି । ବ୍ଲକ୍ କାର୍ଡରେ S. D. O. ପରମିସନ୍ ନେଇ district ଭିତରେ ନେଇପାରିବେ, ତା ମଧ୍ୟ ଅଛି । ମାନ୍ୟବର ସଭ୍ୟମାନେ ଯାହା କହୁଛନ୍ତି Inter-district restriction ହଟାଇ ଦେଲେ ଯେଉଁ ଜିଲ୍ଲାରେ ଦରଦାମ୍ କମ୍ ଅଛି ସେଠୁ ଦରଦାମ୍ ବେଶୀଥିବା ନିକଟତମ ଜିଲ୍ଲାକୁ ଧାନ, ଚାଉଳ ଆସିଲେ କମ୍

ଥିବା ଜାଗାରେ କିଛି ବଢିଯିବ ଓ ବେଶୀଥିବା ଜାଗାରେ କିଛି କମିଯିବ । ଏହା ବିସ୍ତାରରୂପେ ମୁଁ ସମସ୍ତ ଅଙ୍କକୁ ଡିଟେଲ୍ ଡିସ୍କସନ୍ କରିପାରୁ ନାହିଁ । ଯେଉଁ ଡିମାଣ୍ଡ ସବୁ ଆସିବ ସେଥିରେ ମାନ୍ୟବର ସଭ୍ୟମାନେ ଆଲୋଚନା କରିବେ ।

Education ବିଷୟରେ କେତେକ କଥା ଉଠିଛି । ବିଶେଷକରି ଇକ୍ୱାଲାଇଜେସନ୍ of pay scale ହେଲାପରେ କେତେକ ଶିକ୍ଷକ ଏ pay ପାଇନାହାନ୍ତି ଓ direct payment ମଧ୍ୟ କେତେକ ଜାଗାରେ ହେଉନାହିଁ । କେଉଁ category ସ୍କୁଲପାଇଁ direct payment ହେଉନାହିଁ । ମାନ୍ୟବର ସଭ୍ୟ ଜାଣିବା ଉଚିତ୍ ଗୋଟିଏ incomplete High School ର eligibility ଆସିନାହିଁ । ସେଠି direct payment ହେଉନାହିଁ । ସେଥିରେ କ'ଣ କେଉଁ ଅସୁବିଧା ହୋଇଗଲା । ତା' ପରେ କେତେକ ଶିକ୍ଷକଙ୍କର ପ୍ରଥମେ ଦରମା ଧାର୍ଯ୍ୟ ହେବାରେ ଡେରି ହୋଇଥିଲା । ସେମାନଙ୍କର revised ଦରମା calculate କରି ଦେବାରେ କିଛି ଡେରି ହୋଇଛି । ଯେଉଁମାନେ revise ଦରମା ପାଇନାହାନ୍ତି ମାର୍ଚ୍ଚ ଶେଷସୁଦ୍ଧା ପାଇଯିବେ । ମ୍ୟୁନିସି-ପାଲିଟିର Local Bodies ମାନଙ୍କର ଏହି revise ଦରମା ପାଇବାରେ କିଛି ଅସୁବିଧା ଅଛି । ଏଥିପାଇଁ ଗୋଟିଏ report କୁ ଅପେକ୍ଷା କରାଯାଉଛି । ଉଭୟ ଶିକ୍ଷା ବିଭାଗ ଓ Urban Local Bodies ଉଭୟ ଭାବୁଛନ୍ତି ଦାୟିତ୍ୱ ତାଙ୍କର ନୁହେଁ । ଉଭୟେ କଥାବାର୍ତ୍ତା କରି ମୁଁ ଭାବୁଛି ମାର୍ଚ୍ଚ ଶେଷସୁଦ୍ଧା ଗୋଟିଏ ନିଷ୍ପତ୍ତିରେ ପହଞ୍ଚିଯିବେ ବୋଲି ମୋର ଧାରଣା ହେଉଛି । Non-teaching ସମ୍ପର୍କରେ ଯେଉଁ ବିଚାରାଧୀନ ଅଛି ମୋର ବ୍ୟକ୍ତିଗତ ଭାବନା ଏହାର ମୀମାଂସା ଶୀଘ୍ର ହୋଇଯିବ । Education Demand ଆଲୋଚନା ବେଳେ ଏହାର ବିଶଦ ଆଲୋଚନା କରିବାପାଇଁ ସମୟ ମିଳିବ । ରାଧାନାଥ ରଥ କମିଟି ରିପୋର୍ଟ 2 ଦିନ ତଳେ ଆସିଛି ସେ ରିପୋର୍ଟକୁ ଠିକ୍‌ଭାବରେ ଆଲୋଚନା କରିବାପାଇଁ ସୁପାରିଶଗୁଡ଼ିକୁ ଦେଖିବାପାଇଁ ନିଶ୍ଚିତ ଭାବରେ ସମୟସାପେକ୍ଷ, ପରେ ଏହାର ଆଲୋଚନା କରିବାର ସୁବିଧା ମିଳିବ । ସେ ସମ୍ପର୍କରେ ମୋର ଆଉ ବିଶେଷ କିଛି କହିବାର ନାହିଁ ।

ଶେଷରେ ନିଶାନିବାରଣ ସମ୍ପର୍କରେ କେତେକ ମାନ୍ୟବର ସଭ୍ୟ କେତେକ ବିଷୟ ଉତ୍ଥାପନ କରିଛନ୍ତି । ମାନ୍ୟବର ସଭ୍ୟ ଶଶୀଭୂଷଣ ମାର୍ଣ୍ଡି କହିଛନ୍ତି ଯେ ଆମ ଅଞ୍ଚଳରୁ ମଦ ନିଶା ନିବାରଣ ସମ୍ପୂର୍ଣ୍ଣ ଭାବରେ କରାଯାଏ ତା'ହେଲେ ତେବେ ସରକାରଙ୍କର ଯେଉଁ ଅର୍ଥକ କ୍ଷତି ହେବ ତାକୁ ଆମ ଅଞ୍ଚଳ ଲୋକେ ଭରଣା କରିବାକୁ ପ୍ରସ୍ତୁତ ଅଛନ୍ତି । ମୁଁ ଏଥିପାଇଁ ତାଙ୍କୁ ଧନ୍ୟବାଦ ଦେଉଛି । ଏଥିରୁ ମୁଁ ଜାଣିପାରୁଛି ସେଠା ଲୋକେ ମଦଠାରୁ ଦୂରରେ ରହିବାକୁ ଇଚ୍ଛୁକ । ତା' ସଙ୍ଗେ ସଙ୍ଗେ ମୁଁ କହିଦେବାକୁ ଚାହେଁ

ଯେ ଗୋଟିଏ କନ୍‌ସେସନ୍ ଦିଆଯାଇଥିଲା । ହାଣ୍ଡିଆ ନିଜର ବ୍ୟବହାରପାଇଁ 7 କେଜି un-diluted ଏବଂ 18 କେଜି diluted ଜଣେ ଲୋକ ରଖିପାରିବ । ଏହି ସୁବିଧାର ଅପବ୍ୟବହାର କରି ହାଟମାନଙ୍କରେ ଶହ ଶହ ଲୋକ ହାଣ୍ଡିଆ ବିକି କରିବାକୁ ବସି ଗଲେଣି । ଏ ସୁବିଧାଟି ନିଜ familyର ବ୍ୟକ୍ତିଗତ ବ୍ୟବହାର ପାଇଁ ଦିଆଯାଉଥିଲା । ତା'ର ଅପବ୍ୟବହାର କରି ବର୍ତ୍ତମାନ ବେଆଇନ କାମ ଚାଲିଛି । ମାନ୍ୟବର ସଭ୍ୟମାନେ ନିଜର ପ୍ରସ୍ତାବ ପକାଇ ଏହାକୁ ବନ୍ଦ କରନ୍ତୁ । ଭେଣ୍ଡରମାନଙ୍କୁ ବନ୍ଦ କରି ସେଠାକା ଲୋକମାନଙ୍କୁ ନିଜେ ଭେଣ୍ଡିଂ କରିବାପାଇଁ ଯଦି ସୁବିଧା ଦେବା ମୋର ବଳବତ୍ତର ଆଶଙ୍କା ହେଉଛି ଏହାର ଅପପ୍ରୟୋଗ କରାଯିବ । ମାତ୍ର 2ଟା ଭିତରେ ଏହାକୁ ନିଶ୍ଚିତ ଭାବରେ commercialise କରିବେ । ଏହି ସେସନ୍‌ରେ ଏ ବିଷୟରେ ଆଲୋଚନା କରିବାକୁ ପାରିବେ । ଏତିକି କହି ମୁଁ ମାନ୍ୟବର ସଭ୍ୟମାନଙ୍କୁ ଅନୁରୋଧ କରିବି ଏ Billକୁ ଗ୍ରହଣ କରନ୍ତୁ ।

ଶ୍ରୀ ବିନାୟକ ଆଚାର୍ଯ୍ୟ (ମନ୍ତ୍ରୀ) : ଭାରତ ସରକାର ଭାରତବର୍ଷର average price index ନେଇ D. A. ସ୍ଥିର କରିଛନ୍ତି କିନ୍ତୁ ଆମର ଭିନ୍ନ ଭିନ୍ନ ସ୍ଥାନର price index ଜାଣିବା ସୁବିଧା ନାହିଁ । ତେଣୁ ଆମେ ଟିକେ କମ୍ ରଖିଛୁ ।

## ବ୍ୟୟ ମଞ୍ଜୁରୀ ବିଲ୍ ଉପରେ ଆଲୋଚନା (20-3-1976)

ବ୍ୟୟ ମଞ୍ଜୁରୀ ବିଲ୍, ଯାହାକି ପୂର୍ବାହ୍ଣରେ ଉପସ୍ଥାପିତ କରାଯାଇଥିଲା ତା'ର ଆଲୋଚନାରେ ଉଭୟ ପକ୍ଷର 14 ଜଣ ମାନ୍ୟବର ସଭ୍ୟ ଭାଷଣ ଦେଇଛନ୍ତି । କେତେକ ମାନ୍ୟବର ସଭ୍ୟ ଏହାର ବିରୋଧ କରିଛନ୍ତି ଓ ଅନ୍ୟ କେତେକ ମାନ୍ୟବର ସଭ୍ୟ ଏହାକୁ ସ୍ୱାଗତ କରାଇଛନ୍ତି । ଯିଏ ଯେଉଁ ଦୃଷ୍ଟିକୋଣରୁ କରିଥାଉନା କାହିଁକି ମୂଳ ପ୍ରଶ୍ନଟି ହେଲା ମୌଳିକ ପ୍ରଶ୍ନ । ତାହା ଉପରେ ବିରୋଧୀ ଦଳର କଣ୍ଟାବାଞ୍ଜିର ମାନ୍ୟବର ସଭ୍ୟ ଯେ କି ବିରୋଧୀ ଦଳର ସାମୟିକ ନେତା ସେ ପ୍ରଥମେ ଭାଷଣ ଆରମ୍ଭ କରିଥିଲେ ଏବଂ ଅନ୍ୟାନ୍ୟ କେତେକ ମାନ୍ୟବର ସଭ୍ୟ ମଧ୍ୟ 20 ଦଫା କାର୍ଯ୍ୟକ୍ରମ ଉପରେ ବିଶେଷ ଜୋର ଦେବା ଦରକାର । ସେମାନଙ୍କ ମତରେ ଯେଉଁ 20 ଦଫା କାର୍ଯ୍ୟକ୍ରମ କରାଯାଉଛି କେବଳ ଏହା ପ୍ରଚାର ଉଦ୍ଦେଶ୍ୟରେ କରାଯାଉଛି । ବେହେରାମପୁର କଣ୍ଟାବାଞ୍ଜିର ମାନ୍ୟବର ସଭ୍ୟ କହିଲେ ଏ ବଜେଟ ଭାଷଣ ପ୍ରଚାର ଉଦ୍ଦେଶ୍ୟରେ କରାଯାଇଛି । ସେ କହିଲେ ଏହାର ଉଦ୍ଦେଶ୍ୟ ହେଲା ପ୍ରଚାର କରିବା ଏବଂ ଏଇଟା ଗୋଟିଏ Vote catching device ବୋଲି ସେ ଉପରୁ କହିଛନ୍ତି । ଉପାଧ୍ୟକ୍ଷ ମହୋଦୟ ମୁଁ ଏଥିବି କିଛି ବୁଝି ପାରୁନାହିଁ । ଏ ବର୍ଷର ବଜେଟ ହେଉଛି ଆସନ୍ତା ବର୍ଷ ବା 1976-77ରେ ଆୟବ୍ୟୟ ହିସାବ ସରକାରଙ୍କ ଘୋଷଣା ଏଥିରେ

ନିଷ୍ଟତ ଅଛି । କେଉଁ କେଉଁ ବାବଦରେ ଅର୍ଥ ବ୍ୟୟ ହେବ ସେସବୁ ମଧ୍ୟ ଏଥିରେ ସୁନିଶ୍ଚିତ ହୋଇଅଛି । ଏଇଟା କିପରି ଭାବରେ ଏକ ଦୁର୍ଗତ ପାଇଁ ହୋଇଛି ମୁଁ ବୁଝି ପାରୁନାହିଁ । ମାନ୍ୟବର ସଭ୍ୟ କେଉଁ ଦୃଷ୍ଟିରୁ ଏଇଟା ପ୍ରକାର ଉଦ୍ଦେଶ୍ୟରେ କହୁଛନ୍ତି ବୁଝା ଯାଉନାହିଁ । ସେ ଅନ୍ୟ ଯେଉଁ କଥା କହୁଥିଲେ ସେଥିରେ ସେ—କହୁଛନ୍ତି This is a Budget of charity. How it is a Budget of charity ମୁଁ ମଧ୍ୟ ବୁଝି ପାରୁନାହିଁ । ଏଥିରେ dolls ଦେବା କଥା ନାହିଁ । ଯେଉଁମାନେ ଯାହା ମାଗୁଥିଲେ ତାଙ୍କୁ ସେ ମୁକ୍ତ ହସ୍ତରେ ଦିଆଯାଉଛି ସେକଥା ମଧ୍ୟ ଏଥିରେ ନାହିଁ । ଏ ସେ ଟିଏ ଘୋଷଣା ଧାରାବାହିକ ଭାବେ ଚାଲି ଆସିଛି । ଆମେ ସେଥିପାଇଁ early plan କରୁଛୁ । ପଞ୍ଚବାର୍ଷିକ ଯୋଜନାର ଦ୍ୱିତୀୟ ବର୍ଷ ବିଷୟରେ ଆଲୋଚନା ଚାଲିଛି । ସେ ଅନୁସାରେ ବାର୍ଷିକ ଯୋଜନା କାର୍ଯ୍ୟକାରୀ କରୁଛୁ । ଏଥିରେ ୧୯୭୬-୭୭ ମସିହାପାଇଁ ବାର୍ଷିକ ଯୋଜନା କରାଯାଇଛି । ଏଥିରେ ୨୦ ଦଫା କାର୍ଯ୍ୟକ୍ରମ କଥା କିଛି ଉଲ୍ଲେଖ ନାହିଁ । ବିରୋଧୀ ଦଳରେ ବୋଧହୁଏ ମାନ୍ୟବର ସଭ୍ୟମାନେ ଭାବିଥିଲେ ଏ ୨୦ ଦଫା କାର୍ଯ୍ୟକ୍ରମ ଭିତରୁ ଯେଉଁ କେତେକ ଦଫା ରାଜ୍ୟ ସରକାର କାର୍ଯ୍ୟକାରୀ କରିବେ ସେଗୁଡ଼ିକ itemwise କରିବାପାଇଁ ସରକାର କ'ଣ କରୁଛନ୍ତି ବା କରିବାପାଇଁ ଯାଉଛନ୍ତି ତାର ଏକ ବିବରଣୀ ଦେବା ସମୀଚୀନ ହୋଇଥାନ୍ତା ବୋଲି ମାନ୍ୟବର ସଭ୍ୟମାନେ କହୁଛନ୍ତି । କିନ୍ତୁ ଏହାର କାରଣ କ'ଣ ମୁଁ ବୁଝି ପାରୁନାହିଁ । ଏଥିରେ ୨୦ ଦଫା କାର୍ଯ୍ୟକ୍ରମ କିଛି ନାହିଁ ।

ଆପଣ ଦେଖିବେ ୨୦ ଦଫା କାର୍ଯ୍ୟକ୍ରମ ଭିତରେ ଜମି ବଣ୍ଟନ, ଘରଡ଼ିହ ବଣ୍ଟନ, ଘର ତିଆରି କରି ଗରିବ ଲୋକଙ୍କୁ ଦେବା, Bonded labourଙ୍କୁ ମୁକ୍ତ ଦେବା, ଶିକ୍ଷା ବିଦ୍ୟାଳୟରେ ପୁସ୍ତକ ବ୍ୟାଙ୍କ ଅନୁଷ୍ଠାନମାନ ଖୋଲିବା, Stipend ବୃଦ୍ଧି କରିବା ଏହିସବୁ କଥା ସେଥିରେ ଉଲ୍ଲେଖ କରାଯାଇଛି । ଆପଣ ଜାଣନ୍ତି ଆଗ stipend ଯାହା ଥିଲା ତାର ପରିମାଣ ବଢ଼ିଛି ଓ ତା'ର ସଂଖ୍ୟା ମଧ୍ୟ ବଢ଼ିଛି । ଏକଥା ଉଲ୍ଲେଖ କରାଯାଉଛି । ତେଣୁ ୨୦ ଦଫା କାର୍ଯ୍ୟକ୍ରମପାଇଁ ଏଥିରେ କିଛି ନାହିଁ । ଏହା କହିବା ଠିକ ନୁହେଁ ।

ଅଧ୍ୟକ୍ଷ ମହୋଦୟ, ୨୦ ଦଫା ଅର୍ଥନୈତିକ କାର୍ଯ୍ୟକ୍ରମକୁ କାର୍ଯ୍ୟକାରୀ କରିବାପାଇଁ allotment ମଧ୍ୟ କରାଯାଇଛି । ଆପଣ ଜାଣିଥିବେ ଏଥିପାଇଁ ପ୍ରତ୍ୟେକ ବିଭାଗରେ କାମ ହେଉଛି, ଜମି ବଣ୍ଟନପାଇଁ, ଘରଡ଼ିହ ବଣ୍ଟନପାଇଁ ଇତ୍ୟାଦି ପ୍ରତ୍ୟେକ କାର୍ଯ୍ୟପାଇଁ ବାସ୍ତବ ବ୍ୟବସ୍ଥା ହୋଇଥାଏ । ସେ ଅନୁସାରେ Annual Budgetରେ ଅର୍ଥର ବ୍ୟବସ୍ଥା ହୋଇଛି । ସେଥିପାଇଁ ଏହାକୁ ଅଲଗା କରି ୨୦ ଦଫା ଅର୍ଥନୈତିକ କାର୍ଯ୍ୟକ୍ରମ କରାଯାଇଛି ବୋଲି କହିବା ଉଦ୍ଦେଶ୍ୟ କ'ଣ ? ଏଥିପାଇଁ ଅର୍ଥର ବ୍ୟବସ୍ଥା ହୋଇଛି ଏକଥା ସ୍ୱତନ୍ତ୍ର ବଜେଟରେ ଅର୍ଥର ବ୍ୟବସ୍ଥା ହୋଇଛି । ତେଣୁ ସେ ଏଥିପାଇଁ ଅର୍ଥର ବ୍ୟବସ୍ଥା ନ ହୋଇଛି

କହିବା ଠିକ୍ ନୁହେଁ । ଆପଣ ଜାଣିଥିବେ ଅମର ମିନିମମ୍ ୱେଜେସ୍ Agriculture labourer ପାଇଁ ଟଙ୍କା ସ୍ଥିର କରାଗଲା, ଏହା ଦ୍ୱାରା ପ୍ରକୃତରେ ଅଧିକ ସନ୍ତୋଷ ଲାଭ କରିବାର କିଛି ନାହିଁ । ଯେଉଁମାନେ ୨୫, ୩ ଟଙ୍କା କରି ପାଉଥିଲେ । ଯେଉଁ ସ୍ତ୍ରୀମଜୁରିଆମାନେ କମ୍ ମଜୁରି ପାଉଥିଲେ ତାଙ୍କୁ equalise କରି ପୁରୁଷଙ୍କ ମଜୁରି ସହିତ ସମାନ କରିଦିଆଗଲା, ସର୍ବଶେଷରେ ସ୍ଥିର କରାଗଲା Agriculture labourer ଦିନକୁ ଟଙ୍କା ଲେଖାଏ ପାଇବେ । ଏଇଟା ଯେ ଶେଷ କାନ୍ତି ହୋଇଛି ତା’ ନୁହେଁ, ଏହାପରେ ମଧ୍ୟ ଦରକାର ହେଲେ ଭବିଷ୍ୟତରେ ପୁଣି ବୃଦ୍ଧି ହେବ । ମାନ୍ୟବର ସଭ୍ୟମାନେ ଜାଣିଥିବେ ଏବେ ତାଙ୍କୁ କହିବା ଲାଗି ଅନ୍ୟ ଦିଗରେ ଗୋଟିଏ ସମାଲୋଚନା ଆରମ୍ଭ ହୋଇଗଲାଣି ଯେ ଧାନଦାମ କମିଯାଉଛି । କୃଷିଜାତ ଦ୍ରବ୍ୟ ଦର କମୁଛି, ଫର୍ଟିଲାଇଜର ଦର କମୁଥିଲେ ମଧ୍ୟ ଯେ ଦର ବଢ଼ି ବଢ଼ି ଯାଉଛି । ଯେ ଦର ବଢ଼ିବାରେ କୌଣସି କାରଣ ନାହିଁ, ମୁଁ ଗଳାଠାରୁ ହେଉଥିଲା ଏହାର ଦର ହ୍ରାସ କରାଯାଇଛି । ଅନ୍ୟ ଦିଗରେ ଏଗ୍ରିକଲଚରାଲ ଲେବରଙ୍କର ମିନିମମ୍ ୱେଜେସ୍ ଫିକ୍ସ୍ ହୋଇଯିବା ପରେ ଜମି ମାଲିକଙ୍କୁ ଏ ବାବଦରେ ଅଧିକ ଟଙ୍କା ଦେବାପାଇଁ ପଡ଼ୁଛି । ଏଣେ ଧାନର ମୂଲ୍ୟ ସରକାର ଏବେ କମେଇ ଦେଇଛନ୍ତି । ଏହିଭଳି ସମାଲୋଚନା ସବୁ ହେଉଛି ।

ଏ ଯେଉଁ Old Age Pension କଥା ସେ କାର୍ଯ୍ୟରେ ଆମେ ଅଫିସରଙ୍କ ଉପରେ ଛାଡ଼ି ଦେଇଛୁ ତା ନୁହେଁ, ଅଫିସରମାନେ ଯେଉଁକି ଚୋର କରୁଛନ୍ତି ଯେଉଁକାବେଳେ ସେମାନେ ଯେ ସବୁ ଦାୟିତ୍ୱ ନେଇ କରୁଛନ୍ତି ଏଇଟା ବୁଝିବା ଭୁଲ । ଏଇଟା ସମସ୍ତଙ୍କର କର୍ତ୍ତବ୍ୟ ଯେତେ ସାମାଜିକ ସଂସ୍ଥା ଅଛନ୍ତି, ଯେବା ସଂସ୍ଥା ଅଛନ୍ତି ଏହା ସେ ସମସ୍ତଙ୍କର କାର୍ଯ୍ୟ । ସେମାନଙ୍କର କାର୍ଯ୍ୟ ହେଉଛି ତାଲିକା ତିଆରି କରିବା ଓ ଏଥିପାଇଁ ଦରଖାସ୍ତ ସଂଗ୍ରହ କରିବା ଏବଂ ସେ ଦରଖାସ୍ତକୁ process କରିବା, ଏ କାର୍ଯ୍ୟ କେତେକ ସ୍ଥାନରେ ହୋଇଛି କିନ୍ତୁ ତାକୁ ପ୍ରୋତ୍ସାହିତ କରିବାପାଇଁ କେତେକ ସ୍ଥାନରେ ଡେରି ହେଉଛି । ଏଥିପାଇଁ ଯେଉଁ କଟକଣା ରଖା ଯାଇଛି ବା ସର୍ତ୍ତ ରଖାଯାଇଛି ସେ ବହୁତ ଟିକେ କଠିନ ହୋଇଛି, ଏ ଧାରଣା ଯାହା ମାନ୍ୟବର ସଭ୍ୟମାନଙ୍କର ଅଛି, ମୁଁ ସେଥିରେ ଏକମତ । ପ୍ରଥମରେ ଏହା କରାଯାଇ ଥିବାରୁ କେତେକ କଟକଣା ହୋଇଛି କିନ୍ତୁ ପରେ ପୁଣି ସେ ଧାରାକୁ ସରଳ କରି ଯେପରି ଅଧିକ ଲୋକଙ୍କ ପ୍ରତି ଲାଗୁ ହୋଇ ପାରିବ ତାହା ବ୍ୟବସ୍ଥା କରାଯିବ । ଯେଉଁମାନେ କିଛି ପାଉ ନଥିଲେ ବା ହାତ କାମ କରି ଜୀବନ କଟାଉଥିଲେ ତାଙ୍କପାଇଁ ମାସିକ ୨୦ ଟଙ୍କା ଦେବାକଥା ତ’କି ଗୋଟିଏ ହାସ୍ୟାସ୍ପଦ କଥା ? ମୁଁ ନିଜେ ଦେଖିଛି ସେ ଟଙ୍କା ଯେତେବେଳେ ଦିଆଗଲା ସେ ନିରାଶ୍ରୟ ଲୋକଙ୍କ ମନରେ ଯେଉଁ ଆଶା ସଞ୍ଚାର ହେଲା ସେଥିରେ ସେମାନେ ସନ୍ତୋଷଲାଭ କରିଛନ୍ତି ଯେଉଁମାନେ ଦିନକରେ ଓଳିଏ ଖାଉଥିଲେ

ଓଳିଏ ଉପାସ ରହୁଥିଲେ ହୁଏତ ଓଳିଏ ତ ଖାଇପାରିବେ । ଗତବର୍ଷ ବଜେଟ୍‌ରେ ଏ ପଡ଼ାନ୍ତରେ ଯେଉଁ ଟଙ୍କା ବ୍ୟବସ୍ଥା କରାଯାଇଥିଲା । ତାହା କାର୍ଯ୍ୟକାରୀ ହୋଇପାରି ନଥିଲା । ମୁଁ ଆଶା କରୁଛି ଆସନ୍ତା ବର୍ଷ ଏ ବାବଦରେ ଟଙ୍କା ନିଶ୍ଚିତ ଭାବରେ ଖର୍ଚ୍ଚ ହେବ ।

ଭାରତ ଏକ କୃଷିପ୍ରଧାନ ଦେଶ । ବିଶେଷ କରି ଓଡ଼ିଶା ଏକ କୃଷିପ୍ରଧାନ ରାଜ୍ୟ । କୃଷି ଅର୍ଥନୀତି ହେଉଛି ଏହାର ମୂଳ । ଏହାର ବିକାଶ ନହେଲେ, ଅର୍ଥନୀତି ଉନ୍ନତ ନହେଲେ ଆମର ଅନ୍ୟ ଦିଗରେ ଅର୍ଥନୈତିକ ଅବସ୍ଥା ଉନ୍ନତ କରିବାପାଇଁ *per capita* income ବଢ଼ାଇବା ପାଇଁ ଚେଷ୍ଟା କଲେ ମଧ୍ୟ ତାହା ହେବ ନାହିଁ । ଏ ଗର୍ଭ ଉନ୍ଧର ଅନୁଭୂତିରୁ ଜଣାଯାଉଛି ଯେଉଁ ରାଜ୍ୟରେ ଶତକଡ଼ା ୭୦ରୁ ୭୫ ଭାଗ ଲୋକ ଯେତେବେଳେ ଦାରିଦ୍ର୍ୟ ସୀମାରେଖା ତଳେ ରହୁଛନ୍ତି ସେମାନଙ୍କର ଯଦି ଉନ୍ନତି ନ ହୁଏ, ତା’ହେଲେ ଅର୍ଥନୈତିକ ଦୃଷ୍ଟିରୁ କିଛି ଉନ୍ନତି ହେବ ନାହିଁ । ରାଉରକେଲା ଭଳି ୩/୪ଟି କାରଖାନା ଏଠି ବସାଇଦେଲେ ମଧ୍ୟ ଆମର ଆର୍ଥିକ ମାନଦଣ୍ଡ ବୃଦ୍ଧି ହେବନାହିଁ । ଆମର ହାରାହାରି ମୁଣ୍ଡପିଛା ଆୟ ବୃଦ୍ଧି ହେଉ ନାହିଁ । ସେଥିପାଇଁ ଆସନ୍ତା ବର୍ଷ ଯୋଜନାରେ priority sectorରେ କୃଷି ସମବାୟ, ଜଳସେଚନ ଏବଂ ବିଦ୍ୟୁତ୍‌ଶକ୍ତି ଉତ୍ପାଦନକୁ ମୁଖ୍ୟ ସ୍ଥାନ ଦିଆଯାଇଛି । ମାନ୍ୟବର ସଭ୍ୟମାନେ କହୁଛନ୍ତି ଶିଳ୍ପ କ୍ଷେତ୍ରରେ ଅଭିବୃଦ୍ଧି ହୋଇ ପାରିନାହିଁ । ଅନ୍ୟାନ୍ୟ କ୍ଷେତ୍ରରେ ଅଭିବୃଦ୍ଧି ହୋଇ ପାରୁନାହିଁ । ମୁଁ ମାନୁଛି । ଏ ଯେଉଁ disease rootରେ ଦେଖା ଦେଉଛି ତାକୁ ଦୂର ନ କଲେ ଅର୍ଥାତ୍ ୭୫ ଭାଗ ଲୋକଙ୍କର ଆର୍ଥିକ ମାନଦଣ୍ଡ ଅଭିବୃଦ୍ଧି ନହେଲେ, ସେମାନଙ୍କର ଆର୍ଥିକ ଉନ୍ନତି ନହେଲେ କିଛି ହେବ ନାହିଁ । ଆମେ ଯାହା local industries କରିବାକୁ ଯାଉଛୁ ଅଭିଜ୍ଞତାରୁ ଯାହା ଦେଖାଯାଇଛି ଯେଉଁ small scale industries କରାଯାଉଛି ସେଥିପାଇଁ ବାହାରୁ suitable କଞ୍ଚାମାଲ ଆଣିବାପାଇଁ ପଡ଼ୁଛି । ତା ସତ୍ତ୍ୱେ small scale industries ତିଷ୍ଠିପାରୁ ନାହିଁ । ୩/୪ ବର୍ଷ ଭିତରେ ସେଇଟା ମହଲା ଯିବାର ଦେଖାଯାଉଛି । ଅଭିଜ୍ଞତାରୁ ଆମେ ଦେଖୁଛୁ ଆମର ଯେଉଁ କ୍ଷୁଦ୍ର ଶିଳ୍ପ ହେଉଛି ସେଥିପାଇଁ ବାହାରେ ବହୁତ ବହୁତ କଞ୍ଚା ମାଲ ଆଣିବାକୁ ପଡୁଛି ଏବଂ କ୍ଷୁଦ୍ର ଶିଳ୍ପଗୁଡ଼ିକ ତିଷ୍ଠି ପାରୁନାହିଁ । ୩ ବା ୪ ବର୍ଷ ଭିତରେ ଅନେକ ମହଲା ଯିବାର କାରଣ ହେଉଛି ସ୍ଥାନୀୟ ବଜାରରେ ଅଭାବ । ଏଣେ ବାହାରରୁ କଞ୍ଚାମାଲ ଆଣି ଉତ୍ପାଦନ କରିବାକୁ ପଡୁଛି । ବାହାର ବଜାର ସହିତ ପ୍ରତିଦ୍ୱନ୍ଦ୍ୱିତା କରିପାରୁନାହିଁ । ସେଥିପାଇଁ ଯେତେବେଳେ ଯାହା କହିଲେ ମଧ୍ୟ ଆମର ଯେଉଁ ଭୁଲ ରହିଲେ ପ୍ରଥମ ଯୋଜନା କାଳରେ ଏହି sectorର ଉନ୍ନତି ପାଇଁ ଆମେ ଯଦି ଚେଷ୍ଟା କରିଥାଆନ୍ତୁ, ତାହାହେଲେ ଆମର ଯାହା ସମ୍ବଳ ଅଛି ତା’ର ସମ୍ପୂର୍ଣ୍ଣ ରୂପେ ବ୍ୟବହାର କରିପାରି ଥାଆନ୍ତୁ । ବିଭିନ୍ନ ଯୋଜନା

କରେ । ଆଜି ଝାମର ଏପରି ଅବସ୍ଥା ହୋଇ ନଥାନ୍ତା । ସେଥିପାଇଁ ଆଜି ଗୁରୁତ୍ୱ ଦିଆଯାଉଛି 4ଟି ବିଭାଗ ଉପରେ । କଣ୍ଟାବାଞ୍ଜି ମାନ୍ୟବର ସଭ୍ୟ କହିଲେ ଗାଁ ସବୁ ଆଲୋକିତ କରିଯାଉଛି । ଏହା ସ୍ୱାଭାବିକ ଯେ ଜନକଣ ଆମ ଗ୍ରାମ୍ୟ ବିଦ୍ୟୁତିକରଣ କରୁଛୁ କେବଳ ଲୋକଙ୍କୁ ଆଲୋକ ଯୋଗାଇବା ପାଇଁ । ମାନ୍ୟବର ସଭ୍ୟଙ୍କ ମନେଥିବ ଆମ ଚତୁର୍ଥ ଯୋଜନାରେ ଥିଲୁ, ସେତେବେଳେ ଦରକାର ବଢ଼ି ଏ ଉପରେ ଥିଲେ । ସେମାନେ କହୁଥିଲେ କୌଣସି ଗ୍ରାମକୁ ବିଦ୍ୟୁତଶକ୍ତି ଯୋଗାଇବା ପୂର୍ବରୁ କେତେ lift point ବ୍ୟବହାର କରିବ, କେତେ କୁଟୀର ଶିଳ୍ପରେ ବ୍ୟବହାର କରିବ । ତା'ର ହିସାବ ନ ରହିଲେ କୌଣସି ଗ୍ରାମକୁ ଆମ ବିଦ୍ୟୁତ ଶକ୍ତି ଦେବୁ ନାହିଁ । ଆନ୍ଧ୍ର ଓ ଅନ୍ୟାନ୍ୟ ପ୍ରଦେଶର ଉଦାହରଣ ଦେଇ କୁହାଯାଉଥିଲା, ସେମାନେ ଯେଉଁ ଗ୍ରାମ୍ୟ ବିଦ୍ୟୁତିକରଣ କରିଛନ୍ତି ଏବଂ କୌଣସି Pre-condition ଉପରେ ନିର୍ଭର ନକରି ଠିକ୍ ବିଦ୍ୟୁତ୍‌ଶକ୍ତି ଦେଇଛନ୍ତି, ଲୋକେ ବିଦ୍ୟୁତଶକ୍ତି ପାଇବାପରେ ଠିକ୍ କରିବେ କେତେ ପରିମାଣ ସେମାନେ ନେବେ ଏବଂ ଅନ୍ୟ କୌଣସି କାର୍ଯ୍ୟରେ ତା'କୁ ବ୍ୟବହାର କରିବେ । ମୋର ଦୃଢ଼ ଧାରଣା ପ୍ରଥମ ବର୍ଷ ସେ କଥା ହୋଇ ନ ପାରେ କିନ୍ତୁ 5 ବର୍ଷ ଭିତରେ ସେମାନଙ୍କ ଭିତରରୁ କୃଷି ବା ଶିଳ୍ପପାଇଁ ନିଶ୍ଚୟ ଲୋକ ବାହାରିବେ । ତା'ର ନିଶ୍ଚିତ ବନ୍ଦୋବସ୍ତ ହେବ ଏଥିରେ ସନ୍ଦେହ ନାହିଁ । ହୁଏତ ମାନ୍ୟବର ସଭ୍ୟ କହିପାରନ୍ତି ଯେଉଁ ହାରରେ ଗ୍ରାମ୍ୟ ବିଦ୍ୟୁତ କରଣ ହେଉଛି ବହୁ ବର୍ଷ ଲାଗିଯିବ । କ୍ଷେତ୍ରଅନୁସାରେ ରାଜ୍ୟ ସହାଳ ଆମଠାରୁ ବହୁତ ଛୋଟ ସେମାନେ ସବୁ ଗ୍ରାମ୍ୟ ବିଦ୍ୟୁତ କରଣ କରି ଦେଲେଣି । ଆମର ଷଷ୍ଠ ବର୍ଷରେ ଯେତେ ଗ୍ରାମ ବିଦ୍ୟୁତକରଣପାଇଁ ନେବା ହୁଏତ ତାଙ୍କର ସମ୍ପୂର୍ଣ୍ଣ ରାଜ୍ୟରେ ସେତିକି ଗ୍ରାମଥିବ । କିନ୍ତୁ ଆମର ଏହି କାର୍ଯ୍ୟକୁ ତ୍ୱରାନ୍ୱିତ କରିବାପାଇଁ ଉଦ୍ୟମ ହେଉଛି । ଏଠାରେ ଷଷ୍ଠ Emphasis କଥା କହିବି What is the emphasis here. On What the emphasis. ଏଠାରେ ଜୋର ଦିଆଯାଇଛି ଯେଉଁମାନେ ସମାଜର ତଳ ଅଂଶରେ ଯାହାଙ୍କୁ ଆମେ କହୁଛୁ କ୍ଷୁଦ୍ର କୃଷୀ, ନାମମାତ୍ର କୃଷୀ ବା ମଧ୍ୟମ କୃଷୀ ସେମାନଙ୍କର ଅବସ୍ଥାରେ ଉନ୍ନତି କରିବାପାଇଁ ଜଳସେଚନର ବ୍ୟବସ୍ଥା କରିବା । ହୁଏତ ବଡ଼ ବଡ଼ ଜଳସେଚନ ଯୋଜନା କରିବା ଦ୍ୱାରା ବହୁତ ବର୍ଷ ବିତି ଯାଉଛି । ଏତେ ବର୍ଷ ପର୍ଯ୍ୟନ୍ତ ଅପେକ୍ଷା ନ କରି ଛୋଟ ଛୋଟ ଯୋଜନାଦ୍ୱାରା ଜଳ ଯୋଗାଇ ଦେବା ଚେଷ୍ଟା ହେଉଛି । Emphasis ହେଉଛି to help them to increase their income. ଏହି ଦୃଷ୍ଟିରୁ ବିଭିନ୍ନ ବିଭାଗରେ ଟଙ୍କା ଯାହା allotment ହେଉଛି । ଜଣେ ସଭ୍ୟ କହିଲେ 5 ଏକର ଦେଲେ ମଧ୍ୟ economic holding ହୋଇପାରୁ ନାହିଁ । ଏ ସମ୍ପର୍କରେ ଷଷ୍ଠ ଯୋଜନା-

ହୋଇଯାଇଛି ଏଣ 3 ଏକର ଜମିପାଇଁ ଜଳସେଚନର ସୁବିଧା ହେଲେ, it beccmes a viable economic unit, ଜଣେ ସାଧାରଣ ଭାବରେ ଜୀବନ ଯାପନ କରିବାପାଇଁ ଜଳସେଚନର ସୁବିଧା ରହିଲେ ଯଥେଷ୍ଟ ହେବ । କିନ୍ତୁ ଆମ ଯାହା ଜମି ଦେଉଛୁ ସେଥିକି ଜମି ଉପରେ କେବଳ ନିର୍ଭର କରିବେ ନାହିଁ, ଅନ୍ୟାନ୍ୟ କାର୍ଯ୍ୟ ମଧ୍ୟ କରୁ କରିବେ । ମୁଖ୍ୟମନ୍ତ୍ରୀ କହୁ ଥାଇଛନ୍ତି integrated scheme ଯାହା ଉପରେ ଆଜ ସମାଲୋଚନା ହୋଇଥିଲା, ସେଥିରେ କମ ଜମି ଦିଆଯାଉଛି ତା'ର କହିବାର ଅନ୍ୟ କିଛି ପନ୍ଥା ନାହିଁ । ଏହି integrated scheme ର ତାକୁ କିଛି ଛେଳି ବା ଗାଈ କମ୍ପା କୁକୁଡା ପାଳନ ପାଇଁ ସୁବିଧା ଦିଆଯିବ । ଏଥିପାଇଁ ଉଦ୍ୟମ ହେଉଛି, ଯେଉଁ ଲୋକ କମ୍ ଜମି ପାଉଛି ଅନ୍ୟ ବାଟରେ ତା'ର income କାପର supplement ହେବ ବ୍ୟବସ୍ଥା ହେଉଛି । 20 ଦଫାର ଜେତେକି କାର୍ଯ୍ୟକ୍ରମ ମୁଁ ଆଗରୁ କହି ସାରିଛି ।

ଏବଂ ମାନ୍ୟବର ସଭ୍ୟ କହୁଛନ୍ତି Public sector ଉପରେ ଅଧିକ ଧ୍ୟାନ ଦିଆଯାଉ ନାହିଁ । ଏବଂ ମଧ୍ୟ private sector କୁ ବୃଦ୍ଧି ଦିଆଯାଉଛି । ବଜେଟର ଯାହା ହୋଇଛି ସେମାନଙ୍କୁ ବହୁତ ସାହାଯ୍ୟ କରିବ । ଅଥଚ କେନ୍ଦ୍ରରେ କେନ୍ଦ୍ର ବଜେଟ ଉପରେ ପାର୍ଲିାମେଣ୍ଟର ଯାହା ଆଲୋଚନା ହୋଇଛି ସେଥିରୁ ମାନ୍ୟବର ସଭ୍ୟମାନେ ଜାଣିପାରୁଥିବେ ସବୁକଥା । ଗାନ୍ଧିଏ ବର୍ଷ ଉଦ୍ୟୋଗ ଦେବା-ହାର ଯେଉଁମାନେ କେବଳ ଦେଶରେ ପୁଞ୍ଜିପତି, ଏକଚେଟିଆ ବ୍ୟବସାୟୀ ଅଛନ୍ତି ତାଙ୍କୁ ସାହାଯ୍ୟ କରାଯାଉଛି ଏବଂ ତାଙ୍କର ପୁଞ୍ଜି ବଢାଇବାପାଇଁ ଏହା କରାଯାଉଛି, ସେପରି ଭାବିବା ଠିକ୍ ନୁହେଁ । ଟିକସ ହାର କମାଇବାଦ୍ୱାରା କଲେକ୍‌ସନ ଅଧିକ ହେବ, ଏହି ଲକ୍ଷ୍ୟ ରହୁଛି । 90 ପରସେଣ୍ଟ ଟିକସ ଦେଲେ ବହୁତ ଲୋକ ସୁଯୋଗ ଖୋଜିବେ evade କରିବାପାଇଁ ତାକୁ ଯଦି 75 ପରସେଣ୍ଟ କରାଯାଏ ଆଗରୁ ଯେପରି evade କରୁଥିଲେ, ତାହା କରିନ ପାରନ୍ତି । ସେମାନେ ଏହି 75 ପରସେଣ୍ଟ ଦେବାକୁ ଆଗଭର ହେବେ ଏବଂ income tax, wealth tax ଯାହା ସବୁ ପାର୍ଲିାମେଣ୍ଟର ଆଲୋଚନା ହୋଇଥାଉଛି ସେଥିରେ ଅଧିକ ଦୃଷ୍ଟି ନ ଦେଇ ଯେଉଁଥା ଅଧିକ ଆଦାୟ ହେଉଛି ସେଥିପ୍ରତି ଅଧିକ ଦୃଷ୍ଟି ଦିଆଯାଇଛି । ଉଦ୍ଦେଶ୍ୟ maximum collection from those rich person ହୋଇ ପାରିବ । This is one school of thought. We may not agree. ଅନ୍ୟ ବାଟରେ କୁହାଯାଇଛି ଆମେ ଗରିବ ଉଦ୍ୟମକାରୀମାନଙ୍କୁ ସୁଯୋଗ ଦେଉଛୁ । ଗତ କେତେ ବର୍ଷ ଧରି ଆମର ଯେଉଁ ସବୁ ଶିଳ୍ପ ଖୋଲିବା କଥା ? I.D.C., I.D.C.O.L., Co-operative ସଂସ୍ଥା ଛଡ଼ାଇ ସେମାନେ

ଏଥିରେ ଅଂଶ ଗ୍ରହଣ କରି ଶିଳ୍ପମାନ ପ୍ରତିଷ୍ଠା କରିଛନ୍ତି । ଆମର ପଲିସି ହେଲା Public undertaking, Public sectorରେ industry encourage କରିବା ଓ ତାହା କପର ଅଧିକରୁ ଅଧିକ ହେବ ତାକୁ ଦେଖିବା । ମାନ୍ୟବର ଏଉପମାର ସଭ୍ୟ ଜାଣନ୍ତି ଆମକୁ କପର Economic restrained ଭିତରେ ଗତି କରିବାକୁ ପଡ଼ୁଛି । ଆମର ଯଦିଓ ସଦ୍‌ଇଚ୍ଛା ଥିଲେ ମଧ୍ୟ ସେ ଢଗରେ ସୁବୃହତ୍ କାର୍ଯ୍ୟକାରୀ କରିବା ସୁବିଧା ହେଉନାହିଁ । ଏଣୁ private ଲୋକେ ଯେଉଁମାନେ Industry କରି ଏମାନେ ବାହାର ଲୋକ ହୁଅନ୍ତୁ ବା ଓଡ଼ିଶାର ଲୋକ Industry କଲେ they will come under the influence of the Corporation. They will bring politics. ଏ ଧାରଣା ଆମର ହେଉନାହିଁ, ଆମେ ସେଥିପାଇଁ ସଜାଗ ଅଛୁ । ଯେଉଁ ଦାଗରେ ସ୍ୱଜନତ ଆସି ପଡ଼ିବ ସେଥିପାଇଁ ସଜାଗ ଅଛୁ । (Voice ଜୟପ୍ରକାଶଙ୍କୁ ଧରିଲେ), ବାଚସ୍ପତି ମହାଶୟ, ଏତ ଅଲଗା କଥା । ଜୟପ୍ରକାଶଙ୍କୁ ଏବ ପାରିଲେ, ଅନ୍ୟମାନଙ୍କୁ ଧରିପାରନ୍ତି ନାହିଁ । ଏ ପ୍ରଶ୍ନ ଉଠୁନାହିଁ । ଜୟପ୍ରକାଶ ଯେଉଁଠ ପ୍ରେରଣା ପାଉଥିଲେ ତାକୁ ଧରନ୍ତୁ ।

ଆଉ ଗୋଟିଏ କଥା, ଧର୍ମଶାଳାର ମାନ୍ୟବର ସଭ୍ୟ ଉଠାଇଛନ୍ତି । ସେ ବେଶି stress ଦେଇଛନ୍ତି rule of lawକୁ । The entire administration today stands under rules of law. ଆପଣ Judiciary ଦେଖନ୍ତୁ । Executive ଦେଖନ୍ତୁ, ଆମେ ଅନେକ ସମୟରେ ଅନୁଭବ କରୁଛୁ ଯେ ନିୟମ ଭିତରେ ଗତି କରିବାକୁ ପଡ଼ୁଛି । ଆମେ ଯାହାଇଚ୍ଛା କରିଦେଲୁ । ଗୋଟିଏ କଲମ ଗାରରେ ସବୁ ହୋଇଯିବ ଏହା ସମ୍ଭବ ନୁହେଁ । We are giving such regard to rule of law. ମୁଁ କହିଦେବାକୁ ଗୁହେଁ rule of law from the basis of administration. It is rather the core of administration. Even today ଆମେ ତାକୁ ଯଥେଷ୍ଟ ଦୃଷ୍ଟି ନଦେଇ rules of personsକୁ ଅଧିକା ଦୃଷ୍ଟି ଦେଉଛୁ ଏହା କହିବା ସମୀଚୀନ ହେଉନାହିଁ । ଅନେକ ସମୟରେ କୁହାଯାଉଛି, we are bound down by rules and regulation. ଯେଣୁ ଏ କାମ କରିବା, ସେ କାମ କରିବା ବୋଲି କହୁଛନ୍ତି ତେବେ it goes against the Act. ତେଣୁ ଆମେ କରିପାରୁ ନାହିଁ । I am not telling this to any body. I am informing the Honourable

House that if there is a feeling that we are not following the rule of law, it is not a correct feeling.

ମାନ୍ୟବର ଏରସମାର ସଭ୍ୟ people's involvement କଥା ଉଠାଇଛନ୍ତି । ମୁଁ ମାନ୍ୟବର ସଭ୍ୟଙ୍କୁ କହିଦେବାକୁ ଚାହେଁ ଯେ ଆମର review committee ହୋଇଛି । Department Minister ମାନେ ଅଛନ୍ତି । ପ୍ରତ୍ୟେକ M. L. A. ରହିଛନ୍ତି । 20-Point Programme କାର୍ଯ୍ୟକାରିତା ଦେଖିବାପାଇଁ । Review Committee ଜିଲ୍ଲା ସ୍ତରରେ ବର୍ତ୍ତମାନ ଗଠିତ ହେବାକୁଯାଉଛି । ସେଥିରେ M. L. A. ଓ M. P. ମାନେ ରହିବେ । M. L. A., M. P. ମାନେ 20-Point Programme ବିଷୟ ସମ୍ବନ୍ଧରେ ଆଲୋଚନା ମାଧ୍ୟମରେ ଜାଣିଛନ୍ତି । ସେମାନେ ନିଜ ନିଜ ଅଞ୍ଚଳକୁ ଗଲେ, କେଉଁ କେଉଁ point ସେଠି ଅଞ୍ଚଳରେ କାମ କରିହେବ । ତାହା କାର୍ଯ୍ୟକାରୀ କରିବାପାଇଁ ପରାମର୍ଶ ଦେବେ । ତା'ପରେ ଯେଉଁ ଜମି ଖାଲି ଗରିବ ଲୋକ ଅଛି ତାକୁ ଜମି ଦେବା, ଯାହାର ଘର ତିଆରି ନାହିଁ ତାକୁ ଘରତିଆରି ଦେବା ଏହି ଲକ୍ଷ୍ୟ ସାଧନ କରିବାପାଇଁ ଆମର M. L. A. ମାନେ ସେଥିରେ ଭାଗ ନେବେ । ସେମାନେ ଦେଖିବେ କେଉଁମାନେ ପ୍ରକୃତରେ ଗୃହହୀନ ଲୋକ ଅଛନ୍ତି । ବହୁତ ଗୃହହୀନ ଲୋକ ଆସିପାରନ୍ତି । କିନ୍ତୁ ଯେଉଁମାନେ ନିହାତି ଗରିବ ଲୋକ ତାଙ୍କୁ ଆମେ Preference ଦେବା । ସେହି ଦୃଷ୍ଟିରୁ ତାଲିକା କରିବା । ସେଥିପାଇଁ ମୁଁ ଆଗରୁ ଯେପରି କହିଲି 20-Point Programme implement କରିବାପାଇଁ People's involmentର ବ୍ୟବସ୍ଥା ଆମେ କରୁଛୁ । ଆମେ M. L. A. ଓ M. P. ମାନଙ୍କୁ 20-Point Programme literature ଦେଉଛୁ । ଆମର ଜିଲ୍ଲା ସ୍ତରୀୟ କମିଟି ଗଠିତ ହୋଇ ଯାଇବାପରେ ଅଧିକରୁ ଅଧିକ ସେମାନେ ଏ କାର୍ଯ୍ୟରେ involve ହୋଇ ପାରିବେ । ମାନ୍ୟବର ଏରସମାର ସଭ୍ୟ people's involment ଉପରେ ବିଶେଷ ଜୋର ଦେଇଛନ୍ତି । ମୁଁ ଏ ଗୃହରେ କହୁଛି People's involvement ପ୍ରତ୍ୟେକ ସ୍ତରରେ ଆଣିବାପାଇଁ ଓ ଲୋକଙ୍କ ଭିତରେ ଉତ୍ସାହ ସୃଷ୍ଟି କରିବାପାଇଁ ବ୍ୟବସ୍ଥା କରୁଛୁ । ମାନ୍ୟବର ସଭ୍ୟ ଜାଣିଥିବେ ଆମର R. 1. Level Committee, District Level Committee, ତା' ସଙ୍ଗେ ସଙ୍ଗେ State Level Committee ଇତ୍ୟାଦି ହେଉଛି । ଏହି ଅଲଟମେଣ୍ଟ ଭିତରେ ଯେଉଁ R. I., କମିଟି ହୋଇଛି ସେଥି ଦପ୍ତରେ ସମାଲୋଚନା ହୋଇଛି ଯେ R. I., କମିଟିର ଯେଉଁମାନେ ଭୂ-ସଂସ୍କାର ସହିତ ଏକମତ ହୋଇନାହାନ୍ତି ଭୂ-ସଂସ୍କାରର ବିରୋଧ

ସେମାନେ R. I., Committeeରେ ରହିଯାଇଛନ୍ତି । ବିଭାଗୀୟ ମନ୍ତ୍ରୀଙ୍କଠାରୁ ଜାଣିବାକୁ ଚାହୁଁଛି କାରଣ ମୁଁ ଜାଣିପାରୁଛି ଯେ ଜାଗା ସ୍ତରରେ ତ୍ରୋରେ 3 ଜଣିଆ କମିଟି ହେବ, ସେମାନେ ଦେଖିବେ R. I., Level Committeeରେ କଣ ରହିବା ଠିକ୍ ହେବ, କଣ ରହିବା ଠିକ ହେବନାହିଁ ।

ଏଥିରେ Official ଓ Non-Official ଉଭୟ ରହିବେ । It is an Official Committee consisting of non-official members.

Political instablity ବିଷୟରେ ମାନ୍ୟବର ସଭ୍ୟ ଯାହା କହୁଛନ୍ତି ଏହାହିଁ ଗୋଟିଏ ବଡ ଗୁରୁତ୍ୱପୂର୍ଣ୍ଣ କଥା । ଏଥିପାଇଁ ରାଜ୍ୟର ଉନ୍ନତି ହୋଇ ପାରୁନାହିଁ । ବିରୋଧିଦଳ ମାନ୍ୟବର ସଦସ୍ୟମାନେ ବାରମ୍ବାର ଏ ପ୍ରଶ୍ନ ଉଠାଉଛନ୍ତି । ମୁଁ ସେମାନଙ୍କ ସମ୍ବନ୍ଧରେ ସେମାନେ ଯେତେବେଳେ ଶାସନକାଳରେ ଥିଲେ ସେମାନେ କିପରି ଶାସନ ଚଳାଉଥିଲେ, କିପରି unstable ବାତାବରଣରେ ଶାସନ ଚାଲିଥିଲା ସେଥିପାଇଁ ଏ ରାଜ୍ୟର ଉନ୍ନତି ହୋଇ ପାରୁନାହିଁ । ମୁଁ ସେମାନଙ୍କୁ ଚେତାଇ ଦେବାକୁ ଚାହେଁ what is the duty of the opposition ? The duty is to offer constructive criticism but not to cut at the root of the Government. ଆପଣ ଦେଖିବେ କେରଳରେ ବହୁତ ଦିନ ହେଲା Government ଚାଲିଲାଣି ଓ Stable ହୋଇଛି, ଯେଉଁମାନେ ଭାବୁଥିଲେ ସେ Government ଚାଲିପାରିବ ନାହିଁ ତାହା ଭୁଲ ପ୍ରମାଣିତ ହୋଇଛି ଏବଂ ସମ୍ଭବ ହୋଇଛି । କାରଣ they have taken people into confidence. ତେଣୁ ସେ ସରକାର stable ହୋଇ ରହିଲା । ତେଣୁ ମୁଁ କହିଦେବାକୁ ଚାହେଁ People's Committee କେବଳ land reform ପାଇଁ ନୁହେଁ ବରଂ ବିଭିନ୍ନ କାର୍ଯ୍ୟପାଇଁ ଏହି ବିଭିନ୍ନ committee ଜରିଆରେ ଲୋକଙ୍କର ସହଯୋଗ ପାଇବା ଆମର ଉଦ୍ଦେଶ୍ୟ । ତାହାହେଲେ ଆମର କାର୍ଯ୍ୟ ସଫଳ ହୋଇ ପାରିବ । ଆମର ଲକ୍ଷ୍ୟ ସାଧିତ ହେବ ଏ କମିଟି ଗଠନର ଲକ୍ଷ୍ୟ ସାଧିତ ହେଲେ ବୋଲି ଆମେ ଅନୁଭବ କରିବା । ଏହି କମିଟି ୨୦ ଦଫା କାର୍ଯ୍ୟକ୍ରମ implementation କରିବାରେ ସହାୟକ ହେବ ।

Loan collection ସମ୍ପର୍କରେ ମାନ୍ୟବର ସଭ୍ୟମାନେ ଅଭିଯୋଗ କରିଛନ୍ତି । ଏ ସମ୍ପର୍କରେ ଆସନ୍ତା କାଲି ଷ୍ଟେଟ ମୂଳରେ in detail ଆଲୋଚନା ହେବ ଓ ମାନ୍ୟବର ବିଭାଗୀୟ ମନ୍ତ୍ରୀ ତା'ର ଉତ୍ତର ଦେବେ । ମୁଁ ମାନ୍ୟବର ସଭ୍ୟମାନଙ୍କୁ କହିଦିଏ ଆମର Principle of Dancupat ହେଉଛି ଆମର capital ଯାହା ତା'ଠାରୁ

interest କୌଣସିମତେ ଅଧିକ ହେବ ନାହିଁ । Money capital ଶହ hundred ହେଲେ interest, penal interest ସବୁ ମିଶି hundred Rupees ପର୍ଯ୍ୟନ୍ତ ହେବନ calculation ହେବ, this is the Principle of Dandupat law, ତା'ପରେ L. I. ଓ A. L. Loan ପାଇଁ Dandupat ଅଛନ ରହୁଛି । The principle of Dandupat law ହେଉଛି the interest cannot exceed the capital. Now this is not applicable to Co-operatives here is an order of Government.

ଦେଖିଲେ ଆମର about 47% rise ହୋଇଛି । ଆସାମ 20%, ବିହାର28%, West-Bengal 36%, ମଧ୍ୟପ୍ରଦେଶ 26·5%, ଗୁଜୁରାଟ 11% ଏ ହେଉଛି rise in those States so far as the Plan money is concerned for 1976-77 ଏହାଛଡ଼ା କେରଳର ହେଉଛି 23·34%, ପଞ୍ଜାବ 34·36%, ରାଜସ୍ଥାନ 28·56%, ତାମିଲନାଡୁ 23·77%, ମହାରାଷ୍ଟ୍ର 31·12%, Only Jammu & Kashmir got 46·29%.

ମାନ୍ୟବର ସଭ୍ୟମାନେ ଦେଖିଲେ ଯେ ଆଜିର price fall କରିଛି, Agricultural price ଖସିଯାଇଛି । Industrial goods ଯାହା ସବୁ ଅଛି କମ୍ ହୋଇଛି ତାହା ମଧ୍ୟ ଦେଖିବ ଦ୍ରବ୍ୟ ମୁଁ ଆପଣଙ୍କୁ ଦେବ । Food articles and manufactured goodsର 1970-71 index of wholesale price ମୁଁ ଉଦ୍ଧୃତ କରୁଛି । Index of wholesale price 1970-71 for food articles 204, Manufactured articles 155, 1974-75ରେ food article ହେଲା 364 ଏବଂ manufactured goodsରେ rise ହେଲା from 150 to 250 ଅର୍ଥାତ୍ food articleରେ 78·43 rise ହେଲା ଏବଂ manufactured articleରେ 64.51 rise ହେଲା । 1975-76ର monthly averageରେ food article 364ରୁ 359କୁ ଖସିଲା manufactured goods 255ରୁ 253କୁ ଖସିଲା ଏ ହିସାବ ଦେବାର କାରଣ ହେଉଛି rise ଯେଉଁଭଳି stiff ହୋଇଥିଲା fall ମଧ୍ୟ ସେହିଭଳି ହୋଇଛି ।

ସରକାର ଧାନର support price fixକରିଥିଲେ । କିନ୍ତୁ ପୂର୍ବ ବର୍ଷଠାରେ ଦର ବହୁଗୁଣ ବଢ଼ାଇ ବନ୍ଦ କରିଥିଲେ ଯାହାକୁ ଆମେ ଅପତ୍ତିଜନକ ବୋଲି ମନେ କରିଥିଲୁ । ସେତେବେଳେ cent per cent rise food articles ହୋଇଥିଲା । ତେଣୁ ଏ ବର୍ଷ fall ହୋଇଛି ଏହା ଆମ support priceକୁ ଆସିଲେ ମଧ୍ୟ ଗତବର୍ଷ ଯେଉଁମାନେ ବହୁତ profit ପାଇଥିଲେ ଆଜ ସେମାନେ କହୁଛନ୍ତି କଛି ଲାଭ ହେଉନାହିଁ । ସେମାନେ ବହୁଗୁଣ ଲାଭ ପାଉଥିଲେ ଏ ଲାଭ ତାଙ୍କୁ ଲାଭଜନକ ଲାଗୁନାହିଁ, ତେଣୁ ଦର supportpriceକୁ କମି ଆସିଲେ ମଧ୍ୟ ସେମାନେ କହୁଛନ୍ତି price fall ହେଲା, 140, 74କୁ ଆସିଲା ତେଣୁ ନିଶ୍ଚିତ ଭାବରେ price fall ହୋଇଛି । Distress sale କଥା ଏ ଗୃହରେ ଆଲୋଚନା ହୋଇଥିଲା । Last time ମୁଁ କହିଥିଲି ଗଭର୍ଣ୍ଣମେଣ୍ଟ assurance ଦେଉଛନ୍ତି । ଯେଉଁଠାରେ distress sale ହେଉଛି ସେ କଲେକ୍ଟରମାନଙ୍କୁ କୁହାଯାଉଛି to rush to the spots and make the purchase, ହୁଲର କଥା କୁହାଯାଉଛି । ହୁଲରର support price ନାହିଁ । Except the two varieties, handpounded and huller, ଅନ୍ୟ ଭେରାଇଟି ପାଇଁ ନାହିଁ । ହାଟରେ, ବଜାରରେ ଯେଉଁ ହୁଲର ମିଳୁଛି ତାକୁ ଆମେ ଛାଡ଼ି ଦେଇଛୁ for consumers purchase ଯୋଗାଣ ବିଭାଗ ଧାନ ସଂଗ୍ରହ କରନ୍ତି ମିଲ୍‌ଓ୍ୱାରମାନଙ୍କର consumption ପାଇଁ ରଖନ୍ତି ।

ଗୋଟିଏ ସମାଲୋଚନା ହୋଇଥିଲା ଇପିକଲ ବିଷୟରେ ଯେ ଏମାନେ କ'ଣ କରୁଛନ୍ତି । ସାର, ଇପିକଲ ଇଣ୍ଡଷ୍ଟ୍ରି ଖୋଲିବେ ନାହିଁ । ସେମାନଙ୍କ କାମ ହେଲା industrial promotion and investment Industry promotion କରିବାପାଇଁ ଯେଉଁ ଏଣ୍ଟରପ୍ରିନିଅର୍ ଆସନ୍ତି ନୂଆ ଇଣ୍ଡଷ୍ଟ୍ରି ଖୋଲିବା ବିଷୟରେ ସେମାନଙ୍କ ସହିତ ଆଲୋଚନା କରନ୍ତି । ଫିଜିବିଲିଟି ରିପୋର୍ଟ, capital investment ଇତ୍ୟାଦି ଆଲୋଚନା କରନ୍ତି । I P I COL is not like I. D. C. I. D. C. କେବଳ ଇଣ୍ଡଷ୍ଟ୍ରି କରନ୍ତି । I. D. C. ସିମେଣ୍ଟରେ ମଧ୍ୟ କୁହାଯାଇଛି ଯେ ଏମାନଙ୍କର ଯେଉଁ ସିମେଣ୍ଟ ବ୍ୟାଗ ହେଉଛି ପ୍ରତି ବସ୍ତାରୁ 5 କେ. ଜି. short ପଡ଼ୁଛି । ସାର, ଏ ଅଭିଯୋଗ ଠିକ୍ ନୁହେଁ । ସାର, ଭାରତ ସରକାରଙ୍କର ସିମେଣ୍ଟ କଣ୍ଟ୍ରୋଲର ସିମେଣ୍ଟ ବସ୍ତାର ଓଜନ ନିର୍ଦ୍ଧାରଣ କରିଦେଇଛନ୍ତି 53·5 କେଜି. । ସେଥିରୁ ଫ୍ୟାକ୍ଟରୀରେ 2 କେ. ଜି. ଏବଂ retail saleରେ 3. କେ.ଜି. ଟଲରନ୍ସ allowed, ତା ଅର୍ଥ

ପ୍ରଥମବର୍ଷରେ 48·5 ଲେ.କ. ରହିଛି । ଏହାଛଡ଼ା ବଢ଼ିବା stageରେ ଅଫିସର ଅଛନ୍ତି । ସୁପରଭାଇଜର ଅଛନ୍ତି । Central Excise Officer ଅଛନ୍ତି । ଫ୍ୟାକ୍ଟରୀରୁ ଆରମ୍ଭକରି retail sale ପର୍ଯ୍ୟନ୍ତ ସେମାନେ ଉପରେ ଚେକ୍ କରନ୍ତି । ତେଣୁ I.D.C.O.L. ସିମେଣ୍ଟ ବାବଦରେ 5 ଲେ.କ. କମ୍ ଥିବା ଅଭିଯୋଗ ଠିକ୍ ନୁହେଁ ।

Handloom products sale ଉପରେ 20% rebate ଯାହା ଦିଆଯାଉଛି ସେ ସମ୍ପର୍କରେ କୁହାଯାଇଛି ଯେ 20% ଦର ବଢ଼ାଇ ଦେଇ ଅନ୍ୟ ପଟେ 20% ରିବେଟ୍ ଦିଆଯାଉଛି । ମୁଁ ଜାଣେ ଏଭଳି କେତେକ ସଂସ୍ଥା ଅଛି ଯୁଁ କହୁଛି ସେହିମାନେ pure ଖଦି ବିକନ୍ତି ନାହିଁ, mixed ଖଦି uncertified ଖଦି ବିକନ୍ତି, ଏମାନେ ତ ରିବେଟ ପାଆନ୍ତି ନାହିଁ । କିନ୍ତୁ ଏମାନେ ଦର ବଢ଼ାଇ ଦେଇ ରିବେଟ୍ ଦିଅନ୍ତି । କିନ୍ତୁ ସେହିଠି ସବୁ ସ୍ଥାନରେ ଅଫିସରମାନେ ଅଛନ୍ତି ଚେକ୍ କରିବା ପାଇଁ ଏବଂ ମୁଁ ମଧ୍ୟ କେତେକ ହ୍ୟାଣ୍ଡଲୁମ୍ ସେଣ୍ଟର ଯାଇ ଦେଖିଛି, ସେମାନେ ଖୁବ୍ ଖୁସି ଯେ 20% ରିବେଟ୍ ଦେବାଦ୍ୱାରା ତାଙ୍କର ସବୁ ଗଚ୍ଛିତ ମାଲ clear ହୋଇଯାଉଛି । ସେମାନେ ଆଶା କରୁଛନ୍ତି 20% ରିବେଟ୍ ପ୍ରତିବର୍ଷ ସୁଯୋଗ ମିଳିଲେ ତାଙ୍କର ଯାହା unsold ରହୁଯାଉଥିଲା ଆଉ ରହୁବ ନାହିଁ । Atleast in a particular part of the period ସବୁ sale ହୋଇଯିବ ।

ସାର୍, ବଜେଟର ସାଧାରଣ ଆଲୋଚନା ବେଳେ ବହୁତ ଆଲୋଚନା ହୋଇଥିବ, ଏଥିରେ ବହୁତ କଥା repeat କରାଯାଉଛି । ତେଣୁ ମୁଁ ଏ ଗୃହର ସମୟ ନେବାପାଇଁ ଆଉ ଚାହୁଁ ନାହିଁ ।

ହେଲଥ ବିଭାଗ ଉପରେ ଯେ କଥା ଉଠିଥିଲା । ଯୁଁ ସେ ପ୍ରସଙ୍ଗରେ ଅଧିକ ସ୍ପଷ୍ଟ ଭାବରେ କହୁ ପାରିବି ନାହିଁ । ମୁଁ ଏତିକି କହି ମାନ୍ୟବର ସଭ୍ୟମାନଙ୍କୁ ଏହି appropriation billଟିକୁ ଗ୍ରହଣ କରିବା ପାଇଁ ଅନୁରୋଧ କରୁଛି । ଏ ବିଲ୍‌ର ଶେଷ ପର୍ଯ୍ୟାୟରେ ମୁଁ detailsକୁ ଯିବାକୁ ଚାହୁଁ ନାହିଁ, ସମସ୍ତ ଅଭିଯୋଗ ମୋ ପାଖରେ statistics ଅଛି । ଆମର per capita incomeର growth and fall ହେଉଛି । Because this is an agricultural State, Natural calamity ଯୋଗୁଁ ବର୍ଷ ବର୍ଷ ହେଉଛି income fall କରୁଛି । ଜାତୀୟ ସ୍ତରରେ ଏହାର ହାରଥାଏ, ପତନ ହେଉଛି । ଏ ପ୍ରଶ୍ନ ପଚାରିବାର ଉଦ୍ଦେଶ୍ୟ ହେଲା ଏତେ ଟଙ୍କା ଖର୍ଚ୍ଚ କରି can we reach the

national level ? Sir ସେମ estimate କରନ୍ତୁ all round 5% growth, ଏହାକୁ ଅନ୍ତରେ ରହି at the end of the year we can know whether we can reach the desired goal.

1977-78 ବାର୍ଷିକ ବଜେଟ୍ ଉପରେ ଆଲୋଚନା 25-3-1977

Shri BINAYAK ACHARYA (Chief Minister) : Sir, I beg to present the Annual Budget Estimates *for the year 1977-78.

ମହାଶୟ,

୧୯୭୭-୭୮ ବର୍ଷର ଆର୍ଥିକ ବିବରଣୀ ମୁଁ ଆଜି ଏ ଗୃହରେ ଉପସ୍ଥାପିତ କରିବାକୁ ଯାଉଛି । ଏହି ବିବରଣୀ ମାନ୍ୟବର ସଭ୍ୟମାନେ ପାଇ ସାରିଛନ୍ତି । ଷଷ୍ଠ ଲୋକସଭା ନିର୍ବାଚନରେ ଆମ୍ଭମାନଙ୍କର ବ୍ୟସ୍ତତା ଯୋଗୁଁ ଏବର୍ଷ ବଜେଟ୍ ଆଗତ କରିବାରେ ସାମାନ୍ୟ ବିଳମ୍ବ ଘଟିଛି । ଚଳିତ ମାର୍ଚ୍ଚ ୩୧ ତାରିଖ ପୂର୍ବରୁ ବ୍ୟୟ ଦାବିଗୁଡ଼ିକ ଉପରେ ଯଥୋଚିତ ଆଲୋଚନା ଓ ଭୋଟ ଗ୍ରହଣ କରିବା ଯଥେଷ୍ଟ ସମୟ ମିଳିବ ନାହିଁ । ସୁତରାଂ ଏହି ଗୃହ ସମଗ୍ର ଆର୍ଥିକ ବର୍ଷ ପାଇଁ ପ୍ରସ୍ତାବିତ ବ୍ୟୟ ଦାବିଗୁଡ଼ିକର ବିସ୍ତୃତ ପୂର୍ବକ ସମ୍ମତି ପ୍ରଦାନ କରିବାର ପୂର୍ଣ୍ଣ ସୁବିଧା ପାଇବା ପର୍ଯ୍ୟନ୍ତ, ସରକାରୀ କାର୍ଯ୍ୟକଳାପ ଚାଲୁ ରଖିବା ନିମନ୍ତେ ସମ୍ବିଧାନର ୨୦୬ ଧାରା ଅନୁଯାୟୀ ଏକ "ଭୋଟ ଅନ୍ ଆକାଉଣ୍ଟ" ପ୍ରସ୍ତାବ ଆଗତ କରିବା ସକାଶେ ମୁଁ ଆପଣଙ୍କର ଅନୁମତି ଲୋଡ଼ିବି ।

ଅର୍ଥନୈତିକ ପରିସ୍ଥିତି

୨ । ମହାଶୟ, ୧୯୭୫-୭୬ରେ ପ୍ରଚୁର ଶସ୍ୟ ଅମଳ ଏବଂ ୨.୩୪ ଲକ୍ଷ ମେଟ୍ରିକ୍ଟନ୍ ଚାଉଳ ସଂଗୃହୀତ ହୋଇଥିବାହେତୁ କୋହଳ ମଧ୍ୟରେ ସାଧାରଣ ବଣ୍ଟନ ବ୍ୟବସ୍ଥାର ସ୍ଥିରତା ଓ ରପ୍ତାନି ଲକ୍ଷ୍ୟ ମେଣ୍ଟାଇ ପାରିବାପରେ ମଧ୍ୟ ୧୯୭୬ ଅକ୍ଟୋବର ଶେଷ ସୁଦ୍ଧା ରାଜ୍ୟରେ ୭୭ ହଜାର ମେଟ୍ରିକ୍ଟନ୍ ଚାଉଳ ମହଜୁଦ ରହିଥିଲା । ୧୯୭୬ ଅଗଷ୍ଟ ମାସ ପର୍ଯ୍ୟନ୍ତ ଖରିଫ ଫସଲ ଭଲ ହେବ ବୋଲି ଆଶା କରାଯାଉଥିଲା, କିନ୍ତୁ ୧୯୭୬ ସେପ୍ଟେମ୍ବର ମାସରୁ ନଭେମ୍ବର ମାସ ଭିତରେ ଅସଲ ସମୟରେ ବର୍ଷା ନ ହେବା ହେତୁ ରାଜ୍ୟର ବ୍ୟାପକ ଅଞ୍ଚଳରେ ମରୁଡ଼ି ଦେଖାଦେଇଥିଲା । ଏହା ଫଳରେ ୨,୩୪୧ଟି ଗ୍ରାମପଞ୍ଚାୟତ କ୍ଷତିଗ୍ରସ୍ତ ହୋଇଛି, ସେଠାମାନଙ୍କରେ ୧୯୭୫ ବର୍ଷର ଖରିଫ ଧାନ ଅମଳ ୪୨ ଲକ୍ଷ ମେଟ୍ରିକ୍ଟନ

ହୋଇଥିବା ସ୍ଥଳେ ୧୯୭୬-୭୭ ଖରିଫ ବର୍ଷରେ ଧାନ ଅମଳ ଶତକଡ଼ା ୩୦ ଭାଗ କମିଯିବାର ସମ୍ଭାବନା ରହିଛି । କୃଷି ଉତ୍ପାଦନର ଭିତ୍ତିକୁ ସୁଦୃଢ଼ କରିବା ନିମନ୍ତେ ନୂତନ ଓ କାର୍ଯ୍ୟକ୍ରମଗୁଡ଼ିକୁ କାର୍ଯ୍ୟକାରୀ କରିବାପାଇଁ ଆମ୍ଭେମାନେ ସଙ୍କଳ୍ପବଦ୍ଧ । ଯେହେତୁ କୃଷି ରାଜ୍ୟବାସୀଙ୍କ ଆୟର ମୁଖ୍ୟ ଉପାଦାନ । ଏ ବର୍ଷର ମରୁଡ଼ି ଫଳରେ କୃଷି ଉତ୍ପାଦନ ହ୍ରାସ ହେତୁ ରାଜ୍ୟର ଆୟ କେତେକାଂଶରେ କମିଯିବ ଏବଂ ରାଜ୍ୟ ଓ ଜାତୀୟ ସ୍ତରରେ ମୁଣ୍ଡପିଛା ଆୟ ମଧ୍ୟରେ ବ୍ୟବଧାନ ବୃଦ୍ଧି ପାଇବ । ଏଭଳି ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ମହଜୁଦଥିବା ଖାଦ୍ୟଶସ୍ୟର ଯଥାର୍ଥ ବଣ୍ଟନ ଏବଂ ଲାଭଖୋର ଓ ମହଜୁଦକାରୀମାନଙ୍କର ଅସାମାଜିକ କାର୍ଯ୍ୟକଳାପ ପ୍ରତି କଠୋର ତଥା ନିରବଚ୍ଛିନ୍ନ ତୀକ୍ଷ୍ଣ ଦୃଷ୍ଟି ଦ୍ୱାରା ସମଗ୍ର ରାଜ୍ୟରେ ଖାଦ୍ୟଶସ୍ୟର ଦରଦାମ ସ୍ଥିର ରଖାଯାଇ ପାରିଛି । ସୌଭାଗ୍ୟର କଥା ଯେ ଗୁରୁତର ଶସ୍ୟହାନି ସତ୍ତ୍ୱେ ସରକାର ଗତ ଖରିଫ ଅମଳରୁ ୮୫ ହଜାର ଟନ ଚାଉଳ ସଂଗ୍ରହ କରିପାରିଛନ୍ତି ।

୩ । ଯେ ଯାହାହେଉ, ୧୯୭୬ ମସିହାର ଶେଷ ଭାଗରେ ଦେଖାଦେଇଥିବା ଦରଦାମର ବୃଦ୍ଧି ସମ୍ବନ୍ଧରେ ଉଲ୍ଲେଖ କରିବା ମୁଁ ସମୀଚୀନ ମନେକରୁଛି । ଏହି ପରିସ୍ଥିତି ଏବେ ମଧ୍ୟ ରହିଛି । ୧୯୭୪ ସେପ୍ଟେମ୍ବର ମାସ ବେଳକୁ ପାଇକାରି ମୂଲ୍ୟସୂଚୀ ସର୍ବୋଚ୍ଚ ୩୩୦.୭ ସ୍ତରରେ ପହଞ୍ଚିଥିଲା । ତତ୍ପରେ କ୍ରମାଗତ ଭାବେ ପ୍ରାୟ ୧୮ ପଏଣ୍ଟ କମିଯାଇ ପୁଣି ବୃଦ୍ଧି ପାଉଛି । ମୁଖ୍ୟତଃ ଅନିୟମିତ ମୌସୁମୀ ପ୍ରଭାବ ହେତୁ ଶସ୍ୟ ହାନି ଘଟି ଖାଇବା ତେଲ, ତୈଳବୀଜ ଓ କଞ୍ଚା କପାର ମୂଲ୍ୟ ବୃଦ୍ଧି ଯୋଗୁଁ ଏପରି ପରିସ୍ଥିତି ଉପୁଜିଛି । ସମଗ୍ର ଦେଶରେ ଏହି ପରିସ୍ଥିତି ଦେଖାଦେଇଛି ଏବଂ ଆମ ରାଜ୍ୟ ଅନ୍ୟ ରାଜ୍ୟରୁ ଖାଇବା ତେଲ ଓ ତୈଳବୀଜ ଆମଦାନୀ ଉପରେ ବିଶେଷ ନିର୍ଭର କରୁଥିବାରୁ ଏଭଳି ଅସୁବିଧା ପରିସ୍ଥିତିର ସମ୍ମୁଖୀନ ହୋଇଛି । ଏହି ପରିସ୍ଥିତିକୁ ସୁଧାରିବାପାଇଁ ବହୁମୁଖୀ ପଦକ୍ଷେପ ଯଥା ଋଣ ସଙ୍କୋଚନ, ବିଦେଶରୁ ଆମଦାନୀ ଏବଂ ଫାଟକା ବ୍ୟବସାୟ ରୋକିବା ପ୍ରଭୃତି ବ୍ୟବସ୍ଥା ଗ୍ରହଣ କରାଯାଇଛି । ମୁଁ ଦୃଢ଼ ନିଶ୍ଚିତ ଯେ ଏ ପରିସ୍ଥିତି ଶୀଘ୍ର ସୁଧୁରିଯିବ। ୧୯୭୦ ମସିହାରେ ଦେଶରେ ଦେଖାଦେଇଥିବା ଧାବମାନ ମୁଦ୍ରାସ୍ଫୀତିକୁ ରୋକି ଦରଦାମ ହ୍ରାସ କରିବା ନିମନ୍ତେ ଗୃହୀତ ଆର୍ଥିକ, ପ୍ରଶାସନିକ ଓ ମୁଦ୍ରାସମ୍ବନ୍ଧୀୟ ପ୍ରତିକାର ବ୍ୟବସ୍ଥାଗୁଡ଼ିକ ବିଷୟରେ ଗତବର୍ଷ ମୋର ବଜେଟ ଭାଷଣରେ ମୁଁ ଯେଉଁ ସୂଚନା ଦେଇଥିଲି, ମାନ୍ୟବର ସଭ୍ୟମାନେ ତାହା ସ୍ମରଣ କରିପାରନ୍ତି । ସୁଖର କଥା ଯେ ବର୍ତ୍ତମାନ ମୂଲ୍ୟସୂଚୀ ୧୯୭୦ର ସର୍ବୋଚ୍ଚ ମୂଲ୍ୟସୂଚୀଠାରୁ ଯଥେଷ୍ଟ କମ୍ ରହିଛି ଏବଂ ପୃଥିବୀର କୌଣସି ଦେଶରେ ଏପରି ସାଫଲ୍ୟର ପଟାନ୍ତର ନାହିଁ । ଶିଳ୍ପ ଉତ୍ପାଦନ କ୍ଷେତ୍ରରେ ଅଭାବ ଉନ୍ନତି ଘଟିଛି । ଦେଶରେ ରପ୍ତାନି ବାଣିଜ୍ୟ ନୂତନ ଶିଖରରେ ପହଞ୍ଚିଛି ଏବଂ ବୈଦେଶିକ ମୁଦ୍ରାଭଣ୍ଡାର ଓ ବୈଦେଶିକ କାରବାରରେ

ଲିପ୍ତ ଥିବା ବ୍ୟକ୍ତିମାନଙ୍କ ବିରୁଦ୍ଧରେ ଶିକ୍ଷଣୀୟ ଦଣ୍ଡାତ୍ମକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇଥିବା ଫଳରେ ଆମର ବୈଦେଶିକ ମୁଦ୍ରା ଭଣ୍ଡାରସ୍ଥ ଆରକ୍ଷପାଣ୍ଠି ବୃଦ୍ଧି ପାଇଛି । ଏହିସବୁ ପଦକ୍ଷେପ ସମଗ୍ର ଦେଶରେ ଅର୍ଥନୈତିକ ସ୍ଥିତି ଏବଂ ଭାରତୀୟ ମୁଦ୍ରାର ବାହ୍ୟ ମୂଲ୍ୟକୁ ଅଭୂତପୂର୍ବ ଭାବରେ ଦୃଢ଼ୀଭୂତ କରିଛି । ଦରବୃଦ୍ଧିର କାରଣଗୁଡ଼ିକୁ ଅପସୃତ କରିବାପାଇଁ ନିଆଯାଉଥିବା ପଦକ୍ଷେପମାନ ଯେ ଅଚିରେ ଦରଦାମ୍ ପରିସ୍ଥିତି ଉପରେ ପ୍ରଭାବ ପକାଇବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ମୋଟାମୋଟି ଭାବରେ ଜାତୀୟ ଅର୍ଥନୀତି ଆଜି ବେଶ୍ ସୁସ୍ଥ ଓ ସୁଦୃଢ଼ ଏବଂ ଅଭିବୃଦ୍ଧି ନିମନ୍ତେ ପ୍ରସ୍ତୁତ । ମୌସୁମୀ ପ୍ରବାହର ଜନାଗତ ଅନିଶ୍ଚିତତାରୁ କୃଷକକୁ ରକ୍ଷାକରି କୃଷି ନିମନ୍ତେ ଏକ ସୁଦୃଢ଼ ଭିତ୍ତିଭୂମି ପ୍ରତିଷ୍ଠା କରିବାହିଁ ଆମରାଜ୍ୟର ଉନ୍ନୟନ ପ୍ରଚେଷ୍ଟାର ଏକ ମୁଖ୍ୟ ଅଂଶ । ଗତବର୍ଷର ଫଳକା ଏବଂ ଏ ବର୍ଷର ନୂତନ ସଂଗୃହୀତ ୮୫,୦୦୦ ଟନ୍ ଖାଦ୍ୟଶସ୍ୟ ଆମ ପାଖରେ ମହଜୁଦ୍ ଥିବାରୁ ଆମ ଖାଦ୍ୟ ପରିସ୍ଥିତି ବେଶ୍ ସନ୍ତୋଷଜନକ ହୋଇଛି ଏବଂ ଏହା ଫଳରେ ମୁଖ୍ୟ ଖାଦ୍ୟଦ୍ରବ୍ୟର ଦରଦାମ୍ ସ୍ଥିର ରଖିବାପାଇଁ ଆମେ ସକ୍ଷମ ହୋଇ ପାରିଛୁ । ରବି ଋତୁର ଧାନ ଅମଳ ମଧ୍ୟ ଭଲ ହେବ ବୋଲି ଆଶା କରାଯାଏ । ଯଦି ଆସନ୍ତା ବର୍ଷ ଭଲ ବୃଷ୍ଟିପାତ ହୁଏ, ତେବେ ରାଜ୍ୟର ଅର୍ଥନୈତିକ ପରିସ୍ଥିତି ଆହୁରି ଉଜ୍ଜଳ ହେବ ଏବଂ ନିରବଚ୍ଛିନ୍ନ ବିକାଶ ଦିଗରେ ଏହା ଆବଶ୍ୟକୀୟ ଶକ୍ତି ଓ ସାମର୍ଥ୍ୟ ଯୋଗାଇବ ।

## ନୂତନ ଅର୍ଥନୈତିକ କାର୍ଯ୍ୟକ୍ରମ

୪ । ପଞ୍ଚବିଂଶ ସୂତ୍ରୀ କାର୍ଯ୍ୟକ୍ରମକୁ ସାଫଲ୍ୟର ସହିତ କାର୍ଯ୍ୟକାରୀ କରିବାରେ ଆମର ପୂର୍ବ ଅଭିଜ୍ଞତା ଏବଂ ନୂତନ ଆହ୍ୱାନଗୁଡ଼ିକର ମୁକାବିଲା କରିବାପାଇଁ ଆମର ଦୃଢ଼ସଂକଳ୍ପ ଉପରେ ଭିତ୍ତିକରି ମୋର ବିଶ୍ୱାସ ଯେ, ଉତ୍ତରୋତ୍ତର ସମୃଦ୍ଧି ନିମନ୍ତେ ଆମର ଅର୍ଥନୀତି ସମ୍ପୂର୍ଣ୍ଣ ସମର୍ଥ । ଅନୁତ୍ପାଦକ ସରକାରୀ ଅଣଯୋଜନା ଖର୍ଚ୍ଚ କମାଇବା ଦ୍ୱାରା ଆମେ ମୁଦ୍ରାସ୍ଫୀତି ନିରୋଧ ବ୍ୟବସ୍ଥା କଠୋର ଭାବରେ ପ୍ରୟୋଗ କରିପାରିଛୁ । ଫଳତଃ, ୪ କୋଟି ୯୧ ଲକ୍ଷ ଟଙ୍କା ବକ୍ୟାର ଯୋଜନା ବାବଦରେ ଅର୍ଥନିସମ୍ପୃକ୍ତ ବୃଦ୍ଧି ହୋଇପାରିଛୁ । ଚୋରା ମହଜୁଦକାରୀ, ମୁନାଫାଖୋର ଓ ଟିକସ ଫାକିଥିବା ଲୋକମାନଙ୍କର ଫଟିକା ବ୍ୟବସାୟକୁ ଦୃଢ଼ ହସ୍ତରେ ଦମନ କରାଯାଇଛି । ଏତଦ୍ୱାରା ଏଭଳି ୩,୬୮୯ଟି ଅପରାଧ ଧରାଯାଇଥିଲି ଓ ୨ କୋଟି ୪୦ ଲକ୍ଷ ଟଙ୍କା ମୂଲ୍ୟର ମାଲ ଓ ୫୦ଟି ଯାନବାହାନ ଜବତ କରାଯାଇଥିଲି । ୧,୮୧୬ଟି ବାଣିଜ୍ୟକର ଫାର୍କି ମାମଲା ଧରାଯାଇଥିଲା ଏବଂ ଏହି ବର୍ଷମଧ୍ୟରେ ଫଇସଲା ହୋଇଥିବା ୧,୨୫୨ଟି ମାମଲାରେ ୭୦ ଲକ୍ଷ ୮୯ ହଜାର ଟଙ୍କାର ଟିକସ ଦାବି କରାଯାଇଛି । କୃଷି ଓ ଶିଳ୍ପ କ୍ଷେତ୍ରରେ ଉତ୍ପାଦନ ବୃଦ୍ଧି କରିବା ପାଇଁ ଆମେ ଉତ୍ସାହ ଦେଉଛୁ ଓ ସେଥିପାଇଁ ଅନୁକୂଳ ପରିସ୍ଥିତି ସୃଷ୍ଟି କରିଛୁ । ଭୂ-ସଂସ୍କାର ବ୍ୟବସ୍ଥାକୁ ଅଧିକ ସକ୍ରିୟ କରାଯିବା ଦ୍ୱାରା

୧୭,୩୫୮ ଜଣ ଆଦିବାସୀ ଓ ୧୩,୧୨୪ ଜଣ ହରିଜନ ପରିବାର ସମେତ ମୋଟ ୪୦,୩୭୨ ଜଣ ଭୂମିହୀନ ଲୋକ ଉପକୃତ ହୋଇଛନ୍ତି । ୫୧,୧୩୭ ଜଣ ଭୂମିହୀନ ପରିବାରଙ୍କୁ ୧,୮୩୭ ହେକ୍ଟର ଘରଡ଼ିହ ଜମି ଯୋଗାଇ ଦିଆଯାଇଛି । ସେମାନଙ୍କ ମଧ୍ୟରୁ ଅଧିକାଂଶ ହରିଜନ ଓ ଆଦିବାସୀ । ଏତଦ୍ବ୍ୟତୀତ ରାଜ୍ୟ ସରକାର ସ୍ୱଳ୍ପ ଖର୍ଚ୍ଚରେ ୩,୦୩୦ଟି ବାସଗୃହ ନିର୍ମାଣ କରିଛନ୍ତି ଓ ତନ୍ମଧ୍ୟରୁ ୨,୭୧୧ଟି ଗୃହ ବାସହୀନ ପରିବାରଙ୍କୁ ଯୋଗାଇ ଦେଇଛନ୍ତି । ଗୋଟି ଶ୍ରମିକ ପ୍ରଥା ଲୋପପାଇଁ ଅଭିଯାନ ଚାଲୁରହିଛି । ୨୪୫ ଜଣ ବ୍ୟକ୍ତିଙ୍କୁ ଗୋଟି ବନ୍ଧନରୁ ମୁକ୍ତକରି ଥଇଥାନ କରାଯାଉଛି । ୭୧,୫୦୦ ଜଣ କ୍ଷୁଦ୍ର ନାମମାତ୍ର କୃଷୀଙ୍କୁ ସମବାୟ ଅନୁଷ୍ଠାନର ପରିସରଭୁକ୍ତ କରାଯାଇଅଛି । ଋଣଗ୍ରହିତାମାନଙ୍କ ଋଣ ଭାର ଲାଘବ କରିବାପାଇଁ ସଂଶୋଧିତ ହୋଇଥିବା ମହାଜନୀ ଆଇନକୁ କଠୋର ଭାବରେ କାର୍ଯ୍ୟକାରୀ କରିଥିବା ଫଳରେ ୪,୭୩୭ଟି ମକଦ୍ଦମା ରେଜେଷ୍ଟ୍ରିଭୁକ୍ତ ହୋଇଛି ଏବଂ ୧୫,୨୩୦ ଜଣ ଋଣଗ୍ରହୀତା ଋଣଭାରରୁ ଅବ୍ୟାହତି ପାଇଛନ୍ତି । ସର୍ବନିମ୍ନ ମଜୁରି ଆଇନ କାର୍ଯ୍ୟକାରୀ ହେବା ଫଳରେ ୧୪,୮୮୩ଟି ଘଟଣା ଧରାପଡ଼ିଛି । ଏଥି ମଧ୍ୟରୁ ୨,୦୭୨ଜଣ ଶ୍ରମିକ ଯେଉଁମାନେ କି ନ୍ୟାଯ୍ୟ ମଜୁରିଠାରୁ କମ୍ ମଜୁରି ପାଉଥିଲେ, ସେମାନଙ୍କର ଊଣା ମଜୁରି ବାବଦରେ ୩ଲକ୍ଷ ୨୦ ହଜାର ଟଙ୍କା ଦିଆଯାଇଛି । ୧ ଲକ୍ଷ ୮ ହଜାର ଟଙ୍କା ଜୋରିମାନା ଆଦାୟ କରା ହୋଇଛି । ଶିଳ୍ପ ସଂସ୍ଥାମାନଙ୍କ ପରିଚାଳନାରେ ଶ୍ରମିକମାନଙ୍କ ଅଂଶଗ୍ରହଣ ଯୋଜନା ଅଧିକ ତତ୍ପରତା ସହକାରେ କାର୍ଯ୍ୟକାରୀ ହୋଇଛି । ବୃହତ, ମଧ୍ୟମ ଓ କ୍ଷୁଦ୍ର ଜଳସେଚନ ଯୋଜନା ମାଧ୍ୟମରେ ୧୭୨,୪୨୬ ହେକ୍ଟର ଜମିପାଇଁ ଅତିରିକ୍ତ ଜଳସେଚନର ବ୍ୟବସ୍ଥା କରାଯାଇଛି । ଭୂତଳ ଜଳସମ୍ପଦର ସଦୁପଯୋଗ ପାଇଁ ସମବାୟ ସଂସ୍ଥା, ଓ ବ୍ୟବସାୟ ବ୍ୟାଙ୍କ, ଅର୍ଦ୍ଧ-ସରକାରୀ ସଂସ୍ଥା ଓ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କ ଆର୍ଥିକ ସହାୟତାରେ ୧୧୫,୧୪୮ଟି ସେଚକୂପ ଖନନ କରାଯାଉଛି । ବିଦ୍ୟୁତ୍ ଉତ୍ପାଦନର ବିକାଶ ଓ ଗ୍ରାମ୍ୟ ବିଦ୍ୟୁତ୍କରଣ କାର୍ଯ୍ୟର ସମ୍ପ୍ରସାରଣ ପ୍ରତି ବିଶେଷ ଧ୍ୟାନ ଦିଆଯାଇଛି ଏବଂ ୧୯୭୭ ଡିସେମ୍ବର ଶେଷସୁଦ୍ଧା ୧୩,୪୪୩ଟି ଗ୍ରାମକୁ ବିଦ୍ୟୁତ୍ ଯୋଗାଇ ଦିଆଯାଇଛି । ୨୬ଟି ନୂଆ ହସ୍ତତନ୍ତ ସମବାୟସଂସ୍ଥା ସଗଠିତ ହୋଇଛି ଏବଂ ଅଚଳ ହୋଇ ପଡ଼ିଥିବା କେତେକ ସମବାୟ ସମିତିର ପୁନରୁଦ୍ଧାର କରାଯାଇଛି । 1,550ଟି ଅଧିକ ବୁଣାକାର ପରିବାରଙ୍କୁ ସଭ୍ୟ ଶ୍ରେଣୀ-ଭୁକ୍ତ କରିଯାଇ ଆର୍ଥିକ ସାହାଯ୍ୟ ଦିଆଯାଇଛି । କଣ୍ଟ୍ରୋଲ ଲୁଗା ଉତ୍ପାଦନ ବୃଦ୍ଧି କ୍ଷେତ୍ରରେ ହସ୍ତତନ୍ତ ସମବାୟ ସଂସ୍ଥାମାନଙ୍କର ଭୂମିକା ବର୍ତ୍ତମାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଏବଂ ଏଥିନିମନ୍ତେ ଏକାଧିକାର ତନ୍ତ ନିର୍ଦ୍ଦିଷ୍ଟଭାବେ ମୂଲ୍ୟାୟନ କରାଯାଇଛି । 2,548ଟି ଛାତ୍ରାବାସକୁ ଉଚିତ୍ ମୂଲ୍ୟରେ ଓ ଯଥେଷ୍ଟ ପରିମାଣରେ କଣ୍ଟ୍ରୋଲ ଜିନିଷ ନିୟମିତଭାବେ ଯୋଗାଇ ଦିଆଯାଇଛି । ସମସ୍ତ ସରକାରୀ ଓ ବେସରକାରୀ କଲେଜ, ସମସ୍ତ ଉଚ୍ଚ ବିଦ୍ୟାଳୟ ଏବଂ 314ଟି ମଧ୍ୟ ବିଦ୍ୟାଳୟରେ ପାଠ୍ୟପୁସ୍ତକ ବ୍ୟାଙ୍କ ଖୋଲାଯାଇଛି ।

ସମାଜର ଦୁର୍ବଳଶ୍ରେଣୀ ଲୋକମାନଙ୍କର ସନ୍ତାନମାନଙ୍କୁ ମାଗଣାରେ ପାଠ୍ୟପୁସ୍ତକ, ଲେଖନ ସାମଗ୍ରୀ ଓ ସ୍କୁଲ ପୋଷାକ ଯୋଗାଣ ଭଳି ପ୍ରୋତ୍ସାହନମୂଳକ ପରିକଳ୍ପନାମାନ କାର୍ଯ୍ୟକାରୀ କରାଯିବା ସଙ୍ଗେ ସଙ୍ଗେ ଉପସ୍ଥାନ ବୃତ୍ତିପ୍ରଦାନ ଫଳରେ ଛାତ୍ରଛାତ୍ରୀମାନଙ୍କ ଉପସ୍ଥାନ ଆଶାତୀତ ଭାବରେ ବୃଦ୍ଧି ଘଟିଛି । ଜଙ୍ଗଲ, ମୃତ୍ତିକା ସଂରକ୍ଷଣ ଏବଂ ଉଦ୍ୟାନସଂସ୍ଥା ମିଳିତ ଉଦ୍ୟମରେ 26,771 ହେକ୍ଟର ଅଞ୍ଚଳରେ ବୃକ୍ଷରୋପଣ କରାଯାଇଅଛି । ଏତଦ୍‌ବ୍ୟତୀତ ପୌରସ୍ୱାୟତ୍ତ ସଂସ୍ଥାମାନେ ମଧ୍ୟ ଏହି ବୃକ୍ଷରୋପଣ କାର୍ଯ୍ୟକ୍ରମରେ ବିଶେଷଭାବେ ଅଂଶ ଗ୍ରହଣ କରିଛନ୍ତି । 236ଟି ଯାନକୁ ଜାତୀୟ ପରମିଟ୍ ପ୍ରଦାନ କରାଯାଇଅଛି ଏବଂ ଶିକ୍ଷାନବିସ ତାଲିମ ପରିକଳ୍ପନା ଅନୁଯାୟୀ କାରଖାନାରେ ତାଲିମ ପ୍ରଦାନ ନିମନ୍ତେ ବିଭିନ୍ନ ଶିଳ୍ପ ପ୍ରତିଷ୍ଠାନରେ 2,332 ସ୍ଥାନର ବ୍ୟବସ୍ଥା କରାଯାଇଅଛି । ପରିବାର ନିୟନ୍ତ୍ରଣ ଯୋଜନା ଅନୁକୂଳରେ 195,500ଟି ଅସ୍ତ୍ରୋପଚାର ପାଇଁ ଲକ୍ଷ୍ୟଥିବା ସ୍ଥଳେ 3·04 ଲକ୍ଷ ଅସ୍ତ୍ରୋପଚାର କରାଯାଇଅଛି । ବହୁସଂଖ୍ୟାରେ ଛାତ୍ର ଓ ଯୁବକ ଯୌତୁକ ପ୍ରଥା ବିରୁଦ୍ଧରେ ଲଢ଼ିବା ପାଇଁ ଶପଥ ନେଇଛନ୍ତି । ସାବାଳକ ଲୋକଙ୍କ ମଧ୍ୟରୁ ନିରକ୍ଷରତା ଦୂରୀକରଣପାଇଁ 1,287ଟି କେନ୍ଦ୍ର ଖୋଲାଯାଇଅଛି ଏବଂ 26,544 ଜଣ ବ୍ୟକ୍ତିଙ୍କୁ ଉକ୍ତ ସାକ୍ଷରତା କେନ୍ଦ୍ର ଗୁଡ଼ିକରେ ଭର୍ତ୍ତି କରାଯାଇଅଛି । ସର୍ବୋପରି ବର୍ତ୍ତମାନ ଯୁବ ସମ୍ପ୍ରଦାୟର ଶକ୍ତି ଓ ଆଦର୍ଶକୁ ଦେଶର ବିକାଶମୂଳକ କାର୍ଯ୍ୟ ମାଧ୍ୟମରେ ସକ୍ରିୟଭାବେ ନିୟୋଜିତ କରାଯାଇଅଛି ।

## ମରୁଡ଼ି ସାହାଯ୍ୟ

୫। 1976 ମସିହାରେ ବ୍ୟାପକ ମରୁଡ଼ି ଓ ବନ୍ୟା ଫଳରେ ଖରିଫ ଧାନ ଉତ୍ପାଦନରେ ଘଟିଥିବା କ୍ଷତି ସମ୍ବନ୍ଧରେ ମୁଁ ଇତିପୂର୍ବରୁ ଉଲ୍ଲେଖ କରିସାରିଛି । ରାଜ୍ୟ ସରକାର ଶୀଘ୍ର ଯୋଜନାମାନ କାର୍ଯ୍ୟକାରୀ କରି ମରୁଡ଼ି ଯୋଗୁଁ ଉପୁଜିଥିବା ସମସ୍ୟା-ଗୁଡ଼ିକୁ ଦୃଢ଼ଭାବେ ଆୟତ୍ତ କରିଛନ୍ତି । ଉକ୍ତ ଯୋଜନା ଅନୁଯାୟୀ ମରୁଡ଼ିଗ୍ରସ୍ତ ଅଞ୍ଚଳର ଶ୍ରମିକମାନଙ୍କୁ କାମଧନ୍ଦା ଯୋଗାଇ ଦିଆଯିବା ସଙ୍ଗେ ସଙ୍ଗେ ଲୋକମାନଙ୍କର ଅର୍ଥନୈତିକ ଓ ସାମାଜିକ ଉନ୍ନତିପାଇଁ ସ୍ଥାୟୀ ବ୍ୟବସ୍ଥା କରାଯାଇଛି । ଭାରତ ସରକାର 5 କୋଟି 10 ଲକ୍ଷ ଟଙ୍କାର ଅଗ୍ରିମ ଯୋଜନା ଯୋଗାଇ ଦେଇ ଯଥା ସମୟରେ ସହାୟତା କରିଥିବାରୁ ମୁଁ ଏହି ଅବସରରେ ତାଙ୍କପ୍ରତି ଆମର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି । ଉକ୍ତ ଆର୍ଥିକ ସାହାଯ୍ୟ ଫଳରେ ଜନସାଧାରଣଙ୍କୁ କାମଧନ୍ଦାର ସୁବିଧାସୁଯୋଗ ଯୋଗାଇ ଦେବାପାଇଁ ଶ୍ରମ ପ୍ରଧାନ କାର୍ଯ୍ୟ ସଂଗଠନ କରିବାରେ ଓ ବିପନ୍ନ ଅଞ୍ଚଳମାନଙ୍କର ପାନୀୟ ଜଳ ଯୋଗାଣ ଦିଗରେ ଆକ୍ରମ ନିଶ୍ଚିତ ବ୍ୟବସ୍ଥା କରି ପାରିଛୁ । ଏହି ସାହାଯ୍ୟ ବଳରେ ଗ୍ରାମାଞ୍ଚଳରେ ରକ୍ଷଣାବେକ୍ଷଣ ଅଭାବରୁ ପରିତ୍ୟକ୍ତ କେତେକ ପୁଷ୍କରିଣୀ ସମେତ

ଜଳସେଚନ ପାଇଁ ଉଦ୍ଦିଷ୍ଟ ଅନ୍ୟାନ୍ୟ ପୁଷ୍କରିଣୀଗୁଡ଼ିକର ଅପେକ୍ଷାକୃତ ଅଳ୍ପ ବ୍ୟୟରେ ପୁନରୁଦ୍ଧାର ନିମିତ୍ତ ଏକ ବିରାଟ କାର୍ଯ୍ୟକ୍ରମ ଗ୍ରହଣ କରାଯାଉଛି । ଏହାଦ୍ୱାରା ସ୍ଥାୟୀ ଉପକାର ସାଧିତ ହେବ । ମରୁଡ଼ି ପରିସ୍ଥିତି ଦୃଷ୍ଟିରୁ ଶ୍ରମପ୍ରଧାନ କାର୍ଯ୍ୟ ନିମନ୍ତେ, କେନ୍ଦ୍ରରୁ ମିଳିଥିବା ଅଗ୍ରିମ ଯୋଜନା ସାହାଯ୍ୟ ବ୍ୟତୀତ ରାଜ୍ୟର ସାଧାରଣ ଯୋଜନା ଓ ଅଣ-ଯୋଜନା ବାବଦ ବ୍ୟୟ ବରାଦରୁ 20 କୋଟି 50 ଲକ୍ଷ ଟଙ୍କା ବ୍ୟବସ୍ଥା କରାଯାଇଛି । ଏହା ଛଡ଼ା କାର୍ଯ୍ୟପାଇଁ ଖାଦ୍ୟ ଯୋଜନା ପରିସରକୁ ଯଥେଷ୍ଟ ସମ୍ପ୍ରସାରିତ କରାଯାଇଛି ଏବଂ ଗୋଷ୍ଠୀ ଜନସ୍ୱନ ବିଭାଗର ପୁଷ୍ଟିକର ଖାଦ୍ୟ ଯୋଗାଣ ମାଧ୍ୟମରେ ଉପକୃତ ହେଉଥିବା ବ୍ୟକ୍ତିମାନଙ୍କ ସଂଖ୍ୟା 15 ଲକ୍ଷରୁ 25 ଲକ୍ଷକୁ ବଢ଼ାଇ ଦିଆଯାଇଛି । ଗୁରୁତର ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳଗୁଡ଼ିକରେ ଅଧିବାସୀମାନଙ୍କ ଦୁଃଖ ଲାଘବ କରିବାପାଇଁ, ସେ ସବୁ ଅଞ୍ଚଳରେ ଭୂ-ରାଜସ୍ୱ ଆଦାୟ ସ୍ଥଗିତ ରଖିବା ଓ ଋଣ ଆଦାୟ ନିମନ୍ତେ ଏଥିପୂର୍ବରୁ ଘୋଷଣା କରାଯାଇଛି । 1977-78 ପାଇଁ କରାଯାଇଥିବା ବ୍ୟୟ ବ୍ୟବସ୍ଥା ସହିତ ଏହିସବୁ ପଦକ୍ଷେପ ଗ୍ରହଣ କରାଯିବା ଫଳରେ ଦୁଃସ୍ଥ ଲୋକମାନେ ଆବଶ୍ୟକୀୟ ସାହାଯ୍ୟପାଇ ପାରିବେ ବୋଲି ମୋର ଦୃଢ଼ ବିଶ୍ୱାସ । ଆଗାମୀ ଗ୍ରୀଷ୍ମକାଳ ଅତ୍ୟନ୍ତ ଉତ୍କଟ ସମସ୍ୟା ହେବ ବୋଲି ଆଶଙ୍କା କରାଯାଉଛି । କିନ୍ତୁ ସେଥିପାଇଁ ନୈରାଶ୍ୟର କୌଣସି କାରଣ ନାହିଁ । ଯେଉଁସବୁ ସ୍ଥଳରେ ଲୋକ ପ୍ରକୃତରେ ଦୁର୍ଦ୍ଦଶାଗ୍ରସ୍ତ ହୋଇ ପଡ଼ିବେ, ସେଠାରେ ସରକାର ନିଜ କୌଣସିମତେ ସାହାଯ୍ୟ ଯୋଗାଇ ଦେବେ । ସେଥି-ପାଇଁ ଯାହାକିଛି ଖର୍ଚ୍ଚ ହେଉ ପଛକେ, ରାଜ୍ୟର କୌଣସି ଲୋକ ଉପବାସ ଅନାହାରରେ ପ୍ରାଣ ନ ହରାଏ, ତାହାର ନିଶ୍ଚିତ ବ୍ୟବସ୍ଥା କରିବାପାଇଁ ସରକାର ବଦ୍ଧପରିକର । ମରୁଡ଼ି-ଗ୍ରସ୍ତ ଅଞ୍ଚଳରେ ଲୋକମାନଙ୍କର ଅବସ୍ଥା ସୁଧାରିବାପାଇଁ ସରକାର ଯେଉଁ ଉଦ୍ୟମ କରୁଛନ୍ତି, ସେଥି ସହିତ ସହଯୋଗ କରିବାପାଇଁ ମୁଁ ଦଳମତ ନିର୍ବିଶେଷରେ ମାନ୍ୟବର ସଭ୍ୟମାନଙ୍କର ସହଯୋଗ ଲୋଡ଼ୁଛି ଏବଂ ସେମାନଙ୍କର ଦୁଃଖ କଷ୍ଟରୁ ରାଜ-ନୈତିକ ଫାଇଦା ଉଠାଇବାର ପ୍ରଲୋଭନ ଦମନ କରିବାପାଇଁ ଅନୁରୋଧ କରୁଛି ।

## ପଞ୍ଚମ ପଞ୍ଚବାର୍ଷିକ ଯୋଜନା

୭ । ମାନ୍ୟବର ସଭ୍ୟମାନେ ଜାଣନ୍ତି ଯେ 1974-75 ମସିହାଟି ପଞ୍ଚମ ଯୋଜନାର ପ୍ରାରମ୍ଭିକ ବର୍ଷ ହୋଇଥିଲେ ମଧ୍ୟ, ଏହା ଅଳ୍ପ କେତେଦିନ ପର୍ଯ୍ୟନ୍ତ ଭାରତର ପଞ୍ଚମ ପଞ୍ଚବାର୍ଷିକ ଯୋଜନାର ରୂପରେଖ ସ୍ଥିରୀକୃତ ହୋଇ ନଥିଲା । ତେଣୁ ଓଡ଼ିଶାର ପଞ୍ଚମ ଯୋଜନା ମଧ୍ୟ ଚୂଡ଼ାନ୍ତ ଆକାର ଧାରଣ କରି ପାରିନଥିଲା । 1976 ସେପ୍ଟେମ୍ବର ମାସରେ ଯୋଜନା କମିଶନ ରାଜ୍ୟ ସରକାରଙ୍କୁ ସୂଚାଇଥିଲେ ଯେ ରାଜ୍ୟର ପଞ୍ଚମ ଯୋଜନାର ବ୍ୟୟ ବ୍ୟବସ୍ଥା 588 କୋଟି 50ଲକ୍ଷ ଟଙ୍କା ହେବ ।

ପ୍ରଥମ 3ବର୍ଷର ଖର୍ଚ୍ଚ ଓ 1977-78 ପାଇଁ ପରିକଳ୍ପିତ ଖର୍ଚ୍ଚକୁ ବିଚାର କଲେ ଯୋଜନାର ଅନ୍ତିମ ବର୍ଷ ପାଇଁ ରହୁଥିବା ବଳକାର ପରିମାଣ ମାତ୍ର 139କୋଟି ଟଙ୍କା ହେବ, ଯାହାକି 1977-78 ପାଇଁ ବରାଦ ହୋଇଥିବା ଖର୍ଚ୍ଚ ଅପେକ୍ଷା କମ। ସେହେତୁ ଏଭଳି ପରିସ୍ଥିତି ଗ୍ରହଣୀୟ ନୁହେଁ, ଆମର ଦୃଢ଼ ବିଶ୍ୱାସ ଯେ, ଆମର ପଞ୍ଚମ ଯୋଜନା ବ୍ୟୟ ଅଟକଳ, ଯୋଜନା କମିଶନଙ୍କ ଦ୍ୱାରା ସୂଚିତ 588କୋଟି 50ଲକ୍ଷ ଟଙ୍କାଠାରୁ ନିଶ୍ଚୟ ଅଧିକ ହେବ। ଚୂଡ଼ାନ୍ତ ଖର୍ଚ୍ଚର ପରିମାଣ ଆମର ଆଭ୍ୟନ୍ତରୀଣ ସମ୍ବଳ ସଂଗ୍ରହର ସାମର୍ଥ୍ୟ ଓ କେନ୍ଦ୍ରୀୟ ସାହାଯ୍ୟ ସମେତ ବହୁବିଧ କାରଣ ଉପରେ ନିର୍ଭର କରେ। ଏ ବାବଦ କେନ୍ଦ୍ରୀୟ ସାହାଯ୍ୟ ମଧ୍ୟ କେନ୍ଦ୍ର ସରକାରଙ୍କର ଆର୍ଥିକ ସଂଗମନ ଦ୍ୱାରା ଚାଳିତ ହେବ।

୭। ମହାଶୟ, ଏହି ପୃଷ୍ଠଭୂମିରେ 1977-78ର ବଜେଟ ଅଟକଳ ଉପସ୍ଥାପନ କରିବା ପୂର୍ବରୁ ମୁଁ 1975-76ର ଆର୍ଥିକ ବର୍ଷର ହିସାବର କେତେକ ଗୁରୁତ୍ୱପୂର୍ଣ୍ଣ ଦିଗ ଏବଂ 1976-77ର ସଂଶୋଧିତ ଅଟକଳ ଉପରେ ସଂକ୍ଷିପ୍ତ ସୂଚନା ଦେବା ସମୀଚୀନ ମନେକରୁଛି।

## 1975-76 ବର୍ଷ ହିସାବ

୮। ରାଜ୍ୟ ସରକାରଙ୍କର 1975-76 ଆର୍ଥିକ ବର୍ଷ ଆରମ୍ଭରେ 4କୋଟି 85ଲକ୍ଷ ଟଙ୍କା ନିଅଣ୍ଟ ଭରଣ ହୋଇ ନଥିଲା ଏବଂ ସେହି ବର୍ଷ ଶେଷକୁ ନିଅଣ୍ଟର ପରିମାଣ 16କୋଟି 3ଲକ୍ଷ ଟଙ୍କାକୁ ବୃଦ୍ଧି ପାଇଥିଲା। ତନ୍ମଧ୍ୟରୁ ବର୍ଷ ଶେଷ ସୁଦ୍ଧା ଟ୍ରେଜେରୀ ବିଲରେ ବିନିଯୋଗ ହୋଇଥିବା 3କୋଟି 95ଲକ୍ଷ ଟଙ୍କା ବାଦ ଦେଲେ ସେ ବର୍ଷର ଶେଷକୁ ନିଟ୍ ନିଅଣ୍ଟ ଥିଲା 12କୋଟି 8ଲକ୍ଷ ଟଙ୍କା।

## 1976-77 ସଂଶୋଧିତ ଅଟକଳ

୯। ମୋଟ୍ 16କୋଟି 3ଲକ୍ଷ ଟଙ୍କା ନିଅଣ୍ଟରେ ଆରମ୍ଭ ହୋଇଥିବା ଚଳିତ ଆର୍ଥିକ ବର୍ଷର ସଂଶୋଧିତ ଅଟକଳ ମୁଁ ବର୍ତ୍ତମାନ ଆପଣମାନଙ୍କ ସମ୍ମୁଖରେ ଉପସ୍ଥାପିତ କରୁଛି।

୧୦। ବଜେଟରେ ରାଜସ୍ୱ ସମ୍ବନ୍ଧୀୟ ଆୟ 311କୋଟି 35ଲକ୍ଷ ଟଙ୍କା ଅଟକଳ କରାଯାଇଥିଲା ମାତ୍ର ସବିସ୍ତାର ଅନୁମିତ ହେବାରୁ ସଂଶୋଧିତ ଅଟକଳରେ 16କୋଟି 83ଲକ୍ଷ ଟଙ୍କା ଅଧିକ ହୋଇଛି। ଖର୍ଚ୍ଚ ଦିଗରେ ଆମେ ମୋଟ 308କୋଟି 83ଲକ୍ଷ

ଟଙ୍କାର ସୁଦ୍ଧା ବ୍ୟୟ ବରାଦ କରିଥିଲେ । ସଂଶୋଧିତ ବ୍ୟୟ 316କୋଟି 53ଲକ୍ଷ ଟଙ୍କା ଅଟକଳ କରାଯାଇଛି । ଅର୍ଥାତ୍ ଖର୍ଚ୍ଚ ବାବଦରେ 7କୋଟି 70ଲକ୍ଷ ଟଙ୍କା ଅଧିକ ଅଟକଳ କରାଯାଇଛି ।

୧୧ । ସଂଶୋଧିତ କ୍ୟାପିଟାଲ୍, ହିସାବ ଅଟକଳରେ ଆୟ 99କୋଟି 68ଲକ୍ଷ ଟଙ୍କା ବଢ଼ିଛି ଏବଂ ଅପର ପକ୍ଷରେ ବର୍ଦ୍ଧିତ ବ୍ୟୟ ବ୍ୟବସ୍ଥା 102କୋଟି 25ଲକ୍ଷ ଟଙ୍କା ରଖାଯାଇଛି । ମୁଖ୍ୟତଃ ଓଭର ଡ୍ରାଫ୍ଟ ପରିଶୋଧ, କାମ ଚଳାଇ ନେବାପାଇଁ ଅଗ୍ରିମ ଓ ଖାଦ୍ୟ ଶସ୍ୟ ସଂଗ୍ରହ ପାଇଁ ଷ୍ଟେଟ ବ୍ୟାଙ୍କ୍ ଅଫ ଇଣ୍ଡିଆରୁ ଆଣାଯାଇଥିବା ନଗଦ ଋଣ ଏଥିରେ ଅନ୍ତର୍ଭୁକ୍ତ ।

୧୨ । ଚଳିତ ବର୍ଷର ପ୍ରାରମ୍ଭରେ ରାଜ୍ୟ ଯୋଜନା ବାବଦରେ ଅନୁମୋଦିତ ଖର୍ଚ୍ଚ 124କୋଟି 67ଲକ୍ଷ ଟଙ୍କା ଧାର୍ଯ୍ୟ କରାଯାଇଥିଲା । କେନ୍ଦ୍ରୀୟ ଯୋଜନାଗୁଡ଼ିକର କାର୍ଯ୍ୟ ତ୍ୱରାନ୍ୱିତ କରିବା ନିମନ୍ତେ ଉକ୍ତ ଅଟକଳରେ ଅଧିକ 2କୋଟି ଟଙ୍କା ନିଆ ଯାଇଥିଲା । ତାହା ପରେ ମରୁଡ଼ି ସାହାଯ୍ୟ ସଂକ୍ରାନ୍ତ ଆବଶ୍ୟକତା ତୁଲାଇବା ପାଇଁ ରାଜ୍ୟ ସରକାରଙ୍କୁ ସକ୍ଷମ କରିବା ନିମନ୍ତେ ଭାରତ ସରକାର 5କୋଟି 10ଲକ୍ଷ ଟଙ୍କା ଅଗ୍ରିମ ଯୋଜନା ସାହାଯ୍ୟର ବ୍ୟବସ୍ଥା କରିବାକୁ ରାଜି ହୋଇଥିଲେ । ତେଣୁ ବର୍ତ୍ତମାନ ରାଜ୍ୟ ଯୋଜନା ବାବଦରେ ସଂଶୋଧିତ ଖର୍ଚ୍ଚ 131କୋଟି 77ଲକ୍ଷ ଟଙ୍କା ହେବ ବୋଲି ଅଟକଳ କରାଯାଇଛି ।

୧୩ । ପବ୍ଲିକ ଏକାଉଣ୍ଟସର ଜମା ପରିମାଣ ପୂର୍ବାଣ ଟଙ୍କାଠାରୁ 28କୋଟି 36ଲକ୍ଷ ଟଙ୍କା ଅଧିକ ହେବ ବୋଲି ମୂଳ ଅଟକଳରେ ଦର୍ଶାଯାଇଥିଲା । ଭବିଷ୍ୟନିଧି ଏବଂ ସ୍ୱାୟତ୍ତ ଶାସନ ସଂସ୍ଥାଗୁଡ଼ିକର ଜମା ହ୍ରାସ ହୋଇଥିଲେ ହେଁ ଟ୍ରେଜେରୀ ବିଲ୍ ଭଙ୍ଗାଯିବା ଦ୍ୱାରା ଏବଂ ଓଡ଼ିଶା ଖଣି କର୍ପୋରେସନଙ୍କ ନଗଦ ବଳକା ଧନ ଜମା ହେବାଯୋଗୁ ସଂଶୋଧିତ ଅଟକଳରେ ନିଟ୍ 80ଲକ୍ଷ ଟଙ୍କାର ଅଭିବୃଦ୍ଧି ଘଟିଛି ।

୧୪ । ମୋଟାମୋଟି କହିବାକୁ ଗଲେ, ଗତଓ ଏ ବର୍ଷର ବେଶିକମ ହିସାବରେ 8କୋଟି 30ଲକ୍ଷ ଟଙ୍କା ବଳକା ରହୁଛି, ତଥାପି ବର୍ଷର ଆରମ୍ଭରେ 16କୋଟି 3ଲକ୍ଷ ଟଙ୍କା ନିଅଣ୍ଟ ଭରଣ ହୋଇ ନଥିବାରୁ ଶେଷରେ ପ୍ରକୃତ ପକ୍ଷେ 7କୋଟି 73ଲକ୍ଷ ଟଙ୍କା ନିଅଣ୍ଟ ପଡ଼ିବ ।

## 1977-78 ପାଇଁ ବଜେଟ ଅଟକଳ

୧୫ । ବର୍ତ୍ତମାନ ମୁଁ ଏହି ଗୃହରେ 1977-78 ପାଇଁ ବଜେଟ ଅଟକଳର ସ୍ଥୂଳ ଚିତ୍ର ଉପସ୍ଥାପିତ କରୁଛି । ଚଳିତ ଆର୍ଥିକ ବର୍ଷ 7କୋଟି 73ଲକ୍ଷ ଟଙ୍କା ନିଅଣ୍ଟରେ ଶେଷ ହେବ ଏବଂ ଏହି ନିଅଣ୍ଟରେ 1977-78 ଆର୍ଥିକ ବର୍ଷ ଆରମ୍ଭ ହେବ । 1977-78 ଆର୍ଥିକ ବର୍ଷ ମଧ୍ୟରେ ସଂଗଠିତ ତହବିଲ ଓ ପବ୍ଲିକ ଏକାଉଣ୍ଟସ୍‌ରେ ନେଣଦେଣ କାରବାର ଫଳରେ 7କୋଟି 75ଲକ୍ଷ ଟଙ୍କା ବଳକା ହେବାର ଆଶା କରାଯାଏ । ତେଣୁ ବର୍ଷ ଶେଷକୁ ମାତ୍ର 2ଲକ୍ଷ ଟଙ୍କା ବଳକା ହେବ ବୋଲି ଅଟକଳ କରାଯାଇଛି ।

୧୬ । ବଜେଟ୍‌ରେ 276କୋଟି 8ଲକ୍ଷ ଟଙ୍କା ଅଣ-ଯୋଜନା ରାଜସ୍ୱ ସମ୍ବନ୍ଧୀୟ ଖର୍ଚ୍ଚ ହେବବୋଲି ବ୍ୟବସ୍ଥା କରାଯାଇଛି । ଏହି ଖର୍ଚ୍ଚ 1976-77ର ସଂଶୋଧିତ ଅଟକଳଠାରୁ ଶତକଡ଼ା ମାତ୍ର 4·8 ଅଧିକ । ଯୋଜନା ପାଇଁ ଅର୍ଥ ବ୍ୟବସ୍ଥା କରିବା ନିମନ୍ତେ ସମ୍ବଳ ସଞ୍ଚୟ ଉଦ୍ଦେଶ୍ୟରେ ଖର୍ଚ୍ଚ ଉପରେ କଠୋର ନିୟନ୍ତ୍ରଣ ଜାରି କରି ଉକ୍ତ ଅଧିକ ଖର୍ଚ୍ଚ ତୁଳାଇବାକୁ ହେବ । ତଥାପି ଏହା କରିବା ସଙ୍ଗେ ସଙ୍ଗେ ଯେଉଁ କ୍ଷେତ୍ରରେ ଅଧିକତର, ନ୍ୟାଯ୍ୟ ଆବଶ୍ୟକତା ତୁଳାଇବା, ପ୍ରଶାସନିକ ଦକ୍ଷତା ଅକ୍ଷୁର୍ଣ୍ଣ ରଖିବା ଓ ଅବଶ୍ୟମ୍ଭାବୀ ଖର୍ଚ୍ଚଗୁଡ଼ିକ ସ୍ଥଗିତ ନ ରଖିବା ପାଇଁ ନିଶ୍ଚିତ ବ୍ୟବସ୍ଥା ପରିବାକୁ ମୁଁ ଚେଷ୍ଟା କରିଛି । ଅଣ-ଯୋଜନା କ୍ୟାପିଟାଲ ଏକାଉଣ୍ଟ ବାବଦରେ 95·95କୋଟି ଟଙ୍କାର ବ୍ୟୟ ଅଟକଳ କରାଯାଇଛି । ଏହା 1976-77ର ସଂଶୋଧିତ ଅଟକଳଠାରୁ ଯଥେଷ୍ଟ କମ୍ । ଦୈନନ୍ଦିନ କାର୍ଯ୍ୟରେ ନଗଦ ଖର୍ଚ୍ଚ ବ୍ୟବସ୍ଥାକୁ ଅଧିକ ଦକ୍ଷତାର ସହିତ ପରିଚାଳନା କରିବା ଦ୍ୱାରା ଉପାୟ ଉପକରଣ ବାବଦ ନେଣଦେଣରେ ହ୍ରାସ ଘଟିବାର ସମ୍ଭାବନା ହିଁ ମୁଖ୍ୟତଃ ଏହାର କାରଣ ।

୧୭ । ରାଜ୍ୟର ୧୯୭୭-୭୮ ମସିହା ବାର୍ଷିକ ଯୋଜନା ବ୍ୟୟ ଅଟକଳ ୫୦ କୋଟି ଟଙ୍କାରେ ନିର୍ଦ୍ଧାରିତ କରାଯାଇଛି । ଏଥିରୁ ରାଜ୍ୟ ସରକାରଙ୍କ ବଜେଟରେ ପ୍ରାୟ ୧୬ କୋଟି ରଖାଯାଇ ଅବଶିଷ୍ଟ ପ୍ରାୟ ୩୦ କୋଟି ଟଙ୍କାର ବ୍ୟୟ ବରାଦ ସଂଗଠିତ ପାଣ୍ଠି ବାହାରେ ସରକାରୀ ଉଦ୍ୟୋଗ ଓ ପୌରସଂସ୍ଥାମାନଙ୍କ ବଜେଟରେ କରାହୋଇଛି । ବଜେଟରେ ଯୋଜନା ବାବଦ ଧାର୍ଯ୍ୟ ବ୍ୟୟର ପ୍ରାୟ ଶତକଡ଼ା ୬୩·୫ ଭାଗ କ୍ୟାପିଟାଲ ଏକାଉଣ୍ଟ ଏବଂ ଅବଶିଷ୍ଟ ରେଭିନିଉ ଏକାଉଣ୍ଟ ବାବଦରେ ବ୍ୟବସ୍ଥା କରା ଯାଇଅଛି । ୧୯୭୭-୭୮ ବାର୍ଷିକ ଯୋଜନା ଖର୍ଚ୍ଚ ବାବଦରେ ଧାର୍ଯ୍ୟ ହୋଇଥିବା ୧୫୦ କୋଟି ଟଙ୍କା ଚଳିତ ବର୍ଷର ମୂଳ

ଯୋଜନା ବ୍ୟୟ ବରାଦଠାରୁ ଶତକଡ଼ା ୨୦ ଭାଗ ଅଧିକ । ଏହା ସତ୍ତ୍ୱେ ଯୋଜନା କାର୍ଯ୍ୟକ୍ରମର ଅଗ୍ରଗତି ଏବଂ ସମ୍ବଳକୁ ଭିତ୍ତିକରି ମଧ୍ୟବର୍ତ୍ତୀକାଳୀନ ସମୀକ୍ଷା ବେଳକୁ ଯୋଜନା ବାବଦ ଖର୍ଚ୍ଚ ବୃଦ୍ଧିପାଇବାର ଆଶା କରାଯାଏ । ଯୋଜନାଗତ ବ୍ୟୟର ୧୫୦ କୋଟି ଟଙ୍କା ନିମ୍ନୋକ୍ତମତେ ବିଭିନ୍ନ ବିଭାଗରେ ଭାଗ କରାଯାଇ ଅଛି :

(ଟଙ୍କା କୋଟି ହିସାବରେ)

| | |
|---|---|
| କୃଷି ଓ ଆନୁଷଙ୍ଗିକ ସେବା | ୨୪·୯୩ |
| ସମବାୟ | ୪·୭୪ |
| ଜଳସେଚନ ଓ ବିଦ୍ୟୁତ୍ | ୮୫·୦୭ |
| ଶିଳ୍ପ ଓ ଖଣି | ୪·୩୪ |
| ପରିବହନ ଓ ଯୋଗାଯୋଗ | ୬·୮୦ |
| ସମାଜ ସେବା | ୨୧·୬୫ |
| ବିବିଧ ... | ୧·୩୭ |
| ମୋଟ | ୧୫୦·୦୦ |

ଅଧିକନ୍ତୁ ଆଦିବାସୀ ଉପଯୋଜନା କାର୍ଯ୍ୟକ୍ରମ ପାଇଁ ୭ କୋଟି ୭୩ ଲକ୍ଷ ଟଙ୍କାର ବ୍ୟୟ ବରାଦ ମଧ୍ୟ ରାଜ୍ୟ ଯୋଜନା ଖର୍ଚ୍ଚର ପରିସରଭୁକ୍ତ ଅଟେ । ଏଥିପାଇଁ କେନ୍ଦ୍ର ସରକାରଙ୍କଠାରୁ ସ୍ୱତନ୍ତ୍ର ସାହାଯ୍ୟ ମିଳିବ ।

୧୮ । ଏହା ବ୍ୟତୀତ ବଜେଟରେ କେନ୍ଦ୍ରୀୟ ଯୋଜନା, କେନ୍ଦ୍ରୀୟ ପରିପୁଷ୍ଟ ପ୍ରବର୍ତ୍ତିତ ଯୋଜନା ଓ ସ୍ୱତନ୍ତ୍ର ଅଣ-ଯୋଜନା କାର୍ଯ୍ୟକ୍ରମ ବାବଦକୁ ୩୨ କୋଟି ୯୫ ଲକ୍ଷ ଟଙ୍କାର ବ୍ୟୟ ବରାଦ କରାଯାଇଛି । ଏହି ବ୍ୟୟବରାଦର ମୁଖ୍ୟ ଅଂଶ କେନ୍ଦ୍ର ସରକାରଙ୍କଠାରୁ ସାହାଯ୍ୟ ଆକାରରେ ମିଳୁଥିବାରୁ ଏହାର ପ୍ରଭାବ ରାଜ୍ୟ ସରକାରଙ୍କ ସମ୍ବଳ ଉପରେ କଥିତ ମାତ୍ର ।

୧୯ । ସଂଗଠିତ ପାର୍ଣ୍ଣିରୁ ଟଙ୍କା କୋଟି ୧୩ ଲକ୍ଷ ଟଙ୍କା ବ୍ୟୟ ନିମନ୍ତେ ଅର୍ଥ ବ୍ୟବସ୍ଥା କରିବା ଉଦ୍ଦେଶ୍ୟରେ ମୋଟ ରାଜସ୍ୱ ଓ ମୂଳଧନ ଆୟ ବାବଦରୁ ମୁଁ ୫୧୨ କୋଟି ୧୩ ଲକ୍ଷ ଟଙ୍କାରେ ଅଟକଳ ଧାର୍ଯ୍ୟ କରିଛି । ଏଥିରେ ଆସନ୍ତା ବର୍ଷ ଆରମ୍ଭ ସମୟରେ ନିଅଣ୍ଟ ଭରଣା ବାବଦକୁ ଭାରତ ସରକାରଙ୍କ ଠାରୁ ୭ କୋଟି ୭୫ ଲକ୍ଷ ଟଙ୍କାର ଯେଉଁ ସ୍ୱତନ୍ତ୍ର ସାହାଯ୍ୟର ସମ୍ଭାବନା ରହିଛି, ତାହା ଅନ୍ତର୍ଭୁକ୍ତ । ଏହି ଅଟକଳ କରିବାରେ ରାଜ୍ୟର ଟିକସ ଓ ଅଣ-ଟିକସ ରାଜସ୍ୱ ଯଥାକ୍ରମେ ଆନୁମାନିକ ଶତକଡ଼ା ୧୧ ଭାଗ ଓ ୯ ଭାଗ ବୃଦ୍ଧି ପାଇବ ବୋଲି ମୁଁ ଅଟକଳ କରୁଛି । ଯୋଜନା କମିଶନଙ୍କ ସହିତ ଆଲୋଚନାରୁ ମିଳିଥିବା ଆଭାସ ଅନୁଯାୟୀ କେନ୍ଦ୍ରୀୟ ଟିକସରୁ ରାଜ୍ୟର ପ୍ରାପ୍ୟ ଅଂଶ, କେନ୍ଦ୍ର ସରକାରଙ୍କଠାରୁ ନିର୍ଦ୍ଧାରିତ ପ୍ରାପ୍ୟ ଗ୍ରାଣ୍ଟ-ଇନ୍-ଏଡ଼ ଓ ରାଜ୍ୟ ଯୋଜନା ଖର୍ଚ୍ଚ ବାବଦକୁ କେନ୍ଦ୍ରୀୟ ସାହାଯ୍ୟ ପରିମାଣ ମୁଁ ହିସାବକୁ ନେଇଛି । ପବ୍ଲିକ ଏକାଉଣ୍ଟ ବାବଦରେ ୧୯ କୋଟି ୭୫ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ନିଟ୍ ବଳକା ରହିବାର ଅଟକଳ କରାଯାଇଛି ।

୨୦ । ଏହା ସତ୍ତ୍ୱେ ୧୫୯ କୋଟି ଟଙ୍କା ବ୍ୟୟ ସମ୍ବଳିତ ଯୋଜନା ନିମନ୍ତେ ଅର୍ଥର ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ଉନ୍ନୟନ କାର୍ଯ୍ୟକ୍ରମ ଯେପରି ବ୍ୟାହତ ନହୁଏ, ସେଥି ସହାଯ୍ୟେ ଅତିରିକ୍ତ ସମ୍ବଳ ସଂଗ୍ରହ ବ୍ୟବସ୍ଥାମାନ କାର୍ଯ୍ୟକାରୀ କରି ନିଅଣ୍ଟ ପଡ଼ୁଥିବା ୯ କୋଟି ଟଙ୍କା ଭରଣା କରିବାକୁ ପଡ଼ିବ । ତେଣୁ ନିମ୍ନଲିଖିତ ସୂତ୍ରରୁ ଅତିରିକ୍ତ ସମ୍ବଳ ସୃଷ୍ଟି କରିବା ନିମନ୍ତେ ମୁଁ ପ୍ରସ୍ତାବ ଆଗତ କରୁଛି :

(କୋଟି ଟଙ୍କା ହିସାବରେ)

| | |
|---|---|
| ବର୍ତ୍ତ କର | ୨·୦୦ |
| ବିଦ୍ୟୁତ୍ ଶୁଳ୍କ/ଟାରିଫ୍ | ୨·୯୦ |
| ଜଙ୍ଗଲ ରାଜସ୍ୱ | ୨·୦୦ |
| ଖଣି ରୟାଲଟି | ୨·०० |
| ପୋଲ ମାସୁଲ | ०·୭୫ |
| ଜଳ କର | ०·୩୫ |
| ମୋଟ | ୯·୦୦ |

ମାନ୍ୟବର ସଭ୍ୟମାନେ ଲକ୍ଷ୍ୟ କରିବେ ଯେ ଅତିରିକ୍ତ ସମ୍ବଳ ସଂଗ୍ରହ ପାଇଁ ଅଣା ଯାଇଥିବା ପ୍ରସ୍ତାବମାନ ଅଣ-ଟିକସ କ୍ଷେତ୍ରରେ ଉଦ୍‌ବୃତ୍ତ ଆୟରୁ ସଂଗ୍ରହ କରାଯାଇଥିବାରୁ ସାଧାରଣ ଲୋକଙ୍କ ଉପରେ ଏହାର ଭାର ପଡ଼ିବାର ସମ୍ଭାବନା ନାହିଁ । ମିତବ୍ୟୟିତା, କାର୍ଯ୍ୟ ପରିଚାଳନା ଓ ଅସୁଲ କ୍ଷେତ୍ରରେ ଦକ୍ଷତା ଏବଂ କର ହାର ବୃଦ୍ଧି ପ୍ରଭୃତି ବ୍ୟବସ୍ଥାଗୁଡ଼ିକ ଅତିରିକ୍ତ ସମ୍ବଳ ଉଠାଇବା ଦିଗରେ ସହାୟକ ହୋଇଥିବା ହେତୁ ଏହି ଲକ୍ଷ ହାସଲ କରିବା ସମ୍ଭବପର ହେବ ବୋଲି ଆମେ ବିଶ୍ୱାସ କରୁଛୁ । ଅତିରିକ୍ତ ସମ୍ବଳ ସଂଗ୍ରହ ଦିଗରେ ଉପଯୁକ୍ତ ପ୍ରସ୍ତାବଗୁଡ଼ିକୁ କାର୍ଯ୍ୟକାରୀ କରିବା ନିମନ୍ତେ ମୁଁ ମାନ୍ୟବର ସଭ୍ୟମାନଙ୍କର ସହଯୋଗ କାମନା କରୁଛି । ବର୍ତ୍ତମାନ ପ୍ରଚଳିତ କୃଷି ଆୟକରରୁ ଆମର ଆୟ ଅତି ନଗଣ୍ୟ ଏବଂ ଏହି ଆୟ ଭୂ-ସଂସ୍କାର ବ୍ୟବସ୍ଥା ଯୋଗୁ କ୍ରମଶଃ ହ୍ରାସ ପାଉଛି । କିନ୍ତୁ ଏହି କର ଆଦାୟ ଧାର୍ଯ୍ୟକାରୀ କରିବା ପକ୍ଷରେ ବିଶେଷ ଫଳପ୍ରଦ ନ ହେବା ସଙ୍ଗେ ସଙ୍ଗେ କରଦାତାମାନଙ୍କ ପାଇଁ ଏକ ପରିହାର୍ଯ୍ୟ ସମସ୍ୟାରେ ହେତୁ ହୋଇପଡ଼ିଛି । ଏହା କୌଣସି ବାସ୍ତବ ସାମାଜିକ ଲକ୍ଷ୍ୟ ସାଧନ କରୁନାହିଁ । ତେଣୁ ମୁଁ ଏହି କର ସମ୍ବନ୍ଧରେ ଏକ ବ୍ୟାପକ ପୁନର୍ବିଚାର କରିବାପାଇଁ ପ୍ରସ୍ତାବ ରଖୁଛି ।

## ଉନ୍ନୟନ ବ୍ୟବସ୍ଥା

୨୧ । ନିରବଚ୍ଛିନ୍ନ ଅଭିବୃଦ୍ଧି ନିମନ୍ତେ କୃଷି-ଅର୍ଥନୀତିକୁ ସୁଦୃଢ଼ କରିବା ଏବଂ ତତ୍‌ସଂଲଗ୍ନ କାର୍ଯ୍ୟର ବିକାଶ ଘଟାଇବା ହେଉଛି ଆମର ଏକ ସ୍ଥିର ଘୋଷିତ ନୀତି । ଏଣୁ ଆମର ଉନ୍ନୟନ ବ୍ୟବସ୍ଥାରେ ଅଧିକରୁ ଅଧିକ ଅଞ୍ଚଳକୁ ଜଳସେଚନ, ବିଦ୍ୟୁତ୍ ସମ୍ବଳର ବିକାଶ ଏବଂ ଗ୍ରାମ୍ୟ କୁଟିର ଓ କୃଷିଭିତ୍ତିକ ଶିଳ୍ପ ନିମନ୍ତେ ଏହାର ସଂପ୍ରସାରଣ, ବନ୍ୟା ପ୍ରକୋପରୁ ଉତ୍କୃଷ୍ଟ କୃଷି କ୍ଷେତ୍ରଗୁଡ଼ିକର ସୁରକ୍ଷା, ଜଳ ସଦୁପଯୋଗ, ବୈଜ୍ଞାନିକ ପଦ୍ଧତିରେ କୃଷି ଏବଂ ମୃତ୍ତିକା ସଂରକ୍ଷଣ କୌଶଳ ସମ୍ପର୍କରେ କୃଷକମାନଙ୍କୁ ଶିକ୍ଷା ଏବଂ କୃଷକମାନଙ୍କର ଋଣ ଗ୍ରହଣ ମେଣ୍ଟାଇବା ନିମନ୍ତେ ସମବାୟ ଅନୁଷ୍ଠାନମାନଙ୍କୁ ସୁଦୃଢ଼ କରିବା ଉପରେ ଅଗ୍ରାଧିକାର ଦିଆଯାଇଛି । ଅଗ୍ରାଧିକାରଭିତ୍ତିରେ ସାମାଜିକ ଏବଂ ଗୋଷ୍ଠୀ ଉନ୍ନୟନ ସେବା, ବିଶେଷତଃ ଅନୁନ୍ନତ ଶ୍ରେଣୀର କଲ୍ୟାଣ, ମୌଳିକ ଶିକ୍ଷା, ପାନୀୟ ଜଳଯୋଗାଣ ପ୍ରଭୃତି ବିଷୟଗୁଡ଼ିକ ଦ୍ୱିତୀୟ ସ୍ଥାନ ଦିଆଯାଇଛି । ରାଜ୍ୟର ଉନ୍ନୟନ ବ୍ୟବସ୍ଥାରେ ପରିବହନ ଓ ଯୋଗାଯୋଗ, ଶିଳ୍ପ ଓ ଖଣିଜ ବିକାଶର ଯଥେଷ୍ଟ ଗୁରୁତ୍ୱ ରହିଛି । ରାଜ୍ୟର କେତେକ ପ୍ରଧାନ ପ୍ରଧାନ କ୍ଷେତ୍ରରେ ଘଟିଥିବା ଅଗ୍ରଗତି ସମ୍ପର୍କରେ ଏକ ମୋଟାମୋଟି ଟିପ୍ପଣୀ ମୁଁ ବର୍ତ୍ତମାନ ଗୃହ ସମ୍ମୁଖରେ ଉପସ୍ଥାପନ କରିବାକୁ ଚାହେଁ ।

୬୨. ଚଳିତ ଯୋଜନାର 1977-78 ଆର୍ଥିକ ବର୍ଷ ଶେଷ ସୁଦ୍ଧା ବୃହତ୍, ମଧ୍ୟମ ଓ କ୍ଷୁଦ୍ର ଜଳସେଚନ ବ୍ୟବସ୍ଥାପାଇଁ ବ୍ୟୟ ବରାଦ 117 କୋଟି ଟଙ୍କାରୁ ଅଧିକ ହେବ । ପଞ୍ଚମ ଯୋଜନାର ପ୍ରାରମ୍ଭରେ ଆମର ବାର୍ଷିକ ଜଳସେଚନ ସାମର୍ଥ୍ୟ 10 ଲକ୍ଷ 23 ହଜାର ହେକ୍ଟର ଥିଲା । ଚଳିତ ବର୍ଷରେ ଏହା 12 ଲକ୍ଷ 20 ହଜାର ହେକ୍ଟରକୁ ବୃଦ୍ଧି ପାଇଛି ଏବଂ 1977-78 ଆର୍ଥିକ ବର୍ଷରେ ଏହା 12 ଲକ୍ଷ 83 ହଜାରକୁ ବୃଦ୍ଧି ପାଇବ । ପଞ୍ଚମ ଯୋଜନା ଆରମ୍ଭରେ ରବି ଜଳସେଚନ ବ୍ୟବସ୍ଥା ବାର୍ଷିକ ସେଚ ସାମର୍ଥ୍ୟର ଶତକଡ଼ା 24 ଭାଗ ଥିଲା । ଉପରୋକ୍ତ କାଳ ମଧ୍ୟରେ ଏହା ଶତକଡ଼ା 29 ଭାଗକୁ ବୃଦ୍ଧି ପାଇଥିବା ନିଶ୍ଚୟ ଏକ ଉଲ୍ଲେଖଯୋଗ୍ୟ ସଫଳତା । 1976-77 ମସିହାରେ ମରୁଡ଼ି ସାହାଯ୍ୟ ଉଦ୍ଦେଶ୍ୟରେ ପଞ୍ଚାୟତ ସମିତିମାନଙ୍କୁ ଅକାମୀ ହୋଇପଡ଼ିଥିବା କ୍ଷୁଦ୍ର ଜଳସେଚନ ଯୋଜନାଗୁଡ଼ିକର କାର୍ଯ୍ୟୋପଯୋଗୀ ପୁନରୁଦ୍ଧାର ପାଇଁ ଯେଉଁ ଅର୍ଥ ସାହାଯ୍ୟ ଦିଆଯାଇଛି, ତାହାର ଉପରୋକ୍ତ ବିନିଯୋଗ ରାଜ୍ୟର ଜଳସେଚନ ସାମର୍ଥ୍ୟକୁ ଆହୁରି ବଢ଼ାଇ ଦେବ ।

୬୩. ରାଜ୍ୟରେ ପ୍ରାୟ 5 ଲକ୍ଷ ସେଚ କୂପର ସମ୍ଭାବନା ରହିଛି ବୋଲି ଭୂତଳ ଜଳ ସର୍ଭେରୁ ଜଣାଯାଇଛି । 1976 ଜୁନ୍ ସୁଦ୍ଧା 1 ଲକ୍ଷ 15 ହଜାର ସେଚକୂପ ଖନନ କରାଯାଇଥିଲା । 1976-77 ସମବାୟ ବର୍ଷ ମଧ୍ୟରେ ଅଧିକ 60 ହଜାର କୂପ ଖନନପାଇଁ ବ୍ୟବସ୍ଥା କରାଯାଇଛି । ଏତଦ୍ୱାରା ସେଚ କୂପର ମୋଟ ସଂଖ୍ୟା ବୃଦ୍ଧି ପାଇବ ।

୬୪. 1977 ଜାନୁଆରୀ ପ୍ରଥମାର୍ଦ୍ଧ ସୁଦ୍ଧା 2,417ଟି ଉଠା ଜଳସେଚନ ଯୋଜନା ବ୍ୟବସ୍ଥାକୁ ଚାଲୁ କରାଯାଇ ପ୍ରାୟ 85,040 ହେକ୍ଟର ଜମିପାଇଁ ଜଳସେଚନ ବ୍ୟବସ୍ଥା କରାଯାଇଛି । ବର୍ତ୍ତମାନ ପମ୍ପ ବସାଇବା ପାଇଁ ବ୍ୟକ୍ତିବିଶେଷ ଓ ସମବାୟ ସଂସ୍ଥାମାନଙ୍କୁ ଆଇ. ଟି. ଡି. ପି., ଟି. ଡି. ଏ., ଏସ୍. ଏଫ୍. ଡି. ଏ. ପ୍ରଭୃତି ବିଶେଷ ସଂସ୍ଥା ମାଧ୍ୟମରେ ଯଥେଷ୍ଟ ଅର୍ଥ ସାହାଯ୍ୟ ଦେବାର ବ୍ୟବସ୍ଥା ରହିଛି । ଏହି ବିଶେଷ ସଂସ୍ଥାମାନଙ୍କ ପରିସର ବହିର୍ଭୂତ ଅଞ୍ଚଳମାନଙ୍କୁ ମଧ୍ୟ ଉକ୍ତ ସାହାଯ୍ୟର ସଂପ୍ରସାରଣ ବିଷୟରେ ସରକାର ଅନୁଧ୍ୟାନ କରୁଛନ୍ତି ।

## ବନ୍ୟା ନିୟନ୍ତ୍ରଣ

୧୫ । ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାଗୁଡ଼ିକର 6 ଲକ୍ଷ 88 ହଜାର ହେକ୍ଟର ଜମିରେ ବନ୍ୟାଜନିତ ଗୁରୁତର କ୍ଷୟକ୍ଷତି ଘଟିଥାଏ । ଏପରିକି ସାଧାରଣ ବନ୍ୟା ଦେଖାଦେଲେବି ଖାଦ୍ୟଶସ୍ୟ ଉତ୍ପାଦନ ନଷ୍ଟ ହେବା ସଙ୍ଗେ ସଙ୍ଗେ ନଦୀ କୂଳବର୍ତ୍ତୀ ବାସିନ୍ଦାଙ୍କ ପାଇଁ ଦୁଃଖ ଦୁର୍ଦ୍ଦଶା ସୃଷ୍ଟି ହୁଏ । କେନ୍ଦ୍ର ରାଜ୍ୟ ସରକାର ବନ୍ୟା ନିୟନ୍ତ୍ରଣ ବ୍ୟବସ୍ଥା ଉପରେ ଯଥେଷ୍ଟ ଗୁରୁତ୍ୱ ଦେଉଛନ୍ତି ଏବଂ ଏଥିନିମନ୍ତେ ବଡ ବଡ଼ ନଦୀର ଅବବାହିକାରେ ଥିବା ଜମିଗୁଡ଼ିକ ବନ୍ୟା ପ୍ରକୋପରୁ ରକ୍ଷା କରିବାପାଇଁ ବ୍ୟାପକ କାର୍ଯ୍ୟକ୍ରମ ପ୍ରସ୍ତୁତ କରିଛନ୍ତି ।

୧୬ । ଏପର୍ଯ୍ୟନ୍ତ 110 କିଲୋମିଟର ନଦୀବନ୍ଧ, ବନ୍ୟା ଜଳ ଖଲାସ ନିମନ୍ତେ 4 କିଲୋମିଟର ବ୍ୟାପୀ କେନାଲ, କୃଷି ଜମିକୁ ଲୁଣି ପାଣିରୁ ରକ୍ଷା କରିବା ନିମନ୍ତେ 3 କିଲୋମିଟର ଦୀର୍ଘ ଲୁଣାବନ୍ଧ ନିର୍ମାଣ କରାଯିବା ସଙ୍ଗେ ସଙ୍ଗେ ସେ ସବୁକୁ ଆହୁରି ମଜଭୁତ କରାଯାଇଛି । ଏହାଛଡ଼ା 11ଟି ସହରର ସୁରକ୍ଷା ନିମନ୍ତେ ଉପଯୁକ୍ତ ବ୍ୟବସ୍ଥା କରାଯାଇଛି । ଆସନ୍ତା ବର୍ଷ 60 କିଲୋମିଟର ନଦୀବନ୍ଧ, 4 କିଲୋମିଟର ବନ୍ୟା ଜଳ ନିଷ୍କାସନ କେନାଲ, 2 କିଲୋମିଟର ଲୁଣାବନ୍ଧ ନିର୍ମାଣ କରାଯିବା ସଙ୍ଗେ ସଙ୍ଗେ ବନ୍ୟା ଦାଉରୁ ଗୋଟିଏ ସହରକୁ ରକ୍ଷା କରିବା ଲାଗି କାର୍ଯ୍ୟକ୍ରମ ରହିଛି । 35 ହଜାର ହେକ୍ଟର ପରିମିତ ମୂଲ୍ୟବାନ କୃଷି ଜମିର ସୁରକ୍ଷା କରାଯାଇଛି । ଆଗାମୀ ଆର୍ଥିକବର୍ଷ ଶେଷସୁଦ୍ଧା 55 ହଜାର ହେକ୍ଟର କୃଷି ଜମି ସୁରକ୍ଷିତ କରିବାପାଇଁ ଆମେ ପ୍ରସ୍ତାବ ରଖିଛୁ ।

## ବିଦ୍ୟୁତ୍ ଉତ୍ପାଦନ ଓ ବଣ୍ଟନ

୧୭ । ୧୯୭୭-୭୮ରେ ବିଦ୍ୟୁତ୍ ଉତ୍ପାଦନ ଓ ବଣ୍ଟନ ବାବଦରେ ୫୮.୮୧ କୋଟି ଟଙ୍କା ବ୍ୟୟ ଅଟକଳ ଫଳରେ ଚଳିତ ଯୋଜନାର ଏ ବାବଦ ବ୍ୟୟ ଅଟକଳ ୧୭୯.୮୩ କୋଟି ଟଙ୍କାରେ ପହଞ୍ଚିବ । ଓଡ଼ିଶା ରାଜ୍ୟ ବିଦ୍ୟୁତ୍ ବୋର୍ଡ଼ ଦ୍ୱାରା ଖଟାଯାଇଥିବା ୮୫.୮୩ କୋଟି ଟଙ୍କା ଏହାର ଅନ୍ତର୍ଭୁକ୍ତ । ୧୯୭୭ ଜୁଲାଇରେ ଆମର ପ୍ରତିଷ୍ଠିତ ମୋଟ ବିଦ୍ୟୁତ୍ ଉତ୍ପାଦନ ସାମର୍ଥ୍ୟ ଥିଲା ୮୭୧.୫ ମେଗାଓ୍ୱାଟ । ଯୋଜନା କାଳ ମଧ୍ୟରେ ବାଲିମେଳା ବିଦ୍ୟୁତ୍ ଯୋଜନାର ଷଷ୍ଠ ୟୁନିଟ୍ ସାଙ୍ଗକୁ ତାଳଚେର ତାପଜ ବିଦ୍ୟୁତ୍ ସଂପ୍ରସାରଣ ପରିକଳ୍ପନାର ପ୍ରଥମ ୟୁନିଟ ସଂପୃକ୍ତ ହେଲେ ବିଦ୍ୟୁତ୍ ଉତ୍ପାଦନ ସାମର୍ଥ୍ୟ ଆହୁରି ୧୭୦ ମେଗାଓ୍ୱାଟକୁ ବୃଦ୍ଧି ପାଇବ । ରେଙ୍ଗାଲି ବହୁମୁଖୀ ଯୋଜନାର ପ୍ରତ୍ୟେକ ୫୦ ମେଗାଓ୍ୱାଟ

ଶକ୍ତି ବିଶିଷ୍ଟ ଦୁଇଟି ଇଉନିଟ୍ ଏବଂ ଉପର କୋଲାବ ଜଳବିଦ୍ୟୁତ୍ ଯୋଜନାର ୮୦ ମେଗାୱାଟ ଶକ୍ତି ବିଶିଷ୍ଟ ୩ଟି ଇଉନିଟ୍‌ର ନିର୍ମାଣ କାର୍ଯ୍ୟ ଷଷ୍ଠ ଯୋଜନାରେ ସମ୍ପୂର୍ଣ୍ଣ ହେବ । ନିମ୍ନ କୋଲାବ, ନିମ୍ନ ମାଛକୁଣ୍ଡ, ବୃନ୍ଦାବଳଙ୍କ ଓ ରେଙ୍ଗାଲି ଆଦି ନୂତନ ବିଦ୍ୟୁତ୍ ପ୍ରକଳ୍ପ-ଗୁଡ଼ିକ ବୈଷୟିକ ଦୃଷ୍ଟି କୋଣରୁ ସମ୍ଭବପର କି ନୁହେଁ ଓ ଏଗୁଡ଼ିକ ଆର୍ଥିକ ଦିଗରୁ କେତେଦୂର ଲାଭପ୍ରଦ ସେ ସମ୍ପର୍କରେ ଅନୁଧ୍ୟାନ କରାଯାଉଛି । ଚଳିତ ଯୋଜନାକାଳ ଶେଷ ସୁଦ୍ଧା ଗ୍ରାମାଞ୍ଚଳ ବିଦ୍ୟୁତ୍‌କରଣ କାର୍ଯ୍ୟକ୍ରମ ଅନୁଯାୟୀ ୧୮,୮୦୦ ଗ୍ରାମ ଶତକଡ଼ା ୪୦ ଭାଗ ବସତିକୁ ବିଦ୍ୟୁତ୍‌ଶକ୍ତି ଯୋଗାଇ ଦିଆଯିବ ।

## କୃଷି ଓ ଆନୁଷଙ୍ଗିକ କାର୍ଯ୍ୟକ୍ରମ

୨୮ । ୧୯୭୭-୭୮ରେ ୧୩ କୋଟି ୮୦ ଲକ୍ଷ ଟଙ୍କାର ବ୍ୟୟ ବ୍ୟବସ୍ଥା କରାଯିବା ଫଳରେ କୃଷି ଉତ୍ପାଦନ, ମୃତ୍ତିକା ସଂରକ୍ଷଣ, କମାଣ୍ଡ ଏରିଆ ଓ ଆୟାକଟ୍ ଉନ୍ନୟନ ଏବଂ କୃଷି ଋଣ ଲଗାଣ ପରିକଳ୍ପନା ବାବଦ ମୋଟ ବ୍ୟୟ ଅଟକଳ ଚଳିତ ଯୋଜନା କାଳ ମଧ୍ୟରେ ୩୫ କୋଟି ୮୪ ଲକ୍ଷ ଟଙ୍କା ହେବ ।

୨୯ । ଜମିର ଉତ୍ପାଦନ ହାର ବୃଦ୍ଧି କରିବା ବିଶେଷକରି କ୍ଷୁଦ୍ର ତଥା ନାମମାତ୍ର ଚାଷୀଙ୍କ ଜମିରୁ ଅଧିକ ଫସଲ ଉତ୍ପନ୍ନ କରିବା ଏସବୁ କାର୍ଯ୍ୟକ୍ରମର ମୌଳିକ ଲକ୍ଷ୍ୟ । ଏହି ଲକ୍ଷ୍ୟ ହାସଲ ଉଦ୍ଦେଶ୍ୟରେ ଅଧିକରୁ ଅଧିକ ଜମିରେ ଅଧିକ ଅମଳକ୍ଷମ କିସମ ଫସଲ ଚାଷ ବ୍ୟାପକ କରିବା, ଯଥା ସମୟରେ ରାସାୟନିକ ଓ ଜୈବିକ ସାର ପ୍ରୟୋଗ କରିବା, ରୋଗ ଓ ପୋକ ନିୟନ୍ତ୍ରଣ ବ୍ୟବସ୍ଥା, ବୈଜ୍ଞାନିକ ପ୍ରଣାଳୀରେ ମୃତ୍ତିକା ଓ ଜଳ ଉପଯୋଗ ପଦ୍ଧତି ଅନୁସରଣ କରି ଯେତିକି ପରିମାଣରେ ଜଳ ମିଳୁଛି ତାହାର ଯଥାଯଥ ବିନିଯୋଗ କରିବା ଅଳ୍ପ ଦିନରେ ପାରୁଥିବା ଓ ମରୁଡ଼ି ସହି ପାରୁଥିବା ନୂଆ କିସମ ଖରିଫ ବିହନ ଚାଷ କରିବା ଓ ଚାଷୀମାନଙ୍କ ଜମିରେ ଏହାର ନମୁନା ଦେଖାଇ ନୂତନ ବୈଷୟିକ ପ୍ରଣାଳୀ ଓ ଉନ୍ନତ ବିହନ ପ୍ରଭୃତିର ଉତ୍କର୍ଷ ସମ୍ପର୍କରେ ଲୋକମାନଙ୍କ ମନରେ ବିଶ୍ୱାସ ଜନ୍ମାଇବା ପ୍ରଭୃତି କାର୍ଯ୍ୟକ୍ରମଗୁଡ଼ିକ ଗୋଟିଏ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନେଇ କାର୍ଯ୍ୟକାରୀ କରାଯିବ । ଆଦିବାସୀ-ଉପଯୋଜନା ଅଞ୍ଚଳର ଉଦ୍ୟାନକର୍ଷଣ କାର୍ଯ୍ୟକ୍ରମ ଉପରେ ବିଶେଷ ପ୍ରାଧାନ୍ୟ ଦିଆଯାଇଛି । କୃଷକ ଏବଂ କୃଷି ବିଶେଷଜ୍ଞ, ଅର୍ଥନୀତିଜ୍ଞ ତଥା ଗବେଷଣା ସଂସ୍ଥାଗୁଡ଼ିକ ମଧ୍ୟରେ ସମନ୍ୱୟ-ରକ୍ଷା କ୍ଷେତ୍ରରେ ଯେଉଁ ବ୍ୟବଧାନ ରହିଛି ତାହାକୁ ହ୍ରାସ କରିବା ନିମନ୍ତେ ଏକ ବ୍ୟାପକ ତାଲିମ ଓ ଉପଯୁକ୍ତ ସଂପ୍ରସାରଣ ସଂସ୍ଥା ଗଠନ କରାଯାଉଛି ।

## ସମବାୟ

୩୦ । ସପ୍ତମ ସମବାୟ ସମିତିଗୁଡ଼ିକ ଜରିଆରେ କୃଷି ଉତ୍ପାଦନ ପାଇଁ ପ୍ରାୟ ସମସ୍ତ ସ୍ୱଳ୍ପକାଳୀନ ଋଣ ଯୋଗାଇ ଦିଆଯାଉଛି । କ୍ଷୁଦ୍ର ଓ ନାମମାତ୍ର ଚାଷୀ ଯେପରି ବହୁ ସଂଖ୍ୟାରେ ପ୍ରାଥମିକ ସମବାୟ ସମିତିଗୁଡ଼ିକର ସଭ୍ୟ ହୋଇପାରିବେ ସେଥିନିମନ୍ତେ ଏକ ବ୍ୟାପକ ଅଭିଯାନ ଆରମ୍ଭ କରାଯାଇଛି । ତଦନୁଯାୟୀ ୧୯୭୮-୭୯ ଶେଷସୁଦ୍ଧା ୨୭.୨୩ ଲକ୍ଷ କ୍ଷୁଦ୍ର ଓ ନାମମାତ୍ର ଚାଷୀ ପରିବାରଙ୍କ କମ୍ବା ଏମାନଙ୍କର ଶତକଡ଼ା ୭୯ ଭାଗଙ୍କୁ ସମବାୟ ପରିସରଭୁକ୍ତ କରିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ତାହାର ଶତକଡ଼ା ୮୫ ଭାଗ ଆସନ୍ତା ୧୯୭୭ ଜୁନ୍ ଶେଷସୁଦ୍ଧା ହାସଲ କରିବୁ । ୧୯୭୭-୭୮ ସମବାୟ ବର୍ଷରେ ଏତଦ୍-ବ୍ୟତୀତ ଅଧିକ ୨.୦୪ ଲକ୍ଷ ଲୋକଙ୍କୁ ସମବାୟ ପରିସରଭୁକ୍ତ କରିବାପାଇଁ ପ୍ରସ୍ତାବ ରହିଛି । କୃଷକମାନଙ୍କର ଅଧିକ ସେବା କରିବା ଲକ୍ଷ୍ୟରେ ପ୍ରାଥମିକ ସମବାୟ ସମିତିଗୁଡ଼ିକର ଆର୍ଥିକ ତଥା ପରିଚାଳନାଗତ ବ୍ୟବସ୍ଥାକୁ ସୁଦୃଢ଼ କରାଯାଉଛି । ଆଦିବାସୀ ଉପ-ଯୋଜନା ଅଞ୍ଚଳରେ ୧୯୭୭ ଜୁନ୍ ମାସ ସୁଦ୍ଧା ୨୨୦ଟି ବୃହତ୍ ଧରଣର ବହୁମୁଖୀ ସମବାୟ ସମିତି ଗଠନ କରାଯିବ । ଉପ-ଯୋଜନା ଅଞ୍ଚଳ ଛଡ଼ା ୧୫୦ ଗୋଟି କୃଷକ ସେବା ସମିତି ମଧ୍ୟ ଗଠନ କରାଯିବ । ଉକ୍ତ ସେବା ସମିତିଗୁଡ଼ିକ ମଧ୍ୟରୁ ଦୁଇ ଗୋଟି ଆରମ୍ଭ କରାଗଲାଣି ଓ ଚଳିତ ବର୍ଷ ମଧ୍ୟରେ ଆଉ ୧୮ଟି ଆରମ୍ଭ କରାଯିବ । ଚଳିତ ସମବାୟ ବର୍ଷରେ ସ୍ୱଳ୍ପମିଆଦ କୃଷି ଋଣ ୨୮ କୋଟି ଟଙ୍କାରେ ପହଞ୍ଚିବ । କୃଷି ଋଣ ସଂପ୍ରସାରଣ କାର୍ଯ୍ୟକ୍ରମରେ ପରି-ପୂରକ ଭାବେ କୋରାପୁଟ, ବଲାଙ୍ଗୀର, ସମ୍ବଲପୁର, କଟକ ଓ ପୁରୀ ଜିଲ୍ଲାର ସଂପ୍ରତି ୪ଟି ଆଞ୍ଚଳିକ ଗ୍ରାମ୍ୟ ବ୍ୟାଙ୍କ କାର୍ଯ୍ୟ କରୁଛି ।

## ବିଶ୍ୱବ୍ୟାଙ୍କ ପରିକଳ୍ପନା

୩୧ । ଆମର ଆବଶ୍ୟକତା ତୁଳନାରେ କୃଷି ଉତ୍ପାଦନ ବୃଦ୍ଧି ନିମନ୍ତେ ଭିତ୍ତିଭୂମିକୁ ସୁଦୃଢ଼ କରିବା ଲାଗି ଆମର ସମ୍ବଳ ଯଥେଷ୍ଟ ନୁହେଁ । କୃଷି ଉତ୍ପାଦନର ଅଭିବୃଦ୍ଧିକୁ ତ୍ୱରାନ୍ୱିତ କରିବା ନିମନ୍ତେ ଏକ ୫ ବର୍ଷିଆ କାର୍ଯ୍ୟକ୍ରମପାଇଁ ଅର୍ଥିକ ସାହାଯ୍ୟ ଯୋଗାଇ ଦେବା ସକାଶେ ଗତ ୨ ବର୍ଷ ମଧ୍ୟରେ ବିଶ୍ୱବ୍ୟାଙ୍କର ଏକ ସଂସ୍ଥା, ଅନ୍ତର୍ଜାତିକ ଉନ୍ନୟନ ସଂଘସହିତ ବହୁବାର ଯୋଗସୂତ୍ର ସ୍ଥାପନ କରାଯାଇଛି । ଏହି ଯୋଜନା ଅଧୀନରେ କୃଷି ସଂପ୍ରସାରଣ ସେବାର ସଂପ୍ରସାରଣ ଓ ଦୃଢ଼ୀକରଣ ଓ ତତ୍ସଂକ୍ରାନ୍ତ ଗବେଷଣା, ଭୂତଳ ଜଳସମ୍ପଦର ଅନୁସନ୍ଧାନ, ସ୍ୱଳ୍ପ ବ୍ୟୟରେ ଅଗଭୀର ନଳକୂପ ଖନନ ସଂକ୍ରାନ୍ତ କୌଶଳ; ଜମିଜମା ସର୍ଭେ ଓ ଜମିରେକର୍ଡ ଉନ୍ନତ ବିଧାନ ସ୍ଥାନୀୟ ସମ୍ବଳର ସଦୁପଯୋଗ, ବ୍ୟାପକ ଶ୍ରମବ୍ୟବସ୍ଥା, କୃଷି ଯନ୍ତ୍ରପାତିର ବିକାଶ ସାଧନ ଓ ଉତ୍ପାଦନ ସାମଗ୍ରୀର ସଂରକ୍ଷଣ

ତଥା ଉତ୍ପନ୍ନ ଦ୍ରବ୍ୟଗୁଡ଼ିକର ବିକ୍ରିବଟା କରିବା ନିମନ୍ତେ ଦୀର୍ଘ ଓ ସ୍ୱଳ୍ପକାଳୀନ ପରିକଳ୍ପନାମାନ କାର୍ଯ୍ୟକାରୀ କରାଯିବ । ମୁଁ ଆନନ୍ଦର ସହ ଜଣାଉଛି ଯେ ଆନ୍ତର୍ଜାତୀୟ ଉନ୍ନୟନ ସଂଘ ସମୁଦାୟ ଯୋଜନାପାଇଁ 18 କୋଟି ଟଙ୍କା (20 ନିୟୁତ ଡଲାର) ଅଳ୍ପ ସୁଧରେ ଦେବାପାଇଁ ସମ୍ମତ ହୋଇଛନ୍ତି ଏବଂ ଏଥିନିମନ୍ତେ ଏକ ପାରସ୍ପରିକ ରାଜିନାମା ସନ୍ତୋଷଜନକଭାବେ ସମ୍ପାଦିତ ହୋଇଛି ।

## ଭୂସଂସ୍କାର

୩୬ । ଭୂମିହୀନ କୃଷିଶ୍ରମିକ ବିଶେଷକରି ଆଦିବାସୀ ଓ ହରିଜନ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ସିଲିଂ ବହିର୍ଭୂତ ଜମି ଓ ସରକାରୀ ପଡ଼ିଆ ଜମି ଯଥାଯଥଭାବେ ବାଣ୍ଟିବା ଓ ପ୍ରକୃତ କୃଷିମାନଙ୍କୁ ରଯ୍ୟତି ସ୍ୱତ୍ୱ ଦେବା ଆମ ଭୂସଂସ୍କାର କାର୍ଯ୍ୟକ୍ରମର ଅଭିମୁଖ୍ୟ ଅଟେ । ସେମାନଙ୍କୁ ବଣ୍ଟାଯାଇଥିବା ଜମିର ଆବାଦ, ଜଳସେଚନ ଓ ଗୃହୋପଯୋଗୀ କରିବାପାଇଁ ଅର୍ଥିକ ତଥା ଉପକରଣ ଆକାରରେ ସାହାଯ୍ୟ ଯୋଗାଇ ଦିଆଯାଉଛି । ଉକ୍ତ ବ୍ୟବସ୍ଥାଗୁଡ଼ିକ ଜରିଆରେ ଆମେ କୃଷି ଉପରେ ନିର୍ଭର କରୁଥିବା ସର୍ବାଧିକ ଲୋକଙ୍କ ମଧ୍ୟରେ ରହିଥିବା ବୈଷମ୍ୟକୁ ଦୂରକରି ପାରିବୁ ବୋଲି ଆମର ଦୃଢ଼ ବିଶ୍ୱାସ । ସମ୍ପୃକ୍ତ ନିୟମ କାର୍ଯ୍ୟକାରୀ କରିବା ସମୟରେ ଯେତେବେଳେ କୌଣସି ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼ୁଛି ସେଗୁଡ଼ିକ ଯଥାଶୀଘ୍ର ପ୍ରଶାସନିକ ଓ ଆଇନ ପ୍ରଣୟନ ବ୍ୟବସ୍ଥାଦ୍ୱାରା ଦୂର କରାଯାଉଛି । ପରିପୂରକ କାର୍ଯ୍ୟକ୍ରମ ଭାବରେ ଜମିଜମା ରେକର୍ଡ, ଗୁଡ଼ିକୁ ହାଲ ଉପଯୋଗୀ କରିବା ଏବଂ ଖଣ୍ଡ ବିଖଣ୍ଡିତ ଜୋତମାନଙ୍କର ଚକବନ୍ଦୀକରଣ କାର୍ଯ୍ୟକ୍ରମ ହାତକୁ ନିଆଯାଉଛି ।

୩୭ । ସିଲିଂ ବହିର୍ଭୂତ ଜମି ବଣ୍ଟନ ବିଷୟରେ ମୁଁ ପୂର୍ବରୁ ମୋ ବକ୍ତବ୍ୟରେ ସୂଚନା ଦେଇଛି । 186,422 ହେକ୍ଟର ସରକାରୀ ପଡ଼ିଆ ଜମି 265,199 ଜଣ ଭୂମିହୀନ ବ୍ୟକ୍ତିଙ୍କ ମଧ୍ୟରେ ବଣ୍ଟାଯାଇଛି ଓ ଏମାନଙ୍କ ମଧ୍ୟରୁ ଶତକଡ଼ା 76 ଭାଗ ବ୍ୟକ୍ତି ତଫସିଲଭୁକ୍ତ ଜାତି ଓ ସମ୍ପ୍ରଦାୟ ଅନ୍ତର୍ଭୁକ୍ତ । 51,229 ଗ୍ରାମ ମଧ୍ୟରୁ 25,429ଟି ଗ୍ରାମରେ ସର୍ଭେ ଓ ବନ୍ଦୋବସ୍ତ କାର୍ଯ୍ୟ ଶେଷ ହୋଇଛି । ଆଗାମୀ 5 / 6 ବର୍ଷ ମଧ୍ୟରେ ଅବଶିଷ୍ଟ ଗ୍ରାମ ଗୁଡ଼ିକର ସର୍ଭେ ଓ ବନ୍ଦୋବସ୍ତ କାର୍ଯ୍ୟ କରାଯିବା ନିମନ୍ତେ ପ୍ରସ୍ତାବ ରହିଛି । 1,755ଟି ଗ୍ରାମର 226,776 ହେକ୍ଟର ଜମିକୁ ଚକବନ୍ଦୀ ପାଇଁ ପଦକ୍ଷେପ ନିଆଯାଇଛି ।

## ପଶୁପାଳନ ଓ ଦୁଗ୍ଧ ଉତ୍ପାଦନ

୩୪ । 1975-76 ମସିହାରେ 2 ଲକ୍ଷ 4 ହଜାର ଟନ୍ ଦୁଗ୍ଧ ଉତ୍ପାଦନ କରାଯାଇଥିଲା । ଏହାକୁ 1977-78ରେ 2 ଲକ୍ଷ 12 ହଜାର ଟନ୍‌କୁ ବୃଦ୍ଧି କରିବା ନିମନ୍ତେ କୃତ୍ରିମ ପ୍ରଜନନ, କେତେକ ମନୋନୀତ ଜିଲ୍ଲାରେ ସଘନ ଗୋ-ଉନ୍ନୟନ ଯୋଜନା ଓ ଆଦର୍ଶ ଗ୍ରାମ୍ୟ ବ୍ଲକ ଜରିଆରେ ସ୍ଥାନୀୟ ଗୋ-ସମ୍ପଦର ବିକାଶ ସାଧନ ନିମନ୍ତେ ଏକ ପରିକଳ୍ପନା ଆରମ୍ଭ କରାଯାଇଛି । ଉନ୍ନତ ଧରଣର ଗାଈ ବାଛୁରି ବଢ଼ାଇବା ଲାଗି ଆଦିବାସୀ ଉପ-ଯୋଜନା ଅଞ୍ଚଳରେ 15ଟି ନୂତନ କୃତ୍ରିମ ପ୍ରଜନନ କେନ୍ଦ୍ର, ଗୋଟିଏ ନୂତନ ଆଦର୍ଶ ଗ୍ରାମ ଓ ଗୋଟିଏ ସଘନ ଗୋ-ଉନ୍ନୟନ ପରିକଳ୍ପନା ଆସନ୍ତା ବର୍ଷ ପ୍ରତିଷ୍ଠା କରାଯିବ । ଚିପିଲିମାଠାରେ ଗୋଟିଏ ବିଦେଶୀ ଗୋ-ପ୍ରଜନନ ଫାର୍ମ ପ୍ରତିଷ୍ଠା କରାଯିବ । ଡେନ୍‌ମାର୍କ ସରକାରଙ୍କ ସହାୟତାରେ ଏକ ହିମାୟିତ ଗୋ-ଶୁକ୍ର ବ୍ୟାଙ୍କ ପ୍ରତିଷ୍ଠା କରାଯିବା ସକାନ୍ତରେ ଯୋଗସୂତ୍ର ଆରମ୍ଭ କରାଯାଇଛି ।

୩୫ । 'ଅପରେସନ୍ ଫ୍ଲଡ୍' ରୂପେ ପରିଚିତ ଏକ କେନ୍ଦ୍ରୀୟ ଯୋଜନା ଅନୁଯାୟୀ ପଞ୍ଚମ ବାର୍ଷିକ ଯୋଜନାର ଅବଶିଷ୍ଟ ବର୍ଷରେ ଉନ୍ନତ ଧରଣର ଗୋରୁଗାଈ ପୋଷିବା ନିମନ୍ତେ 50,000 କ୍ଷୁଦ୍ର ତଥା ନାମମାତ୍ର ଚାଷୀ ଓ କୃଷି ଶ୍ରମିକଙ୍କୁ ସାହାଯ୍ୟ ଦେବା ଲାଗି ଲକ୍ଷ୍ୟ ରଖାଯାଇଛି । ସେମାନଙ୍କୁ 100ଟି ସମବାୟ ସମିତିର ସଭ୍ୟଭୁକ୍ତ କରାଯାଇ ସେମାନଙ୍କ ଲାଗି 20ଟି ଚିଲିଂ ସେଣ୍ଟର ଓ ଗୋଟିଏ ଦୁଗ୍ଧ ଉତ୍ପାଦନକାରୀ କେନ୍ଦ୍ରର ବ୍ୟବସ୍ଥା କରାଯିବ । ଏହି ଯୋଜନା 1976-77 ମସିହାରେ ଆରମ୍ଭ କରାଯାଇଥିଲା ଓ ଆଗାମୀ ବର୍ଷରେ ଏହାର କାର୍ଯ୍ୟ ଚାଲୁରହିବ । ପର୍ଯ୍ୟାୟକ୍ରମେ ଏହି ଯୋଜନାଟି କଟକ, କେନ୍ଦୁଝର ଓ ଢେଙ୍କାନାଳ ଜିଲ୍ଲାର 28ଟି ବ୍ଲକକୁ ପ୍ରସାରିତ କରାଯାଇଛି । ଏଥିର ଗୋ-ବତ୍ସ ପାଳନ ଓ ଗୋ-ଖାଦ୍ୟ ଉତ୍ପାଦନ ଇତ୍ୟାଦି ସାହାଯ୍ୟକାରୀ ଯୋଜନାଗୁଡ଼ିକୁ କାର୍ଯ୍ୟକାରୀ କରିବା ନିମନ୍ତେ ଚାଷୀମାନଙ୍କୁ ପ୍ରୋତ୍ସାହନ ଦେବା ଉପରେ ବିଶେଷ ଧ୍ୟାନ ଦିଆଯାଉଅଛି । 1977-78ରେ ଦୁଗ୍ଧ ସଂଗ୍ରହ ଓ ବିକ୍ରୟ ବ୍ୟବସ୍ଥା ଉଦ୍ଦେଶ୍ୟରେ ବାଲେଶ୍ୱର ଓ ଗଞ୍ଜାମ ଜିଲ୍ଲାରେ ଜିଲ୍ଲାସ୍ତରୀୟ ଦୁଇ ସମବାୟ ସଂସ୍ଥା ଗଠନ କରିବାର ପ୍ରସ୍ତାବ ରହିଛି ।

୩୬ । ରାଜ୍ୟରେ ପ୍ରତିବର୍ଷ ଶତକଡ଼ା 5 ଚକ୍ରବୃଦ୍ଧି ହାରରେ ଅଣ୍ଡା ଉତ୍ପାଦନ ବୃଦ୍ଧି କରିବା ନିମନ୍ତେ ଏକ କୁକୁଡ଼ା ପାଳନ ଉନ୍ନୟନ ପରିକଳ୍ପନା ହାତକୁ ନିଆଯାଇଛି ।

୬୭ । ଆଦିବାସୀ ଉପ-ଯୋଜନା ଅଞ୍ଚଳରେ ଆଗାମୀ ବର୍ଷ ଯେଉଁ ନିୟନ୍ତ୍ରଣ କରିବା ଲାଗି ୭ଟି ପଶୁ ଚିକିତ୍ସାଳୟ ଓ ୧୧ଟି ପଶୁ ଚିକିତ୍ସା କେନ୍ଦ୍ର ଖୋଲାଯିବା ଲାଗି ପ୍ରସ୍ତାବ ରଖାଯାଇଛି । ଗୋରୁଗାଈଗୁଡ଼ିକୁ ସୁସ୍ଥସବଳ ରଖିବା ଲାଗି ଆବଶ୍ୟକ ହେଉଥିବା ଟିକାଗୁଡ଼ିକ—ବୀଜ ଉତ୍ପନ୍ନ କରିବାପାଇଁ ଏକ କେନ୍ଦ୍ରୀୟ ଉଦ୍ୟୋଗ ଯୋଜନା ଅନୁଯାୟୀ ଭୁବନେଶ୍ୱରସ୍ଥିତ ବାୟୋଲୋଜିକାଲ୍ ପ୍ରଡକ୍ଟ ଇନ୍‌ଷ୍ଟିଚ୍ୟୁଟ୍‌କୁ ସମୃଦ୍ଧ କରାଯାଇଛି ।

## ମତ୍ସ୍ୟ ଚାଷ

୬୮ । ୧୯୭୬-୭୭ରେ ଆଭ୍ୟନ୍ତରୀଣ ଓ ସାମୁଦ୍ରିକ ମତ୍ସ୍ୟ ଉତ୍ପାଦନ ଯଥାକ୍ରମେ ୬୭,୦୦୦ ଟନ୍ ଓ ୨୫,୦୦୦ ଟନ୍ ହୋଇଥିଲା । ଆଗାମୀ ବର୍ଷ ପ୍ରତ୍ୟେକ ସ୍ତରରେ ମତ୍ସ୍ୟ ଉତ୍ପାଦନ ୬୮,୦୦୦ ଟନ୍‌କୁ ବୃଦ୍ଧି କରିବା ଲାଗି ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଏହି ଲକ୍ଷ୍ୟ ହାସଲ କରିବା ନିମନ୍ତେ ୬୫୫ଟି ଯାନ୍ତ୍ରିକ ନୌକା ଓ ଟ୍ରଲର ନିୟୁକ୍ତ କରାଯିବା ସଙ୍ଗେ ସଙ୍ଗେ ଆଭ୍ୟନ୍ତରୀଣ ମତ୍ସ୍ୟ ଚାଷର ଅଞ୍ଚଳ ସମ୍ପ୍ରସାରିତ କରାଯିବ । ଏହି ସମୟ ମଧ୍ୟରେ ମାଛ ବିହନ ଓ ଯାଆଁଳ ପରିଚୟ ଶତକଡ଼ା ୭ ଭାଗ ବୃଦ୍ଧି କରିବା ନିମନ୍ତେ ମଧ୍ୟ ଯୋଜନା କରାଯାଇଛି । ଆଭ୍ୟନ୍ତରୀଣ ଓ ସାମୁଦ୍ରିକ ମତ୍ସ୍ୟ ଚାଷୀଙ୍କୁ ଡଙ୍ଗା ଓ ଜାଲ କିଣିବା ନିମନ୍ତେ ମହାଜନଙ୍କ ଭିତ୍ତିରେ ବ୍ୟାଙ୍କ ଶତକଡ଼ା ୭୫ ଭାଗ ସାହାଯ୍ୟ ଦେଲେ ଅବଶିଷ୍ଟ ଶତକଡ଼ା ୨୫ ଭାଗ ସାହାଯ୍ୟ ଦେବା ନିମନ୍ତେ ବ୍ୟବସ୍ଥା ଗ୍ରହଣ କରାଯାଉଛି । ଆଗାମୀ ଆର୍ଥିକ ବର୍ଷରେ କେଶପୁରଠାରେ ଗୋଟିଏ ଖାରିଆ ଜଳ ମତ୍ସ୍ୟ ଫାର୍ମ ସ୍ଥାପନ କରାଯିବ । ମତ୍ସ୍ୟଚାଷ ସମ୍ପର୍କରେ ଆଧୁନିକ ଯନ୍ତ୍ରପାତିର ବ୍ୟବହାର ଓ କୌଶଳ ସମ୍ବନ୍ଧରେ ଚଳିତ ବର୍ଷ ୧୧୧ ଜଣଙ୍କୁ ତାଲିମ ଦିଆଯାଇଛି । ଆଗାମୀ ବର୍ଷ ଏ ସମ୍ପର୍କରେ ଆଉ ୬୦୩ ଜଣଙ୍କୁ ତାଲିମ ଦିଆଯିବ । ବନ୍ଦର ଉନ୍ନୟନ ଯୋଜନାର ଏକ ଅଂଶ ବିଶେଷ ରୂପେ ଧାମରା ମତ୍ସ୍ୟ ବନ୍ଦରର ନିର୍ମାଣ କାର୍ଯ୍ୟ ଆଗାମୀ ବର୍ଷ ଶେଷ ହେବ । କୀର୍ତ୍ତିନିଆଁ ଅରୁଆଁ, ହଂସୁଆ ଓ ଅସ୍ତରଙ୍ଗ କ୍ଷୁଦ୍ର ମତ୍ସ୍ୟ ବନ୍ଦରଠାରେ ମାଛ ଧରା ଜେଟି ନିର୍ମାଣ କରିବା ଓ ଢେଙ୍କାନାଳ ଏବଂ ମୟୂରଭଞ୍ଜ ଜିଲ୍ଲାରେ ୧,୦୦୦ ହେକ୍ଟର ପରିମିତ ଜଳାଶୟର ଉନ୍ନତ ବିଧାନ ନିମନ୍ତେ ୬ଟି ମତ୍ସ୍ୟ ଚାଷ ଉନ୍ନୟନ ସଂସ୍ଥା ପ୍ରତିଷ୍ଠା କରିବା, ୧୯୭୭-୭୮ ମସିହା ବଜେଟ ଅଟକଳରେ ସନ୍ନିବେଶିତ ଗୁରୁତ୍ୱପୂର୍ଣ୍ଣ ପରିକଳ୍ପନା ମଧ୍ୟରେ ଅନ୍ୟତମ । ନିକଟ ଅତୀତରେ ଭାରତୀୟ କୃଷି ଗବେଷଣା ଆନୁକୂଲ୍ୟରେ ଧଉଳିଠାରେ ସ୍ଥାପିତ ହୋଇଥିବା ମଧୁର ଜଳରେ ମତ୍ସ୍ୟ ଚାଷ ଗବେଷଣା ଓ ତାଲିମ କେନ୍ଦ୍ର ଆମ ରାଜ୍ୟର ମତ୍ସ୍ୟ ଚାଷ ଉନ୍ନୟନ ଯୋଜନାର ବିଶେଷ ସହାୟକ ହେବ ।

## ଜଙ୍ଗଲ

୩୯ । ଅରଣ୍ୟ ସୃଷ୍ଟି କରିବା ଜଙ୍ଗଲ ବିଭାଗର ଏକ ମୁଖ୍ୟ ଯୋଜନା ଅଟେ । ଚଳିତ ଯୋଜନାର ପ୍ରଥମ ୩ ବର୍ଷ ମଧ୍ୟରେ ୧୪,୦୮୫ ହେକ୍ଟର ଜମିରେ ଜଙ୍ଗଲ ସୃଷ୍ଟି କରାଯାଇଛି ଓ ଆଗାମୀ ବର୍ଷ ୭,୨୮୪ ହେକ୍ଟର ଜମିରେ ଜଙ୍ଗଲ ସୃଷ୍ଟି କରିବାପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି । ଗତ ୩ ବର୍ଷରେ ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରେ ବାତ୍ୟା ଓ ଜୁଆର ପ୍ରତିରୋଧକ ବ୍ୟବସ୍ଥା ରୂପେ ଅରଣ୍ୟ ସୃଷ୍ଟି ହୋଇଥିବା ୧,୭୮୧ ହେକ୍ଟର ଜମି ଏହାର ଅନ୍ତର୍ଭୁକ୍ତ ନୁହେଁ । କେନ୍ଦ୍ରୀୟ ଉଦ୍ୟୋଗ ପରିକଳ୍ପନା ଅନୁଯାୟୀ ୧୯୭୫-୭୬ ମସିହାରେ ପୋଟେରୁ ଜଳସେଚିତ ଅଞ୍ଚଳର ୧,୦୪୦ ହେକ୍ଟର ପରିମିତ ଜମିରେ ଅରଣ୍ୟ ସୃଷ୍ଟି ଆରମ୍ଭ କରାଯାଇଥିଲା ଓ ପୂର୍ବରୁ ନଷ୍ଟ ହୋଇଯାଇଥିବା ୨୦୦ ହେକ୍ଟର ଜଙ୍ଗଲରେ ଏଭଳି ବୃକ୍ଷରୋପଣ କରାଯାଇଛି । ଏହି ଜଙ୍ଗଲ ପୁନରୁଜ୍ଜୀବନ କାର୍ଯ୍ୟକ୍ରମ ଚଳିତବର୍ଷ ଶେଷ ସୁଦ୍ଧା ୮୦୦ ହେକ୍ଟର ଜମିପର୍ଯ୍ୟନ୍ତ ପରିବ୍ୟାପ୍ତ ହେବ; ଆଗାମୀ ବର୍ଷ ୧,୭୦୦ ହେକ୍ଟର ଜମିରେ ଅରଣ୍ୟ ସୃଷ୍ଟି ହେବା ସଙ୍ଗେ ସଙ୍ଗେ କ୍ଷତିଗ୍ରସ୍ତ ହୋଇଥିବା ୪୦୦ ହେକ୍ଟର ଜଙ୍ଗଲରେ ନୂତନ ବୃକ୍ଷରୋପଣ କରାଯିବ । କେନ୍ଦୁ ପତ୍ର ଉତ୍ପାଦନ ଓ ବିକ୍ରୟରୁ ଯଥେଷ୍ଟ ପରିମାଣରେ ଅଣଟିକସ ରାଜସ୍ୱ ମିଳିଥାଏ । ଆଗାମୀ ବର୍ଷ କେନ୍ଦୁପତ୍ରର ଉତ୍ପାଦନ ବିକ୍ରୟ ୪·୧୫ ଲକ୍ଷ କୁଇଣ୍ଟାଲକୁ ବୃଦ୍ଧି କରାଯିବ ।

## ଶିଳ୍ପ

୪୦ । ୧୯୭୬ ମସିହାରେ ରାଜ୍ୟରେ ଶିଳ୍ପ କାରଖାନାମାନଙ୍କରେ ଶାନ୍ତି ଶୃଙ୍ଖଳା ରହିଥିବା ଯୋଗୁଁ ପ୍ରାୟ ସବୁ ମୌଳିକ ତଥା ଗୁରୁ ଶିଳ୍ପରେ ୧୯୭୫ ବର୍ଷ ତୁଳନାରେ ଅଧିକ ଉତ୍ପାଦନ ହୋଇଥିଲା । ଇସ୍ପାତ ଉତ୍ପାଦନ ୧୯୭୬ ମସିହାରେ ଶତକଡ଼ା ୫·୫, ଆଲୁମିନିୟମ ଶତକଡ଼ା ୧୪·୭ ଓ କାଗଜ ଶତକଡ଼ା ୭·୫ ବୃଦ୍ଧି ପାଇଥିଲା । ସିମେଣ୍ଟ ଉତ୍ପାଦନ କ୍ଷେତ୍ରରେ ସାମାନ୍ୟ ଅଭିବୃଦ୍ଧି ଘଟିଥିଲେ ହେଁ ଚିନି ଉତ୍ପାଦନ ଶତକଡ଼ା ୭ ଭାଗ ହ୍ରାସ ପାଇଥିଲା । ଓଡ଼ିଶା ଶିଳ୍ପ ଉନ୍ନୟନ କର୍ପୋରେସନ ୧୯୭୫ ମସିହାର ଏପ୍ରିଲଠାରୁ ଡିସେମ୍ବର ମଧ୍ୟରେ ଯେତେ ପରିମାଣ ଜିନିଷପତ୍ର ଉତ୍ପାଦନ ଓ ବିକ୍ରୟ କରିଥିଲେ, ୧୯୭୬ ମସିହାର ସେହି ସମୟ ମଧ୍ୟରେ ତାହାର ଉତ୍ପାଦନ ଓ ବିକ୍ରୟକୁ ଯଥାକ୍ରମେ ଶତକଡ଼ା ୪୨·୦୫ ଓ ୮୫ ଭାଗ ବୃଦ୍ଧି କରି ପାରିଛନ୍ତି । ୧୯୭୬-୭୭ ମସିହାରେ ରପ୍ତାନି ହୋଇଥିବା ବିଭିନ୍ନ ଧରଣର ଫେରୋକ୍ରୋମର ମୂଲ୍ୟ ପ୍ରାୟ ୧·୭୭ କୋଟି ଟଙ୍କା । କର୍ପୋରେସନର ୩ଟି ମିଳିତ ଉଦ୍ୟୋଗ ପରିକଳ୍ପନା ମଧ୍ୟରୁ ଧାନମଣ୍ଡଳସ୍ଥିତ ଷ୍ଟିଲ କାରଖାନା ବିଶେଷ ଉଲ୍ଲେଖଯୋଗ୍ୟ ଅଗ୍ରଗତି କରିଛି । ମିଳିତ ଉଦ୍ୟୋଗରେ ପାରାଦ୍ୱୀପଠାରେ ପ୍ରତିଷ୍ଠା କରାଯାଇଥିବା ମତ୍ସ୍ୟ

କାରଖାନାର ନିର୍ମାଣ କାର୍ଯ୍ୟ ଚଳିତ ବର୍ଷ ଶେଷ ହେବ। ଓଡ଼ିଶା ଶିଳ୍ପ ଉନ୍ନୟନ ବିନିଯୋଗ କର୍ପୋରେସନ (ଇପିକଲ) ବହୁ ସଂଖ୍ୟକ କ୍ଷୁଦ୍ର ଓ ମଧ୍ୟମ ଶିଳ୍ପକାରଖାନା ରୂପାୟନରେ ସାହାଯ୍ୟ କରୁଛି। ଏଗୁଡ଼ିକ ମଧ୍ୟରୁ ଅନ୍ୟତମ ରାଇରାଙ୍ଗପୁରସ୍ଥିତ ଉତ୍କଳ ଫେରୋ ଆଲଏଜ ଲିମିଟେଡ୍ ଅକ୍ଟୋବର ଠାରେ ଉତ୍ପାଦନ ଆରମ୍ଭ କରିଛି। ରାଜ୍ୟରେ ଇଲେକଟ୍ରୋନିକ ଶିଳ୍ପ କାରଖାନାର ବିକାଶ ସାଧନ ନିମନ୍ତେ ମଧ୍ୟ ଓଡ଼ିଶା ଶିଳ୍ପ ଉନ୍ନୟନ ବିନିଯୋଗ କର୍ପୋରେସନ (ଇପିକଲ) ଏକ ଇଲେକ୍‌ଟ୍ରୋନିକ ପରୀକ୍ଷା ଓ ବିକାଶ କେନ୍ଦ୍ର ବସାଇବା ନିମନ୍ତେ କାମ ଆରମ୍ଭ କରିଛନ୍ତି।

୪୧। କ୍ଷୁଦ୍ର ଶିଳ୍ପ କ୍ଷେତ୍ର ପୂର୍ବରୁ ସମ୍ପନ୍ନ ହୋଇଥିବା ୧୭୭ଟି ଶିଳ୍ପ କାରଖାନା ସମେତ ୭୦୦ଟି ଶିଳ୍ପ ସଂସ୍ଥା ଚଳିତ ବର୍ଷରେ ଉତ୍ପାଦନ ଆରମ୍ଭ କରିବେ ଓ ସେଗୁଡ଼ିକରେ ପ୍ରାୟ ୫,୦୦୦ ଲୋକ ନିଯୁକ୍ତି ପାଇବେ। ଆଗାମୀ ଆର୍ଥିକ ବର୍ଷରେ ଆହୁରି ୧,୦୦୦ଟି ଶିଳ୍ପ ସଂସ୍ଥା ପ୍ରତିଷ୍ଠା ଲାଗି ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି। ସରକାରଙ୍କ ପରିଚାଳନାଧୀନ ଚମଡ଼ା ଓ ଚମଡ଼ାଜାତ ଦ୍ରବ୍ୟ ଉତ୍ପାଦନ ସଂସ୍ଥାଗୁଡ଼ିକୁ ନିକଟରେ ଗଠନ କରାଯାଇଥିବା ରାଜ୍ୟ ଚମଡ଼ା କର୍ପୋରେସନକୁ ହସ୍ତାନ୍ତରିତ କରାଯିବ। ରାଜ୍ୟ କ୍ଷୁଦ୍ର ଶିଳ୍ପ କର୍ପୋରେସନ ଶିଳ୍ପୋଦ୍ୟୋଗୀମାନଙ୍କୁ କଞ୍ଚାମାଲ, ଭଡ଼ାସୂତ୍ରରେ ଯନ୍ତ୍ରପାତି ବାବଦ ଋଣ, ବନ୍ଧକ ବାବଦ ଟଙ୍କା, ଶିଳ୍ପ ବିକାଶ କେନ୍ଦ୍ରର ଉନ୍ନୟନ ଓ ଶିଳ୍ପାଞ୍ଚଳ ପ୍ରତିଷ୍ଠା ଆଦିରେ ସାହାଯ୍ୟ ପ୍ରଦାନ କରିବା ଅବ୍ୟାହତ ରଖିଛନ୍ତି।

୪୨। ଓଡ଼ିଶା ରାଜ୍ୟ ଅର୍ଥ କର୍ପୋରେସନ ୧୯୭୭ ଅପ୍ରେଲଠାରୁ ଡିସେମ୍ବର ମାସ ମଧ୍ୟରେ ୧୬୩ଟି କ୍ଷୁଦ୍ର ଶିଳ୍ପ ସଂସ୍ଥାକୁ ଋଣ ଆକାରରେ ୨.୪୨ କୋଟି ଟଙ୍କା ଦେଇଛନ୍ତି। ସାମୁଦ୍ରିକ ମାଛଧରା ଡଙ୍ଗା ଓ ବିଦ୍ୟୁତ୍ ଚାଳିତ ତନ୍ତ କିଣିବା ନିମନ୍ତେ କର୍ପୋରେସନ ଯେଉଁ ଆର୍ଥିକ ସାହାଯ୍ୟ ଦେଇଛନ୍ତି, ତାହା ଉଲ୍ଲେଖଯୋଗ୍ୟ।

୪୩। ତନ୍ତୁବାୟୀମାନଙ୍କର ଆବଶ୍ୟକ ହେଉଥିବା ସୂତା ଯୋଗାଇ ଦେବା ନିମନ୍ତେ ଢେଙ୍କାନାଳ ଜିଲ୍ଲାର ଗୋବିନ୍ଦପୁରଠାରେ ୨୫,୦୦୦ ଟାକୁଡ଼ି ବିଶିଷ୍ଟ ଏକ ସୂତାକଳ ନିର୍ମାଣ କରିବା ଓ ସମବାୟ ସମିତି ପରିସରଭୁକ୍ତ ହୋଇନଥିବା ତନ୍ତୁବାୟୀଙ୍କୁ ଆର୍ଥିକ ସାହାଯ୍ୟ ଯୋଗାଇଦେବା ଓ ସେମାନଙ୍କର ଉତ୍ପନ୍ନଦ୍ରବ୍ୟ ବିକ୍ରୟ ଏବଂ ହସ୍ତତନ୍ତ ଲୁଗାର ରପ୍ତାନି ବୃଦ୍ଧି କରିବା ନିମନ୍ତେ ଏକ ହସ୍ତତନ୍ତ ଉନ୍ନୟନ କର୍ପୋରେସନ ପ୍ରତିଷ୍ଠା କରାଯାଇ ହସ୍ତତନ୍ତ ଶିଳ୍ପର ବିକାଶ ସାଧନ ନିମନ୍ତେ ବିଶେଷ ଧ୍ୟାନ ଦିଆଯାଇଛି।

୪୪ । ଶିଳ୍ପ ଉଦ୍ୟୋଗୀମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ଦୁଇଓଟି ଯୋଜନା ସରକାରଙ୍କ ବିଚାରାଧୀନ ଶିଳ୍ପ ନୀତିର ଅନ୍ତର୍ଭୁକ୍ତ କରିବାପାଇଁ ଅନୁଧ୍ୟାନ କରାଯାଉଛି । ତନ୍ମଧ୍ୟରୁ ପ୍ରଥମଟି ହେଲା ନୂତନ ଶିଳ୍ପ ପ୍ରତିଷ୍ଠାନମାନଙ୍କ ଦ୍ୱାରା ଉତ୍ପାଦିତ ଦ୍ରବ୍ୟଗୁଡ଼ିକର ବିକ୍ରୟ ମୂଲ୍ୟ ଉପରେ ଆଦାୟ ହେଉଥିବା ବିକ୍ରିକର ସମତୁଲ୍ୟ ଅର୍ଥ ଉକ୍ତ ଶିଳ୍ପ ପ୍ରତିଷ୍ଠାନମାନଙ୍କୁ ସୁଧମୁକ୍ତ ଋଣ ଆକାରରେ ସେମାନଙ୍କ ସ୍ଥିତିକାଳର ପ୍ରଥମ ପାଞ୍ଚବର୍ଷ ପାଇଁ ଦିଆଯିବ ଏବଂ ଦ୍ୱିତୀୟଟି ହେଲା—କେତେକ ମନୋନୀତ ଶିଳ୍ପ ଉତ୍ପାଦନ କେନ୍ଦ୍ରରେ ଶିଳ୍ପ ପ୍ରତିଷ୍ଠା-ପାଇଁ ଅର୍ଥ ବିନିଯୋଗ ବାବଦକୁ ଶିଳ୍ପ ଉଦ୍ୟୋଗୀମାନଙ୍କୁ ସର୍ବାଧିକ ୧୦ ଲକ୍ଷ ଟଙ୍କା ପର୍ଯ୍ୟନ୍ତ ସାହାଯ୍ୟ ପ୍ରଦାନ କରାଯିବ । ଆମର ବିଶ୍ୱାସ ଯେ ରାଜ୍ୟର ଶିଳ୍ପ ବିକାଶ ଓ ଏହିଟି ମୁଖ୍ୟ ପ୍ରୋତ୍ସାହନ ଦ୍ୱାରା ନୂତନ ଗତିବେଗ ଲାଭ କରିବ ।

## ଖଣିଜ

୪୫ । ୧୯୭୫ ମସିହାରେ ଖଣିଜ ଉତ୍ପାଦନ ୧୪·୩୯ ନିୟୁତ ଟନ୍ ଥିବା ସ୍ଥଳେ ୧୯୭୬ ମସିହାରେ ତାହା ୧୫ ନିୟୁତ ଟନକୁ ବୃଦ୍ଧି ପାଇଛି । ରାଜ୍ୟରେ ବକ୍‌ସାଇଟ୍, କୋଇଲା, ଲୌହପିଣ୍ଡ ଓ ଚୂନ ପଥର ବେଶୀ ପରିମାଣରେ ମହଜୁଦ୍ ହୋଇ ରହିଛି ଓ ସେଗୁଡ଼ିକ କିଭଳି ଭାବରେ ଉତ୍ତୋଳନ କରାଯାଇ ପାରିବ ସେଥିନିମନ୍ତେ ରାଜ୍ୟ ଖଣି-ନିର୍ଦ୍ଦେଶାଳୟ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ସୁକିନ୍ଦା, ଢେଙ୍କାନାଳ ଅଞ୍ଚଳରେ ବେଶୀ ପରିମାଣରେ କ୍ରୋମାଇଟ୍ ମହଜୁଦ୍ ହେତୁ ତାହାକୁ ପରୀକ୍ଷା ନିରୀକ୍ଷା କରିବାପାଇଁ ନିକଟରେ ଏକ ଜରୁରୀ କାର୍ଯ୍ୟକ୍ରମ ହାତକୁ ନିଆଯାଉଛି । କୋରାପୁଟ, କଳାହାଣ୍ଡି, ବଲାଙ୍ଗିର, ସମ୍ବଲପୁର, ଫୁଲବାଣୀ ଓ କେନ୍ଦୁଝରଠାରେ ବିପୁଳ ପରିମାଣର ପଣ୍ୟ ଉପଯୋଗୀ ବକ୍‌ସାଇଟ ମହଜୁଦ୍ ରହିଛି । ଓଡ଼ିଶା ଖଣି କର୍ପୋରେସନ୍ ଚଳିତ ବର୍ଷ ତାଙ୍କ ବ୍ୟବସାୟରେ ବେଶ୍ ଉନ୍ନତି କରିପାରିଛନ୍ତି । ସେମାନେ ଯେଉଁ ଉଦ୍‌ବୃତ୍ତି ଅର୍ଜନ କରିଛନ୍ତି ତାହା ରାଜ୍ୟର ଯୋଜନା ସମ୍ବଳକୁ ସାହାଯ୍ୟ ଯୋଗାଇ ପାରିବ । ଆଗାମୀ ବର୍ଷ ଖଣି କର୍ପୋରେସନ ତାଙ୍କର ଲୌହ-ପିଣ୍ଡ ଉତ୍ପାଦନ କାରଖାନାରୁ ୧·୭ ନିୟୁତ ଟନ ଲୌହପିଣ୍ଡ ଉତ୍ପାଦନ କରି ପାରିବେ ବୋଲି ଯୋଜନା ରଖିଛନ୍ତି ।

## ପରିବହନ ଓ ଯୋଗାଯୋଗ

୪୬ । ଯୋଜନାର ମୁଖ୍ୟ କାର୍ଯ୍ୟକ୍ରମରେ ସଡ଼କ ଉନ୍ନୟନ କାର୍ଯ୍ୟ ଅନ୍ତର୍ଭୁକ୍ତ ହୋଇ ନ ଥିବାରୁ ଆମର ଆବଶ୍ୟକତା ଅନୁଯାୟୀ ସଡ଼କ ଓ ସେତୁ ନିର୍ମାଣ କାର୍ଯ୍ୟକ୍ରମ ହାତକୁ ନେବା ନିମନ୍ତେ ବ୍ୟୟବରାଦ କରାଯାଇପାରୁନାହିଁ । ତଥାପି ଚଳିତ ଯୋଜନାର ପ୍ରଥମ ୨ ବର୍ଷ ମଧ୍ୟରେ ସଡ଼କ ଉନ୍ନୟନ କାର୍ଯ୍ୟରେ ୨୫ କୋଟି ଟଙ୍କା ପର୍ଯ୍ୟନ୍ତ ଅର୍ଥ ବିନିଯୋଗ କରିବାକୁ ଆମେ ସକ୍ଷମ ହୋଇଛୁ ।

୭୭ । ଗୀମିତ ସମ୍ବଳଜନିତ ଅସୁବିଧା ଅତିକ୍ରମ କରିବାପାଇଁ ଏକ ବ୍ୟାପକ ସଡ଼କ ନିର୍ମାଣ କାର୍ଯ୍ୟକ୍ରମ ହାତକୁ ନେବା ନିମନ୍ତେ ବିଶ୍ବ ବ୍ୟାଙ୍କ ସହିତ ରାଜ୍ୟ ସରକାର ଆଲୋଚନା ଚଳାଇବାର ପ୍ରସ୍ତାବ କରୁଛନ୍ତି ।

୭୮ । ଜନସାଧାରଣଙ୍କ ସୁବିଧା ମୁତାବକ ସଡ଼କ ପରିବହନ ବ୍ୟବସ୍ଥାର ବିକାଶ ଉଦ୍ଦେଶ୍ୟରେ ରାଜ୍ୟ ସରକାରଙ୍କ କର୍ତ୍ତୃତ୍ୱାଧୀନ ପରିବହନ କର୍ପୋରେସନମାନଙ୍କ ଜରିଆରେ ସାଧିତ ହୋଇଛି । ଏହି କର୍ପୋରେସନଗୁଡିକ ଅଧିକ ୩୨ଟି ବସ୍ ଚଳାଇ ୨୧ଟି ନୂଆ ରାସ୍ତାରେ ଯାତାୟତର ସୁବିଧା କରିଛନ୍ତି ।

୭୯ । ରାଜ୍ୟର ଖଣିଜ ସମ୍ପଦର ବିକାଶପାଇଁ ଗୁରୁତ୍ୱପୂର୍ଣ୍ଣ କଟକ-ପାରାଦୀପ ରେଳପଥର ପ୍ରଥମ ପର୍ଯ୍ୟାୟ ନିର୍ମାଣ କାର୍ଯ୍ୟ ରେଳବାଇ ମନ୍ତ୍ରଣାଳୟ ଆରମ୍ଭ କରିଥିବାରୁ ମୁଁ ଏହି ଅବସରରେ ଭାରତ ସରକାରଙ୍କୁ ଧନ୍ୟବାଦ ଜଣାଉଛି । ଚଳିତ ଆର୍ଥିକ ବର୍ଷରେ କଟକ ଓ ପାରାଦୀପ ବନ୍ଦର ମଧ୍ୟରେ ଯାତ୍ରୀବାହୀ ରେଳଗାଡ଼ି ଚଳାଚଳ କରିବା ଜନ୍ୟ ଏକ ଉଲ୍ଲେଖନୀୟ ଘଟଣା ଏବଂ ଏହାଦ୍ୱାରା ବହୁଦିନର ପୋଷିତ ଆକାଂକ୍ଷା ପୂରଣ ହୋଇପାରିଛି ।

ପର୍ଯ୍ୟଟନ

୫୦ । ଓଡ଼ିଶାରେ ଆନ୍ତର୍ଜାତୀୟ ଏବଂ ଆନ୍ତଃଦେଶୀୟ ପର୍ଯ୍ୟଟକମାନଙ୍କ ନିମନ୍ତେ ବହୁତ ସୁବିଧା ଥିଲେ ମଧ୍ୟ ସମ୍ବଳର ଅଭାବ ଯୋଗୁଁ ଏହାର ଉପଯୁକ୍ତ ବିକାଶ ହୋଇପାରୁନାହିଁ । ଯାହାହେଉନା କାହିଁକି ଦର୍ଶନୀୟ ସ୍ଥାନମାନଙ୍କରେ ପର୍ଯ୍ୟଟକମାନଙ୍କ ପାଇଁ ଅଳ୍ପ ବ୍ୟୟରେ ବାସୋପଯୋଗୀ ଗୃହସଂଖ୍ୟା ୬୦ରୁ ୯୦କୁ ବୃଦ୍ଧି କରାଯାଇଛି ଏବଂ ସେମାନଙ୍କପାଇଁ ପରିବହନ ବ୍ୟବସ୍ଥାର ସମ୍ପ୍ରସାରଣ କରାଯାଇଛି ।

ଶିକ୍ଷା ଏବଂ ଯୁବସେବା

୫୧ । ମାନ୍ୟବର ସଦସ୍ୟମାନେ ଲକ୍ଷ୍ୟ କରିବେ ଯେ ଶିକ୍ଷା ବାବଦରେ ରାଜ୍ୟର ଅର୍ଥଯୋଜନା ବଜେଟ୍ ଅନୁଦାନରେ ସର୍ବାଧିକ ଗୁରୁତ୍ୱ ଦିଆଯାଇଛି ।

୫୨ । ୬ରୁ ୧୦ ବର୍ଷ ବୟସ୍କ ଛାତ୍ରଛାତ୍ରୀମାନଙ୍କୁ ପ୍ରାଥମିକ ଶିକ୍ଷାର ସୁବିଧା ସୁଯୋଗ ଯୋଗାଇଦେବା ସଙ୍ଗେ ସଙ୍ଗେ ୧୪ ବର୍ଷରେ ପଦାର୍ପଣ କରିବା ପୂର୍ବରୁ ସ୍କୁଲ ଛାଡ଼ି ଚାଲିଯାଇଥିବା ଛାତ୍ର ଛାତ୍ରୀମାନଙ୍କର ସଂଖ୍ୟା ହ୍ରାସ କରିବା ଓ ସାମ୍ପ୍ରତିକ ସୁବିଧାର ପୂର୍ଣ୍ଣ ସଦୁପଯୋଗ କରିବା ନିମନ୍ତେ ଆମର ଶିକ୍ଷା ଯୋଜନାର ଗୁରୁତ୍ୱ ଦିଆଯାଉଛି । ଏହି ଲକ୍ଷ୍ୟ ପୂରଣ କରିବା ନିମନ୍ତେ ଚଳିତ ଯୋଜନାର ପ୍ରଥମ ୩ ବର୍ଷ ମଧ୍ୟରେ ୧,୬୦୦ଟି ନୂତନ ନିମ୍ନ ପ୍ରାଥମିକ ଓ ୧,୬୦୧ଟି ନୂତନ ମଧ୍ୟ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରାଯାଇଛି ଏବଂ ୫,୦୦୦ ନିମ୍ନପ୍ରାଥମିକ

ବିଦ୍ୟାଳୟକୁ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ସ୍ତରକୁ ଉନ୍ନୀତ କରାଯାଉଛି । ଆଗାମୀ ବର୍ଷର କାର୍ଯ୍ୟକ୍ରମରେ ଆହୁରି ୫୦୦ଟି ନିମ୍ନ ପ୍ରାଥମିକ ବିଦ୍ୟାଳୟ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ସ୍ତରକୁ ଉନ୍ନୀତ କରାଯିବ । ଏହି ସମୟ ମଧ୍ୟରେ ଧାରାବାହିକଭାବେ ଜାମ ଲେଖା ଅଭିଯାନ, ଗରିବ ଛାତ୍ର ଛାତ୍ରୀଙ୍କୁ ମାଗଣାରେ ପାଠ୍ୟ ପୁସ୍ତକ, ସ୍କୁଲ ପୋଷାକ ଓ ଲେଖନ ପଠନ ସାମଗ୍ରୀ ଯୋଗାଇଦେବାର ବ୍ୟବସ୍ଥା ଏବଂ ମଧ୍ୟ ଇଂରାଜୀ ବିଦ୍ୟାଳୟମାନଙ୍କରେ ପାଠ୍ୟ ପୁସ୍ତକ ବ୍ୟାଙ୍କ ଖୋଲିବା ଦ୍ୱାରା ପ୍ରାଥମିକ ବିଦ୍ୟାଳୟରେ ଛାତ୍ରସଂଖ୍ୟା ଶତକଡ଼ା 75ରୁ 79 ଏବଂ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଛାତ୍ରସଂଖ୍ୟା ଶତକଡ଼ା 22ରୁ 24କୁ ବୃଦ୍ଧି ପାଇଛି । ଆଦିବାସୀ ଓ ହରିଜନ ଅଧ୍ୟୁଷିତ ଅଞ୍ଚଳରେ ଆଦିବାସୀ ଓ ଗ୍ରାମ ମଙ୍ଗଳ ବିଭାଗ ତରଫରୁ 36ଟି ଆବାସିକ ପ୍ରାଥମିକ ବିଦ୍ୟାଳୟ ସମେତ 1,326ଟି ପ୍ରାକ୍ ପ୍ରାଥମିକ ଓ ପ୍ରାଥମିକ ବିଦ୍ୟାଳୟ ଏବଂ 65ଟି ଆବାସୀ ମଧ୍ୟ ବିଦ୍ୟାଳୟ ଖୋଲାଯାଇଛି । ଶିକ୍ଷାର ଗୁଣାତ୍ମକ ମାନ ବୃଦ୍ଧି ଏବଂ ପ୍ରାଥମିକ ବିଦ୍ୟାଳୟଗୁଡ଼ିକପାଇଁ ଶିକ୍ଷାଦାନ ତଥା ଶିକ୍ଷା ଉପକରଣପାଇଁ ଆର୍ଥିକ ସାହାଯ୍ୟ ଯଥେଷ୍ଟ ଯୋଗାଇଦେବା ଉପରେ ଧ୍ୟାନ ଦିଆଯାଉଛି ।

୧୩ । ଚଳିତ ବର୍ଷଠାରୁ 10+2+3 ଶିକ୍ଷା ପଦ୍ଧତି ଢାଞ୍ଚାରେ 10ବର୍ଷିଆ ପାଠ୍ୟକ୍ରମ ପ୍ରବର୍ତ୍ତନ କରିବାପାଇଁ ନୀତିଗତଭାବେ ଗ୍ରହଣ କରାଯିବାପରେ ମାଧ୍ୟମିକ ତଥା ଉଚ୍ଚତର ମାଧ୍ୟମିକ ଶିକ୍ଷା ସ୍ତରର ସିଲାବସ୍‌କୁ ନୂତନ ରୂପରେଖ ଦେବା ସଙ୍ଗେ ସଙ୍ଗେ ପାଠ୍ୟସୂଚୀରେ ଅର୍ଦ୍ଧନ୍ତ ବୃତ୍ତିଗତ ଆଭିମୁଖ୍ୟ ରଖାଯାଇଛି । ଏଥିନିମନ୍ତେ ଅସମ୍ପୂର୍ଣ୍ଣ ରହିଥିବା ବିଦ୍ୟାଳୟଗୁଡ଼ିକର ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ କରିବା, ନୂତନ ପାଠାଗାର ପ୍ରତିଷ୍ଠା କରିବା, ଗବେଷଣାଗାର ଓ ସରଞ୍ଜାମ ବିଦ୍ୟାଳୟଗୁଡ଼ିକରେ ସୁବିଧାସୁଯୋଗ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଅନ୍ୟାନ୍ୟ ଆନୁସଙ୍ଗିକ ସୁବିଧାର ବିକାଶ ଘଟାଇବା ପାଇଁ ଯୋଜନା ଅବଧିରେ ଅଗ୍ରାଧିକାର ଦିଆଯାଉଛି । ଏହା ବ୍ୟତୀତ ରାଜ୍ୟ ସରକାର ଆଦିବାସୀ ଉପଯୋଜନା ଅଞ୍ଚଳରେ 7ଟି ନୂତନ ସହଶିକ୍ଷା ଉଚ୍ଚ ଇଂରାଜୀ ବିଦ୍ୟାଳୟ ଓ ଶିକ୍ଷା କ୍ଷେତ୍ରରେ ଅନଗ୍ରସର ଅଞ୍ଚଳଗୁଡ଼ିକରେ 5ଟି ବାଳିକା ଉଚ୍ଚ ଇଂରାଜୀ ବିଦ୍ୟାଳୟ ଓ 1ଟି ମହିଳା କଲେଜ ପ୍ରତିଷ୍ଠା କରିଛନ୍ତି । ଶିକ୍ଷାର ପ୍ରସାର ଘଟାଇବା ନିମନ୍ତେ ଡାକ ଜରିଆରେ ଶିକ୍ଷାଦାନ କାର୍ଯ୍ୟକ୍ରମ ଓ ସାମୟିକ ଶିକ୍ଷା ପାଠ୍ୟକ୍ରମ ପ୍ରବର୍ତ୍ତନ କରାଯାଉଛି । ଶାରୀରିକ ବ୍ୟାୟାମ, କ୍ରୀଡ଼ା ଓ କାର୍ଯ୍ୟାନୁଭୂତି ସଙ୍ଗୀତ ଆମ ଶିକ୍ଷା କାର୍ଯ୍ୟକ୍ରମର ଏକ ବିଶିଷ୍ଟ ଅଙ୍ଗ । ଜୀବନପ୍ରତି ସୁସ୍ଥ ଦୃଷ୍ଟିଭଙ୍ଗୀର ବିକାଶ ପାଇଁ ଶିଶୁ ଓ ଯୁବସମାଜ ମଧ୍ୟରେ ସୁସ୍ଥ ଶରୀର ଗଠନ ନିମନ୍ତେ ଆଗ୍ରହ ସୃଷ୍ଟି କରିବା ଦିଗରେ ଆମକୁ ଯଥେଷ୍ଟ ଧ୍ୟାନ ଦେବାକୁ ହେବ ।

## କଳା ଓ ସଂସ୍କୃତି

୫୪ । ଗ୍ରୀନିତ ସମ୍ବଳସତ୍ତ୍ୱେ ଆମର ଗୌରବାବହ ସାଂସ୍କୃତିକ ପରମ୍ପରାର ସଂରକ୍ଷଣ-ପାଇଁ ପ୍ରାଚୀନ କଳାଗାର, ସଂଗ୍ରହାଳୟ, ସ୍ଥାପତ୍ୟକଳା ଓ ପ୍ରତ୍ନତାତ୍ତ୍ୱିକ ଖନନର ବିକାଶ ସାଧନ ସଙ୍ଗେ ସଙ୍ଗେ ନାଟ୍ୟ, ନୃତ୍ୟ, ସଙ୍ଗୀତ ଓ ସାହିତ୍ୟର ବିକାଶପାଇଁ ଆର୍ଥିକ ସାହାଯ୍ୟ ପ୍ରଦାନ ବିଗତର ଯୋଜନାକାଳରେ ଯଥାଯଥ ଧ୍ୟାନ ଦିଆଯାଇଛି ।

## ସ୍ୱାସ୍ଥ୍ୟ ଓ ପରିବାର ନିୟୋଜନ

୫୫ । ଡାକ୍ତରଖାନା ଓ ଚିକିତ୍ସାଳୟଗୁଡ଼ିକର ଚିକିତ୍ସାଗତ ସୁବିଧାର ଉନ୍ନତି ବିଧାନ, ଜିଲ୍ଲା ସଦର ମହକୁମାରେ ଥିବା ଡାକ୍ତରଖାନାଗୁଡ଼ିକରେ ବିଶେଷଜ୍ଞ ମୂଳକ ଚିକିତ୍ସା ସୁବିଧା ସହିତ ରୋଗୀମାନଙ୍କୁ ଉତ୍ତମ ଧରଣର ପଥ୍ୟ ଓ ଚିକିତ୍ସା ଉତ୍ସ ବାବଦରେ ଯୋଜନା ବାବଦ ବ୍ୟୟ ମୁଖ୍ୟତଃ ବିନିଯୋଗ କରାଯାଉଛି । 12ଟି ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରକୁ 30 ଶଯ୍ୟା ବିଶିଷ୍ଟ ଡାକ୍ତରଖାନାରେ ପରିଣତ କରାଯାଉଛି ଓ 6ଟି ଚିକିତ୍ସାଳୟକୁ 6 ଶଯ୍ୟା ବିଶିଷ୍ଟ ଡାକ୍ତରଖାନାରେ ପରିଣତ କରାଯାଉଛି । ବ୍ରହ୍ମପୁର ସିଟି ଡାକ୍ତରଖାନାରେ ଅଧିକ 25ଟି ଶଯ୍ୟା ବଢାଯାଉଛି ଓ ରାଜ୍ୟରେ ଏଗାରଟି ନୂତନ ଦନ୍ତ ଚିକିତ୍ସା କେନ୍ଦ୍ର ଖୋଲାଯାଇଛି । ଚଳିତ ବର୍ଷ ଶେଷସୁଦ୍ଧା ସହାୟକ ଚିକିତ୍ସା କେନ୍ଦ୍ରର ସଂଖ୍ୟା 62ରୁ 72କୁ ବୃଦ୍ଧି ପାଇବ । ଚିକିତ୍ସା ମହାବିଦ୍ୟାଳୟ ଓ ସଂପୃକ୍ତ ସହିତ ସଂଯୁକ୍ତ ଡାକ୍ତରଖାନାଗୁଡ଼ିକର ଉନ୍ନତି ବିଧାନ କରାଯାଇଛି ଏବଂ ବ୍ରହ୍ମପୁର ଓ ବୁର୍ଲା ମେଡ଼ିକାଲ କଲେଜରେ କର୍କଟ ରୋଗୀମାନଙ୍କପାଇଁ କୋବାଲ୍ଟ ଥେରାପିର ବ୍ୟବସ୍ଥା କରାଯାଇଛି । ଆୟୁର୍ବେଦିକ ଓ ହୋମିଓପାଥିକ ଚିକିତ୍ସା-ପ୍ରତି ଲୋକପ୍ରିୟତା ବଢ଼ିଥିବାରୁ 1977-78 ମସିହାରେ ଉଭୟ ଚିକିତ୍ସାଳୟ 10ଟି ଲେଖାଏଁ ଚିକିତ୍ସାଳୟ ଖୋଲାଯିବ ।

୫୬ । ମ୍ୟାଲେରିଆ, କାଳଜ୍ୱର ଓ କୁଷ୍ଠ ରୋଗର ନିୟନ୍ତ୍ରଣପାଇଁ କେନ୍ଦ୍ରୀୟ ସହାୟତା ଯୋଜନା କାର୍ଯ୍ୟକ୍ରମ ଅନୁଯାୟୀ ବ୍ୟାପକ ବ୍ୟବସ୍ଥା ଗ୍ରହଣ କରାଗଲା । କୁଷ୍ଠ ରୋଗ ସଂକ୍ରମଣକୁ ରୋକିବା ଉଦ୍ଦେଶ୍ୟରେ ଚଳିତ ଆର୍ଥିକ ବର୍ଷରେ ଅଧିକ 3ଟି କୁଷ୍ଠ ନିୟନ୍ତ୍ରଣ କେନ୍ଦ୍ର ଓ 4ଟି ଉପକେନ୍ଦ୍ର ଖୋଲାଯାଇଛି ଏବଂ 1977-78ରେ ଆଉ ୬ଟି କେନ୍ଦ୍ର ଖୋଲାଯିବ ଓ ଏହା ଫଳରେ କୁଷ୍ଠ ନିୟନ୍ତ୍ରଣ କେନ୍ଦ୍ର ସଂଖ୍ୟା 45ରେ ପହଞ୍ଚିବ । କୁଷ୍ଠ ରୋଗୀଙ୍କ ଚିକିତ୍ସା ନିମନ୍ତେ ଆନୁଷଙ୍ଗିକ ସୁବିଧା ସୁଯୋଗ ଥିବା ୪ଟି ଓ୍ୱାର୍ଡ ଚଳିତ ବର୍ଷ ଖୋଲାଯାଉଛି ଏବଂ 1977-78ମଧ୍ୟରେ ଆଉ ୪ଟି ଓ୍ୱାର୍ଡ ଖୋଲାଯିବ ।

## ଜନସ୍ୱାସ୍ଥ୍ୟ ଓ ପାନୀୟ ଜଳଯୋଗାଣ

୫୭ । ସହରାଞ୍ଚଳ ଓ ଗ୍ରାମାଞ୍ଚଳରେ ପାନୀୟ ଜଳଯୋଗାଣ ବ୍ୟବସ୍ଥାର ଉନ୍ନତି ବିଧାନ ଜନସ୍ୱାସ୍ଥ୍ୟ ବ୍ୟବସ୍ଥାର ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ ବିଶେଷ । ୫ମ ଯୋଜନାର ପ୍ରାରମ୍ଭରେ ୧୫,୮୯୪ଟି ଜଳାଭାବଗ୍ରସ୍ତ ଗ୍ରାମରେ ପାନୀୟ ଜଳଯୋଗାଣର ନିଶ୍ଚିତ ବ୍ୟବସ୍ଥା ନଥିଲା । ତନ୍ମଧ୍ୟରୁ ଚଳିତ ବର୍ଷ ଶେଷ ସୁଦ୍ଧା ୭,୫୦୦ଟି ଗ୍ରାମକୁ ପାନୀୟ ଜଳଯୋଗାଣର ବ୍ୟବସ୍ଥା କରାଯାଇପାରିବ । ଏହା ସତ୍ତ୍ୱେ ଅନ୍ୟୂନ ୮,୦୦୦ରୁ ଊର୍ଦ୍ଧ୍ୱ ଗ୍ରାମ ପାନୀୟ ଜଳାଭାବ ସମସ୍ୟାର ସମ୍ମୁଖୀନ ହେବେ । ଆସନ୍ତା ଦୁଇ ବର୍ଷ ଭିତରେ ଏହି ଗ୍ରାମମାନଙ୍କ ପାଇଁ ଜଳଯୋଗାଣର ନିଶ୍ଚିତ ବ୍ୟବସ୍ଥା କରିବା ନିମନ୍ତେ ଆମ୍ଭେମାନେ ଚେଷ୍ଟା କରୁଛୁ । ଏହି ଉଦ୍ଦେଶ୍ୟରେ ୨.୫୩ କୋଟି ଟଙ୍କା ବ୍ୟୟ କରାଯିବାପାଇଁ ବଜେଟରେ ବ୍ୟବସ୍ଥା ରହିଛି ।

୫୮ । ସହରାଞ୍ଚଳରେ ଜଳ ଯୋଗାଣର ନୂତନ ବ୍ୟବସ୍ଥାମାନଙ୍କ ମଧ୍ୟରେ ୫ କୋଟି ଟଙ୍କାରୁ ଊର୍ଦ୍ଧ୍ୱ ବ୍ୟୟରେ କାର୍ଯ୍ୟକାରୀ କରାଯାଇଥିବା ବ୍ରହ୍ମପୁର-ଗୋପାଳପୁର ପାଇପ୍ ଜଳଯୋଗାଣ ବ୍ୟବସ୍ଥା ଉଲ୍ଲେଖଯୋଗ୍ୟ । ଏହି ଯୋଜନାପାଇଁ ଭାରତ ସରକାର ଏବଂ ଜୀବନବୀମା କର୍ପୋରେସନରୁ ଋଣ ସୂତ୍ରରେ ଅର୍ଥ ସଂଗ୍ରହ କରାଯିବ । ଇଣ୍ଡିଆନ ରେୟାର ଆର୍ଥ ନାମକ ସରକାରୀ ଉଦ୍ୟୋଗ ମଧ୍ୟ ଏଥିପାଇଁ ଋଣ ଦେବେ । ଶେଷୋକ୍ତ କମ୍ପାନୀର କାରଖାନା ପାଇଁ ଏହି ଯୋଜନାରୁ ଜଳ ଯୋଗାଇ ଦିଆଯିବ ।

## ବାସଗୃହ ଯୋଗାଣ

୫୯ । ଘରଡିହ ନଥିବା ଲୋକଙ୍କୁ ମାଗଣାରେ ଘରଡିହ ଯୋଗାଣ, ଦୁର୍ବଳଶ୍ରେଣୀ ଲୋକଙ୍କୁ ସ୍ୱଳ୍ପବ୍ୟୟସାପେକ୍ଷ ଗୃହ ଯୋଗାଣ ଏବଂ ଗ୍ରାମ୍ୟ ଗୃହ ଯୋଗାଣ ଯୋଜନା ଅନୁଯାୟୀ ଋଣ ଏବଂ ନାମମାତ୍ର ଗୃହୀଙ୍କୁ ଗୃହ ନିର୍ମାଣ ପାଇଁ ଅନୁଦାନ ଆମର ବାସଗୃହ ଯୋଗାଣ ଯୋଜନାର ପ୍ରଧାନ ଅଭିମୁଖ୍ୟ । ଗତ ତିନି ବର୍ଷ ମଧ୍ୟରେ ୭,୨୪୨ ଗ୍ରାମ୍ୟ ଭୂମିହୀନ ଲୋକଙ୍କୁ ସମସଂଖ୍ୟକ ଆବାସଯୋଗ୍ୟ ଗୃହସ୍ଥଳୀ ଯୋଗାଇ ଦିଆଯାଇଛି । ଏତଦ୍‌ବ୍ୟତୀତ ୫୧,୯୩୭ଟି ଘରଡିହହୀନ ପରିବାରଙ୍କୁ ୪,୫୯୦ ଏକର ପରିମିତ ଘରଡିହ ବିନାମୂଲ୍ୟରେ ଯୋଗାଇ ଦିଆଯାଇଛି । ଏମାନଙ୍କ ମଧ୍ୟରୁ ଶତକଡ଼ା ୭୨ ଜଣ ତଫସିଲଭୁକ୍ତ ଜାତି ଓ ସମ୍ପ୍ରଦାୟର ଲୋକ । ୧୯୭୬-୭୭ ମସିହା ଶେଷସୁଦ୍ଧା ୭,୬୦୦ରୁ ଅଧିକ ସଂଖ୍ୟକ ପରିବାରକୁ ଗ୍ରାମ୍ୟ ଗୃହ ଯୋଜନା ଭିତ୍ତିରେ ଋଣ ସାହାଯ୍ୟ ଦିଆଯାଇଛି । ଆସନ୍ତା ବର୍ଷରେ ଏହିପରି ୩୫୦ ପରିବାରଙ୍କୁ ଋଣ ସାହାଯ୍ୟ ଦେବାର ବ୍ୟବସ୍ଥା ରହିଛି । ଏହାଛଡ଼ା ନିମ୍ନ ଓ ମଧ୍ୟମ ଆୟକାରୀ ଗୃହନିର୍ମାଣ ଯୋଜନାମାନଙ୍କରେ ବହୁ ପରିମାଣରେ ଋଣ ମଞ୍ଜୁରୀ କରାଯାଇଛି ।

୭୦ । ଗୃହ ନିର୍ମାଣ ଓ ପୌର ଉନ୍ନୟନ କର୍ପୋରେସନ ଏବଂ ରାଜ୍ୟ ସରକାରଙ୍କଠାରୁ ଅର୍ଥ ସାହାଯ୍ୟ ନେଇ ଓଡ଼ିଶା ରାଜ୍ୟ ହାଉସିଂ ବୋର୍ଡ଼ ମୁଖ୍ୟତଃ ନିମ୍ନ ଆୟକାରୀ ଶ୍ରେଣୀଭୁକ୍ତ ଲୋକଙ୍କୁ ବସବାସ ନିମନ୍ତେ ବିଭିନ୍ନ ଧରଣର ୧,୮୭୦ ଗୋଟି ବାସଗୃହ ନିର୍ମାଣ କାର୍ଯ୍ୟ ଆରମ୍ଭ କରିଛନ୍ତି । ନବଗଠିତ ନଗର ଉନ୍ନୟନ ନ୍ୟାସ ସହରାଞ୍ଚଳରେ ଗୃହ ନିର୍ମାଣ ପାଇଁ ବ୍ୟାପକ ଯୋଜନା ପ୍ରସ୍ତୁତ କରିସାରିଲେଣି । ଭୁବନେଶ୍ୱର ନଗର ଉନ୍ନୟନ ନ୍ୟାସ ଆରମ୍ଭ କରିଥିବା ୧ ହଜାର ବାସଗୃହ ମଧ୍ୟରୁ ୭୮ ଟି ଗୃହ ନିର୍ମାଣ କାର୍ଯ୍ୟ ଶେଷ କରି ସ୍ୱଳ୍ପ ଆୟକାରୀ ଲୋକଙ୍କୁ ବଣ୍ଟନ କରିସାରିଛନ୍ତି ।

## କର୍ମ ଯୋଗାଣ

୭୧ । ୧୯୭୭ ମସିହା ଶେଷରେ ଆମ ରାଜ୍ୟରେ କର୍ମନିଯୁକ୍ତି ନ ପାଇଥିବା ୩ ଲକ୍ଷ ୫୬ ହଜାର ବ୍ୟକ୍ତିଙ୍କ ନାମ ରେଜିଷ୍ଟ୍ରିଭୁକ୍ତ ଥିଲା । ଏହା ୧୯୭୫ ମସିହାରେ ତତ୍କାଳୀନ ରେଜିଷ୍ଟ୍ରିଭୁକ୍ତ ସଂଖ୍ୟାଠାରୁ ଶତକଡ଼ା ମାତ୍ର ଏକ ଭାଗ ଅଧିକ । କିନ୍ତୁ ୧୯୭୫ ମସିହାରେ ୧୯,୪୫୦ ଲୋକଙ୍କୁ ଏମ୍ପ୍ଲଏମେଣ୍ଟ ଏକ୍ସଚେଞ୍ଜ ଜରିଆରେ ନିଯୁକ୍ତି ଦିଆଯାଇଥିବା ସ୍ଥଳେ ୧୯୭୭ ମସିହାରେ ୨୧,୪୨୦ ଜଣଙ୍କୁ ନିଯୁକ୍ତି ଦିଆଯାଇଛି । ରାଜ୍ୟର ବେକାର ସମସ୍ୟା ବିଶେଷତଃ ଶିକ୍ଷିତମାନଙ୍କ ମଧ୍ୟରେ ବେକାରୀ ବୃଦ୍ଧି ସମ୍ବନ୍ଧରେ ଆମେ ଖୁବ୍ ବେଶି ସଚେତନ ରହିଛୁ । ଅଧିକ ସଂଖ୍ୟକ କର୍ମ ନିଯୁକ୍ତି ସୁବିଧା ସୃଷ୍ଟି କରିବାପାଇଁ ଆମେ କୌଣସି ସୁଯୋଗ ଛାଡ଼ିବୁ ନାହିଁ । ଆତ୍ମନିଯୁକ୍ତି-ପ୍ରଶିକ୍ଷଣ ଏବଂ ବ୍ୟାଙ୍କ ଓ ଅନ୍ୟାନ୍ୟ ଅର୍ଥଯୋଗାଣକାରୀ ସଂସ୍ଥାମାନଙ୍କରୁ ଋଣ ଆକାରରେ ସାହାଯ୍ୟ ଶିକ୍ଷିତମାନଙ୍କ ମଧ୍ୟରେ ବେକାରୀ ଦୂର କରିବାପାଇଁ ବିଶେଷ ସହାୟକ ହେବ ।

## ଆଦିବାସୀ ଉପଯୋଜନା ଓ ଅନୁନ୍ନତ ଶ୍ରେଣୀର କଲ୍ୟାଣ

୭୨ । ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ସମ୍ପ୍ରଦାୟ ଅନ୍ତର୍ଭୁକ୍ତ ଅନୁନ୍ନତ ଶ୍ରେଣୀଙ୍କ ସଂଖ୍ୟା ରାଜ୍ୟର ମୋଟ ଲୋକସଂଖ୍ୟାର ଶତକଡ଼ା ୩୮.୧୯ ଭାଗ । ଏହି ଶ୍ରେଣୀର ଲୋକଙ୍କ ସାମାଜିକ ଅର୍ଥନୈତିକ ଉନ୍ନତି ବିଧାନ ନିମନ୍ତେ ଉଦ୍ଦିଷ୍ଟ କାର୍ଯ୍ୟକ୍ରମ ଆମ ପକ୍ଷରେ ଏକ ମହାନ୍ ନୈତିକ କର୍ତ୍ତବ୍ୟ । ଏଥିପାଇଁ ଆମର ୫ମ ଯୋଜନାରେ ଏକ ଗୁରୁତ୍ୱପୂର୍ଣ୍ଣ ଅଂଶରୂପେ ଆଦିବାସୀ ଉପ-ଯୋଜନା ପ୍ରବର୍ତ୍ତନ କରାଯାଇଛି । ଏହି ଉପଯୋଜନା ୧୧୮ ବ୍ଲକରେ କାର୍ଯ୍ୟକାରୀ ହେଉଛି ଏବଂ ଏହି ଯୋଜନାରେ ବିନିଯୋଗ ନିମନ୍ତେ ବିଭିନ୍ନ ଉନ୍ନୟନ ପରିକଳ୍ପନାରୁ ଏକତ୍ରିତ କରାଯାଇଥିବା ସମ୍ବଳର ପରିମାଣ ହେଉଛି ପ୍ରାୟ ୧୯୩ କୋଟି ଟଙ୍କା । ଏଥିମଧ୍ୟରୁ ୧୯୭୬-୭୭ ଶେଷ ସୁଦ୍ଧା ୮୨ କୋଟି ଟଙ୍କା ଖର୍ଚ୍ଚ ହୋଇ

ସାଇଥିବ ଏବଂ ଅସନ୍ତା ବର୍ଷ ବଜେଟରେ ପ୍ରାୟ ୪୦.୭୩ କୋଟି ଟଙ୍କାର ବ୍ୟୟ ବରାଦ କରାଯାଉଛି । ଏହି ପରିକଳ୍ପନାକୁ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ଯୋଜନାର ପ୍ରଥମ ୩ ବର୍ଷରେ ୯୮ଟି ବ୍ଲକକୁ ନେଇ ୧୯ଟି ସମନ୍ୱିତ ଆଦିବାସୀ ଉନ୍ନୟନ ପ୍ରୋଜେକ୍ଟ ପ୍ରତିଷ୍ଠା କରାଯାଉଛି । ସମନ୍ୱିତ ଆଦିବାସୀ ଉନ୍ନୟନ ପ୍ରୋଜେକ୍ଟ ପରିସରଭୁକ୍ତ ହୋଇ ନଥିବା ୨୦ଟି ଗୋଷ୍ଠୀ ଉନ୍ନୟନ ବ୍ଲକରେ ୪ଟି ଆଦିବାସୀ ଉନ୍ନୟନ ସଂସ୍ଥା ଦ୍ୱାରା ଏ ଧରଣର କାର୍ଯ୍ୟକ୍ରମ କରାଯାଇଛି । ଆଇ. ଟି. ଡି. ପି. ମାନେ ଯେପରି ସେମାନଙ୍କର ବଳିଷ୍ଠ ଭୂମିକାର ଦାୟିତ୍ୱ ଦକ୍ଷତାର ସହ ତୁଲାଇ ପାରିବେ ସେଥିପାଇଁ ସେଗୁଡ଼ିକର ସାଂଗଠନିକ ସ୍ଥିତିକୁ ଦୃଢ଼ କରାଯାଇଛି । ଆଦିବାସୀ ଉପ-ଯୋଜନା ପରିସର ବାହାରେ ଅନୁନ୍ନତ ଶ୍ରେଣୀଙ୍କ ଉନ୍ନତି ବିଧାନ ଲକ୍ଷ୍ୟରେ କୃଷି ଓ ପଶୁପାଳନର ବିକାଶ ଉଦ୍ଦେଶ୍ୟରେ ହରିଜନମାନଙ୍କପାଇଁ ୨ଟି ଓ ଆଦିବାସୀ ଲୋକଙ୍କପାଇଁ ୩ଟି ପଥପ୍ରଦର୍ଶକ ଯୋଜନା କାର୍ଯ୍ୟକାରୀ ହେଉଛି । ତଫସିଲଭୁକ୍ତ ଜାତିର ବିକାଶ ନିମନ୍ତେ ଉଦ୍ଦିଷ୍ଟ ତୃତୀୟ ଯୋଜନାଟି ୧୯୭୭-୭୮ରେ ଆରମ୍ଭ ହେବ । ସହର ଉନ୍ନୟନ ସଂସ୍ଥା ଜରିଆରେ ସହରର ସମ୍ପ୍ରଦାୟ ଲୋକମାନଙ୍କ ଉନ୍ନତି ପାଇଁ ସ୍ୱତନ୍ତ୍ର ଅର୍ଥନୈତିକ ବିକାଶ କାର୍ଯ୍ୟକ୍ରମମାନ କାର୍ଯ୍ୟକାରୀ କରାଯାଉଛି ।

୭୩ । ଆଦିବାସୀ ଓ ହରିଜନ ଲୋକଙ୍କୁ ସିଂଚ ବହିର୍ଭୂତ ଜମି ଓ ସରକାରୀ ପତିତ ଜମି ପ୍ରଦାନ ବିଷୟ ଅନ୍ୟତ୍ର ଉଲ୍ଲେଖ କରାଯାଉଛି । ବଣ୍ଟନ କରାଯାଇଥିବା ମୋଟ ସରକାରୀ ପତିତ ଜମି ମଧ୍ୟରୁ ୧୧ ହଜାର ଏକର ଜମି ଆବାଦ କରାଯାଇ ଉପକୃତ ଲୋକମାନଙ୍କୁ ଦିଆଯାଇଛି । ସମନ୍ୱିତ ଆଦିବାସୀ ଉନ୍ନୟନ ସଂସ୍ଥାଦ୍ୱାରା ମଞ୍ଜୁର କରାଯାଇଥିବା ଅର୍ଥ ବିନିଯୋଗରେ ଆଦିବାସୀମାନଙ୍କ ୩୨,୦୦୦ ଏକର ଜମିରେ ଜଳସେଚନର ବ୍ୟବସ୍ଥା କରାଯାଇଛି ।

୭୪ । ଆଦିବାସୀ ଉନ୍ନୟନ ସମବାୟ ସମିତିର ୨୭୯ ଟି ସୁଲଭ ମୂଲ୍ୟ ଦୋକାନ ଜରିଆରେ ଆଦିବାସୀ ଅଞ୍ଚଳରେ ନ୍ୟାଯ୍ୟ ମୂଲ୍ୟରେ ବିଭିନ୍ନ ନିତ୍ୟ ବ୍ୟବହାର୍ଯ୍ୟ ଅତ୍ୟାବଶ୍ୟକ ସାମଗ୍ରୀ ଯୋଗାଇ ଦିଆଯାଇଛି । ଆଦିବାସୀମାନଙ୍କ ଦ୍ୱାରା ଉତ୍ପନ୍ନ କୃଷିଜାତ ଦ୍ରବ୍ୟ ଓ ସେମାନଙ୍କ ସଂଗୃହୀତ ଜଙ୍ଗଲଜାତ ଦ୍ରବ୍ୟଗୁଡ଼ିକୁ ଉଚିତ ଦରରେ ବିକ୍ରି କରିବାର ବ୍ୟବସ୍ଥା ଏହି କେନ୍ଦ୍ର ଜରିଆରେ କରାଯାଉଛି ।

୭୫ । ସାଧାରଣ ଶିକ୍ଷା ପ୍ରସାର କାର୍ଯ୍ୟକ୍ରମର ଅଂଶ ସ୍ୱରୂପ ଏବଂ ଆଦିବାସୀ ଓ ଗ୍ରାମ ମଙ୍ଗଳ ବିଭାଗ ଦ୍ୱାରା ପରିଚାଳିତ ସ୍ୱତନ୍ତ୍ର ଶିକ୍ଷାନୁଷ୍ଠାନମାନଙ୍କ ଜରିଆରେ ଅନୁନ୍ନତ ଶ୍ରେଣୀଙ୍କ ମଧ୍ୟରେ ଶିକ୍ଷାର ପ୍ରସାର ନିମନ୍ତେ ଯଥେଷ୍ଟ ଧ୍ୟାନ ଦିଆଯାଉଛି । ରାଜ୍ୟର ସମସ୍ତ ଶିକ୍ଷା ଓ ତାଲିମ ଅନୁଷ୍ଠାନମାନଙ୍କରେ ତଫସିଲଭୁକ୍ତ ଜାତି ଓ ଜନଜାତିଭୁକ୍ତ ସମ୍ପ୍ରଦାୟର ଛାତ୍ରଛାତ୍ରୀମାନଙ୍କ ନିମନ୍ତେ ସ୍ଥାନ ସଂରକ୍ଷଣ କରାଯାଉଛି ।

୬୬ । ଆଭ୍ୟନ୍ତରୀଣ ଅଞ୍ଚଳରେ ବାସ କରୁଥିବା ଆଦିବାସୀମାନଙ୍କୁ ଚିକିତ୍ସାର ସୁବିଧା ଯୋଗାଇଦେବା ଉଦ୍ଦେଶ୍ୟରେ ଆଦିବାସୀ ଓ ଗ୍ରାମମଙ୍ଗଳ ବିଭାଗ ଦ୍ୱାରା ଖୋଲାଯାଇଥିବା 6 ଶଯ୍ୟା ବିଶିଷ୍ଟ 17ଟି ହାସପାତାଳ, 11ଟି ଚିକିତ୍ସାଳୟ, 14ଟି ଭ୍ରାମ୍ୟମାଣ ସ୍ୱାସ୍ଥ୍ୟ କେନ୍ଦ୍ର, 11ଟି ଆୟୁର୍ବେଦ ଚିକିତ୍ସାଳୟ ଏବଂ 4ଟି ସୁଜ ଚିକିତ୍ସା କେନ୍ଦ୍ର ପୂର୍ବଭଳି କାର୍ଯ୍ୟକାରୀ ହେଉଛି ।

୬୭ । ଆଦିବାସୀମାନଙ୍କର ଗୃହ ଜମି ହସ୍ତାନ୍ତର ନ ହୋଇ ସୁରକ୍ଷିତ ରହିବା ସଙ୍ଗେ ସଙ୍ଗେ ସେମାନଙ୍କୁ ମହାଜନମାନଙ୍କ ଶୋଷଣରୁ ରକ୍ଷା କରିବାପାଇଁ ଆଇନମାନ ପ୍ରଣୟନ କରାଯାଇଛି । ସରକାରୀ ଚାକିରୀରେ ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ସମ୍ପ୍ରଦାୟପାଇଁ ସ୍ଥାନ ସଂରକ୍ଷଣ ନିମନ୍ତେ 1976 ଜୁଲାଇ ମାସଠାରୁ ବୈଧାନିକ ବ୍ୟବସ୍ଥା ପ୍ରବର୍ତ୍ତନ କରାଯାଇଛି । ଏହାଦ୍ୱାରା ନିଯୁକ୍ତି ସଂରକ୍ଷଣ ବ୍ୟବସ୍ଥା ଯଥାଯଥ ଭାବେ କାର୍ଯ୍ୟକାରୀ କରାଯାଇ ପାରିବ ।

ସମାଜ କଲ୍ୟାଣ ଓ ପୁଷ୍ଟି କାର୍ଯ୍ୟକ୍ରମ

୬୮ । ବିଦ୍ୟାଳୟକୁ ଆସୁନଥିବା ଶିଶୁ, ଗର୍ଭବତୀ ମହିଳା ପ୍ରସୂତିମାନଙ୍କ ପୁଷ୍ଟିହୀନତା ଦୂର କରିବା ନିମନ୍ତେ ରାଜ୍ୟର ଅନେକଗୁଡ଼ିଏ କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଉକ୍ତ କାର୍ଯ୍ୟକ୍ରମ ଅନୁଯାୟୀ 5ଲକ୍ଷ 60ହଜାର ଶିଶୁଙ୍କ ସମେତ 15ଲକ୍ଷ 45ହଜାର ବ୍ୟକ୍ତି ଉପକୃତ ହୋଇଛନ୍ତି । ଏହି କାର୍ଯ୍ୟକ୍ରମ ଦ୍ୱାରା 1977-78 ମସିହାରେ ତଫସିଲଭୁକ୍ତ ଜାତି ଓ ତଫସିଲଭୁକ୍ତ ସମ୍ପ୍ରଦାୟର ପ୍ରାୟ ଶତକଡ଼ା 79ଭାଗ ଲୋକ ଉପକୃତ ହେବେ । ବାର୍ଦ୍ଧକ୍ୟଭତ୍ତା ପରିକଳ୍ପନା, ସମାଜ କଲ୍ୟାଣ ବ୍ୟବସ୍ଥାର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଅଂଶବିଶେଷ ଓ ଏହି ବ୍ୟବସ୍ଥାଦ୍ୱାରା ସମ୍ପ୍ରତି 34,463 ଜଣ ବୃଦ୍ଧ ଓ ନିରାଶ୍ରୟ ବ୍ୟକ୍ତି ଉପକୃତ ହୋଇଛନ୍ତି । ଏହା ବ୍ୟତୀତ 1,500 ଅନାଥ ଶିଶୁ ରହିପାରିବାଭଳି 30ଟି ଅନାଥାଶ୍ରମ କାର୍ଯ୍ୟ କରୁଛି ଏବଂ 2,870 ବିପଥଗାମୀ ଶିଶୁଙ୍କ ଦାୟିତ୍ୱ ପ୍ରୋବେସନ ଅଫିସରମାନେ ନେଇ ସେମାନଙ୍କ ସମାଜର ସୁସ୍ଥ ନାଗରିକରୂପେ ଗଢ଼ିବାପାଇଁ ତାଲିମ ଦେଉଛନ୍ତି ।

କର୍ମଚାରୀ କଲ୍ୟାଣ

୬୯ । ମୁଁ ରାଜ୍ୟ ସରକାରଙ୍କ କାର୍ଯ୍ୟକଳାପ ସମ୍ପର୍କରେ ବିଶେଷ ବିବରଣୀ ପ୍ରଦାନ କରି ସାରିଛି । ମୁଁ ମୋର ବକ୍ତବ୍ୟ ଶେଷ କରିବା ପୂର୍ବରୁ ମାନ୍ୟବର ସଭ୍ୟମାନଙ୍କୁ ଅବହିତ କରାଇ ଦେବାକୁ ଚାହେଁ ଯେ, ରାଜ୍ୟର ସମୁଳ ଉପରେ ଅତ୍ୟଧିକ ଚାପ ସତ୍ତ୍ୱେ ଗୁଣାତ୍ମକ ଶିକ୍ଷାର ବିକାଶ ଦୃଷ୍ଟିରୁ ଓ ଶିକ୍ଷା ପ୍ରତିଷ୍ଠାନଗୁଡ଼ିକରେ ଶାନ୍ତିଶୃଙ୍ଖଳା ସହଯୋଗର ବାତାବରଣ ଫେରାଇ ଆଣିବାପାଇଁ ଉଭୟ ସରକାରୀ ଓ ବେସରକାରୀ

କଲେଜର ଶିକ୍ଷକମାନଙ୍କ ପଞ୍ଚମ ଯୋଜନାପାଇଁ ମଞ୍ଜୁର କରାଯାଇଥିବା ବିଶ୍ୱବିଦ୍ୟାଳୟ ମଞ୍ଜୁରୀ କମିଶନଙ୍କ ବେତନହାର ଦେବା ଓ ସାହାଯ୍ୟପ୍ରାପ୍ତ ଶିକ୍ଷାନୁଷ୍ଠାନମାନଙ୍କରେ କାର୍ଯ୍ୟ କରୁଥିବା ଅଣଶିକ୍ଷକ କର୍ମଚାରୀଙ୍କୁ ପ୍ରତ୍ୟକ୍ଷ ଭାବେ ବେତନ ଦେବାପାଇଁ ନିକଟରେ ସରକାର ତାଙ୍କର ନୀତି ଘୋଷଣା କରିଛନ୍ତି । ଶିକ୍ଷା କ୍ଷେତ୍ରରେ ସରକାର ସମ୍ପ୍ରତି ଯେଉଁ କେତେକ ସୁବିଧା ସୁଯୋଗ ଦେଇଛନ୍ତି ତାର ବିନିମୟରେ ଜନସାଧାରଣ ସେମାନଙ୍କଠାରୁ ସୁଫଳ ଆଶା କରନ୍ତି ।

୭୦ । କୌଣସି ସରକାରୀ କର୍ମଚାରୀଙ୍କର କାର୍ଯ୍ୟକାଳ ମଧ୍ୟରେ ମୃତ୍ୟୁ ଘଟିଲେ ତାଙ୍କର ପରିବାରକୁ ଅର୍ଥ ସାହାଯ୍ୟ କରିବାପାଇଁ ପୂର୍ବରୁ ଯେଉଁ ସମୂହ ଜୀବନବୀମା ଯୋଜନା ପ୍ରଚଳନ କରାଯାଇଥିଲା, ତାହାର ମୌଳିକ ପରିବର୍ତ୍ତନ ଓ ଉନ୍ନତ ବିଧାନ କରାଯାଇଛି । ପରିବର୍ତ୍ତିତ ଯୋଜନାରେ କର୍ମଚାରୀମାନଙ୍କପାଇଁ 7ହଜାର 5ଶହରୁ 17ହଜାର 5ଶହ ଟଙ୍କା ପର୍ଯ୍ୟନ୍ତ ବୀମା କରାଯାଇଛି । 1976 ମସିହା ଏପ୍ରିଲ ମାସରେ ଏହି ପରିବର୍ତ୍ତିତ ଯୋଜନା କାର୍ଯ୍ୟକାରୀ ହେବା ପରଠାରୁ 232ଜଣ ମୃତ ସରକାରୀ କର୍ମଚାରୀଙ୍କ ପରିବାର ଉପକୃତ ହୋଇଲେଣି ।

୭୧ । ମହାଶୟ, ସଂଗଠିତ ଯୋଜନାର ଦୁଇ ଦଶନ୍ଧି ବିତି ଯାଇଥିଲେହେଁ ଆମ ରାଜ୍ୟ ତଥାପି ଅର୍ଥନୈତିକ କ୍ଷେତ୍ରରେ ଅନଗ୍ରସର ରହିଛି ଏବଂ ଆମର ବିପୁଳ ପ୍ରାକୃତିକ ସମ୍ପଦର ସଦୁପଯୋଗ ହୋଇ ପାରିନାହିଁ । ଆମକୁ ଦାରିଦ୍ର୍ୟ ଓ ଅନଗ୍ରସରତାର କୁଟିଳ ଚକ୍ରରୁ ଉଦ୍ଧାର କରିବାକୁ ହେବ । ରାଜ୍ୟର ଦ୍ରୁତ ବିକାଶ ନିମନ୍ତେ କେନ୍ଦ୍ରୀୟ ସାହାଯ୍ୟ ବ୍ୟାପାରରେ ଓଡ଼ିଶାପ୍ରତି ସ୍ୱତନ୍ତ୍ର ଧ୍ୟାନ ଦେବାଲାଗି ଆମେ ଯୋଜନା କମିଶନ ଓ ଭାରତ ସରକାରଙ୍କୁ ଅନୁରୋଧ କରୁଅଛୁ । ଆମ୍ଭେମାନେ କେବଳ କେନ୍ଦ୍ର ସରକାରଙ୍କ ବଦାନ୍ୟତା ଉପରେ ନିର୍ଭର କରିଲେ ଚଳିବନାହିଁ । ରାଜ୍ୟର ଅଭ୍ୟନ୍ତରୀଣ ସମ୍ବଳର ସଦୁପଯୋଗକରି ରାଜ୍ୟକୁ ବିକାଶ ପଥରେ ଆଗେଇ ନେବା ନିମନ୍ତେ ଆମକୁ ଅହରହ ଉଦ୍ୟମ କରିବାକୁ ପଡ଼ିବ । ଏ ଦିଗରେ ଆମର ଉଦ୍ୟମ ବଜେଟ୍ ଅଟକଳରେ ପ୍ରତିଫଳିତ ହୋଇଛି । ଏଥିନିମନ୍ତେ ମୁଁ ଗୃହର ସହଯୋଗ କାମନା କରୁଛି ଏବଂ ରାଜ୍ୟର ଅର୍ଥନୈତିକ ଅଭିବୃଦ୍ଧି ପାଇଁ ଜନସାଧାରଣଙ୍କ ଶୁଭେଚ୍ଛା କାମନା କରୁଛି । ଏଭଳି ମହତ୍ କାର୍ଯ୍ୟ ନିମନ୍ତେ ଆସନ୍ତୁ, ଆମେ ସମସ୍ତେ ନିଜ ନିଜକୁ ପୁନଃଉତ୍ସର୍ଗ କରିବା ।

ଅଧ୍ୟକ୍ଷ ମହାଶୟ, ଆଜି ଏ ଗୃହରେ ବିଚାର ଓ ଗୃହୀତ ହେବା ଲାଗି ମୁଁ 1977-78ର ବଜେଟ୍ ଅଟକଳ ଏହି ସଭାରେ ଉପସ୍ଥାପିତ କରୁଅଛି ।

ଜୟ ହିନ୍ଦ୍

## ବ୍ୟୟ ମଞ୍ଜୁରୀ ବିଲ୍ ଉପରେ ଆଲୋଚନା
(30-3-1977)

ବ୍ୟୟ ମଞ୍ଜୁରୀ ବିଲ ଉପରେ ବହୁ ମାନ୍ୟବର ସଭ୍ୟ ଆଲୋଚନା କରିଛନ୍ତି । ଆଲୋଚନା ଭିତରେ ବହୁତ ଉତ୍ତେଜନା ପ୍ରକାଶ ପାଇଛି । ଉତ୍ତେଜନା ପ୍ରକାଶ ନ ପାଇଥିଲେ ଭଲ ହୋଇଥାନ୍ତା । କାରଣ ସେଥିରେ ସେମିତି କିଛି କାରଣ ନଥିଲା ।

ପ୍ରଥମେ ଆମର ବିରୋଧୀ ଦଳର ନେତା ତାଙ୍କର ଶାସନତନ୍ତ୍ର ପ୍ରଥା ଅନୁସାରେ ଆରମ୍ଭ କଲେ ଯେ ଏ ସରକାର ରହିବା ଅନୁଚିତ; ଏ ସରକାର ଇସ୍ତଫା ଦେବା କଥା । ସେ କହିଛନ୍ତି 1974 ମସିହାରେ ନିର୍ବାଚନରେ 69 ଜଣ କଂଗ୍ରେସ ଲୋକ ନିର୍ବାଚିତ ହୋଇଥିଲେ; ତାପରେ ଚିଲିକା ନିର୍ବାଚନ ପରେ 70 ହେଲେ ଏବଂ କମ୍ୟୁନିଷ୍ଟ ପାର୍ଟିର ସାତଜଣ ସଭ୍ୟଙ୍କ ସହାୟତାରେ ୭୦+୭=୭୭, in a House of 147, Government ଚଳିବା ଏକ ଅବୈଧାନିକ ଏବଂ ଅଗଣତାନ୍ତ୍ରିକ ପ୍ରଥା ।

We are running the Government with the assistance of a Political party and that the Constitution never says "No", to do so. ସାର; ଅନ୍ୟ ଏକ ଦିଗରେ ବିଶେଷକରି 1974 ମସିହାର ନିର୍ବାଚନ କଥା ମୁଁ କହୁଥିଲି ଯାହାକି ମୁଁ ଏଠି repeat କରୁନାହିଁ । 1971 ମସିହା Parliament ନିର୍ବାଚନରେ ଯେଉଁଠି ଆମର 15 ଜଣ ସଭ୍ୟ ରହିଥିଲେ କିନ୍ତୁ ଏଠି ମାତ୍ର 5ଜଣ ସଭ୍ୟ ନିର୍ବାଚିତ ହେଲେ ଏବଂ ବିରୋଧୀଦଳର ଅଧିକ ସଭ୍ୟ ନିର୍ବାଚିତ ହୋଇଥିଲେ ଏବଂ ସରକାର କରିଥିଲେ । କିନ୍ତୁ ଆମେ କେବେ ସେତେବେଳେ କହିନାହିଁ ଯେ 15ଜଣ ସଭ୍ୟ ବଳିକି ନିର୍ବାଚିତ ହୋଇଗଲେ । ଲୋକଙ୍କର ଆସ୍ଥା ଆମ ଉପରେ ନାହିଁ ।

20 ଜଣ ଭିତରୁ ଯେତେବେଳେ 15 ଜଣ କଂଗ୍ରେସ ସଭ୍ୟ ନିର୍ବାଚିତ ହୋଇଥିଲେ ସେତେବେଳେ କହିବା ପାଇଁ ଅଧିକାର ଥିଲା କି ? ଆପଣ ସରକାର କରିପାରିବେ ନାହିଁ ; ତେଣୁ ଇସ୍ତଫା ଦିଅନ୍ତୁ; କିନ୍ତୁ ବାରମ୍ବାର ମୁଁ repeat କରିବାକୁ ଚାହୁଁ ନାହିଁ ଯେ ଗଣତାନ୍ତ୍ରିକ ପଦ୍ଧତିରେ ଏ ସରକାର ଚାଲିଛି, ଯେତେ ଆଶା କରନ୍ତୁ, ଆପଣ ଯେତେ ଦିବାସ୍ୱପ୍ନ ଦେଖନ୍ତୁ ତାହା ଏତେ ସହଜ ନୁହେଁ, ଯାହା ଆପଣମାନେ ଭାବୁଛନ୍ତି । ଅନ୍ୟ ଗୋଟିଏ କଥା ଯାହା ଆମର ମାନ୍ୟବର ସଭ୍ୟ କହିଲେ, Chief Whip କହିଲେ ଯେ ଆପଣମାନେ ଅନାଧୁନିକ କାରବାର କରନ୍ତି ତାହେଲେ କହିହେବ ନାହିଁ । ଆମେ ଜନତାର କେତେ ଦୂର ସେବା କରିବୁ; କିପରି ସେବା କରିବୁ, ସେମାନଙ୍କର ଆଶା ଓ ଆକାଂକ୍ଷା କିପରି ପୂରଣ କରି ପାରିବୁ, ତା ଉପରେ ଏସବୁ ନିର୍ଭର କରୁଅଛି । ତେଣୁ ଏଥିରେ ଦୃଷ୍ଟି ଦେଇ କାମ କଲେ, କେନ୍ଦ୍ର ସରକାର ହୁଅନ୍ତୁ ବା ରାଜ୍ୟ ସରକାର ହୁଅନ୍ତୁ ମୁଁ ଭାବୁଛି ନିଶ୍ଚୟ ପରିବର୍ତ୍ତନ ହେବ ।

Compulsory Deposit Scheme—ଏହା ଗୋଟିଏ କେନ୍ଦ୍ର ଆଇନ । କେନ୍ଦ୍ର ଆଇନ୍ ଅନୁସାରେ ଏହା କରାହୋଇଥିଲା । ବର୍ତ୍ତମାନ କେନ୍ଦ୍ରରେ ଯେଉଁ ସରକାର

ଅଛନ୍ତି ସେ ଯଦି ଏହାକୁ ପରିବର୍ତ୍ତନ କରିବାକୁ ଚାହିଁବେ ଏଠାରେ ନିଶ୍ଚିତଭାବରେ ପରିବର୍ତ୍ତନ ହେବ ଏଥିରେ ସନ୍ଦେହ ନାହିଁ । ମାନ୍ୟବର ସଦସ୍ୟମାନେ ଜାଣିଥିବେ ଆମର inflation ବା ମୁଦ୍ରାସ୍ଫୀତିକୁ ରୋକିବା ପାଇଁ ଯେଉଁସବୁ measures ନିଆଯାଇଥିଲା ତାହା ମଧ୍ୟରୁ ଏହା ହେଉଛି ଗୋଟିଏ । ମାନ୍ୟବର ସଦସ୍ୟମାନେ ଜାଣନ୍ତି ମୁଦ୍ରାସ୍ଫୀତି successfully ରୋକାଯାଇ ପାରିଲା । ଆମ ସମସ୍ତଙ୍କ ପକ୍ଷରେ ଯେଉଁ ମୁଦ୍ରାସ୍ଫୀତି ଦୁଃଖଦାୟକ ହୋଇଥିଲା ତାକୁ ରୋକାଯାଇ ପାରିଛୁ । ଏପରି କେତେକ Measures ମଧ୍ୟରୁ Compulsory Deposit Scheme ମଧ୍ୟ ଗୋଟିଏ । ବର୍ତ୍ତମାନ କେନ୍ଦ୍ର ସରକାର ଯଦି ଏ ଆଇନର ଉପାଦେୟତା ନାହିଁ ବୋଲି ଉପଲବ୍ଧି କରିବେ, ତେବେ ଏଠାରେ ବି ତାହାର ସାଙ୍ଗେ ସାଙ୍ଗେ ପରିବର୍ତ୍ତନ ହେବ, ଏଥିରେ ସନ୍ଦେହ ନାହିଁ ।

Ceiling ସମ୍ପର୍କରେ ଜିଲ୍ଲା ସ୍ତରରେ କମିଟି ଅଛି ଏବଂ ଆମର R. I. levelର କମିଟି ଅଛି । ଏ କମିଟି ଜରିଆରେ ଏ ସବୁ କାର୍ଯ୍ୟ ହେଉଛି । ତଥାପି ମାନ୍ୟବର ସଦସ୍ୟ-ମାନେ ଯଦି କହୁଛନ୍ତି କୌଣସି ସ୍ଥାନରେ ଏଭଳି କିଛି ଅନ୍ୟାୟ ହୋଇଛି, ମୁଁ କେବଳ ଅନୁରୋଧ କରିବି, ଏପରି କେତେକ ଘଟଣା ଯଦି ସରକାରଙ୍କ ଅଗୋଚରରେ ଉପସ୍ଥାପିତ କରାଯାଏ ତାହେଲେ ନିଶ୍ଚିତ ଭାବରେ ତାର ବିଚାର କରାଯିବ ଏବଂ ମାନ୍ୟବର ସଦସ୍ୟମାନେ ଯଦି ଏ ସମ୍ପର୍କରେ ରାଜସ୍ୱ ମନ୍ତ୍ରୀ ମହୋଦୟଙ୍କୁ ଯଦି କିଛି ଘଟଣା ଜଣାଇବେ, ତାହେଲେ ସେସବୁ ନିଶ୍ଚିତଭାବରେ ଅନୁସନ୍ଧାନ କରାଯିବ ଏଥିରେ ସନ୍ଦେହ ନାହିଁ । ଜଳଯୋଗାଣ ସମ୍ପର୍କରେ ମୁଁ କହୁଥାଇଛି ଯେ ଏବର୍ଷ ଯେପରି ଭାବରେ ମରୁଡ଼ି ଦେଖାଦେଇଛି ଯାହାଫଳରେ ପାନୀୟ ଜଳର ଅଭାବ ହେବ ବୋଲି ହୁଏତ ଆଗରୁ ଜଣାଥିଲା ସେଥିପାଇଁ ଆମର ସ୍ଥିର ହୋଇଛି ଯେ ଯେଉଁଠି tank ଫୁଟିଯାଉଛି ଓ ଯେଉଁଠି ଜଳ ଶୁଖିଯାଉଛି, temporary measure ହିସାବରେ ତାର ଦୂରଯାଏଁ କୂପ କରି ପାନୀୟ ଜଳଯୋଗାଣ କରାଯିବ ଓ ଏଥିପାଇଁ ସମସ୍ତ ନିର୍ଦ୍ଦେଶ ଯାଇଛି ଓ କେତେକ ଅଞ୍ଚଳରେ ଏହା କାର୍ଯ୍ୟକାରୀ ହେଉଛି । ମୁଁ ବିରୋଧୀ ଦଳରେ ଥିଲାବେଳେ ଏଭଳି ଗୋଟିଏ ପରିସ୍ଥିତି ସୃଷ୍ଟି ହୋଇଥିଲା ଓ ସାଂଘାତିକ ଭୟାନକ ମରୁଡ଼ି ପରିସ୍ଥିତି ଦେଖା ଦେଇଥିଲା । ସେତେବେଳେ କେତେକ ସ୍ଥାନରେ temporary measure ହିସାବରେ ଜଳଯୋଗାଣ କରାଯାଇ ପାରିଥିଲା । ସେହିପରି Collectorମାନଙ୍କୁ ଆଗରୁ କୁହାଯାଇଛି ଯେ ପାଣି ଶୁଖିବାର 15 ଦିନ ପୂର୍ବରୁ ଏହା ନିର୍ଣ୍ଣୟ କରିବାକୁ ହେବ । ମୁଁ report ପାଇଛି ଯେ କେତେକ ସ୍ଥାନରେ ଏଭଳି କରାଯାଉଛି ଓ ଲୋକେ ସେ କୂଅରୁ ପିଇବାପାଣି ନେଉଛନ୍ତି । ମୁଁ ଏ ଗୃହକୁ ଜଣାଇ ଦେବାକୁ ଚାହେଁ ଯେ ଆମର ଯେଉଁ 8 ହଜାରରୁ ଅଧିକ ଗ୍ରାମରେ ସରକାରୀ ପାନୀୟ ଜଳଯୋଗାଣ କାର୍ଯ୍ୟକ୍ରମ ହୋଇ-ପାରିନାହିଁ ଆସନ୍ତା ଦୁଇ ବର୍ଷ ଅର୍ଥାତ୍ 1977-78 ଓ 1978-79 ଭିତରେ ଏ ଗ୍ରାମମାନଙ୍କରେ ପାନୀୟ ଜଳ ବ୍ୟବସ୍ଥା କରାଯିବ । ପ୍ରତ୍ୟେକ ଗ୍ରାମକୁ ଗୋଟିଏ ଗୋଟିଏ Sanitary Well ଯୋଗାଇ ଦିଆଯିବ ।

Major, Medium, Minor, Lift Irrigation ଓ Dug-well ଇତ୍ୟାଦି ଜରିଆରେ irrigation କାର୍ଯ୍ୟ ହେଉଛି । Irrigation ଦ୍ୱାରା ଅଧିକ ବୃଷ୍ଟି ହଆଯାଉଛି । ଆଦିବାସୀ ଅଞ୍ଚଳମାନଙ୍କରେ ଯେଉଁଠି ଝରଣା ବା ଅନ୍ୟ ସୁବିଧା ଅଛି ସେ ସୁବିଧାର ସୁଯୋଗ ନେଇ ଜଳ ଯୋଗାଣ ବ୍ୟବସ୍ଥା କରାଯାଉଛି । I. T. D. P., I. T. D. A. ଓ ଅନ୍ୟାନ୍ୟ ସଂସ୍ଥା ଜରିଆରେ ସେ କାର୍ଯ୍ୟ ହେଉଛି ।

ଆମର ମାନ୍ୟବର ପ୍ରଧାନ ପଣ୍ଡା କହିଲେ ଯେ ଏ ଗୋଟିଏ silent revolution ହେଲା ଓ ଏ silence revolution ଚେତାବନୀ ଆମେ ଗ୍ରହଣ ନକଲେ ଏହା direct revolutionରେ ପରିଣତ ହେବ । ମୁଁ ଆଶାକରିବି ସମସ୍ତେ ଚେତାବନୀ ଗ୍ରହଣ କରିବେ । ଯେଉଁଠି ଲୋକଙ୍କର ଅଭାବ ଅସୁବିଧା ହେଉଛି ତାକୁ ଦୂର କରାଯିବା ଉଚିତ୍ । ସରକାରଙ୍କ ପକ୍ଷରୁ ମୁଁ କହୁଛି ଯେ ଏଭଳି ଯେତେକ ଅଭାବ ଅସୁବିଧା ହେଉଛି ତାକୁ ଦୂର କରିବାକୁ ଉଦ୍ୟମ ହେଉଛି । ମାନ୍ୟବର ସଭ୍ୟମାନେ ଜାଣନ୍ତି ଯେ ସବୁ ଅଭାବ ଅସୁବିଧା ଏକ ଦିନରେ ଦୂର କରିବା ସମ୍ଭବ ନୁହେଁ ଏବଂ ଆମର ଆର୍ଥିକ ଅବସ୍ଥା ଯାହା ସେଥିପାଇଁ ଏ ସବୁ କାର୍ଯ୍ୟ ଏକାଠି ହାତକୁ ନେବା ସମ୍ଭବପର ନୁହେଁ । Electricity Board ରେ strike notice ଦେବାକଥା ଯେ କହୁଛନ୍ତି ମୁଁ ଏ ସମ୍ପର୍କରେ ମାନ୍ୟବର ସଭ୍ୟଙ୍କ ସହିତ ଆଲୋଚନା କରିବାକୁ ଚାହେଁ । ଏହା ଯେପରି ମୀମାଂସା ହେବ ସରକାର ତାର ବ୍ୟବସ୍ଥା କରୁଛନ୍ତି ।

ବେକାର ସମସ୍ୟା ସମ୍ପର୍କରେ କେତେକ ମାନ୍ୟବର ସଭ୍ୟ ଯାହା କହିଲେ ତାହା ଠିକ୍ କଥା । ଆମେ ଗୋଟିଏ industrial policy ଗ୍ରହଣ କରିଛୁ ଓ ସେ policy ଜରିଆରେ ଏ ସମସ୍ୟାକୁ ଦୂର କରିବାକୁ ଉଦ୍ୟମ ହେଉଛି । ସେ କେତେକ ଉପାଦେୟ ପରାମର୍ଶ ଦେଇଛନ୍ତି । ସରକାର ସେ ପରାମର୍ଶ ଅନୁସାରେ କାମ କରିବେ । Second Steel Plant, South Eastern Railway Headquarters ପରିବର୍ତ୍ତନ ଓ ଅଲୁମିନିୟମ କାରଖାନା ସମ୍ପର୍କରେ ମୋତେ କହୁଛନ୍ତି ଯେ ଏଗୁଡ଼ିକ କାର୍ଯ୍ୟକାରୀ ହୋଇ ପାରିବ । ବିରୋଧୀ ଦଳ ସଭ୍ୟମାନଙ୍କର ଏକଥା ହୋଇପାରିବ ବୋଲି ଯେପରି confidence ହେଉଛି ଆମର ମଧ୍ୟ ସେହିଭଳି ଧାରଣା ହେଉଛି ଯେ ଏ କାର୍ଯ୍ୟ ହେବାରେ ଅସୁବିଧା ହେବ ନାହିଁ । ଏଥିପାଇଁ କାହାକୁ ଆକ୍ଷେପ କରିବାର କଥା ନୁହେଁ, ଆସିପାରିଲୁ ନାହିଁ । ବଳିବାରୁ ଆସିଲେ କରିଦେବ—ଏକଥା ନୁହେଁ । ଏହିଠାରେ ଆମେ ସମସ୍ତେ ଏକାଠି ହୋଇ କେନ୍ଦ୍ର ସରକାରଙ୍କୁ କହିବା ଉଚିତ୍ ଯେ ଅନ୍ତତଃ ପକ୍ଷେ ଏଇ କେତେକ କାର୍ଯ୍ୟ ସେ କରନ୍ତୁ । ତା'ହେଲେ ଆମର ବେକାର ସମସ୍ୟାର ସମାଧାନ ହେବ ।

Second Steel Plant ହେଲେ 30 ହଜାର ଲୋକ ଚାକିରି ପାଇବେ ଓ ବେକାର ସମସ୍ୟାର ଆଂଶିକ ସମାଧାନ ହେବ ।

ମୁଁ କହୁଥିଲି ଆମର 80 ଲକ୍ଷ ଲୋକ କୃଷି ଶ୍ରମିକ । ତାଙ୍କର ଉନ୍ନତି କରିବାକୁ ହେଲେ କୃଷିର ଉନ୍ନତି କରିବାକୁ ହେବ । ତା ସଙ୍ଗେ ସଙ୍ଗେ ଇଣ୍ଡଷ୍ଟ୍ରି ମଧ୍ୟ କରିବାକୁ ହେବ, କୃଷି ଏବଂ ଶିଳ୍ପ ଉଭୟର ବିକାଶ କରିବାକୁ ହେବ । ଯେହେତୁ ଶିଳ୍ପରେ ଆମେ ବହୁତ ପଛରେ ପଡ଼ିଛୁ, ସେଥିପାଇଁ ଏ ସବୁ କଳକାରଖାନା ବସିବା ନିହାତି ଆବଶ୍ୟକ ।

ସାର୍, ମୁଁ ଆଉ ଅଧିକ କିଛି କହୁନାହିଁ । ଏହି ବ୍ୟୟ ମଞ୍ଜୁରୀ ବିଲଟି ଗ୍ରହଣ କରିନେବା ପାଇଁ ମୁଁ ମାନ୍ୟବର ସଭ୍ୟମାନଙ୍କୁ ଅନୁରୋଧ କରୁଛି ।

## ରାଜ୍ୟପାଳଙ୍କ ଅଭିଭାଷଣ (20-2-1970) ଉପରେ ଆଲୋଚନା

ଉପାଧ୍ୟକ୍ଷ ମହାଶୟ, ମରୁଡ଼ି ସ୍ଥାୟୀ ପ୍ରତିକାର ନିମିତ୍ତ ଆମ ରାଜ୍ୟପାଳଙ୍କ ଭାଷଣରେ ଉଲ୍ଲେଖ ନାହିଁ । ଆପଣ ଜାଣନ୍ତି, ପ୍ରତିବର୍ଷ ଆମର ମରୁଡ଼ି ହେଉଛି । ଏପରି କେତେକ ଜାଗା ଅଛି ଯେଉଁଠାରେ କି ପ୍ରତିବର୍ଷ ମରୁଡ଼ି ହେଉଛି । ତା'ର ସ୍ଥାୟୀ ପ୍ରତିକାରପାଇଁ ୪ର୍ଥ ପଞ୍ଚବାର୍ଷିକ ଯୋଜନାରେ ସେସବୁ ଅଞ୍ଚଳରେ ଜଳସେଚନ କରିବାର ବ୍ୟବସ୍ଥା ରଖିବା ଦରକାର ସେଥିପାଇଁ ଗୋଟିଏ ଅନୁସନ୍ଧାନ କମିଟି କରି ୫ ବର୍ଷ ପାଇଁ ଯୋଜନା କଲେ ଏ ଯେଉଁ ପ୍ରତିବର୍ଷ ମରୁଡ଼ି ଘଟୁଛି ସେଥିରୁ ଲୋକଙ୍କୁ ରକ୍ଷାକରି ପାରନ୍ତି । ଦୁଃଖର କଥା ଆମ ରାଜ୍ୟପାଳଙ୍କ ଭାଷଣରେ ସେ ବିଷୟରେ କିଛି ଉଲ୍ଲେଖ ନାହିଁ । ରାଜ୍ୟପାଳଙ୍କ ଭାଷଣରେ Green revolution ବୋଲି କୁହାଯାଇଛି । ଆପଣ ଜାଣନ୍ତି ସବୁ ବିପ୍ଳବ ସଫଳ ହେବାକୁ ହେଲେ ଜଳସେଚନ ବ୍ୟବସ୍ଥା କରି ଚାଷୀକୁ ଠିକ୍ ସମୟରେ ପାଣି ଯୋଗାଇ ଦେବା ଦରକାର । ଆପଣ ଦେଖିବେ ମଧ୍ୟମ ଜଳସେଚନ ଯୋଜନା ବହୁବର୍ଷ ହେଲା ଅସମ୍ପୂର୍ଣ୍ଣ ଅବସ୍ଥାରେ ପଡ଼ି ରହିଛି । ସେସବୁ ପାଇଁ ଯେତିକି ଟଙ୍କା ଯୋଗାଇବାର କଥା ତାହା ଯୋଗାଇ ଦିଆଯାଇ ପାରୁନାହିଁ । ଉଦାହରଣ ସ୍ୱରୂପ—ଘୋଡ଼ା ହାଡ଼ ଯୋଜନା ୭୫ ଲକ୍ଷ ଟଙ୍କାରେ କାମ ଆରମ୍ଭ ହେଲା । କିନ୍ତୁ ବର୍ତ୍ତମାନ ତାକୁ ସମ୍ପୂର୍ଣ୍ଣ କରିବା ପାଇଁ ୨ କୋଟି ଟଙ୍କା ଦରକାର । ସେଠାରେ ଯେଉଁ Staff ରହିଛନ୍ତି ସେମାନେ ବାର୍ଷିକ ଅନ୍ୟୁନ ୩୦ ଲକ୍ଷ ଟଙ୍କାର କାମ କରିବାକୁ ପ୍ରସ୍ତୁତ । ସେପରି ସ୍ଥଳେ ସେମାନଙ୍କୁ ୧୫ଲକ୍ଷ ଟଙ୍କା ଦିଆଯାଉଛି । ୧୫ ଲକ୍ଷ ଟଙ୍କାର କାମକରି ବସି ରହୁଛନ୍ତି । ଏଥିରେ ଅର୍ଥ କ୍ଷତି ହେଉଛି ଏ... ଯୋଜନା ସମ୍ପୂର୍ଣ୍ଣ ହୋଇପାରୁନାହିଁ ।

ଫଳରେ କୃଷୀ ଅସୁବିଧା ଭୋଗ କରୁଛୁ । ଯେଉଁସବୁ ମଧ୍ୟମ ଜଳସେଚନ ଯୋଜନା ଅସଂପୂର୍ଣ୍ଣ ଅବସ୍ଥାରେ ରହିଛି ତାକୁ କର୍ଷ୍ଟ ସମସ୍ତ ଭିତରେ ସଂପୂର୍ଣ୍ଣ କରିବାପାଇଁ ଯୋଜନା ପ୍ରସ୍ତୁତ କରିବା ଦରକାର । ଅପର Minor Irrigation Project Survey ହୋଇ ରହିଛି । ସେଥିରୁ କେତେକ project କାର୍ଯ୍ୟକାରୀ କରିବାକୁ ଏହି ଯେଉଁ ୧୩୫ ଟି ଯୋଜନା estimate ହୋଇ ରହିଛି ସେସବୁ ଏବର୍ଷ କାର୍ଯ୍ୟକାରୀ ହେଉନାହିଁ । ଯେଉଁଠି flow irrigation ର କୌଣସି ସୁବିଧା ନାହିଁ, ସେ ଅଞ୍ଚଳରେ Lift irrigation ବ୍ୟବସ୍ଥା କରିବା ଦରକାର । ବହୁ ଅଞ୍ଚଳରେ ସବୁଜ ବିପ୍ଳବର ସୁବିଧା ନାହିଁ । ମୁଁ ଜାଣେ ଏପରି ସବୁ ଯୋଜନାମାନ ଅଛି ଯେଉଁଠି କି କମ୍ ଟଙ୍କାରେ ହଜାର ହଜାର ଏକର ଜମିକୁ ଜଳସେଚନ ସୁବିଧା ଦେଇ ସବୁଜ ବିପ୍ଳବରେ ଅନ୍ତର୍ଭୁକ୍ତ କରାଯାଇ ପାରିବ । କିନ୍ତୁ ଏ ସବୁ ଜଳସେଚନ ଯୋଜନା ପାଇଁ ଦୃଷ୍ଟି ଦିଆଯାଉ ନାହିଁ । Lift irrigation points ସବୁ ହୋଇଛି ଅଥଚ electricity ସଂଯୋଗ ନ ହେବା ଯୋଗୁଁ ସେସବୁ କାର୍ଯ୍ୟକାରୀ ହୋଇପାରୁ ନାହିଁ । କେତେକ ଚାଷୀ ଡିଜେଲ ସାହାଯ୍ୟରେ ପମ୍ପ କାର୍ଯ୍ୟକାରୀ କରୁଛନ୍ତି । କିନ୍ତୁ ଏଥିରେ ଅତିରିକ୍ତ ଖର୍ଚ୍ଚ ହେଉଥିବା ଯୋଗୁଁ ଚାଷୀମାନେ ଉତ୍ସାହିତ ହୋଇପାରୁ ନାହାନ୍ତି । ସେଥିପାଇଁ Rural electrification ଜରି lift irrigation point ଗୁଡ଼ିକୁ ବିଜୁଳିଶକ୍ତି ଯୋଗାଇ ଦିଆଯିବା ଦରକାର । ଦୁଃଖର କଥା ରାଜ୍ୟପାଳଙ୍କ ଭାଷଣରେ ଏ ସମ୍ପର୍କରେ କୌଣସି କଥା ଉଲ୍ଲେଖ ନାହିଁ ।

ଆମ ରାଜ୍ୟପାଳଙ୍କ ଭାଷଣରେ ଏ ଯେଉଁ ଲକ୍-ଆଉଟ୍-ବେକାରୀ ସମସ୍ୟା ଯେପରି ଭାବରେ ବଢ଼ି ଚାଲିଛି ତାର ସମାଧାନ ପାଇଁ କୌଣସି ବ୍ୟବସ୍ଥା ନାହିଁ । ଆପଣ ଦେଖିବେ ଛଟେଇ ଗୋଟିଏ ମାରାତ୍ମକ ରୋଗରେ ପରିଣତ ହେଲାଣି । ଏ ଗୃହରେ ବହୁବାର ଦାବୀ ହୋଇଛି ସରକାର ଆଗେ ଏ ଛଟେଇ ବନ୍ଦ କରନ୍ତୁ, କିନ୍ତୁ ବନ୍ଦ କରିବା ପରିବର୍ତ୍ତେ ପ୍ରତ୍ୟହ ଆମେ ଦେଖିବାକୁ ପାଉଛୁ ବିଭିନ୍ନ ସରକାରୀ ବିଭାଗରେ କର୍ମଚାରୀ ଛଟେଇ ହୋଇ ଚାଲିଛନ୍ତି । ସେମାନେ ସେତେବେଳେ ଛଟେଇ ବନ୍ଦ କରିପାରୁ ନାହାନ୍ତି ତାଙ୍କର ନୈତିକ ସାହାସ ନାହିଁ । ବେସରକାରୀ ସଂସ୍ଥାଗୁଡ଼ିକୁ ଛଟେଇ ବନ୍ଦ କରିବାକୁ କହିବାପାଇଁ ଆମର ଦାବୀ-ହୋଇଛି । କେବଳ ସରକାରୀ ସଂସ୍ଥାରୁ ନୁହେଁ ବେସରକାରୀ ସଂସ୍ଥାରୁ ମଧ୍ୟ ଛଟେଇ ବନ୍ଦ ହେଉ । ସେ ବିଷୟରେ ସରକାର କର୍ଣ୍ଣପାତ କଲେ ନାହିଁ । ମ୍ୟାଲେରିଆ ବିଭାଗରୁ ବର୍ତ୍ତମାନ ୨ ହଜାର କର୍ମଚାରୀ ଛଟେଇ ହେବାକୁ ଯାଉଛନ୍ତି ସେମାନେ ୫୧୦ ବର୍ଷ ହେଲା ଚାକିରି କରିଥିଲେ ଓ ସବୁଦିନ ପାଇଁ ଚାକିରି ନବିକ କଟାଇବାପାଇଁ ସ୍ଥିର କରିଥିଲେ । ସରକାରଙ୍କ ଆଦେଶ ଅନୁଯାୟୀ ୫ ଶହ ଜଣ ଛଟେଇ ହେବାର କଥା । ତାକୁ ପରିବର୍ତ୍ତନ କରି ପ୍ରାୟ ଦୁଇହଜାର, ବାଇଶି ଶହ ପର୍ଯ୍ୟନ୍ତ କର୍ମଚାରୀ ଛଟେଇ କରିବାକୁ ଯାଉଛନ୍ତି । ଏମାନଙ୍କୁ P. & C. ତାଲିକାଭୁକ୍ତ କରି ଭବିଷ୍ୟତରେ ଚାକିରି ଯୋଗାଇବା ବ୍ୟବସ୍ଥା

ନାହିଁ । ହଠାତ୍ ଚାକିରିରୁ ବାହାର କରି ଦିଆଯାଉଛି । କିନ୍ତୁ ଭବିଷ୍ୟତ୍‌ରେ କିପରି ନ ହେବ କେବେ ସେ ବିଷୟରେ ଚିନ୍ତା କରାଯାଉ ନାହିଁ । Secretariat ରୁ ମଧ୍ୟ 250 ଜଣ କର୍ମଚାରୀଙ୍କୁ ଚାକିରିରୁ ବାହାର କରାଯାଉଛି । P. S. C. ପରୀକ୍ଷା ଏମାନଙ୍କର 1967-68ରେ ହେବାର କଥା । ଚାକିରିମାନଙ୍କପାଇଁ ପରୀକ୍ଷା ହେଲା ନାହିଁ । ଏହିବର୍ଷ ପରୀକ୍ଷା ହେବା ଫଳରେ ବହୁ ଯୋଗ୍ୟତା ସମ୍ପନ୍ନ ବ୍ୟକ୍ତି ପରୀକ୍ଷା ଦେଲେ । ଫଳରେ ଆଗରୁ ଯେଉଁମାନେ ଚାକିରି କରୁଥିଲେ priority list ପର ସେମାନଙ୍କ ନାମ ନିମ୍ନସ୍ତରରେ ରହିଗଲା । ଫଳରେ ସେମାନଙ୍କ ଚାକିରୀ ଯିବ । ପ୍ରଥମେ ସେମାନଙ୍କୁ P. & C. ତାଲିକାଭୁକ୍ତ କରିବାକୁ ମନା କଲେ ପରେ ଦାବୀ ହେବାରୁ P. & C. ତାଲିକାଭୁକ୍ତ କଲେ । ଫୁଲ ତାଲିକାଭୁକ୍ତ ହୋଇ ଅନେକ ରହିଛନ୍ତି । ସେମାନଙ୍କୁ ଚାକିରି ଦିଆଯାଉଛି କି ନାହିଁ ଏ ବିଷୟରେ ଗୃହରେ ବହୁବାର ପ୍ରଶ୍ନ ହୋଇଛି । ସେଥିରେ ଉତ୍ତର ହୋଇଛି P. & C. ତାଲିକାରୁ ନାମ ବିଭିନ୍ନ ବିଭାଗକୁ ପଠାଯାଉଛି । କିନ୍ତୁ ଆପଣ ଜାଣନ୍ତି ସେହି ବିଭାଗମାନେ ଏଥିପ୍ରତି ଉପଯୁକ୍ତ ମର୍ଯ୍ୟାଦା ଦେଉ ନାହାନ୍ତି । ଫଳରେ ସେମାନେ ନିଯୁକ୍ତି ପାଉନାହାନ୍ତି । ଥରେ ଉପମୁଖ୍ୟମନ୍ତ୍ରୀ କହୁଥିଲେ ଆମେ ନାମ ପଠାଇ ଦେଉଛୁ । କିନ୍ତୁ ସେମାନେ ନିଯୁକ୍ତି ପାଉଛନ୍ତି କି ନାହିଁ ସେକଥା ଆମେ ଜାଣୁ ନାହୁଁ ଆମେ ସରକାରଙ୍କଠାରେ ଦାବୀ କରୁଛୁ ଏହି P. & C. ତାଲିକାଭୁକ୍ତ କର୍ମଚାରୀମାନଙ୍କୁ ଅନ୍ୟାନ୍ୟ ବିଭାଗରେ ଚାକିରି ମିଳିଲା କି ନାହିଁ ତା'ର ହିସାବ ରଖିବା ବ୍ୟବସ୍ଥା ନକଲେ ଏହିପରି ହଜାର ହଜାର କର୍ମଚାରୀଙ୍କୁ ତାଲିକାଭୁକ୍ତ କରି କିଛି ଲାଭ ନାହିଁ । ଏହି ବେକାରୀ ସମସ୍ୟା ଦିନକୁ ଦିନ ଉତ୍କଟରୁ ଉତ୍କଟତର ହେଉଛି । ତାର ସମାଧାନ କରିବାର କିଛି ବ୍ୟବସ୍ଥା ନାହିଁ । ଆପଣ ଜାଣନ୍ତି ଗତବର୍ଷ 14 ଶହ ଓଭରସିଅର, 250 ଇଞ୍ଜିନିୟର ଓ ପ୍ରାୟ ସେହି ସଂଖ୍ୟକ ଡାକ୍ତର ବେକାର ହୋଇଥିଲେ । ତା'ପରେ ହଜାର ହଜାର ସଂଖ୍ୟକ Graduates, Post-Graduates, Employment Exchange ରେ ନାମ ଲେଖାଇଛନ୍ତି । ସେମାନଙ୍କ ସଂଖ୍ୟା ଲକ୍ଷରୁ ଅଧିକ ହେଲାଣି । ଏମାନଙ୍କୁ ଚାକିରି ଦେବାର କୌଣସି ବ୍ୟବସ୍ଥା ହେଉ ନାହିଁ । ସରକାରଙ୍କର ଏପରି କୌଣସି ଯୋଜନା ନାହିଁ ଯେଉଁ ଯୋଜନାଦ୍ୱାରା ଏମାନେ ଚାକିରି ପାଇବେ । ଅବଶ୍ୟ 10ଲକ୍ଷ ଟଙ୍କା ସରକାର ରଖିଛନ୍ତି, Self Employment Scheme ପର 10ଲକ୍ଷ ଟଙ୍କାରେ କେତେ ଲୋକ ଚାକିରୀ ଦେବାପାଇଁ । ଏ ଯେଉଁ ଟଙ୍କା ଏହା ଅତିକମ । ଏତିକି ଟଙ୍କାରେ କେତେ ଲୋକ ଚାକିରି କରିବେ ତାହା ବୁଝି ହେଉନାହିଁ । ସରକାର ନିଜେ Self Employment ଯୋଜନା ଉପରେ କାର୍ଯ୍ୟକାରୀ କରିବାକୁ ଚାହାନ୍ତି ତାହାମଧ୍ୟ ବୁଝି ହେଉନାହିଁ । ଆଗରୁ ସ୍ଥିର ହୋଇଥିଲା ଅନ୍ତତଃ ପକ୍ଷେ ଯେଉଁମାନେ 'A' Class ରୁ 'B' Class

Contractor ଅଛନ୍ତି ସେମାନଙ୍କ ପାଖରେ Engineer, Overseer ରହିବେ । 'A' Class Contractor ଙ୍କର ଜଣେ Engineer ରଖିବେ ଓ 'B' Class Contractor ଙ୍କର ଜଣେ Overseer ରଖିବେ । ଏକଥା ସ୍ଥିର ହୋଇଥିଲେ ମଧ୍ୟ ବାସ୍ତବ କ୍ଷେତ୍ରରେ ତାହା କାର୍ଯ୍ୟକାରୀ ହେଉନାହିଁ । ଯେଉଁ Overseer ମାନେ 1965 ରେ ପାଶ୍ କରିଥିଲେ ସେମାନଙ୍କ ଭିତରୁ ଅନେକ ମଧ୍ୟ ହାହାକାର କରି ବୁଲୁଛନ୍ତି । ସେମାନେ ଆଜିଯାଏ ଚାକିରି ପାଇ ନାହାନ୍ତି । 1965, 1966 ଓ 1967, 1968 ଓ 1969 ଏହିପରି 5 ବର୍ଷର ପାଶ୍ ତାଲିକାରେ ଯେଉଁମାନେ ଅଛନ୍ତି ସେମାନେ ଚାକିରି ପାଇପାରି ନାହାନ୍ତି । ଏତଣ୍ଡୁ କୌଣସି ଗୋଟିଏ ବ୍ୟାପକ ଯୋଜନାକରି ଏମାନଙ୍କୁ ଚାକିରିଦେବା ଉଚିତ । ଏମାନଙ୍କୁ ଜମିଦେଇ ଓ କିଛି ଟଙ୍କା ଦେଇ ଏମାନେ ଜମିରେ ଯେପରି ଚାଷକରି ସେଥିରୁ ଉତ୍ପାଦନ କରିପାରିବେ ଅନ୍ତତଃ ସେପରି ବ୍ୟବସ୍ଥା ହେବା ଉଚିତ୍ ଥିଲା । ତାହା ନ ହୋଇଥିବାରୁ ଏ ଶିକ୍ଷିତ ବେକାରମାନଙ୍କ ଭବିଷ୍ୟତ ଅନ୍ଧକାରମୟ ଜଣାଯାଉଛି । କିନ୍ତୁ ରାଜ୍ୟପାଳଙ୍କ ଭାଷଣରେ ଏ ସମସ୍ୟା ସମାଧାନପାଇଁ କୌଣସି ସୂଚନା ଦିଆଯାଇ ନାହିଁ । ସେ ଯୋଗୁରୁ ମଧ୍ୟ ଏଭାଷା ଉତ୍ସାହପ୍ରଦ ହୋଇନାହିଁ ବୋଲି କୁହାଯାଇପାରେ ।

ତା'ପରେ ଆପଣ ଦେଖିବେ ଆମର ମୌଳିକ ସମସ୍ୟା ସମାଧାନ କରିବାପାଇଁ ଜମି ବଣ୍ଟନ କରିବା କଥା ଅଛି । Land Reforms ଯାହା ହୋଇଛି ତାକୁ କାର୍ଯ୍ୟକାରୀ କରିବା କଥା । ଆମର ଯେଉଁ Land Reforms Act ପାଶ୍ ହୋଇଛି, ସେଥିରେ ଯେଉଁ ସିଲିଂ ରଖାଯାଇଛି ସେ ସିଲିଂ ଯଥେଷ୍ଟ ଅଧିକ ହୋଇଛି, 20 Standard acre ହୋଇଛି, ତାକୁ ବି କମାଇବା ଦରକାର ତାକୁ 10 Standard acre କଲେ ଠିକ୍ ହେବ । ମୋ ମତରେ ତାକୁ କମାଇ ଉଦ୍‌ବୃତ୍ତ ଜମି ଯାହା ଅଛି ତାକୁ ବଣ୍ଟନ କରିବା ନିହାତି ଦରକାର, କିନ୍ତୁ ଆମର ଯେଉଁ ପୁରୁଣା Land Reforms Act ପାଶ୍ ହୋଇଛି ଯେଉଁଟା Supreme Courtକୁ ଯାଇ କାଏମ ରହିଛି, ତାକୁ କାର୍ଯ୍ୟକାରୀ କରିବାପାଇଁ ମଧ୍ୟ ଏଥିରେ କିଛି ବ୍ୟବସ୍ଥା ନାହିଁ, ବରଂ ତାକୁ ନାନା ଉପାୟରେ ଟାଳଟୁଳ କରି ତାହା ଯେପରି କାର୍ଯ୍ୟକାରୀ ନହେବ ସେ ଉଦ୍ୟମ ହେଉଛି । ଯଦ୍‌କିଞ୍ଚିତ ଜମି ଯାହା ବଳିଆନ୍ତା ଯେଉଁମାନେ ଭୂମିହୀନ ଚାଷୀ ଅଛନ୍ତି ବା landless labourer ରହିଛନ୍ତି ସେମାନଙ୍କ ଭିତରେ ତାକୁ ବାଣ୍ଟିବାକୁ କୌଣସି ବ୍ୟବସ୍ଥା ନାହିଁ । ଏ ହେଉଛି ଆମର ଗୋଟିଏ ମୌଳିକ ସମସ୍ୟା । ଏହା ଉପରେ ବହୁତ କଥା ନିର୍ଭର କରୁଛି । ଜମି ସଂକ୍ରାନ୍ତରେ ବିଭିନ୍ନ ଅଞ୍ଚଳରେ ଯେଉଁ ଅଶାନ୍ତି

ଦେଖାଯାଉଛି ସେ ଅଶାନ୍ତି ଦୂର କରିବାପାଇଁ ଜମି ବଣ୍ଟନର ବ୍ୟବସ୍ଥା ନାହିଁ । ଯଦ୍ୟପି ଏକତେ ହଜାର ଏକର ଜମି ବଣ୍ଟନ କରାଗଲା ବୋଲି ରାଜ୍ୟପାଳଙ୍କ ଭାଷଣରେ ଅଛି, ତାହା କ'ଣ ଯଥେଷ୍ଟ ? ପୂର୍ବରୁ Constitution Amendment ଆଲୋଚନା ପ୍ରସଙ୍ଗରେ ବହୁ ମାନ୍ୟବର ସଭ୍ୟ କହିଛନ୍ତି ଯେତକ ଜମି ବଣ୍ଟନ କରିବା କଥା କୁହାଯାଉଛି ତାହା ଆଦୌ ଯଥେଷ୍ଟ ନୁହେଁ । ଲକ୍ଷ ଲକ୍ଷ ଭୂମିହୀନ ପରିବାର ଅଛନ୍ତି, ଯେଉଁମାନଙ୍କୁ ଜମି ଦେବା ନିହାତି ଦରକାର । ଏଇଟା ଆମର ମୌଳିକ ସମସ୍ୟା । ଏହା ସମାଧାନ ନ ହେଲେ ଆମର କୌଣସି ସମାଧାନ ସହଜ ହୋଇପାରିବ ନାହିଁ । ଆମେ Industrialisation କରି ବଡ଼ ବଡ଼ Industrial concern ସ୍ଥାପନ କରି ଆମର ଯେଉଁ ବେକାର ବେକାରି ସମସ୍ୟା, ସେ ସମସ୍ୟା ସମାଧାନ ଆଦୌ କରିପାରିବା ନାହିଁ । ସେଥିପାଇଁ ଭୂମିବଣ୍ଟନ କରି ଏବଂ ଛୋଟ ଛୋଟ ଶିଳ୍ପ ସ୍ଥାପନ କରି ଗାଆଁ ଗହଳରେ ଯେଉଁ ବେକାର ସମସ୍ୟା ରହିଛି ତାକୁ ଆମେ ହସାବକୁ ଆଣିନାହୁଁ । କାରଣ ଆମର ଯେଉଁ Employment Exchange ଅଫିସ ଅଛି ସେଠାରେ ଆମର Rural Unemloyment କଥା ହସାବକୁ ନିଆଯାଇ ନାହିଁ । ଆମର Rural Unemployment ଏତେ ବିରାଟ ଓ ଏତେ ଉତ୍କଟ ହେଲେ ମଧ୍ୟ ତା'ର solution ପାଇଁ ଆଜି ପର୍ଯ୍ୟନ୍ତ କୌଣସି ସୁଚିନ୍ତିତ ଯୋଜନା କରି ହେଲା ନାହିଁ । ଆମର ଯେଉଁ Small Panchayat Industry ଥିଲା ସେଥିରେ ଦେଖାଦେଇଥିବା ଦୋଷ ତ୍ରୁଟିକୁ ଦୂର କରି ସେଗୁଡ଼ିକ କପରି ଭାବରେ ବୃଦ୍ଧି ଓ ଅଧିକରୁ ଅଧିକ ଶିଳ୍ପ କପରି ସ୍ଥାପିତ ହୋଇପାରିବ ତା'ର ବ୍ୟବସ୍ଥା ମଧ୍ୟ ଏଥିରେ ନାହିଁ । ସେଥିପାଇଁ ଏ addressରେ ଯାହା ଅଛି ତାକୁ ପଢ଼ି ଆମର ଯେଉଁମାନେ ବେକାର ଅଛନ୍ତି ସେମାନେ କୌଣସି ପ୍ରକାର ଉତ୍ସାହ ଉଦ୍ଦୀପନା ପାଇପାରିବେ ନାହିଁ । କେବଳ ସେତିକି ନୁହେଁ ଆମର ବର୍ତ୍ତମାନ ମନ୍ତ୍ରୀମଣ୍ଡଳ, ବିଶେଷରେ ମୁଖ୍ୟମନ୍ତ୍ରୀ ଓ ଶିଳ୍ପ ମନ୍ତ୍ରୀ କଲିକତା, ବମ୍ବେ, ଦିଲ୍ଲୀ ଇତ୍ୟାଦି ସ୍ଥାନକୁ ଯାଇ ପୁଞ୍ଜିପତି ଓ ଶିଳ୍ପପତି-ମାନଙ୍କୁ ଆହ୍ୱାନ କରିବା ପାଇଁ ଆମ ରାଜ୍ୟକୁ ସେମାନେ ଆସିବା ପାଇଁ, ଏପରିକି Chamber of Commerceକୁ ଧରି ବଡ଼ ବଡ଼ meeting କରି ସେଠାରେ ସେମାନଙ୍କୁ ଅନୁରୋଧ କରାଯାଉଛି ଯେ ଆମ ରାଜ୍ୟକୁ ଆସ, ଆମ ରାଜ୍ୟରେ ବହୁତ ଖଣିଜ ସମ୍ପଦ ଅଛି, ଜମି ଅଛି, ଶସ୍ତା ଦରରେ ବିଦ୍ୟୁତ୍-ଶକ୍ତି ଅଛି, ଜଳ ବ୍ୟବସ୍ଥା ମଧ୍ୟ ସୁବିଧାରେ କରାଯାଇପାରିବ କିନ୍ତୁ ଏତେ କଥା କହିବା ସତ୍ତ୍ୱେ ଗତ 3 ବର୍ଷ ହେଲା ସେମାନେ କାହିଁ ତ କେହି ଶୁଣୁ ନାହାନ୍ତି । କୌଣସି ଗୋଟିଏ ଶିଳ୍ପ ସ୍ଥାପିତ ହୋଇନାହିଁ, ବରଂ ଆଉ ଗୋଟିଏ କଥା ଦେଖିବେ,

ଆମର ଯେଉଁ ଖଣିଜ ସମ୍ପଦ ଅଛି ତାକୁ ବିନିଯୋଗ କରିବା ପାଇଁ ଆମର ଯେଉଁ ବିଭାଗ ଅଛି, ଯେଉଁ ସଂସ୍ଥା ଅଛି ତାକୁ ଉତ୍ସାହିତ କରିବା ପରିବର୍ତ୍ତେ I.D. C. ଓ Mining Corporationର ଯେଉଁ ଦୋଷ ତ୍ରୁଟି ଅଛି ତାକୁ ଦୂରକରି, ତାକୁ ଦୃଢ଼ ଓ ଶକ୍ତିଶାଳୀ କରି ଗଢ଼ିବା କରିଆରେ ଆମ ଖଣିଜ ସମ୍ପଦ ଯଦି exploit କରାଯାଆନ୍ତା, ତାଦ୍ୱାରା ଆମ ରାଜ୍ୟ ସରକାର ନିଶ୍ଚିତ ଲାଭବାନ ହୁଅନ୍ତେ । କିନ୍ତୁ ସେ ବ୍ୟବସ୍ଥା ଏଥିରେ ନାହିଁ । ସେଥିପାଇଁ ଆମର ଯେଉଁ Internal resource କଥା କୁହାଯାଇଛି ସେ Internal resources ବୃଦ୍ଧି କରିବାପାଇଁ କୌଣସି ଯୋଜନା ନାହିଁ । ଆମ ରାଜ୍ୟପାଳଙ୍କ ଭାଷଣରେ କେବଳ କୁହାଯାଇଛି ଆମର ୪ର୍ଥ ପଞ୍ଚବାର୍ଷିକ ଯୋଜନା ପାଇଁ ଯେତିକି ଟଙ୍କା ମାଗିଥିଲୁ ସେତିକି ଟଙ୍କା ପାଇପାରୁ ନାହୁଁ ।

"To maintain even the present level of disparity of income an immediate outlay of 265 crores is required for the State's Fourth Five-Year Plan. Any lower plan outlay will not only further accentuate the regional imbalance, but would be also injurious to the interest of the State and the Country as a whole".

ଏତେ କଥା କୁହାଯାଇଛି କିନ୍ତୁ ନିଜଆଡ଼ୁ ଆଭ୍ୟନ୍ତରୀଣ ସମ୍ବଳ ବୃଦ୍ଧି କରିବା ପାଇଁ ଆଦୌ ଦୃଷ୍ଟି ଦିଆଯାଇ ନାହିଁ । ଆମେ ଗୁହାରି କରିବା ଅଧିକ ଟଙ୍କା ପାଇବୁ ଓ Planକୁ କାର୍ଯ୍ୟକାରୀ କରିବୁ । କିନ୍ତୁ ନିଜଆଡୁ ଆମେ କୌଣସି ଉଦ୍ୟମ କରୁନାହୁଁ, ସେଥିପାଇଁ ଅଧିକ ଅଭ୍ୟନ୍ତରୀଣ ସମ୍ବଳ କିପରି ଯୋଗାଡ଼ କରିପାରିବୁ ସେ ସମ୍ବଳ ଉଠାଇବା ପାଇଁ କୌଣସି ଯୋଜନା ନାହିଁ । ସେଥିପାଇଁ ଯୋଜନା ଭବନରେ ଆମେ ଯେଉଁ ଅଧିକ ଟଙ୍କା ପାଇବାର କଥା ସେ ସମ୍ବନ୍ଧରେ ଏତେ ଦାବି କଲେ ମଧ୍ୟ କେହି ଆମ କଥା ଶୁଣିବାକୁ ନାହିଁ । ଯଦିଓ Finance Commission ଯେଉଁ Award ଦେଇଛନ୍ତି ସେଥିରେ ଆମେ ସନ୍ତୁଷ୍ଟ ନୋହୁଁ, ତଥାପି ମୋର କହିବାର କଥା, Development କମିଟିମାନଙ୍କରେ ଯେତେବେଳେ Policy, ପ୍ରୋଗ୍ରାମ ସ୍ଥିର ହେଲା, ଅନ୍ୟାନ୍ୟ ରାଜ୍ୟର ମୁଖ୍ୟମନ୍ତ୍ରୀମାନଙ୍କ ସହିତ ଆମର ମୁଖ୍ୟମନ୍ତ୍ରୀ ମଧ୍ୟ ଉପସ୍ଥିତ ଥିଲେ ସେ ସମୟରେ ଯେଉଁ Policy Decission ନିଆଗଲା, କାହିଁ ମୁଖ୍ୟମନ୍ତ୍ରୀ ତା'ର ବିରୋଧ କଲେ ନାହିଁ ? ସେ ସମୟରେ ଏଠାରେ ପ୍ରଶ୍ନ ଉଠିଲାବେଳେ ପଚରାଯାଇଥିଲା, minute of dissent ଦେଇଛନ୍ତି କି ? ସେ ମନାକଲେ ସେ ମୁଁ minute of dissent ଦେଇ ନାହିଁ । Population ପାଇଁ ଏତେ, backwardness ପାଇଁ ଏତେ, ଅମୁକ ପାଇଁ ଏତେ, ଯାହା

ସ୍ଥିରହୋଇଥିଲା ସେଥିରେ ସେ ରାଜି ହୋଇଗଲେ । ସେଥିରେ ରାଜି ହେବା ଉଚିତ ନ ଥିଲା । ଯଦି ତଦ୍ୱାରା ଆମ ରାଜ୍ୟର କ୍ଷତି ଓ ଆମେ କମ୍ ଟଙ୍କା ପାଇବାର ଦେଖାଯାଇଥିଲା, ଆମେ ନିଶ୍ଚିତ ଭାବରେ protest କରିବାର କଥା । Minute of dissent ଦେବାର କଥା । ଆମେ ଆମ ରାଜ୍ୟର ଦୁଃଖ ଦୁର୍ଦ୍ଦଶା କଥା ଓ ଆମ ରାଜ୍ୟର ଅନୁନ୍ନତ ଅବସ୍ଥା କଥା ଉପସ୍ଥାପିତ କରି 6th Finance Commission ବସାଇବା ପାଇଁ ଦାବି କରିବା ଉଚିତ, ନ ବସିଲେ ଏ ରାଜ୍ୟ ପଛୁଆ ହୋଇ ରହିବ, କୌଣସି ରକମ ସାହାଯ୍ୟ ପାଇ ପାରିବ ନାହିଁ ଇତ୍ୟାଦି ଇତ୍ୟାଦି ଏତେ କଥା ପରେ କହିବା ବଦଳରେ ଆମେ ଆରମ୍ଭରୁ ଯେତେବେଳେ ଦେଖିଲୁ ଯେ ଏ ନୀତି ତ୍ରୁଟି ପୂର୍ଣ୍ଣ ଏବଂ ଆମ ରାଜ୍ୟ ପ୍ରତି ଯଦି ଏହା ପ୍ରଯୁଜ୍ୟ ହୁଏ ଆମେ କ୍ଷତିରେ ପଡ଼ିବୁ ଓ ଅନ୍ୟ ରାଜ୍ୟ ସହିତ ସମକକ୍ଷ ହୋଇ ପାରିବୁ ନାହିଁ, ଆମେ ସେଇଠାରେ ଦୃଢ଼ଭାବରେ ଦାବି କରିବା ଉଚିତ ଥିଲା ଓ facts and figure ଦେଇ କହିବା ଉଚିତ୍ ଥିଲା । Development Councilରେ ଯାହା ହେଲା ତାକୁ ଯଦି ନ ବଦଳାଯାଏ ତାହା ଆମ ପକ୍ଷରେ କ୍ଷତିକାରକ ହେବ କିନ୍ତୁ ତାହା ଆମେ କରି ପାରିନାହୁଁ ।

ତା'ପରେ ଆପଣ ଦେଖିବେ decentralisation କରିବା ପାଇଁ ଆମର ପଞ୍ଚାୟତ ରାଜ ସ୍ଥାପିତ ହେଲା । ପଞ୍ଚାୟତ ରାଜ ଦ୍ୱାରା ଗ୍ରାମାଞ୍ଚଳରେ ଦେହ ଶହ ବର୍ଷର Backwardness ଦୂର କରିବା ପାଇଁ ଉଦ୍ୟମ ହୋଇଥିଲା । ପଞ୍ଚାୟତ ବିଲ୍‌ଗରେ ଯାହା ଦୋଷ ତ୍ରୁଟି ରହିଥିଲା ସେସବୁ ଦୂର କରି ତାକୁ ପୁନର୍ଗଠିତ କରିବା ପରିବର୍ତ୍ତେ ତାକୁ ଏପରି ଭାବରେ ପଙ୍ଗୁ କରି ଦିଆଗଲା ଯେ ବର୍ତ୍ତମାନ ସବୁଠି Block ଗୁଡ଼ିକ ଅଚଳ ହୋଇ ପଡ଼ିଛି । Block କୌଣସି ସ୍ଥାନରେ କାର୍ଯ୍ୟକାରୀ ହେଉନାହିଁ, ଅର୍ଥ ନାହିଁ ଏମାନେ ଯେଉଁ ଟିକସ ଆଦାୟ କରୁଥିଲେ ତାକୁ ଛାଡ଼ିଲେ ଅନ୍ୟାନ୍ୟ ଯେଉଁ ଅର୍ଥାଗମ ପନ୍ଥା ଥିଲା, ସେସବୁ ଅର୍ଥାଗମ ପନ୍ଥା କିଛି ନଥିବା ହେତୁ ଅନେକ ସ୍ଥାନରେ ପଞ୍ଚାୟତ ଅଚଳ ହୋଇ ପଡ଼ି ରହିଛି । ଅଥଚ ଯେଉଁ ଅଞ୍ଚଳ ଆଦିବାସୀ ବହୁଳ ଅଞ୍ଚଳ ସେଠାରେ ପୁରା grant ଦେଇ T. D. Block ରୂପେ ତାକୁ ପରିଗଣିତ କରି ତାକୁ ଅଧିକ ଟଙ୍କା ଦେବାର କଥା କିନ୍ତୁ ତାହା ମଧ୍ୟ ଏଥିରେ ନାହିଁ । ଆମେ ଖାଲି ନକ୍‌ସାଲାଇଟ୍‌ସ ଉପଦ୍ରବ ବନ୍ଦ କରିବା ପାଇଁ ଆମେ ଯାହା କିଛି ଯୋଜନା କରୁଛୁ କିନ୍ତୁ ଯେଉଁ ଅଞ୍ଚଳରେ ନକ୍‌ସାଲାଇଟ୍ସ movement ହେଉଛି ସେଇ ଅଞ୍ଚଳ ଲୋକ ମାନଙ୍କର ଯେଉଁ ଆର୍ଥିକ ଦୁରବସ୍ଥା ତାକୁ ଦୂର କରିବା ସକାଶେ କୌଣସି ଯୋଜନା ଆମେ କରୁନାହୁଁ । ସେଥିପାଇଁ ଅସ୍ୱାଭାବିକ ପରସ୍ଥିତି ଦେଖା ଦେଇଛି, ସେଇ ଆଲୋଚନା ଲାଗି ରହିଛି, ଆଦିବାସୀ ଅଞ୍ଚଳରେ ରାସ୍ତାର ସୁବିଧା ନାହିଁ, ସେମାନଙ୍କୁ ଜମିବାଡ଼ି ଦେଇ ସେମାନଙ୍କର ଅଭାବ ଅସୁବିଧା ଦୂର କରିବା ଦିଗରେ କୌଣସି ଚେଷ୍ଟା

ହେଉନାହିଁ । ସେଥିପାଇଁ ସେମାନଙ୍କର backwardness ବରାବର ଲାଗି ରହୁଛି ତାକୁ ଦୂର କରିବାକୁ ହେବ । ଗାଁ ଗହଳର ଉନ୍ନତି ବିନା ଏ ରାଜ୍ୟର ଉନ୍ନତି ସମ୍ଭବ ନୁହେଁ । ଗାଲି କୋଟି କୋଟି ସହରାଞ୍ଚଳରେ ନଭଶ୍ଚୁମ୍ବି ପ୍ରାସାଦ ତିଆରି କଲେ ସାରା ରାଜ୍ୟର ଆର୍ଥିକ ଉନ୍ନତିର ସୂଚନା ଦେବ ନାହିଁ । ପଞ୍ଚାୟତରାଜପାଇଁ ଅର୍ଥ ବ୍ୟବସ୍ଥା କରିବାକୁ ହେବ । ଆମର ପଞ୍ଚାୟତ କିପରି ସୁପରିଚାଳିତ ହେବ ତା ଦେଖିବାକୁ ହେବ । ପ୍ରତି ପଞ୍ଚାୟତରେ କିପରି ରାସ୍ତା, ଶିକ୍ଷା, ଆଲୋକ, ଜଳସେଚନ ଆଦି ବ୍ୟାପକ ଭାବରେ ପ୍ରସାରିତ ହେବ ସେଥିପାଇଁ ଆମକୁ ବ୍ୟବସ୍ଥା କରିବାକୁ ହେବ । କୁହାଯାଉଛି ବ୍ଲକଗୁଡ଼ିକ କୃଷି ଆଭିମୁଖ୍ୟ କରିବାକୁ ହେବ । କିନ୍ତୁ ସେ ଦିଗରେ କୌଣସି ବ୍ୟବସ୍ଥା ନାହିଁ । ବହୁ ଉତ୍ପାଦନ କ୍ଷମ ବିହନ କିପରି ଚାଷୀମାନଙ୍କୁ ଦିଆଯିବ ସେ ଦିଗରେ ବ୍ୟବସ୍ଥା ନାହିଁ । ଗତବର୍ଷ ପରେ ବ୍ୟବସାୟୀମାନଙ୍କ ଜରିଆରେ ସାର ବଣ୍ଟନରେ କି ବିଭ୍ରାଟ ସୃଷ୍ଟି ହୋଇଥିଲା ତା ଆପଣ ଜାଣନ୍ତି । ଚାଷୀମାନଙ୍କ ପାଖରେ ସାର ନ ପହଞ୍ଚାଇଲେ ସେମାନେ କିଛି କରି ପାରିବେ ନାହିଁ । ସାର ବଣ୍ଟନରେ ଯେଉଁ ତ୍ରୁଟି ଦେଖାଦେଉଛି ତାକୁ ଦୂର କରିବାକୁ ହେବ । ସେହିପରି ଶିକ୍ଷା ବିଭାଗରେ ବହୁ ଅବ୍ୟବସ୍ଥା ଦେଖା ଦେଇଛି । କୁହା-ଯାଉଛି 1000ଟି ପ୍ରାଇମେରୀ ଶିକ୍ଷା ଯୋଗାଇ ଦିଆଯିବ । ଗତ 2 ବର୍ଷ ହେବ ପ୍ରାଇମେରୀ ସ୍କୁଲ ବଢ଼ାଇବା ଦିଗରେ କିଛି ବ୍ୟବସ୍ଥା କରାଯାଇ ନାହିଁ । ପ୍ରାଇମେରୀ ଶିକ୍ଷା ସଫଳ ନ ହେଲେ ମାଧ୍ୟମିକ ଶିକ୍ଷା ସଫଳ ହେବ ନାହିଁ । ପିଲା ସଂଖ୍ୟା ଏତେ ହେଉଛି ଯେ ଗୋଟିଏ ଗୋଟିଏ ଶ୍ରେଣୀରେ 50 ରୁ 60 ପର୍ଯ୍ୟନ୍ତ ପିଲା ବସୁଛନ୍ତି । ଶିକ୍ଷକ ଓ ଛାତ୍ର ଏମାନଙ୍କ ଭିତରେ ଅନୁପାତିକ ସଂଖ୍ୟା 30ରୁ କୌଣସି ମତେ ଅଧିକ ହେବା ଉଚିତ ନୁହେଁ । ଏ ବିଷୟରେ ଏଠି ବହୁବାର ଆଲୋଚନା ହୋଇଛି ସ୍ଥିର ହୋଇଥିଲା ଅଧିକ ସଂଖ୍ୟକ ଶିକ୍ଷକ ଯୋଗାଇ ଦିଆଯିବ କିନ୍ତୁ ତା ହେଉନାହିଁ ଏଣୁ ପ୍ରାଥମିକ ଶିକ୍ଷାର କୌଣସି ଉନ୍ନତି ହେଉନାହିଁ । ପ୍ରତିବର୍ଷ ଯେପରି ଅଧିକ ପିଲା ନାମ ଲେଖାଇବେ ଏଥିପାଇଁ ଆମ୍ଭେମାନେ ଆନ୍ଦୋଳନ କଲେ, ଅଧିକରୁ ଅଧିକ ପିଲା ନାମ ଲେଖାଇଲେ କିନ୍ତୁ ଶିକ୍ଷକ ଅଭାବ, ସେ ଯୋଜନା ସଫଳ ହୋଇ ପାରୁନାହିଁ । ମାଧ୍ୟମିକ ସ୍କୁଲଗୁଡ଼ିକର ଅବସ୍ଥା ଠିକ ସେହିପରି ଖରାପ । ଏ ବିଷୟରେ ବହୁ ଆଲୋଚନା ଏଠି ଓ ମାଧ୍ୟମିକ ଶିକ୍ଷା ବୋର୍ଡରେ ହୋଇଛି । ଅଧିକ ସଂଖ୍ୟାରେ ଏଠାରେ ଶିକ୍ଷକ ନାହାନ୍ତି । ଏ ଅଭାବ ପୂରଣ କରିବାପାଇଁ କୌଣସି ଚେଷ୍ଟା ହେଉନାହିଁ । ଆଦିବାସୀ ମାନେ କିଛି ପରିଶ୍ରମ ବଳରେ ହାଇସ୍କୁଲଟିଏ ଗଢିଥାନ୍ତି 8ମ, 9ମ, 10ମ ପର୍ଯ୍ୟନ୍ତ ଉଠାଇ ନେଇ ପାରିଥାନ୍ତି । ତାପରେ ସେମାନଙ୍କର ବଳ ପାଏନାହିଁ । ସରକାର full deficity ଭାବେ ସେ ସ୍କୁଲଗୁଡ଼ିକୁ ହାତକୁ ନେବାର କଥା । କିନ୍ତୁ ସରକାର ସେଗୁଡ଼ିକୁ ସାହାଯ୍ୟ କରୁନାହାଁନ୍ତି । ଫଳରେ ଲୋକଙ୍କର ଉଦ୍ୟମ ପଣ୍ଡ ହୋଇଛି । ଏହାଭିତରେ ପୁଣି ରାଜନୀତି ପ୍ରବେଶ କରୁଛି ।

ତା'ପରେ ଆମେ ଆଶା କରିଥିଲୁ ଏହା ଭିତରେ ଅଧିକ କେତେକ ସ୍ଥାନରେ ପରୀକ୍ଷାମୂଳକ ଭାବେ ଏକଚୋଟି compulsory primary education ହେବ । କିନ୍ତୁ ରାଜ୍ୟପାଳଙ୍କ ଭାଷଣରେ ଏ ବିଷୟରେ କୌଣସି ସୂଚନା ନାହିଁ । 4ର୍ଥ ପଞ୍ଚବାର୍ଷିକ ଯୋଜନା ଆରମ୍ଭରେ ପ୍ରାଇମେରୀ ସ୍କୁଲ ବଢ଼ିବା କଥା କିନ୍ତୁ ସେପରି କିଛି ସୂଚନା ମିଳୁ ନାହିଁ । କଲେଜ ଶିକ୍ଷା ଅବସ୍ଥା ତଦ୍ରୂପ । ଆମେ ଖାଲି U. G. C. grant ରେ ଚଳୁଛୁ । କିନ୍ତୁ ସରକାର ତରଫରୁ କୌଣସି ଆର୍ଥିକ ବ୍ୟବସ୍ଥା ନାହିଁ । ସେଦିନ ଆମେ ଆଠଗଡ଼ କଲେଜକୁ ଯାଇଥିଲୁ । ଦେଖିଲୁ ସେ କଲେଜର ଅବସ୍ଥା ସାଧାରଣ M. E. ସ୍କୁଲଠାରୁ ଖରାପ, ଏଥିରେ କଲେଜ କିପରି ଚଳିବ । ସେ କଲେଜର ପିଲାମାନେ ବି'ଥର ପରୀକ୍ଷା ଦେଲେଣି । କିନ୍ତୁ ସରକାର ତାକୁ ହାତକୁ ନେଉ ନାହାନ୍ତି । ସେଇପରି ଢେଙ୍କାନାଳ କଲେଜ ପିଲାମାନେ ବହୁଦିନ ଧରି ଆନ୍ଦୋଳନ କରିଥିଲେ । ସେମାନଙ୍କର ସମ୍ପୂର୍ଣ୍ଣ ଅସୁବିଧା ଦୂରକରିବା ପାଇଁ । ସେମାନଙ୍କ ପାଇଁ ସାଇକେଲ ଷ୍ଟାଣ୍ଡ ଟିଏ ନାହିଁ, ଲେଟ୍ରିନ ଘରଟିଏ ନାହିଁ । ଝିଅପିଲା-ମାନେ ଚଳିବେ କିପରି ? ଏହା ଲକ୍ଷ ଲକ୍ଷ ଟଙ୍କାର କାମ ନୁହେଁ । ସାମାନ୍ୟ କେତୋଟି ଅସୁବିଧା ଦୂର ହୋଇ ପାରୁ ନାହିଁ । ସର୍ବୋପରି ଶିକ୍ଷାର ମାନ ତ କେତେଦୂର ତଳେକୁ ଗଲାଣି ତା ଚତୁର୍ଦିଗରେ ଦେଖାଯାଉଛି । ପରୀକ୍ଷାରେ ଯେଉଁ ତ୍ରୁଟି ଘଟୁଛି ତା ଦୂର କରିବା ପାଇଁ କିଛି ଚେଷ୍ଟା ନାହିଁ । ସେକେଣ୍ଡାରୀ ବୋର୍ଡ଼ର ପରୀକ୍ଷକଙ୍କୁ ଗୋଟି ଯୋଗରେ ନିଯୁକ୍ତ କରିବା କଥା, କିନ୍ତୁ ତା ଆଜିପର୍ଯ୍ୟନ୍ତ ହେଉନାହିଁ । ମାଟ୍ରିକ ପରୀକ୍ଷା ଫଳ ଠିକ୍ ସମୟରେ ବାହାରି ପାରୁନାହିଁ । ଏ ସମ୍ପର୍କରେ ବହୁ ସମାଲୋଚନା ଏଠି ତ ସେକେଣ୍ଡାରୀ ବୋର୍ଡ ମିଟିଂରେ ହେଉଅଛି । ଗୋଟି ଯୋଗ କରି ଏକ ସମୟରେ ପରୀକ୍ଷା ପରିଚାଳନା କରିଲେ ଫଳାଫଳ ଚଞ୍ଚଳ ଘୋଷଣା ହୁଅନ୍ତା, କିନ୍ତୁ ଏ ବ୍ୟବସ୍ଥା ହୋଇ ପାରୁନାହିଁ । ଆମ ଲୋକେ ଯେତେ ଶିକ୍ଷାପ୍ରତି ଆକୃଷ୍ଟ ହେବେ ସେତେ ସେମାନଙ୍କର ଦୁଃଖ ଦୁର୍ଦ୍ଦଶା ବୁଝିପାରି ଦୂର କରିବାକୁ ଚେଷ୍ଟା କରିବେ । ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଆମେ ଶତାବ୍ଦୀର ପଛୁଛୁ ଅଶିକ୍ଷିତ ସମାଜର ଅଗ୍ରଗତି କଦାପି ସମ୍ଭବପର ନୁହେଁ । ରାଜ୍ୟପାଳଙ୍କ ଭାଷଣରେ ଏ ବିଷୟରେ କିଛି ଉଲ୍ଲେଖ ନାହିଁ । ଏ ସମ୍ପର୍କରେ ମୁଁ ଏକ ଉଦାହରଣ ଦେବାକୁ ଚାହେଁ । ଏଥିରୁ ପ୍ରମାଣ ମିଳିବ କିପରି ଶିକ୍ଷା କ୍ଷେତ୍ରରେ ରାଜନୀତି ପ୍ରବେଶ କରୁଛି । ଭଦ୍ରକ କଲେଜ ହତା ଭିତରେ ପୋଲିସ ୪ଥର ପଶିଛି, 144 ଧାରା ଜାରୀ କରିଛି । ପିଲାମାନଙ୍କୁ ପଢ଼ାଘରୁ ଟାଣି ଆଣିଛି । ଆପଣ ଶୁଣି ଆଶ୍ଚର୍ଯ୍ୟ ହେବେ କିପରି ପୋଲିସ ପିଲାମାନଙ୍କୁ ଟାଣିଆଣି କହୁଛି ଆସ ପରୀକ୍ଷା ଦିଅ । ଅନ୍ତତଃ ଗୋଟାଏ ବିଷୟରେ ପରୀକ୍ଷା ଦିଅ । ତା ଯଥେଷ୍ଟ ହେବ । ଶିକ୍ଷାନୁଷ୍ଠାନରେ ପୋଲିସ ପଶି ପିଲମାନଙ୍କୁ ଧରିଆଣି ପରୀକ୍ଷା ଦେବାକୁ କହିବା ଏକ ଅଭିନବ କଥା । ପରିଚାଳନା କମିଟି ଏକଥା କରିପାରେ କିନ୍ତୁ ପୋଲିସ ପକ୍ଷରୁ ଏପରି କରିବା ଏକ ଅଭିନବ ଘଟଣା । ଶିକ୍ଷାନୁଷ୍ଠାନରେ ପୋଲିସ ଅଯଥା ବଳପ୍ରୟୋଗ କରି ସମାଧାନ କରିବାପାଇଁ ଯେଉଁ ଉଦ୍ୟମ

ହେଉଛି ଏହା ଏକ ଗର୍ହିତ କାର୍ଯ୍ୟ । ଏହାକୁ ଯଦି ବନ୍ଦ କରା ନ ଯାଏ ଆଇନ ଶୃଙ୍ଖଳା ଭାଙ୍ଗିଗଲା ବୋଲି ଗାଳି [illegible] କଲେ ହେବ ନାହିଁ । ବିଶୃଙ୍ଖଳା ସୃଷ୍ଟି କରିବାପାଇଁ ଏକ ବାହାନା କରାଯାଉଛି । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି କାରଣ ନାହିଁ ।

ଗତବର୍ଷ ସରକାର ବହୁତ ଚାଉଳ କିଛି procure କଲେ, ବହୁତ କିଛି ବାହାରକୁ ପଠାଇଲେ । ସେଥିପାଇଁ ଆମେ 2 କୋଟି ଟଙ୍କା ବୋନସ ପାଇଛୁ । ଆପଣ ଜାଣିଥିବେ ଯେଉଁ ସମୟରେ ବାଲେଶ୍ୱର ଅଞ୍ଚଳରେ ଏବଂ ଗଞ୍ଜାମ ଅଞ୍ଚଳରେ ମୋଟା ଚାଉଳ ଲୋକେ ଖୋଜିଲେ ସେତେବେଳେ ଲୋକଙ୍କୁ ସେ coarse rice ମିଳିଲା ନାହିଁ । ଆମର ସାଧାରଣ ଲୋକେ ଯେ କି କିଣିବାକୁ ସେମାନଙ୍କର ଅର୍ଥନୈତିକ ଅବସ୍ଥା ଏତେ ସ୍ୱଚ୍ଛଳ ନୁହେଁ ଯେ ସେମାନେ ଅଧିକ ଦରରେ ଚାଉଳ କିଣି ଖାଇ ପାରିବେ । ସେମାନେ ଦାବି କଲେ common rice ଦିଅ, କିନ୍ତୁ ସେମାନଙ୍କୁ ମିଳିଲା ନାହିଁ । କେବଳ ସୁପରଫାଇନ୍ ଚାଉଳ ଅଛି ଯଦି କିଣିବ ଦିଆଯିବ । ଯାହାକି ସେମାନେ କିଣି ପାରିଲେ ନାହିଁ । ଏପରି କାହିଁକି ହେଉଛି ଆମେ ଗୋଟିଏ common rice ରଖିଲୁ । ତା'ପରେ ଗୋଟିଏ medium variety କଲୁ । ସେ varietyକୁ କେବଳ cosumption ପାଇଁ ରଖ, ତାପରେ ସିନା ଯାହା କରିବା । ମୋର ଲୋକଙ୍କର ଆର୍ଥିକ ଅବସ୍ଥା ଯାହା ସେମାନେ ସୁପରଫାଇନ୍ ଚାଉଳ କିଣି ଖାଇ ପାରିବେନି । ଗତବର୍ଷ ଅଭିଜ୍ଞତାରୁ ଆମେ ଯାହା ଶିକ୍ଷାଲାଭ କରିଛୁ ସେ ଦୃଷ୍ଟିରୁ ଏ ବର୍ଷ ଅନ୍ତତଃ ସେଇପରି common rice ଏବଂ medium variety ଲୋକଙ୍କ ପାଇଁ ରଖାଯାଉ । ସୁପରଫାଇନ୍ ଚାଉଳ ଯାହା ରହୁଛି ଲୋକଙ୍କ ଆବଶ୍ୟକତା ପାଇଁ, ରହିଲା ପରେ ବାକି ବାହାରକୁ ପଠାଇଲେ ଆମର ଏଥିରେ କିଛି କହିବାର ନାହିଁ ।

ସରକାରଙ୍କର resource କଥା । ମୁଁ କହିବା ସମୟରେ ଆଉ ଗୋଟିଏ କଥା କହିବାପାଇଁ ଭୁଲି ଯାଉଛି । ଆମର ଯାହା Public Undertakings ଅଛି ସେଥିରୁ ଆମେ ଲାଭ ପାଉଥିଲୁ । ସେଥିରେ କିଛି ନା କିଛି କାରଣ ଦେଖାଇ ବନ୍ଦ କରିବାକୁ ଯାଉଛୁ । ଉଦାହରଣ ସ୍ୱରୂପ S. T. S. ଏବଂ O. R. T. ଏ ଦୁଇଟି ସଂସ୍ଥା ଅତି ଲାଭଜନକ । ଏଥିରେ ଯେଉଁ ଲିକେଜ ହେଉଛି ଏହାକୁ ଯଦି କଡ଼ାକଡ଼ି ଭାବରେ ବନ୍ଦ କରି ଦିଆଯାଇଥାନ୍ତା, ତା'ହେଲେ ଆମେ ଅଧିକ ଲାଭ ପାଇ ପାରନ୍ତେ । କିନ୍ତୁ ସେ ଲିକେଜ୍‌କୁ ବନ୍ଦ କରିବା ପାଇଁ ବ୍ୟବସ୍ଥା ହେଉନାହିଁ । ଏକଥା ଜଣାଶୁଣା କଥା । O. R. T. ଓ S. T. S ଯେଉଁଠି ଚାଲୁଛି ସେ ରାସ୍ତାରେ ଟାକ୍ସି ଚାଲୁଛି । ତା' ସଙ୍ଗରେ contract carriage ମଧ୍ୟ ଚାଲିବାପାଇଁ ଅନୁମତି ଦିଆଯାଇଛି, ଫଳରେ ଆମର O. R. T. ଓ S. T. S. ବସ୍ ଯିବା ଆଗରୁ contract carriage private passengerମାନଙ୍କୁ ବୋହି ନେଇ ଚାଲି ଯାଉଛନ୍ତି ।

ବହୁସଂଖ୍ୟାରେ contract carriage ଚଳାଇବା ଫଳରେ ଆମର O. R. T. ଓ S. T. S. ବସ୍‌ରେ ପାସେଞ୍ଜର ସଂଖ୍ୟା କମିଯାଉଛି । ଯାହା ଜଣାଯାଉଛି, ସରକାରଙ୍କ ଜଣାଶୁଣାରେ ଏ କାର୍ଯ୍ୟ ହେଉଛି । ଏଥିରେ deep concipiracy ରହିଛି ଯାହାଦ୍ୱାରା Private Undertakingକୁ ଭାଙ୍ଗିବା ପାଇଁ ଚେଷ୍ଟା କରୁଛନ୍ତି । କୁଆଡ଼େ ଡାକ ଖବର କାଗଜରେ ପ୍ରକାଶ ପାଇଥିଲା ଲିକ୍ୱିଡେସନ୍ କେତେ ଲାଇନ ଲାଭଜନକ ହେଉନାହିଁ । ସେସବୁ ସରକାର ହସ୍ତାନ୍ତର କରିଦେବେ । ଗୋଟିଏ ଗୋଟିଏ ଲାଇନକୁ ହସ୍ତାନ୍ତର କରିବାପାଇଁ ଯେଉଁ ଦୁର୍ନୀତି ନୀତିର ଅବଲମ୍ବନ କରାଯାଉଛି private personକୁ କିପରି ଉତ୍ସାହିତ କରାଯାଉଛି ସେଥିପାଇଁ ବାହାରୁ କିପରି ଶିଳ୍ପପତିମାନଙ୍କୁ ଏଠାକୁ ଆସି ଶିଳ୍ପ ପ୍ରତିଷ୍ଠା କରିବା ପାଇଁ କିପରି ସୁବିଧା ସୁଯୋଗ ଦିଆଯାଉଛି ସେକଥା ଆପଣ ନିଜେ ଜାଣିଥିବେ । ଏ ବିଷୟରେ ବହୁତଥ୍ୟ ଖବରକାଗଜରେ ମଧ୍ୟ ପ୍ରକାଶ ପାଉଛି । ଆପଣ ଜାଣନ୍ତି ଶାସକଦଳ ଆମର Public Undertakingକୁ lived up କରିବାପାଇଁ ଷଡ଼ଯନ୍ତ୍ର କରି ବାହାରୁ private personଙ୍କୁ ଡାକିଆଣି ସୁଯୋଗ ଦେଉଛନ୍ତି । ଆମ Public Undertakingsର ବହୁ ଅସୁବିଧା ରହିଛି ତାକୁ ସଜାଡ଼ିବା ପାଇଁ କମ୍ପାନୀକୁ ଶକ୍ତିଶାଳୀ କରିବାପାଇଁ ଉଦ୍ୟମ କରୁନାହାନ୍ତି । ତାହା କିପରି ଏକ ଲାଭଜନକ ସଂସ୍ଥା ହୋଇ ପାରିବ ସେ ଦିଗରେ ମଧ୍ୟ ବ୍ୟବସ୍ଥା କରୁନାହାନ୍ତି । ଏହାପରି ଯଦି ଆମ Public Undertakings ସଂସ୍ଥାଗୁଡ଼ିକ wind up ହୋଇଯାଏ, ବହୁ ଲାଇନ୍‌ରୁ ବସ୍ ଚଳିବା ବନ୍ଦ ହୋଇଯାଏ ତା'ହେଲେ ଆମର O. R. T. ଓ S. T. S. ସଂସ୍ଥାରେ ଥିବା ଶହ ଶହ ସଂଖ୍ୟାରେ କର୍ମଚାରୀ ବେକାର ହେବେ । ଆପଣ ଜାଣନ୍ତି, ଏବେ ଆମର Public Undertakings ସଂସ୍ଥାମାନଙ୍କର ବେକାରୀ ସମସ୍ୟା ବଢ଼ି ଚାଲିଛି । ଅନେକ କାରଖାନାରେ ଛଟେଇ ମଧ୍ୟ ହେଉଛି । ଯେଉଁ ସଂସ୍ଥା ଆମକୁ ଲାଭ ଦେଉଥିଲା ସେଥିରେ ବର୍ତ୍ତମାନ କୁପରିଚାଳନା ଫଳରେ କ୍ଷତି ହେବାକୁ ଯାଉଛି । ସରକାରଙ୍କର ଏ ଦିଗରେ ସୁସ୍ପଷ୍ଟ ଧ୍ୟାନ ନ ଦିଆଯାଉଥିବାରୁ ଏପରି ହେଉଛି । S. T. S. ଓ O. R. T.ର ଲକ୍ଷ ଲକ୍ଷ ଟଙ୍କା ଲାଭ ହେଉଥିଲା ବର୍ତ୍ତମାନ ତାହା ନଷ୍ଟ ହେବାକୁ ଯୋଜନା କରାଯାଉଛି । ଯେଉଁ ଲାଇନ ବର୍ତ୍ତମାନ କ୍ଷତିକାରକ ବୋଲି ବୁଝାଯାଉଛି ପ୍ରକୃତରେ ଦେଖିଲେ ଜଣାଯିବ ସେ ଲାଇନ୍‌ରୁ income ବଢ଼ିଛି । ଯେ କର୍ମଚାରୀମାନଙ୍କୁ ସଜାଗ କରି ଦିଆଯାଏ contract carriage ଅନୁମତି ଦେବାରେ ସୀମିତ କରିଦିଆଗଲେ ତାହାହେଲେ ଏ ଲାଇନଗୁଡ଼ିକ ଲାଭଜନକ ସଂସ୍ଥା ହେବ । ଆର୍ଥିକ ଅବସ୍ଥା ବୃଦ୍ଧି ହେବ । ଏଥିରେ କୌଣସି ସନ୍ଦେହ ନାହିଁ । ଏହାକୁ ଠିକ୍ ଭାବରେ ବିଚାର କରି ନ ଯାଇ ଯଦି ଅନ୍ୟ ପ୍ରକାର କାର୍ଯ୍ୟାନୁଷ୍ଠାନ କରାଯାଏ ତାହେଲେ ଏହାଠାରୁ ବଳି ଦୁଃଖଦାୟକ ବିଷୟ କ'ଣ ଅଛି ।

ଆପଣ ଦେଖିବେ ବର୍ତ୍ତମାନ ବାଣେଶ୍ୱରଙ୍କ ଡାକ୍ତର ଗୁରୁବର ଅଗ୍ରବର ବେକାର ହୋଇ ବସିଛନ୍ତି । ଗାଁ ଗହଳରେ ଡାକ୍ତରମାନେ ଉପର practice କରି ପାରିବେ, ଲୋକଙ୍କ ଉପର ଉପକାର ଯାଇ ପାରିବେ, ଏପରି ଢଙ୍ଗରେ ସରକାରଙ୍କର କୌଣସି ଯୋଜନା ନାହିଁ । ଡାକ୍ତରମାନଙ୍କୁ private practice ଗାଁ ଗହଳରେ କରିବାପାଇଁ ଯଦି ସାହାଯ୍ୟ ଦିଆଯାଆନ୍ତା, ସେ ଅନୁସାରେ ଯୋଜନା କରାଯାନ୍ତା, ତାହେଲେ ଗାଁ ଗହଳର ଲୋକେ ଚିକିତ୍ସା ପାଇବା ସଙ୍ଗେ ସଙ୍ଗେ ଆମ ଡାକ୍ତରମାନେ ମଧ୍ୟ ବେକାର ହୋଇ ରହନ୍ତେ ନାହିଁ । ସେ ଡାକ୍ତରମାନଙ୍କୁ ଯେଉଁ ଆର୍ଥିକ ସାହାଯ୍ୟ ବା loan ଯଦି ଦିଆଯାଆନ୍ତା ତାହେଲେ ସେମାନେ ସେ ଋଣ ପରିଶୋଧ କରି ପାରନ୍ତେ, କିନ୍ତୁ ସେ ଢଙ୍ଗରେ ଆମ ସରକାରଙ୍କର ଯୋଜନା ଅଭାବରୁ ଡାକ୍ତରମାନେ ବେକାର ହୋଇ ବସିଛନ୍ତି ଏବଂ ଗାଁ ଗହଳର ଲୋକେ ଉପଯୁକ୍ତ ଚିକିତ୍ସାରୁ ମଧ୍ୟ ବଞ୍ଚିତ ହେଉଛନ୍ତି । କେବଳ ଏଥିରେ ଗାଲି ୧୦ ଲକ୍ଷ ଟଙ୍କା ରଖିଦେଲେ ହେବ ନାହିଁ । ସେଥିପାଇଁ ଉପଯୁକ୍ତ ଯୋଜନା କରାଯିବା ଉଚିତ । Village Industry Technical ଗିଲ୍ଡ ଉତ୍ପାଦ ପାଇଁ ସାହାଯ୍ୟ ଦେବାର ବ୍ୟବସ୍ଥା ରହିବା ଉଚିତ । ସେଥିପାଇଁ ଉପଯୁକ୍ତ ଯୋଜନା ନ ଥିବାରୁ ଆମର ଟଙ୍କା ଥିଲେ ମଧ୍ୟ ଅଧିକ କାର୍ଯ୍ୟକାରୀ ହୋଇପାରୁନାହିଁ ।

ଉପାଧ୍ୟକ୍ଷ ମହୋଦୟ, ଆମ ସରକାରୀ କର୍ମଚାରୀମାନଙ୍କ Pay revision ହେଲା । Pay Committee report ଦେଲେ । Pay Committee Report ବହୁତ ଦିନ ହେଲା ହୋଇ ରହିଛି । କେବେ କାର୍ଯ୍ୟକାରୀ ହୋଇ ପାରୁନି । ଆମର କର୍ମଚାରୀମାନେ ଆଶା କରିଛନ୍ତି କିଛି ଅଧିକା ଦରମା ପାଇବେ । ଏହାର Pay revision ହେବ । Pay Commission Report ବହୁଦିନରୁ ପ୍ରକାଶିତ ହେଲଣି, ଏହା କାର୍ଯ୍ୟକାରୀ ହେଉନାହିଁ । ସରକାର କହୁଛନ୍ତି ଏହା 1-4-1969 ଠାରୁ କାର୍ଯ୍ୟକାରୀ ହେବ । ତଥାପି ଏହା ଭିତରେ ଛକାପଞ୍ଝା ଚାଲିଛି । କର୍ମଚାରୀମାନଙ୍କ ବିଭିନ୍ନ ସଂସ୍ଥା ଯେଉଁ ଦାବି କରୁଥିଲେ ତାହା ଯୁକ୍ତିଯୁକ୍ତ । ତାକୁ ସରକାର ହୃଦ୍‌ବୋଧ କରିବା କଥା । ସେ ଅନୁସାରେ Pay Commission Reportକୁ modify କରିବା କଥା । କର୍ମଚାରୀମାନଙ୍କ ଯେଉଁ ଦାବି କରିଥିଲେ ସେଥିରେ ଯଥାର୍ଥତା ରହିଛି । ସେହି ଆଶଙ୍କା ରହିଛି ସରକାର ସେ ସବୁକୁ ଗ୍ରହଣ କରି ନାହାନ୍ତି । ସେ ସମ୍ବନ୍ଧରେ ଯେଉଁ ଅନ୍ୟାୟ ରହିଛି ତାହା ରହିଯିବା ଆଶଙ୍କା ରହିଛି ।

ବିଭିନ୍ନ ବିଭାଗରେ ଦରମା ହାରରେ ଥିବା ତାରତମ୍ୟ ଦୂର କରିବାକୁ ହେବ । ତେଣୁ ସରକାର ଆଉ କାଳକ୍ଷେପ ନ କରି ବେତନ କମିଶନ Report ଯେପରି ତୁରନ୍ତ କାର୍ଯ୍ୟକାରୀ ହେବ ଏବଂ କର୍ମଚାରୀଙ୍କ ବିଭିନ୍ନ ଦାବି ପ୍ରତି ଦୃଷ୍ଟି ରଖି ଯେପରି

ଅନୁକୂଳ ହସ୍ତର ରନ୍ଧନ ସେଥିପ୍ରତି ଧ୍ୟାନ ଦେବା ପାଇଁ ମୁଁ ଅନୁରୋଧ କରୁଛି । ଏହା ନ କଲେ ସରକାରୀ କର୍ମଚାରୀମାନଙ୍କ ମଧ୍ୟରେ ଉତ୍କଣ୍ଠା ଓ ଅବସାଦ ବଢ଼ୁଛି, କାର୍ଯ୍ୟ ସୁସ୍ଥ ରୂପେ ହୋଇ ପାରୁନାହିଁ । ସରକାରଙ୍କର ବିଭିନ୍ନ ବିଭାଗରେ ଏବଂ ଜିଲ୍ଲାସ୍ତରସ୍ଥ ଅଫିସମାନଙ୍କରେ କାର୍ଯ୍ୟ ହେଉଥିଲା ପରି ମନେ ହେଉନାହିଁ । ମୁଖ୍ୟମନ୍ତ୍ରୀଙ୍କ ନିଜ ବିଭାଗ ଅର୍ଥାତ୍ ଅର୍ଥ ବିଭାଗରେ ଯେପରି file ଜେଲ ଦିନ ହୋଇ ପଡ଼ି ରହୁଛି ଦେଖିବାକୁ କେହି ନାହିଁ । ଏପରି ଛୋଟ ଛୋଟ ବିଷୟଗୁଡ଼ିକ ମୁଖ୍ୟ ଦୃଷ୍ଟି ଯାଉନାହିଁ । ସେ ବିଭାଗର କେହି ଉପମନ୍ତ୍ରୀ ନାହାନ୍ତି । ମୁଖ୍ୟମନ୍ତ୍ରୀ ନିଜେ ମଧ୍ୟ ସମସ୍ତ ଦେଇ ପାରୁନାହାନ୍ତି । ଏ ସବୁ ସେ ନିଜେ ଦୁଃଖବୋଧ କରିବାର କଥା । ଫାଇଲର ଗତି ତ୍ୱରାନ୍ୱିତ କରିବାକୁ ହେଲେ ସେ ବିଭାଗର କର୍ମଚାରୀଙ୍କ ଅସନ୍ତୋଷ ଦୂର କରିବା ଦିଗରେ ବ୍ୟବସ୍ଥା କରିବା କଥା । ଏ ତ ଗୋଟିଏ ଉଦାହରଣ, ଏହିପରି ଅନେକ ବିଭାଗ ଅଛି ଯେଉଁଠି ପ୍ରଶାସନିକ କ୍ଷେତ୍ରରେ ଦୁର୍ନୀତି ଓ ଅବ୍ୟବସ୍ଥା ପ୍ରବେଶ କଲାଣି । ଏହିପରି ସ୍ଥଳରେ ଶାସନ ଅଚଳ ଅବସ୍ଥାକୁ ଅଗ୍ରସର ହେବ ବୋଲି କହାଯାଉ ଭାବରେ ଏହି ତ୍ରୁଟି ଦୂର କରିବା ପାଇଁ ଆମେ ସଚେଷ୍ଟ ନ ହେବୁ ।

ପରିଶେଷରେ, ପରିବହନ ଯାତ୍ରୀ ଟିକସ ବସାଇବା ବିରୁଦ୍ଧରେ ଆମେ ଦୃଢ଼ ଦାବି କରିଥିଲୁ, ଟଙ୍କାକେ ଅଧିକ 15 ପଇସା ବସାଇଲେ ସେତେବେଳେ କୁହାଗଲା ପୂର୍ବ ସରକାର ଏହା ନିଷ୍ପତ୍ତି କରିଥିଲେ । ମୁଁ ନିର୍ଦ୍ଦିଷ୍ଟ ଭାବରେ କାଗଜ ଏହି ବିଷୟରେ ପାର୍ଟି ମିଟିଙ୍ଗରେ ଆଲୋଚନା ହେବାବେଳେ ଘୋର ବିରୋଧ କରାଯାଇଥିଲା । ଏହି ଟିକସ ବସିଲେ ଯାତ୍ରୀ ସଂଖ୍ୟା କମିଯିବ ବୋଲି ସେତେବେଳେ ଯାହା ଆଶଙ୍କା କରାଯାଇଥିଲା ଏବଂ ଦେଖାଯାଉଛି ଯେଉଁଠି ରେଳବାଇ ସଙ୍ଗେ ପ୍ରତିଯୋଗିତାର ସମ୍ମୁଖୀନ ହୋଇଛନ୍ତି, ସେହି ଲାଇନଗୁଡ଼ିକରେ ସଂଖ୍ୟା କମିଛି । ଆଜି S. T. S. ଏବଂ O. R. T. ର ଯେପରି ଏ ଟିକସ ଲାଗୁ କରାଯାଇଛି ଘରୋଇ ବସ୍ ଓ କଣ୍ଟ୍ରାକ୍ଟର କେତେକଙ୍କରେ ସେପରି ନାହିଁ । ତେଣୁ ସେଥିରେ ବେଶୀ ଯାତ୍ରୀ ଯାଉଛନ୍ତି । S. T. S. ଏବଂ O. R. T. ରୁ ଆଦାୟ କମିବାର ଏହା ଏକ କାରଣ । ସେଥିପାଇଁ ଆମେ ଯୁକ୍ତଯୁକ୍ତ ଭାବରେ ଏହାର ବିରୋଧ କରିଥିଲୁ ।

Hospitalରେ paying bed ବ୍ୟବସ୍ଥା ଆମେ ବିରୋଧ କରିଥିଲୁ । ସେଥିରୁ ବର୍ତ୍ତମାନ ସୁଦ୍ଧା କ'ଣ ଆଦାୟ ହେଉଛି ଜଣା ନାହିଁ । ବହୁତ bed ଖାଲି ପଡ଼ି ରହୁଛି ଅଥଚ ରୋଗୀ ଆସି ଫେରି ଯାଉଛନ୍ତି । ସାଧାରଣ ଗରିବ ଲୋକ ଚିକିତ୍ସାର ସୁବିଧା ପାଇ ନ ଥିବା ବେଳେ ଏପରି ବ୍ୟବସ୍ଥା ରଖିବା ଉଚିତ୍ ହୋଇ ନାହିଁ । ଏହା କହିବା ସହିତ ସରକାର ତାହାଙ୍କ ଏହାକୁ ଏତେ ଉତ୍ସାହ କରି

ଧରିଛନ୍ତି, ମୁଁ ବୁଝିପାରୁ ନାହିଁ । Paying Bed System ହଟାଇବା ବ୍ୟବସ୍ଥା ନ କଲେ ରୋଗୀ ହଇରାଣ ହେବେ, ଅସୁବିଧାରେ ପଡ଼ିବେ ଏବଂ ସରକାର ମାତ୍ରା ଆଦାୟ କରିବାର କଥା ହୋଇପାରିବ ନାହିଁ । ଏହିସବୁ ବିଷୟରେ ସରକାର ସଚେତନ ବ୍ୟବସ୍ଥା କରିବେ ବୋଲି ମୁଁ ଆଶା କରୁଛି ।

## ରାଜ୍ୟପାଳଙ୍କ ଭାଷଣ : ଧନ୍ୟବାଦ ପ୍ରସ୍ତାବ ଉପରେ ମୁଖ୍ୟମନ୍ତ୍ରୀଙ୍କର ବକ୍ତବ୍ୟ

(25-3-1977)

ଉପାଧ୍ୟକ୍ଷ ମହୋଦୟ, ରାଜ୍ୟପାଳଙ୍କ ଭାଷଣ ପରେ ଏ ଗୃହର 11 ଜଣ ମାନ୍ୟବର ସଦସ୍ୟ ଆଲୋଚନାରେ ଅଂଶ ଗ୍ରହଣ କରିଛନ୍ତି ଏବଂ ଆଲୋଚନା ପ୍ରସଙ୍ଗରେ ବହୁ ଉପାଦେୟ କଥା କହିଛନ୍ତି ଓ ପରାମର୍ଶ ଦେଇଛନ୍ତି, ସେଥିପାଇଁ ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଛି । ବର୍ତ୍ତମାନ ଲୋକସଭା ପାଇଁ ଯେଉଁ ନିର୍ବାଚନ ହେଉଛି ସେ ପ୍ରସଙ୍ଗରେ ବିରୋଧୀ ଦଳର ସଭ୍ୟମାନେ ବହୁକଥା ଆଗତ କରିଛନ୍ତି । ସମସ୍ତେ ଜାଣନ୍ତି ଯେ ଶାସନ କ୍ଷମତାରୁ କୌଣସି ଦଳ ଯିବ ଆଉ କୌଣସି ଦଳ ଆସିବ, ଏହା ଗଣତନ୍ତ୍ର ଶାସନର ନୀତି । ଆମେ ଅନେକ ସମୟରେ ବିବେଚନା କରିଥିଲୁ ଯେ ଆମ ଦେଶରେ ବିରୋଧୀ ଦଳ ନଥିବାରୁ ଗଣତନ୍ତ୍ର ଶାସନ ଚାଲିବାରେ ଅସୁବିଧା ହୋଇପାରେ । ଆମେ କଂଗ୍ରେସ ଦଳ ହିସାବରେ ଚାହୁଁ ଯେ ବର୍ତ୍ତମାନ କେନ୍ଦ୍ରରେ ଯେଉଁ ଦଳ ଶାସନ କ୍ଷମତାକୁ ଗଲେ ସେମାନେ କୌଣସି ଦଳରେ ପରିଣତ ହୁଅନ୍ତୁ ଏବଂ ନିର୍ଦ୍ଦିଷ୍ଟ ନୀତି ଅନୁଯାୟୀ ଶାସନ କରନ୍ତୁ, ଯେଉଁଟା ଗଣତନ୍ତ୍ରର ସହାୟକ ହେବ । ତାହା ହେଲେ ଦେଶବାସୀ ଓ ଆମ ସରକାର ନିଶ୍ଚିତ ଭାବରେ ଆନନ୍ଦିତ ହେବେ । ନିର୍ବାଚନରେ ଲୋକଙ୍କ ରାୟକୁ ମାନିନେବାକୁ ପଡ଼ିବ । ଦଳ ହିସାବରେ ଆମେ ଲୋପ ହୋଇଗଲୁ ଓ ଆମର ଅସ୍ତିତ୍ୱ ରହିବ ନାହିଁ, ଏକଥା ଭାବିବା ଠିକ୍ ନୁହେଁ । କାରଣ ଯେଉଁ ପରିସ୍ଥିତିରେ ନିର୍ବାଚନ ହେଲା ତାଏ କହିପାରେ ଜରୁରୀକାଳ ପରେ ପୁଣି ଲୋକସଭାକୁ ନିର୍ବାଚନ ହୋଇପାରେ ଏବଂ ବର୍ତ୍ତମାନ ନିର୍ବାଚନରେ ଯେଉଁ ଭାବରେ ସ୍ରୋତ ବହିଗଲା ସେତେବେଳେ ତା'ର ପ୍ରତିକୂଳ ଗତି ନିଦରିବ ଏକଥା କିଏ କହିପାରିବ ? ଏଇଟା ଲୋକମାନଙ୍କର ବିଚାରର କଥା । ସେମାନେ ତାଙ୍କର ବିଚାର ବୁଦ୍ଧି ପ୍ରୟୋଗ କରି ନିର୍ବାଚନରେ ରାୟ ଦେଲେ । କୌଣସି ଦଳ ସବୁଦିନ କ୍ଷମତାରେ ରହିବ ଏଇଟା ଠିକ୍ ନୁହେଁ । ସେମାନେ କହୁଛନ୍ତି ଯେ କଂଗ୍ରେସ ସବୁଦିନ କ୍ଷମତାରେ ରହିବ ବୋଲି ଇଚ୍ଛା କରିଥିଲା । କଂଗ୍ରେସ ସେ ଇଚ୍ଛା କେବେ କରି ନଥିଲା । ଯେଉଁ ବିରୋଧୀ ଦଳର ସଭ୍ୟମାନେ ଜେଲ ଯନ୍ତ୍ରଣା ଇତ୍ୟାଦି ଭୋଗିଛନ୍ତି ସେମାନେ ନିଜର ମତାମତ ଦେଲାବେଳେ କ୍ଷୁବ୍ଧ ହୋଇଛନ୍ତି । ତାହା ହେବା ସ୍ୱାଭାବିକ । ଆମର ବର୍ତ୍ତମାନର ବିରୋଧୀ ଦଳର ନେତା କହୁଛନ୍ତି ଯେ ଆମେ ସବୁ ଉତ୍ତଙ୍ଗା ଦେବା ଉଚିତ୍ । ସେଇଟା ସେମାନଙ୍କ ବିଚାର

କରି କହୁଛନ୍ତି କି କାହିଁ ମୁଁ ବୁଝିପାରୁ ନାହିଁ, ଆମର ଇସ୍ତଫା ଦେବା ଉଚିତ୍ କାହିଁକି ? ଅବଶ୍ୟ ପରୋକ୍ଷରେ ସେ କହିଲେ ଯେ ସେ ସହଯୋଗ କରି ଚାଲିବେ ଓ ସହଯୋଗ କରି ଚାଲିଲେ ରାଜ୍ୟର ସର୍ବାଙ୍ଗୀନ ଉନ୍ନତି ସାଧିତ ହେବ, ମୁଁ ତାହା ମାନୁଛି । କିନ୍ତୁ ଆମେ କାହିଁକି ଇସ୍ତଫା ଦେବୁ ? ବର୍ତ୍ତମାନ ଗୋଟିଏ issue ରହିଛି । ସ୍ୱତନ୍ତ୍ର ଲୋକସଭା ନିର୍ବାଚନର ଯେଉଁ issue ରହିଛି ସେଇଟା ଅଲଗା, ରାଜ୍ୟ ବିଧାନସଭାର ଯେଉଁ ସମସ୍ୟା ସେଇଟା ଅଲଗା । କିନ୍ତୁ ଲୋକସଭା ନିର୍ବାଚନରେ କଂଗ୍ରେସର ପରାଜୟ ଘଟିଲା ବୋଲି ବିଧାନ ସଭାର ଯେଉଁମାନେ ସଭ୍ୟ ଅଛନ୍ତି, ସେମାନେ ଇସ୍ତଫା ଦେବେ ମୁଁ ତା'ର କାରଣ ବୁଝି ପାରୁ ନାହିଁ । ଏହା ଗଣତାନ୍ତ୍ରିକ ନିୟମ ନୁହେଁ । ଆମର ମୁଖ୍ୟ ତ୍ରୁଟିଆ ଯାହା କହିଲେ ତାହା ନିଜ ମନରୁ କହିନାହାନ୍ତି । C. F. D.ର ନେତା ବାବୁ ଜଗଜୀବନ ରାମ କହିଛନ୍ତି ଯେ ବର୍ତ୍ତମାନ ଯେଉଁ ରାଜ୍ୟମାନଙ୍କରେ କଂଗ୍ରେସ ସରକାର ଚାଲିଛି ସେ ରାଜ୍ୟ ବିଧାନସଭା ଗୁଡ଼ିକୁ ଭାଙ୍ଗି ଦେବା ଉଚିତ । କେଉଁ ମତ ନିୟମକୁ ବିଚାରକୁ ନେଇ ବାବୁ ଜଗଜୀବନ ରାମ ଏଭଳି ମନ୍ତବ୍ୟ ଦେଲେ ମୁଁ ତାହା ବୁଝି ପାରୁନାହିଁ ।

ଜଗଜୀବନ ବାବୁ କହୁଛନ୍ତି, ଆମ ଦ୍ୱାର ଖୋଲା ଅଛି । ନିର୍ଦ୍ଦିଷ୍ଟ ସଂଖ୍ୟା କହୁ ନାହିଁ । ଯେଉଁମାନେ ଯୋଗ ଦେବେ ଆସନ୍ତୁ । ଏହା ଏକ ଦୁର୍ଭାଗ୍ୟଜନକ ବିଷୟ । ବରଂ ଆମର ବର୍ତ୍ତମାନର ପ୍ରଧାନମନ୍ତ୍ରୀ ଯାହା କହିଛନ୍ତି defection ପାଇଁ ଆମେ କେବେ ହେଲେ ଉତ୍ସାହିତ କରିବୁନାହିଁ ଏବଂ Anti Defection Bill priority ଦୃଷ୍ଟିରୁ ଆଗତ କରିବୁ, ମୁଁ ସେଥିପାଇଁ ତାଙ୍କୁ ଧନ୍ୟବାଦ ଦେଉଛି । Anti Defection Bill ଆଣନ୍ତୁ । ଏଦେଶରେ ଯେଉଁ ଅଦଳବଦଳ ହେଉଛି ଆପଣ କହୁଛନ୍ତି, ଆମେ କହୁଛୁ । ଘୋଡ଼ା ବେପାର ଚାଲିନଥିଲେ ମଧ୍ୟ ଏ ଗୃହରେ ସେ ପ୍ରସଙ୍ଗରେ ବହୁବାର ଆଲୋଚନା ହୋଇଛି । ଘୋଡ଼ା ବେପାର ବୋଲି ଯେଉଁମାନେ କହୁଛନ୍ତି ତାଙ୍କ ପାଇଁ ମଧ୍ୟ ଏହା ପ୍ରଯୁଜ୍ୟ । ସେମାନେ ଅଲଗା ହୋଇ ପାରିବେ ନାହିଁ । କିନ୍ତୁ ଏ ଆଇନ୍ ସେମାନେ କରନ୍ତୁ । ଏ ଘୋଡ଼ା ବେପାର ସବୁ ଦିନ ପାଇଁ ବନ୍ଦ ହୋଇଯିବ । ଆମ ପକ୍ଷରୁ ଆମେ ସବୁ ପ୍ରକାର ସହଯୋଗ ଦେବୁ । (Interruptions) ଆପଣଙ୍କ ମତରେ ଯେଉଁମାନେ ଭିତ୍ତିହୀନ ହୋଇ ଚାଲି ଆସିବାପାଇଁ କହିଲେ, ଏ ଆଇନ୍ ପାସ୍ ହୋଇଗଲେ ଆପଣଙ୍କର ସେ ସମାଲୋଚନା କରିବାକୁ ଅବକାଶ ନଥିବ । ଆମର ମଧ୍ୟ ନଥିବ ।

ଆପଣଙ୍କ ସରକାର ବର୍ତ୍ତମାନ ଆସୁଛନ୍ତି । ସେଇଠ ଆସୁ । ଏଥିରେ ବୀରତ୍ବହେବାର କଣ ଅଛି ?

ପରବର୍ତ୍ତି କଥା ବାରିପଦାରେ ନେତା କହୁଛନ୍ତି ଏ ପ୍ରସଙ୍ଗରେ ତେଲ ଦରକଥା ଉଠିଛି । ତାଙ୍କ ମତରେ ନୂଆ କେତେ ପରିବେଷ ତେଲ । ସେ ପରିବେଷ ତେଲ ବିଷୟରେ ଏ ଗୃହ ଏବଂ ବାହାରେ ଆଲୋଚନା ପ୍ରସଙ୍ଗରେ ବୁଝାଯାଉଛି ଯେ ସେ ପରିବେଷ ତେଲ ବାହାର ରାଜ୍ୟରୁ ଆସୁଛି । ଆମର ଯେତିକ ପରିବେଷ ଆମଦାନୀ ହେଉଛି ଆମର ଆବଶ୍ୟକତା ପୂରଣ କରିପାରିବ ନାହିଁ । ବାହାର ରାଜ୍ୟର ଦର ଯାହା invoice ଅନୁସାରେ citizen's Committee ବସି କିଛି ଲାଭାଂଶ ଦେବ, ସେହି ଦର ସ୍ଥିର କରନ୍ତି ସେ ଦରରେ ବେପାରୀମାନେ ବିକନ୍ତି । କିନ୍ତୁ ଆମର ଧାନ ଚାଉଳ ଇତ୍ୟାଦି ଅତ୍ୟାବଶ୍ୟକୀୟ ପଦାର୍ଥରେ ଅଭାବ ପଡ଼ୁନାହିଁ, ଧାନଚାଷୀଙ୍କର ଯଥେଷ୍ଟ ଯାହା କହୁଥିଲେ ସେତେବେଳେ ଅସୁବିଧା ହେଉଛି ବୋଲି ଆମେ ଜାଣିଲୁ ତାଙ୍କ ସଙ୍ଗେ ତା ଦୂର କରିବା ପାଇଁ Inter District movement relax କରାଗଲା । ତା, ଫଳରେ ମୁଁ ଶୁଣିବାକୁ ପାଇଲି, ଯେଉଁ ସ୍ଥାନରେ ଦର ଅଧିମାତ୍ରାରେ କମିଯାଇଥିଲା, ଏପରିକି ସରକାରୀ ଦରଠାରୁ କମିଯାଇଥିଲା, ବର୍ତ୍ତମାନ କୃଷିମାନେ ନ୍ୟାର୍ଯ୍ୟ ଦର ପାଉଛନ୍ତି । ମୁଁ ଏଥିପାଇଁ ଆନନ୍ଦିତ ।

ମୁଁ ବୁଝିପାରୁନାହିଁ ଏ ମାସ 3 ତାରିଖ ପରେ ଏ ସରକାର, ନଥିବେ ବୋଲି କାହିଁକି କୁହାଯାଉଛି । ମାନ୍ୟବର ବାରିପଦା ଦଳ ନେତା ଥିଲେ କହିପାରିଥାନ୍ତେ ।

କେନ୍ଦ୍ରୀପଡ଼ା ନିର୍ବାଚନ ଫଳାଫଳ ବିଷୟରେ ହେବ । ଏଥିପାଇଁ ଏମାସ 31 ପୂର୍ବରୁ ସରକାର ରହିବ କି ନାହିଁ ମୁଖ୍ୟମନ୍ତ୍ରୀ ବିଚାର କରିବାକୁ ହେବ । ବୋଧହୁଏ ବାରିପଦା ନେତାଙ୍କ ମତରେ ଏ ସରକାର ମାର୍ଚ୍ଚ 31 ତାରିଖ ପରେ ରହିବ ନାହିଁ । ଅନ୍ୟ ଅଣ ସାମ୍ବିଧାନିକ ପନ୍ଥା ପ୍ରୟୋଗ କରି ସରକାରକୁ ଯଦି ଭାଙ୍ଗିବା ପାଇଁ ଯଦି ଉଦ୍ୟମ କରନ୍ତିବ ତା' ହେଲେ ଆମର କହିବାର କିଛି ନାହିଁ । କିନ୍ତୁ ସାମ୍ବିଧାନିକ ପଦ୍ଧତି ଅନୁସାରେ ସରକାର ଭାଙ୍ଗିବାର ମୁଁ ଯାଣେ ନାହିଁ । ଯେ କୌଣସି ଅସାମ୍ବିଧାନିକ ଉପାୟ ପ୍ରୟୋଗ କରିବା ଗଣତାନ୍ତ୍ରିକ ନଉନ୍ତେହିଁ ।

ମାଡ୍ରାସରେ ଯାହା ହୋଇଥିଲା ତାହା ଠିକ୍ ହୋଇଥିଲା କି ଭୁଲ ହୋଇଥିଲା ନିର୍ବାଚନ କହିବ ସୂଚିଇଦେଲା । ବର୍ତ୍ତମାନ ସୁଦ୍ଧା ଆମର ବିଶ୍ୱାସ କେନ୍ଦ୍ରରେ ଏକ ଦୃଢ ସରକାର ପ୍ରତିଷ୍ଠିତ ହେବ । କେନ୍ଦ୍ରରେ ଅସ୍ଥିର ସରକାର ପ୍ରତିଷ୍ଠିତ ହେଲେ ଏ ଦେଶର ସ୍ୱାଧୀନତା ବିପନ୍ନ ହେବ, ଏ କଥା ସମସ୍ତେ ହୃଦୟଙ୍ଗମ କରୁଥିବେ । ସେଥିପାଇଁ ଅଧୁନା ଆରମ୍ଭରୁ ଯେଉଁ ବିପଦ ଦେଖାଦେଇଛି, ମୁଣ୍ଡରେ ଶୂଳ ବାଜୁଛି

ସେଇଟା ଦୂର ହେଉ । ଗୋଟିଏ ଭଲ ସରକାର ପ୍ରତିଷ୍ଠିତ ହେଉ । ମୋର କାମନା କେନ୍ଦ୍ରରେ ଦୃଢ ସରକାର ପ୍ରତିଷ୍ଠିତ ହେଉ, ଯାହାଫଳରେ ଜନସାଧାରଣଙ୍କ ଆଶଙ୍କା ଦୂରହେବ । ଦୁର୍ବଳ ସରକାର ଗଠିତ ହେଲେ ଭାରତର ସ୍ୱାଧୀନତା ବିପନ୍ନ ହେବ, ଏ ଆଶଙ୍କା ଦୂର ହେଉ ।

ମାନ୍ୟବର ସଭ୍ୟ ଶ୍ରୀ ସଦାନନ୍ଦ ମହାନ୍ତି କହୁଲେ, ଏଭାଷଣରେ କୌଣସି ନୂତନତ୍ୱ ନାହିଁ । ବହୁ ମାନ୍ୟବର ସଭ୍ୟ ଏହା କହୁଛନ୍ତି । ତେବେ ନୂତନତ୍ୱ ଆଣିବାପାଇଁ କ'ଣ କରାଯିବ ଦେଖିବା କଥା । ମୋର ଯାହା ଧାରଣା ରାଜ୍ୟପାଳଙ୍କ ଭାଷଣ ଗୋଟିଏ ନୂଆ ଢଙ୍ଗର ହୋଇଛି ଯାହା ଜହାତ ଆବଶ୍ୟକ ତାହା ଏଥିରେ ଉଲ୍ଲେଖ ଅଛି ।

World Bank affairs ନେଇ ମାନ୍ୟବର ସଭ୍ୟ ଆଶଙ୍କା ପ୍ରକାଶ କରିଛନ୍ତି । ୧୯୭୩ରେ ୩୦ କୋଟି ଟଙ୍କା କଥାହୋଇଥିଲା । ପୁଣି ୩୯ କୋଟି ଶୁଣାଗଲା, ତା' ପରେ ୩୬ କୋଟି ଆମର negotiation ଶେଷ ହୋଇଛି କି ? କିଛି କରାଯାଇଛି କି ? ଏକଥା ସେ ଜାଣିବାକୁ ଚାହୁଁଛନ୍ତି । ମୁଁ ଆପଣଙ୍କ ଅବଗତ ପାଇଁ କହୁଛି ଆମର ଅଫିସରମାନେ ଆମେରିକା (ଓ୍ୱାସିଂଟନ୍) ଯାଇଥିଲେ । ସେଠାରେ ଓ୍ୱାର୍ଲ୍ଡ ବ୍ୟାଙ୍କ ଟିମ୍ ସହିତ ଆଲୋଚନା କରିଥିଲେ, ନେଗୋସିଏସନ୍ ଶେଷ ହୋଇଛି । ଘର ତିଆରି ପାଇଁ ୩୬ କୋଟି ଟଙ୍କା ଏବଂ ଡ୍ରେଇନେଜ ପାଇଁ ୩ କୋଟି ଟଙ୍କା ଏହିପରି ୩୯ କୋଟି ଟଙ୍କା ହୋଇଥିଲା । ସେଥିରୁ ୩ କୋଟି ବାଦଦେଇ ୩୬ କୋଟି ପାଇଁ agreement ହେବାପାଇଁ ଅଛି । ଆମ ଭାରତୀୟ ରାଷ୍ଟ୍ରଦୂତଙ୍କୁ ସେ ଦାୟିତ୍ୱ ଦିଆଯାଇଛି । କେବଳ agreement ଦସ୍ତଖତ ପାଇଁ ଅଛି । ତା' ପରେ ସେ ଭାରତ ସରକାରଙ୍କୁ ଟଙ୍କା ଦେବେ in shape of dollars ଏବଂ ଆମେ ଭାରତ ସରକାରଙ୍କଠାରୁ ପାଇବୁ । ତେଣୁ ଆଶଙ୍କା ପ୍ରକାଶ କରିବାର କିଛିନାହିଁ ।

ହଲର ଏବଂ ସେଲର କଥା ମାନ୍ୟବର ସଭ୍ୟ ଉଠାଇଛନ୍ତି । ଏ ପ୍ରସଙ୍ଗରେ ମୋ ସହିତ ଅନେକ ଲୋକ ସାକ୍ଷାତ ଆଲୋଚନା କରିଛନ୍ତି । ଗୋଟିଏ ନିର୍ଦ୍ଦିଷ୍ଟ ଦିନ ପୂର୍ବରୁ ହଲରକୁ ସେଲରରେ ପରିଣତ ନକଲେ ତାଙ୍କର ଲାଇସେନ୍ସ କ୍ୟାନ୍ସେଲ ହେବ । ମୁଁ ଭାବୁଛି ଏହାର ପୁନଃବିଚାର କରିବା ଉଚିତ ।

ହଲରରୁ ଆମର ଯାହା outturn ହେବ ସେ ତୁଳନାରେ ଅଧିକ ପରିମାଣରେ ଚାଉଳ ବାହାରୁଥିବାରୁ ଆମେ ସେଲର କଥା କହୁଛୁ । ସେହି ଦୃଷ୍ଟିରୁ ସେଲର କରିବାପାଇଁ କୁହାଯାଉଥିଲା । ସେଥିରେ ଯଦି କିଛି ଅସୁବିଧା ହେଉଛି ତେବେ ଆମେ ବିଚାର କରି ଦେଖିବୁ ।

ମାନ୍ୟବର ସଭ୍ୟ ମୋର ନିର୍ବାଚନ ମଣ୍ଡଳୀ ବ୍ରହ୍ମପୁର ସହରରେ ପାନୀୟ ଜଳ-ଯୋଗାଣ ବିଷୟରେ ଉଦବିଗ୍ନ ହୋଇଥିବାରୁ ମୁଁ ତାଙ୍କୁ ଧନ୍ୟବାଦ ଦେଉଛି । କିନ୍ତୁ ଏ ଭିତରେ 20ଟି tube-well ସହରର ବିଭିନ୍ନ ଓ୍ୱାର୍ଡରେ ହୋଇଛି । ଯେଉଁ ଓ୍ୱାର୍ଡରେ ଏକଦମ ପଥୁରିଆ ଜାଗା, dig ହୋଇପାରୁ ନାହିଁ, ସେଠାରେ open well ଦିଆଯିବାର ବ୍ୟବସ୍ଥା ହୋଇଛି । ଅବଶ୍ୟ ଏହା ସାମୂହିକ ବ୍ୟବସ୍ଥା । ଶସ୍ତ-ହିନରେ ପାଣିର ଅଭାବ ଦୂର କରିବା ପାଇଁ ଋଷିକୁଲ୍ୟା ନଦୀରୁ ଗୋପାଳପୁର, ଛତ୍ରପୁର, ବ୍ରହ୍ମପୁର, ଏବଂ ମିଲିଟାରି କ୍ୟାଣ୍ଟନମେଣ୍ଟକୁ ପାଣି ଯୋଗେଇବା ଆରମ୍ଭ ହେଲାଣି । ସେ କାମ 1979 ସୁଦ୍ଧା ଶେଷ କରିବାପାଇଁ Public Health Department ଆଶା କରୁଛନ୍ତି । ସେଥିପାଇଁ ଗୋଟିଏ Plan estimate କରିବାକୁ ହେବ । ସେଥିରେ ସୁବିଧା ଓ ଅସୁବିଧା କ'ଣ ରହିଗଲା, କେନ୍ଦ୍ରରୁ ବହୁତ ସମୟରେ clear-ance ଦରକାର ପଡ଼େ, ସେଥିରେ ଅସୁବିଧା ରହିଲେ ତାଙ୍କ ନିର୍ଦ୍ଦେଶ ଅନୁସାରେ ଆମକୁ ଆମ ଯୋଜନା ପରିବର୍ତ୍ତନ କରିବାକୁ ପଡ଼େ । ଏଥିପାଇଁ ସମସ୍ତ ସାପେକ୍ଷ ହେଲା । ବର୍ତ୍ତମାନ ସେ ଅସୁବିଧା ନାହିଁ । ତାହା 1978 ମସିହା ସୁଦ୍ଧା ଶେଷ ହେବ । ଏହା ଭିତରେ କାମ କ'ଣ ହୋଇଛି ସେ କଥାହିଁ କୁହାଯାଇଛି ଯେ ଆମ ଯୋଜନା କାମରେ ଯେଉଁ ଲୋକ କାମ କରିଛନ୍ତି ସେହି ଲୋକଙ୍କ ସଂଖ୍ୟା ଏଥିରେ ମିଶାଇବା ଦ୍ୱାରା ଆଖିରେ ଧୂଳି ପକାଇବା ଭଳି ହେଉଛି । ମୁଁ ତାଙ୍କ ସହିତ ଏକମତ ହୋଇପାରୁନାହିଁ । କାରଣ ଆମେ ବିଭିନ୍ନ ଯୋଜନା ଭିତରେ କାମ ଆରମ୍ଭ କରିଛୁ । ଆପଣ ଦେଖିବେ ଯଶପୁର, ବୈତାଘ ରେଲଲାଇନ କାମର ଶୁଭ ଦିଆଯାଇ ରହିଯାଇନାହିଁ, ସେ କାମ 7 ଦିନ ଭିତରେ ଆରମ୍ଭ କରିବାପାଇଁ କୁହାଯାଇଥିଲା ଏବଂ ଯେଉଁଠି ଏ କାମ ଆରମ୍ଭ କରିବା କଥା ତାହା ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳ ଭିତରେ ଯାଉଛି । ଯେତେ ଶୀଘ୍ର କାମ ଆରମ୍ଭହେବ ସେ ଅଞ୍ଚଳ ଲୋକେ କାମଧନ୍ଦା ପାଇବେ ସେହିଭଳି ଗୋଟିଏ ମଧ୍ୟମଧରଣ ଜଳଯୋଗାଣର ଶୁଭ ଦିଆଯାଇଛି । ଏହି ଅପ୍ରେଲ ମାସରେ କାମ ଆରମ୍ଭ ହେବା କଥା । ଆପଣ ଜାଣନ୍ତି ଅପ୍ରେଲ ଓ ମେ ଏ ଦୁଇମାସ ଉତ୍କୃଷ୍ଟ ସମୟ । ଯେଉଁ ଅଞ୍ଚଳରେ ଏହି ମଧ୍ୟମ ଜଳସେଚନ ଯୋଜନା ଆରମ୍ଭ ହେବ ସେଠାର ଲୋକେ କାମ ପାଇବେ । ଯେତେ ଲୋକ କାମ ପାଇବେ ସେହି ସଂଖ୍ୟା ମିଶାଇଲେ ଅନ୍ୟାୟ କେଉଁଠି ହେଉଛି ମୁଁ ଜାଣିପାରୁନାହିଁ । ଆଉ ଯେଉଁ ଅଞ୍ଚଳରେ ତାହା ନାହିଁ ବା ଅତି ନିକଟରେ ଏଭଳି କୌଣସି ଯୋଜନା ନାହିଁ, ତାଙ୍କ ପାଇଁ ସେ ଅଞ୍ଚଳରେ କାମ ହେଉଛି । ଆପଣ ଦେଖିବେ ପାନୀୟ ଜଳଯୋଗାଣ ପାଇଁ 5 ହଜାର ଗ୍ରାମରେ ବ୍ୟବସ୍ଥା ହୋଇଛି ।

ଆମର ପ୍ରାୟ 15 ହଜାର ଗ୍ରାମରେ ବର୍ତ୍ତମାନ ସୁଦ୍ଧା ସରକାରୀ ସ୍ତରରେ କୌଣସି ପାନୀୟ ଜଳର ବ୍ୟବସ୍ଥା ନାହିଁ । ଏ ଭିତରୁ 5 ହଜାର ଗ୍ରାମରେ ଜଳ ଯୋଗାଇବା ବ୍ୟବସ୍ଥା ହୋଇଛି ଏବଂ ଆସନ୍ତା 2 ବର୍ଷ ଭିତରେ ବାକି ସମସ୍ତ ଜାଗାରେ ଏହା ହୋଇଯିବ ।

ଯେଉଁ ଯେଉଁ ସ୍ଥାନରେ ଗ୍ରାମର ଲୋକେ ପୁଷ୍କରିଣୀରୁ ଜଳ ବ୍ୟବହାର କରୁଥିଲେ ଅଥଚ ସେ ପୁଷ୍କରିଣୀ ଶୁଖିଲା ପଡ଼ିଗଲାଣି, ସେଠାରେ ବହୁଦିନ ଆଗରୁ କଲେକ୍ଟରଙ୍କୁ କୁହାଯାଇଛି ଅନ୍ତତଃ ପକ୍ଷେ ଦୁଇଟି କରି ଅସ୍ଥାୟୀ open well କରି ହଠାତ୍ ପାଣି ଯୋଗାଇଦେବାର ବ୍ୟବସ୍ଥା କରିବେ ଏବଂ ମନ୍ଦିରର ମଝିରେ ଗୋଟିଏ କୂଅ କରିବେ ଯେଉଁଥିରୁ ଗୋରୁ ଗାଈ ପାଣି ବ୍ୟବହାର କରିବେ ।

ଯେଉଁ ଗ୍ରାମରେ ଏଭଳି ଅବସ୍ଥା ସୃଷ୍ଟି ହୋଇଛି ସେଠା ଅସୁବିଧା ଦୂର କରିବା ପାଇଁ ବ୍ୟବସ୍ଥା ହୋଇଛି । ଯଦି କୌଣସି ଜାଗାରେ ହୋଇନାହିଁ ସେପରି ଗ୍ରାମର ନାମ ମୋ ଦୃଷ୍ଟିକୁ ଆଣିଲେ ମୁଁ ବହୁତ ପ୍ରତିକାର କରି ପାରିବି । ଆମର ବିଭିନ୍ନ ଜାଗାରେ renovation of tanks, sinking of wells, dug wells, minor irrigation Project କାମ ହେଉଛି । ଏହି ବାବଦରେ 1976 ଡିସେମ୍ବର ମାସରେ ଟ 203 ଲକ୍ଷ, 1976 ଜାନୁଆରୀ ମାସରେ ଟ 260 ଲକ୍ଷ ଏବଂ ଫେବୃଆରୀ ମାସ ଟ 709 ଲକ୍ଷ ଖର୍ଚ୍ଚ ଅର୍ଥାତ୍ ଏହି ତିନି ମାସର ମୋଟ ଟ 1,177 ଲକ୍ଷ ହୋଇଛି ଏବଂ ହାରାହାରି ପ୍ରାୟ 156 ଲକ୍ଷ mandays ସୃଷ୍ଟି ହୋଇଛି । ତେଣୁ ଯେତିକ କାମଧନ୍ଦାର ଆବଶ୍ୟକତା ଥିଲା ତାହା ପୂରଣ ହୋଇ ପାରିଛି । ଅବଶ୍ୟ ଏଭଳି କେତେକ ସ୍ଥାନଥିବ ଯେଉଁଠି ଅବସ୍ଥା ସଙ୍କଟ ହୋଇଛି ଅଥଚ ଲୋକେ କାମଧନ୍ଦା ନ ପାଇ ରହିଛନ୍ତି, ଆମେ ସେଠାରେ କାମଧନ୍ଦାର ବ୍ୟବସ୍ଥା କରିବୁ । କିନ୍ତୁ କେତେ ଜାଗାରେ ଦେଖାଯାଉଛି ସ୍ଥାନୀୟ ଶ୍ରମିକ ମିଳୁନାହାନ୍ତି । ତାହାରିରୁ ଲୋକ ଆଣି କାମ କରିବାକୁ ହେଉଛି ମୁଁ ସ୍ୱୀକାର କରୁଛି, ଅନ୍ୟ କେତେକ ସ୍ଥାନରେ ମଧ୍ୟ ଥାଇ ପାରେ । ଯେଉଁ କେତେକ ଅଞ୍ଚଳର ପୁରା ଫସଲ ହୋଇଛି ବା ଅଧା ଫସଲ ହୋଇ ଯାଇଛି ସେ ଅଞ୍ଚଳରେ ଲୋକଙ୍କୁ ଅଧିକ କାମ ଧନ୍ଦା ଯୋଗାଇବା ପାଇଁ ଆମେ ଚେଷ୍ଟା କରୁଛୁ ।

ମାନ୍ୟବର ସଭ୍ୟ କହିଲେ Electricity Power Genoration ସମ୍ପର୍କରେ ରାଜ୍ୟପାଳଙ୍କ ଅଭିଭାଷଣରେ କିଛି କୁହାଯାଇନାହିଁ । ଆପଣ ଜାଣନ୍ତି Planning Commission, Agriculture, Co-operative, Electricity ଏବଂ Irrigation ଏ ସବୁବିଷୟକୁ Core sectorରେ ସ୍ଥାନ ଦେଇଛନ୍ତି । ଆପଣ ବହିରୁ ଜାଣି ପାରିବେ ଯେ Core sector ପାଇଁ ଯେଉଁ Allotment ହୋଇଛି ତାକୁ

ଅନ୍ତାଧିକାର ଦିଆଯାଇଛି । ଏ ସୂତ୍ରଗୁଡ଼ିକ ବିଭାଗକୁ Core sectorରେ ଅନ୍ତର୍ଭୁକ୍ତ କରାଯାଇ ଅନ୍ୟାନ୍ୟ ବିଭାଗଗୁଡ଼ିକୁ Non-core sector ଭିତରେ ରଖାଯାଇଛି, ବର୍ତ୍ତମାନ ରେଙ୍ଗାଲି ଏବଂ ଅପର କୋଲାବ Hydro Power Generation ପାଇଁ କାମ କରୁଛି । ଇନ୍ଦ୍ରାବତୀ ପାଇଁ C. W. P. C. ଏବଂ Planning Commissionerଙ୍କ ମଞ୍ଜୁର ପାଇଁ ପଠାଯାଇଛି । ସେମାନଙ୍କ ଅଫିସର ଆସନ୍ତା ମାସ ୨୬ ତାରିଖ ବେଳକୁ ଏଠାକୁ ଆସିବେ । ଆମର ବିଶ୍ୱାସ ଅଛି ଯେଉଁ report ଦେଉଛୁ ସେମାନେ ତାହାକୁ ଗ୍ରହଣ କରିବେ । ତା'ହେଲେ ଆମର କେନ୍ଦ୍ରରେ ସୁବିଧା ହେବ ଏବଂ କାମ ଆରମ୍ଭ କରିବାରେ ସୁବିଧା ହେବ ।

ବାଚସ୍ପତି ମହୋଦୟ, ଆଉ ଗୋଟିଏ କଥା । ମରୁଡ଼ି ଅଞ୍ଚଳରେ ଗାଁ ଗହଳରେ ଶିଶୁ ଏବଂ Expected Nursing Mother ପ୍ରତିଦିନ ୧୬ଲକ୍ଷ ଲୋକଙ୍କୁ ସାହାଯ୍ୟ ଦିଆଯାଉଛି କିନ୍ତୁ ଅବସ୍ଥା ଖରାପ ହେବା ଫଳରେ ଆହୁରି ୧୦ ଲକ୍ଷ ଲୋକଙ୍କ ପାଇଁ ବଢ଼ାଇ ଦିଆଯାଇଛି । ବର୍ତ୍ତମାନ ପ୍ରତିଦିନ ୨୫ ଲକ୍ଷ ଶିଶୁ ଏବଂ Expected Motherମାନଙ୍କୁ ଖାଦ୍ୟ ଯୋଗାଇ ଦିଆଯାଉଛି ।

ଋଣ ଆଦାୟ ସମ୍ପର୍କରେ ମାନ୍ୟବର ସଭ୍ୟ କହିଲେ । ସେ କହିଲେ ନିର୍ବାଚନ ୧୦ ଦିନ ଥିଲା । ଋଣ ଆଦାୟ ସ୍ଥଗିତ ରଖିବା ପାଇଁ ସରକାର ସ୍ଥିର କଲେ । ଆପଣ ଜାଣନ୍ତି crop cutting report ଆସିବ । ପରେ ସରକାର ସିଦ୍ଧାନ୍ତରେ ପହଞ୍ଚନ୍ତି, ଯେଉଁଗୋଟି ଗ୍ରାମ ପଞ୍ଚାୟତରେ ମରୁଡ଼ି ଯୋଗେ 50% ଅଧିକ କ୍ଷତି ହୋଇଛି, ତାହା ଘୋଷଣା କଲାପରେ Bureau of Statisticsରୁ ଖବର ଆସେ ତାକୁ Collectorଙ୍କ report ସହିତ ମିଳାଇ ସରକାର ସିଦ୍ଧାନ୍ତରେ ଆସି ପହଞ୍ଚନ୍ତି, ନିର୍ଦ୍ଦିଷ୍ଟ କେଉଁଗୋଟି ଗ୍ରାମପଞ୍ଚାୟତରେ ଶତକଡ଼ା 50% ଭାଗରୁ ଅଧିକା ଫସଲ କ୍ଷତିଗ୍ରସ୍ତ ହୋଇଛି ତାହା ଜାଣିଲାପରେ ସେ ଗ୍ରାମପଞ୍ଚାୟତଗୁଡ଼ିକରୁ ଏକବର୍ଷ ପର୍ଯ୍ୟନ୍ତ ଋଣ ଆଦାୟ ସ୍ଥଗିତ ରଖାଯାଇଛି । ଯେଉଁ କୋଅପରେଟିଭ ଋଣ ରହିଛି, ସେ ଗ୍ରାମପଞ୍ଚାୟତମାନଙ୍କରୁ ତିନୋଟି phaseରେ ଆଦାୟ କରିବାପାଇଁ ବ୍ୟବସ୍ଥା ହୋଇଛି ।

ଅଖ ଋଣ କଥା ମୋ ଦୃଷ୍ଟିକୁ ଆସିନାହିଁ, ଯେଉଁ ଅଞ୍ଚଳରେ 50ରୁ ଅଧିକ ଫସଲ କ୍ଷତି ହୋଇଥିବ ଏବଂ ସେଠାରେ ଯଦି ମରୁଡ଼ି ଏରିଆ ଭିତରେ ଥିବ, ତାହାହେଲେ ସେ ସୁବିଧା ଦିଆଯିବ ବୋଲି ମୁଁ ଭାବୁଛି । ମୁଁ ସେ ବିଭାଗ ସହିତ ଆଲୋଚନା କରି ସେ ସୁବିଧା ସେ ଲୋକଙ୍କୁ ଦେବାପାଇଁ କାର୍ଯ୍ୟକାରୀ କରିଇବ ।

ଆଜି ଘୋଷିଏ କଥା ହେଉଛି, ଆମର ବର୍ତ୍ତମାନ installed capacity 861·5 M. W. ଥିଲା, ତା ୫-୧-୧୯୭୭ରେ ସୁଦ୍ଧା 60 M. W. ବାଲିମେଲାରେ Power Generate ହେବା ଫଳରେ ଆମର ବର୍ତ୍ତମାନ installed capacity 921·5 M. W. ହେବ ।

ଆମର ଅମିଳ Power ଯାହା ହେଉଛି ଆମେ ସେଇ ଅନୁସାରେ Provision କରୁଛୁ, ଏପରିକି ବଳକା ହେଲେ ଆମେ ପଡ଼ୋଶୀ ରାଜ୍ୟମାନଙ୍କୁ ତାହାକୁ ବିକ୍ରିକରି ସେଥିରୁ ଅର୍ଥ ଆୟ କରୁଛୁ ।

ପରିଶେଷରେ ମୁଁ କହିବାକୁ ଚାହେଁ ମାନ୍ୟବର ଲବୋଧି ଦଳର ନେତା ଯାହା କହିଲେ co-operationରେ ସବୁ କାମ ହେବା ଉଚିତ, ସେଥିପାଇଁ ମୁଁ ଆନନ୍ଦିତ । ଯଦି ବିରୋଧୀ ଦଳର ମାନ୍ୟବର ସଭ୍ୟମାନେ ସବୁ କାମରେ ସାହାଯ୍ୟ କରିବା ପାଇଁ ପ୍ରସ୍ତୁତ ତାହାହେଲେ ମୁଁ ସବୁଠାରୁ ଆନନ୍ଦିତ ହେବି । କାରଣ ଏ ରାଜ୍ୟରେ ଉନ୍ନତି ହେବା ଆମର କାମ୍ୟ । କାରଣ ଏ ରାଜ୍ୟ ଅନେକ ପଛରେ ପଡ଼ିଅଛି । ଏ ରାଜ୍ୟର ଅର୍ଥନୈତିକ ବିକାଶ କରିବାକୁ ଚାହିଁଲେ ସମସ୍ତେ ହାତ ମିଳାଇ କାମ କରିବେ ତାହାହେଲେ ମୋର ବିଶ୍ୱାସ ଆମେ ଆଗେଇ ପାରିବା । ମୁଁ ଆଶାକରୁଛି ଆମ ଭିତରେ ସହଯୋଗମୂଳକ ଭାବଧାରା ସୃଷ୍ଟି ହେବ ଏବଂ ସେହି ସହଯୋଗରେ ଆମେ ଓଡ଼ିଶାର ଉନ୍ନତି କରି ପାରିବା । ମୁଁ ଏତିକି କହି ଯେଉଁ ଧନ୍ୟବାଦ ପ୍ରସ୍ତାବ ଆଗତ କରାଯାଇଛି, ତାକୁ ଗ୍ରହଣ କରିବା ନିମନ୍ତେ ଅନୁରୋଧ କରୁଛି ।

## ଭାରତର ବୈଦେଶିକ ନୀତି—ଭାରତ ଓ ଚୀନ ସଂପର୍କ

15-9-1970

ବାଚସ୍ପତି ମହୋଦୟ, ଆଜିର ପୂର୍ବାହ୍ଣ ବୈଠକର ଶେଷ ସମୟରେ ସୋସିଆଲିଷ୍ଟ ବିଭିନ୍ନଦଳର ନେତାମାନେ ବସି ଘୋଷିଏ ପ୍ରସ୍ତାବ ଉଠାଇଥିଲେ ସୋସିଆଲିଷ୍ଟ ମୋର ବନ୍ଧୁ ଉତ୍କଳ ସଭାର ମାନ୍ୟବର ସଭ୍ୟ ଯେଉଁ ଏ ସଂଶୋଧନ ପ୍ରସ୍ତାବ ଆଗତ କରିଛନ୍ତି, ସେ ବି ଉପସ୍ଥିତ ଥିଲେ, ସମସ୍ତଙ୍କ ପରାମର୍ଶ କ୍ରମେ ଏହି ପ୍ରସ୍ତାବଟି ହୋଇଥିଲା । ଏହି ପ୍ରସ୍ତାବଟି ଏ ଗୃହରେ ଧାର୍ଯ୍ୟ ହେଲେ ସମସ୍ତଙ୍କ ପକ୍ଷରୁ ହୁଅନ୍ତା । ଏଣୁ ମୁଁ ସଂଶୋଧନ ପ୍ରସ୍ତାବ ଆଗତକାରୀ ବନ୍ଧୁଙ୍କୁ ଅନୁରୋଧ କରିବି ସଂଶୋଧନ ପ୍ରସ୍ତାବ ଆଗତ କରି ଏଥିରେ କିଛି ଯୋଡ଼ନ୍ତୁ ନାହିଁ । ମୂଳ ପ୍ରସ୍ତାବ ଉପରେ ଆମେ ଆଲୋଚନା କରି ତାକୁ ପାସ୍ କରିବା । ଆମର ଏ ଗୃହରେ ବୈଦେଶିକ ନୀତି ସମ୍ପର୍କରେ ଆଲୋଚନା କରିବା କେତେଦୂର ଯୁକ୍ତିଯୁକ୍ତ ମୁଁ ଜାଣିପାରୁ ନାହିଁ । ତଥାପି ଏ ଗୃହର ନେତା ଯେଉଁ ପ୍ରସ୍ତାବ

ଆସେଇ କହନ୍ତି ତାହା ଠିକ୍ ଅଛି । ଏହା ଉପରେ ବିସ୍ତୃତ ଆଲୋଚନା କଲେ ଭଲ ହୁଅନ୍ତା ବୋଲି ମୋର ମତ । ତେଣୁ ପୁନର୍ବାର ମୁଁ ମୋର ବନ୍ଧୁଙ୍କୁ ଅନୁରୋଧ କରିବି ଯେ ତାଙ୍କର ସଂଶୋଧନ ପ୍ରସ୍ତାବକୁ ପ୍ରତ୍ୟାହାର କରନ୍ତୁ । ମୂଳ ପ୍ରସ୍ତାବ ଉପରେ ମୁଁ ଏତିକି କହିବାକୁ ଚାହେଁ ଯେ ଚୀନ ଆମର ଦୂତାବାସ କର୍ମଚାରୀ-ମାନଙ୍କ ଉପରେ ଯେଉଁ ବର୍ବରୋଚିତ ବ୍ୟବହାର କରୁଛି, ତାହା କୂଟନୈତିକ ଜଗତରେ ବିରଳ । ଆଜିପର୍ଯ୍ୟନ୍ତ ପୃଥିବୀରେ କୌଣସି ସରକାର ଏପରି ବର୍ବରୋଚିତ ବ୍ୟବହାର ଦେଖାଇ ନାହାନ୍ତି । ଅନ୍ୟ ଦେଶର ଦୂତାବାସମାନଙ୍କର କର୍ମଚାରୀମାନଙ୍କ ପ୍ରତି ଏଭଳି ବ୍ୟବହାର କେବେହେଁ କୌଣସି ସରକାର କରିନାହାନ୍ତି । ତେଣୁ ଆମ ଦେଶ ଆକ୍ରମଣଠାରୁ ଆରମ୍ଭ-କରି ଆମ ଲୋକଙ୍କ ଉପରେ ଚୀନ ଯେଉଁ ବ୍ୟବହାର କରୁଛି ତାହା ସ୍ପଷ୍ଟଭାବରେ ପ୍ରମାଣିତ କରି ଦେଇଛି ଯେ ଚୀନର ଆମ ଦେଶ ପ୍ରତି ହଟଲସି ମନୋଭାବ, ଶତ୍ରୁତା ମନୋଭାବ ବରାବର ରହିଛି । ଗତ ସପ୍ତାହରେ ଆମର କୂଟନୈତିକ କର୍ମଚାରୀ ଶ୍ରୀ ରଘୁନାଥଙ୍କ ପ୍ରତି ଚୀନ ଯେଉଁ ଅମାନୁଷିକ ବ୍ୟବହାର କଲା ତାହା ହେଉଛି ତା'ର ପ୍ରମାଣ । ଚୀନ କେବଳ ଆମର ଦୂତାବାସ କର୍ମଚାରୀମାନଙ୍କ ପ୍ରତି ଅଶୋଭନୀୟ ବ୍ୟବହାର କରୁଛି ତାହା ନୁହେଁ । ଦୂତାବାସ କର୍ମଚାରୀଙ୍କ ପରିବାର ପିଲାପିଲିଙ୍କ ପ୍ରତି ମଧ୍ୟ ଅଶୋଭନୀୟ ବ୍ୟବହାର କରୁଛି । ଶୁଣାଯାଏ ସେମାନଙ୍କୁ ମୋଟେ 2 ଦିନର ଖାଦ୍ୟ ଦିଆଯାଇଛି ଏବଂ ସେପରି ବାହାରୁ ଖାଦ୍ୟ ନ ଯାଏ ସେଥିପାଇଁ ଦୂତା-ବାସକୁ ଘେରାଓ କରାଯାଇଛି । ଏ ପରିସ୍ଥିତିରେ ଆମ ଦୂତାବାସ କର୍ମଚାରୀବର୍ଗଙ୍କର ଦୁର୍ଦ୍ଦଶା କ'ଣ ହୋଇଥିବ ତାହା ସହଜରେ ଅନୁମେୟ । ତେଣୁ ଭାରତ ସରକାରଙ୍କ ହାତ-ମୁଠାକୁ ମଜବୁତ୍ କରିବା ପାଇଁ ଆମେ ଏ ପ୍ରସ୍ତାବ କରୁଛୁ । ଯଦି ଭାରତ ସରକାର ଚାହାନ୍ତି ଏ ପରିସ୍ଥିତିରେ ଚୀନ ସହିତ କୂଟନୈତିକ ସମ୍ପର୍କ ଛିନ୍ନ କରିବା ଦରକାର । ଏହାଦ୍ୱାରା ଯଦି ଆମ ଦେଶର ଉପକାର ହେବ ତାହା ସେ ନିଶ୍ଚୟ କରିବେ । ଆମ ଦେଶର ସ୍ୱାର୍ଥ ଦୃଷ୍ଟିରୁ ଭାରତ ସରକାର ଯାହା ଉଚିତ ମନେ କରିବେ ନିଶ୍ଚୟ କରିବେ ଏଥିରେ ସନ୍ଦେହ ନାହିଁ । ତେଣୁ ଏ ପ୍ରସ୍ତାବକୁ ମୁଁ ସମର୍ଥନ କରିବା ସଙ୍ଗେ ସଙ୍ଗେ ନିବେଦନ କରୁଛି । ଏ ଜାତି ପ୍ରତି ଯେଉଁ ଅପମାନନା ହୋଇଛି ସେଥିପ୍ରତି ଦୃଷ୍ଟି ଦେଇ ଭାରତ ସରକାର ବିହିତ ପ୍ରତିକାର କରନ୍ତୁ ଏବଂ ଦରକାର ପଡ଼ିଲେ ଅତି କଠୋର ପ୍ରତିକାର କରିବା ଦରକାର । ବନ୍ଧୁବର ନେତା ଏ ଯେଉଁ ପ୍ରସ୍ତାବ ଆଣିଛନ୍ତି ସେଥିରେ ଭାରତ ସରକାର କି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରନ୍ତୁ ତାଙ୍କ ଉପରେ ଛାଡ଼ି ଦେଇଥିବା ଠିକ୍ ହୋଇଛି ବୋଲି ମୁଁ କହୁଛି । ସେ ଯାହା ଉଚିତ୍ ମନେ କରିବେ ସେହି କାର୍ଯ୍ୟ ନିଶ୍ଚିତ ଭାବରେ ଗ୍ରହଣ କରିବେ, ଏତିକି କହି ମୁଁ ଏ ପ୍ରସ୍ତାବକୁ ସମର୍ଥନ କରୁଛି ।

# ବିନାୟକ ଆଚାର୍ଯ୍ୟ—ଏକ ବିରଳ ବ୍ୟକ୍ତିତ୍ୱ

ଶ୍ରୀ ଚିନ୍ତାମଣି ଦ୍ୟାନ ସାମନ୍ତରାୟ

ବାଚସ୍ପତି; ଓଡ଼ିଶା ବିଧାନସଭା

1969 ମସିହାରେ ଆଇନ ପାଠ ସମାପ୍ତ କରି ମୁଁ ବ୍ରହ୍ମପୁରଠାରେ ଆଇନ ବ୍ୟବସାୟ ଆରମ୍ଭ କରିଥାଏ । ମୋର ବଡ଼ଭାଇ ସ୍ୱର୍ଗତ ଜଗନ୍ନାଥ ପଣ୍ଡା ପାତ୍ରପୁର ବ୍ଲକର କଂଗ୍ରେସ ଦଳ ସଭାପତି ଥାଆନ୍ତି, ତାଙ୍କର ହଠାତ୍ ମୃତ୍ୟୁ ହୋଇଗଲା । ବିନାୟକ ବାବୁ ମୋତେ ଡକାଇ ପଠାଇଲେ ଓ କଂଗ୍ରେସ ଦଳରୁ ପାତ୍ରପୁର ବ୍ଲକର ଦାୟିତ୍ୱ ନେବାପାଇଁ କହିଲେ । ମୁଁ ବିନାୟକ ବାବୁଙ୍କୁ ପୂର୍ବରୁ ଜାଣିଥିଲି । ବ୍ରହ୍ମପୁର ସହର ତଥା ଗଞ୍ଜାମ ଜିଲ୍ଲାରେ ବିନାୟକ ବାବୁଙ୍କର ଶିକ୍ଷକ, ପ୍ରଧାନ ଶିକ୍ଷକ ତଥା ଶିକ୍ଷକ ସଙ୍ଗଠନ ପରିଚାଳକ ଭାବରେ ଖ୍ୟାତି ଥିଲା । ତେଣୁ ବିନାୟକ ବାବୁଙ୍କ ଅନୁରୋଧ ମୁଁ ଏଡ଼ାଇ ପାରି ନଥିଲି ।

ଷାଠିଏ ଦଶକର ରାଜନୈତିକ ପରିସ୍ଥିତି ବିନାୟକ ବାବୁଙ୍କୁ ରାଜନୀତି କ୍ଷେତ୍ରକୁ ଆଣିଥିଲା । ଉକ୍ତ ଦଶକର ମଧ୍ୟଭାଗରେ ଓଡ଼ିଶାରେ ତତ୍କାଳୀନ କଂଗ୍ରେସ ନେତୃତ୍ୱ ପ୍ରତି ଜନସାଧାରଣ ବୀତଶ୍ରଦ୍ଧ ହୋଇ ଯାଇଥିଲେ । ସେହି ପରିସ୍ଥିତିକୁ ଅନୁଧ୍ୟାନ କରି ଶ୍ରୀ ବିଜୁ ପଟ୍ଟନାୟକ ବିନାୟକ ବାବୁଙ୍କୁ କଂଗ୍ରେସ ଦଳରେ ଯୋଗଦେବା ପାଇଁ ଅନୁରୋଧ କରିଥିଲେ । ବିନାୟକ ବାବୁଙ୍କ ନିର୍ମଳ ଭାବମୂର୍ତ୍ତି ଓ ଲୋକପ୍ରିୟତା ବ୍ରହ୍ମପୁର ତଥା ଗଞ୍ଜାମ ଜିଲ୍ଲାରେ କଂଗ୍ରେସ ଦଳକୁ ପୁନଃପ୍ରତିଷ୍ଠିତ କରାଇ ପାରିବ ବୋଲି ବିଜୁବାବୁଙ୍କର ବିଶ୍ୱାସ ଥିଲା । କିନ୍ତୁ ଶିକ୍ଷକତାର ସୁନିଶ୍ଚିତ ଆୟକୁ ଛାଡ଼ି ଅନିଶ୍ଚିତ ରାଜନୀତି କ୍ଷେତ୍ରକୁ ପ୍ରବେଶ କରିବାପାଇଁ ବିନାୟକ ବାବୁ ବିଜୁବାବୁଙ୍କ ପ୍ରସ୍ତାବରେ ପ୍ରଥମେ ରାଜି ହୋଇ ନଥିଲେ । ଶୁଣାଯାଏ ବିଜୁବାବୁ ବିନାୟକ ବାବୁଙ୍କୁ ପ୍ରତିଶ୍ରୁତି ଦେଇଥିଲେ ଯେ ସେ ଯଦି ନିର୍ବାଚନରେ ହାରିଯାଆନ୍ତି ତେବେ ସେ ଯେତିକି ଦରମା ପାଉଥିଲେ ସେତିକି ଅର୍ଥ ତାଙ୍କୁ ଦିଆଯିବ କିମ୍ବା ଯଦି ବିଜୁବାବୁ ପୁନର୍ବାର ସରକାର ଗଠନ କରନ୍ତି ତେବେ ବିନାୟକ ବାବୁଙ୍କୁ ପୁନର୍ବାର ଶିକ୍ଷକତାରେ ଅବସ୍ଥାପିତ କରାଯିବ ।

ବିନାୟକ ବାବୁ ଛାତ୍ରାବସ୍ଥାରୁ ରାଜନୈତିକ ଆନ୍ଦୋଳନ ସହ ପରିଚିତ ଥିଲେ । ଛାତ୍ର ଥିବା ସମୟରେ ସେ ଭାରତ ଛାଡ଼ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେହି ସମୟରୁ ମଧ୍ୟ ସେ ସମାଜବାଦ ଆନ୍ଦୋଳନରେ ସାମିଲ୍ ହୋଇଥିଲେ । ଶିକ୍ଷା ସମାପ୍ତି ପରେ ସେ ଶିକ୍ଷକତା ଆରମ୍ଭ କଲେ ଏବଂ ଶିକ୍ଷକ ସମାଜକୁ ଏକତ୍ରିତ କରି ସେମାନଙ୍କର ନ୍ୟାଯ୍ୟ ଦାବି ହାସଲ ପାଇଁ ସେ ସର୍ବଦା ଚେଷ୍ଟିତ ଥିଲେ ।

ଶିକ୍ଷକ ହିସାବରେ ସମଗ୍ର ଗଞ୍ଜାମ ଜିଲ୍ଲାରେ ବିନାୟକ ବାବୁଙ୍କର ଖ୍ୟାତି ଥିଲା । ସେ ସାଧାରଣତଃ ଇଂରାଜୀ, ବ୍ୟାକରଣ, ସାହିତ୍ୟ ଓ ଭୂଗୋଳ ପଢ଼ାଉଥିଲେ । ଗୋଟିଏ ବିଷୟ ପଢ଼ାଇଲାବେଳେ ସେ ଏତେ ପ୍ରାଞ୍ଜଳ ଭାବରେ ବ୍ୟାଖ୍ୟା କରୁଥିଲେ ଯେ ଛାତ୍ରମାନଙ୍କୁ ସେ ସମ୍ପର୍କରେ ପୁନର୍ବାର ପୁସ୍ତକ ପଢ଼ିବାର ଆବଶ୍ୟକତା ପଡ଼ୁନଥିଲା । ସେ ଯେଉଁ ବିଷୟଟି ପଢ଼ାଉଥିଲେ ତାହା ଛାତ୍ରମାନଙ୍କ ମନରେ ରେଖାଙ୍କିତ ହୋଇ ଯାଉଥିଲା । ସ୍ୱଭାବତଃ ସେ ଗମ୍ଭୀର ପ୍ରକୃତିର ଲୋକ ଥିଲେ । କିନ୍ତୁ ଛାତ୍ରମାନଙ୍କର ସମ୍ବନ୍ଧରେ ସମସ୍ତ ଖବର ରଖୁଥିଲେ ଏବଂ ପ୍ରକାଶ ନକଲେ ମଧ୍ୟ ପ୍ରତ୍ୟେକ ଛାତ୍ର ପାଇଁ ତାଙ୍କର ଅମାପ ସ୍ନେହ ଥିଲା ।

କଂଗ୍ରେସ ଦଳ ଗୋଟିଏ ଭଲ ମଣିଷର ସନ୍ଧାନରେ ଥିଲାବେଳେ ବିନାୟକ ବାବୁ ଦୃଷ୍ଟିଗୋଚର ହୋଇଥିଲେ । ବାସ୍ତବିକ ବିନାୟକ ବାବୁଙ୍କ ଭଳି ଜଣେ ବ୍ୟକ୍ତିଙ୍କର କଂଗ୍ରେସରେ ଯୋଗଦାନ ଉକ୍ତ ଦଳକୁ କିଛି ସମୟ ପାଇଁ ବିପର୍ଯ୍ୟୟରୁ ରକ୍ଷା କରିପାରିଥିଲା । ସେ ପ୍ରଥମେ ଚତୁର୍ଥ ବିଧାନସଭାକୁ ନିର୍ବାଚିତ ହେଲେ ଏବଂ ପରେ ପରେ ବିରୋଧୀ ଦଳର ନେତା ମଧ୍ୟ ହୋଇଥିଲେ ।

ବିଧାନସଭାର ସଭ୍ୟହେବାପରେ ସେ ଶିକ୍ଷା, ସମବାୟ ଆନ୍ଦୋଳନ ଓ ସମବାୟ ଅନୁଷ୍ଠାନ, ଜଳସେଚନ ଓ କୃଷି ଇତ୍ୟାଦି ସମ୍ବନ୍ଧରେ ଉଲ୍ଲେଖନୀୟ ବକ୍ତବ୍ୟମାନ ଦେଇଛନ୍ତି । ଜଣେ ଆଦର୍ଶ ବିଧାୟକ ଭାବେ କୌଣସି ବିଷୟ ଉପରେ ଆଲୋଚନାରେ ଅଂଶ ଗ୍ରହଣ କରିବା ପୂର୍ବରୁ ସେ ସମ୍ପର୍କରେ ସମସ୍ତ ବିଷୟ ପଢୁଥିଲେ ଓ ଅନୁଶୀଳନ କରୁଥିଲେ । ଫଳରେ ବିଧାନସଭାରେ ସେ ଯେଉଁ ଭାଷଣ ଦେଉଥିଲେ ସେଥିରେ ବହୁ ତଥ୍ୟ ପରିବେଷଣ କରିବା ସହ ବାସ୍ତବ ସ୍ଥିତିକୁ ଜାଣିବାକୁ କରାଇପାରୁଥିଲେ । ବିରୋଧୀ ଦଳରେ ଥିଲେ ମଧ୍ୟ ସେ ସରକାରଙ୍କୁ "ବିରୋଧ ପାଇଁ ବିରୋଧ ନ କରି" ଗଠନମୂଳକ ପ୍ରସ୍ତାବମାନ ଦେଉଥିଲେ । ସେ ସମୟରେ କଂଗ୍ରେସ ନେତୃତ୍ୱ ପ୍ରତି ଅନ୍ୟାନ୍ୟ ରାଜନୈତିକ ନେତା ତଥା ବିଧାୟକମାନଙ୍କର ଅଶେଷ ଘୃଣାଭାବ ଥିଲା । କଂଗ୍ରେସ ଦଳର ବିଧାୟକମାନେ ଗୃହରେ ଭାଷଣ ଦେଲାବେଳେ ଅପରପକ୍ଷରୁ କଟୁ ସମାଲୋଚନା ହେଉଥିଲା । ସେମାନଙ୍କୁ ପ୍ରାୟ ଶୁଣାଇ ଦିଆଯାଉ ନ ଥିଲା । କିନ୍ତୁ ବିନାୟକ ବାବୁଙ୍କର ବ୍ୟକ୍ତିତ୍ୱ, ନିର୍ମଳ ଭାବମୂର୍ତ୍ତି ଏବଂ ଆଲୋଚ୍ୟ ବିଷୟ ସମ୍ବନ୍ଧରେ ଜ୍ଞାନ ଅନ୍ୟମାନଙ୍କୁ ଆକୃଷ୍ଟ କରୁଥିଲା । ସେ ଜଣେ ମାତ୍ର କଂଗ୍ରେସ ସଭ୍ୟ ଥିଲେ ଯାହାଙ୍କୁ ଅନ୍ୟମାନେ ବିରୋଧ କରୁ ନଥିଲେ । ସେ ଦେଉଥିବା ଗଠନମୂଳକ ପ୍ରସ୍ତାବଗୁଡ଼ିକ ସରକାର ମଧ୍ୟ ଗ୍ରହଣ କରୁନେଉଥିଲେ । 1972 ମସିହାରୁ 1976 ମସିହା ପର୍ଯ୍ୟନ୍ତ ବିଭିନ୍ନ ବିଭାଗର ମନ୍ତ୍ରୀ ଓ ଡିସେମ୍ବର 1976 ଠାରୁ 1977 ଏପ୍ରିଲ ମାସ ଶେଷ ପର୍ଯ୍ୟନ୍ତ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇଥିଲେ । ମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଥିବା ସମୟରେ ତାଙ୍କର ନିର୍ମଳ

ସ୍ୱରମନ୍ତ୍ରୀ କୌଣସି ପଦବୀ ମଧ୍ୟ ସୃଷ୍ଟି ହୋଇନଥିଲା । 1977 ମସିହାରେ ସେ ବନ୍ଧୁଗୁଡ଼ ନିର୍ବାଚନ ମଣ୍ଡଳୀସହ ଗୋଟିଏ ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନସଭାକୁ ପ୍ରତିଦ୍ୱନ୍ଦିତା କରୁଥିବାବେଳେ ମୁଁ ଗୋଟିଏ ନିର୍ବାଚନ ମଣ୍ଡଳୀର ତାଙ୍କର ସମ୍ପୂର୍ଣ୍ଣ ନିର୍ବାଚନ ଦାୟିତ୍ୱ ତୁଲାଇଥିଲି, ସେଥିପାଇଁ ମୁଁ ଗର୍ବିତ ଓ ଆନନ୍ଦିତ ମନେକରେ। 1977 ମସିହାରେ ସେ କଂଗ୍ରେସ ଦଳ ଛାଡ଼ିଦେଲେ। ତାଙ୍କ ସହ କଂଗ୍ରେସ ଦଳ ଛାଡ଼ିଥିବା ବହୁବ୍ୟକ୍ତି ପୂର୍ବରୁ ଦଳକୁ ଫେରି ଆସିଲେ କିନ୍ତୁ ନିନାସ୍ୱର ବାବୁ ପୂର୍ବରୁ କଂଗ୍ରେସ ଦଳରେ ଯୋଗ ଦେଇପାରି ନଥିଲେ ।

ଓଡ଼ିଶାର ଅଗଣିତ ଦୁଃଖୀ ଦରିଦ୍ର, ହରିଜନ ଓ ଗିରିଜନମାନଙ୍କ ପ୍ରତି ସେ ସବୁବେଳେ ସମ୍ବେଦନଶୀଳ ଥିଲେ । ତାଙ୍କର ଏହି ସମ୍ବେଦନଶୀଳତା ପାଇଁ ସେ ସମାଜବାଦ ଆନ୍ଦୋଳନରେ ଯୋଗ ଦେଇଥିଲେ । ଶ୍ରୀମତୀ ଇନ୍ଦିରାଗାନ୍ଧିଙ୍କ ନେତୃତ୍ୱରେ ସେହି ବର୍ଗର ଲୋକମାନଙ୍କର କଲ୍ୟାଣ ପାଇଁ ଯେତେବେଳେ କାର୍ଯ୍ୟକ୍ରମ ପ୍ରଣୀତ ହେଲା ସେ କଂଗ୍ରେସ ପ୍ରତି ଆକୃଷ୍ଟ ହେଲେ ଓ ସେହି ଦଳରେ ଯୋଗ ଦେଇଥିଲେ । ତତ୍କାଳୀନ ରାଜନୀତିରେ ରାଜନୈତିକ ନେତାମାନେ ନିଜ ପରିବାର ବର୍ଗଙ୍କୁ କ୍ଷମତା ପ୍ରଦାନ ପାଇଁ ପ୍ରଚେଷ୍ଟା ଓ ବ୍ୟକ୍ତିତ୍ୱବାଦରେ ସେ ବିଶ୍ୱାସ କରୁନଥିଲେ ଏବଂ ସେ ସବୁ ଅନୈତିକ କାର୍ଯ୍ୟର ବହୁ ଉର୍ଦ୍ଧ୍ୱରେ ଥିଲେ । ସାମ୍ପ୍ରତିକ ରାଜନୈତିକ ସ୍ରୋତର ପୋଷକର ଥିବାରୁ ତାଙ୍କର ରାଜନୈତିକ ଜୀବନ ଏକ କ୍ଷୁଦ୍ର ପରିଧି ମଧ୍ୟରେ ସୀମାବଦ୍ଧ ହୋଇଥିଲା ସତ୍ୟ, କିନ୍ତୁ ମୂଲ୍ୟବୋଧ ଭିତ୍ତିକ ରାଜନୀତି କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ସେଥିରେ ଅଗ୍ରଗଣ୍ୟ । ନିଜର ଜୀବନ ବୃତ୍ତିମୂଳକ କ୍ଷମତା ଓ ଅନୈତିକ ଧନପ୍ରାପ୍ତି କରିବା ପାଇଁ ପ୍ରତିଦ୍ୱନ୍ଦିତା ଚାଲିଥିଲାବେଳେ ସେ ବସ୍ତୁତଃ ନିସ୍ୱ ଅବସ୍ଥାରେ ମୃତ୍ୟୁ ବରଣ କରିଥିଲେ ।

ଏହିଭଳି ଏକ ବିରଳ ବ୍ୟକ୍ତିଙ୍କର ପ୍ରେରଣା ଓ ପ୍ରୋତ୍ସାହନ ପାଇ ମୋର ରାଜନୈତିକ ଜୀବନ ଆରମ୍ଭ ହୋଇଥିଲା । ତାଙ୍କ ନମ୍ରତା, ସରଳତା ତଥା ସ୍ପଷ୍ଟବାଦୀ ଗୁଣ ଦ୍ୱାରା ମୁଁ ସମ୍ପୂର୍ଣ୍ଣରୂପେ ପ୍ରଭାବିତ । ସ୍ଥଳବିଶେଷରେ ରାଜନୈତିକ ବିରୋଧ ଥିଲେ ମଧ୍ୟ ସମ୍ପୂର୍ଣ୍ଣ ନୈତିକ ସମର୍ଥନ ଦେବାପାଇଁ ସେ କେବେ କୁଣ୍ଠାବୋଧ କରିନଥିଲେ ।

ସ୍ୱର୍ଗତ ଆଦର୍ଶ ବିଧାୟକ, ମନ୍ତ୍ରୀ ଓ ରାଜନୈତିକ ନେତାମାନଙ୍କ ପାଇଁ ଯେଉଁ ଆଦର୍ଶ ରଖିଯାଇଛନ୍ତି ତାହା ବାସ୍ତବିକ ଅବିସ୍ମରଣୀୟ ।

# ବିନାୟକ ଆଚାର୍ଯ୍ୟ

ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ

ମୁଖ୍ୟମନ୍ତ୍ରୀ, ଓଡ଼ିଶା

ସ୍ୱର୍ଗତ ବିନାୟକ ଆଚାର୍ଯ୍ୟ ଶିକ୍ଷକ ଭାବରେ ତାଙ୍କର କର୍ମମୟ ଜୀବନ ଆରମ୍ଭ କରିଥିଲେ । ସେ ସକ୍ରିୟ ରାଜନୀତିରେ ପ୍ରବେଶ କରିବା ପୂର୍ବରୁ ତାଙ୍କୁ "ବିନାୟକ ମାଷ୍ଟ୍ର" ନାମରେ ଲୋକେ ଡାକୁଥିଲେ । ଜଣେ ଅତ୍ୟନ୍ତ ଛାତ୍ରବତ୍ସଳ, ସୁଶିକ୍ଷକ ଭାବରେ ତାଙ୍କର ଖ୍ୟାତି ଥିଲା । ମିଶନ ହାଇସ୍କୁଲର ହେଡ଼ମାଷ୍ଟର ଭାବେ ସେ ବ୍ରହ୍ମପୁରବାସୀ ସମସ୍ତଙ୍କ ମଧ୍ୟରେ ସୁପରିଚିତ ଥିଲେ । 1967 ମସିହାରେ ସେ କଂଗ୍ରେସରେ ଯୋଗଦେଇ ବିଧାନସଭାର ସଦସ୍ୟ ହୋଇଥିଲେ । 1969 ମସିହା ଥିଲା ତାଙ୍କ ପକ୍ଷରେ ଓ କଂଗ୍ରେସ ପକ୍ଷରେ ଏକ ସ୍ମରଣୀୟ ବର୍ଷ । ସେହି ବର୍ଷ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ବିରୁଦ୍ଧରେ ତତ୍କାଳୀନ କଂଗ୍ରେସ ସଭାପତି ଓ ଅନ୍ୟ ବରିଷ୍ଠ ନେତାଗଣ ଏକଜୁଟ ହୋଇଥିଲେ ଏବଂ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ନୀତି ଓ ଆଦର୍ଶର ତୀବ୍ର ସମାଲୋଚନା କରିଥିଲେ । ସେତେବେଳେ ସଭାପତି ଥିଲେ ଶ୍ରୀ ନିଜଲିଙ୍ଗପ୍ପା ଏବଂ ଯେଉଁ ବରିଷ୍ଠ ଗୋଷ୍ଠୀ ତାଙ୍କ ସହିତ ମିଶି ପ୍ରଧାନମନ୍ତ୍ରୀଙ୍କ ସମାଲୋଚକ ହୋଇଥିଲେ, ସେମାନେ ହେଲେ ମୋରାରଜୀ ଦେଶାଇ, ସଞ୍ଜୀବ ରେଡ୍ଡୀ, ଅତୁଲ୍ୟ ଘୋଷ, ସୀଦେରମ୍ ପାଟିଲ । ଶ୍ରୀ କାମରାଜଙ୍କ ସେମାନଙ୍କ ପ୍ରତି ପ୍ରତ୍ୟକ୍ଷ ସମର୍ଥନ ଥିଲା । ଫରିଦାବାଦ କଂଗ୍ରେସରେ ଏହା ଏକ ବିସ୍ଫୋରକ ରୂପ ଗ୍ରହଣ କରିଥିଲା । ଏହାର ପରିଣତି ହେଲା ରାଷ୍ଟ୍ରପତି ପଦ ପାଇଁ କଂଗ୍ରେସରେ ଶୀତଳଯୁଦ୍ଧ । ଏକ ପକ୍ଷରେ ସଞ୍ଜୀବ ରେଡ୍ଡୀ ହେଲେ କଂଗ୍ରେସର ଦଳୀୟ ପ୍ରାର୍ଥୀ—ଅନ୍ୟ ପକ୍ଷରେ ଶ୍ରୀ ଭି. ଭି. ଗିରିଙ୍କୁ ଇନ୍ଦିରା ଗାନ୍ଧୀ ଖୋଲାଖୋଲି ସମର୍ଥନ କଲେ । ଶ୍ରୀ ଜଗଜ୍ଜୀବନ ରାମ ଓ ଶ୍ରୀ ଯଶବନ୍ତ ରାଓ ଚୌହାନ ଇନ୍ଦିରା ଗାନ୍ଧୀଙ୍କୁ ସମର୍ଥନ ଜଣାଇଲେ । ଏହାର ଫଳ ସ୍ୱରୂପ କଂଗ୍ରେସରେ ବିଭାଜନ ହେଲା ଏବଂ ଶ୍ରୀ ଜଗଜ୍ଜୀବନ ରାମ ଇନ୍ଦିରା ଗାନ୍ଧୀଙ୍କ ପରିଚାଳିତ କଂଗ୍ରେସର ସଭାପତି ହେଲେ ।

ଓଡ଼ିଶାରେ ଏହି ନୂତନ କଂଗ୍ରେସର ସଙ୍ଗଠନ ପରିଚାଳନାର ଭାର ନେଲେ ଶ୍ରୀମତୀ ନନ୍ଦିନୀ ଶତପଥୀ । କାରଣ ବିଜୁ ପଟ୍ଟନାୟକ କଂଗ୍ରେସ ଛାଡ଼ି ଉତ୍କଳ କଂଗ୍ରେସ ଦଳ ଗଠନ କରିଥିଲେ । ଯେଉଁ ସବୁ ବିଧାୟକମାନେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱ ଛାଡ଼ି ନୂତନ କଂଗ୍ରେସରେ ଯୋଗଦାନ କଲେ ସେମାନଙ୍କ ମଧ୍ୟରେ ବିନାୟକ ଆଚାର୍ଯ୍ୟ

ଥିଲେ ଅନ୍ୟତମ । ସେ ପ୍ରଦେଶ କଂଗ୍ରେସର ସଭାପତି ହୋଇଗଲେ । ଶ୍ରୀ ଆଚାର୍ଯ୍ୟ କଂଗ୍ରେସର ସଭାପତି ଥିଲା ବେଳେ 1971 ମସିହାରେ ଲୋକସଭା ଓ ବିଧାନସଭା ପାଇଁ ନିର୍ବାଚନ ହେଲା । ଲୋକସଭାରେ କଂଗ୍ରେସ 15ଟି ସ୍ଥାନ ପାଇ ବିଜୟୀ ହେଲା । ବିଧାନସଭାରେ 50ଟି ସ୍ଥାନ ପାଇ ଏକକ ସଂଖ୍ୟାଗରିଷ୍ଠତା ହାସଲ କଲା । ଡକ୍ଟର ହରେକୃଷ୍ଣ ମହତାବ ବିଧାନସଭାରେ କଂଗ୍ରେସ ଦଳର ନେତା ହେଲେ । ଡକ୍ଟର ମହତାବ ଇସ୍ତଫା ଦେଲା ପରେ ବିନାୟକ ଆଚାର୍ଯ୍ୟଙ୍କୁ କଂଗ୍ରେସ ବିଧାୟକ ଦଳର ନେତୃତ୍ୱ ପଦ ମିଳିଲା ଓ ବିରୋଧୀ ଦଳର ନେତା ଭାବରେ ବିଧାନସଭାରେ କଂଗ୍ରେସ ଦଳର ନୀତି ଓ ଆଦର୍ଶର ପ୍ରବକ୍ତା ହୋଇ ଓଡ଼ିଶାରେ ମିଳିତ ସ୍ୱତନ୍ତ୍ର-ଉତ୍କଳ କଂଗ୍ରେସ ସରକାରର ତୀବ୍ର ସମାଲୋଚନା କଲେ । ପରେ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ନେତୃତ୍ୱରେ ପରିଚାଳିତ ଓଡ଼ିଶା ସରକାରରେ ସେ ଅର୍ଥମନ୍ତ୍ରୀ ଭାବରେ କାର୍ଯ୍ୟ କରିଥିଲେ ଏବଂ 1976 ମସିହା ଡିସେମ୍ବର ମାସରେ 4 ମାସ ପାଇଁ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ଆଶୀର୍ବାଦରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ତାପରେ ନିର୍ବାଚନରେ କଂଗ୍ରେସର ପରାଜୟ ଘଟିଲା ।

1977 ମସିହାରେ କଂଗ୍ରେସର ବିପର୍ଯ୍ୟୟ ଘଟିବା ପରେ କଂଗ୍ରେସର ତତ୍କାଳୀନ ନେତୃତ୍ୱ ଇନ୍ଦିରା ଗାନ୍ଧୀଙ୍କ ବିରୁଦ୍ଧରେ ଏକଜୁଟ ହେଲା ବେଳେ ଶ୍ରୀ ବିନାୟକ ଆଚାର୍ଯ୍ୟ ସେମାନଙ୍କ ସହିତ ଯୋଗ ଦେଇଥିଲେ । 1978 ମସିହାରେ କଂଗ୍ରେସର ବିଭାଜନ ହେବାରୁ, ସେ ଇନ୍ଦିରା କଂଗ୍ରେସ ଗଠନରେ ସହଯୋଗ କରି ନ ଥିଲେ । ଶ୍ରୀ ଆଚାର୍ଯ୍ୟ ଜଣେ ମହାନ ଦେଶ ପ୍ରେମୀ, ସୁବକ୍ତା ଓ ସୁସଙ୍ଗଠକ ଥିଲେ । ବ୍ରହ୍ମପୁରର ବହୁ ସାମାଜିକ ଅନୁଷ୍ଠାନ ସହିତ ସେ ଜଡ଼ିତ ଥିଲେ । ଓଡ଼ିଶାରେ ଶିକ୍ଷକ ସମାଜରେ ଜଣେ ଆଦର୍ଶ ଶିକ୍ଷକ ଭାବରେ ସେ ଶ୍ରଦ୍ଧା ଓ ଆଦର ଲାଭ କରିଥିଲେ । କଂଗ୍ରେସରେ ମୁଁ ଯୋଗଦେବା ପରେ ତାଙ୍କ ସହିତ ମୋର ବ୍ୟକ୍ତିଗତ ପରିଚୟ ହୋଇଥିଲା । ସେ ସ୍ୱର୍ଗତ ବିଜୟ ଦାସଙ୍କର ଜଣେ ଅନୁଗାମୀ ଥିଲେ । ବିଜୟ ଦାସଙ୍କ ସହିତ ଦୀର୍ଘକାଳ ଧରି ମୋର ସମ୍ପର୍କ ରହି ଆସିଥିଲେ ମଧ୍ୟ ଶ୍ରୀ ଆଚାର୍ଯ୍ୟଙ୍କୁ ମୁଁ ପ୍ରକୃତରେ ଜାଣି ନ ଥିଲି । ମାତ୍ର କଂଗ୍ରେସରେ ରହିବା ପରେ ଆମେ ଏକାଠି ଓଡ଼ିଶାରେ କଂଗ୍ରେସ ସଙ୍ଗଠନ ପାଇଁ କାର୍ଯ୍ୟ କରୁଥିଲୁ । ଓଡ଼ିଶାସାରା ଆମେ ଏକାଠି ବୁଲିବାର ସୌଭାଗ୍ୟ ଜୁଟିଥିଲା । ସେ ଜଣେ ଅମାୟିକ, ମିଷ୍ଟଭାଷୀ ଓ ମେଳାପୀ ବ୍ୟକ୍ତି ଥିଲେ ଏବଂ ମୁଖ୍ୟମନ୍ତ୍ରୀ ଥିବା ବେଳେ ତାଙ୍କର ଶ୍ମଶାନ ଯାତ୍ରାରେ ଯୋଗଦେବା ପାଇଁ ମୁଁ ବ୍ରହ୍ମପୁର ଯାଇଥିଲି ଏବଂ ସେ କିପରି ଜନପ୍ରିୟ ଥିଲେ ସେଠାରେ ଶୋକାକୁଳ ବିପୁଳ ଜନସମାଗମରୁ ତାହା ଜଣା ପଡ଼ିଥିଲା ।

# ବନ୍ଧୁ ବିନାୟକ ବାବୁ

ଶ୍ରୀ ପ୍ରସନ୍ନ କୁମାର ଦାଶ

ପରିବେଶ, ବିଜ୍ଞାନ ଓ ବୈଷୟିକ ମନ୍ତ୍ରୀ, ଓଡ଼ିଶା

ସ୍ୱର୍ଗତ ବିନାୟକ ଆଚାର୍ଯ୍ୟଙ୍କ ସହ ମୋର ପ୍ରଥମ ପରିଚୟ ହୁଏ 1958 ମସିହାରେ ବାରିପଦା ଠାରେ ଆୟୋଜିତ ହୋଇଥିବା ପୌର କର୍ମଚାରୀଙ୍କ ସମ୍ମିଳନୀରେ । ସ୍ୱର୍ଗତ ଆଚାର୍ଯ୍ୟ ସେତେବେଳେ କମ୍ୟୁନିଷ୍ଟ ପାର୍ଟିର ସଭ୍ୟଥିଲେ ଏବଂ ପରେ କଂଗ୍ରେସରେ ଯୋଗଦେଲେ । 1969 ମସିହାରେ କଂଗ୍ରେସ ପାର୍ଟି ବିଭାଜନ ପରେ ସେ ବିଧାନସଭାରେ କଂଗ୍ରେସ ଦଳର ନେତା ଭାବେ ମନୋନୀତ ହେଲେ । ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ମନ୍ତ୍ରୀମଣ୍ଡଳରେ ସ୍ୱର୍ଗତ ଆଚାର୍ଯ୍ୟ ସମବାୟ ମନ୍ତ୍ରୀ ହେଲେ । ସେତେବେଳେ ମୋ ସହିତ ବିନାୟକ ବାବୁ ସମବାୟ ସମ୍ପର୍କରେ ବହୁବାର ଆଲୋଚନା କରିଥିଲେ ଏବଂ ଅନେକ ସମୟରେ ମୋ ପରାମର୍ଶ ମଧ୍ୟ ଗ୍ରହଣ କରିଥିଲେ । 1971 ମସିହା ନିର୍ବାଚନରେ କଂଗ୍ରେସ ଦଳର ପରାଜୟ ଘଟିଲା । ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ପରେ ସ୍ୱର୍ଗତ ଆଚାର୍ଯ୍ୟ ଅଳ୍ପଦିନ ପାଇଁ ରାଜ୍ୟର ମୁଖ୍ୟମନ୍ତ୍ରୀ ଭାବେ କାର୍ଯ୍ୟ ତୁଲାଇଥିଲେ । ପୁଣି କଂଗ୍ରେସ ଦଳର ବିଭାଜନ ହେଲା । ଓଡ଼ିଶାରୁ ମାତ୍ର 7 ଜଣ ଇନ୍ଦିରା କଂଗ୍ରେସରେ ଯୋଗ ଦେଲେ । ଶ୍ରୀ ବିଜୁ ମହାନ୍ତି ଏବଂ ଅନ୍ୟମାନେ ଅର୍ସ କଂଗ୍ରେସରେ ରହିଲେ ଏବଂ ସ୍ୱର୍ଗତ ଆଚାର୍ଯ୍ୟ ଦଳର ସଭାପତି ଭାବେ ରହିଲେ । 1980 ମସିହା ନିର୍ବାଚନରେ ଯଦିଓ ବିନାୟକ ବାବୁ ହାରିଗଲେ ଏବଂ ଜଣ ପରେ ଜଣେ ଇନ୍ଦିରା କଂଗ୍ରେସରେ ଯୋଗଦେଲେ, ସେ କିନ୍ତୁ ସେହି ଅର୍ସ କଂଗ୍ରେସରେ ହିଁ ରହିଲେ । ମୁଁ ଅର୍ସ କଂଗ୍ରେସ ଛାଡ଼ି ଇନ୍ଦିରା କଂଗ୍ରେସକୁ ଆସିଲି । ସେଇଦିନ ତାଙ୍କ ନିକଟରେ ପହଞ୍ଚି ମୋର ଇସ୍ତଫାପତ୍ର ତାଙ୍କୁ ଦେଲି ସେ ଛଳ ଛଳ ଆଖିରେ ଯଦିଓ ବିଦାୟ ଦେଇଥିଲେ ମୋର ନିଷ୍ପତ୍ତିକୁ ସେ ସମ୍ମାନ ଦେଇଥିଲେ । ଏବେ ବି ମୋର ସେ ଦିନର ଘଟଣା ମନେପଡ଼େ । ବିନାୟକ ବାବୁ ଜଣେ ନିଷ୍ଠାପର ଓ ନିଷ୍କପଟୀ ବ୍ୟକ୍ତିଥିଲେ । ତାଙ୍କର କୌଣସି ଶତ୍ରୁ ନଥିଲେ । ସେ ଅଜାତଶତ୍ରୁ ଭଳି ଏକ ବ୍ୟକ୍ତିତ୍ୱ । ସେ ଅତି ଘନିଷ୍ଠ ଭାବେ ମୋତେ ଭଲ ପାଉଥିଲେ ଏବଂ ସାଂଗଠନିକ କାର୍ଯ୍ୟରେ ବହୁପ୍ରକାର ସାହାଯ୍ୟ କରୁଥିଲେ ଏବଂ ମୋ ଦ୍ୱାରା ଆୟୋଜିତ ମୋରଡ଼ା ଓ ଦେଉଳି କଂଗ୍ରେସ କର୍ମୀ ସମ୍ମିଳନୀରେ ଅତିଥି ଭାବରେ ଯୋଗ ଦେଇଥିଲେ । 1980 ମସିହା ପରଠାରୁ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ମୋର ତାଙ୍କ ସହ ଦେଖା ହୋଇନଥିଲା । ଜଣେ ସହକର୍ମୀ ଓ ନିଷ୍ଠାବାନ ବନ୍ଧୁ ଭାବେ ବିନାୟକ ବାବୁ ଚିରସ୍ମରଣୀୟ ହୋଇ ରହିବେ ।

## ହେ ନମସ୍ୟ ବିନାୟକ

ଡ: ପ୍ରସନ୍ନ ପାଟଶାଣୀ

ବାପା, ମା' ଦେଇଥିଲେ ଜନ୍ମରେ ତମ ନାଁ ବିନାୟକ ;
ହେ ବିଘ୍ନନାଶକ !
ଗୁଜରାଟ ଜଙ୍ଗଲରେ କେତେ ବାଧାଦେଇ,
ତୁମେ ଆସିଛ ସେପରି ଶିକ୍ଷକଟିଏ ହୋଇ,
ସବୁଠାରୁ ସର୍ବୋଚ୍ଚ ପଦରେ ଅଧିଷ୍ଠିତ ହେଲ,
ଓଡ଼ିଆ ଜାତିର ସ୍ୱାଭିମାନ ନେଇ ।

ଗଣେଶଙ୍କ ପେଟ ପରି ନ ଥିଲା ତମର ହୃଦର,
ଦେଖିନାହିଁ କେବେ ଅତୀ ଲୋକ, ରୋଗ ଜରଜର
ସଦା ଥିଲା ସୂକ୍ଷ୍ମ ତବ ଦୃଷ୍ଟି ହୋଇସ୍ୱ
ଯେତେ ଧନକ୍ଷେଲ ମଧ୍ୟ ସଂଗ୍ରହନାହିଁ କେବେ
ଜ୍ଞାନର ଭଣ୍ଡାର ।

ତମେ ସେହି ଦାମୀ, ଧନଂର ଘୃଣାହିଁ ମନରେ,
ତମେ ସେହି ମାମୀ, ଯୁଦ୍ଧରେ ଲୁହିଁ ଜୀବନ ସଂଗ୍ରାମରେ,
ବିଦ୍ୟାଭୂମିମ ହାତ ଯାଇ ନାହିଁ, ଏବି ଭୂମି ମନ ଯାଇନାହିଁ
ଏ ଜାତିର ମାନସ ପଟରେ, ତୁମେଡ ରହିଛ ଜାଣି ,
କାହୁ ତ ନେଇନାହିଁ, ଦେଇଗଲ ଯାହା
ଅତ ସାଧାସିଧା ତମ ବୃକ ଓ ଚଳଣି
ନେଇଥିଲା ଜନମନ ଜିଣି ।

ଏ ଯୁଗରେ ସ୍ୱବୃତ୍ତ ବିରଳ
ସ୍ୱଳ୍ପଯାଇଛ ଠିକ୍ ସମୟରେ
ଦେଶ ଏବେ ହେଲାଣି ଦୁର୍ବଳ ।

ବହ୍ମବେ ପୂର୍ଣ୍ଣ ବ୍ରହ୍ମପୁରେ, ଜନମିଥିଲ ଯନେ,
ବ୍ରହ୍ମଦ୍ବେଲ ସେଇ ଛାନ, ନଗାଢ଼ ଶିକ୍ଷକ ଜୀବନ,
ରଖିଥିଲ ତୁମର ସମ୍ମାନ,
କାହା ପେଟେ ଓଦା ଭନା,
ଏବେ ସେଇ ଶିକ୍ଷକଙ୍କ ମିଳେନ ଦରମା, ପେନ୍‌ସନ୍ ।

ଦୃଢ଼ ସେ ଅତମଧୁର, ଫେରଲ ଅତୀତ
ଅଜ୍ଞ ଆସେନାହିଁ ଜୀବନର କର୍ମଫଳ
କପିବଢ଼ ହୋଇ ବଢ଼େ ଇଉଦ୍ଧାସେ
ଓ୍ଵନମ ସେଇ ଔଦାର୍ଯ୍ୟ ନବଉଜଳର
ଏବେ ବ ଗାଁ ଗନ୍ଧଳ, ଲଙ୍ଗା ଗୁଳତଳେ
ନଗିଡ଼ିଲ ନଡ଼ାପାଣି ପିଇ ରହିଅଛ କହିଁ ।

ଗେମ କେବେ ଜୀବନର ଭୁଙ୍ଗି ଯନ୍ତ୍ରଣାହିଁ
ଅନ୍ୟାୟ ଓ ଅନାଚାର ଦେଶଚଳ ନସ୍ତମ
ଦେଖିବାକୁ ମିଳେନାହିଁ ଚମଠାରେ
ହେ ଦରଦୀ ମଣିଷ,
ତମ ନିଷ୍ଠା, ତମ ତ୍ୟାଗ
କହିଁ ରହିଅଛ ଯୁଗ ମୂକ ।

୬ ନୂଆପଲ୍ଲୀ
ଭୁବନେଶ୍ୱର-୧୬

# ବିନାୟକ ବାବୁଙ୍କ ସଂପର୍କରେ

**ଶ୍ରୀ ବ୍ରଜମୋହନ ମହାନ୍ତି,** ପୂର୍ବତନ ସାଂସଦ ସଦସ୍ୟ

1967ରୁ 1977 ଦଶ ବର୍ଷ ଓଡ଼ିଶା ଇତିହାସରେ ବିନାୟକ ବାବୁ ବିଭିନ୍ନ ଭାବରେ ପ୍ରଭାବିତ କରିଛନ୍ତି । ସେ ସମ୍ପର୍କରେ ସବିଶେଷ ବିବରଣୀ ଇତିହାସର ବିଷୟ-ବସ୍ତୁ । ମୁଁ ବିନାୟକ ବାବୁଙ୍କୁ ଇତିହାସର ଆବରଣରୁ ଉଦ୍ଧାର କରି ଜଣେ ରାଜନୈତିକ ନେତା ହିସାବରେ ଏଠାରେ ଚର୍ଚ୍ଚା କରୁଛି । ବିନାୟକ ବାବୁ ତା 29-12-1976ରେ ମୁଖ୍ୟମନ୍ତ୍ରୀ ହେଲେ ଏବଂ ସେ ମାତ୍ର 4ମାସ ମୁଖ୍ୟମନ୍ତ୍ରୀ ପଦରେ ରହିଲେ । ତା'ପୂର୍ବରୁ ନନ୍ଦିନୀ ଶତପଥୀଙ୍କ ମନ୍ତ୍ରୀମଣ୍ଡଳରେ ସେ ମନ୍ତ୍ରୀ ରହିଥିଲେ ।

ବିନାୟକ ବାବୁ ମୁଖ୍ୟମନ୍ତ୍ରୀ ହେବାପରେ ଶିକ୍ଷକମାନଙ୍କ ତରଫରୁ ତାଙ୍କୁ ସମ୍ବର୍ଦ୍ଧନା ଦିଆଗଲା । ସେତେବେଳେ ମୁଁ ବାଚସ୍ପତି ଥିଲି । ମୋତେ ମଧ୍ୟ ତାଙ୍କୁ ସମ୍ବର୍ଦ୍ଧନା ଜଣାଇବାର ସୁଯୋଗ ମିଳିଥିଲା । ବିନାୟକ ବାବୁ ଜଣେ ପ୍ରବୀଣ ଏବଂ ଆଦର୍ଶ ଶିକ୍ଷକ ଭାବରେ ପରିଚିତ ଥିଲେ ।

ମୋ ଭାଷଣରେ ମୁଁ କହିଥିଲି, "ରୋମ ସାମ୍ରାଜ୍ୟରେ ଜଣେ ବ୍ୟକ୍ତି 12ବର୍ଷ ଶିକ୍ଷକତା କରିବା ପରେ ତାଙ୍କ ନାମ ଭୋଟର ତାଲିକାରୁ କାଟି ଦିଆଯାଉଥିଲା" । ତାହାର କାରଣ ଥିଲା, ନୈତିକ ମୂଲ୍ୟବୋଧ । ସେମାନଙ୍କ ବିଶ୍ୱାସର, ସେମାନଙ୍କ ମନରେ ନୈତିକ ମୂଲ୍ୟବୋଧ ଏପରି ଭାବରେ ବସା ବାନ୍ଧି ଯାଇଥାଏ ଓ ବାସ୍ତବତାର ଅପ୍ରୀତିକର ନଗ୍ନତାଠାରୁ ଏପରି ବିଚ୍ଛିନ୍ନ ହୋଇଥା'ନ୍ତି ଯେ, ସେମାନଙ୍କ ପକ୍ଷରେ ପ୍ରାର୍ଥୀ ମନୋନୟନ କରିବା ସମ୍ଭବ ହୁଏ ନାହିଁ । କିନ୍ତୁ ବିନାୟକ ବାବୁ ସେ କାଳର ଶିକ୍ଷକ ନୁହଁନ୍ତି । ତାଙ୍କର ସମସାମୟିକ ଯୁକ୍ତରାଷ୍ଟ୍ର ଆମେରିକା ବିଶ୍ୱବିଦ୍ୟାଳୟର ଜଣେ ଶିକ୍ଷକ କିଶିଞ୍ଜର ଯୁକ୍ତରାଷ୍ଟ୍ର ଆମେରିକାର ରାଷ୍ଟ୍ରୀୟ ନୀତି ନିର୍ଦ୍ଧାରଣ କରିବାର ଦାୟିତ୍ୱରେ ରହି ବିଶ୍ୱର କୂଟନୀତି କ୍ଷେତ୍ରରେ ଅସାଧାରଣ ବିଚକ୍ଷଣତା ପ୍ରଦର୍ଶନ କରିଛନ୍ତି । ମୋର ବିଶ୍ୱାସ ବିନାୟକ ବାବୁ କର୍ମକୁଶଳତା ଓ ବିଚକ୍ଷଣତାର ସହିତ ଓଡ଼ିଶାର ଜନସାଧାରଣଙ୍କର ସେବା କରିବାକୁ ସକ୍ଷମ ହେବେ ।

ମନେପଡ଼ୁଛି, କେହି ତାଙ୍କ ନିକଟକୁ ଆସିଲେ ସେ ସହାନୁଭୂତିର ସହିତ ତାଙ୍କଠାରୁ ସବୁ ଶୁଣନ୍ତି ଏବଂ ତାଙ୍କ ବକ୍ତବ୍ୟର ଟିକନିଖି ବିବରଣୀ ତାଙ୍କର ଡାଏରୀରେ ଲିପିବଦ୍ଧ କରନ୍ତି । ସେ କାହାକୁ ଏକବେ କୌଣସି କାର୍ଯ୍ୟ ହୋଇପାରିବ ନାହିଁ ବୋଲି

କହନ୍ତୁ ନାହିଁ । ମୁଁ ତାଙ୍କୁ କହୁଥିଲି, "ଯଦି ତାଙ୍କର ମୋ ପୂର୍ବରୁ ମୃତ୍ୟୁ ଘଟେ, ତାଙ୍କର ଶୋକସଭାରେ ମୁଁ ଏ ଡ଼ାଏରୀଗୁଡ଼ିକ ରଖି କହିବି ଓଡ଼ିଶାର ଜନ ସାଧାରଣଙ୍କର ଦୁଃଖ ଓ ଯନ୍ତ୍ରଣାସବୁ ବିନାୟକ ବାବୁ ଏ ଡ଼ାଏରୀରେ ଲିପିବଦ୍ଧ କରି ଯାଇଛନ୍ତି ।" ସେ ସବୁ ଘଟଣା ମନେ ପଡ଼ିଲେ ଆଖିରେ ଲୁହ ଆସେ । ଆଜି ମନେହୁଏ, ମୁଁ ତାଙ୍କ ପ୍ରତି କେତେ ନିଷ୍ଠୁର ଥିଲି । ତାଙ୍କ ଓ ମୋ ମଧ୍ୟରେ ଏପରି ଘନିଷ୍ଠତା ଥିଲା ଯେ, ସେ ଏସବୁ କଥାକୁ ହାଲକା ଭାବରେ ନେଉଥିଲେ । ସେ କେତେ ସରଳ, କେତେ ଉଦାର ଓ ମାନବିକ ସ୍ୱଭାବସମ୍ପନ୍ନ ବ୍ୟକ୍ତି ଥିଲେ, ତାହା କଳ୍ପନା କରିହୁଏ ନାହିଁ । ପ୍ରତିଦିନ ସେ ଦକ୍ଷିଣ ଭାରତୀୟ ହୋଟେଲରୁ ତାଙ୍କର ମଧ୍ୟାହ୍ନ ଭୋଜନ ମଗାଇ ନିଅନ୍ତି । ଯେତେବେଳେ ସେ ତାଙ୍କର ମଧ୍ୟାହ୍ନ ଭୋଜନ ମଗାଇବେ ଏବଂ ଯଦି ମୋ ପାଇଁ ମଗାଇବେ, ତା'ହେଲେ ଖଣ୍ଡିଏ ମାଛ ସ୍ୱତନ୍ତ୍ର ଭାବରେ ମୋ ପାଇଁ ମଗାଇ ଥିବେ ।

ଓଡ଼ିଶାର ବିଖ୍ୟାତ କମ୍ୟୁନିଷ୍ଟ ନେତା ଶ୍ରୀ ବିଜୟ ଦାସଙ୍କ ସହିତ ସେ ଘନିଷ୍ଠ ଭାବରେ ମିଶିଥିଲେ ଏବଂ ସେହି ଘନିଷ୍ଠତା ମଧ୍ୟରୁ ଜନ୍ମ ନେଇଥିଲା, ବିନାୟକ ବାବୁଙ୍କର ସମାଜକୁ ପରିବର୍ତ୍ତନ କରିବାର ସଂକଳ୍ପ ଏବଂ ସମାଜରେ ଥିବାବାଲା ଲୋକଙ୍କର ମାଆନ୍ତିଆ ମନୋଭାବ ଲୋପକରି ତଳଶ୍ରେଣୀର ଲୋକଙ୍କୁ ସମାନ ସ୍ତରକୁ ଆଣିବାର ଲକ୍ଷ୍ୟ । ବିନାୟକ ବାବୁଙ୍କର ପ୍ରଗତିଶୀଳ ଚରିତ୍ର ବିଜୟ ବାବୁଙ୍କ ସହିତ ସମ୍ପର୍କରେ ଆସି ଶାଣିତ ହୋଇଯାଇ-ଥିଲା । ତାଙ୍କୁ ଯେତେବେଳେ ବିଜୁ ପଟ୍ଟନାୟକ କଂଗ୍ରେସକୁ ବ୍ରହ୍ମପୁରରୁ ପ୍ରାର୍ଥୀ ହେବା ନିମନ୍ତେ ପ୍ରବର୍ତ୍ତାଇଥିଲେ, ସେ ସିଧାସଳଖ କହିଥିଲେ ଯେ ମୁଁ ନିର୍ବାଚନରେ ପଶିଲେ ମୋ ଭୁକଶଟି ଭୁଲିଯିବ ଏବଂ ହାତଗଲେ ତାକୁ କପର........ ।

ବିନାୟକ ବାବୁ ଓ ମୁଁ ଉଭୟ 1967 ମସିହାରେ ବିଧାନସଭାକୁ ପ୍ରଥମେ ନିର୍ବାଚିତ ହୋଇଥିଲୁ । ସେ ନିର୍ବାଚନ ସାରା ଦେଶରେ କଂଗ୍ରେସ ପ୍ରତି ବିପର୍ଯ୍ୟୟ ଆଣିଥିଲା । ଓଡ଼ିଶା ବିଧାନସଭାରେ କଂଗ୍ରେସର ସଦସ୍ୟ ସଂଖ୍ୟା ମାତ୍ର 30କୁ ଖସି ଆସିଥିଲା । ବିଜୁ ବାବୁ, ନୀଳମଣିବାବୁ ପ୍ରଭୃତି ପୁରୁଣା ନେତାମାନେ ବିଧାନ ସଭାରେ ନ ଥାନ୍ତି । ସେତେବେଳେ ଦେଶରେ ଏକ ନୂଆ ଯୁଗ ଜନ୍ମ ନେଉଥାଏ । କଂଗ୍ରେସ ବହୁ ରାଜ୍ୟରେ ସଂଖ୍ୟା ଲଘିଷ୍ଠ ସ୍ଥିତିକୁ ଚାଲି ଆସିଥିଲା । କଂଗ୍ରେସର ଏକଚାଟିଆ କ୍ଷମତାରେ ରହିବା ସମ୍ଭବ ହୋଇ ନଥିଲା । ଊଣା ଅଧିକେ ଦେଶର ସବୁ ମୁଖ୍ୟଦଳ କ୍ଷମତାରେ ଅଂଶୀଦାର ହୋଇଥା'ନ୍ତି । ଅନ୍ଧଭାବରେ କଂଗ୍ରେସକୁ ବିରୋଧ କରିବା ମତବାଦ ଜନ୍ମ ନେଉଥାଏ । ଡଃ ରାମ ମନୋହର ଲୋହିଆ କ୍ରୋଧି ଯୁବକ ଭାବରେ ନୁହଁନ୍ତି, ଜାତୀୟ କ୍ଷେତ୍ରରେ କଂଗ୍ରେସ ବିରୋଧୀ ପ୍ରଗତିଶୀଳ ରାଜନୈତିକ ଦଳଗୁଡ଼ିକ ଦିଗ୍‌ଦର୍ଶନ ଦେଉଥା'ନ୍ତି ।

ଶ୍ରୀ ଲୋହିଆ ଜଣେ ଅସଲ ଗଣତନ୍ତ୍ର ପ୍ରେମୀ ଭାବରେ ପରିଚିତ । ସେ ଚାହୁଁଥିଲେ, ଗଣତାନ୍ତ୍ରିକ ବ୍ୟବସ୍ଥା ଭିତରେ ପ୍ରଶାସନିକ ଶକ୍ତିକୁ ଲୋକଶକ୍ତି ନିୟନ୍ତ୍ରଣ କରୁ । ସେଥିପାଇଁ ସେ ଯେଉଁ ପନ୍ଥା ଉଦ୍‌ଭବନ କରିଥିଲେ, ତାହାହେଲା ଜେଲ୍, ଫାଉଡ଼ା ଓ ଭୋଟ । ଏହି ତିନେଟିର ସାହାଯ୍ୟରେ ସେ ଶାସନରେ ଲୋକଶକ୍ତି ପ୍ରତିଷ୍ଠା କରାଯାଇ ପାରିବ ବୋଲି ବିଶ୍ୱାସ କରୁଥିଲେ । ସେ କହୁଥିଲେ, "ରାଜରାସ୍ତାରେ ଯେପରି ବିଶୃଖଂଳା ଓ ଗୋଳମାଳିଆ ପରିସ୍ଥିତି ରହିଛି, ସଂସଦରେ ମଧ୍ୟ ତାହାର ପ୍ରତିଫଳନ ଘଟିବା ଉଚିତ । ସଂସଦ ଭିତରେ ଯେଉଁ ପରଂପରା, ସଂସଦ ଚାଲିବାର ଯେଉଁ ଶୃଖଂଳା ତାହାର କ'ଣ ଆବଶ୍ୟକତା ଅଛି ?" ସେ ତାତ୍ତ୍ୱିକ ରାଜନୀତିକୁ ହସରେ ଉଡ଼ାଇ ଦେଉଥିଲେ ଏବଂ ବାସ୍ତବ ପରିସ୍ଥିତି ସହିତ ଖାପଖାଇବା ଭଳି ସଂସଦରେ ସଦସ୍ୟ ମାନଙ୍କର ଆଚରଣ ହେବା ଉଚିତ ବୋଲି ମତ ଦେଉଥିଲେ । ସେ ଚାହୁଁଥିଲେ ଯନ୍ତ୍ରଣାଗ୍ରସ୍ତ ଏ ସମାଜର ବିଭିନ୍ନ ଦିଗ ସଂସଦରେ ପ୍ରତିଫଳିତ ହେଉ । କିନ୍ତୁ ଡ଼ଃ ଲୋହିଆ ଯେଉଁ ଢଙ୍ଗରେ ସଂସଦ ଓ ବିଧାନସଭା ପରିଚାଳିତ ହେବା ଚାହିଁଥିଲେ, ତାହା ହୋଇ ପାରି ନ ଥିଲା ଯଦିଓ କେତେକ ପରିମାଣରେ ସଂସଦ ଓ ବିଧାନ ସଭାରେ ବିଭିନ୍ନ ପ୍ରକାର ବିଶୃଙ୍ଖଳା ଆଚରଣ ଦେଖାଦେଇଥିଲା ।

ସେତେବେଳେ ସଦାଶିବ ତ୍ରିପାଠୀ କଂଗ୍ରେସଦଳର ନେତା ଥାଆନ୍ତି । ପୂର୍ବ ସରକାରର ମନ୍ତ୍ରୀମାନଙ୍କର ଇସ୍ତଫାକୁ କେନ୍ଦ୍ରକରି କଂଗ୍ରେସର ତୁଙ୍ଗ ନେତାମାନଙ୍କ ମଧ୍ୟରେ ମତଭେଦ ଥାଏ । ସଦାଶିବ ତ୍ରିପାଠୀ ଓ କଂଗ୍ରେସ ସଭାପତି ବିଜୟ ପାଣିଙ୍କର ଗୋଟିଏ ଗୋଷ୍ଠୀ ସୃଷ୍ଟି ହୋଇଥିଲା । ବିଜୁବାବୁ ଓ ବିଜୟ ପାଣି କଂଗ୍ରେସ ପରାଜୟ ନିମିତ୍ତ ଦାୟୀ ବୋଲି ପ୍ରଶ୍ନ ଉଠୁଥାଏ । କିନ୍ତୁ ବିଜୁ ପଟ୍ଟନାୟକ କଂଗ୍ରେସର ତୁଙ୍ଗ ନେତା ଭାବରେ ଶ୍ରଦ୍ଧା ଓ ସମ୍ମାନ ପାଉଥା'ନ୍ତି । ସେହି ସମୟରେ ବିନାୟକ ବାବୁ ଉପନେତା ଓ ମୁଁ ସଚେତକ ଭାବରେ ମନୋନୀତ ହୋଇଥିଲୁ । ବିଧାନସଭାରେ ବିନାୟକ ବାବୁ କଂଗ୍ରେସ ଦଳର ନୀତି ଓ କାର୍ଯ୍ୟକ୍ରମକୁ ପ୍ରାଂଜଳ ଭାବରେ ଉପସ୍ଥାପନ କରୁଥା'ନ୍ତି । ସେ କେତେବେଳେ ଅସୌଜନ୍ୟ ବ୍ୟବହାର କରିବା କିମ୍ବା ଶୃଙ୍ଖଳା ବହିର୍ଭୂତ କୌଣସି ଆଚରଣ ପ୍ରଦର୍ଶନ କରିବା ଦେଖାଯାଇ ନ ଥିଲା । ତାଙ୍କର ନମ୍ରତା ଓ ସରଳ ବ୍ୟବହାର ତାଙ୍କ ପ୍ରତି ସମସ୍ତଙ୍କୁ ଆକୃଷ୍ଟ କରୁଥାଏ ।

ସ୍ୱତନ୍ତ୍ର ଜନକଂଗ୍ରେସ ମନ୍ତ୍ରୀମଣ୍ଡଳ କଂଗ୍ରେସକୁ ଆକ୍ରମଣ କରିବା ନିମିତ୍ତ ପୂର୍ବ ମନ୍ତ୍ରୀମଣ୍ଡଳ ଓ ବିଜୁବାବୁଙ୍କର ଦୁର୍ନୀତିକୁ ଆୟୁଧ ଭାବରେ ବ୍ୟବହାର କରୁଥା'ନ୍ତି । ପ୍ରତିଦିନ ନୂଆ ନୂଆ ଦୁର୍ନୀତିର ଅଭିଯୋଗ ଆମ୍ଭମାନଙ୍କୁ ଇତସ୍ତତଃ କରୁଥାଏ । କିନ୍ତୁ ବିଜୁବାବୁଙ୍କ ପ୍ରତି ଶ୍ରଦ୍ଧା ଓ ସମ୍ମାନରେ କୌଣସି ଆଂଚ ଆସୁ ନଥାଏ । ଦୁର୍ନୀତି ଅଭିଯୋଗ ପାଇଁ "ଖାନ୍ନା କମିଶନ୍" ବସିଥିଲା । ବିଧାନ ସଭାରେ କଂଗ୍ରେସ ନେତା ବିଜୁବାବୁ ଓ

ଅନ୍ୟ ପୂର୍ବତନ ମନ୍ତ୍ରୀମାନଙ୍କୁ ଆମେ ସୁରକ୍ଷା ଦେଇଥିଲୁ । ମୁଁ ତ "ଖାନ୍ନା କମିଶନ୍" ରେ କଂଗ୍ରେସ ତରଫରୁ ଓକିଲ ଥିଲି । ପବିତ୍ର ମୋହନ ପ୍ରଧାନ ସେତେବେଳେ ନିର୍ମଳ ଶାସନର ଧ୍ୱନି ଉଠାଉ ଥା'ନ୍ତି । ପବିତ୍ର ବାବୁ ଦୀର୍ଘ ଭାଷଣ ଦେବାରେ ଅଭ୍ୟସ୍ତ । ସଭାରେ ଗୁରି ପାଞ୍ଚଜଣ ଲୋକଥିଲେ ମଧ୍ୟ ତାଙ୍କର ବକ୍ତୃତା ବନ୍ଦ ହୁଏ ନାହିଁ । ଦୁର୍ନୀତି ବିରୁଦ୍ଧରେ ତାଙ୍କର ସ୍ୱର ଉଦ୍ଦାତ୍ତ ।

କିନ୍ତୁ "ଖାନ୍ନା କମିଶନ"ଙ୍କ ରାୟ ପରେ ପରିସ୍ଥିତିର ପରିବର୍ତ୍ତନ ଘଟିଲା । ଯେତେ ଅଭିଯୋଗ କରାଯାଇଥିଲା, ଗୋଟିଏ ହେଲେ ଅଭିଯୋଗ ସାବ୍ୟସ୍ତ ହୋଇପାରିଲା ନାହିଁ । କେବଳ ବିଜୁବାବୁ କ.ରଖାନାର ଜମିକିଣାରେ ଅସଂଗତ କାର୍ଯ୍ୟ କରିଛନ୍ତି ବୋଲି ଖାନ୍ନା ମନ୍ତବ୍ୟ ଦେଲେ । ଏହା ଭିତରେ ପବିତ୍ର ବାବୁଙ୍କର ନିର୍ମଳ ଶାସନ ପ୍ରତିଷ୍ଠା କରିବାର ସଂକଳ୍ପ ବିଫଳ ହେଲାଣି । ଡ଼ଃ ହରେକୃଷ୍ଣ ମହତାବ, ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ନେତୃତ୍ୱ ପ୍ରତି ଅସନ୍ତୁଷ୍ଟ ଭାବ ଜନ କଂଗ୍ରେସ ଦଳ ମଧ୍ୟରେ ସୃଷ୍ଟି କରୁଥା'ନ୍ତି । ଜନ କଂଗ୍ରେସର କର୍ମୀ ଓ ନେତାମାନେ କଂଗ୍ରେସ ଦଳରେ ରହି ରାଜା, ରାଜୁଡ଼ାଙ୍କ ବିରୁଦ୍ଧରେ ସଂଗ୍ରାମ ଚଳାଇଥିଲେ । କିନ୍ତୁ କ୍ଷମତାର ଲାଳସାରେ ରାଜେନ୍ଦ୍ର ନାରାୟଣ ସିଂଦେଓଙ୍କୁ ନେତା ବୋଲି ମାନିନେଇଥିଲେ ମଧ୍ୟ ତାହା କେତେଦିନ ଚାଲନ୍ତା ?

ଭାରତବର୍ଷର ରାଜନୀତିରେ ଏହି ସମୟରେ ପରିବର୍ତ୍ତନ ଦେଖାଦେଉ ଥାଏ । ଶ୍ରୀମତୀ ଇନ୍ଦିରା ଗାନ୍ଧିଙ୍କର, କଂଗ୍ରେସର ପୁରୁଖା ନେତାମାନଙ୍କର ପରାମର୍ଶରେ କାର୍ଯ୍ୟ କରିବା ସମ୍ଭବ, ହେଉ ନ ଥାଏ । ଏ ସମସ୍ୟା ନିର୍ଦ୍ଦିଷ୍ଟ ରୂପ ନେଇଥିଲା ରାଷ୍ଟ୍ରପତି ନିର୍ବାଚନ ସମୟରେ । ଶ୍ରୀ ସଂଜୀବ ରେଡ୍ଡୀ କଂଗ୍ରେସର ଦଳୀୟ ପ୍ରାର୍ଥୀ ହୋଇଥାନ୍ତି । ଶ୍ରୀମତୀ ଗାନ୍ଧୀ ବିବେକାନୁମୋଦିତ ମତଦାନ ଉପରେ ନିର୍ଭର କରି ଭି. ଭି. ଗିରିଙ୍କୁ ପ୍ରାର୍ଥୀ କରାଇ ଥାନ୍ତି । ଭି. ଭି. ଗିରି ନିର୍ବାଚିତ ହେଲେ । ପୁରୁଣା କଂଗ୍ରେସ ନେତା ମାନଙ୍କର ପ୍ରଭାବ କମିଗଲା । ଓଡ଼ିଶାରେ ବିଜୁବାବୁ, ନୀଳମଣି ବାବୁଙ୍କର ରେଡ୍ଡୀଙ୍କ ସପକ୍ଷରେ ସମସ୍ତ ଚେଷ୍ଟା ସତ୍ତ୍ୱେ ଭି. ଭି. ଗିରି ଏଠାରେ ଅଧିକ ଭୋଟ ପାଇଥିଲେ । ବିନାୟକ ବାବୁଙ୍କ ନେତୃତ୍ୱରେ ଏବଂ ଶ୍ରୀମତୀ ନନ୍ଦିନୀ ଦେବୀଙ୍କର ପରାମର୍ଶରେ ସେତେବେଳେ ଇନ୍ଦିରା ଗୋଷ୍ଠୀ କଂଗ୍ରେସ ଏଠାରେ କାର୍ଯ୍ୟ କରୁଥିଲେ । ବିରେନ୍ ବାବୁ ଗୋପନୀୟ ଭାବରେ ଇନ୍ଦିରା ଗାନ୍ଧିଙ୍କୁ ସମର୍ଥନ କରୁଥା'ନ୍ତି । ନିର୍ବାଚନ ଠିକ ସରିବାପରେ ସେ ଗୋଟିଏ ତାରବାର୍ତ୍ତା ପଠାଇ ଇନ୍ଦିରା ଗାନ୍ଧୀଙ୍କୁ ଜଣାଇ ଦେଇଥିଲେ ଯେ, ବିଜୁବାବୁ, ନୀଳମଣୀବାବୁ ଓ ସେ ନିଜେ ଚେଷ୍ଟାକରି ଗିରିଙ୍କୁ ଅଧିକ ଭୋଟ କରାଇ ଦେଇଛନ୍ତି । ଆମେ ଆଶ୍ଚର୍ଯ୍ୟ ହୋଇଥିଲୁ । କିନ୍ତୁ ଏପରି କରିବାର କାରଣ ଥିଲା ଯେ, ସମସ୍ତ କଂଗ୍ରେସ ଲୋକେ ଶ୍ରୀମତୀ ଗାନ୍ଧୀଙ୍କ ନେତୃତ୍ୱରେ ଓଡ଼ିଶାରେ କାର୍ଯ୍ୟ କରନ୍ତୁ । କଂଗ୍ରେସରେ ଏକତା ରକ୍ଷାକରିବା ନିମିତ୍ତ ବିଜୁବାବୁ, ନୀଳମଣୀବାବୁ, ବିନାୟକବାବୁ ଏକତ୍ରିତ ହୋଇ କେତେକ ଜିଲ୍ଲାରେ ଭାଷଣ

ଦେଇଥିଲେ । କିନ୍ତୁ ଅବଶେଷରେ କଂଗ୍ରେସ ବିଭାଜନ ହୋଇଗଲା । ସ୍ୱରାଜ ଆଶ୍ରମରେ ଆମ୍ଭେ ଯେତେବେଳେ କଂଗ୍ରେସ ଛାଡ଼ି ଆସିଲୁ, ସେତେବେଳେ ଆମ ସହିତ ଶ୍ରୀମତୀ ନନ୍ଦିନୀ ଶତପଥୀ, ବିନାୟକ ଆଚାର୍ଯ୍ୟ, ବନମାଳୀବାବୁ, ଭାଗୀରଥି ଗମାଙ୍ଗୋ, ଶ୍ୟାମ ସୁନ୍ଦର ମହାପାତ୍ର ଓ ପ୍ରଦ୍ୟୁମ୍ନ ବଳ ପ୍ରଭୃତି ଅଳ୍ପ ସଂଖ୍ୟକ ଲୋକ ଥିଲେ । ଯୁବ ନେତୃତ୍ୱ ସେତେବେଳେ ଶ୍ରୀମତୀ ଚନ୍ଦ୍ରିକା ମହାପାତ୍ର, ଶ୍ରୀ ପ୍ରଦ୍ୟୁମ୍ନ ବଳ, ଶ୍ରୀ ଅକ୍ଷୟ ଆଚାର୍ଯ୍ୟ, ଶ୍ରୀ ଅକ୍ଷୟ ପଣ୍ଡା, ଶ୍ରୀ ଅନ୍ନଦା ରାୟ, ଶ୍ରୀ କୈଳାସ ଆଚାର୍ଯ୍ୟ ପ୍ରମୁଖ ନେଇ ଥା'ନ୍ତି । ଆମେ ଇନ୍ଦିରା କଂଗ୍ରେସ ଗଢି ବିନାୟକବାବୁଙ୍କୁ ସଭାପତି କରିଦେଲୁ । ବମ୍ବେ କଂଗ୍ରେସ ପର୍ଯ୍ୟନ୍ତ ବିଜୁବାବୁ କଂଗ୍ରେସରେ ଥିଲେ । କିନ୍ତୁ ସେ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଦସ୍ୟ ନହୋଇ ପାରି ଶ୍ରୀମତୀ ନନ୍ଦିନୀ ଶତପଥୀ ହେବାରେ ସେ କଂଗ୍ରେସ ଛାଡ଼ିଲେ । ବିଜୁବାବୁ ଓ ଇନ୍ଦିରା ଗାନ୍ଧୀଙ୍କ ମଧ୍ୟରେ ସଦ୍‌ଭାବ ନ ଥିଲା । ଏ କଥା ପଦାରେ ପଡ଼ିଗଲା । ଇନ୍ଦିରା ଗାନ୍ଧୀ ପ୍ରଧାନମନ୍ତ୍ରୀ ହେଲାବେଳେ ଓଡ଼ିଶାର ପାର୍ଲାମେଣ୍ଟ ସଦସ୍ୟ ମାନଙ୍କ ମଧ୍ୟରୁ କେବଳ ନନ୍ଦିନୀ ଶତପଥୀ ବିଜୁବାବୁଙ୍କଠାରୁ ଅନୁମତି ନେଇ ତାଙ୍କୁ ସମର୍ଥନ କରିଥିଲେ ଅନ୍ୟ ସମସ୍ତେ ବିଜୁବାବୁଙ୍କ କଥାରେ ମୋରାରଜୀ ଭାଇଙ୍କୁ ସମର୍ଥନ କଲେ ।

ପୁଣି ଅନ୍ୟ ଏକ ଅଧ୍ୟାୟ ଆରମ୍ଭ ହେଲା 1971 ମସିହାରେ । ସେତେବେଳକୁ ଭାରତବର୍ଷର ଜନସାଧାରଣ ଅକୁଣ୍ଠିତ ଭାବରେ ଇନ୍ଦିରାଜୀଙ୍କୁ ସମର୍ଥନ କରୁଥା'ନ୍ତି । ବିଶେଷ କରି ତାଙ୍କର ବ୍ୟାଙ୍କ ଜାତୀୟକରଣ ପ୍ରଭୃତି କାର୍ଯ୍ୟକ୍ରମ ଲୋକଙ୍କୁ ଆକୃଷ୍ଟ କରୁଥାଏ । ମହତାବବାବୁ ଓ ଶ୍ରୀ ବନମାଳୀ ପଟ୍ଟନାୟକ ମଧ୍ୟ ଆମ୍ଭମାନଙ୍କୁ ସହଯୋଗ କରୁଥା'ନ୍ତି । ସେହି ନିର୍ବାଚନରେ ଆମ କଂଗ୍ରେସ ଲୋକସଭାକୁ ଆସିଲା 21ରୁ 16 ଓ ବିଧାନସଭାରେ ଆମର 51 ଜଣ ସଦସ ନିର୍ବାଚିତ ହେଲେ । ଆଉ ମଧ୍ୟ ସ୍ୱତନ୍ତ୍ର 36, ଉତ୍କଳ କଂଗ୍ରେସ 33, ପ୍ରଜା ସମାଜବାଦୀ ଦଳ 4, କମ୍ୟୁନିଷ୍ଟ ଦଳ 4, କମ୍ୟୁନିଷ୍ଟ ମାର୍କସିଷ୍ଟ 2, ଭାରତୀୟ ଜାତୀୟ କଂଗ୍ରେସ 1, ଜନ କଂଗ୍ରେସ 1, ଝାଡ଼ଖଣ୍ଡ 4 ଏବଂ ସ୍ୱାଧୀନ ପ୍ରାର୍ଥୀ ଭାବରେ 4ଜଣ ସଦସ୍ୟ ନିର୍ବାଚିତ ହୋଇଥିଲେ । କଂଗ୍ରେସ, କମ୍ୟୁନିଷ୍ଟମାନଙ୍କର ପ୍ରତ୍ୟକ୍ଷ ଭାବରେ ସହଯୋଗ ପାଉଥାଏ । କିନ୍ତୁ କମ୍ୟୁନିଷ୍ଟ ମାର୍କସିଷ୍ଟମାନେ କଂଗ୍ରେସ, ବିରୁଦ୍ଧରେ ଥିଲେ । ସେତେବେଳେ ପୁରୁଣା କଂଗ୍ରେସର ଯେଉଁ ଯୋଡି ବଳଦ ନିର୍ବାଚନ ଚିହ୍ନ ଥିଲା. କଂଗ୍ରେସ ବିଭାଜନ ପରେ ତାହା ବିବାଦୀୟ ହୋଇଲା ଅବଶ୍ୟ , ଯୋଡ଼ି ବଳଦ ଇନ୍ଦିରା କଂଗ୍ରେସକୁ ପରେ ଆସିଲା । ସେହି ସମୟରେ ଶ୍ରୀମତୀ ଗାନ୍ଧୀ ଗାଈ ବାଛୁରୀ ଚିହ୍ନ ମାଗିଲେ ଓ ପାଇଲେ ମଧ୍ୟ । ସେତେବେଳେ ମାର୍କସିଷ୍ଟ ବଙ୍ଗ ପ୍ରଦେଶରେ "ନିର୍ବାଚନ ବୋଲି" ରଚନା କରିଥିଲେ—"ଦିଲ୍ଲୀ ଥେକେ, ଏସେଛେ ଗାଭ, ସଙ୍ଗେ ବାଛୁରୀ ସି. ପି. ଆଇ" । ପରବର୍ତ୍ତୀ ସମୟରେ ଯୋଡ଼ିବଳଦ ମଧ୍ୟ ଇନ୍ଦିରା କଂଗ୍ରେସକୁ ମିଳିଲା, କିନ୍ତୁ କଂଗ୍ରେସ ନିର୍ବାଚନ ଚିହ୍ନ ଭାବରେ ବ୍ୟବହାର କରାଗଲା ନାହିଁ ।

ସେତେବେଳେ କଂଗ୍ରେସଦଳର ନେତା ନିର୍ବାଚନ ସଂକଟ ଦେଖା ଦେଇଥାଏ । ମହତାବବାବୁ, ବିନାୟକ ବାବୁ ଓ ମୁଁ ପ୍ରାର୍ଥୀ ଥିଲୁ । ମହତାବବାବୁଙ୍କୁ ନନ୍ଦନୀ ଦେବୀ ସମର୍ଥନ କରୁଥିଲେ । ମହତାବବାବୁ ନିର୍ବାଚିତ ହେଲେ । ମୁଁ ମାତ୍ର ଖଣ୍ଡିଏ ଭୋଟ ପାଇଥିଲି । ମୁଁ ସେତେବେଳେ ମହତାବବାବୁଙ୍କୁ ବିରୋଧ କରୁଛି ବୋଲି ଦେଖାଇବାକୁ ପ୍ରାର୍ଥୀ ହୋଇଥିଲି । ମହତାବବାବୁ ନିର୍ବାଚିତ ହେବାପରେ ବିନାୟକବାବୁଙ୍କୁ ଉପନେତା ଓ ମୋତେ ସେକ୍ରେଟାରୀ ମନୋନୟନ କଲେ । ବିନାୟକବାବୁ ଉପନେତା ହେବାକୁ ମନା କରିଦେଲେ । ବୈଠକ ଚାଲିଥାଏ । ସେ ସମୟରେ କଂଗ୍ରେସରେ ସଂକଟ ସୃଷ୍ଟି କରିବା ପାଇଁ କେହି ଚାହୁଁ ନ ଥିଲେ । ବିନାୟକବାବୁଙ୍କ ସହଯୋଗ ନ ରହିଲେ ବିଧାନ ସଭାରେ ଓ ରାଜ୍ୟରେ କଂଗ୍ରେସର ଯେଉଁ ନୂତନ ଚରିତ୍ର ସୃଷ୍ଟି ହୋଇଥିଲା, ତାହା ନଷ୍ଟ ହୋଇଯିବ ବୋଲି ଆଶଙ୍କା ଥିଲା । ତାହାପରେ ମୁଁ ବିନାୟକବାବୁଙ୍କୁ ପ୍ରବର୍ତ୍ତାଇବାପରେ ସେ ସମ୍ମତ ହେଲେ । କଂଗ୍ରେସର ମହାନ ପରଂପରା ପ୍ରତି ସେ ଦୃଷ୍ଟିରେ ରଖି ରାଜି ହୋଇଥିଲେ । ଭାରତବର୍ଷର ଜଣେ ବିଶିଷ୍ଟ ରାଜନୀତିଜ୍ଞଙ୍କ ସହିତ ବିନାୟକବାବୁ ଓ ମୁଁ କାର୍ଯ୍ୟ କରିବାର ସୁଯୋଗ ପାଇଥିଲୁ । ସେତେବେଳେ ସ୍ୱତନ୍ତ୍ର-ଉତ୍କଳ କଂଗ୍ରେସ ଦଳ ମିଶି ବିଶ୍ୱନାଥ ଦାସଙ୍କୁ ତା 3-4-1971 ରିଖ ନେତା ନିର୍ବାଚିତ କଲେ । ତାହାପରେ ସେହି ବର୍ଷ ଓଡ଼ିଶାରେ ନାହିଁ ନ ଥିବା ବନ୍ୟା । ବନ୍ୟାଦୁର୍ଗତ ଲୋକଙ୍କୁ ସାହାଯ୍ୟ ଓ ସହାନଭୂତି ଦେଖାଇବାରେ ବିଶ୍ୱନାଥ ଦାସଙ୍କ ସରକାର ବିଫଳ ହେଲେ । ତେଣୁ ଏ ସରକାର ବିରୁଦ୍ଧରେ କମ୍ୟୁନିଷ୍ଟ ସୋସାଲିଷ୍ଟ ଦଳ ସହିତ ସହଯୋଗ କରି ଆମେ ଭୁବନେଶ୍ୱରରେ ଗଣ ବିକ୍ଷୋଭର ଆୟୋଜନ କରିଥିଲୁ । ସେତେବେଳେ ମୁଁ କଂଗ୍ରେସର ସଭାପତି ଥାଏ । ବିଜୁବାବୁ 1971 ମସିହା ନିର୍ବାଚନରେ ବହୁ ଭୋଟରେ ପରାଜିତ ହୋଇଥିଲେ । ସେତେବେଳକୁ ସେ ରାଜନଗରରୁ ବିଜୟୀ ହୋଇ ବିଧାନ ସଭାରେ ସଦସ୍ୟ ଥାଆନ୍ତି । ଏ ବିକ୍ଷୋଭର ନେତୃତ୍ୱ କଂଗ୍ରେସ ତରଫରୁ ମୁଁ ଏବଂ ବିନାୟକବାବୁ ନେଇଥାଉ । କମ୍ୟୁନିଷ୍ଟ ଦଳ ତରଫରୁ ଶ୍ରୀ ଦୁର୍ଗାଚରଣ ମହାନ୍ତି ଓ ସୋସାଲିଷ୍ଟ ଦଳର ନେତାମାନେ ଏଥିରେ ଅଗ୍ରଣୀ ହୋଇଥାଆନ୍ତି । ଅଉ ମଧ୍ୟ ଡ଼ଃ ହରେକୃଷ୍ଣ ମହତାବ ଓ ଶ୍ରୀ ବନମାଳୀ ପଟ୍ଟନାୟକ ଏଥିରେ ଭାଗ ନେଇଥାଆନ୍ତି । ଡ଼ଃ ମହତାବ ଲୁହବୁହା ଗ୍ୟାସ ପ୍ରୟୋଗକୁ ରୋକିବା ନିମିତ୍ତ ସାଥିରେ ଓଦାକନା ଆଣିଥାଆନ୍ତି ।

ଏ ବିକ୍ଷୋଭରେ ନାହିଁ ନଥିବା ଘଟଣା ଘଟିଗଲା । ଶହ ଶହ ବିକ୍ଷୋଭକାରୀ ପୋଲିସ ଲାଠିରେ ଆହତ ହୋଇଥିଲେ । ମୁଁ, ବିନାୟକବାବୁ, ବନମାଳୀ ପଟ୍ଟନାୟକ ପ୍ରମୁଖ ବହୁ ବ୍ୟକ୍ତି ଗୁରୁତର ଭାବେ ଆହତ ହୋଇଥିଲୁ । ମୋତେ ଆହତ ଅବସ୍ଥାରେ ବିଧାନ ସଭା ସମ୍ମୁଖରେ ଗୋଟିଏ ଆମ୍ବୁଲାନ୍ସରେ ରଖାଯାଇଥିଲା । ବିଧାନ ସଭାରେ କଂଗ୍ରେସ ଦଳର ସଦସ୍ୟ ଶ୍ରୀ ଶ୍ରୀବଲ୍ଲଭ ପାଣିଗ୍ରାହୀ, ଶ୍ରୀ ପ୍ରଫୁଲ୍ଲ ଘଡାଇ ପ୍ରମୁଖ କେତେ

ସଦସ୍ୟ ଉତ୍ତେଜିତ ହୋଇ ମୋତେ ବିଧାନ ସଭା ଭିତରରୁ ଟେକିନେଲେ । ଉତ୍ତେଜନା ବଶତଃ ମୁଖ୍ୟମନ୍ତ୍ରୀ ଦାସଙ୍କ ପ୍ରତି ଅସୌଜନ୍ୟ ବ୍ୟବହାର କଲେ । ଆମ ସମସ୍ତଙ୍କୁ ଡାକ୍ତରଖାନାକୁ ନିଆଗଲା । ମୋତେ ସେହିଠାରୁ ପୁଣି ପରୀ ଜେଲକୁ ପଠାଯାଇଥିଲ ।

ଡାକ୍ତରଖାନାରେ ବିଜୁବାବୁ ଆମ୍ଭମାନଙ୍କୁ ଦେଖିବାକୁ ଆସି ଅପମାନିତ ହୋଇଥିଲେ । ନୀଳମଣୀବାବୁ ସେତେବେଳେ ସ୍ୱରାଷ୍ଟ୍ର ମନ୍ତ୍ରୀ ଥିଲେ । ସେ ଏହି ଘଟଣାରେ ବିବ୍ରତ ହୋଇପଡ଼ିଥିଲେ । ସେତେବେଳେ ଆମ ସମସ୍ତଙ୍କ ଭିତରେ କଂଗ୍ରେସ ଚରିତ୍ର ଓ କଂଗ୍ରେସ ଭାଇଚେରିଆ ଭାବ ଜାଗ୍ରତ ଥିଲ । ନୀଳମଣୀବାବୁ ମୋତେ କହୁଥାନ୍ତି ଯେ, ବିକ୍ଷୋଭ ଏହି ରାସ୍ତାରେ ଗଲେ ପୋଲିସ ପ୍ରତିବନ୍ଧକ ସୃଷ୍ଟି କରିବ ନାହିଁ । ଶାନ୍ତିପୂର୍ଣ୍ଣଭାବରେ ବିକ୍ଷୋଭ ସମାପ୍ତ ହେବ । ମହତାବବାବୁ ମୋତେ ଉପଦେଶ ଦେଉଥାନ୍ତି ବିକ୍ଷୋଭ ଆମିଷ ନା ନିରାମିଷ ହେବ । ନିରାମିଷ ଅର୍ଥ ଶାନ୍ତିପୂର୍ଣ୍ଣ, ଆମିଷ ଅର୍ଥ ପୋଲିସକୁ ସିଧାସଳଖ ସାମନା କରିବା ଓ ଲାଠି, ଲୁହବୁହା ଗ୍ୟାସକୁ ନିମନ୍ତ୍ରଣ କରିବା । ତାଙ୍କର ପରାମର୍ଶ ଥିଲା ନିରାମିଷ ହେଲେ ବିକ୍ଷୋଭ ଜନସାଧାରଣଙ୍କର ଦୃଷ୍ଟି ଆକର୍ଷଣ କରିବ ନାହିଁ ।

ମୁଁ ଡାକ୍ତରଖାନାରେ ପଡ଼ିଲାବେଳେ ଶ୍ରୀମତୀ ନନ୍ଦିନୀ ଶତପଥି ଓ ଶ୍ରୀମତୀ ଚନ୍ଦ୍ରିକା ମହାପାତ୍ର ମୋତେ ଦେଖିବାକୁ ଆସିଥିଲେ । ମୁଁ ତାଙ୍କୁ କହିଲି, "ଏ ସରକାର ଆଉ ବେଶିଦିନ ରହିବ ନାହିଁ ।" ସେ ମୋତେ କହିଲେ ମୁଖ୍ୟମନ୍ତ୍ରୀ ହେବାପାଇଁ । ମୁଁ କହିଲି, "ଆପଣ ଶ୍ରୀମତୀ ଗାନ୍ଧୀଙ୍କର ବିଶ୍ୱସ୍ତା । କେନ୍ଦ୍ର ସହିତ ଆପଣଙ୍କର ସଂପର୍କ ଭଲ ଅଛି । ଆପଣ ହେଲେ, କେନ୍ଦ୍ରର ଯଥେଷ୍ଟ ସାହାଯ୍ୟ ଆମେ ପାଇ ପାରିବା ଏବଂ ଏହି ବନ୍ୟା ଦୁର୍ଗତ ଲୋକଙ୍କର ଦୁଃଖ, ଦୁର୍ଦ୍ଦଶାକୁ ଦୂର କରିବାକୁ ସମର୍ଥ ହୋଇପାରିବା।" ଉତ୍କଳ କଂଗ୍ରେସର ବହୁ ସଭ୍ୟ ତାଙ୍କ ଦଳ ଛାଡ଼ି କଂଗ୍ରେସରେ ଯୋଗଦେଲେ ।

ବିଶ୍ୱନାଥ ବାବୁ ଜଣେ ଅତି ସଚ୍ଚୋଟ ବ୍ୟକ୍ତି । କିନ୍ତୁ ସେ ଉତ୍କଳ କଂଗ୍ରେସ ଓ ସ୍ୱତନ୍ତ୍ର ଦଳର ନେତାମାନଙ୍କ ଚାପକୁ ଏଡ଼ାଇ ଦେଇ ନପାରି 1971 ମସିହା ଏପ୍ରିଲ 3 ତାରିଖରେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଇଥିଲେ । କିନ୍ତୁ ଏ ସରକାର ତାଙ୍କର ଅଭିଜ୍ଞତା ଆଦୌ ପ୍ରୀତିକର ନଥିଲ । ସେ ରାଉରକେଲାରୁ ଉପ ନିର୍ବାଚନରେ ଜୟଯୁକ୍ତ ହୋଇଥିଲେ ଏବଂ ତାଙ୍କ ସହିତ ଆମ ଦଳ ପକ୍ଷରୁ ବିନାୟକ ଆଚାର୍ଯ୍ୟ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ସେ ଜନମତର ଚାପରେ ଏବଂ ସ୍ୱତନ୍ତ୍ର ଓ ଉତ୍କଳ କଂଗ୍ରେସ ଦଳର ମନ୍ତ୍ରୀମାନଙ୍କ କାର୍ଯ୍ୟକଳାପରେ ବିବ୍ରତ ହୋଇ ପଡ଼ିଥିଲେ । ଉତ୍କଳ କଂଗ୍ରେସରେ ଜଣକପରେ ଜଣେ ସଦସ୍ୟ ଆମ କଂଗ୍ରେସରେ ମିଶିଯାଉଥାନ୍ତି । ଶେଷରେ ବିଶ୍ୱନାଥ ବାବୁ 1972 ମସିହା ଜନ 14ରେ ସରକାରରୁ ଇସ୍ତଫା ଦେଇ ଦେଲେ ।

1972 ମସିହା ଅଗଷ୍ଟ ମାସରେ କଂଗ୍ରେସ ସରକାର ଗଠନ କରାଗଲା । ସେତେବେଳେ ନନ୍ଦିନୀ ଦେବୀ ଦିଲ୍ଲୀରେ ଥା'ନ୍ତି, ମୁଁ କଂଗ୍ରେସର ସଭାପତି ଥାଏ ଏବଂ ଚନ୍ଦ୍ରଜିତ ଯାଦବ କେନ୍ଦ୍ରର ପର୍ଯ୍ୟବେକ୍ଷକ ଥାନ୍ତି । ନନ୍ଦିନୀ ଦେବୀ ସଂଖ୍ୟା ଗରିଷ୍ଠତା ହାସଲ କରି ନେତ୍ରୀ ନିର୍ବାଚିତ ହେଲେ । ବିନାୟକ ବାବୁ ମୁଖ୍ୟମନ୍ତ୍ରୀ ହେବାକୁ ଗ୍ଧହିଁଥିଲେ', ତାଙ୍କୁ ନୀଳମଣୀ ବାବୁ ଏବଂ ଡଃ ମହତାବ୍ ପ୍ରକାରାନ୍ତରେ ସହଯୋଗ କରୁଥିଲେ । ନନ୍ଦିନୀ ଦେବୀଙ୍କର କମ୍ୟୁନିଷ୍ଟ-ଦଳ ଭୂମିକା ଯୋଗୁଁ କେତେକ କଂଗ୍ରେସ ନେତା ତାଙ୍କ ପ୍ରତି ଅନୁକୂଳ ଭାବ ପୋଷଣ କରୁ ନ ଥିଲେ । ସେହି ମନ୍ତ୍ରୀ ମଣ୍ଡଳରେ ନୀଳମଣୀ ବାବୁ, ମୁଁ, ବାଙ୍କ ବାବୁ, ବିନାୟକ ବାବୁ ଗଙ୍ଗାଧର ପ୍ରଧାନ, ମୋହନ ନାୟକ ପ୍ରଭୃତି ସଦସ୍ୟ ରହିଥିଲୁ । ମୁଁ ଅନିଚ୍ଛୁକ ଥିଲେ ମଧ୍ୟ ଚନ୍ଦ୍ରଜିତ ଯାଦବଙ୍କ ଗ୍ଧପରେ ମନ୍ତ୍ରୀ ମଣ୍ଡଳରେ ସାମିଲ ହୋଇଥିଲି ।

ଏହା ମଧ୍ୟରେ ନନ୍ଦିନୀ ଶତପଥୀ ମୁଖ୍ୟମନ୍ତ୍ରୀ ହେବାପରେ ବିଧାନସଭାକୁ ଆସିବା ଦରକାର ପଡ଼ିଲା । ନନ୍ଦିନୀ ଦେବୀ କଟକରେ ଛିଡ଼ା ହୋଇଥିଲେ, ବିରେନ୍‌ବାବୁ ପ୍ରଥମେ ତାଙ୍କୁ ନିମନ୍ତ୍ରଣ କରି ପରେ ତାଙ୍କ ସହିତ ପ୍ରତିଦ୍ୱନ୍ଦିତା କଲେ । ଏ ନିର୍ବାଚନ ଓଡ଼ିଶା ଇତିହାସରେ ଏକ ସ୍ମରଣୀୟ ଘଟଣା । ବିରେନବାବୁଙ୍କୁ ମହତାବ ବାବୁ, ରାଜେନ୍ଦ୍ର ନାରାୟଣ, ସିଂଦେଓ ଓ ପବିତ୍ର ବାବୁ ପମୁଖ ତୁଙ୍ଗ ନେତାମାନେ ସମର୍ଥନ କରୁଥା'ନ୍ତି । ଗାଡ଼ି ପ୍ରଗ୍ଧର ପତ୍ର ଇତ୍ୟାଦି ଉଭୟ ପକ୍ଷରୁ ନାହିଁ ନଥିବା ଢଙ୍ଗରେ ବନ୍ଦୋବସ୍ତ କରାଯାଇ ଥିଲା ।, ନୀଳମଣୀ ବାବୁ ମଧ୍ୟ ବିରେନ୍ ବାବୁଙ୍କୁ ସାହାଯ୍ୟ କରୁଥାନ୍ତି । ଅଣ କଂଗ୍ରେସ ଦଳର ନେତାମାନେ ଭାବିଥିଲେ ଯେ, ନନ୍ଦିନୀ ଦେବୀ ନିର୍ବାଚନରେ ପରାଜିତ ହେଲେ ତାଙ୍କ ସରକାର ଭାଙ୍ଗିଯିବ ଓ କଂଗ୍ରେସର ପୁରୁଣା ନେତାମାନଙ୍କ ମଧ୍ୟରୁ କେହି ନେତା ହେବେ କିନ୍ତୁ ତାହା ହୋଇ ପାରିଲା ନାହିଁ । ନନ୍ଦିନୀ ଦେବୀ ବିପୁଳ ସମର୍ଥନ ପାଇ ବିଜୟିନୀ ହେଲେ । ଉପ ନିର୍ବାଚନକୁ ପ୍ରଧାନମନ୍ତ୍ରୀ ଆସିବାର ପରମ୍ପରା ନ ଥିଲା । ତେଣୁ ଓ୍ୱାଇ. ବି. ଚୌହାନ ଆସିଥିଲେ ଓ କଟକରେ ସଭା କରିଥିଲେ ।

ନନ୍ଦିନୀ ଦେବୀଙ୍କ ପ୍ରଗତିଶୀଳ କାର୍ଯ୍ୟ ଯୋଗୁ ଜନସାଧାରଣଙ୍କର ଆସ୍ଥାଭାଜନ ହୋଇଥିଲା । ଏ ସରକାର 1973 ମସିହା ଫେବୃୟାରୀ ପର୍ଯ୍ୟନ୍ତ ଗ୍ଧଲିଥିଲା । ତାହାପରେ ଭୂ-ସଂସ୍କାର ଆଇନ୍ ପ୍ରଣୟନ ସଂପର୍କରେ ବିଧାନ ସଭାର କେତେକ ସଭ୍ୟ ସହଯୋଗ କରୁ ନ ଥିଲେ । ପୁଷ୍କରିଣୀ କେତେ ଏକର ଛାଡ଼ି ରହିବ, ସେ ସଂପର୍କରେ କଂଗ୍ରେସ ଦଳ ବୈଠକରେ ବାଦାନୁବାଦ ଉଠିଥିଲା । ଶ୍ରୀ ବିନାୟକ ଆଗ୍ଧର୍ଯ୍ୟ, ବାଙ୍କ ବିହାରୀ-ଦାସ ଓ ନନ୍ଦିନୀ ଶତପଥିଙ୍କ ସହଯୋଗରେ ଭୂ-ସଂସ୍କାର ଆଇନ ତିଆରି କରାଯାଇ ଥିଲା । ମୁଁ ରାଜସ୍ୱମନ୍ତ୍ରୀ ଥିଲି । ଜାତୀୟ ସ୍ତରରେ ଜେ. ଡି. ଅହମଦ କମିଟି ଏ ଆଇନକୁ ଅତି ପ୍ରଗତିଶୀଳ ବୋଲି ପ୍ରଶଂସା କରିଥିଲେ । ବିଧାନ ସଭା ଦଳ ବୈଠକରେ ଭୂ-ସଂସ୍କାର ଆଇନ ସପକ୍ଷରେ ମତ ପ୍ରକାଶ ପାଉଥିଲେ ମଧ୍ୟ ଭିତରେ ଭିତରେ ଏହାକୁ ଅନେକ

ସଦସ୍ୟ ବିରୋଧ କରୁଥିଲେ । ତାହାର ସୁଯୋଗ ନେଇ ବିଜୁବାବୁ, ରାଜେନ୍ଦ୍ର, ନାରାୟଣ ସିଂଦେଓ, ନୀଳମଣୀ ରାଉତରାୟ ଇତ୍ୟାଦି ସମସ୍ତେ ଏକଜୁଟ ହୋଇ ବିଧାନସଭାର କଂଗ୍ରେସ ଦଳର ସଦସ୍ୟମାନଙ୍କୁ ପ୍ରଭାବିତ କରି ଭୂ-ସଂସ୍କାର ଆଇନ ପାଶ୍ ହେଲା ବେଳକୁ, ତାହାକୁ ପାଶ୍ ନ କରାଇଲେ ନନ୍ଦିନୀ ଦେବୀଙ୍କ ସରକାର ଭାଙ୍ଗିଯିବ ଏହି ଚକ୍ରାନ୍ତ କରୁଥା'ନ୍ତି । ମୁଁ ସେ ଚକ୍ରାନ୍ତ ଅବଗତ ହୋଇଥିଲି । ତେଣୁ ବିଧାନସଭା ବୈଠକର ପୂର୍ବଦିନ ରାତିରେ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଇଦେଲେ । ରାଜ୍ୟପାଳ ବିଧାନସଭା ବୈଠକ ଘୁଞ୍ଚାଇ ଦେଲେ । ଏହି ୪ ମାସ ମଧ୍ୟରେ ଭୂ-ସଂସ୍କାର ଆଇନ୍ ପ୍ରସ୍ତୁତ କରାଯାଇ ବିଧାନସଭାରେ ଆଗତ କରାଯାଇଥିଲା । ବିଧାନସଭା ଭାଙ୍ଗିଯିବା ଯୋଗୁଁ ତାହା ଗୃହୀତ ହୋଇ ପାରି ନ ଥିଲା । ରାଷ୍ଟ୍ରପତି ଶାସନ ବେଳେ ଏହା ଗୁରୁତ୍ୱ ହୋଇଗଲା । ଏହି ୪ ମାସ ସମୟକୁ ରାଜେନ୍ଦ୍ର- ନାରାୟଣ ସିଂଦେଓ, "ନନ୍ଦିନୀ, ବୃକ୍ଷ, ବାଙ୍କ ସରକାର" ବୋଲି ଅଭିହିତ କରୁଥା'ନ୍ତି । ଏଥି ମଧ୍ୟରେ ବିଭିନ୍ନ କ୍ଷେତ୍ରରେ ବିଭିନ୍ନ ପ୍ରକାର ଉନ୍ନୟନ ମୂଳକ କାର୍ଯ୍ୟ ଆରମ୍ଭ କରାଯାଇ ଥିଲା । ରେଙ୍ଗାଲୀ ଯୋଜନା ଏ ସମୟର କାର୍ଯ୍ୟକ୍ରମ । ସରକାର ଭାଙ୍ଗିଯିବା ପରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଏହାକୁ ଉଦ୍‌ଘାଟନ କରିଥିଲେ

ମୋର ଆଜି ବି ମନେଅଛି ଯେ, ଦିନେ ଶ୍ରୀ ପ୍ରଫୁଲ୍ଲ ଘଡ଼ାଇ (ବର୍ତ୍ତମାନ ଜନତା ଦଳର ସଦସ୍ୟ) ମୋତେ ଆସି କହିଲେ ବିଜୁବାବୁ ଓ ମହତାବ ବାବୁ ଲବିରେ ଏକତ୍ର ବସିଥିଲେ । ସେଠାରେ ଉଭୟଙ୍କ ମଧ୍ୟରେ କଥାବାର୍ତ୍ତା ହେଉ ହେଉ ବିଜୁବାବୁ କହିଥିଲେ ଯେ, ମହତାବ ବାବୁ ହୀରାକୁଦ କଲେ, ଭୁବନେଶ୍ୱର କଲେ ଏବଂ ସେ ରାଉରକେଲା ଥର୍ମାଲ ବିଦ୍ୟୁତ ପ୍ରକଳ୍ପ ଇତ୍ୟାଦି କରାଇଲେ, କିନ୍ତୁ ଏ ନନ୍ଦିନୀ ସରକାର କ'ଣ କରୁଛି ? ପ୍ରଫୁଲ୍ଲବାବୁ ଆମକୁ କହିବାପରେ ଆମେ ରେଙ୍ଗାଲି ଭୀମକୁଣ୍ଡ ଯୋଜନ କାର୍ଯ୍ୟକରିବାର ସଂକଳ୍ପ ନେଇଥିଲୁ । ଭୀମକୁଣ୍ଡ ଯୋଜନା କେନ୍ଦ୍ରର ଅର୍ଥଦ୍ୱାରା କରାଯିବ ବୋଲି କେନ୍ଦ୍ର ମନ୍ତ୍ରୀ ଶ୍ରୀ କେ. ଏଲ. ରାଓ ସମ୍ମତ ହୋଇଥିଲେ । ଏହି ପ୍ରକଳ୍ପର ପରିଚାଳନା ରାଜ୍ୟସରକାରଙ୍କ ହାତରେ ରହିବ ବୋଲି ସ୍ଥିର ହୋଇଥିଲା । ଉତ୍ପାଦିତ ବିଦ୍ୟୁତ, କେନ୍ଦ୍ର ଓ ରାଜ୍ୟ ଅଧେ ଅଧେ ବାଣ୍ଟିନେବେ ବୋଲି ସ୍ଥିର କରାଯାଇଥିଲା । ଏହି ଅନୁସାରେ ଚୁକ୍ତିପତ୍ର ଦସ୍ତଖତ କରାଯାଇଥିଲା । କେନ୍ଦୁଝରର କୁମର ମାଝି ଏହି ପ୍ରକଳ୍ପ ଅନ୍ୟସ୍ଥାନକୁ ଘୁଞ୍ଚାଇ ନିଆଯାଉ ଏଥିପାଇଁ କେନ୍ଦ୍ରମନ୍ତ୍ରୀ କେ.ଏଲ.ରାଓ ଙ୍କ ନିକଟରେ ଅନଶନ କରିଥିଲେ । ତାଙ୍କର ଦାବି ଥିଲା, ନିର୍ଦ୍ଧାରିତ ସ୍ଥାନଠାରୁ ପ୍ରାୟ 1 ମାଇଲ ଦୂରରେ ଏହା କରାଯାଉ । ଏହାପରେ ମୁଁ ଜଳସେଚନ ମନ୍ତ୍ରୀ ହିସାବରେ କେନ୍ଦ୍ରସରକାର ସ୍ଥାନ ନିରୂପଣ କରନ୍ତୁ ବୋଲି ତାଙ୍କୁ ଜଣାଇଦେଲି । ପ୍ରଥମେ ନିର୍ଦ୍ଧାରିତ ସ୍ଥାନକୁ କେନ୍ଦ୍ର ସରକାର ଅନୁମୋଦନ କଲେ । କେ. ଏଲ. ରାଓ ଆଉ ଜଳସେଚନ ବିଭାଗର ମନ୍ତ୍ରୀ ରହିଲେ ନାହିଁ ।

ତା'ପରେ 1973 ମସିହା ମାର୍ଚ୍ଚ ମାସ 3 ତାରିଖରେ ରାଷ୍ଟ୍ରପତି ଶାସନ ହୋଇଗଲା ଓ 1974 ମସିହାରେ ନିର୍ବାଚନ ହେଲା । କଂଗ୍ରେସ ବିଜୟ ହାସଲ କଲା । କିନ୍ତୁ କଂଗ୍ରେସ ଓ ଅଣ କଂଗ୍ରେସ ଦଳ ସଂଖ୍ୟା ପ୍ରାୟ ସମାନ ସମାନ ହୋଇଗଲା । ବିଧାନସଭାରେ ଡଃ ମହତାବ ଓ ଡ଼ଃ ରାଧାନାଥ ରଥଙ୍କ ସମେତ ସବୁ ରାଜନୈତିକ ଦଳର ତୁଙ୍ଗନେତାମାନେ ଉଣା ଅଧିକେ ନିର୍ବାଚିତ ହୋଇ ବିଧାନସଭାକୁ ଆସିଥିଲେ । ମୁଁ ବାଚସ୍ପତି ଭାବରେ ନିର୍ବାଚିତ ହୋଇଥିଲି । ବିଧାନସଭା ଚଳାଇବା କାଠିକର ପାଠ ଥିଲା । 1975 ମସିହା ଜୁନ 25 ତାରିଖରେ ଜରୁରୀକାଳୀନ ପରିସ୍ଥିତି ଆସିଗଲା । ଏହି ଆଳରେ ବିଧାନସଭାର କ୍ଷମତା ସଂକୁଚିତ କରିଦେବା ଚକ୍ରାନ୍ତ ଆରମ୍ଭହେଲା । ଜରୁରୀକାଳୀନ ପରିସ୍ଥିତି ଆଭ୍ୟନ୍ତରୀଣ ଗଣ୍ଡଗୋଳ ଯୋଗୁ ଘୋଷିତ ହୋଇଥିଲା । ସେତେବେଳର ସାମ୍ବିଧାନିକ ବ୍ୟବସ୍ଥା ଅନୁସାରେ ଜରୁରୀ କାଳୀନ ପରିସ୍ଥିତି ଘୋଷିତ ହେଲେ ନାଗରିକର ମୌଳିକ ଅଧିକାର ବାତିଲ ହୋଇଯାଏ । ଏପରି କି ଜୀବନର ଅଧିକାର ମଧ୍ୟ ରହେ ନାହିଁ । ଜରୁରୀକାଳୀନ ପରିସ୍ଥିତିରେ ନାଗରିକ ମାନଙ୍କର ଅଧିକାର କେତେଦୂର ବାତିଲହୁଏ, ତାହା ଦେଶରେ ବିବାଦୀୟ ହୋଇଗଲା । ସେସବୁ ଉଲ୍ଲେଖ କରିବା ଏଠାରେ ପ୍ରାସଙ୍ଗିକ ହେବନାହିଁ । ପରେ ଜନତାଦଳ କ୍ଷମତାକୁ ଆସି ଜରୁରୀ କାଳୀନ ପରିସ୍ଥିତିର ପରିସରରେ ନୂଆ ବ୍ୟବସ୍ଥା ସମ୍ବିଧାନରେ ଖଞ୍ଜିଲେ ।

ମୋର ମନେପଡୁଛି, ଗୋଟିଏ ମୁଲତବୀ ପ୍ରସ୍ତାବ ସରକାରଙ୍କ ଖିଲାପ ଦର୍ଶାଇ ଆସିଲା ବେଳେ, ସରକାରଙ୍କ ତରଫରୁ ଆପତ୍ତିକରାଯାଇ ଆପଦକାଳୀନ ପରିସ୍ଥିତିବେଳେ ସରକାରଙ୍କ ବିରୁଦ୍ଧରେ କୌଣସି ଅଭିଯୋଗ ବିଚାରଯୋଗ୍ୟ ନୁହେଁ ବୋଲି ପ୍ରଶ୍ନ ଉଠିଥିଲା । କିନ୍ତୁ ମୁଁ ସାଥ ସାଥ କହିଦେଇଥିଲି, "ବିଧାନସଭା ଓ ଏହାର ପରିସରରେ ଆପଦକାଳୀନ ପରିସ୍ଥିତିର କୌଣସି ସଂପର୍କ ନାହିଁ" । ବିଧାନସଭା ଗତାନୁଗତିକ ଭାବରେ ଚାଲିଥିଲା । ଗୋଟିଏ ଘଟଣା ମୋର ମନେପଡୁଛି । ସେତେବେଳେ ବାଲିଅନ୍ତା, ବାଲିଘଟଣାରେ 'ବର୍ଗୀ ଶାସନ ସ୍ୱାର୍ଥ' ନାମରେ ଗୋଟିଏ ପ୍ରବନ୍ଧ ଧରିତ୍ରୀରେ ପ୍ରକାଶିତ ହୋଇଥିଲା । ଏହାର ଲେଖିକା ଥିଲେ ଚନ୍ଦ୍ରିକା ମହାପାତ୍ର । ସେଥିରେ ଅଭିଯୋଗ ଥିଲା ଯେ, ସେଠାରେ ଲୋକଙ୍କୁ ମାଡ଼ ମାରି ସରକାରୀ ଦେୟ ଅସୁଲ କରାଯାଉଚି । ଲୋକେ ଭୟଭୀତ ହୋଇ ଘରଛାଡ଼ି ପଳାଇ ଯାଉଛନ୍ତି । ଏ ସଂପର୍କରେ ଗୋଟିଏ ମୁଲତବୀ ପ୍ରସ୍ତାବ ଆଗତ ହୋଇଥିଲା ଓ ମୁଁ ତାକୁ ପ୍ରାଥମିକ ଶୁଣାଣୀ ନିମିତ୍ତ ଗ୍ରହଣ କରିଥିଲି । ଶ୍ରୀବଲ୍ଲଭ ପାଣିଗ୍ରାହୀ ସେତେବେଳେ ରାଜସ୍ୱ ମନ୍ତ୍ରୀ ଥାଆନ୍ତି । ସେ ମୋ କକ୍ଷକୁ ଆସି ଘଟଣାର କିଛି ଗୁରୁତ୍ୱ ନାହିଁ ବୋଲି ବୁଝାଇ ଥିଲେ । କିନ୍ତୁ ପ୍ରାଥମିକ ଶୁଣାଣୀ ବେଳେ ରାଜସ୍ୱମନ୍ତ୍ରୀ ସ୍ୱୀକାର କଲେ ଯେ, ଜଣେ ବୃଦ୍ଧା କବାଟ ଠେଲା ପେଲାରେ ଜଖମ ହୋଇଛନ୍ତି ଏବଂ ସରକାରୀ ଦେୟ ପରିଶୋଧ କରିବାକୁ ଫାଙ୍କି ଦେବା ନିମିତ୍ତ ଘରଛାଡ଼ି ଲୋକେ ଚାଲିଯାଇଛନ୍ତି । ଏ ଉତ୍ତର ପରେ ମୁଁ ମୁଲତବୀ ପ୍ରସ୍ତାବ-ଟିକୁ 2 ଘଣ୍ଟା ଆଲୋଚନା ପାଇଁ ଦେଇଥିଲି । ସେତେବେଳକୁ ଆପଦକାଳୀନ ପରିସ୍ଥିତିର ସୁଯୋଗ ନେଇ କେତେକ ସରକାରୀ କର୍ମଚାରୀ କେତେକ କ୍ଷେତ୍ରରେ ଲୋକଙ୍କ ଉପରେ ବହୁ

ଔଦ୍ଧତ୍ୟ ଓ ଅତ୍ୟାଚ଼ର କରୁଥାଆନ୍ତି । ଆଉ ଗୋଟିଏ ପୋଲିସ ଔଦ୍ଧତ୍ୟର ଘଟଣା ଗୃହର ଦୃଷ୍ଟିକୁ ଆସିଥିଲା । ଶ୍ରୀ ହରିଶ୍ଚନ୍ଦ୍ର ବକ୍ସିପାତ୍ର କୋରାପୁଟ ଜିଲ୍ଲାର ବିଧାନସଭା ସଦସ୍ୟ ଥାଆନ୍ତି । ତାଙ୍କୁ ପୋଲିସ ହାତକଡ଼ି ଦେଇ ଚଲାଇ ଚଲାଇ ନେଇଥିଲେ । ଏ ସଂପର୍କରେ ସ୍ୱାଧିକାର ଭଙ୍ଗ ପ୍ରଶ୍ନ ଉଠିଥିଲା । ଲୋକସଭାର ଗୋଟିଏ ନଜୀର ଉପରେ ନିର୍ଭର କରି ପୋଲିସର ଏ କାର୍ଯ୍ୟକୁ ସରକାରୀ ଦଳ ପକ୍ଷରୁ ସମର୍ଥନ କରାଯାଇଥିଲା । ଲୋକସଭାର ନଜୀରକୁ ନଜରରେ ରଖି ମୁଁ ପୋଲିସର ଏ କାର୍ଯ୍ୟ ଠିକ ନୁହେଁ ବୋଲି ନିର୍ଦ୍ଧାରଣ ଦେଇଥିଲି । ପୋଲିସ ସେହିଠାରେ ହାତକଡ଼ି ଦେବେ, ଯେଉଁଠାରେ ମୁଦାଲା ଫେରାର ହୋଇଯିବାର ଆଶଙ୍କା ଅଛି । ଏ କ୍ଷେତ୍ରରେ ସେପରି କୌଣସି ଆଶଙ୍କାଥିବା ଜଣାପଡୁ ନ ଥାଏ । ତେଣୁ ମୁଁ କହିଥିଲି ଯେ, ବିଧାନସଭା ସଦସ୍ୟମାନେ ପୋଲିସ ଆୟତ୍ତରୁ ଖସିଯାଇ ପାରନ୍ତି, ଏ ସଂପର୍କରେ ନିର୍ଦ୍ଦିଷ୍ଟ ପ୍ରମାଣ ନ ରହିଲେ ହାତ କଡ଼ି ଦେବାର ଯଥାର୍ଥତା କେଉଁଠି ?

ଅନ୍ୟଏକ ଘଟଣା ମୋର ମନେ ପଡୁଚି । ଯେଉଁସବୁ ସଦସ୍ୟମାନେ ଜେଲରେ ଅଟକ-ବନ୍ଦୀ ହୋଇଥାନ୍ତି, ବିଧାନସଭାର ନିୟମ ଅନୁସାରେ ସେମାନଙ୍କ ନିର୍ବାଚନ ମଣ୍ଡଳୀର ଯେଉଁସବୁ ଉନ୍ନୟନମୂଳକ କାର୍ଯ୍ୟ ହେବା କଥା , ସେ ସଂପର୍କରେ ଜେଲରୁ ବାଚସ୍ପତିଙ୍କୁ ଜଣାଇଲେ, ବାଚସ୍ପତି ସେଥିପ୍ରତି ଦୃଷ୍ଟିଦେବେ । ସେତେବେଳେ ବିଧାନସଭାର ସଦସ୍ୟ ଭାଗବତ ବେହେରା ନୟାଗଡ଼ରେ ଅଟକବନ୍ଦୀ ଥା'ନ୍ତି । ତାଙ୍କ ନିର୍ବାଚନ ମଣ୍ଡଳୀର ଯେଉଁସବୁ କାର୍ଯ୍ୟ ହେବା କଥା, ସେସବୁ ମୋତେ ସେ ନିୟମିତ ଭାବେ ଜଣାଉଥିଲେ ଏବଂ ମୁଁ ବିଭିନ୍ନ ବିଭାଗକୁ ସେସବୁ ପଠାଇ ସେଥିପ୍ରତି ଦୃଷ୍ଟିଦେବାକୁ ଲେଖଥିଲି । ଶ୍ରୀ ସତ୍ୟସୁନ୍ଦର ମିଶ୍ର ସେତେବେଳେ କଂଗ୍ରେସ ଦଳର ସଦସ୍ୟ ଥା'ନ୍ତି । ଦିନେ ସେ ମୋତେ କହିଲେ ଯେ, ଭାଗବତ ଜେଲରେ ଥାଇ ମଧ୍ୟ ତାଙ୍କ ନିର୍ବାଚନ ମଣ୍ଡଳୀରେ ଅଧିକ କାର୍ଯ୍ୟ ହୋଇଗଲା, କିନ୍ତୁ ତାଙ୍କର ହୋଇ ପାରିଲା ନାହିଁ । ମୁଁ ତାଙ୍କୁ ନିୟମ କାନୁନ ବୁଝାଇ-ଦେଇଥିଲି । ସରକାରୀ କର୍ମଚାରୀମାନଙ୍କର ଚରିତ୍ର ହେଲା ଯେ, ସେମାନେ ବିଧାନସଭା ଗୃହରେ ଯାହା ଆଲୋଚନା ହୁଏ ଓ ବିଧାନସଭାର ଯେଉଁ ମତାମତ ପ୍ରକଟିତ ହୁଏ, ତାହାକୁ ଅଧିକ ଗୁରୁତ୍ୱ ଦିଅନ୍ତି ।

ସେ ସମୟରେ ଭାରତବର୍ଷରେ ସଂଜୟ ଗାନ୍ଧୀଙ୍କ ପ୍ରଭାବ ପଡୁଥାଏ । ଶ୍ରୀମତୀ ଗାନ୍ଧୀ ଅଣ କଂଗ୍ରେସ ସରକାରଙ୍କୁ ହଟାଇବା ନିମିତ୍ତ ସଂଜୟ ଗାନ୍ଧୀଙ୍କ ଉପରେ ନିର୍ଭର କରୁଥିଲେ । ସଂଜୟ ଗାନ୍ଧୀଙ୍କର କମ୍ୟୁନିଷ୍ଟମାନଙ୍କ ପ୍ରତି ବୀତସ୍ପୃହ ଭାବଥିଲା । ସେ ନନ୍ଦିନୀ ଶତପଥୀଙ୍କର କମ୍ୟୁନିଷ୍ଟ ଭୂମିକା ଯୋଗୁଁ ଓ କମ୍ୟୁନିଷ୍ଟମାନଙ୍କ ସହିତ ଘନିଷ୍ଠ ସଂପର୍କ ଯୋଗୁଁ ପରିବର୍ତ୍ତନ କରିବାକୁ ଚାହୁଁଥିଲେ । ସେତେବେଳେ ସଂଜୟ ଗାନ୍ଧୀ ଯୁବ କଂଗ୍ରେସର ନେତା ରହିଥିଲେ ଏବଂ ତାଙ୍କର ୪ ଦଫା କାର୍ଯ୍ୟକ୍ରମ ସେ ଜାତି ଆଗରେ ଉପସ୍ଥାପିତ କରିଥିଲେ । ବୃକ୍ଷରୋପଣ, ପରିବାର ନିୟନ୍ତ୍ରଣ ଇତ୍ୟାଦି ସେଥିରେ ମୁଖ୍ୟ ସ୍ଥାନ ଲାଭ କରିଥିଲା । ତା'ପୂର୍ବରୁ

ଶ୍ରୀମତୀ ଇନ୍ଦିରା ଗାନ୍ଧୀ ବିଂଶସୂତ୍ର କାର୍ଯ୍ୟକ୍ରମ ଦେଶ ଆଗରେ ଉପସ୍ଥାପିତ କରିଥିଲେ । କମ୍ୟୁନିଷ୍ଟ ମାର୍କେଷ୍ଟମାନେ ଉଭୟ କାର୍ଯ୍ୟକ୍ରମକୁ ଥଟ୍ଟା କରି "ବୋଲି" ସୃଷ୍ଟି କରିଥିଲେ ଯେ', "କୋୟର ଘର " ମାୟର ବିଶ, ସବ ମିଳିଏ ଘରିଶ ବିଶ" , ସେତେବେଳକୁ ଜାନକୀ ବାବୁ କେନ୍ଦ୍ରରେ ମନ୍ତ୍ରୀ ଥାନ୍ତି । ସେ ୧୯୭୧ ମସିହା ବେଳକୁ କଂଗ୍ରେସରେ ଯୋଗଦେଇ କଂଗ୍ରେସ ଟିକଟରେ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ସେତେବେଳେ ରାମଚନ୍ଦ୍ର ରଥଙ୍କୁ ସଂଜୟ ଗାନ୍ଧୀ ଯୁବ କଂଗ୍ରେସର ସଭାପତି ଭାବେ ମନୋନୟନ କଲେ । ନନ୍ଦିନୀ ଶତପଥୀ ଶ୍ରୀ ଜଗନ୍ନାଥ ପଟ୍ଟନାୟକଙ୍କୁ ଯୁବ କଂଗ୍ରେସର ସଭାପତି କରିବାକୁ ଚାହିଁଥିଲେ । ବିନାୟକ ବାବ, ମୁଁ, ଶ୍ରୀ ମତଲୁବ୍ ଅଲ୍ଲୀ, ଶ୍ରୀ ବେଣୁଧର ବଳିୟାର ସିଂ, ଶ୍ରୀ ଜଗନ୍ନାଥ ପଟ୍ଟନାୟକ, ଶ୍ରୀକାହ୍ନୁ ଚରଣ ଲେଙ୍କା ସମେତ ମନ୍ତ୍ରୀମାନେ ଗୌହାଟି କଂଗ୍ରେସରେ ଶ୍ରୀମତୀ ଗାନ୍ଧୀଙ୍କୁ ଭେଟି ନନ୍ଦିନୀ ଶତପଥୀଙ୍କୁ ମୁଖ୍ୟମନ୍ତ୍ରୀ ପଦରୁ ହଟାଇବା ନିମିତ୍ତ ଦାବି କରିଥିଲୁ । ପ୍ରଧାନ ମନ୍ତ୍ରୀ ସେହିଠାରେ ଏକରକମ ମନ ସ୍ଥିର କରି ଦେଇଥିଲେ ଏବଂ ନନ୍ଦିନୀ ଦେବୀଙ୍କୁ ପରିବର୍ତ୍ତନ କରାଗଲା । ନନ୍ଦିନୀ ଦେବୀ " ଜାଗ୍ରତ ଓଡ଼ିଶା" ନାମକ ଗୋଟିଏ ଦଳ ଗଢି କଂଗ୍ରେସ ଛାଡ଼ିଦେଲେ । ସେତେବେଳେ କଂଗ୍ରେସର ସଭାପତି ଥାନ୍ତି ଶ୍ରୀ ଦେବକାନ୍ତ ବରୁଆ । ସେ ଶ୍ରୀମତୀ ଗାନ୍ଧଙ୍କୁ ଖୁସି କରିବା ପାଇଁ "ଇନ୍ଦିରା ଇଣ୍ଡିଆ" "ଇଣ୍ଡିଆ ଇନ୍ଦିରା" ବୋଲି ଇନ୍ଦିରା ଗାନ୍ଧୀଙ୍କର ହାଁଜୀ କରିବାରେ ଲାଗିଥିଲେ । ଗୌହାଟି କଂଗ୍ରେସ ପରେ ନନ୍ଦିନୀ ଦେବୀ ପରିବର୍ତ୍ତିତ ହୋଇଗଲେ ଏବଂ ତାଙ୍କ ସ୍ଥାନରେ ଶ୍ରୀମତୀ ଗାନ୍ଧୀ ଶ୍ରୀ ବିନାୟକ ଆଚାର୍ଯ୍ୟଙ୍କୁ ମୁଖ୍ୟମନ୍ତ୍ରୀ ହେବା ନିମିତ୍ତ ମନୋନୟନ କରିଥିଲେ ।

ବିନାୟକ ବାବୁଙ୍କ ମନ୍ତ୍ରୀମଣ୍ଡଳରେ ଶ୍ରୀ କାହ୍ନୁ ଚରଣ ଲେଙ୍କା, ଶ୍ରୀବଲ୍ଲଭ ପାଣିଗ୍ରାହୀ ପ୍ରଭୃତି ଥାନ୍ତି । ତା'ପରେ ଆପଦକାଳୀନ ପରିସ୍ଥିତି ଯୋଗୁ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଓ କଂଗ୍ରେସ ବିରୁଦ୍ଧରେ ଦେଶରେ ପ୍ରବଳ ଜନମତ ହୋଇଥିଲା । ସଂଜୟ ଗାନ୍ଧୀ ଚାହୁଁ ନଥିଲେ ମଧ୍ୟ ଇନ୍ଦିରା ଗାନ୍ଧୀ ଦେଶରେ ନିର୍ବାଚନ କରାଇଲେ । ବିଧାନସଭା ନର୍ବାଚନ ମଧ୍ୟ ହେଲା । ଇନ୍ଦିରା ଗାନ୍ଧୀ ଓ ସଂଜୟ ଗାନ୍ଧୀ ପ୍ରଭୃତି ହାରିଯାଇଥିଲେ । ଆମେ ସବୁ ମଧ୍ୟ ଓଡ଼ିଶାରେ ହାରି ଯାଇଥିଲୁ । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ, ଦିଲ୍ଲୀରେ ମୋରାରଜୀ ଦେଶାଇଙ୍କ ସରକାର ପ୍ରତିଷ୍ଠିତ ହୋଇଥିଲା । ଓଡ଼ିଶା ଆସେମ୍ବ୍ଲିର ସମୟ ଶେଷ ନ ହେଉଣୁ ସେ ବଧାନସଭା ଭାଂଗିଦେଇ ରାଷ୍ଟ୍ରପତି ଶାସନ ପ୍ରବର୍ତ୍ତନ କରିଥିଲେ ।

ସଞ୍ଜୟ ଗାନ୍ଧୀଙ୍କ ସମୟରୁ କଂଗ୍ରେସ ଦଳର ଚରିତ୍ର ପରିବର୍ତ୍ତନ ହୋଇଯାଇଛି । କଂଗ୍ରେସ ଦଳରେ ଯେଉଁ ଆଭ୍ୟନ୍ତରୀଣ ଗଣତନ୍ତ୍ର ଥିଲା, ଆତ୍ମ ସମାଲୋଚନାର ବ୍ୟାପକ ପରିସର ଥିଲା, ତାହା ଊଣା ଅଧିକେ ଲୋପ ପାଇ ହାଁଜୀ ଚରିତ୍ରର ଲୋକେ ପ୍ରାଧାନ୍ୟ ବିସ୍ତାର କରୁଛନ୍ତି ।

ଆପଦକାଳୀନ ସମୟରେ ପ୍ରଶାସନିକ ସଂସ୍କାର ଔଚିତ୍ୟ ଓ ଅପକର୍ମ ଯୋଗଁ ଶେଷ ପର୍ଯ୍ୟାୟରେ ଏହା ଲୋକଙ୍କର ଅତି ଅପ୍ରିୟ ହୋଇ ଯାଇଥିଲା । ପରିବାର ନିୟନ୍ତ୍ରଣ (ନଶବନ୍ଦୀ) ନାମରେ ଛୋଟେ ଲୋକଙ୍କୁ ଜବରଦସ୍ତ ଅସ୍ତ୍ରୋପଚାର କରାଇବାରେ ଅଭିଯୋଗ ହୋଇଥିଲା । ବିରୋଧୀ ଦଳ ନେତାମାନଙ୍କୁ ବିନା ବିଚାରରେ ଅଟକକରି ରଖିବା ବ୍ୟାପକ ଭାବରେ ଘଟିଥିଲା । ଯାହାଫଳରେ ଇନ୍ଦିରା ଗାନ୍ଧୀ ଓ କଂଗ୍ରେସ ଏପରି ଅପ୍ରିୟ ହୋଇ ପଡ଼ିଥିଲେ ଯେ, କଂଗ୍ରେସର 1977 ମସିହା ନିର୍ବାଚନରେ ମାରାତ୍ମକ ପରାଜୟ ଘଟିଥିଲା । 1977 ମସିହା ନିର୍ବାଚନ ପରେ କେନ୍ଦ୍ରରେ ବିରୋଧୀଦଳ ହାତକୁ ଶାସନ କ୍ଷମତା ଚାଲିଗଲା । ମୋରାର୍ଜୀ ଭାଇ ପ୍ରଧାନମନ୍ତ୍ରୀ ହେଲେ । ସେ ୨ଟି କଂଗ୍ରେସ ଶାସିତ ବିଧାନ ସଭାକୁ ଭାଙ୍ଗି ଦେଇଥିଲେ । ତାହା ମଧ୍ୟରୁ ଓଡ଼ିଶା ଏକମାତ୍ର ରାଜ୍ୟ ଯାହାର କାର୍ଯ୍ୟକାଳ ଶେଷ ହୋଇନଥିଲା ।

କଂଗ୍ରେସଦଳର ପାର୍ଲାମେଣ୍ଟରେ ୱାଇ. ବି. ଚୌହାନ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ସାହାଯ୍ୟରେ ନେତା ନିର୍ବାଚିତ ହେଲେ ଏବଂ ଶ୍ରୀ ବ୍ରହ୍ମାନନ୍ଦ ରେଡ୍ଡୀ କଂଗ୍ରେସର ସଭାପତି ହେଲେ । ଲୋକସଭା ସଦସ୍ୟ ମାନଙ୍କ ମଧ୍ୟରୁ ଅଧିକାଂଶ ଦକ୍ଷିଣ ଭାରତରୁ ନିର୍ବାଚିତ ହୋଇଥାନ୍ତି । ଜରୁରୀକାଳୀନ ପରିସ୍ଥିତିର ପ୍ରଭାବ, ଉତ୍ତର ଭାରତରେ ଯେପରି ବିକ୍ଷୋଭ ହୋଇଥିଲା, ଦକ୍ଷିଣ ଭାରତରେ ସେପରି ହୋଇନଥିଲା ।

ବ୍ରହ୍ମାନନ୍ଦ ରେଡ୍ଡୀ ଓ ୱାଇ.ବି. ଚୌହାନ ଉଭୟେ ଇନ୍ଦରା ଗାନ୍ଧୀଙ୍କୁ ନ୍ୟୂନ କରିଦେବା କାର୍ଯ୍ୟ ଆରମ୍ଭ କଲେ । ପ୍ରଥମେ ଇନ୍ଦିରା ଗାନ୍ଧୀଙ୍କୁ ଆପଦକାଳୀନ ପରିସ୍ଥିତି ପାଇଁ ଦାୟୀ କରୁଥିଲେ ମଧ୍ୟ ଗରିବ ଶ୍ରେଣୀର ଲୋକଙ୍କର ତାଙ୍କପ୍ରତି ଶ୍ରଦ୍ଧାଥିଲା । ଇନ୍ଦିରା ଗାନ୍ଧୀଙ୍କର ଗସ୍ତକ୍ରମ ଉପରେ ବ୍ରହ୍ମାନନ୍ଦ ରେଡ୍ଡୀ କଟକଣା ଜାରିକରି କଂଗ୍ରେସସଭାପତିଙ୍କ ବିନାନୁମତିରେ ସେ କେଉଁଠାକୁ ଯାଇ ଗସ୍ତ କରି ପାରିବେ ନାହିଁ ବୋଲି ନିର୍ଦ୍ଦେଶ ଦେଲେ । ନିଖିଳ ଭାରତ କଂଗେସ କମିଟିର ସଂପାଦକ ଶ୍ରୀ ରାଜୁ ଓଡ଼ିଶା ଆସିଥିଲେ । ତାଙ୍କୁ ମୁଁ ପ୍ରଶ୍ନ କରିଥିଲି ଯେ, କଂଗ୍ରେସ ସଭାପତିଙ୍କର କଂଗ୍ରେସ କର୍ମୀଙ୍କ ଗସ୍ତକ୍ରମକୁ ତାଙ୍କର ଅନୁମତି ସାପେକ୍ଷ ବୋଲି କହିବା କ'ଣ କଂଗ୍ରେସ ନୀତି ଓ ପରଂମପରା ସହିତ ମେଳ ଖାଉଛି ? ସେତେବେଳକୁ ଧୀରେ ଧୀରେ କଂଗ୍ରେସ ଲୋକେ ବୁଝିଲେଣି ବ୍ରହ୍ମାନନ୍ଦ ରେଡ୍ଡୀ ଓ ଚୌହାନ କଂଗ୍ରେସକୁ ପୁନଃ ପ୍ରତିଷ୍ଠା କରିପାରିବେ ନାହିଁ । ତେଣୁ ଇନ୍ଦିରା ଗାନ୍ଧୀଙ୍କ ନେତୃତ୍ୱରେ ନୂତନ କିଛି ସଂଗଠିତ କରିବାକୁ ହେବ । ଇନ୍ଦିରା ଗାନ୍ଧୀଙ୍କ ବିରୁଦ୍ଧରେ ଦୁର୍ନୀତି ଓ ଅପକର୍ମର ବିଚାର "ଶାହା କମିଶନ୍" ଜରିଆରେ ଜନତା ସରକାର କରାଇଥିଲେ । ଇନ୍ଦିରା ଗାନ୍ଧୀଙ୍କୁ ମଧ୍ୟ ଗିରଫ କରାଯାଇଥିଲା । କିନ୍ତୁ ତାଙ୍କ ପ୍ରତି ଫେରିଆଡ଼େ ଲୋକ ସମର୍ଥନ ପ୍ରକଟିତ ହେଉଥାଏ । ସେତେବେଳେ ସେ ଭାରତବର୍ଷର ପ୍ରତ୍ୟେକ ପଛିଷ୍ଟିତ

ମନ୍ଦିର ଓ ଦେବସ୍ଥାନକୁ ବ୍ୟକ୍ତିଗତ ଭାବରେ ବୁଲି ଆସିଥିଲେ । ଗୋଟିଏ ହରିଜନ ବସ୍ତିରେ ଅତ୍ୟାଚାର ହେବାରୁ ସେ ସେଠାକୁ ଦୁର୍ଗମ ପଥ ଅତିକ୍ରମ କରି ଯାଇଥିଲେ । ସେତେବେଳେ ସେହିଠାରୁ ଆରମ୍ଭ ହୋଇଥିଲା ଧ୍ୱନୀ "ଆଧାରୁଟି ଖାଏଙ୍ଗେ, ଇନ୍ଦିରାକୁ ଲାଏଙ୍ଗେ" । ପରବର୍ତ୍ତୀ ସମୟରେ ସେହି ଧ୍ୱନୀ ଦେଶର ହୋଇ ଯାଇଥିଲା । ଥରେ ବ୍ରହ୍ମାନନ୍ଦ ରେଡ୍ଡୀଙ୍କର କାର୍ଯ୍ୟକଳାପ ସଂପର୍କରେ ଏବଂ କଂଗ୍ରେସଦଳର ସ୍ଥିତି ସଂପର୍କରେ ତାଙ୍କ ସହିତ ଆଲୋଚନା କଲାବେଳେ ସେ ମୋତେ କହିଥିଲେ ଯେ, ଇନ୍ଦିରାଜୀଙ୍କ ସହିତ କଥାବାର୍ତ୍ତା କର । ଶ୍ରୀ ରାଓ, ଶ୍ରୀମତୀ ଗାନ୍ଧୀଙ୍କ ଉପରେ କ୍ଷୁବ୍‌ଧ ହୋଇଥାନ୍ତି । ମୋତେ ସେ କହିଲେ ଯେ, ମୋତେତ ଶ୍ରୀମତୀ ଗାନ୍ଧୀ ଆନ୍ଧ୍ର ମୁଖ୍ୟମନ୍ତ୍ରୀ ପଦରୁ ହଟାଇ ଦେଇଥିଲେ, ଆଉ ମୁଁ କ'ଣ କରି ପାରିବି? ତାପରେ ମୁଁ ତାଙ୍କୁ ଶ୍ରୀମତୀ ଗାନ୍ଧୀଙ୍କ ସହିତ ସାକ୍ଷାତ କରିବାକୁ ପ୍ରବର୍ତ୍ତାଇଥିଲି । ସେ ସମ୍ମତ ହେଲେ ।

୧୯୭୮ ମସିହା ଜାନୁୟାରୀ ପହିଲା ଦିନ ଦିଲ୍ଲୀରେ ନୂଆ କଂଗ୍ରେସର ଶୁଭ ଦିଆଗଲା ଶ୍ରୀମତୀ ଗାନ୍ଧୀ ଏ ସଂଗଠନର ସଭାନେତ୍ରୀ ହେଲେ । ସେଦିନ ସେ ସଭାରେ ଯୋଗ ଦେଇଥିଲୁ ଓଡ଼ିଶାରୁ ଜାନକୀବାବୁ, ମୁଁ, ବପନ ବାବୁ, ଶ୍ରୀ ଯୁଗଳ କଶୋର ପଟ୍ଟନାୟକ, ଶ୍ରୀ ଜଗନ୍ନାଥ ରାଉତ, କାହ୍ନୁବାବୁ ପମୁଖ ମୋଟ 22ଜଣ । ସେଥିରେ ମୁଁ ଭାଷଣ ଦେଇଥିଲି, ଶ୍ରୀ ରାଜ ଗୋପାଳଚାରୀ ଦେଶ ବିଭାଜନ ବେଳେ ଯେପରି ଲୁଗା ଚିରିଗଲେ ତାହାକୁ ସଂପୂର୍ଣ୍ଣ ଚିରିଦେଇ ଲୁଂଗିକରି ବ୍ୟବହାର କରିବା ଉଚିତ୍ ବୋଲି କହି ଦେଶ ବିଭାଜନକୁ ସମର୍ଥନ କରିଥିଲେ ତାହା ମୁଁ ଉଲ୍ଲେଖ କରିଥିଲି ଏବଂ କଂଗ୍ରେସ ଯେଉଁ ଅବସ୍ଥାରେ ପହଞ୍ଚିଛି, କଂଗ୍ରେସ ଭାଗ ଭାଗ ହେଲେ ବରଂ ଠିକ୍ ହେବ ବୋଲି କହିଥିଲି । ବିନାୟକ ବାବୁ ସେତେବେଳେ ଆଉ ଇନ୍ଦିରା ଗାନ୍ଧୀଙ୍କ ସହିତ ରହିଲେ ନାହିଁ । ସେହିଠାରୁ ତାଙ୍କ ରାସ୍ତା ଓ ଆମ ରାସ୍ତା ଅଲଗା ଅଲଗା ହୋଇଗଲା ।

# ନିଷ୍ଠାପର ସରଳ ଜୀବନ

ଶ୍ରୀ ଚନ୍ଦ୍ରଶେଖର ମହାପାତ୍ର

ସଂପାଦକ, ମାତୃଭାଷା

ପରିଧାନ ଓ ଆଚରଣରୁ ମଣିଷର ପ୍ରାଥମିକ ପରିଚୟ ମିଳେ, ରାଜନୀତି କର୍ମେ ନିର୍ବାଚନ ସର୍ବସ୍ୱ ହେଉଛି । ନିର୍ବାଚନ ଖର୍ଚ୍ଚ ସାପେକ୍ଷ ହେଉଛି । ନିର୍ବାଚନରେ ପୁଞ୍ଜି ବିନିଯୋଗ କରି ସଫଳତା ହାସଲ ପରେ କିଏ କେତେ ଧନ ସମ୍ପତ୍ତି କଲା ତାହା ସାଧାରଣରେ ମୁଖ୍ୟ ଆଲୋଚନାର ବିଷୟ ହୋଇଛି । ବିନାୟକ ଆଚାର୍ଯ୍ୟ ବ୍ରହ୍ମପୁରରେ ହାଇସ୍କୁଲ ଶିକ୍ଷକ ଭାବେ ନିଜର ଜୀବନ ଆରମ୍ଭ କରିଥିଲେ । ତାଙ୍କର ଛାତ୍ରଛାତ୍ରୀମାନେ ତାଙ୍କୁ ଜଣେ ନିଷ୍ଠାପର ଶିକ୍ଷକ ଭାବେ ଏବେ ମଧ୍ୟ ସ୍ମରଣ କରନ୍ତି । ସତ୍ୟବାଦୀ ଜାତୀୟ ବିଦ୍ୟାଳୟର ଶିକ୍ଷକ ଭାବେ ଆଚାର୍ଯ୍ୟ ହରିହର ଦାସ ପ୍ରମୁଖ ଛାତ୍ରମାନଙ୍କ ଶିକ୍ଷା କ୍ଷେତ୍ରରେ ଅସୁବିଧା ପ୍ରତି ଯେପରି ସର୍ବଦା ଜାଗ୍ରତ ଥିଲେ ବିନାୟକବାବୁ ସେହି ଆଦର୍ଶରେ ବହୁ ପରିମାଣରେ ଅନୁପ୍ରାଣିତ ହୋଇଥିଲେ । ବିନାୟକ ବାବୁଙ୍କ ନାମରେ ବ୍ରହ୍ମପୁରରେ ପ୍ରତିଷ୍ଠିତ କଲେଜରେ ପ୍ରତିବର୍ଷ ତାଙ୍କର ଶ୍ରାଦ୍ଧ ସଭାରେ ତାଙ୍କ ଆଦର୍ଶ ଶିକ୍ଷକ ଜୀବନର ଆଲୋଚନା ହୁଏ । ମୁଁ କେତେ ବର୍ଷ ଏହି ସଭାରେ ଯୋଗ ଦେଇ ଆଲୋଚନା କରିଛି । ତା'ଙ୍କୁ କୌଣସି ବିଷୟରେ ପତ୍ରଦେଲେ ସେ ଅବିଳମ୍ବେ ଉତ୍ତର ଦେଉଥିଲେ ।

ବିନାୟକ ବାବୁଙ୍କ ବ୍ରହ୍ମପୁରରେ ଥିବା ବାସଗୃହର ଭଗ୍ନାବସ୍ଥା ମୁଁ ଦେଖିଛି । ସେ ରାଜ୍ୟର ଅର୍ଥମନ୍ତ୍ରୀ ଥିଲେ ଓ ମୁଖ୍ୟ ମନ୍ତ୍ରୀ ଥିଲେ । ମାତ୍ର ଅସାଧୁ ପନ୍ଥାରେ ସେ ଅର୍ଥ ସଂଗ୍ରହ କରିନଥିଲେ । ତାଙ୍କ ବିରୁଦ୍ଧରେ ନିଷ୍ଠା ଓ ସାଧୁତାର ଅଭାବ ବିଷୟରେ କେହିକେବେ ଅଭିଯୋଗ କରିବା ମୁଁ ଶୁଣିନାହିଁ । ବ୍ରହ୍ମପୁର ବାସୀ ରାଜନୈତିକ ବ୍ୟକ୍ତିଙ୍କ ଆଚରଣ ବିଷୟରେ ସର୍ବଦା ଜାଗ୍ରତ । ମାତ୍ର ଦଳ ଓ ମତ ନିର୍ବିଶେଷରେ ସମସ୍ତେ ତାଙ୍କର ନିଷ୍ଠା ଓ ସାଧୁତା ବିଷୟରେ ପ୍ରାୟ ଏକ ମତ ହୁଅନ୍ତି । ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତଃ ବିଶ୍ୱନାଥ ଦାସ ଓ ପୂର୍ବତନ ବାଚସ୍ପତି ସ୍ୱର୍ଗତଃ ନନ୍ଦ କିଶୋର ଦାସ ସବଦା ବନ୍ଧୁ ଓ ସହକର୍ମୀମାନଙ୍କ ସହିତ ଆଲୋଚନା ପ୍ରସଙ୍ଗରେ କହନ୍ତି ସେମାନେ କାହାର ପଇସା ନିଅନ୍ତି ନାହିଁ ଓ ଅର୍ଥ ଦେଣନେଣ କାରବାରକୁ ବରଦାସ୍ତ କରିପାରନ୍ତି ନାହିଁ । ଏଥିପାଇଁ ବହୁ ସହକର୍ମୀ ସେମାନଙ୍କ ଉପରେ ଅସନ୍ତୋଷ ପ୍ରକାଶ କରନ୍ତି । ବିନାୟକ ବାବୁଙ୍କର ଅନୁରୂପ ଚରିତ୍ର ଥିଲା ଆଇନ ସମ୍ମତ ଓ ଯୁକ୍ତିଯୁକ୍ତ ନହେଲେ ଅର୍ଥଦ୍ୱାରା ପ୍ରଲୋଭିତ ଓ ପ୍ରଭାବିତ ହୋଇ ସେ କାହାକୁ ଉପକୃତ କରିବାକୁ ଆଗ୍ରହୀ ହେଉ ନଥିଲେ । ଏବେ ଦେଶରେ ଜାତିଆଣ-ସଂପ୍ରଦାୟିକ ଓ ଆଂଚଳିକ ଭାବ ବୃଦ୍ଧି ପାଉଛି । ତଦନୁସାରେ ନୂତନ ଦଳମାନ ଗଠିତ ହେଉଛି । ମାତ୍ର ବିନାୟକ ବାବୁଙ୍କର ଦେଶାତ୍ମବୋଧ

ଥିଲ । ସେ ଆଞ୍ଚଳିକ ବିଗ୍ରରରେ କୌଣସି ଯୁକ୍ତି ବା ଦାବୀ ଗ୍ରହଣ କରିବାକୁ ଆଗ୍ରହୀ ହେଉ ନଥିଲେ । ଏଥିପାଇଁ ଅନେକ ସମୟରେ ନିଜ ନିର୍ବାଚନ ମଣ୍ଡଳିର କେତେକ ସହକର୍ମୀ ତାଙ୍କ ଆଗରେ ଅସନ୍ତୋଷ ପ୍ରକାଶ କରୁଥିଲେ । କୌଣସି ଅଞ୍ଚଳରେ ପ୍ରାକୃତିକ ବିପର୍ଯ୍ୟୟ ଘଟିଲେ ବିପନ୍ନ ଲୋକଙ୍କୁ ସେଠାରେ ସାହାଯ୍ୟ କରିବାକୁ ସେ ପଶ୍ଚାତପଦ ହେଉନଥିଲେ । ମାତ୍ର ନିଜ ନିର୍ବାଚନ ମଣ୍ଡଳି ବା ଅଂଚଳର ବ୍ୟକ୍ତିଭାବେ କୌଣସି ବ୍ୟକ୍ତି ବିଶେଷଙ୍କ ପ୍ରତି ପକ୍ଷପାତ ବିଗ୍ରରରେ ସାହାଯ୍ୟ କରିବାକୁ ସେ ପଶ୍ଚାତପଦ ହେଉଥିଲେ । ନୀତି-ନିୟମ ଓ ଆଦର୍ଶ ବିଗ୍ରର ତାଙ୍କୁ ବିଶେଷ ଭାବେ ପ୍ରଭାବିତ କରୁଥିଲା । ମାତ୍ର ଥରେ ମୁଁ ତାଙ୍କୁ ଏକ ଅଭିଯୋଗ ଜଣାଇ କହିଥିଲି ଓଡ଼ିଶାର ଔଷଧ କାରଖାନା ଓ ନଳକୂପ କାରଖାନାରୁ ନିୟମାନୁସାରେ ଜିନିଷ କିଣିବା ପରିବର୍ତ୍ତେ ସରକାରୀ ବିଭାଗ ବାହାର କଂପାନୀର ଜିନିଷ କିଣିବାକୁ ଅଧିକ ଆଗ୍ରହୀ ହେଉଛନ୍ତି । ତତ୍କ୍ଷଣାତ ଏହାର ତଦନ୍ତ ଓ ପ୍ରତିକାର ପାଇଁ ସେ ବିଭାଗୀୟ ସଚିବଙ୍କୁ ଟେଲିଫୋନ କଲେ । ସେ ଏହାର ତଦନ୍ତ କରିବା ପରେ କିଛିଟା ପ୍ରତିକାର ହୋଇଥିଲା । ତଦନ୍ତ ପାଇଁ ସେ ଆଦେଶ ଦେଇଥିବା ମତେ ଜଣାଇବା ପରେ ମୁଁ ମୁଖ୍ୟ ଶାସନ ସଚିବଙ୍କ ସହିତ ଯାଇ ଆଲୋଚନା କରିଥିଲି । ଏହା ଫଳପ୍ରଦ ହୋଇଥିଲା ।

ବିନାୟକବାବୁ ବିଧାନ ସଭାକୁ ବାରମ୍ବାର ନିର୍ବାଚିତ ହୋଇଛନ୍ତି । ବହୁ ପଦାଧିକାରୀ ହୋଇଛନ୍ତି । ସେ ଅର୍ଥମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ହୋଇଛନ୍ତି । ମାତ୍ର ନିଜର ଧନସଂପତ୍ତି ବୃଦ୍ଧି କରିନାହାନ୍ତି । ଶେଷ ଜୀବନରେ ସେ ଦରିଦ୍ର ଅବସ୍ଥାରେ ରହିଛନ୍ତି । ଶେଷ ପର୍ଯ୍ୟନ୍ତ ସେ ସରଳ ଓ ନିରାଡମ୍ବର ଜୀବନ ଯାପନ କରିଛନ୍ତି । କାହାପ୍ରତି ଔଦ୍ଧତ୍ୟ ସେ ପ୍ରକାଶ କରିଥିବା କେବେ ଅଭିଯୋଗ ହୋଇନାହିଁ । ସେ ନମ୍ରତାର ସହିତ ସର୍ବଦା ନିଜର ବିଗ୍ରର ପ୍ରାଞ୍ଜଳ ଭାବେ ଉପସ୍ଥାପିତ କରିବାକୁ କୁଣ୍ଠାବୋଧ କରନ୍ତି ନାହିଁ । ତାଙ୍କ ପରିବାର ଓ ସଂପର୍କୀୟ ବ୍ୟକ୍ତିମାନେ ସେ କ୍ଷମତାରେ ଥିଲା ବେଳେ କୌଣସି ବିଷୟରେ ସ୍ୱତନ୍ତ୍ର ଭାବେ ସୁବିଧା ପାଇନଥିବା କହନ୍ତି । ରାଜନୀତିରେ ଆଦର୍ଶ ବିଗ୍ରର ଊଣା ହେଉଥିଲା ବେଳେ ବିନାୟକ ବାବୁଙ୍କ ଭଳି ନୀତିବାନ ସରଳ ଓ ସାଧୁବ୍ୟକ୍ତି ବିରଳ ହେଉଛନ୍ତି । ସେ ବ୍ରହ୍ମପୁର ପୌର ସଭାରୁ ଭୁବନେଶ୍ୱରରେ ସଚିବାଳୟ ଓ ବିଧାନସଭାରେ ଯେତେବେଳେ ଯେଉଁ ଦାୟିତ୍ୱ ନେଉଥିଲେ ତାହା ନିଷ୍ଠାପର ଭାବେ ଦକ୍ଷତାର ସହିତ ତୁଲାଉଥିଲେ । ଏହାହିଁ ଆଜି ସାଧାରଣ କ୍ଷେତ୍ରରେ ଥିବା ଲୋକଙ୍କ ପକ୍ଷେ ବିଗ୍ରର୍ଯ୍ୟ । ତା' ହେଲେ ଦେଶର ଗଣତାନ୍ତ୍ରିକ ବ୍ୟବସ୍ଥା ସୁଦୃଢ଼ ହେବ ଓ ଶାସନ ନିର୍ମଳ ହେବ ।

# ବିନାୟକ ବାବୁ
## ରାଜନୀତିର ଏକ ଅଭିନବ ପରୀକ୍ଷା

ଅଧ୍ୟାପକ କିଶୋର ଚନ୍ଦ୍ର ତ୍ରିପାଠୀ
ସମାଜ ଅଫିସ, କଟକ

ଦେଶରେ ଜରୁରୀ ପରିସ୍ଥିତି ଜାରୀ, ରାଜନୈତିକ ଚିନ୍ତା ଓ ଚେତନା ଏକ ସନ୍ଧିକ୍ଷଣ ସମୟରେ ଉପନୀତ । ଆଇନ ଅମାନ୍ୟକାରୀ ନେତୃବୃନ୍ଦ "ହା ହତୋସ୍ମି" ଡାକରା ଦେଉଛନ୍ତି ଜରୁରୀ ପରିସ୍ଥିତିର ହାଓ୍ୱାରେ, କଂଗ୍ରେସଦଳ ଓଡ଼ିଶାର ମୁଖ୍ୟମନ୍ତ୍ରୀତ୍ୱ ହସ୍ତାନ୍ତର କଲା ନନ୍ଦିନୀଦେବୀଙ୍କଠାରୁ ବିନାୟକ ଆଚାର୍ଯ୍ୟଙ୍କୁ । ଋଷିକୁଲ୍ୟା ଜଳ ପବନରେ ପରିପୁଷ୍ଟ ଦ୍ୱିତୀୟ ବ୍ୟକ୍ତି ମୁଖ୍ୟମନ୍ତ୍ରୀ ହୋଇ ଆସିଲେ ଓଡ଼ିଶାର ।

ଜରୁରୀ ପରିସ୍ଥିତିର ପରିଣାମରେ ଦେଶର ବିଭିନ୍ନ ରାଜ୍ୟରେ ଯେଉଁ ଅଦ୍ଭୁତ ଓ ଅଶ୍ରୁତପୂର୍ବ ଘଟଣା ଘଟିଚାଲିଲା, ଯେଉଁ ଅମୂଲ୍ୟ ଧନଜୀବନର ଅବସାନ ଘଟିଲା, ବହୁ ବିଜ୍ଞଲୋକ ଉଦ୍ୟମକରି ଆଜିସୁଦ୍ଧା ତାର ପୂର୍ଣ୍ଣ ହିସାବ କିତାବ କରିପାରି ନାହାନ୍ତି । କିନ୍ତୁ ବିନାୟକବାବୁଙ୍କ ଶାସନରେ ଓଡ଼ିଶା ଭୂମିରେ ସେ ସ୍ରୋତ କ୍ଷୀଣରୁ କ୍ଷୀଣତର ହୋଇ ଯାଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

ଯୁବନେତା ସଂଜୟଗାନ୍ଧୀଙ୍କ ଓଡ଼ିଶା ଆଗମନ ବେଳେ ଅଭ୍ୟର୍ଥନାପାଇଁ ସରକାରୀ ପ୍ରସ୍ତୁତି ଯେ ଦେଖିଛି ବିନାୟକବାବୁଙ୍କ ରାଜନୈତିକ ମୂଲ୍ୟବୋଧର ମୂଲ୍ୟାୟନ ସେମାନଙ୍କ ପକ୍ଷେ ସେତେ ସହଜ ହେବନାହିଁ । ଶିରଦିଆ ସାରନାହିଁ ଦିଆ । ଜରୁରୀ କାଳୀନ ସମୟ ମୁଖ୍ୟମନ୍ତ୍ରୀ ଜରୁରୀ କାଳୀନ ପରିସ୍ଥିତି ଓ ପରିବେଶ ପ୍ରତି ନିଜର ସମୁଚିତ ମତାମତ ଓ ପ୍ରତିକ୍ରିୟା ପ୍ରକାଶ କରିବାରେ ପଛାଇଲେ ନାହିଁ । ପରିଣାମରେ କଂଗ୍ରେସ ଛାଡ଼ି ଜନତାଦଳର ନେତୃତ୍ୱ ନେବା ଯଥାର୍ଥ ମନେକଲେ । ( Single man with courage makes majority ) ଏହିଦଳ 1977ରେ ପୁଣି କଂଗ୍ରେସ ହାତରୁ କ୍ଷମତା ଛଡ଼ାଇନେଲା ।

ବିନାୟକ ବାବୁଥିଲେ ରକ୍ଷଣଶୀଳ ବ୍ରାହ୍ମଣଘରର ପୁଅ । ଧନୀ, ମାନୀ ଅସାଧାରଣ ପ୍ରତିପତ୍ୟଶାଳୀ ପରିବାରର ସନ୍ତାନ ସେ ନ ଥିଲେ । ସାଧାରଣଲୋକଙ୍କ ସୁଖଦୁଃଖ ସହଯୋଗ, ସଂଳାପ ସେମାନଙ୍କ ଶିକ୍ଷା, ସ୍ୱାସ୍ଥ୍ୟ ଓ ସାମର୍ଥ୍ୟ ବିନାୟକ ବାବୁଙ୍କ ଧ୍ୟାନ ଧାରଣାର ଭିତ୍ତିଭୂମି ଥିଲା । ଲୋକଙ୍କ ଆର୍ଥିକ ଅବସ୍ଥା ଯେତିକି ତାଙ୍କୁ ପ୍ରଭାବିତ କରିଥିଲା ତା ଠାରୁ ଅଧିକ ମନକୁ ଛୁଇଁ ଥିଲା ସେମାନଙ୍କ ମାନସିକ ଓ ଆଧ୍ୟାତ୍ମିକ ଚିନ୍ତାଧାରା ଏଣେ ବୃତ୍ତିରେ ସେ ଥିଲେ ଶିକ୍ଷକ । ତେଣୁ ସାଧାରଣ ଲୋକର ଅଭାବ, ଅସୁବିଧା ଦୀନହୀନତା, କୃଷି,ଶିଳ୍ପ ଓ ବ୍ୟବସାୟରେ ସେମାନଙ୍କ ଆର୍ତ୍ତନାଦ ତାଙ୍କ ମନ ଓ ପ୍ରାଣକୁ

ଅଧିକ ଆଲୋଡ଼ିତ କରୁଥିଲା । ଏଥିରେ ସେ ଯେତେ ପ୍ରଭାବିତ ହୋଇପଡ଼ିଥିଲେ ଲୋକେ ମଧ୍ୟ ତାଙ୍କର ମନ ଓ ହୃଦୟକୁ ଜାଣିବା ସେତେ ସମ୍ଭବ ହୋଇଥିଲା । ତେଣୁ ବହୁ ନିର୍ବାଚନରେ ସେ ଆଶାତୀତ ସଫଳତା ପାଇପାରିଥିଲେ ।

1967ରେ ପୂର୍ବତନ ସ୍ୱାସ୍ଥ୍ୟମନ୍ତ୍ରୀ ଡ଼କ୍ଟର ଜଗନ୍ନାଥ ରାଓ ନିର୍ବାଚନ ଲଢ଼ିବାକୁ ବିମୁଖତା ପ୍ରକାଶ କରି ନ ଥିଲେ ବିନାୟକ ବାବୁ ହୁଏତ ବ୍ରହ୍ମପୁରରୁ ବିଧାନସଭା ପ୍ରତିନିଧି ହୋଇ ଆସିପାରି ନ'ଥାନ୍ତେ । କଂଗ୍ରେସ ଟିକେଟ ସେତେବେଳେ ସେଠି ପୂର୍ବତନ ସ୍ୱାସ୍ଥ୍ୟମନ୍ତ୍ରୀ ଡ଼କ୍ଟର ରାଓଙ୍କ ପାଇଁହିଁ ସଂରକ୍ଷତ ଥିଲା । କିନ୍ତୁ ବିଧିର ବଧାନ କେ କରିବ ଆନ । ଡ଼କ୍ଟର ରାଓଙ୍କ ସେଦିନର ନିର୍ବାଚନ ବିମୁଖତା ଓଡ଼ିଶା ଇତିହାସରେ ସୃଷ୍ଟି କଲତ ଏକ ନୂଆ ମୋଡ଼।

1972ରେ ସ୍ୱର୍ଗୀୟ ବିଶ୍ୱନାଥ ଦାସଙ୍କ ମୁଖ୍ୟମନ୍ତ୍ରୀତ୍ୱ ଯେପରିଥିଲା ଅଯାଚିତ, 1976ରେ ସେପରି ଅପ୍ରତ୍ୟାଶିତ ଭବରେ ପୁଣି ସେ ଗଞ୍ଜାମ ଜିଲ୍ଲାରୁ ମୁଖ୍ୟମନ୍ତ୍ରୀ ହୋଇ ଆସିଲେ ଓଡ଼ିଶାର । ଉଭୟଙ୍କ ବ୍ୟବଧାନ କେବଳ ନନ୍ଦିନୀ ଦେବୀଙ୍କ ମନ୍ତ୍ରୀମଣ୍ଡଳରେ ଶିକ୍ଷା, ସମବାୟ ଓ ଅର୍ଥ ଆଦି ବିଭାଗରେ ଦାୟିତ୍ୱ ନେଇ ଅନୁଭୂତି ବଢାଇବା ପାଇଁ ଉଦ୍ଦିଷ୍ଟ ଥିଲା କହିଲେ ଚଳେ । ବିନାୟକ ବାବୁଙ୍କ ଏହି ମୁଖ୍ୟମନ୍ତ୍ରୀତ୍ୱ ମଧ୍ୟ ଥିଲା ସ୍ୱଳ୍ପ ସମୟ ପାଇଁ କିନ୍ତୁ ଏହି ସ୍ୱଳ୍ପ ସମୟ ବର୍ଷେ କେତେମାସ ଭିତରେ ବିନାୟକ ବାବୁଯେ ଲାଲବାହାଦୁର ଶାସ୍ତ୍ରୀଙ୍କ ଏକ ନୂଆ ସଂସ୍କରଣ ଏଥିରେ କାହାରି ମତଦ୍ୱୈଧ ନ ଥିଲା ।

ବିନାୟକ ବାବୁ ଥିଲେ ଜଣେ ଶିକ୍ଷକ । ଆଜୀବନ ଶିକ୍ଷକ ରହିଗଲେ ସେ । ବିନାୟକ ବାବୁ ରାଜନୀତିର ବିନାୟକ ହୋଇ ପାରନ୍ତି, ତାଙ୍କର ଏ ସ୍ୱଳ୍ପଦିନରେ ରାଜନୈତିକ ସାଧନା ଓ ସିଦ୍ଧି ପ୍ରଣିଧାନ ଯୋଗ୍ୟ । କିନ୍ତୁ ଶିକ୍ଷାମନ୍ତ୍ରୀତ୍ୱ ବେଳେ ସବୁ ସ୍କୁଲ କଲେଜର ଛାତ୍ର ଓ ଶିକ୍ଷକ ତାଙ୍କର ଶିକ୍ଷକ ନୈତିକତାର ମହକ ଉପଭୋଗ କରିବା ସୁଯୋଗ ପାଇଥିଲେ ।

" ମୁକ୍ତସଂଙ୍ଗ ଅନହଂବାଦୀ ଧୃତିସାହ ସମନ୍ୱିତ

ସିଦ୍ଧା ସିଦ୍ଧି ନିର୍ବୀକାର କର୍ତ୍ତାସାତ୍ତ୍ୱିକ ଉଚ୍ୟେତେ ",

ପାରିବାରିକ ଓ ଦଳୀୟ ସ୍ୱାର୍ଥ ପ୍ରତାରଣାରୁ ମୁକ୍ତ ଅନଂହକାରୀ ଉତ୍ସାହୀ କର୍ମକର୍ତ୍ତା ଯଦି ସିଦ୍ଧା ସିଦ୍ଧି ଓ ଲାଭ ନଷ୍ଟ ନିର୍ବୀକାର ନିଶ୍ଚୟ ସେ ସାତ୍ତ୍ୱିକ କର୍ତ୍ତା ମୁଖ୍ୟମନ୍ତ୍ରୀ । ଯଦି ନିଜକୁ ପାରିବାରିକ ସୁବିଧାର ଲୋଭ ଓ ଦଳୀୟ ପ୍ରଭାବରୁ ନିଜକୁ ମୁକ୍ତ ରଖି ପାରିଲେ ନିଶ୍ଚୟ ସେ

ଜଣେ ପ୍ରଥମଶ୍ରେଣୀର ମନ୍ତ୍ରୀ । ବିନାୟକ ବାବୁ ନିଜର ସ୍ୱଳ୍ପ ସମୟର ମୁଖ୍ୟମନ୍ତ୍ରୀତ୍ୱରେ ନିଜ ଜୀବନରେ ଏହା ପ୍ରମାଣ କରିଗଲେ । ଏହାର ପରିଣାମ ସ୍ୱରୂପ ସେ ଦଳ ଛାଡ଼ିବାକୁ ପଡ଼ିଲା । କିନ୍ତୁ ନିଜ ଆଦର୍ଶ ଓ କର୍ତ୍ତବ୍ୟ ବୋଧରୁ ସେ ଓହରିଲେ ନାହିଁ ।

"ନିନ୍ଦନ୍ତୁ ନୀତି ନିପୁଣାଃ ଯଦିବା ସ୍ତୁବନ୍ତୁ
ଲକ୍ଷ୍ମୀଃ ସମାବିଶନ୍ତୁ ଗଛନ୍ତୁ ବା ଯଥେଷ୍ଟଂ
ଅଦ୍ୟୈବ ବା ମରଣେସ୍ତୁ ଯୁଗାନ୍ତରେ ବା
ନ୍ୟାୟାତ୍ ପଥ ନ ତ୍ୟଜନ୍ତି ପଦଂ ନ ଧୀରାଃ"

କ୍ଷମତାର ତୁଙ୍ଗଶିଖରରେ ପହଞ୍ଚି ମଧ୍ୟ ବିନାୟକ ବାବୁ ଜୀବନରେ ଶିକ୍ଷକ ନୈତିକତାରୁ ବିଚ୍ୟୁତି ଗ୍ରହଣ କରି ନାହାଁନ୍ତି । ଓଡ଼ିଶାର କାହିଁକି ଏ ଦେଶର ବହୁ ମୁଖ୍ୟମନ୍ତ୍ରୀ ଅଛନ୍ତି ଯେଉଁମାନେ ଥରେ ମୁଖ୍ୟମନ୍ତ୍ରୀ ବା ପ୍ରଧାନମନ୍ତ୍ରୀ ଆସନ, ପରିସର ବା ପରିବେଶରେ ପ୍ରବେଶ କଲେ ସେଥିରୁ ଓହ୍ଲାଇ ଆସିବା ଅବସ୍ଥାକୁ ଗ୍ରହଣ କରି ପାରନ୍ତି ନାହିଁ । ବହୁ ମୁଖ୍ୟମନ୍ତ୍ରୀଙ୍କ ବିଷୟ ଏ ଦେଶର ବହୁ ବିଜ୍ଞ ବ୍ୟକ୍ତିଙ୍କ ବିସ୍ମୟ ଓ ଅନୁଶୋଚନାର କାରଣ ହୋଇଛି ଏଇଥିପାଇଁ । କିନ୍ତୁ ବିନାୟକ ବାବୁଙ୍କ ଚିନ୍ତା ଚେତନା ଗଢ଼ାଥିଲା ଅନ୍ୟ ଉପାଦାନେ । ସ୍ୱଇଚ୍ଛାରେ କଂଗ୍ରେସ ଛାଡ଼ି ଅନ୍ୟଦଳରେ ପ୍ରବେଶ କଲେ ନିଜ ଆଦର୍ଶ ଅନୁରୋଧରେ ।

ହିଗେଲ ଯଥାର୍ଥରେ କହିଛନ୍ତି "ମଣିଷ ଜୀବନରେ ପୂର୍ଣ୍ଣତା ଉପଲବ୍ଧିକରେ ସେ ତାର ସମର୍ଥ୍ୟକୁ ଗ୍ରହି ଏକ କାମ ଓ ମନ ମୁତାବକ ଏକ ପତ୍ନୀ ପାଇଲେ ।" ବିନାୟକ ବାବୁ ନଥିଲେ ନିଜକାମରେ ଅସନ୍ତୋଷ ବା ପୁତ୍ର ଭାର୍ଯ୍ୟାରେ । କିନ୍ତୁ ସର୍ବସାଧାରଣଙ୍କ ଅସୁବିଧା ବ୍ରହ୍ମପୁର ସହରର ଅଭାବ ଅସୁବିଧା ଅବ୍ୟବସ୍ଥା ତାଙ୍କୁ ବ୍ୟତିବ୍ୟସ୍ତ କରୁଥିଲା ।

ସେ ଯେତିକି ସମାଜବାଦୀ ଥିଲେ ତାଠାରୁ ଅଧିକ ଥିଲେ ବାସ୍ତବବାଦୀ ଜାତି, ଧର୍ମ ନିର୍ବିଶେଷରେ । ତେଣୁ ବ୍ରହ୍ମପୁର ସହରବାସୀଙ୍କ ରାସ୍ତା ଘାଟ, ଗଳି କନ୍ଦିର ଆବର୍ଜନା ତାଙ୍କୁ ବିଚଳିତ କରୁଥିଲା । ଏଥିପାଇଁ ସେ ବ୍ରହ୍ମପୁର ସହରର ଏକାଧିକ ବାର ଚେୟାରମେନ ହୋଇ ନିର୍ବାଚିତ ହେଲେ । ତଥାପି ଏହା ତାଙ୍କୁ ଶାନ୍ତ ଓ ସନ୍ତୋଷ ଦେଇପାରି ନ ଥିଲା । ବ୍ରହ୍ମପୁର ସହରର କେତେକ ସମସ୍ୟା ସାମାହିତ ନହୋଇପାରିବା ଯୋଗୁଁ ଚୀର ଦୁଃଖୀତ ଓ ଚିନ୍ତିତ ହୋଇ ଏହା କହୁଥିଲେ ।

ବିନାୟକ ବାବୁ ଯେତେବେଳେ ମୁଖ୍ୟମନ୍ତ୍ରୀ ମୁଁ ଓଡ଼ିଶା କୃଷକ ପରିଷଦ ପକ୍ଷରୁ ଓଡ଼ିଶାର କୃଷି ଓ କୃଷକଙ୍କର ସମସ୍ୟା ନେଇ ଏକାଧିକ ବାର ଦେଖା କରିଚି । ଗଞ୍ଜାମର ଛୋଟ ଗୃଷୀର ଜମିକୁ ଉଦ୍ୟାନରେ ପରିଣତ କରିବା ସେ ସ୍ୱପ୍ନ ଦେଖିଥିଲେ । ସେ ସ୍ୱପ୍ନ କିନ୍ତୁ ସ୍ୱପ୍ନରେ ରହିଗଲା ।

ସଭ୍ୟତା, ସଂସ୍କୃତି, ଜାତି ଓ ଧର୍ମ ମିଳିମିଶି କାର୍ଯ୍ୟ କରିବା ପସନ୍ଦ କରନ୍ତି ସବୁ ସମୟରେ ସବୁ କ୍ଷେତ୍ରରେ ଏକଠାରୁ ଅନ୍ୟକୁ ଭିନ୍ନ କରିବା ତେଣୁ କଷ୍ଟସାଧ୍ୟ ହୋଇ ପଡେ । ଗତ କାଲିର ରାଜନୈତିକ ମୂଲ୍ୟବୋଧ ଆଜକୁ ରକ୍ଷଣଶୀଳ ମନେହୁଏ । ଯେଉଁ ଆଦର୍ଶ ଓ ଉଦ୍ୟମ ଜରୁରୀକାଳିନ ପରିସ୍ଥିତି ବେଳେ ବିନାୟକ ବାବୁଙ୍କୁ ମୁଖ୍ୟମନ୍ତ୍ରୀ କରି ପ୍ରତିଷ୍ଠିତ କଲେ ଜରୁରୀପରିସ୍ଥିତ ଶେଷରେ ତାହା ସମସ୍ତଙ୍କୁ ରକ୍ଷଣଶୀଳ କରି ଉଭାକଲା ଅବସ୍ଥାର ସମତୁଲ ବ୍ୟବସ୍ଥା ନାମରେ !

ବହୁ ସମସ୍ୟା ଉତ୍‌ଥାପନ କରି ଲୋକେ ବିନାୟକ ବାବୁଙ୍କୁ ବ୍ୟତିବ୍ୟସ୍ତ କରିବା ଉଦ୍ୟମ କଲେ । ସେ ସମସ୍ୟା ଘେରରେ ସେ ବିଚଳିତ ହୋଇ ଦଳ ବାହାର ମଧ୍ୟ ହୋଇ ଗଲେ । Heros die criminas prosper ବିନାୟକ ବାବୁଙ୍କ ଶ୍ୱାସରୁଦ୍ଧ ଅବସ୍ଥା ଅନ୍ୟଙ୍କ ଉପକାରରେ ଆସିଲା । ଅବାଂଛିତ ଲୋକେ ଏ ସୁଯୋଗରେ ବହୁତ ଆଗକୁ ଆସିପାରିଲେ । ଆଦର୍ଶ ମୂଲ୍ୟବୋଧର ଅନୁରୋଧରେ ବିନାୟକ ବାବୁ ଯେଉଁଠିଥିଲେ ସେଇଠି ଅଟକି ଗଲେ ।

Last weakness of greatest mind is to become famous ବିନାୟକ ବାବୁ ଜନତାଦଳରେ ଯୋଗଦେଇ ସାମୟିକ ଜନପ୍ରିୟତା ରକ୍ଷାକଲେ । କିନ୍ତୁ ପରିଣାମରେ ଏକ ଏକ ରାଜନୈତିକ କ୍ଷତିର କାରଣ ହେଲା ।

ଯେ ଯେଉଁଥିରେ ବଢ଼େ ସେଥିରେ କ୍ଷୟପାଏ । ସ୍ୱାଧୀନଚେତା, ସ୍ପଷ୍ଟବାଦିତା ବିନାୟକ ବାବୁଙ୍କୁ ଚାକିରୀ ଜୀବନରୁ ଟାଣିଆଣି ପହଞ୍ଚାଇଥିଲା ରାଜନୈତିକ ଜୀବନ ସ୍ରୋତରେ । ରାଜନୀତିରେ କିନ୍ତୁ ବିପରିତ "ବଚସେନ୍ୟ, କର୍ମସେନ୍ୟ ମନସେନ୍ୟ ମହାତ୍ମନ ମନସା ଚିନ୍ତିତ କର୍ମ ବଞ୍ଚସନ୍ୟ ପ୍ରକାଶୟେତ" ରାଜନୀତିର କୁଆଡେ ଧର୍ମ । ବିନାୟକ ବାବୁଙ୍କ ସ୍ପଷ୍ଟବାଦିତା ରାଜ୍ୟକଂଗ୍ରେସର ନେତୃତ୍ୱ ପିରାମିଡର ଉଚ୍ଚତମ ଶିଖରରୁ ଓହ୍ଲାଇ ଆଣି ଜନତାଦଳରେ ସ୍ଥାନ ନିରୂପିତକଲା । ବିନାୟକ ବାବୁ ଜନତାଦଳର ଉପସଭାପତି ଭାବରେ କାର୍ଯ୍ୟକରି ଉଭାହେଲେ ଇନ୍ଦିରାଗାନ୍ଧୀଙ୍କ ଏକ ତିବ୍ର ସମାଲୋଚକ ଭାବେ ।

ବିନାୟକ ବାବୁଙ୍କ ସରଳ ତରଳ ନିଷ୍କପଟ ବ୍ୟବହାର, ନିର୍ଭୟ ଓ ନିର୍ଲୋଭ ପ୍ରକୃତି ଅପରିଣାମଦର୍ଶୀ ସାହସ ଓ ଦୃଢ଼ତା ଯେତିକି ଜନପ୍ରିୟକରେ ନୂଆଦଳର ନେତୃତ୍ୱ ନେବାରେ ସାହାଯ୍ୟ କଲା ସେତେ ସେ ଅପ୍ରତିଦ୍ୱନ୍ଦୀ ହୋଇ ଉଠିଲେ । ବିଧାତା ସ୍ୱଳ୍ପାୟୁ କରି ନଥିଲେ ସେ ନିଶ୍ଚୟ ତାର ସୁଫଳ ଭୋଗକ ପାରିଥାଆନ୍ତେ । କିନ୍ତୁ ବିଧାତାର ଇଛା ଥିଲା ଅନ୍ୟ ପ୍ରକାର

ବିନାୟକ ବାବୁଙ୍କ ସଂଗଠନଶକ୍ତି ଥିଲା ଅମାପ । 1969ରେ ସେ ବିଧାନସଭାର ବିରୋଧି ଦଳ ନେତା ହେବାବେଳେ କଂଗ୍ରେସ ବିଧାୟକ ସଂଖ୍ୟା ଥିଲେ ମାତ୍ର 91 । 1974ରେ କଂଗ୍ରେସ ଓଡ଼ିଶାରେ କ୍ଷମତାକୁ ଆସିଲା ବେଳେ କଂଗ୍ରେସ ପୂର୍ଣ ବଳିଷ୍ଠ ହୋଇ ବିନାୟକ ବାବୁଙ୍କ ସଂଗଠନଶକ୍ତିର ପରାକାଷ୍ଠ ପ୍ରତିପାଦିତ କଲା । ଏକ ନିଷ୍ଠାପର ଦେଶସେବକ, ପ୍ରତିଭାବାନ ସାହିତ୍ୟିକ, ବିଚକ୍ଷଣ ରାଜନୈତିକ, ସୁଖ୍ୟାତିସଂପନ୍ନ ଶାସକ କରି ଗଢିତୋଳିଲା । ବିନାୟକ ବାବୁଙ୍କୁ କଂଗ୍ରେସ ତାହା ପ୍ରତିଦାନରେ କେଳାଙ୍କ ହାତରେ ସାପଧରାଇ କାର୍ଯ୍ୟକରିବା ।

ଯଜ୍ଞରେ ହୋତାହୋଇ ଘୃତ ସଂଗ୍ରହ କରିବା ଆଜିକାଲି ନେତାଙ୍କର ଯେଉଁ ସହଜାତ ପ୍ରକୃତି ସେଥିରୁ ସେ ପୂର୍ଣ୍ଣ ମୁକ୍ତଥିଲେ । ତେଣୁ ସେ ନିଜ ସ୍ୱାର୍ଥଦୃଷ୍ଟିରୁ ଦେଶର ସ୍ୱାର୍ଥ ପାଇଁ ଯେତେବେଳେ ଯାହା ନିଷ୍ପତିନେବାକୁ ପଡ଼ିଚି ସେ ସେଥିରେ ବିଚଳିତ ହୋଇ ନାହାଁନ୍ତି ।

ରାଜନୈତିକ କନ୍ଧନା ବିଜଡ଼ିତ ଘଟଣାବହୁଳ ଜୀବନ ବିନାୟକ ବାବୁଙ୍କର ଭିତରେ ସେ ମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ହେବା ବ୍ୟତିତ କୃଷି ବିଶ୍ୱବିଦ୍ୟାଳୟର ପ୍ରୋଗ୍ରନସେଲର, ଓଡ଼ିଶା କୃଷକ ପରିଷଦରେ ସଭାପତି ପ୍ରଭତି ବହୁତ ଦାୟିତ୍ୱ ନେଇଛନ୍ତି । କିନ୍ତୁ କେଉଁଠି ଅଯୋଗ୍ୟ ପ୍ରମାଣିତ ହୋଇ ନାହାଁନ୍ତି । ଏ ଭିତରେ ସ୍ତ୍ରୀ,ସନ୍ତାନ ଓ ସନ୍ତତିଙ୍କ ଆବିର୍ଭାବ ନିଶ୍ଚିତ ଆଶୀର୍ବାଦ କି ନୁହେ ସେ କେବେ ବିଗ୍ଚର କରିନାହାନ୍ତି । ସେମାନଙ୍କ ଅମାପ ସ୍ନେହ, ଶ୍ରଦ୍ଧା ପୂର୍ବ ସଂଚିତ, ପୂର୍ବ ଘୋଷିତକି କ୍ରମେ ସଂମୃଦ୍ଧି ପ୍ରାପ୍ତ କେବେ ସେ ବିଗ୍ଚର କରିନାହାଁନ୍ତି । କିନ୍ତୁ ତାଙ୍କ ସ୍ୱର୍ଗବାସ ପରେ ତାଙ୍କ ପୁତ୍ର, ଭାରିଜା, ସଂପତ୍ତିକୁ ଦେଖିଲେ ବିନାୟକ ବାବୁଙ୍କ ଉଚ୍ଚପଦାସୀନ ଅବସ୍ଥାର ପ୍ରଭାବ ଓ ପ୍ରତିଷ୍ଠା ସେମାନଙ୍କୁ ହୃଷ୍ଟପୁଷ୍ଟ କରିପାରିଛି କି ନାହିଁ ଯେ କେହି ଲକ୍ଷ୍ୟ କରି ପାରିବେ । ସ୍ଥାନୀୟ ଲୋକ ହିସାବରେ ବିନାୟକ ବାବୁଙ୍କ ଘରକୁ ତାଙ୍କ ଶିକ୍ଷକ ଜୀବନରୁ ମୁଖ୍ୟମନ୍ତ୍ରୀ ରହିବା ଯାଏ ବହୁବାର ମୁଁ ଯାଇଚି । ବିନାୟକ ବାବୁଙ୍କୁ କାହିଁକି ପରିବାରର ସମସ୍ତଙ୍କ ସ୍ୱଭାବସୁଲଭ ଭଦ୍ର ବ୍ୟବହାର ମୋତେ ଆପ୍ୟାୟିତ କରିଛି, କିନ୍ତୁ ମୁଁ ଦେଖୁଛି ତାଙ୍କ ଘର ବ୍ରହ୍ମପୁରରେ ଯେପରି ଥିଲା ସେପରି ଏବେମଧ୍ୟ ଅଛି ।

ବିନାୟକ ବାବୁଙ୍କ ଜୀବନ ଦର୍ଶନ ଚିନ୍ତା କଲା ବେଳେ ସମୟେ ସମୟେ 1968ର ଗଞ୍ଜାମ ଜିଲ୍ଲାର ବାତ୍ୟା ପ୍ରକୋପ କଥା ମନକୁ ଆସେ, 1968ବାତ୍ୟାରେ ବ୍ରହ୍ମପୁର ତାଲୁକାର କ୍ଷୟ କ୍ଷତିର ମାତ୍ରା ଅଧିକଥିଲା । ଏହି ବାତ୍ୟା ବିକ୍ଷୁବ୍ଧ ଲୋକଙ୍କ ସେବା ପାଇଁ ଲୋକ ସେବକ ମଣ୍ଡଳ ବ୍ରହ୍ମପୁରଠାରେ ଲୋକ ସେବକ ମଣ୍ଡଳ ସଭାପତି ଶ୍ରୀଯୁକ୍ତ ବିଶ୍ୱନାଥ ଦାସଙ୍କ

ଅଧ୍ୟକ୍ଷତାରେ ଗଠନକଲେ ଗଞ୍ଜାମରିଲିଫ କମିଟି । ଶ୍ରୀ ବସନ୍ତ ପାଣିଗ୍ରାହୀ ଓ ମୁଁ ରହିଲୁ ରିଲିଫ କମିଟିର ସଂପାଦକ । ପଣ୍ଡିତ କାମାକ୍ଷା ପ୍ରସାଦ ଶର୍ମା , ଡ଼କଟର ଜଗନ୍ନାଥ ରାଓ ରହିଲେ ଉପ ସଭାପତି, ବୃନ୍ଦାବନ ସାବତ କୋଷାଧ୍ୟକ୍ଷ । ଶ୍ରୀ ବିନାୟକ ଆଗ୍ରର୍ଯ୍ୟ ସ୍ୱର୍ଗୀୟ ବ୍ରହ୍ମାନନ୍ଦ ପଣ୍ଡା, ଏମ. ପି. ଶ୍ରୀ ବୃନ୍ଦାବନ ନାୟକ, ଶଶିଭୂଷଣ ପତି ପ୍ରଭୃତି କମିଟିର ସକ୍ରିୟ ସଭ୍ୟ । ସେତେବେଳେ ମୁଁ ଦେଖିବି ବିନାୟକ ବାବୁଙ୍କ ରିଲିଫ କାର୍ଯ୍ୟରେ ଆନ୍ତରିକ ସହଯୋଗ ଘର ଘର ବୁଲି ଅବସ୍ଥା ଅନୁଧ୍ୟାନ କରିବା, ରିଲିଫ ବାଣ୍ଟିବା ପର୍ଣ କମିଟି ମିଟିଂରେ ଏକତ୍ରିତହୋଇ ନିଜ ଅନୁଭୂତି ବର୍ଣ୍ଣନା କରି ବିଶ୍ଳେଷଣ କରିବା । ସେ ସବୁ ସଭ୍ୟଙ୍କଠାରୁ ଆଗରେ । ଅନେକ ସଦସ୍ୟ ରାଜନୈତିକ ଦୃଷ୍ଟିକୋଣରୁ ବହୁ କଥା ଦେଖୁଥିଲା ବେଳେ ବିନାୟକ ବାବୁ ପୂର୍ଣ୍ଣ ଆନ୍ତରିକତା ସହ ରିଲିଫ କାର୍ଯ୍ୟ କରିଗ୍ଲଲିଥିଲେ ।

1972ରେ ଶ୍ରୀ ବିଶ୍ୱନାଥ ଦାସଙ୍କ ରାଉରକେଲା ନିର୍ବାଚନ ବେଳେ ବିନାୟକ ବାବୁ କଂଗ୍ରେସ ପକ୍ଷରୁ ପ୍ରତିଦ୍ୱନ୍ଦିତା କରୁଥିଲେ । ବିଶ୍ୱନାଥ ବାବୁଙ୍କ ପକ୍ଷରୁ ଲୋକସେବକ ମଣ୍ଡଳ ସଦସ୍ୟଭାବେ ମୁଁ ନିଜେ ନିର୍ବାଚନ ପରିଗ୍ଲଳନା କରୁଥିଲି । ସମୟେ ସମୟେ ବିନାୟକ ବାବୁଙ୍କ ସହ ମୋର ମୁହାଁ ମୁହିଁ ମଧ୍ୟ ହୋଇଯାଏ, ନିର୍ବାଚନ ଲଢ଼େଇରେ ପ୍ରତ୍ୟେକେ ପ୍ରତ୍ୟେକର କଳ କୌଶଳ ଜାଣି କେତେଯେ କଥା କରିବାକୁ ପଡ଼େ ତାହା କରିବା ଲୋକ କେବଳଜାଣେ, ସେଥିରେ ପୁଣି ମୁଖ୍ୟମନ୍ତ୍ରୀଙ୍କ ନିର୍ବାଚନ ଲଢ଼େଇ । ଏସବୁ ସତ୍ତ୍ୱେ କେବେ ମୁଁ ବିନାୟକ ବାବୁଙ୍କ ଠାରୁ ପ୍ରତିକ୍ରିୟା ପ୍ରକାଶ ପାଇବା ଦେଖିନାହିଁ ବା କାର୍ଯ୍ୟକ୍ଷେତ୍ରରେ ମୋ ପ୍ରତି କୌଣସି ଅସୂୟା ପ୍ରକାଶ କରିବା ଲକ୍ଷ୍ୟ କରିନାହିଁ । ଏହା ମୋପାଇଁ ବିଶେଷ ଶିକ୍ଷା ଥିଲା, ଏଥିରେ ସନ୍ଦେହ ନାହିଁ ।

## କର୍ମଯୋଗୀ ମୁଖ୍ୟମନ୍ତ୍ରୀ ବିନାୟକ ଆଚାର୍ଯ୍ୟ,

# କର୍ମଯୋଗୀ ମୁଖ୍ୟମନ୍ତ୍ରୀ ବିନାୟକ ଆଚାର୍ଯ୍ୟ

ଶ୍ରୀ ପୂର୍ଣ୍ଣଚନ୍ଦ୍ର ମିଶ୍ର ସମ୍ପାଦକ, ତରୁଣ

ଭାରତବର୍ଷର ତ୍ୟାଗପୂତ ଜୀବନର ଉତ୍ସର୍ଗୀକୃତ ସାଧନା ଯୁଗେ ଯୁଗେ ଜନଜୀବନକୁ କଲ୍ୟାଣମୟ କରି ଆସିଛି । ଏହି ଉକ୍ତିର ସାର୍ଥକ ଅଭିବ୍ୟକ୍ତ ଓଡ଼ିଶାର ବରପୁତ୍ର, ବରେଣ୍ୟ ଶିକ୍ଷାବିତ୍, ସମାଜବାଦୀ ଚେତନାର ଅଗ୍ରଦୂତ, କର୍ତ୍ତବ୍ୟ ନିଷ୍ଠ, ସ୍ୱାଭିମାନୀ ଏବଂ ଶୃଙ୍ଖଳିତ ରାଜନୀତିକ ନେତୃତ୍ୱର ପ୍ରତୀକ, ସ୍ୱନାମଧନ୍ୟ ବିନାୟକ ଆଚାର୍ଯ୍ୟ ଓଡ଼ିଶାର ଅନ୍ୟତମ ମୁଖ୍ୟମନ୍ତ୍ରୀଭାବେ ସୁପରିଚିତ । ସାଧାରଣ ଜୀବନରୁ ସଂଗ୍ରାମ କରି ନିଜକୁ ଏଭଳି ଉଚ୍ଚ ପଦବୀରେ ଅଧିଷ୍ଠିତ କରାଇବାର ବ୍ୟକ୍ତିତ୍ୱର ମୂଳରେ ଯେଉଁ ଆତ୍ମପ୍ରେରଣା ଓ କର୍ମପ୍ରତି ନିଷ୍ଠା, ଆଦର୍ଶ ପ୍ରତି ଅନୁରକ୍ତିହିଁ ନିହିତ କହିବା ନିସପ୍ରୟୋଜନ । ଜଣେ ଭଦ୍ର, ମିଷ୍ଟଭାଷୀ, ଦକ୍ଷ, ନମ୍ର, ସମ୍ବେଦନଶୀଳ, କୁଶଳୀ ରାଜନୀତିଜ୍ଞ ତଥା ରାଜ୍ୟର ମୁଖ୍ୟମନ୍ତ୍ରୀଭାବେ ସମସାମୟିକ ରାଜନୀତିଜ୍ଞମାନଙ୍କ ମଧ୍ୟରେ ସେ ଅତ୍ୟନ୍ତ ପ୍ରିୟପାତ୍ର ହୋଇଥିଲେ । ସ୍ୱର୍ଗତ ଆଚାର୍ଯ୍ୟ ଯେଉଁ ସମୟରେ ରାଜ୍ୟର ମୁଖ୍ୟମନ୍ତ୍ରୀ ଥିଲେ ସେ ସମୟଥିଲା କଂଗ୍ରେସ ଦଳ ତଥା ରାଜ୍ୟପାଇଁ ଏକ କୁହେଳିକାଛନ୍ନ ସମୟ । ପ୍ରଶାସନ ଏବଂ ରାଜନୀତି ପରିପ୍ରେକ୍ଷୀରେ ରାଜ୍ୟପାଇଁ ଉକ୍ତ ସମୟ ଥିଲା ଏକ ଘଡ଼ିସନ୍ଧି ମୁହୂର୍ତ୍ତ । ଯେତେବେଳେ କଂଗ୍ରେସ ଦଳ ପ୍ରତିଷ୍ଠାଲାଭ କରି ନ ଥିଲା ସେତିକିବେଳେ ବିନାୟକବାବୁ ମୁଷ୍ଟିମେୟ କଂଗ୍ରେସ ବିଧାୟକଙ୍କୁ ନେଇ ରାଜ୍ୟ ବିଧାନସଭାରେ ନିଜକୁ ପ୍ରତିଷ୍ଠିତ କରାଇ ପାରିଥିଲେ । ଏହାହିଁ ତାଙ୍କ ବ୍ୟକ୍ତିତ୍ୱର ଏକ ସଫଳ ରୂପରେଖ । ଅବଶ୍ୟ ଏ ଦିଗରେ ଓଡ଼ିଶାର ଅନ୍ୟତମ ବରପୁତ୍ର ଏବଂ ପୂର୍ବତନ ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀଙ୍କ ପ୍ରତ୍ୟକ୍ଷ ଏବଂ ପରୋକ୍ଷ ପ୍ରେରଣା ଓ ଦିଗ୍‌ଦର୍ଶନ ସ୍ୱତଃ ସ୍ମରଣକୁ ଆସେ । ଦକ୍ଷିଣ ଓଡ଼ିଶାରେ ତାଙ୍କର ସମସ୍ତ କର୍ମମୟ ଜୀବନ ଅତିବାହିତ ହୋଇଥିଲେ ମଧ୍ୟ ଦକ୍ଷିଣ ଓଡ଼ିଶା ପ୍ରତି ସେ ମୁଖ୍ୟମନ୍ତ୍ରୀ ଥିଲାବେଳେ ବିଶେଷ କିଛି କରିଯାଇ ନାହାନ୍ତି, ଏହାହିଁ ତାଙ୍କପାଇଁ ସର୍ବସାଧାରଣରେ ଅଭିଯୋଗ ହୋଇଥାଏ । ଏଭଳି ଅଭିଯୋଗର ଉତ୍ତର ଦେବାକୁ ଯାଇ ସେ ନିଜକୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ବୋଲି ପ୍ରତିପାଦିତ କରିଥାନ୍ତି । ଫଳରେ ଜଣେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପ୍ରିୟ ବିନାୟକ ମାଷ୍ଟ୍ରେ ନିଜ ଭିଟାମାଟିରେ ଶୋଚନୀୟଭାବେ ପରାଜୟ ବରଣ କରିଥିଲେ । ଏଥିପାଇଁ ବିନାୟକବାବୁ ଆଦୌ ଶୋଚନା କରି ନ ଥିଲେ । ବରଂ ଜଣେ ନୀତିନିଷ୍ଠ ବ୍ୟକ୍ତି ଭାବରେ ଓଡ଼ିଶାର ସେବା କରିଯାଇଛନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଜଣେ ଦକ୍ଷ ସଂଗଠକ ଭାବେ ଦକ୍ଷିଣ ଓଡ଼ିଶାର ସକ୍ରୀୟ ରାଜନୀତିରେ ଅଂଶ ଗ୍ରହଣ କରି ପ୍ରାରମ୍ଭିକ ଜୀବନରେ କମ୍ୟୁନିଷ୍ଟ ଭାବାଦର୍ଶ ଦ୍ୱାରା ଅନୁପ୍ରାଣିତ ହୋଇ ସ୍ୱୀୟ ପାରଦର୍ଶୀତା ଓ ପ୍ରତିଷ୍ଠା ଅର୍ଜନ କରିଥିଲେ । ଜଣେ ଦକ୍ଷ ଆଦର୍ଶ ଶିକ୍ଷକ ଓ ପ୍ରଶାସକଭାବେ ଓଡ଼ିଶାରେ ସୁନାମ ଅର୍ଜନ କରିଥିଲେ । ମ୍ୟୁନିସିପାଲିଟି ହାଇସ୍କୁଲ

ପଧାନଶିକ୍ଷକ ପଦବୀରୁ ଇସ୍ତଫା ଦେଇ 1952 ନିର୍ବାଚନରେ କମ୍ୟୁନିଷ୍ଟ ପାର୍ଟି ଟିକଟରେ ବ୍ରହ୍ମପୁର ନିର୍ବାଚନମଣ୍ଡଳୀରେ ପ୍ରତିଦ୍ୱନ୍ଦିତା କରିଥିଲେ ବିନାୟକ ବାବୁ । ନିର୍ବାଚନରେ ପରାଜିତ ହୋଇଥିଲେ ବିନାୟକ ବାବୁ, ସେଇ ନିର୍ବାଚନ ପରିଚାଳନା କରିଥିଲେ ଗୋବିନ୍ଦ ପ୍ରଧାନ, ହରିହର ଦାସ , ବିଜୟ ଚନ୍ଦ୍ର ଦାସ ଓ ମନମୋହନ ମିଶ୍ର ଏବଂ ରାଜ୍ୟର ପ୍ରମୁଖ କମ୍ୟୁନିଷ୍ଟ ନେତାମାନେ । ସ୍ୱାଧୀନ ଜନସଂଘ ପ୍ରାର୍ଥୀ ରାମଚନ୍ଦ୍ର ମିଶ୍ର ପ୍ରତିଦ୍ୱନ୍ଦିତା କରୁଥିଲେ ଏବଂ ତାଙ୍କର ନିର୍ବାଚନ ପରିଚାଳନା କରୁଥିଲେ ପଣ୍ଡିତ ନିଳକଂଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ଦିବାକର ପଟନାୟକ ପ୍ରମୁଖ ନେତୃମଣ୍ଡଳୀ । କଂଗ୍ରେସ ପକ୍ଷରୁ ବୃନ୍ଦାବନ ନାୟକ ପ୍ରତିଦ୍ୱନ୍ଦିତା କରୁଥିଲେ ଏବଂ ତାଙ୍କ ନିର୍ବାଚନ ପରିଚାଳନା କରୁଥିଲେ ବିଶ୍ୱନାଥ ଦାସ ଓ ଅନ୍ୟ କଂଗ୍ରେସ ନେତାମାନେ । ବୃନ୍ଦାବନ ବାବୁ ବିଜୟୀ ହେଲେ । ବିନାୟକ ବାବୁ ଚାକିରି ଛାଡ଼ି ନିର୍ବାଚନରେ ଲଢ଼ିଥିବାରୁ ଆଉ ଚାକିରିକୁ ଫେରିବାକୁ ଇଛା କରୁନଥିଲେ । ସହରର କେତେକ ବିଶିଷ୍ଟ ବ୍ୟକ୍ତି କୃତି ଶିକ୍ଷକଙ୍କ ପୁର୍ନନିଯୁକ୍ତି ପାଇଁ ଚେଷ୍ଟାକରି ଫଳବତୀ ହୋଇଥିଲେ ଏବଂ ବୃନ୍ଦାବନ ବାବୁ ନିଯୁକ୍ତି ଦେବାପାଇଁ ସଙ୍ଗେ ସଙ୍ଗେ ରାଜି ହୋଇ ଥିଲେ । 1967 ସାଲରେ ପେରେ କଂଗ୍ରେସପାଇଁ ପ୍ରର୍ଥୀ ଖୋଜା ଚାଲିଲା । ସେତିକିବେଳେ ବିନାୟକ ବାବୁଙ୍କ ଭଳି ଜଣେ ଯୋଗ୍ୟ ବ୍ୟକ୍ତିଙ୍କୁ ଯଥାଯଥ ସମ୍ମାନ ଦେଇ କଂଗ୍ରେସ ପ୍ରାର୍ଥୀଭାବରେ ମନୋନୟନ କରିଥିଲେ, ଗୁଣଗ୍ରାହୀ ଜନନେତା ଅନ୍ୟତମ ମୁଖ୍ୟମନ୍ତ୍ରୀ ବିଜୁବାବୁ । ଜୀବନର ଶେଷାର୍ଦ୍ଧରେ ବିନାୟକ ବାବୁ ବିଜୁବାବଙ୍କ ଜନତାଦଳରେ ଯାଇ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ । ବିଜୁବାବୁ ସ୍ମଶାନରେ ଉପସ୍ଥିତଥିଲେ ପ୍ରିୟ ବନ୍ଧୁଙ୍କୁ ସମ୍ମାନ ଜଣାଇବା ଉଦ୍ଦେଶ୍ୟରେ । ସେଦିନ ମୁଖ୍ୟମନ୍ତ୍ରୀ ଜାନକୀବାବୁ ମଧ୍ୟ ସେଠି ଉପସ୍ଥିତ ଥିଲେ । ଜଣେ ଚରମପନ୍ଥୀ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ସହଯୋଗୀ ମନ୍ତ୍ରୀଭାବେ ନିଜକୁ ପ୍ରତିଷ୍ଠିତ କରାଇ ପାରିଥିଲେ । ଅର୍ଥମନ୍ତ୍ରୀ, କୃଷିମନ୍ତ୍ରୀ ପରେ କଂଗ୍ରେସ ମୁଖ୍ୟ ହୋଇ ଜଣେ ସୁ ସଂଗଠକଭାବେ ସମଗ୍ର ରାଜ୍ୟରେ କଂଗ୍ରେସର ପ୍ରତିଷ୍ଠା ବଢ଼ାଇ ପାରିଥିଲେ, ଫଳରେ ନିଜକୁ ମୁଖ୍ୟମନ୍ତ୍ରୀ ରୂପରେ ନିର୍ବିବାଦରେ ପ୍ରତିଷ୍ଠିତ କରାଇ ପାରିଥିଲେ । ଜଣେ ଶାନ୍ତିପ୍ରିୟ, ସ୍ନେହୀ, ବନ୍ଧୁବତ୍ସଳ, ଉଦାରଚେତା ମୁଖ୍ୟମନ୍ତ୍ରୀ ଭାବରେ ସ୍ୱର୍ଗତ ବିନାୟକ ଆଚାର୍ଯ୍ୟ ଅବିସ୍ମରଣୀୟ ରହିବେ । ଶିକ୍ଷକତାରୁ ସାଧାରଣ ଜୀବନକୁ ଆସିବା ପରେ ଏମ୍. ଏଲ୍. ଏ ଥାଇ କିଛି ଦିନ ବ୍ରହ୍ମପୁର ମ୍ୟୁନିସିପାଲିଟିର ଚେୟାରମ୍ୟାନ ଦାୟିତ୍ୱ ଗ୍ରହଣ କରିଥିଲେ । ଦାୟିତ୍ୱ ନେଲାବେଳେ ମ୍ୟୁନିସିପାଲିଟିର ଆର୍ଥିକ ପରିସ୍ଥିତି ସ୍ୱଚ୍ଛଳ ନଥିଲେ ସୁଦ୍ଧା ସହରର ଉନ୍ନତିକଳ୍ପେ ତଥା ପ୍ରାଥମିକ ବିଦ୍ୟାଳୟ ଗୁଡ଼ିକର ଉନ୍ନତିପାଇଁ ଆର୍ଥିକ ବ୍ୟବସ୍ଥା କରିପାରିଥିଲେ ଯଦ୍ୱାରା ବହୁ ଛାତ୍ର ଛାତ୍ରୀ ଉପକୃତ ହୋଇ ପାରିଥିଲେ । ଶିକ୍ଷାର ବିକାଶ ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ । ବିନାୟକ ବାବୁ ଶିକ୍ଷକ ଥିବାବେଳେ ବହୁ ଅନୁଷ୍ଠାନର କର୍ମକର୍ତ୍ତା ଥିଲେ ଏବଂ ଅନୁଷ୍ଠାନର କାର୍ଯ୍ୟରେ ନିଜକୁ ନିଷ୍ଠାର ସହିତ ସାମିଲ କରୁଥିଲେ । ଗଂଜାମ ଜିଲ୍ଲା ଚିତ୍ର ଶିକ୍ଷକ

ସଂଘର ସେ ସଭାପତି ଏବଂ ମୁଁ ଉପସଭାପତି ବହୁ ବର୍ଷ ଥିଲୁ । ସେ ମନ୍ତ୍ରୀ ହୋଇ ଚାଲିଯିବା ପରେ ମୋର ଶିକ୍ଷକ ରଘୁନାଥ ପାଢ଼ୀଙ୍କୁ ସଭାପତି ବାଛିଲୁ । ମୁଁ ଆଉ ପାଢ଼ୀ ମାଷ୍ଟ୍ରେ ବିନାୟକବାବୁଙ୍କୁ ସଂବର୍ଦ୍ଧନା ଜଣାଇବା ପାଇଁ ନିମନ୍ତ୍ରଣ କରିବାକୁ ଯାଇଥିଲୁ । ସେ ଆସିଲେ ଏବଂ ସଂବର୍ଦ୍ଧିତ ହୋଇଗଲେ ଟାଉନହଲରେ ଅନୁଷ୍ଠିତ ବର୍ଣ୍ଣାଢ଼୍ୟ ପରିବେଶ ମଧ୍ୟରେ ଅନୁଷ୍ଠିତ ଉତ୍ସବରେ । ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳପତି ସ୍ୱର୍ଗତ ରଘୁନାଥ ପ୍ରସାଦ ପାଢ଼ୀ ଉତ୍ସବରେ ମୁଖ୍ୟ ଅତିଥି ଭାବେ ଯୋଗଦେଇ ବିନାୟକବାବୁଙ୍କ ମଙ୍ଗଳ କାମନା କରିଥିଲେ । ନିମନ୍ତ୍ରଣ କରିବାକୁ ଗଲାବେଳେ ବିନାୟକବାବୁ କହିଥିଲେ କିଏ କହିବ ନାହିଁତ ନିଜ ଅନୁଷ୍ଠାନରୁ ସଭାପତି ସଂବର୍ଦ୍ଧିତ ହେଉଛନ୍ତି ବୋଲି, ଏବେ ମଧ୍ୟ ମୋର ସେଇକଥା ମନେ ପଡୁଛି । ପାଢ଼ୀମାଷ୍ଟ୍ରେ ଓ ମୁଁ ତାଙ୍କ କଥାକୁ ଗୁରୁତ୍ୱ ନଦେଇ ଏଡ଼ାଇ ଦେଇଥିଲୁ । ସବୁ କଥାରେ ସେ ସତର୍କତା ଅବଲମ୍ବନ କରୁଥିଲେ ଓ ଜଗିରଖି ଆଗପଛ ବିଚାର କରି କାର୍ଯ୍ୟକରୁଥିଲେ । ପ୍ରଖ୍ୟାତ ଆଚାର୍ଯ୍ୟ ପରିବାରରେ ବିନାୟକବାବୁ ଜନ୍ମ ଗ୍ରହଣ କରିଥିଲେ ୩୦-୪-୧୯୧୪ ସାଲରେ ବ୍ରହ୍ମପୁରର ଶଙ୍କରପୁରରେ । ଘଟଣାବହୁଳ ଜୀବନ ଭିତରେ ବିନାୟକବାବୁ ପ୍ରଧାନ ଶିକ୍ଷକରୁ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇପାରିଥିଲେ ନିଜର କଠୋର ସାଧନା ବଳରେ । ଅନେକ ସମୟରେ ପରିସ୍ଥିତି ଏବଂ ପ୍ରତିଷ୍ଠା ଓ କର୍ମକୁଶଳତା ବ୍ୟକ୍ତିକୁ ଉଚ୍ଚସ୍ଥାନରେ ଅଧିଷ୍ଠିତ କରିଥାଏ । ବିନାୟକବାବୁଙ୍କ କ୍ଷେତ୍ରରେ ଉଭୟ ପରିସ୍ଥିତି ଓ ନିଜର କଠୋର ସାଙ୍ଗଠନିକ କାର୍ଯ୍ୟ ତାଙ୍କୁ ଶୀର୍ଷସ୍ଥାନକୁ ନେଇ ରାଜ୍ୟରେ ଅଧିଷ୍ଠିତ କରାଇଥିଲା । ଶେଷବେଳକୁ ସେ କଂଗ୍ରେସ ଛାଡ଼ି ଜନତା ଦଳରେ ଯୋଗ ଦେଇଥିଲେ । ବିନାୟକବାବୁ ଯେତେବେଳେ ଯେଉଁ ଦାୟିତ୍ୱ ନେଇଥିଲେ ନିଷ୍ଠାର ସହିତ ତାକୁ ତୁଲାଇଛନ୍ତି । ତାଙ୍କ ପାଖରେ ବଡ଼ ସାନ କିଛି ନଥିଲା । ସମସ୍ତେ ସମାନଥିଲେ ଏବଂ ସମସ୍ତଙ୍କ କଥା ବୁଝି ତାର ସାଧ୍ୟମତେ ସମାଧାନ କରୁଥିଲେ ।

ଆନ୍ଧ୍ର ପ୍ରଦେଶ ହୋମ ମିନିଷ୍ଟର ଶ୍ରୀ ଭେଙ୍ଗଲ ରାଓ (ପରେ ମୁଖ୍ୟମନ୍ତ୍ରୀ) ସୋମପେଣ୍ଠ ଆସିଥାନ୍ତି । ଉତ୍କଳ ସମ୍ମିଳନୀ ପକ୍ଷରୁ ସଂପାଦକ ବସନ୍ତ ପାଣିଗ୍ରାହୀ, ସ୍ୱର୍ଗତ ଶିକ୍ଷାବିତ୍ ଗୌରଚନ୍ଦ୍ର ପାଢ଼ୀ, ମୁଁ ଏବଂ ଅନ୍ୟ କେତେଜଣ ସେତେବେଳର ଓଡ଼ିଶା ବିଧାନସଭାର ବିରୋଧି ଦଳନେତା ବିନାୟକବାବୁଙ୍କ ନେତୃତ୍ୱରେ ବିଚ୍ଛିନ୍ନାଞ୍ଚଳରେ ଓଡ଼ିଆମାନଙ୍କ ସମସ୍ୟା ଓ ସ୍ୱାର୍ଥରକ୍ଷା ପାଇଁ ମନ୍ତ୍ରୀଙ୍କ ଆଗରେ ଦାବି ଉପସ୍ଥାପନ କରିଥିଲୁ । ଆନ୍ଧ୍ର ରାଜ୍ୟର ମନ୍ତ୍ରୀ ବିନାୟକବାବୁଙ୍କ ନାମ ଶୁଣି ତାଙ୍କୁ ସାଦର ଅଭିନନ୍ଦନ ଜଣାଇ ଦାବି ପୂରଣ ଦିଗରେ କାର୍ଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ବଡ଼ କଥା ହେଲା ସେତେବେଳେ ବିନାୟକବାବୁଙ୍କୁ ଜଣେ ଶିକ୍ଷାବିତ୍ ବୋଲି ସମ୍ବୋଧନ କରିଥିଲେ । ବିଚ୍ଛିନ୍ନାଞ୍ଚଳର ଆମର ଭାଇମାନେ ଆନ୍ଧ୍ର ମନ୍ତ୍ରୀଙ୍କ ବିନାୟକବାବୁଙ୍କୁ ଦେଇଥିବା ପ୍ରତିଶ୍ରୁତିରେ ଆନନ୍ଦ ଅନୁଭବ କରିଥିଲେ ଏବଂ ପରବର୍ତ୍ତୀ ସମୟରେ ବହୁତ ଦାବି ପୂରଣ କରା

ଯାଇଥିଲ । ବିନାୟକବାବୁ ପ୍ରଖ୍ୟାତ ସଂଗ୍ରାମୀ, ସଂସ୍କାରକ, ଦୈନିକ ଆଶାର ପ୍ରତିଷ୍ଠାତା, ଦେଶ ମିଶ୍ରଣ-ଆନ୍ଦୋଳନର ଅନ୍ୟତମ କର୍ଣ୍ଣଧାର ଜନନାୟକ ଶଶୀଭୂଷଣ ରଥଙ୍କ ସହିତ ଦକ୍ଷିଣ ବିଚ୍ଛିନ୍ନାଞ୍ଚଳ ଓଡ଼ିଆ ଭାଇଙ୍କ ପାଇଁ ବହୁତ କିଛି କାର୍ଯ୍ୟ କରିଛନ୍ତି । ସେ ପୁରୁଷ ପୁଙ୍ଗବ ସଂଗ୍ରାମୀ ଶଶୀଭୂଷଣ ରଥଙ୍କୁ ସବୁବେଳେ ପ୍ରଶଂସା କରନ୍ତି ଓ ସମ୍ମାନ ଦିଅନ୍ତି । ସେ ଦିନ ଆମେ ସବୁ କାର ଯୋଗେ ସୋମପେଣ୍ଟ ଯିବାବେଳେ ବିନାୟକବାବୁ ତାଙ୍କର ମଧୁର ସ୍ମୃତିରୁ ବହୁତ ଘଟଣା ପ୍ରକାଶ କରୁଥାନ୍ତି । ସେ କହୁଥିଲେ ଦେଶ ମିଶ୍ରଣ ଆନ୍ଦୋଳନର କର୍ଣ୍ଣଧାର ପାରଳାଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ଛାତ୍ରବତ୍ସଳ ଓ ଉଦାରତା ସଂପର୍କରେ । ସେ ପାରଳାଖେମୁଣ୍ଡି କଲେଜରେ ପାଠ ପଢୁଥିଲ ବେଳେ ନିଜେ ମହାରାଜା ଛାତ୍ରାବାସକୁ ଆସି ପିଲମାନଙ୍କ କଥା ବୁଝା ସୁଝା କରନ୍ତି । ପର୍ବପର୍ବାଣିରେ ପିଲମାନଙ୍କ ପାଇଁ ପିଠା ପଣା, ଖଜା, ଆମ୍ବ ଦିନରେ ପ୍ରଚୁର ଆମ୍ବ ଓ ପଣସ, ଦହି, ଲେମ୍ବୁ ଏବଂ ବହୁ ସମୟରେ ପନିପରିବା ମଧ୍ୟ ହଷ୍ଟେଲକୁ ପଠାଇଥାନ୍ତି । ସଂସ୍କୃତ ସ୍କୁଲକୁ ମଧ୍ୟ ଅନୁରୂପ ଜିନିଷ ପଠାଇଥାନ୍ତି । ବିଭିନ୍ନ ଅଞ୍ଚଳରୁ ଆସି ଛାତ୍ରମାନେ ପାରଳାଖେମୁଣ୍ଡିରେ ରହି ପଢୁଥିବା ଯୋଗୁଁ ସେମାନେ ଯେପରି ଘରକଥା ମନେ ନ ପକାଇ ଭଲ ପାଠ ପଢି ମଣିଷ ହେବେ ଏହାଥିଲ ତାଙ୍କର ଉଦ୍ଦେଶ । ମହାରାଜାଙ୍କ ବିୟୋଗରେ ଅର୍ଥମନ୍ତ୍ରୀ ବିନାୟକବାବୁ ରାଜ୍ୟ ସରକାରଙ୍କ ପକ୍ଷରୁ ଯୋଗଦେଇ ସବସତ୍କାର କରାଇ ଥିଲେ ରାଷ୍ଟ୍ରିୟ ମର୍ଯ୍ୟଦାର ସହ ।

1952 ସାଲ ବ୍ରହ୍ମପୁର ଉପନିର୍ବାଚନ ସମୟର ଏକ ଘଟଣା । ବାରାକସ୍ ମଇଦାନରେ ଦୁଇଟି ନିର୍ବାଚନ ସଭା ହେଉଥାଏ । ଗୋଟିଏ କମ୍ୟୁନିଷ୍ଟ ପାର୍ଟି ପକ୍ଷରୁ ବିନାୟକବାବୁଙ୍କ ପାଇଁ ଅନ୍ୟଟି ସ୍ୱାଧୀନ ଜନସଂଘ ପାର୍ଥୀ ରାମଚନ୍ଦ୍ର ମିଶ୍ରଙ୍କ ପାଇଁ । କଂଗ୍ରେସ ସଭା ପରେ ହେଲା, ସେଇଟି ନିର୍ବାଚନ ସଭା ନୁହେଁ । ବାଦିପାଲା ବୋଲି ଏବେ ମଧ୍ୟ ସେତେବେଳର ମୋ ସମେତ ବହୁ ଲୋକ ମନେ ରଖିଛନ୍ତି । ରାମବାବୁଙ୍କ ପାଇଁ ପଣ୍ଡିତ ନିଳକଂଠ, ପଣ୍ଡିତ ଗୋଦାବରୀଶ, ଦିବାକର ବାବୁ, ଜଗନ୍ନାଥ ମିଶ୍ରେ ଭାଷଣ ଦେଉଥିଲାବେଳେ ବିନାୟକବାବୁଙ୍କ ପାଇଁ ବିଜୟ ଦାସ, ଗୋବିନ୍ଦ ପ୍ରଧାନ, ହରିହର ଦାସ, ମନମୋହନ ମିଶ୍ର ପ୍ରମୁଖ ନୀତି ଓ ବିଭିନ୍ନ ସମସ୍ୟା ଉପରେ ଭାଷଣ ଦେଉଥିଲେ । ସଭା ସରିଲା ରାତି ଆଠଟାରେ , ସମସ୍ତେ ଚାଲିଆ ହୋଇ ଯାଇଥାନ୍ତି । ପଣ୍ଡିତ ନୀଳକଂଠ , ପଣ୍ଡିତ ଗୋଦାବରୀଶ ଓ ଅନ୍ୟମାନେ ସେଠି ବସି ଖୁସିଗପ କରୁଥାନ୍ତି । ତାଙ୍କ ସମର୍ଥକମାନେ ଗ୍ଲଲିଯାଇଥାନ୍ତି । ବିନାୟକବାବୁ ଧୀରେ ଧୀରେ ଦୁଇ ପଣ୍ଡିତଙ୍କ ନିକଟକୁ ଆସି ପ୍ରଣିପାତ କଲେ । ଏମାନେ ଆଶୀର୍ବାଦ କଲେ । ନିର୍ବାଚନ ସଂପର୍କରେ ସାମାନ୍ୟ ଆଲୋଚନା ପରେ ଘରୋଇକଥା ନୀଳକଂଠ ବାବୁ ପଚରି କୁଶଳାଦି ବୁଝିଥିଲେ ଓ ଭବିଷ୍ୟତ ମଂଗଳମୟ ହେବବୋଲି କହିଥିଲେ । 1967 ସାଲରେ

ସଦାଶିବ ତ୍ରିପାଠୀ ମୁଖ୍ୟମନ୍ତ୍ରୀ ଥାଇ ଓଡ଼ିଶାର ନିର୍ବାଚନ ପରିଚାଳନା କରୁଥିଲେ । କଂଗ୍ରେସ ମାତ୍ର ୩୦ଟି ଆସନ ପାଇଲା । ସ୍ୱତନ୍ତ୍ର ଜନକଂଗ୍ରେସ ଓଡ଼ିଶାରେ ସରକାର କଲେ । ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ମୁଖ୍ୟମନ୍ତ୍ରୀ ହୋଇଥିଲେ ଡ଼ଃ ହରେକୃଷ୍ଣ ମହତାବ ଜନକଂଗ୍ରେସ ପରିଚ୍ଛଳନା କରୁଥିଲେ । ପବିତ୍ର ମୋହନ ପ୍ରଧାନ ଉପମୁଖ୍ୟମନ୍ତ୍ରୀ ଥିଲେ । ସଦାଶିବ ବାବୁ କିଛିଦିନ ବିରୋଧୀ ଦଳ ନେତା ହେଲେ ଉପନେତା ଥିଲେ ବିନାୟକବାବୁ । ସଦାଶିବବାବୁ ଅସୁସ୍ଥତା ବଶତଃ ନେତା ପଦରୁ ଇସ୍ତଫା ଦେଇ ବିନାୟକବାବୁଙ୍କୁ ସେଇ ଦାୟିତ୍ୱ ଦେଇଥିଲେ । ଜଣେ ଦକ୍ଷ, ନିଷ୍ଠାପର ପାର୍ଲାମେଣ୍ଟାରିୟନ ଭାବେ ବିରୋଧୀଦଳ ନେତା ବିନାୟକବାବୁ ନିଜର ପ୍ରତିଷ୍ଠା ଅର୍ଜନ କରିଥିଲେ ଏବଂ ମୁଖ୍ୟମନ୍ତ୍ରୀ ସିଂହଦେଓ ତାଙ୍କୁ ଯଥେଷ୍ଟ ସମ୍ମାନ ଦେଉଥିଲେ ।

ଜଷ୍ଟିସ ଲିଙ୍ଗରାଜ ପାଣିଗ୍ରାହୀ ୧୯୫୭ ସାଲରେ ଓଡ଼ିଶାର ଶିକ୍ଷା ମନ୍ତ୍ରୀ ଥିଲେ । ଥରେ ବିନାୟକ-ବାବୁ ଶିକ୍ଷକମାନଙ୍କ ସମସ୍ୟା ସଂପର୍କରେ ଆଲୋଚନା କରିବାକୁ ପାଣିଗ୍ରାହୀଙ୍କ ନିକଟକୁ ଯାଇଥିଲେ । ସାଙ୍ଗରେ ଆଉ କେତେଜଣ ଶିକ୍ଷକବନ୍ଧୁ ମଧ୍ୟଥିଲେ । ଜଷ୍ଟିସ ପାଣିଗ୍ରାହୀ ସବୁଶୁଣି କହିଲେ ମୁଁ ଯାହା ପାରିବି କରିବି । ଯାହା ରହିବ ତମେ ଶିକ୍ଷା ମନ୍ତ୍ରୀହେଲେ ସେତକ ବଳକା କାମ କରିବ । ଜଷ୍ଟିସ ପାଣିଗ୍ରାହୀ ବିନାୟକବାବୁଙ୍କ ଯୁକ୍ତିରେ ବିମୁଗ୍ଧ ହୋଇ ତାଙ୍କର ମଙ୍ଗଳ କାମନା କରିଥିଲେ । ସେ ସବୁ ଘଟଣା ଏବେ ମଧ୍ୟ ମନେ ରହିଯାଇଛି । ଉଭୟେ ଚାଲିଯାଇଛନ୍ତି, କାଳର କରାଳ ଗତିରେ ବିଲିନ ହୋଇ ଯାଇଛନ୍ତି । ବ୍ରହ୍ମପୁର ସହରର କେତେଜଣଙ୍କ ମଧ୍ୟରେ ବିନାୟକ ମାଷ୍ଟ୍ରେ ଏବେ ମଧ୍ୟ ଜନମାନସରେ ସଜୀବ ।

ବିନାୟକବାବୁ ମୁଖ୍ୟମନ୍ତ୍ରୀ ଥିଲାବେଳେ ବ୍ରହ୍ମପୁର ସହରପାଇଁ ଛଅକୋଟି ଟଙ୍କା ବ୍ୟୟରେ ନିର୍ମାଣ କରାଯାଇଥିବା ଋଷିକୁଲ୍ୟା ପ୍ରକଳ୍ପର ଭିତ୍ତି ସ୍ଥାପନ କରି ସହର ସମେତ ଛତ୍ରପୁର, ବିଶ୍ୱବିଦ୍ୟାଳୟ, ଆଇ. ଆର. ଇ. କ୍ୟାଣ୍ଟନମେଣ୍ଟ । ଗୋପାଳପୁରକୁ ସେଇ ପ୍ରକଳ୍ପ ପାଣି ଯୋଗାଉ ଅଛି । ବହୁ ଜନହିତକର କାର୍ଯ୍ୟ କରିଥିଲେ ମଧ୍ୟ ଲୋକଙ୍କ ଆଶା ଆକାଂକ୍ଷା ଅତିବେଶି ଯେ ତାକୁ ପୂରଣ କରିବା ତାଙ୍କ ପକ୍ଷରେ ସଂମ୍ଭବ ହୋଇପାରିଲା ନାହିଁ । ଲୋକ ପ୍ରତିନିଧିମାନଙ୍କ ଉପରେ ନିର୍ବାଚନ ମଣ୍ଡଳୀର ଉନ୍ନତି ପାଇଁ ସବୁବେଳେ ଚାପ ସୃଷ୍ଟି ହୋଇଥାଏ ।

ବିନାୟକବାବୁ ସାମାନ୍ୟ ଅସୁସ୍ଥତା ପରେ ୧୧-୧୨-୧୯୮୩ ସାଲରେ ଇହଲିଳା ସମ୍ବରଣ କଲେ । ତାଙ୍କ ମୃତ୍ୟୁବେଳର ଶବ ଶୋଭାଯାତ୍ରାରେ ହଜାର ହଜାର ଲୋକଯାଇ ତାଙ୍କ ପ୍ରିୟ ବିନାୟକ ମାଷ୍ଟ୍ରଙ୍କୁ ଶେଷ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ । ସେଦିନ ବିନାୟକ ବାବୁଙ୍କ ବିୟୋଗ ସମସ୍ତଙ୍କୁ ମ୍ରିୟମାଣ କରିଦେଇଥିଲା ଓ ସମସ୍ତଙ୍କ ଆଖିରେ ଲୁହ । ଦେଖିବା ଲୋକ କେବଳ ଅନୁଭବ କରିପାରିଥିବ ।

ବିନାୟକବାବୁଙ୍କ ଶୋକସଭାରେ ସହରର ବହୁ ବିଶିଷ୍ଟ ବ୍ୟକ୍ତି ତାଙ୍କ ଆତ୍ମାର ସଦଗତି କାମନା କରିଥିଲେ । ମୁଁ କହିଥିଲି ବିନାୟକବାବୁ ମୋଠାରୁ ଦଶବର୍ଷରେ ବଡ଼, ଦଶ ଗୁଣ ଯୋଗ୍ୟ, ଦଶସହଗୁଣ ଲୋକଙ୍କ ପାଇଁ ତାଙ୍କର ଆବଶ୍ୟକତା ଥିଲାବେଳେ ସେ ଆମ ଭିତରୁ ଆଜି ଚାଲି ଯାଇଛନ୍ତି । ଆଗପଛ ସମସ୍ତେ ଚାଲିଯିବା, ମାତ୍ର ସେହି 'ପ୍ରବାଦ ପୁରୁଷ' ପ୍ରିୟ ବିନାୟକ ମାଷ୍ଟ୍ରେ ଜନସ୍ମୃତିରେ ସବୁବେଳେ ରହିଥିବେ ନିଜର ସାଧନା, ସେବା ଓ ଦରଦୀ ମଣିଷ ଭାବେ । ସେହି ମଣିଷ ଗଢ଼ା ସାଧକଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

# ବିନାୟକ ଆଚାର୍ଯ୍ୟ ଏକ ଅନନ୍ୟ ପ୍ରତିଭା

ଶ୍ରୀ ଜଗନ୍ନାଥ ସିଂହଦେଓ
ପୂର୍ବତନ ଉପନଗରପାଳ, ବ୍ରହ୍ମପୁର (ଗଞ୍ଜାମ)

ଏହା ଥାଏ 1952 ମସିହାର କଥା । ସାମ୍ୟବାଦ୍ ଚିନ୍ତାଧାରାର ସାରଥି ଭାବେ ଗଞ୍ଜାମରୁ ନେତୃତ୍ୱ ନେଉଥାନ୍ତି ପ୍ରାକ୍ତନ ଲୋକସଭା ସଦସ୍ୟ ସ୍ୱର୍ଗତ ବିଜୟ ଚନ୍ଦ୍ର ଦାସ ଆଉ ସେ ରଥରେ ଥାଉ ମୁଁ, ଶଶି ଭୂଷଣ ପତି, ରାମକୃଷ୍ଣ ବେହେରା ଓ ସ୍ୱର୍ଗତ ବ୍ରହ୍ମାନନ୍ଦ ପଣ୍ଡା ଏବଂ ଅନ୍ୟମାନେ । ସେହି ସାମ୍ୟବାଦ୍ ଆନ୍ଦୋଳନରେ ଝାସ ଦେଇଥିଲେ ତତ୍‌କାଳୀନ ପ୍ରବୀଣ ଶିକ୍ଷକ ଶ୍ରଦ୍ଧେୟ ବିନାୟକବାବୁ । ସେ ଦିନଠାରୁ ଆମର ପରସ୍ପର ସ୍ନେହ ମମତା, ନିବିଡ଼ତା ଏତେ ଘନିଷ୍ଠ ହୋଇ ଉଠିଲା ଯାହା ବିନାୟକବାବୁଙ୍କ ମୃତ୍ୟୁପରେ ମଧ୍ୟ ଶେଷ ହୋଇ ନାହିଁ । ସେ ମତେ ଦେଓ ଗାରୁ ବୋଲି ସମ୍ବୋଧନ କରନ୍ତି ।

1958 ମସିହାରେ ଆମେ ସମସ୍ତେ ଜାତୀୟ କଂଗ୍ରେସରେ ସାମିଲ ହୋଇଗଲୁ । ବିନାୟକ ବାବୁ ମଧ୍ୟ କଂଗ୍ରେସର ସମର୍ଥକ ହୋଇଥିଲେ । ତା'ପରେ ଖୋଲିଲା ତାଙ୍କ ରାଜନୈତିକ ଜୀବନ । ସେ ଥରେ ବିଧାନସଭା ନିର୍ବାଚନରେ ପରାଜୟ ବରଣ କଲାପରେ ପୁଣି ଶିକ୍ଷକତାକୁ ଫେରିଗଲେ । କିନ୍ତୁ ଦେଶସେବା ତଥା ଗରୀବ ଲୋକଙ୍କ ସେବା କରିବାପାଇଁ ତାଙ୍କର ପ୍ରବଳ ଆକାଂକ୍ଷା ତାଙ୍କୁ ପୁଣି ବିଧାନସଭା ନିର୍ବାଚନକୁ ଟାଣି-ଆଣିଲା । ଏଥର କିନ୍ତୁ ବ୍ରହ୍ମପୁରବାସୀ ତାଙ୍କୁ ବିଜୟର ଟୀକା ପିନ୍ଧାଇଥିଲେ । ଏହିପରି ନିର୍ବାଚନରେ ବିନାୟକ ବାବୁଙ୍କୁ ପୂର୍ଣ୍ଣ ପ୍ରାଣରେ ସାହାଯ୍ୟ କରିଥିଲେ ତତ୍‌କାଳୀନ ଲୋକସଭା ସଦସ୍ୟ ସ୍ୱର୍ଗତ ଜଗନ୍ନାଥ ରାଓ । ବିଧାନସଭା ସଦସ୍ୟ ସହ ବ୍ରହ୍ମପୁର ମ୍ୟୁନିସିପାଲିଟିର ନଗରପାଳଭାବେ ମଧ୍ୟ ସେ ନିର୍ବାଚିତ ହୋଇଥିଲେ ।

ବିଧାନସଭାର ବିରୋଧି ଦଳ ନେତାଭାବେ ସେ ମାତ୍ର ସାତ ଜଣ ସଦସ୍ୟ (ବିଧାୟକ)ଙ୍କୁ ନେଇ କଂଗ୍ରେସର ନେତୃତ୍ୱ ନେଇ ପରବର୍ତ୍ତୀ ନିର୍ବାଚନରେ କଂଗ୍ରେସକୁ ଦେଇଥିଲେ 74 (ଚଉସ୍ତରି) ଜଣ ସଦସ୍ୟ ବିଶିଷ୍ଟ ସରକାର । କଂଗ୍ରେସ ସରକାରରେ ମନ୍ତ୍ରୀଭାବେ ନଗର ଉନ୍ନୟନ, ଶିକ୍ଷା, କୃଷି, ଅର୍ଥ ଏବଂ ଅବକାରୀ ଭଳି ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ବିଭାଗର ଦାୟିତ୍ୱ ସୁଗ୍ଧୁରୂପେ ତୁଲାଇଥିଲେ । ନଗର ଉନ୍ନୟନ ମନ୍ତ୍ରୀ ଭାବେ, ବ୍ରହ୍ମପୁର ସହରର ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ କରିବା ସହ, ନଗରପାଳିକା କର୍ମଚାରୀଙ୍କୁ ପେନସନ୍ ପ୍ରଦାନ ବିଷୟରେ ସେ ପ୍ରଥମ ପଦକ୍ଷେପ ନେଇଥିଲେ ।

ସ୍ୱର୍ଗତ ବିନାୟକବାବୁ ତାଙ୍କ ଜୀବଦ୍ଦଶା ମଧ୍ୟରେ, ବ୍ରହ୍ମପୁର ପୌରସଭାର ନଗରପାଳ, ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟି ସଭାପତି, ଓଡ଼ିଶା ମନ୍ତ୍ରୀମଣ୍ଡଳରେ ମନ୍ତ୍ରୀତ୍ୱ ଏବଂ ଶେଷ ସମୟରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ କରିଥିଲେ ।

1975 ଜରୁରୀକାଳୀନ ପରିସ୍ଥିତିର ଶେଷ ଭାଗ ସମୟରେ ସେ ସ୍ୱଳ୍ପକାଳପାଇଁ ରାଜ୍ୟର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ତୁଲାଇଥିଲେ । ଏହି ସମୟ ମଧ୍ୟରେ ସେ ଗର୍ଷିକୁଲ୍ୟା ଜଳ ଯୋଗାଣ ପ୍ରକଳ୍ପର କାର୍ଯ୍ୟାରମ୍ଭ କରାଇଥିଲେ । ସ୍ୱର୍ଗତଃ ବୃନ୍ଦାବନ ବାବୁ ଏହି କାର୍ଯ୍ୟରେ ସକ୍ରୀୟ ସାହାଯ୍ୟ ସହଯୋଗ କରିଥିଲେ ।

ରାଜ୍ୟର ସର୍ବୋଚ୍ଚ ଆସନ ଅଳଙ୍କୃତ କରିଥିଲେ ମଧ୍ୟ ସେ କେବେହେଲେ ନିଜର ଗାରିମା ଦେଖାଇ ନଥିଲେ । ଜଣେ ପ୍ରବୀଣ ଶିକ୍ଷକ, ନିଷ୍ଠାପର ଦେଶପ୍ରେମୀ, ସମାଜସେବୀ ପରୋପକାରୀ ଦରଦୀ ବନ୍ଧୁ । କିନ୍ତୁ ତାଙ୍କର ରାଜନୈତିକ ଶତ୍ରୁଙ୍କ କ୍ରୁର କୁଟନୀତି ଯୋଗୁଁ ବହୁ ସମୟରେ ତାଙ୍କୁ ବିଶେଷ ଆତ୍ମଗ୍ଳାନି ଦେଉଥିଲା । ତାଙ୍କର ଅମାୟିକ ବ୍ୟକ୍ତିତ୍ୱକୁ ଅନ୍ୟ ରୂପ ଦେଇ ତାଙ୍କ ସମାଲୋଚକମାନେ ତାଙ୍କୁ ଡାଇରୀ ମନ୍ତ୍ରୀ ବୋଲି ଆଖ୍ୟା ଦେଇଥିଲେ ତଥାପି ଏଭଳି ସମାଲୋଚନାକୁ ସେ କେବେହେଲେ ଭ୍ରୁକ୍ଷେପ କରୁ ନ ଥିଲେ ।

ଜରୁରୀକାଳୀନ ପରିସ୍ଥିତି ପରେ କଂଗ୍ରେସର ବିଭାଜନ ବେଳେ ସେ କଂଗ୍ରେସ (ଅର୍ସ) ରେ ଯୋଗଦେଇଥିଲେ । ଏହା ତାଙ୍କ ଜୀବନର ସବୁଠୁ ବଳି ଭୁଲ ଥିଲା ଏବଂ ସେଥିପାଇଁ ସେ ମୃତ୍ୟୁ ପର୍ଯ୍ୟନ୍ତ ବିଶେଷ ଅନୁତାପ କରୁଥିଲେ ।

ଦୀର୍ଘଦିନ ଧରି ରାଜନୀତିର ଶୀର୍ଷ ସ୍ଥାନରେ ରହିଥିଲେ ମଧ୍ୟ ଅର୍ଥ ଗଳସା–ଟଙ୍କାପଇସାର ମୋହ ତାଙ୍କ ପାଖରେ ନ ଥିଲା । ସେ ଥିଲେ ମିତବ୍ୟୟୀ ଏବଂ ସଚ୍ଚୋଟତାର ପ୍ରତୀକ । ଏହା ସତ୍ତ୍ୱେ ସେ ତାଙ୍କ ଶତ୍ରୁଙ୍କ ଅପପ୍ରଗ୍ରରୁ ବର୍ତ୍ତିପାରି ନାହାନ୍ତି । ସେମାନଙ୍କ ମତରେ, ସେ ମନ୍ତ୍ରୀତ୍ୱ ସମୟରେ ବହୁତ ଅର୍ଥ ରୋଜଗାର କରି ଧନ ଠୁଳ କରିଛନ୍ତି, କିନ୍ତୁ ବିନାୟକ ବାବୁଙ୍କ ସହିତ ଯେଉଁମାନେ ଜଡ଼ିତ ଏବଂ ତାଙ୍କ ସଂସ୍ପର୍ଶରେ ଆସିଛନ୍ତି, ସେମାନେ ନିଶ୍ଚିତ ଭାବେ ଜାଣନ୍ତି ଯେ ବିନାୟକ ବାବୁଙ୍କ ମୃତ୍ୟୁ ସମୟରେ ତାଙ୍କ ପାଖରେ କାଣି କଉଡ଼ିଟିଏ (କପର୍ଦ୍ଦକ) ନ ଥିଲା । ଯାହାଫଳରେ ତାଙ୍କ ପରିବାର କୁଟୁମ୍ବ ଲୋକେ, ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଏବଂ ବିରୋଧୀଦଳ ନେତାଙ୍କଠାରୁ ମିଳିଥିବା ସାହାଯ୍ୟ ଗ୍ରହଣ କରିବାପାଇଁ ବାଧ୍ୟ ହୋଇଥିଲେ । ମୋର ଠିକ୍ ମନେପଡୁଚି ଯେ ମୁଁ ନିଜେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ଅନୁରୋଧ କିରିଥିଲି କିଛି ଆର୍ଥିକ ସାହାଯ୍ୟ ଦେବାକୁ ଏବଂ ସେ ନିଃସଙ୍କୋଚରେ ସାହାଯ୍ୟ ଦେଇଥିଲେ ।

ଏହି ଅନନ୍ୟ ପ୍ରତିଭାସଂପନ୍ନ ବ୍ୟକ୍ତିତ୍ୱକୁ ତାଙ୍କର ଏହି ସ୍ମୃତି ପତ୍ରିକା (ସ୍ମରଣିକା) ଜରିଆରେ ମୁଁ ମୋର ଭକ୍ତିପୂତ ବିନମ୍ର ଶ୍ରଦ୍ଧାଞ୍ଜଳି ଜଣାଉଅଛି ।

# ବରିଷ୍ଠ ଜନନାୟକ ତଥା ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତଃ ବିନାୟକ ଆଚାର୍ଯ୍ୟ

ଯିଏ ଗାନ୍ଧିଙ୍କ ଭିତରେ ମାର୍କସଙ୍କୁ ଦେଖିଥିଲେ..........

'ବିନାୟକ ଆଚାର୍ଯ୍ୟ ୧୯୧୮ ମସିହା ଅଗଷ୍ଟ ମାସ ତିରିଶ ତାରିଖ ଦିନ ବ୍ରହ୍ମପୁରର ଏକ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ, ସେ ଦିନଟି ଥିଲା ପବିତ୍ର ଗଣେଶଚତୁର୍ଥୀ । ଉକ୍ତ ପବିତ୍ର ଦିନର ଯଥାର୍ଥତାକୁ ନେଇ ତାଙ୍କ ପିତା ସ୍ୱର୍ଗତ ରଘୁନାଥ ଆଚାର୍ଯ୍ୟ 'ବିନାୟକ' ବୋଲି ପୁଅର ନାମ କରଣ କରିଥିଲେ । ସେ ଯେତେବେଳେ 1976 ମସିହାରେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ରୂପେ ଅଧିଷ୍ଠିତ ହେଲେ ସେତେବେଳେ ଡ଼କ୍‌ଟର ହରେକୃଷ୍ଣ ମହତାବ ତାଙ୍କୁ ଏକ ଶାସକ ପରିବାରର ଯୋଗ୍ୟଦାୟଦ ବୋଲି ବର୍ଣ୍ଣନା କରିଥିଲେ । ବର୍ତ୍ତମାନର ଆନ୍ଧ୍ରପ୍ରଦେଶର 'ପାଲକୁଣ୍ଡା ଅଞ୍ଚଳ' ତାଙ୍କ ପରିବାରର ପୂର୍ବସୂରୀମାନଙ୍କର ଶାସକ ରାଜ୍ୟ ଥିଲା । ଏବେ ମଧ୍ୟ ସ୍ୱର୍ଗତ ବିନାୟକ ଆଚାର୍ଯ୍ୟଙ୍କର ବ୍ରହ୍ମପୁରସ୍ଥିତ ବାସଭବନ ପାଲକୁଣ୍ଡା ଖୁଆଡ଼, ନାମରେ ଲୋକମାନଙ୍କ ମଧ୍ୟରେ ପରିଚିତ ।

ବ୍ରହ୍ମପୁର ସହରସ୍ଥିତ ଶଙ୍କରପୁରସାହିର ଉଚ୍ଚପ୍ରାଥମିକ ବିଦ୍ୟାଳୟରେ ବାଳକ ବିନାୟକଙ୍କ ପ୍ରାଥମିକ ଶିକ୍ଷା ଆରମ୍ଭ ହୋଇଥିଲା । ତାପରେ ସେ ଆସିକାରୋଡ଼ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଭର୍ତ୍ତି ହେଲେ । ସେତେବେଳେ ସେହି ସ୍କୁଲରେ ତାଙ୍କ ପିତା ସ୍ୱର୍ଗତ ରଘୁନାଥ ଆଚାର୍ଯ୍ୟ ଶିକ୍ଷକତା କରୁଥିଲେ । ସେ ଖଲ୍ଲିକୋଟ କଲେଜରୁ ଇଣ୍ଟର ମିଡ଼ିଏଟ୍ ପାଶ୍ କଲାପରେ ସୁନାମଧନ୍ୟ ପାରଳାଖେମୁଣ୍ଡି କଲେଜରୁ ସ୍ନାତକ ହେଲେ ଏବଂ ତତପରେ କଟକରୁ ବି.ଏଡ଼ ଡ଼ିଗ୍ରୀ ଲାଭ କଲେ । କଲେଜ ଜୀବନରେ ସେ କେବଳ ଜଣେ ମେଧାବୀ ଛାତ୍ର ନଥିଲେ ତା ସହ ଜଣେ ସୁବକ୍ତା ଭାବେ ଖ୍ୟାତି ଅର୍ଜନ କରିଥିଲେ ଯାହାକି ଭବିଷ୍ୟତ ରାଜନୈତିକ ପେଷାରେ ଓ ବିଧାୟକ ତଥା ବିରୋଧୀ ଦଳର ନେତୃତ୍ୱ ନେବାରେ ତାଙ୍କୁ ବହୁବିଧ ସହାୟକ ହୋଇଥିଲା ।

ସ୍କୁଲ ଓ କଲେଜର ଛାତ୍ରାବସ୍ଥାରେ ସେ ତତ୍‌କାଳୀନ ସୁବିଖ୍ୟାତ ବାମପନ୍ଥୀ ନେତା ସ୍ୱର୍ଗତ ବିଜୟ ଚନ୍ଦ୍ର ଦାସଙ୍କର ପଟଶିଷ୍ୟ ଥିଲେ ଓ ତାଙ୍କର ପ୍ରେରଣାକୁ ସେ ନିଜ ଜୀବନରେ ବହୁଳ ଭାବେ ଗ୍ରହଣ କରି ନେଇଥିଲେ । ଅନେକ ସମୟରେ ସ୍ୱର୍ଗତ ନବକୃଷ୍ଣ ଚୌଧୁରୀ ଓ ସ୍ୱର୍ଗତ ବିଜୟ ଦାସଙ୍କ ସହିତ ସେ ସମୟର ସାମାଜିକ ସମସ୍ୟା ତଥା ସେ ଗୁଡ଼ିକର ନିରାକରଣ ସଂପର୍କରେ ତାଙ୍କର ବିଚାର ବିମର୍ଶ ହେଉଥିଲା । ଯୁବକ ବିନାୟକ ଯୁବାବସ୍ଥାରୁ ସାମାଜିକ ତଥା ଦେଶାତ୍ମବୋଧ କାର୍ଯ୍ୟକଳାପରେ ନିଜକୁ ନିୟୋଜିତ କରିବାରେ ଆଗ୍ରହ ପ୍ରକାଶ କରୁଥିଲେ । ବାମପନ୍ଥୀ ନେତାମାନଙ୍କର ସଂସ୍ପର୍ଶରେ ଆସି ପ୍ରାରମ୍ଭରୁ ସେ ଏକ ଶ୍ରେଣୀହୀନ ସମାଜ ପ୍ରତିଷ୍ଠା କରି ଗରିବ ଲୋକଙ୍କୁ ନାନା ପ୍ରକାର ଶୋଷଣର ପ୍ରଭାବରୁ ମୁକ୍ତ ରଖିବା ପାଇଁ ପ୍ରଚେଷ୍ଟା କରି ଆସିଥିଲେ ।

ପାଠପଢ଼ା ସମାପ୍ତି ପରେ ସେ ଶିକ୍ଷକତାର ବୃତ୍ତିକୁ ଆଦରରେ ଗ୍ରହଣ କରିଥିଲେ ଯାହାକି ତାଙ୍କର ମୂଳସ୍ଥ ଲକ୍ଷ୍ୟଥିଲା । ପରେ ପରେ ସେ ବ୍ରହ୍ମପୁର ମ୍ୟୁନିସିପାଲିଟି ହାଇସ୍କୁଲରେ ପ୍ରଧାନ ଶିକ୍ଷକ ରୂପେ ଦାୟିତ୍ୱ ଗ୍ରହଣ କରିଥିଲେ । ଜଣେ ସଫଳ ଶିକ୍ଷକ ଭାବେ ଛାତ୍ର, ଅଭିଭାବକ ତଥା ମୁନିସିପାଲିଟି କର୍ମଚାରୀ ମାନଙ୍କର ପ୍ରିୟଭାଜନ ହୋଇପାରିଥିଲେ । ସାରା ଓଡ଼ିଶାରେ ତାଙ୍କର ଆଦର୍ଶ ଓ ବୁଦ୍ଧିମତାର ପ୍ରସାର ଘଟିଥିଲା । ଶ୍ରଦ୍ଧାର ସହ ତାଙ୍କୁ ସମସ୍ତେ "ବିନୁମାଷ୍ଟ୍ରେ" ବୋଲି ଡ଼ାକୁଥିଲେ । ଡ଼ଃ ସର୍ବପଲ୍ଲି ରାଧାକ୍ରିଷ୍ଣନଙ୍କ ପରେ ସମ୍ଭବତଃ ବିନାୟକ ଆଚାର୍ଯ୍ୟ ଦେଶର ଦ୍ୱିତୀୟ ଶିକ୍ଷକ ଯେକି ଏତେ ଶ୍ରଦ୍ଧା ଓ ସମ୍ମାନର ପାତ୍ର ଅଟନ୍ତି । ବ୍ରିଟିଶ ସରକାର ଅଧୀନରେ ଚାକିରୀ କରିବା ପାଇଁ ଘୃଣାକରି ସେ ମୁନିସିପାଲିଟି ସଂସ୍ଥାରେ ଜୀବିକାର୍ଜନ କରିବା ଶ୍ରେୟସ୍କର ମଣିଥିଲେ । ସମାଜର ଦଳିତ ଲୋକଙ୍କ ସେବା କରିବା ଲକ୍ଷ୍ୟନେଇ "ନବୋଦୟ ସେବା ସଂଘ" ନାମରେ ଏକ ଅନୁଷ୍ଠାନ ସେ ଶିକ୍ଷକ ହେବାବେଳେ ଗଠନ କରିଥିଲେ । ସ୍ୱର୍ଗତ ପଦ୍ମଶ୍ରୀ ମୋହନ ନାୟକ ମଧ୍ୟ ଏହି ଅନୁଷ୍ଠାନ ସହିତ ସମ୍ପୃକ୍ତ ଥିଲେ । ପରେ ସେ ସେବାଦଳ ନାମକ ଏକ ସଂସ୍ଥା ଗଠନ କରି 1942 ମସିହାରେ ଗଂଜାମ ଜିଲ୍ଲାରେ ଦେଖାଦେଇଥିବା ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳର ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କର ସେବାରେ ନିୟୋଜିତ ହୋଇଥିଲେ । ସେହିବର୍ଷ ମହାତ୍ମାଗାନ୍ଧିଙ୍କ 'ଭାରତଛାଡ଼ ଆନ୍ଦୋଳନ' ଡ଼ାକରାରେ ପ୍ରଭାବିତ ହୋଇ ସ୍ୱର୍ଗତ ବିଜୟ ଚନ୍ଦ୍ର ଦାସଙ୍କ ସହିତ କଂଗ୍ରେସ କର୍ମୀମାନଙ୍କର ଜେଲଭରୋ ଆନ୍ଦୋଳନକୁ ଉତ୍ସାହିତ କରୁଥିଲେ । ସେ ମହାତମାଗାନ୍ଧିଙ୍କ ଭିତରେ କାର୍ଲମାର୍କସଙ୍କୁ ଦେଖିଥିଲେ ଏବଂ ମୃତ୍ୟୁପର୍ଯ୍ୟନ୍ତ ଜଣେ ନୈଷ୍ଠିକ ଗାନ୍ଧିବାଦି ଥିଲେ । ଆଭାଦି ଠାରେ ଭାରତୀୟ ଜାତୀୟ କଂଗ୍ରେସ 'ସମାଜବାଦୀ ଢ଼ାଞ୍ଚା' କାର୍ଯ୍ୟକ୍ରମ ପ୍ରଥାକୁ ଗ୍ରହଣ କଲା ଯାହାଫଳରେ ସମାଜର ଗରିବ ଲୋକମାନଙ୍କର ସେବା କରିବା ପାଇଁ ସେ କଂଗ୍ରେସ ସହିତ ଅଧିକ ଘନିଷ୍ଠ ହୋଇଗଲେ । ସେ ମାର୍କସବାଦ ଓ ଗାନ୍ଧିବାଦକୁ ସଠିକ ଭାବେ ଗ୍ରହଣ କରିଥିଲେ ଏବଂ ଏକ ଶ୍ରେଣୀହୀନ ସମାଜ ପ୍ରତିଷ୍ଠାକରି ନାନାପ୍ରକାର ନିର୍ଯ୍ୟାତନାରେ ସଢ଼ୁଥିବା ତଥା ଶୋଷିତ ହେଉଥିବା ଦଳିତବର୍ଗଙ୍କୁ ସାମାଜିକ ନ୍ୟାୟ ଦେବାରେ ସହାୟକ ହେବା ପାଇଁ ସାହାସର ସହିତ ଚେଷ୍ଟା କରୁଥିଲେ ଏବଂ ମୃତ୍ୟୁ ପର୍ଯ୍ୟନ୍ତ ଏହି ଆଚରଣ ଜାରି ରଖିଥିଲେ । ଫଳତଃ ସେ ସଚ୍ଚୋଟ ଓ ନୈତିକତାର ପ୍ରତୀକ ରୂପେ ସମ୍ମାନ ହାସଲ କରିପାରିଛନ୍ତି ଯାହାକି ଆଜିଯାଏ ଓଡ଼ିଶାର କ୍ୱଚିତ ନେତା ସେ ସମ୍ମାନର ଅଧିକାରୀ ହୋଇପାରିଛନ୍ତି ।

ଆଚାର୍ଯ୍ୟ ବିନୋବା ଭାବେଙ୍କର ଭୂଦାନ ଯଜ୍ଞ ସହିତ ସେ ସକ୍ରିୟ ଭାବେ ସଂଶ୍ଳିଷ୍ଟ ଥିଲେ ଏବଂ ସମଗ୍ର ଗଂଜାମ ଜିଲ୍ଲାରେ ଏହି ଯଜ୍ଞର ପ୍ରଚାର ଓ ପ୍ରସାର କରାଇଥିଲେ । ଏ ସବୁ କାର୍ଯ୍ୟକଳାପର ମୂଳକେନ୍ଦ୍ର ଥିଲା ମୁନିସିପାଲ ସ୍କୁଲ ଯେଉଁଠାରୁ ତାଙ୍କର ଚିନ୍ତାଧାରା ସାକାର ରୂପନେଇ ବହିର୍ଜଗତକୁ ଆସୁଥିଲା ।

ତାଙ୍କ ଜୀବନର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହୁଏ 1967 ସାଲରେ ଯେତେବେଳେ ବିଜୁ ପଟ୍ଟନାୟକ ତାଙ୍କୁ କଂଗ୍ରେସ ଦଳରେ ଯୋଗ ଦେବା ପାଇଁ ପ୍ରବର୍ତ୍ତାଇଲେ । ସେ ଜଣେ ବିଧାୟକ ଭାବେ ନିର୍ବାଚନରେ ଜିଣି ରାଜ୍ୟ କଂଗ୍ରେସ ଦଳର ଉପନେତା ଭାବେ ମନୋନୀତ

ହେଲେ । 1969 ସାଲରେ କଂଗ୍ରେସର ଐତିହାସିକ ବିଭାଜନ ପରେ ସ୍ୱର୍ଗତ ଆଚାର୍ଯ୍ୟ ଇନ୍ଦିରାଗାନ୍ଧୀଙ୍କ ପକ୍ଷଭୁକ୍ତ ହେଲେ ଏବଂ ବହୁ ବରିଷ୍ଠ ନେତାଙ୍କୁ ଅତିକ୍ରମ କରି ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି ରୂପେ ସେହିବର୍ଷ ଅଧିଷ୍ଠିତ ହେଲେ । ତାଙ୍କରି ନେତୃତ୍ୱରେ ଗାନ୍ଧିବାଦ ଓ ସମାଜବାଦ ଚିନ୍ତାଧାରା ବହୁଳ ପ୍ରସାର ଘଟିଥିଲା । ବିରୋଧିଦଳର ନେତା ହିସାବରେ ବିଧାନସଭା ତଥା ଯେ କୌଣସି ସ୍ଥଳ ବିଶେଷରେ ତାଙ୍କର ବଳ୍ଗ ଗମ୍ଭୀର ସ୍ପଷ୍ଟ ବକ୍ତବ୍ୟ ଜାତୀୟ ରାଜନୀତିରେ ଆଲୋଚିତ ହେଉଥିଲା ଏବଂ ରାଜ୍ୟର ଜନସାଧାରଣଙ୍କ ମନରେ ଆଲୋଡ଼ନ ସୃଷ୍ଟି କରୁଥିଲା । ଫଳରେ ଅଚିରେ ସେ ଜନସାଧାରଣଙ୍କ ପ୍ରିୟଭାଜନ ହୋଇପାରିଥିଲେ । ଗାଁ ଗହଳିରେ ତାଙ୍କ ବ୍ୟକ୍ତିତ୍ୱର ବ୍ୟାପକ ଆଲୋଚନା ହେଉଥିଲା । ଜଣେ ଭଦ୍ର ରାଜନୀତିଜ୍ଞ ରୂପେ ସବୁଦଳର ନେତା, ସର୍ବସାଧାରଣଙ୍କ ଦ୍ୱାରା ସେ ଆଦୃତ ହୋଇପାରିଥିଲେ ।

1972 ମସିହାରେ ସେ ପ୍ରଥମେ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ମନ୍ତ୍ରୀମଣ୍ଡଳରେ ଯୋଗ ଦେଇଥିଲେ ଏବଂ ମନ୍ତ୍ରୀପଦ ଭାରରେ କେବେ ନିଜର ନୀତିକୁ ହରେଇ ଦେଇ-ନଥିଲେ । କୃଷି ଓ ସମବାୟ ବିଭାଗର ମନ୍ତ୍ରୀଥିଲାବେଳେ ଚାଷୀମୂଲିଆଙ୍କର ଉନ୍ନତି କଳ୍ପେ ଜଳସେଚନ ତଥା ସମବାୟ ଆଦର୍ଶ ଉପରେ ଗୁରୁତ୍ୱ ଦେଇଥିଲେ ଏବଂ ବିବିଧ ଉପାୟରେ ସେମାନଙ୍କର ସମସ୍ୟାର ସମାଧାନ କରିବା ପାଇଁ ଆଗ୍ରହ ପ୍ରକାଶ କରୁଥିଲେ । ସେ ସମୟରେ ସେ ଓଡ଼ିଶା କୃଷକ ସମାଜର ପ୍ରତିଷ୍ଠାତା ସଭାପତି ଥିଲେ । ମୁଖ୍ୟମନ୍ତ୍ରୀ ଦାୟିତ୍ୱରେ ଥିଲାବେଳେ ମଧ୍ୟ ସେ ଓଡ଼ିଶା କୃଷକ ସମାଜର ସଭାପତି ଦାୟିତ୍ୱ ତୁଲାଉଥିଲେ । ଭୁବେନେଶ୍ୱର କୃଷକ ସମାଜ ନିର୍ମାଣରେ ତାଙ୍କର ମୁଖ୍ୟ ଭୂମିକା ଥିଲା ।

ଶ୍ରୀ ଆଚାର୍ଯ୍ୟ ଘରୋଇ ବିଭାଗର ମନ୍ତ୍ରୀଥିଲାବେଳେ ଗରିବ ତଥା ଅନୁନ୍ନତ ଶ୍ରେଣୀର ଲୋକଙ୍କ ପାଇଁ ଅଧିକ ସହାନୁଭୂତିଶୀଳ ହୋଇ ଅନେକ ହିତକର ଯୋଜନାର ଆରମ୍ଭ କରି ବ୍ୟକ୍ତିଗତ ଭାବେ ସେଗୁଡ଼ିକର କାର୍ଯ୍ୟକାରିତା ତଦାରଖ କରୁଥିଲେ ।

1973 ମସିହାରେ ସେ ବ୍ରହ୍ମପୁର ମ୍ୟୁନିସିପାଲିଟିର ଅଧ୍ୟକ୍ଷ ଦାୟିତ୍ୱ ଗ୍ରହଣ କଲେ ଏବଂ ଉକ୍ତ ସଂସ୍ଥାର ଶାସନପଦ୍ଧତିରେ କେତେକ ସଂସ୍କାର କରାଇ ଶୃଂଖଳା ପ୍ରତିଷ୍ଠା କରିବାରେ ସଫଳ ହୋଇଥିଲେ । ପୌର ପରିଷଦ ଶାସନ ବିରୁଦ୍ଧରେ ଓଡ଼ିଶାର ସମ୍ଭବତଃ ପ୍ରଥମ ଆନ୍ଦୋଳନ 1950 ଦଶକରେ କରି ପୌର ସଂସ୍ଥାର କର୍ମଚାରୀଙ୍କ ଚାକିରୀ ସର୍ତ୍ତା-ବଳୀରେ କେତେକ ପରିବର୍ତ୍ତନ ଦ୍ୱିପାକ୍ଷିକ ଚୁକ୍ତି କରିଆରେ କରିଥିଲେ । 1974 ମସିହାରେ ସେ ଅର୍ଥମନ୍ତ୍ରୀରୂପେ ଦାୟିତ୍ୱ ଗ୍ରହଣ କରି ତୁରନ୍ତ ଅର୍ଥ ବିଭାଗରେ କେତେକ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନର ଆଦେଶ ଜାରି କରିଥିଲେ । ତାଙ୍କ ଭଳି ସରଳ ଗାନ୍ଧିବାଦୀ ବ୍ୟକ୍ତି ଅର୍ଥମନ୍ତ୍ରୀ ପଦବୀରେ ଅବସ୍ଥାପିତ ହେଇ କଡ଼ା ଆର୍ଥିକ ଧାରା ଜାରି କରି ଅର୍ଥ ବିଭାଗର ସ୍ଥିରତା ବଜାୟ ରଖିପାରିଥିଲେ । ତାଙ୍କ ନିରାଡ଼ମ୍ବର ଚାଲିଚଳନ ପାଇଁ ଲୋକେ ପରିହାସରେ ତାଙ୍କୁ 'ଅର୍ଥହୀନ ଅର୍ଥମନ୍ତ୍ରୀ' (Financeless Finance Minister) ନାମକରଣ କରିଥିଲେ ।

ଶିକ୍ଷାମନ୍ତ୍ରୀ ଥିଲାବେଳେ ସେ କଲେଜ ଶିକ୍ଷକମାନଙ୍କ ପାଇଁ ପ୍ରଥମ ଥର ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ( U.G.C.) ହାରରେ ଦରମା ପ୍ରଦାନ କରିଥିଲେ ଏବଂ ଚାକିରୀ ସଂପର୍କୀତ କେତେକ ତ୍ରୁଟିକୁ ସୁଧାରିବାରେ ସକ୍ଷମ ହେଇଥିଲେ । ଶିକ୍ଷକତାରୁ ରାଜନୀତିକୁ ଆସିଥିବା ଯୋଗୁଁ ସେ ସମାଜରେ ଶିକ୍ଷକମାନଙ୍କ ଗୁରୁତ୍ୱପୂର୍ଣ୍ଣ ଭୂମିକା ସଂପର୍କରେ ସଚେତନ ଥିଲେ । ଦେଶ ନିର୍ମାଣରେ ସେ ଶିକ୍ଷକ ସମାଜକୁ ସକ୍ରିୟଭାଗ ନେବା ପାଇଁ ଆହ୍ୱାନ କରିଥିଲେ । 'ଓଡ଼ିଶା ଶିକ୍ଷକ ଆନ୍ଦୋଳନ'ର ସେ ଜଣେ ପ୍ରତିଷ୍ଠାତା ସଭ୍ୟ ଥିଲେ ଏବଂ ଶିକ୍ଷକ ମହାସଂଘ ଗଠନ କରିବାରେ ସାହାଯ୍ୟ କରିଥିଲେ ।

ତତ୍କାଳୀନ ପ୍ରଧାନମନ୍ତ୍ରୀ ସ୍ୱର୍ଗତା ଇନ୍ଦିରା ଗାନ୍ଧିଙ୍କ ଜଣେ ଟାଣୁଆ ସମର୍ଥକ ଭାବେ ରାଜ୍ୟର ମୁଖ୍ୟମନ୍ତ୍ରୀତ୍ୱ ଗ୍ରହଣ କରି ତାଙ୍କ ଆଧୁନିକ ତଥା ବୈପ୍ଳବିକ ଚିନ୍ତାଧାରା ଫଳରେ ରାଜ୍ୟରେ ଅନେକ ବିକାଶୋନ୍ମୁଖୀ ପ୍ରକଳ୍ପର କାର୍ଯ୍ୟକ୍ରମ ତ୍ୱରାନ୍ୱିତ ହୋଇଥିଲା । ଏ ସମସ୍ତ କାର୍ଯ୍ୟରେ ତାଙ୍କର ଘନିଷ୍ଠ ବନ୍ଧୁ ତଥା ତତ୍କାଳୀନ ଦେଶରକ୍ଷା ରାଷ୍ଟ୍ରମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଅକୁଣ୍ଠ ସାହାଯ୍ୟ ସେ ପାଉଥିଲେ ।

'ସମାଜ'ର ବୟୋଜ୍ୟେଷ୍ଠ ସଂପାଦକ ଡକ୍ଟର ରାଧାନାଥ ରଥ କହନ୍ତି ଯେ ଶ୍ରୀ ଆଚାର୍ଯ୍ୟଙ୍କର ସଚ୍ଚୋଟପଣିଆ ଅତି ବଳିଷ୍ଠ ଯଦ୍ୱାରା ସେ କେବେ ଏ ସଂପର୍କରେ ବିତର୍କିତ ହେଇନାହାନ୍ତି । ତାଙ୍କର ରାଜନୈତିକ ପ୍ରତିଦ୍ୱନ୍ଦୀମାନେ ମଧ୍ୟ ତାଙ୍କ ବ୍ୟକ୍ତିତ୍ୱକୁ ସର୍ବଦା ସମ୍ମାନ ଦିଅନ୍ତି ଓ ଶ୍ରଦ୍ଧା କରନ୍ତି । ଏହାଥିଲା ତାଙ୍କର ବଳିଷ୍ଠ ନିଷ୍କଳଙ୍କ ବ୍ୟକ୍ତିତ୍ୱର ପରିପ୍ରକାଶ । ବାସ୍ତବରେ ସେ ଥିଲେ ଅଜାତଶତ୍ରୁ । ସେ ମୁଖ୍ୟମନ୍ତ୍ରୀ, ମନ୍ତ୍ରୀ ବା କଂଗ୍ରେସ ସଭାପତି ଭାବରେ ଯେତେ ପରିଚିତ ନୁହଁନ୍ତି, ଜଣେ ଆଦର୍ଶ ମଣିଷ ପରି ମଣିଷ ଭାବରେ ସର୍ବତ୍ର ପରିଚିତ ।

ବ୍ରହ୍ମପୁର ବା ଓଡ଼ିଶା ତାଙ୍କର ରାଜନୈତିକ କାର୍ଯ୍ୟକଳାପର କେନ୍ଦ୍ରସ୍ଥଳ ହେଲେ ସୁଦ୍ଧା ସେ ଅନେକ ଜାତୀୟ ତଥା ଆନ୍ତର୍ଜାତୀୟ ସଂଗଠନ ସହିତ ସକ୍ରିୟ ସହଯୋଗ ରଖିଥିଲେ । ସେ ଜର୍ମାନୀ, ଭାରତ ମୈତ୍ରୀ ସଙ୍ଘର ସଭାପତି, ରୁଷ-ଭାରତ ସାଂସ୍କୃତିକ ସଂସ୍ଥାର ଉପସଭାପତି, ନିଖିଳ ଭାରତ ଶାନ୍ତି ଐକ୍ୟ ସଂସ୍ଥା ତଥା ରାଷ୍ଟ୍ରଭାଷା ପ୍ରଚାର ସଭା ପ୍ରଭୃତି ସଂସ୍ଥାମାନଙ୍କ ସଭାପତି ପଦ ସହିତ ଆଜୀବନ ବହୁ ସଂସ୍ଥାରେ ସଂଶ୍ଳିଷ୍ଟ ଥିଲେ ।

ସମାଜବାଦୀ ଚିନ୍ତା ଓ ନୈତିକ ଆଦର୍ଶର ଅପୂର୍ବ ସମନ୍ୱୟ ତାଙ୍କର ବ୍ୟକ୍ତିତ୍ୱରେ ପ୍ରତିଭାତ ହୋଇଥିଲା । ସେ ଥିଲେ ଆଧୁନିକ ଓଡ଼ିଶାର ଜଣେ ଅନନ୍ୟ ସାଧାରଣ ଗଣତାନ୍ତ୍ରିକ ସମାଜବାଦୀ ଭାବୁକ ଓ କର୍ମବୀର ।

---

* ବିନାୟକ ଆଚାର୍ଯ୍ୟ ସ୍ମୃତି କମିଟି, ଓଡ଼ିଶା, ଭୁବନେଶ୍ୱର

OGP—MP-II (L. A.) 2—500—3-9-1997

# ସ୍ମରଣୀୟ ମନୀଷୀ ବିନାୟକ ଆଚାର୍ଯ୍ୟ

ବିନାୟକ ଆଚାର୍ଯ୍ୟ—ଏକ ସ୍ମରଣୀୟ ମନିଷୀ ।

ଶିକ୍ଷକ ଭାବରେ ସେ ଜୀବନ ଆରମ୍ଭ କରିଥିଲେ ଏବଂ ରାଜ୍ୟର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିଥିଲେ । ସେ ଆତ୍ମଜୀବନୀ ଲେଖିନାହାନ୍ତି ଏବଂ ଅନ୍ୟମାନେ କେହି ଏ ପର୍ଯ୍ୟନ୍ତ ତାଙ୍କ ଜୀବନୀ ରଚନା କରିନାହାଁନ୍ତି । ହେଲେ ବିଧାନ ସଭାରେ ବିଭିନ୍ନ ସମୟରେ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱରେ ଥାଇ ବହୁ ତଥ୍ୟପୂର୍ଣ୍ଣ ବକ୍ତବ୍ୟ ବିନାୟକ ବାବୁ ପ୍ରଦାନ କରିଛନ୍ତି । ତାହା ସଙ୍କଳିତ ହେଲେ ସମସ୍ତଙ୍କ ପାଇଁ ଏକ ଅମୂଲ୍ୟ ଐତିହାସିକ ଦଲିଲ୍ ହେବ ।

ବର୍ଷକ ତଳେ ବ୍ରହ୍ମପୁରଠାରେ ପାଳିତ ହେଉଥିବା ବିନାୟକ ଆଚାର୍ଯ୍ୟଙ୍କର ଜୟନ୍ତୀ ଉତ୍ସବରେ ମୁଁ ଏବଂ ମାନ୍ୟବର ବିଧାନ ସଭାର ବାଚସ୍ପତି ଶ୍ରୀଯୁକ୍ତ ଚିନ୍ତାମଣି ଦ୍ୟାନସାମନ୍ତରାୟ ଉପସ୍ଥିତ ଥିଲୁ । ମୁଁ ଅନୁରୋଧ କରିଥିଲି ବାଚସ୍ପତିଙ୍କୁ "ବିନାୟକ ବାବୁଙ୍କୁ ଜାଣିବାକୁ ହେଲେ, ଉତ୍ତର ପୁରୁଷଙ୍କୁ ତାଙ୍କୁ ଚିହ୍ନାଇବାକୁ ହେଲେ ଓଡ଼ିଶା ବିଧାନ ସଭାରେ ତାଙ୍କଦ୍ୱାରା ପ୍ରଦତ୍ତ ଗୁରୁତ୍ୱପୂର୍ଣ୍ଣ ବକ୍ତବ୍ୟ ସମୁହକୁ ସଙ୍କଳିତ କରି ଏକ ପୁସ୍ତକ ଶୀଘ୍ର ପ୍ରକାଶିତ ହେବା ଉଚିତ"—ଏବେ ଶୁଣିଲି ସ୍ୱର୍ଗତ ମୁଖ୍ୟମନ୍ତ୍ରୀ ବିନାୟକ ଆଚାର୍ଯ୍ୟଙ୍କର ୭୯ ତମ ଜୟନ୍ତୀ ଅବସରରେ ଓଡ଼ିଶା ବିଧାନ ସଭା ତରଫରୁ ଅଗଷ୍ଟ ୩୦ ତାରିଖ ଦିନ "ବିଧାନ ସଭାରେ ଆଚାର୍ଯ୍ୟଙ୍କ ଦ୍ୱାରା ପ୍ରଦତ୍ତ ବକ୍ତୃତା ସଙ୍କଳନ ପ୍ରକାଶିତ ହେଉଛି" ମାନ୍ୟବର ବାଚସ୍ପତି ଶ୍ରୀଯୁକ୍ତ ଚିନ୍ତାମଣି ଦ୍ୟାନସାମନ୍ତରାୟଙ୍କର ଏହା ଏକ ଉଲ୍ଲେଖନୀୟ ପଦକ୍ଷେପ । ମୁଁ ତାଙ୍କୁ ଅଭିନନ୍ଦନ ଜଣାଉଛି ।

ବିନାୟକ ଆଚାର୍ଯ୍ୟ—ଏକ ଅମାୟିକ, ସରଳ, ମିଷ୍ଟଭାଷି ଓ ବନ୍ଧୁବତ୍ସଳ ମଣିଷ ଥିଲେ । ହେଲେ ସବୁବେଳେ କର୍ମକ୍ଷେତ୍ରରେ ଥିଲେ ଅଙ୍ଗୀକାରବଦ୍ଧ—ପ୍ରଗତିଶୀଳ ନେତା । ଶିକ୍ଷକ ଭାବରେ ସେ ଜୀବନ ଆରମ୍ଭ କରିଥିଲେ । ତାଙ୍କର ଗଭୀର ଅଧ୍ୟବସାୟ ଥିଲା । ରାଜ୍ୟର ଜଣେ ସୁନାମଧନ୍ୟ ପ୍ରଜ୍ଞାବିତ ଶିକ୍ଷକ ଥିଲେ—ତଥା ପ୍ରଧାନ ଶିକ୍ଷକ ଥିଲେ । ଭାରତର ସ୍ୱାଧୀନତା ସଂଗ୍ରାମ ସହିତ ତାଙ୍କର ଗଭୀର ସମ୍ପର୍କ ଥିଲା । ଆରମ୍ଭରେ ସେ ସାମ୍ୟବାଦ ଚିନ୍ତାଧାରାରେ ଆକୃଷ୍ଟ ଥିଲେ- ହେଲେ ପରବର୍ତ୍ତୀ ଅବସ୍ଥାରେ ଗାନ୍ଧୀବାଦର ଦୃଢ଼ ପ୍ରବର୍ତ୍ତକ କାର୍ଯ୍ୟ କରିଥିଲେ ।

ବିନାୟକ ବାବୁ ଗରିବ—ମେହନତି ମଣିଷ ଏବଂ ଚାଷୀମାନଙ୍କର ସମସ୍ୟା ଓ ଦାବୀକୁ ହୃଦୟଙ୍ଗମ କରିଥିଲେ । ପ୍ରାକୃତିକ ବିଭବଭରା ଓଡ଼ିଶା ବାରମ୍ବାର ପ୍ରାକୃତିକ ବିପର୍ଯ୍ୟୟରେ ବନ୍ୟା ଓ ମରୁଡ଼ିରେ ଜର୍ଜରିତ ହେଉଛି—ଓଡ଼ିଶାବାସୀ ଦରିଦ୍ର ହେଉଛନ୍ତି—ତାହା ସେ

ଭଲ ଭାବରେ ଉପଲବ୍ଧି କରିଥିଲେ । ଯେଉଁଥିପାଇଁ ସେ ରାଜ୍ୟର ନେତୃତ୍ୱ ନେବାରେ ସକ୍ଷମ ହୋଇଥିଲେ । ସମସ୍ୟା ଓ ସଙ୍କଟକୁ ସାମନା କରିବାକୁ ସେ ପଛେଇ ନାହାଁନ୍ତି । ତାଙ୍କର ରାଜନୈତିକ ଜୀବନରେ ଓଡ଼ିଶାରେ ବହୁ ସଙ୍କଟମୟ ମୁହୂର୍ତ୍ତରେ ସେ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ଗ୍ରହଣ କରିଛନ୍ତି—ବହୁ ଶକ୍ତିଶାଳୀ ଓ ଜଟିଳ ପରିସ୍ଥିତିର ସେ ସାମନା କରିଛନ୍ତି ।

୧୯୬୭ ମସିହାରେ ସେ ବିଧାନ ସଭାକୁ ନିର୍ବାଚିତ ହେଲେ । ତାପରେ ପରେ—ଜାତୀୟ କଂଗ୍ରେସର ଦଳରେ ଏକ ଆଦର୍ଶଗତ ଲଢେଇ ଦେଖାଦେଲା—ଜାତୀୟ ସ୍ତରରେ କଂଗ୍ରେସରେ ଆଦର୍ଶଗତ ଏକ ଐତିହାସିକ ବିଭାଜନ ହେଲା (୧୯୬୯—୭୦) ବିଧାନ ସଭାରେ କଂଗ୍ରେସ (ଇ) ଦଳର ନେତା ହେଲେ ବିନାୟକ ଆଚାର୍ଯ୍ୟ ଏବଂ ଓଡ଼ିଶା ପ୍ରଦେଶ କଂଗ୍ରେସ (ଇ)ର ଅଧ୍ୟକ୍ଷ ହେଲେ ବିନାୟକ ଆଚାର୍ଯ୍ୟ । ବାସ୍ତବିକ ଏହି ସମୟରେ ରାଜନୈତିକ ଘନଘଟା ମଧ୍ୟରେ ବିଧାନ ସଭାରେ ଏବଂ ବାହାରେ—ସାରା ରାଜ୍ୟରେ ତାଙ୍କର ବ୍ୟକ୍ତିତ୍ୱ ଓ ନେତୃତ୍ୱ ପ୍ରତିଷ୍ଠିତ ହେଲା ।

1967 ରୁ 1977 ପର୍ଯ୍ୟନ୍ତ ନିରବଚ୍ଛିନ୍ନଭାବରେ ସେ ବିଧାନସଭାକୁ ନିର୍ବାଚିତ ହେଲେ । ପ୍ରଦେଶ କଂଗ୍ରେସ କମିଟିର ସଭାପତି—ବିରୋଧୀ ଦଳର ନେତା—ତା'ପରେ କୃଷି ଓ ସମବାୟ ବିଭାଗ ମନ୍ତ୍ରୀ (1972) ଅର୍ଥ ଓ ଅବକାରୀ ମନ୍ତ୍ରୀ (1974) ଏବଂ ଓଡ଼ିଶାର ମୁଖ୍ୟମନ୍ତ୍ରୀ (29-12-1976) ଦାୟିତ୍ୱ ଗ୍ରହଣ କରିଥିଲେ ।

ବିନାୟକ ବାବୁ ରାଜ୍ୟରେ ବିପୁଳ ଜନପ୍ରିୟତା ଲାଭ କରିଥିଲେ । ରାଜ୍ୟରେ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ଗ୍ରହଣ କରିଥିଲେ । ତାଙ୍କର ରାଜନୈତିକ ଜୀବନକୁ ସମୀକ୍ଷା କଲେ ଏହା ସ୍ପଷ୍ଟ ଯେ ରାଜ୍ୟରେ ନେତା ଭାବରେ ସେ ଥିଲେ ଏକ ବ୍ୟତିକ୍ରମ—

ବିନାୟକ ବାବୁ ରାଜ୍ୟର ବିତ୍ତ ମନ୍ତ୍ରୀ ଥିଲେ—କିନ୍ତୁ ଜୀବନରେ ସେ ଥିଲେ ବିତ୍ତହୀନ ।

ସେ ରାଜ୍ୟ ମୁଖ୍ୟମନ୍ତ୍ରୀ ଥିଲେ—ଭୁବନେଶ୍ୱରରେ ରହିବା ପାଇଁ ତାଙ୍କର ଗୃହ ନଥିଲା ।

କାର୍ଯ୍ୟ ଓ ବକ୍ତବ୍ୟ ମଧ୍ୟରେ ଭିନ୍ନତା ରକ୍ଷା କରିବାକୁ ସେ ପସନ୍ଦ କରୁନଥିଲେ । ସାରାଜୀବନ ସେ ସରଳ ଓ ନିରାଡ଼ମ୍ବର ଜୀବନ ଯାପନ କରିଥିଲେ । କିନ୍ତୁ ଉଚ୍ଚ ଚିନ୍ତାଧାରାର ମଣିଷ ଥିଲେ । ଆଜିର ପରିପ୍ରେକ୍ଷିରେ ତାଙ୍କୁ ନଦେଖିଥିବା ଓ ନଜାଣିଥିବା ଲୋକ ଏସବୁ ଶୁଣି ବିଶ୍ୱାସ କରି ପାରିବନାହିଁ । କିନ୍ତୁ ଏହା ଏକାନ୍ତ ସତ୍ୟ ।

ମୁଁ ତାଙ୍କୁ ଅତି ନିକଟରୁ ଦେଖିଛି—ସବୁ କ୍ଷେତ୍ରରେ ଶିଖିବାର ଆଗ୍ରହ ଏବଂ ଶିଖାଇବାର ପ୍ରଚେଷ୍ଟା ତାଙ୍କ ଚରିତ୍ରର ବିଶିଷ୍ଟ ଗୁଣ ଥିଲା । ସରକାରୀ ସମ୍ପତ୍ତି ଜାତୀୟ ସମ୍ପତ୍ତି—ଏ ଭାବନା—ଏ ଚିନ୍ତା ତାଙ୍କର ଅତ୍ୟନ୍ତ ଗଭୀର ଥିଲା । ସରକାରୀ ଅର୍ଥ ଅପବ୍ୟବହାରର ସେ କଟୁ ସମାଲୋଚକ ଥିଲେ । ଆଜିର ପରିପ୍ରେକ୍ଷିରେ ବିନାୟକ ବାବୁଙ୍କର ଉକ୍ତ ମୂଲ୍ୟବୋଧର ସ୍ଥାନ କେଉଁଠି ? ?

ବିନାୟକ ଆଚାର୍ଯ୍ୟ ଉଚ୍ଚ ମାନର ହୃଦୟବାନ ମଣିଷ ଥିଲେ—ଗାନ୍ଧି ଓ ଗୋପବନ୍ଧୁଙ୍କ ଉଚ୍ଚ ମୂଲ୍ୟବୋଧର ସେ ପ୍ରବର୍ତ୍ତକ ଥିଲେ । ମଣିଷର ସେବାକୁ ସେ ମାଧବ ସେବା ଭାବରେ ଗ୍ରହଣ କରିଥିଲେ ।

ତାଙ୍କର ଯେଉଁ ମୂଲ୍ୟବାନ ବିଧାନ ସଭା ବକ୍ତବ୍ୟ ସଂକଳନ ପ୍ରକାଶିତ ହେଉଛି ତାହା ନିଶ୍ଚିତ ଭାବରେ ରାଜନୈତିକ ଲୋକଙ୍କୁ ଏକ ଅଙ୍ଗୀକାରବଦ୍ଧ ନେତାର ଦେଶାତ୍ମବୋଧତା, ନିଷ୍ଠାପର ଜନସେବା ଓ ଉଚ୍ଚମାନର ମୂଲ୍ୟବୋଧର ବାର୍ତ୍ତା ଦେବ । ଉତ୍ତରପୁରୁଷଙ୍କୁ ଏକବିଂଶ ଶତାବ୍ଦୀ ନିମନ୍ତେ ତ୍ୟାଗ, ସେବା ଓ ଜାତୀୟତାର ନୂତନ ମାର୍ଗ ଦର୍ଶନ ପାଇଁ ପ୍ରେରଣାର, ଉତ୍ସ ହେବ । ଓଡ଼ିଶାର ଜନନାୟକମାନଙ୍କର ବିଧାନ ସଭାରେ ପ୍ରଦତ୍ତ ବକ୍ତବ୍ୟକୁ ସଂକଳନ କରି ଏହି ଭଳି ପ୍ରକାଶ କରିବା କାର୍ଯ୍ୟ ଅବ୍ୟାହତ ରହିବ—ମାନ୍ୟବର ବାଚସ୍ପତିଙ୍କୁ ମୋର ବିନମ୍ର ନିବେଦନ ।

ଭୁବନେଶ୍ୱର

ସେକ୍ ମତଲୁବ ଅଲି